ଜନ୍ ଷ୍ଟାଇନ୍‌ବେକ୍

# ଆମ ଦୁର୍ଗତିର ଦୁର୍ଦ୍ଦିନ

ନୋବେଲ୍ ପୁରସ୍କାର ପ୍ରାପ୍ତ ।



# THE WINTER OF OUR DISCONTENT

*by*

**JOHN STEINBECK**



**Originally Published by Bantam Books, Inc.**

ମୂଲ୍ୟ : ଟ ୪.୫୦

ଓଡ଼ିଆ ସଂସ୍କରଣର ପ୍ରକାଶନ ସମୟ : ମେ, ୧୯୬୭

ପ୍ରକାଶକ :

**କଟକ ଟ୍ରେଡ଼ିଂ କମ୍ପାନୀ**

ବାଲୁବଜାର, କଟକ-୨

ମୁଦ୍ରାକର : **ନବଜୀବନ ପ୍ରେସ**

**ଚାନ୍ଦନୀଚୌକ, କଟକ-୨**

# ପ୍ରଥମ ପରିଚ୍ଛେଦ

ଏପ୍ରିଲ୍ ମାସର ସୁନ୍ଦର ସୁନେଲି ସକାଳ ମେରି ହ'ଲଙ୍କ ଆଖିରୁ ନିଦକୁ ଅପସାରି ଦେଲା ; ସେ କଡ଼ ଲେଉଟାଇ ତାଙ୍କ ସ୍ୱାମୀଙ୍କ ଆଡ଼କୁ ଗୁହାଁଲାବେଳକୁ ଦେଖିଲେ, ସ୍ୱାମୀ ଆଙ୍ଗୁଠିକୁ ବେଙ୍ଗ ମୁହଁ ପରି ପାଠ୍ ପାଠ୍ କରି ତାଙ୍କୁ ଖତେଇ ହେଉଛନ୍ତି ।

ମେରି କହିଲେ, "ଏଥାନ୍ ! ଏମିତି ବୋକା ପରି କାହିଁକି ହେଉଛ ? ଆଜି କୌତୁକ କରିବା ପ୍ରକୃତି ବାହାରିଛି, ନା ?"

"ଆଗ କହ, ମିସ୍ ମୂଷୀ, ମୋତେ ତମେ ବାହାହବ ?"

"ଆଜି କ'ଣ ଉଠିବା ସାଙ୍ଗେ ସାଙ୍ଗେ ତମରି ବୁଦ୍ଧି ଲୋପ ହୋଇଛି କି ?"

"ଦିନକୁ ଦେଖି ବର୍ଷ ଚିହ୍ନା ପଡ଼େ, ଓ ପ୍ରଭାତକୁ ଦେଖି ଦିନ ।"

"ମୋତେ ତ ଲାଗୁଛି, ଉଠ୍ ଉଠ୍ ତୁମକୁ ବାଇ ଲାଗିଛି । ଟିକିଏ ପ୍ରକୃତିସ୍ଥ ହୁଅ । ମନେ ଅଛି ନା, ଆଜି ଯେ ଗୁଡ୍ ଫ୍ରାଇ ଡ଼େ !"

ଏଥାନ୍ ଗମ୍ଭୀରତାର ଛଳନା କରି କହିଲେ, "ହଁ, ହଁ, ମାଗୃଣସ୍ତୁ ରୋମାନ୍‌ମାନେ କ୍ୟାଲ୍‌ଭେରିରେ ଯାଇ ଖ୍ରୀଷ୍ଟଙ୍କୁ ହତ୍ୟା କରିବା ପାଇଁ ତ ଏତିକିବେଳେ ସଜ ହେଉଥିବେ ।"

"ଧର୍ମକୁ ଏପରି ବିଦ୍ରୂପ କରନାହିଁ । ଆଜି ଏଗାରଟା ବେଳେ ଦୋକାନ ବନ୍ଦ କରିବାକୁ ମ୍ୟାରୁଲ୍ଲୋ ଅନୁମତି ଦେବେ ?"

"ମୋର ପ୍ରିୟତମେ ! କୁକୁଡ଼ା ଜଟା ଫୁଲରାଣୀ ! ସେ ବିଷୟରେ ଫାଶସ୍ତୁ କାହିଁକି ? ମ୍ୟାରୁଲୋ ତ ଖାଲି କ୍ୟାଥୋଲିକ୍ ନୁହଁନ୍ତି, ସେ ଇଟାଲୀରୁ ଆସିଛନ୍ତି । ତେଣୁ ମୁଁ ଅନୁମାନ କରୁଛି ସେ ବୋଧହୁଏ ଆଜି ଦିନ ତମାମ ଦୋକାନ ମାଡ଼ିବେ ନାହିଁ । ମୁଁ ଦି'ପହରେ ଦୋକାନ ବନ୍ଦ କରିବି ଯେ ଯିଶୁଙ୍କ ହତ୍ୟା ସରିଲେ ପାଇଁ ଖୋଲିବ ।"

"ଏମିତ ଗୁଡ଼ାଏ ଅସୁନ୍ଦର କଥା କାହିଁକି କହୁଛ ମ ? ଏ ସବୁ ପ୍ୟୁରିଟାନ୍ ସମ୍ପ୍ରଦାୟର ପିଲଗ୍ରିମ୍‌ମାନଙ୍କ ତୁଣ୍ଡକୁ ଶୋଭା ପାଏ ।"

"ଏ କଥାରେ ତେବେ ଆପତ୍ତି କାହିଁକି, ସାଧବବୋହୂ ? ମୋ ମା'ଙ୍କ ଆଡୁ ମୁଁ ପିଲ୍‌ଗ୍ରିମ୍‌ମାନଙ୍କ ବଂଶଧର । ହତ୍ୟା ବୋଲି ଯାହା କହିଲି, ତାହା ଜଳଦସ୍ୟୁମାନଙ୍କ ଦାୟାଦ ହୋଇଥିବାରୁ କହୁଛି । ଆଚ୍ଛା, ଖ୍ରୀଷ୍ଟଙ୍କୁ ଯାହା କ୍ରୁସବଦ୍ଧ କରାଗଲା, ତାହା ଯେ ହତ୍ୟା, ସେଥିରେ ତ ତୁମର ଆପତ୍ତି ନ ହେବାର କଥା ।"

"ତୁମ ପିତୃ ପିତାମହ ତ ଦଳଦସ୍ୟୁ ନ ଥିଲେ । ତୁମେ ନିଜେ କହିଛ, ସେମାନେ ଥିଲେ ଡମିମାଛର ଶିକାରୀ । କଣ୍ଟିନେଣ୍ଟାଲ୍ କଂଗ୍ରେସ ପକ୍ଷରୁ ସେମାନେ ଏଥିପାଇଁ ଅନୁମତି ପତ୍ର ନା ଆଉ କ'ଣ ପତ୍ର ପାଇଥିଲେ ବୋଲି ପରା ନିଜେ କହିଛ !"

"ସେମାନେ ଜଳଦସ୍ୟୁ ନ ହୁଅନ୍ତୁ ପଛେ, ସମୁଦ୍ରବକ୍ଷରେ ଅନ୍ୟ ଯେଉଁ ଜାହାଜମାନଙ୍କୁ ଏମାନେ ଆକ୍ରମଣ କରୁଥିଲେ ସେମାନେ ତ ନିଶ୍ଚୟ ଏମାନଙ୍କୁ ଜଳଦସ୍ୟୁ ବୋଲି କହୁଥିବେ । ସେହିପରି ଯିଶୁଙ୍କ କ୍ରୁସବଦ୍ଧ ହେବା ଆମ ଦୃଷ୍ଟିରେ ଯାହା ହେଉ, ରୋମୀୟ ସୈନିକମାନଙ୍କ ଦୃଷ୍ଟିରେ ହତ୍ୟା ନୁହେଁ ତ ଆଉ କ'ଣ ?"

"ମୁଁ ଯୁକ୍ତି ତର୍କ କରି ତୁମକୁ ଚଢ଼େଇ ଦେଲିଣି । ତୁମେ ପ୍ରଥମେ ଯେପରି ବୋକା ପରି ହେଉଥିଲ, ସେଇପରି ହେଲେ ମୋତେ ସୁଖ ।"

"ମୁଁ ଯେ ବୋକା ଏହା ତ ତୁମର ନୂତନ ଆବିଷ୍କାର ନୁହେଁ । ସମସ୍ତେ ଏ କଥା ଜାଣନ୍ତି ।"

"ତୁମେ ସବୁବେଳେ କଥାରେ ଛନ୍ଦି ମୋତେ ଅଡୁଆରେ ପକାଇ ଦିଅ । ଆଚ୍ଛା, ପୂର୍ବପୁରୁଷଙ୍କ କଥା ଯାହା କହିଲ, ଏଥିରେ ତ ତ ବିଦ୍ରୂପ କରିବାର କିଛି ନାହିଁ, ଗର୍ବ ଅନୁଭବ କରିବାର କଥା । ତୁମରି ପୂର୍ବପୁରୁଷରେ ଏକାଧାରରେ, ଆମେରିକାରେ ପ୍ରଥମେ ଉପନିବେଶ ସ୍ଥାପନ କରିଥିବା ପିଲ୍‌ଗ୍ରିମ୍ ଫାଦର୍ସ ଅଛନ୍ତି ଓ ତିମି ଶିକାରୀ ଜାହାଜର ସାହସୀ କ୍ୟାପ୍‌ଟେନ୍‌ମାନେ ଅଛନ୍ତି ।"

"ହଁ, ମୋର ତ ଗର୍ବ ଅନୁଭବ କରିବାର କଥା କିନ୍ତୁ ତାଙ୍କର ?"

"କ'ଣ କହୁଛ, ବୁଝି ପାରିଲି ନାହିଁ ।"

"ମାନେ, ମୋର ଯଶସ୍ୱୀ ପୂର୍ବପୁରୁଷମାନେ ମୋ ପରି ଜଣେ ଉତ୍ତରାଧିକାରୀ ପାଇଛନ୍ତି ବୋଲି ଜାଣିଲେ ଗର୍ବ ଅନୁଭବ କରିବେ କି ? ହିନେ ସେମାନେ ଯେଉଁ ସହରର ଖୋଦ୍ ମାଲିକ ଥିଲେ, ସେହି ସହରର ଗୋଟାଏ ମେଳେଚ୍ଛା ଇଟାଲିୟର ଅଭିଶପ୍ତ ମୁଦି ଦୋକାନରେ ତାଙ୍କ ଦାୟାଦ ହୀନ ଗୁମାସ୍ତା କାମ କରୁଛି ବୋଲି ଜାଣିଲେ କଣ ବଞ୍ଚିରନ୍ତେ କହ ।"

"ତମେ ଗୁମାସ୍ତା କାହିଁକି ହେଉଛ ମ ! ତୁମେ ତ ସେ ଦୋକାନର ମେନେଜର୍ କହିଲେ ଚଳେ । ହିସାବପତ୍ର ତୁମରି ପାଖେ ; ବ୍ୟାଙ୍କ୍‌ରେ ଟଙ୍କା ନେଣ ଦେଣ ତମେ କରୁଛ ; ଜିନିଷପତ୍ର ପାଇଁ ଅର୍ଡ଼ର୍ ତମରି ନାମରେ ଯାଉଛି । ଯିଏ ଯେ କରନ୍ତି ସେ କ'ଣ ଗୁମାସ୍ତା ?"

"ହଁ, ସେଇଆ ବା ତା'ଠାରୁ ଆହୁରି ଅଧମ । ଆମ କାମର ତାଲିକା ଶେଷ କରିନାହିଁ, ଯେ ଦୋକାନ ଘରଟା ଓଳାଇବା ଓ ମଇଳା ନେଇ ମ୍ୟୁନିସିପାଲିଟି ଟିଣରେ ପକାଇବା କାମ ବି ଆମର । ତା'ବାଦ୍ ମ୍ୟାରୁଲୋ ହାଇ ମାଇଲେ ଫୁଟୁକି ମାରିବାକୁ ବି ହୁଏ । ମୋ'ର ତ ମନେ ହେଉଛି ଭଗବାନ୍‌ଙ୍କ ଅଭିଶାପରେ ବରାଡ଼ ଜନ୍ମ ପାଇଥିଲେ, ମୁଁ ମ୍ୟାରୁ-ଲୋଙ୍କ ଦୋକାନରୁ ମୂଷା ମାରିବାରେ ଲାଗିଯାନ୍ତି ।"

ମେରି ସ୍ୱାମୀଙ୍କୁ କୁଣ୍ଢାଇ ପକାଇ କହିଲେ, "ଆଗ ଯେମିତି ନିର୍ବୁଦ୍ଧିଆ ପରି ହେଉଥିଲ, ଠିକ୍ ସେଇମିତି ହେବା । ମୋ' ଧନ ପରା ! ଗୁଡ୍ ଫ୍ରାଇଡ଼େ ପରି ପବିତ୍ର ଦିବସରେ ମନ୍ଦ ଚିନ୍ତା କରନାହିଁ । ମୁଁ ତୁମକୁ କେତେ ସୁଖ ପାଏ !"

ମୁହୂର୍ତ୍ତିକ ପରେ ଏଥାନ୍ କହିଲେ, "ଆଚ୍ଛା ! ହଉ, ସମସ୍ତେ ତ ଏ ଦିନଟାକୁ ପବିତ୍ର ଦିନ ବୋଲି କହୁଛନ୍ତି ! କିନ୍ତୁ ଦେଖ, ଯିଏ ବୋଲି ଯେ ତୁମେ ଜଣେ ବିବାହିତ ଲୋକ ପାଖରେ ଏପରି ଉଦ୍ଧୁଲଙ୍ଗଳା ହୋଇ ଶୋଇବ, ସେ କଥା ଚଳିବ ନାହିଁ ।"

"ସେ ସବୁ ଥାଉ । ମୁଁ ଆମ ପିଲାଙ୍କ କଥା ତୁମକୁ କହିବି ବୋଲି ରହିଁ ବସିଛି ପରା !"

"କାହିଁକି ? ସେ ଦୁହେଁ କ'ଣ ଜେଲରେ ଭୁକିଲେଣି କି ?"

"ପୁଣି ତ ସେମିତି ବୋକଙ୍କ ଢଙ୍ଗ ଧରିଲଣି ! ହଉ, ଥାଉ, ସେମାନେ ନିଜେ ତାଙ୍କ କଥା ଆସି ତୁମକୁ କହିଲେ ବୋଧହୁଏ ଭଲ ହେବ ।"

"ତୁମେ କହିବାରେ କ'ଣ ବାଧା—"

"ହଁ, ମାର୍ଗି ୟଙ୍ଗ୍ ହାଣ୍ଟ୍ ପୁଣି ଆଜି ବ ଆସି ମୋର ଗଣନା କରିବେ ।"

"କ'ଣ, ଟଙ୍କା ଥଳି, ନା ହିସାବ ଖାତା ? ଆଚ୍ଛା, ଏହି ମାର୍ଗି ୟଙ୍ଗ୍ ହାଣ୍ଟ୍ ପ୍ରାଣୀଟି କିଏ ? କ'ଣ ଯାଙ୍କର କାମ ଯେ, ଆମ ସହରର ସବୁଯାକ ଟୋକା ଯାଙ୍କ—?"

"ମୁଁ କ'ଣ ତୁମ ଉପରେ କେବେ ସନ୍ଦେହ କରିଛି ? ସୁନ୍ଦର ଟୋକାଟିଏ ଦେଖି ପୁରୁଷ ଯଦି ଦେଖିନାହିଁ ବୋଲି ଭୁଲେଇ ହୁଏ; ତେବେ ମାଇପେ ଏଇ ପ୍ରଶ୍ନ କରନ୍ତି ବୋଲି ମୁଁ ପଚାରୁଛି । ମୁଁ କ'ଣ ତୁମକୁ କେବେ ସନ୍ଦେହ କରେ ଯେ ମାର୍ଗିକୁ ତୁମେ କେବେ ଦେଖିନାହିଁ ବୋଲି ମୋତେ ଲୁଚଉଛ ?"

"ଓଃ, ମାର୍ଗି ବୋଇଲେ, ସେଇ ମାଇକିନିଆଟା । ତାକୁଇ କହୁଛ ଟୋକା ବୋଲି । ଶୁଣିଛି, ସେ ପୂରା ଯୋଡ଼ାଏ ଘଇତା ଭୋଗ କରି ସାରିଲଣି !"

"ତା'ର ଦ୍ୱିତୀୟ ସ୍ୱାମୀ ମରି ଯାଇଛନ୍ତି ।

"ଥାଉ ତା' କଥା । ମୋର ଏଇଲେ ଦରକାର ସକାଳ ଜଳଖିଆ । ଆଚ୍ଛା, ଏ ଯେଉଁ ଭାଗ୍ୟ ଗଣନା ଏଥିରେ କ'ଣ ତମର ବିଶ୍ୱାସ ହେଉଛି ?"

"ହବ ନାହିଁ ? ମାର୍ଗି ତା' ତାସ ମେଲାଇ,ଭାଇଙ୍କ କଥା ସବୁ ଜାଣିଲା କମିତି ? କହିଲା, 'ତମର ଜଣେ କିଏ ପ୍ରିୟ, ଆପଣାର ଲୋକ' ବୋଲି ।"

"ହଉ, ଥାଉ । ମୁଁ ତ ଜାଣୁଛି, ମୋର ଜଣେ ପ୍ରିୟ, ଆପଣାର ଲୋକ ଯଦି ମୋ ପାଇଁ ସାଙ୍ଗେ ସାଙ୍ଗେ ପାଇଟି ନ କରେ, ତେବେ ପିଠିରେ ଗୋଇଠାଟାଏ ଖାଇବ ।"

"ହଁ, ମ, ଯାଉଛି, ସାଙ୍ଗେ ସାଙ୍ଗେ କରି ଦେଉଚି । ଅଣ୍ଡା ଖାଇବ ?"

"ହଁ, ସେଇମିତି ତ ମନ ହେଉଚି । ଆଚ୍ଛା ଆଜ ଦିନଟାକୁ ଗୁଡ୍ ଫ୍ରାଇଡ଼େ ବୋଲି କହନ୍ତି କାହିଁକି ? ଆଜିର ଯେଉଁ ଘଟଣା ସେଥିରେ ଗୁଡ୍ (ଭଲ) ପୁଣି କ'ଣ ?"

ମେରି କହିଲେ, "ତୁମକୁ ପାରି ହେବନାହିଁ । ପୁଣି ତ ଧର୍ମକୁ ଥଟ୍ଟା କରିବାକୁ ଆରମ୍ଭ କଲଣି !"

ଏଥାନ୍ ହ୍ୱାଲେନ୍ ହ'ଲି ଶେଯରୁ ଉଠି ଖାଇବାକୁ ପ୍ରସ୍ତୁତ ହୋଇ ଯାଇ ଝରକା ପାଖ ଖାଇବା ଟେବୁଲରେ ପହଞ୍ଚିଲା ବେଳକୁ, କଫି ତିଆରି ହୋଇ ଥୁଆ ହୋଇଥାଏ; ଗୋଟିଏ ଡାଟିଆରେ ଅଣ୍ଡା ସିଝା ଥାଏ ଓ ଚା' ପାଖରେ ପାଉଁରୁଟି ସେକା ହୋଇ ରହିଥାଏ ।

ଖାଇବାକୁ ଆରମ୍ଭ କରି ସେ କହିଲେ, "ମୋତେ ବର୍ତ୍ତମାନ୍ ଖୁବ୍ ସୁଖ ଲାଗୁଛି । ଆଚ୍ଛା, ଆଜିର ଏ ଶୁକ୍ରବାରକୁ ଗୁଡ୍ (ଭଲ) ବୋଲି କହନ୍ତି କାହିଁକି ?"

ଚୁଲିମୁଣ୍ଡ଼ୁ ମେରି କହିଲେ, "ବୋଧହୁଏ ବସନ୍ତ ଋତୁରେ ପଡୁଥିବାରୁ ।"

"ତେବେ ତ ବସନ୍ତ ଶୁକ୍ରବାର ବୋଲି କହିଲେ ହୁଅନ୍ତା !"

"କ'ଣ, ଯେମିତି ବସନ୍ତ ଜର ! କ'ଣ ଶୁଭୁଛି ? ପିଲେ ଉଠିଲେ କି ?"

"ସେ ସମ୍ଭାବନା କମ୍ । ବଦ୍‌ମାସ୍ ପିଲାଗୁଡ଼ାକ ବଡ଼ ଅଳସୁଆ ହୋଇଛନ୍ତି । ଚାଲ, ଯାଇ ତାଙ୍କୁ ଉଠାଇ ବୁହେ ପିଟିବା ।"

"ବୋକା ପରି ହେଲା ବେଳେ ତମେ ଗୁଡ଼ାଏ ଖାଲି ଟାଣକଥା କହ । ଆଚ୍ଛା, ତମେ ବାରଟାରୁ ତିନଟା ଭିତରେ କ'ଣ ଘରକୁ ଆସିବ ?"

"କଦାପି ନୁହେ ।"

"କାହିଁକି ?"

"ମାଇକଣିଆ ଶିକାର । ଲୁଚେଇ ଗୈରେଇ ଗୋଟେ ଯୋଡ଼େ ଦୋକାନରେ ପୂରେଇବ । ପାରିଲେ, ସେ ମାର୍ଗିଟାକୁ ଫୁସ୍‌ଲେଇବ ।"

"ହେଇଟି, ଏଥାନ୍, ମାର୍ଗି ନାମରେ ସେମିତି ଗୁଡ଼ାଏ କଥାବାର୍ତ୍ତା କରନାହିଁ । ସେ ଜଣେ ଭଲପ୍ରକୃତିର ମଣିଷ, ଭାରି ମେଳାପୀ

ବନ୍ଧୁ ପାଇଁ ଦରକାର ପଡ଼ିଲେ ଆପଣା ଦେହରୁ କୁରୁଛା କାଢ଼ି ଦେଇ ପକାଇବ ।”

“କେମନ୍ତ ! ଆଚ୍ଛା, ସେ କୁରୁଛାଖଣ୍ଡ ତ ପୁଣି ନଜେ କେମିତି ସଂଗ୍ରହ କରିଥିବ !”

“ଗୃହିଣୀ ତ ତମର ସେଇ ପ୍ୟୁରିଟାନ୍ ଯାଙ୍କୀଙ୍କ କଥା । ମାଇକନିଆଙ୍କ ଉପରେ ଏତେ ଅବିଶ୍ୱାସ !”

“ହେଇଟି, ତୁମର ଯାହା ଇଚ୍ଛା ତାହା ବାଦ ପକାଇ କହିବ, ତୁମ ମାଗି ଓ ମୋ’ଭିତରେ ରକ୍ତସମ୍ପର୍କ ଅଛି । ତା’ ଧମନୀରେ ଗୃହିଣୀ, ମୋ’ର ପରି, ଜଳଦସ୍ୟୁଙ୍କ ରକ୍ତ ।”

“ଓହୋ, ଥାଉ, ପୁଣି ତ ନିର୍ବୋଧଙ୍କ ପରି ଗର୍ଜିବାକୁ ଆରମ୍ଭ କଲ ! ହେଇଟି, ଏ ତାଲିକାଟା ରହିଲା ।” ଏଥାନ୍‌ଙ୍କ ଗୁପ୍ତ ପକେଟରେ ସେ ତାଲିକାଟି ରଖିଦେଲେ । “ବହୁତ ଗୁଡ଼ାଏ ଜନିସର ତାଲିକା ହେଲା ପରି ଲାଗୁଛି । କିନ୍ତୁ ଉପାୟ ନାହିଁ; ମୁଣ୍ଡ ଉପରେ ଇଷ୍ଟର୍ ପର୍ବ ପର୍ବ ! ପାସୋରିବ ନାହିଁ । ବିଶେଷ କଥା, ଦୁଇ ଡଜନ୍ ଅଣ୍ଡା ଆଣିବାକୁ କେଭେଁ ଭୁଲିବ ନାହିଁ । ହଉ, ବେଗେ ଯାଅ । ଦୋକାନରେ ପହଞ୍ଚୁ ପହଞ୍ଚୁ ବିଳମ୍ବ ହୋଇଯିବ ।”

“ହଁ, ସେଇଆ ଜଣା ପଡ଼ୁଛି । ଗୋଟାଏ ଯୋଡ଼ାଏ ଗ୍ରାହକ ଫେରିଯିବା ଫଳରେ ମ୍ୟାରୁଲୋଙ୍କର ଦି’ପଇସା କ୍ଷତି ହୋଇପାରେ । ଆଚ୍ଛା, ଏକାଥରକେ ତୁମର ଦୁଇ ଡଜନ ଅଣ୍ଡା କାହିଁକି ଦରକାର କି ?”

“ଇଷ୍ଟର୍ ପାଇଁ ରଙ୍ଗ ହେବ । ଯ୍ୟାଲେନ୍ ଓ ମେରି ଏଲେନ୍‌ଙ୍କର ଏଥିପାଇଁ ବିଶେଷ ତାଗିଦା । ହଉ, ଏଥର ତୁମେ ଉଠ ।”

“ବହୁତ ଆଚ୍ଛା, କଖାରୁ ଫୁଲ ! ଯିବାପୂର୍ବରୁ ଉପରକୁ ଟିକିଏ ଯାଇ ଯ୍ୟାଲେନ୍ ଓ ମେରି ଏଲେନ୍ - ପିଲା ଦି’ଟାଙ୍କୁ ଗୁଡ଼ାଏ ଗିଟି ସାଙ୍ଗା କରି ଦିଅନ୍ତିନାହିଁ ?

“ତୁମେ ସେ ପିଲା ଦିହିଙ୍କି ଏକାବେଳକେ ବିଗାଡ଼ି ଦେଇ ସାରିଲଣି । ମନେ ମନେ ଜାଣୁଥିବ ଯେ ।”

"ହଉ, ବଦାୟ, ଗୃହକର୍ତ୍ତ୍ରୀ ମହାଶୟା !" ବୋଲି କହି ଏଥାନ୍ ଘରୁ ବାହାରିଗଲେ । ଜାଲି ଦୁଆରକୁ, ଯିବା ପଛେ ପଛେ ଭିଡ଼ି ବନ୍ଦ କରିଦେଇ ସେ ମେନ୍କୁ ବାହାରି ପଡ଼ିଲେ – ସକାଳର କଅଁଳ ଖରାରେ ଗୁରିଆଡ଼ ସୁନେଲି ରଙ୍ଗ ଧରିଥାଏ ।

ବାହାରକୁ ଯାଇ ସେ ତାଙ୍କର ସୁନ୍ଦର ପୁରୁଣା ଘରକୁ ଟିକଏ ଆଖି ଫେରାଇ ଗୃହିଁଲେ । ଏଇ ଘରଟି ତାଙ୍କ ବାପାଙ୍କର, ନା' ତାଙ୍କ ପଣ—ଗୋସେଇଁବାପାଙ୍କ ଅମଳର । ଜାହାଜରେ ଯେଉଁ ଧଳାରଙ୍ଗ ଦିଆଯାଏ, ସେଇ ରଙ୍ଗରେ ଧଉଳା ହୋଇଛି ; ପୁରୁଣା କାଳିଆ ଢଙ୍ଗରେ ସୂଚୀକାମ ହୋଇଛି ; ଘରେ ପୁରୁଣା ଢଙ୍ଗର ବାଡ଼ା ଅଛି ; ଦାଣ୍ଡଦୁଆର ଉପରକୁ ପଂଖା ପରି ଗୋଟିଏ ଝରକା ! ଶହେ ବର୍ଷର ବୁଢ଼ା ଲିଲାକ୍‌ଗଛମାନଙ୍କ ଭିତରେ ଘରଟି ; ଘର ଗୃରିପଟେ ଗୋଟିଏ ବଗିଚ୍ଛ—କଅଁଳ ଗୁଗଗଛରେ ପୂର୍ଣ୍ଣ—ବେଶ୍ ସବୁଜରଙ୍ଗ ଧରି ଆସୁଛି । ଲିଲାକ୍‌ଗଛର ଗଣ୍ଡିଟିମାନ ଅଣ୍ଟାବେଣ୍ଟ ହୋଇଗଲାଣି—ଗଛଗୁଡ଼ିକରେ ଫୁଲକଢ଼ ଭର୍ତ୍ତିହୋଇଛି । ଏଲ୍‌ମ୍ ଷ୍ଟ୍ରିଟ୍‌ର ଏଲ୍‌ମ୍ ଗଛଗୁଡ଼ିକ ମୁଣ୍ଡକୁ ମୁଣ୍ଡ ବାଜିଲେଣି ; ଗଛଯାକ ନୂଆ ପତ୍ର କଅଁଳ ହଳଦିଆ ରଙ୍ଗ ବୋଳି ହୋଇଯାଇଛି । ବ୍ୟାଙ୍କ୍ କୋଠା ଉପରକୁ ସୂର୍ଯ୍ୟ ଉଠି ଆସି ରୂପେଲି ଗ୍ୟାସ୍-ଗୁମ୍ବୁଜକୁ ଜକଜକ କରୁଛନ୍ତି । ପୁରୁଣା ବନ୍ଦର ଆଡ଼ୁ ଦକ୍ଷିଆ ଲୁଣୀ ହାଉଆ ବହିବାକୁ ଆରମ୍ଭ କଲାଣି ।

ଏଲ୍‌ମ୍ ଷ୍ଟ୍ରିଟ୍‌ରେ କଅଁଳ ସକାଳବେଳାରେ ମାତ୍ର ଜଣଙ୍କ ସଙ୍ଗେ ଦେଖା ହେଲା । ସେ ହେଉଛନ୍ତି ବ୍ୟାଙ୍କ୍‌ମାଲିକ ମିଷ୍ଟର୍ ବେକର୍‌ଙ୍କ କାଳିଆ କୁକୁର—ସେଇଥିପାଇଁ ତା'ନାମ ଲାଲ୍‌ବେକର୍ । ଧୀର ଠାଣିରେ ବଡ଼ ମର୍ଯ୍ୟାଦାବନ୍ତ ଭାବେ ସେ ମହାଶୟ ଆସୁଥାନ୍ତି; ମଝିରେ ମଝିରେ ଏଲ୍‌ମ୍ ଗଛର ଗଣ୍ଡିକୁ ଟିକଏ ଟିକଏ ଶୁଙ୍ଘି ଦେଉଥାନ୍ତି—ସତେ ଯେମିତି, ଗଛ ଗଣ୍ଡିରେ କିଏ କିଏ ଦେହ ଘଷିଛନ୍ତି, ତାହାର ତାଲିକା ତଦାରଖ କରୁଥାନ୍ତି ।

ଲାଲ୍‌ବେକର ପାଖକୁ ଆସନ୍ତେ, ଏଥାନ୍ ଆରମ୍ଭ କଲେ, "ନମସ୍କାର, ମହାଶୟ ! ମୋ'ର ନାମ ଏଥାନ୍ ହ୍ୟାଲେନ୍ ହ'ଲି । ଆପଣ ଲଘୁଶଙ୍କାରେ ଥିଲାବେଳେ ଆପଣଙ୍କ ସଙ୍ଗେ ମୋର ସାକ୍ଷାତ ହୋଇଛି ।"

ଲାଲ୍‌ବେକର୍ ଟିକଏ ଠିଆହୋଇ ବାଲୁଆ ଲାଙ୍ଗୁଡ଼କୁ ଧୀରେ ଧୀରେ ହଲାଇ, ଏଥାନ୍‌ଙ୍କ ଅଭିବାଦନ ଗ୍ରହଣ କଲା ।

ଏଥାନ୍ କହି ଲାଗିଲେ, "ମୁଁ ମୋ ଘରକୁ ଟିକଏ ଗୃହଥିଲି । ସେ କାଳରେ ଲୋକେ ଅସଲ ଘର ତିଆରି କରୁଥିଲେ ଏକା ।"

ଲାଲ୍‌ବେକର୍ ମୁଣ୍ଡ ଟେକି, ପଛ-ଗୋଡ଼ ଗୋଟାଏ ଉଠାଇ ତା ପଞ୍ଜରାହାଡ଼କୁ ବେଖାତିରିଆ ଭାବରେ ଟିକଏ ଘର୍ଷି ହେଲା ।

ଏଥାନ୍ କହି ଚାଲିଥାନ୍ତି, "ନ କରିବେ କାହିଁକି ? ତାଙ୍କ ହାତରେ ପଇସା ଥିଲା । ସାତ ସମୁଦ୍ରରେ ଶିକାର କରି ବହୁତ ତିମିମାଛ ତେଲ ଆଦାୟ କରୁଥିଲେ ଓ ତିମି ମାଛ ମୁଣ୍ଡରୁ ସ୍ପର୍ମାସେଟି ସଂଗ୍ରହ କରୁଥିଲେ । ସ୍ପର୍ମାସେଟି କ'ଣ ଜାଣନ୍ତି ତ ?"

ଲାଲ୍ କରୁଣ ଚିତ୍କାର କରି ଦୀର୍ଘନିଃଶ୍ୱାସଟାଏ ଛାଡ଼ିଲା ।

ଏଥାନ୍ କହିଲେ, "ଦେଖୁଛି, ଏ ଶବ୍ଦର ଅର୍ଥ ଆପଣଙ୍କୁ ଜଣାନାହିଁ । ସ୍ପର୍ମାସେଟି ବାହାରେ ସ୍ପର୍ମ-ତିମିର ମୁଣ୍ଡଖପୁରି ତଳୁ—ଏହା ତାହାର ମୁଣ୍ଡର ମଜ୍ଜା, ବସ । ସାମାନ୍ୟ ତରଳ ତେଲିଆ ଜିନିଷ, ଗୋଲାପ ଫୁଲ ପରି ସୁବାସ । ସାରମେୟ ! ଆପଣଙ୍କୁ ମୋର ପରାମର୍ଶ, 'ମବିଡିକ୍' ବହି ଖଣ୍ଡି ପଢ଼ି ନିଅନ୍ତୁ । ତିମି ବିଷୟରେ ସବୁ କଥା ସେଇଥିରୁ ପାଇବେ ।"

ଲାଲ ନର୍ଦ୍ଦମା ପାଖ ଉଲାଳହାର ଖୁଣ୍ଟି ଉପରକୁ ଗୋଡ଼ ବଢ଼େଇଲା ।

ଏଥାନ୍ ତା'କୁ ଛାଡ଼ି ଆଗେଇ ଯାଉ ଯାଉ କାନ୍ଧ ଉପରକୁ ମୁହଁ ବୁଲାଇ କହିଲେ, "ବହି ପଢ଼ି ସାରି ମୋ ପାଖକୁ ରିପୋର୍ଟ କରିବେ । ମୋ ପୁଅକୁ ଟିଉସନ୍ କରିବା ନିମନ୍ତେ ଆପଣଙ୍କୁ ନିଯୁକ୍ତ କରାଯାଇପାରେ । ସେ ସ୍ପର୍ମାସେଟି କାହିଁକି, ଯେ କୌଣସି ସହଜ ଶବ୍ଦ ମଧ୍ୟ ଶୁଦ୍ଧ ଭାବେ ଲେଖି ଜାଣିନାହିଁ ।"

ପୁରୁଣା ଏଥାନ୍-ଘ୍ୟାଲେନ୍-ହ'ଲ ଘରଠାରୁ ଦୁଇଟା ସାହାଳ ବାଦ୍ ଏଲମ୍ ଷ୍ଟ୍ରୀଟ୍ ଯାଇ ସମକୋଣରେ ମିଶିଛି ହାଇ ଷ୍ଟ୍ରୀଟ୍‌ରେ । ପ୍ରଥମ ସାହାଳଟି ଅଧା ଅତିକ୍ରମ କରିଛନ୍ତି, ଏଥାନ୍ ଦେଖିଲେ, ଏଲ୍‌ଗାର୍-ଭବନର ଉଦ୍ୟାନରେ ନୂଆ ଲଗାଯାଇଥିବା ଘାସ ଉପରେ, ଦଳେ କୁରୁଖୁରିଆ ଇଂଲଣ୍ଡୀୟ ଚଟିଆଙ୍କର ଲାଗିଛି ଯୁଦ୍ଧ । ଖେଳିବା ପରିବର୍ତ୍ତେ, ଏମାନେ

ଘାସ ଉପରେ ଗଡ଼ାଗଡ଼, ଖୁମ୍ପାଖୁମ୍ପି ହେଉଥାନ୍ତି, ସତେ ଯେମିତି ପରସ୍ପରର ଆଖି ଗୁଡ଼ାକ ତାଡ଼ି ପକାଇବେ । ଏତେ ଖ୍ରାପ ଭାବେ ଲଢ଼େଇରେ ମାତି ଏତେ ଜୋରରେ ସେ ଗୁଡ଼ାକ ପାଟି କରୁଥାନ୍ତି ଯେ ଏଥାନ୍ ଆସି ତାଙ୍କ ପାଖରେ ପହଞ୍ଚିବାର ମଧ୍ୟ ସେମାନଙ୍କୁ ଜଣା ପଡ଼ିଲା ନାହିଁ । ଏଥାନ୍ ସ୍ଥିର ହୋଇ ଦେଖିବାକୁ ଠିଆ ହେଲେ ।

କିଛି ସମୟ ପରେ ସେ କହିଲେ,"ପକ୍ଷୀମାନେ ତାଙ୍କ କ୍ଷୁଦ୍ର ବସାଟି-ମାନଙ୍କରେ କେମିତି ମିଳାମିଶି ରହନ୍ତି ! ତମର ଏତେ ଲଢ଼େଇ ଲାଗିଛି କାହିଁ ? ଏଇ, ପାଖରେ ଅଣକୋଳଥିଆ ବୁଦାରେ ପେନ୍ଥା ପେନ୍ଥା ଝୁଲି ପାଚିଛି; ତା'କୁ ଯାଇ ଖୁମ୍ପି ଖାଉନାହଁ, ଆପଣା ଆପଣା ଭିତରେ ଖୁମ୍ପା-ଖୁମ୍ପି କାହିଁକି ଲାଗିଛ ? ଏଡ଼େ ସୁନ୍ଦର ସକାଳ ବେଳା ; ଏଥିରେ ବି ଟିକିଏ ମନଖୁସିରେ ରହି ପାରୁନାହଁ ? ତମର ଭଲ ବଦ୍‌ମାସ୍‌ଙ୍କୁ ସେଣ୍ଟ୍ ଫ୍ରାନ୍‌ସିସ୍ ଏତେ ଦୟା କରୁଥିଲେ କାହିଁକି କେଜାଣି ?" ଏହା କହି ସେ, 'ହାସୁ' ବୋଲି ଶବ୍ଦ କରି ଚଢ଼େଇଙ୍କ ଆଡ଼କୁ ଧାଇଁ ଯାଇ ତାଙ୍କୁ ଗୋଇଠା ମାରିବାକୁ ଗୋଡ଼ ବଢ଼ାଇଲେ । ଚଢ଼େଇଗୁଡ଼ାକ ଡେଣା ମେଲାଇ 'ସୁ' କରି ଉଡ଼ିଗଲେ ; ଉଡ଼ିଗଲା ବେଳେ ଚିଁ ଚିଁ କରି ଏଥାନ୍‌ଙ୍କ ବିରୁଦ୍ଧରେ ତୀବ୍ର ଅଭିଯୋଗ କରୁଥାନ୍ତି । ଏଥାନ୍ ସେମାନଙ୍କୁ ପଛରୁ ଶୁଣାଇ ଦେଲେ, "ହେଇଟି, ଚେତାଇ ଦେଉଛି, ଶୁଣ । ଆଜି ଦି'ପହରେ ସୂର୍ଯ୍ୟଙ୍କ ତେଜ ମଉଳିଯିବ, ପୃଥିବୀକୁ ଅନ୍ଧକାର ଗ୍ରାସ କରିବ, ତୁମେମାନେ ଭୟରେ ଥରିବ ।" ଏଥାନ୍ ଉଦ୍ୟାନରୁ ରାସ୍ତା ଉପରକୁ ଆସି ନିଜ ରାସ୍ତା ଧରିଲେ ।

ହିଲ୍‌ସବୁ ମହଲ୍ଲାର ପୁରୁଣା ଫିଲିପସ୍-ଭବନରେ ଏବେ ଗୋଟାଏ ମେସ୍ ହୋଇଛି । ସେଇ ଘରର ଦାଣ୍ଡ ଦୁଆରୁ ବାହାରିଲେ ଜର୍ଜି ମର୍‌ଫି, ନଷ୍ଟ୍‌ର ବେକର୍‌ଙ୍କ 'ଫାର୍ଷ୍ଟ ନେସନାଲ୍' ବ୍ୟାଙ୍କ୍‌ର ପୋଦାର । ସେ ଦାନ୍ତ ଖୁଣ୍ଟିଲେ, ଓ ଟାଟର୍‌ସେଲ୍ ଦୋକାନରୁ କିଣିଥିବା ଓ୍ୱେଷ୍ଟ କୋଟ୍‌କୁ କାମିଜ ଉପରେ ଟାଣିଟୁଣି ଏମାନଙ୍କୁ କହିଲେ, "ବାଃ, ମିଷ୍ଟର୍ ହ'ଲ ! ମୁଁ ତ ଏଇଲେ ଆପଣଙ୍କ ପାଖକୁ ଯାଉଥିଲି !"

ଏଥାନ୍ ପଚାରିଲେ, "ଆଚ୍ଛା, ଆଜିର ଏ ଶୁକ୍ରବାରକୁ 'ଭଲ' ବୋଲି କାହିଁକି କହନ୍ତି, ଆଗ କହିଲ ।"

ଜପ୍ପି କହିଲେ,"ଭଲ ଅର୍ଥରେ ଯାଙ୍କୁ 'ଗୁଡ୍' ବୋଲି କହନ୍ତି ନାହିଁ । ଲାଟିନ୍ ଭାଷାର ଗୁଡ଼ସ୍, ଗୁଡ଼ିଲଅସ୍, ଗୁଡମ୍—ଏଇଥିରୁ ଏ ଶବ୍ଦଟାର ଉତ୍ପତ୍ତି ମାନେ, ଭଲ ନୁହେଁ, 'ଅତି ଖରାପ' ।"

ଜପ୍ପି ହସନ୍ତି ଘୋଡ଼ା ପରି, ହସନ୍ତି ଘୋଡ଼ା ହ୍ରେଷାରବ କଲା ପରି । ହସିଲା ବେଳେ ତାଙ୍କ ପାଟିର ଉପର ଓଠ ଟେକା ହୋଇ ଯାଇ ଢେଗାଢେଗା ଗୃଣକୋଣିଆ ଗୁମ୍ମୁଦାନ୍ତ ସବୁ ବାହାରକୁ ଦିଶେ । ସେ ନିଉ ବେ' ଟାଉନ୍ ସହରରେ ଏତେ ଅଳ୍ପଦିନ ରହି ମଧ୍ୟ, ସମସ୍ତଙ୍କ ସାଙ୍ଗେ ଏତେ ସୁନ୍ଦର ଭାବେ ମିଶି ଚଳନ୍ତି ଯେ ତାଙ୍କୁ ଲୋକଙ୍କର ଖୁବ୍ ଆଦର । ତାଙ୍କର ଅସଲ ନାମ, ଜୋସେଫ୍ ପ୍ୟାଟ୍ରିକ୍ ମର୍ଫି । ସାଙ୍ଗମାନେ ଆଦରରେ ଡାକନ୍ତି, ଜପ୍ପି ମର୍ଫି, ଜପ୍ପି-ଟୋକା, ଶେଷକୁ ଖାଲି 'ମର୍ଫ୍' । ମର୍ଫ୍ ଭାରି ରହସିଆ ଲୋକ । ନିଜର ପରିହାସ କଥାସବୁ ପୋକର୍ (ଏକ ପ୍ରକାର ତାସଖେଳ) ଖେଳାଳୀଙ୍କ ପରି ଆଖି ଅଧେ ବୁଜି, ମୁହଁ ପୋତି, କିଛି ନ ଜାଣିଲା ପରି କହନ୍ତି; କିନ୍ତୁ ଅନ୍ୟ ମୁହଁରୁ ପରିହାସ କଥା ଶୁଣିଲେ ଘୋଡ଼ାଙ୍କ ପରି ହସନ୍ତି । ଏକଥା ପୂର୍ବରୁ ଶୁଣିଥିଲେ ବି ହସ କମ୍ ହୁଏନାହିଁ । ଖୁବ୍ ଖବର ରଖନ୍ତି ବି ଏଇ ମର୍ଫ । ମାଫିଆଠାରୁ ମାଉଣ୍ଟବେଟେନ୍ ଯାଏଁ ଡିଙ୍କିଶାଳରୁ ଢେଙ୍କାନାଳ ଯାଏଁ) ସବୁ କଥା, ସମସ୍ତଙ୍କର ବୁନିୟାଦି ଯାଙ୍କୁ ଜଣା । ଗୁପ୍ତ କଥା ପ୍ରକାଶ କଲାବେଳେ ସେ ଏମିତି ନ ଜାଣିଲା ପରି ସ୍ୱର କରନ୍ତି ଯେ ମଣିଷ ବିଚାରିବ, ସେ ତଥ୍ୟଟା ନ କହି, ସେ ବିଷୟରେ ସଂଶୟ ପ୍ରକାଶ କରୁଛନ୍ତି । କଥା କହିଲା ବେଳେ ସେ ସବ୍‌ଜାନତା ଢଙ୍ଗ ନ ଦେଖାଇବାରୁ ଶ୍ରୋତାମାନେ ତାଙ୍କ କଥାରେ ଆପେ ମଜ୍ଜି ଯାଆନ୍ତି ଓ ପରେ ଏହାର ପୁନରାବୃତ୍ତି କଲାବେଳେ, ମର୍ଫ୍‌ଙ୍କଠାରୁ ନ ଶୁଣି ନିଜେ ଉଦ୍‌ଭାବନ କରିଛନ୍ତି ବୋଲି ଚଳାଇ ଦିଅନ୍ତି । ଏ ମାଙ୍କଡ଼ ଜପ୍ପିଟା ମଣିଷକୁ ସହଜରେ ଭୁଲାଇ ଦିଏ; ବାଦ ପକେଇଲେ ସବୁବେଳେ ଜିଣନ୍ତା—କିନ୍ତୁ କେବେ କୌଣସିଠି କୌଣସି ବିଷୟରେ ସେ ବାଦ ରଖିବାର କେହି ଶୁଣି ନାହାନ୍ତି । ହିସାବ ରଖିବା ବିଷୟରେ ସେ ଏକନମ୍ବର, ବ୍ୟାଙ୍କ୍ ପୋଦାର ଭାବରେ ସେ ଖୁବ୍ ନାମ କରିଛୁ । ଫାର୍ଷ୍ଟ ନ୍ୟାସନାଲ୍ ବ୍ୟାଙ୍କ୍‌ର ପ୍ରେସିଡେଣ୍ଟ୍ ମିଷ୍ଟର୍ ବେକର୍ ଜପ୍ପିକୁ ଏତେ ବିଶ୍ୱାସ କରନ୍ତି ଯେ, ବ୍ୟାଙ୍କ୍‌ର କୌଣସି କାମ ତା'ଠାରୁ ଲୁଚାଇ ନ ରଖି, ସବୁ ତା'ରହାରେ କରାନ୍ତି । ମର୍ଫ୍‌ର

ସମସ୍ତଙ୍କ ସଙ୍ଗେ ଘନିଷ୍ଠତା, କିନ୍ତୁ ସେ କାହାକୁ ନାଁ ଧରି ଡାକେ ନାହିଁ—ଏଥାନ୍‌ଙ୍କୁ ଡାକେ ମିଷ୍ଟର୍ ହ'ଲ ବୋଲି; ମାର୍ଗି ୟୁଙ୍ଗ୍ ହାଣ୍ଟ୍‌ଙ୍କୁ ଡାକେ, ମିସେସ୍ ୟୁଙ୍ଗ୍-ହାଣ୍ଟ—ଯଦିଓ ଲୋକେ କୁହାକୋହି ହୁଅନ୍ତି ଯେ, ସେ ମାର୍ଗି ସାଙ୍ଗେ ଲାଗିଛି ।

ଜୟିର ପରିବାର ନାହାନ୍ତି, ବନ୍ଧୁବାନ୍ଧବ ବି କେହି ନାହାନ୍ତି । ସେ ଫିଲିପ୍‌ସ ଭବନରେ ଯୋଡ଼ାଏ ବଖରା ଓ ସ୍ୱତନ୍ତ୍ରକରି ଗୋଟିଏ ଗାଧୁଆ ଘର ଭଡ଼ା ନେଇ ସେଇଥିରେ ଥା'ନ୍ତି ଓ ଫୋର୍‌ମାଷ୍ଟର୍ ହୋଟେଲ୍‌ରେ ଖା'ନ୍ତି ଓ ମଦ ପିଅନ୍ତି । ବ୍ୟାଙ୍କ୍ କାମରେ ତାଙ୍କର ପୂର୍ବ ଅଭିଜ୍ଞତା ଓ ଆଚରଣ, ମିଷ୍ଟର୍ ବେକରଙ୍କୁ ଜଣା ଓ ଯେଉଁ କଂପାନୀ ତାଙ୍କ ପାଇଁ ଜାମିନ୍-ଦାର୍ ହୋଇଛି ତା'କୁ ଜଣା । ସେଥିରେ ଶୁଣିବାକୁ କିଛି ନାହିଁ । କିନ୍ତୁ ଅନ୍ୟନ୍ୟ ଅନ୍ୟମାନଙ୍କ ବିଷୟରେ ଘଟିଥିବା ଘଟଣାମାନ ସେ ଯେମିତି ଭାବରେ ବର୍ଣ୍ଣନା କରନ୍ତି, ତା'କୁ ଶୁଣିଲେ, ମଣିଷ ସନ୍ଦେହ କରିବ ଯେ ଏ ଘଟଣା ସବୁ ଜୟିଙ୍କର ନିଜ ଅଙ୍ଗେ ନିଭାଇଥିବା ଘଟଣା । ତା',ଯଦି ସତ ହୁଏ,ତେବେ ଜୟି ଚୌଦ୍ଦ ଘାଟରେ ପାଣି ପିଇଛନ୍ତି ବୋଲି ମାନିବାକୁ ହେବ । ସେ ଯାହା ହେଉ, କୌଣସି ବିଷୟରେ ବାହାଦୁରି ନେବାକୁ ଇଚ୍ଛା କରୁ ନ ଥିବାରୁ ସମସ୍ତଙ୍କର ତା'ଙ୍କ ପ୍ରତି ସ୍ନେହ ଆଦର ବଢ଼ିଯାଏ । ସେ ସବୁବେଳେ ପରିଷ୍କାର ପରିଚ୍ଛନ୍ନ ; ଆଙ୍ଗୁଠି ନଖଗୁଡ଼ିକ ଖୁବ୍ ପରିଷ୍କାର ରଖିଥାନ୍ତି, ଭଲ ପୋଷାକ ବେଶ୍ ଗୁଣ୍ଟ୍‌ରେ ପିନ୍ଧନ୍ତି, ଦେହର କାମିଜଟିକୁ ଯେମିତି ସଫାସୁତୁରା ରଖିଥାନ୍ତି, ଗୋଡ଼ର ଜୋତା ବି ସେହିପରି ଚକ୍ ଚକ୍ କରୁଥାଏ ।

ଏଥାନ୍ ଓ ଜୟି ଦୁହେଁ ହାଲ୍‌ଟହାଲ୍ ହୋଇ ଏଲମ୍ ଷ୍ଟ୍ରୀଟ୍‌ରେ ଆଗେଇଲେ, ହାଇ ଷ୍ଟ୍ରୀଟ୍ ଆଡ଼କୁ ।

ଜୟି କହିଲେ, "ମୁଁ କେତେ ଦିନ ହେଲା ଭାବୁଛି ଆପଣଙ୍କୁ ପଚାରିବି ବୋଲି । ଆଚ୍ଛା, ଆପଣ, ଆଡ଼ମିରାଲ୍ ହ'ଲଙ୍କର କ'ଣ ହୁଅନ୍ତି ବୋଧହୁଏ ?"

ଏଥାନ୍ କହିଲେ, "ନା, ନା, ବୋଧହୁଏ ଆଡ଼ମିରାଲ୍ ହ୍ୟାଲ୍‌ସିଙ୍କୁ ତୁମେ ଭୁଲରେ ଆଡ଼ମିରାଲ ହ'ଲ ବୋଲି କହୁଛ । ଆମ ବଂଶରେ ଅନେକ କପ୍ତାନ୍ ଥିବାର ମୁଁ ଜାଣେ । କିନ୍ତୁ ଜଣେ କେହି ଆଡ଼ମିରାଲ୍ ହୋଇ ଥିବାର ଶୁଣି ନାହିଁ ।"

"ହଁ, ମୁଁ ଶୁଣିଛି, ଆପଣଙ୍କ ଗୋଟିଏ ବାପା ଥିଲେ ତିମିଣିକାଣ ଜାହାଜର କପ୍ତାନ୍ । ବୋଧହୁଏ ତାଙ୍କୁଇ ମୁଁ ଆଡମିରାଲ୍ ହ୍ୟାଲସିଙ୍କ ସଙ୍ଗେ ଗୋଳେଇ ଘୋଳେଇ ଦେଇ ।"

ଏଥାନ୍ କହିଲେ, "ଆମର ଏ ସହର ପରି ପୁରୁଣା ସହର ସଙ୍ଗେ ବହୁ କିମ୍ବଦନ୍ତୀ ଗୋଳେଇ ଘୋଳେଇ ହୋଇ ଅଛି । ଲୋକେ ତ କହନ୍ତି, ଆମ ପିତୃକୁଳରେ କେହି କେହି ଅତୀତରେ ଜଳଦସ୍ୟୁ ଥିଲେ; ଆଉ, ମୋ ମା'ଙ୍କ ପୂର୍ବ ପୁରୁଷ ମେ-ଫ୍ଲାଓଁ୍ୱାର୍ ଜାହାଜରେ ଆସିଥିଲେ ପିଲଗ୍ରିମ୍ ଫାଦର୍‌ମାନଙ୍କ ଭିତରେ ।"

ଜଏ୍ ଆଶ୍ଚର୍ଯ୍ୟ ହୋଇ କହିଲେ, "ଓଃ ! ପ୍ରସିଦ୍ଧ ପିଲଗ୍ରିମ୍ ଫାଦର୍, ଏଥାନ୍ ଷ୍ଟାଲେନ୍ ! ବାପ୍‌ରେ ! ଆପଣ ତାଙ୍କର ବି ବଂଶଧର !"

ଏଥାନ୍ କହିଲେ, "ହୋଇ ପାରେ । ହୋଇ ପାରେ କାହିଁକି, ହଁ । ଛାଡ଼ ସେ କଥା । ଆଜିର କଥା ଆଜିର ବର୍ଣ୍ଣ୍ୟ । ଆଜି ଦିନଟି କେଡ଼େ ସୁନ୍ଦର ! ଏଥିଠାରୁ ସୁନ୍ଦର ଦିନ ଦେଖିଛ ? ହଁ, ହଁ, ମୋ ପାଖକୁ ଯିବାକୁ ଚାହୁଁଥିଲ ପରା ? କାହିଁକି ?"

"ହଁ, କହୁଛି । ବୋଧହୁଏ ବାରଟାଠାରୁ ତିନିଟା ଯାଏଁ ଆପଣଙ୍କ ଷ୍ଟୋର୍ ବନ୍ଦ ରହିବ । ପ୍ରାୟ ସାଢ଼େ ଏଗାରଟା ସୁଦ୍ଧା ମୋ ପାଇଁ ଦୁଇଟା ସ୍ୟାଣ୍ଡଉଇଚ୍ କରି ଦିଅନ୍ତେ ? ମୁଁ ନିଜେ ଯାଇ ନେଇ ଆସିବି । ହଁ, ତା ସାଙ୍ଗେ ବୋତଲେ ଦୁଧ ବି ଦରକାର ।"

"ବ୍ୟାଙ୍କ୍ କ'ଣ ବନ୍ଦ ହେବ ନାହିଁ ?"

"ବ୍ୟାଙ୍କ୍‌ର ଛୁଟି, କିନ୍ତୁ ମୋର ନୁହେଁ । ବରଂ ଜଏ୍‌କୁ ନିଜ ଚଉକିରେ ବାନ୍ଧି ହୋଇ ହିସାବଖାତାକୁ ଚାହିଁ ରହିବାକୁ ପଡ଼ିବ । ଆଜି ତ ଗୋଟାଏ ପ୍ରଧାନ ସପ୍ତାହର ଶେଷ କର୍ମଦିବସ—ସମସ୍ତେ ଆସିବେ ଚେକ୍ ଭଙ୍ଗାଇବାକୁ—ସେମାନଙ୍କ କୁକୁର ବି ଆସିବେ ଚେକ୍ ଭଙ୍ଗାଇ—ବାକୁ ।

ଏଥାନ୍ କହିଲେ, "ସେ କଥାଟା ମୁଁ ଭାବି ନ ଥିଲି ।"

"ଇଷ୍ଟର୍, ମେମୋରିଏଲ୍ ଡେ, ଜୁଲାଇ ଚାରି ତାରିଖ, ଶ୍ରମିକ ଦିବସ-ସ୍ୱାରି ଆଗରୁ ବ୍ୟାଙ୍କ୍‌ରେ ଭାରି ଭିଡ଼ । ପୁଣି ସପ୍ତାହ ଶେଷରେ ଲମ୍ବା ଛୁଟି

ପଡ଼ିଲେ ବି ଭଲ ହୁଏ । ମୁଁ ଯଦି ବ୍ୟାଙ୍କ୍ ଲୁଟ୍ କରନ୍ତି, ତେବେ ଠିକ୍ ଏଇପରି ସପ୍ତାହ ଶେଷରେ ଲମ୍ବା ଛୁଟି ପୂର୍ବରୁ ଲୁଟି କରନ୍ତି । ସେ ସମୟରେ ମାଲ୍ ଠିକ୍ ସଜଡ଼ାସଜଡ଼ି ହୋଇ ନଥାଏ ବୋଲି ଜମନ୍ତଣ କରୁଥାଏ ।"

"ଜମି ! ତୁମେ କେବେ ବ୍ୟାଙ୍କ୍ ଡକାୟତଙ୍କ ହାବୁଡ଼େ ପଡ଼ିନାହଁ ?"

"ମୁଁ ପଡ଼ିନାହିଁ ଯେ, ମୋର ଜଣେ ବନ୍ଧୁ ଥରେ ନୁହେଁ, ଦ୍ୱ'ଥର ପଡ଼ିଥିଲେ ।"

"ସେ ତାଙ୍କ ଅଭିଜ୍ଞତା ବର୍ଣ୍ଣନା କରି କ'ଣ କହିଥିଲେ ?"

"କହିଲେ, ଦସ୍ୟୁଙ୍କୁ ଦେଖି ସେ ଗୁଣିଆ ହୋଇଗଲେ । ଦସ୍ୟୁଙ୍କର ହୁକୁମ ତାମିଲ୍ କଲେ, ନର୍ବିଗ୍ରହରେ । ଟଙ୍କା ବାକ୍ସରୁ କାଢ଼ି ତଳେ ଥୋଇ ଦେଲେ; ଦସ୍ୟୁମାନଙ୍କର ଚମ୍ପଟ । କହିଲେ, 'ବ୍ୟାଙ୍କ୍ ଟଙ୍କା ପାଇଁ ଯେମିତି ପୂରା ଇନ୍ସ୍ୟୁରାନସ୍ ହୋଇଛି, ମୋ ପାଇଁ ତ ସେମିତି ହୋଇ ନାହିଁ ; ପ୍ରତିବାଦ କରନ୍ତି କଆଁ ?"

ଏଥାନ୍ କଥା ବଦଳାଇ କହିଲେ, "ମୁଁ ଦ୍ୱ'ପହରେ ଷ୍ଟୋର୍ ବନ୍ଦ କଲାବେଳେ ତୁମକୁ ଯାଇ ସ୍ୟାଣ୍ଡ୍ଉଇଚ୍ ଦେଇ ଆସିବ । ମୁଁ ବାଡ଼ି ଦୁଆରେ ଡାକିବ । କଉଲି ସ୍ୟାଣ୍ଡ୍ଉଇଚ୍ ଦରକାର ?"

"ଆପଣ କାହିଁକି କଷ୍ଟରେ ପଡ଼ିବେ, ମିଷ୍ଟର୍ ହ'ଲ ? ମୁଁ ଗଲି ବାଟେ ଖସିଆସିବ । ମୋର ଦରକାର ଦୁଇଟି ସ୍ୟାଣ୍ଡ୍ଉଇଚ୍—ଗୋଟାକରେ ଧୂସରର ଜଙ୍ଘ ମାଉଁସ ଦେବେ, ଆରଟାରେ ଛେନା । ରାଇ ରୋଟିରେ ସ୍ୟାଣ୍ଡଉଇଚ କରିବେ ; ମାଂସ ଓ ଛେନା ସାଙ୍ଗେ କଚ୍ଚା ସବଜି ଓ ଚଟଣୀ ବି ଦେଇଥିବେ । ହଁ ପାରିଲେ, ତା ସାଙ୍ଗକୁ ବୋତଲେ ଦୁଧ ଓ ପଛେ ପିଇବାକୁ ଗୋଟେ କୋକ୍ ଦରକାର ।

"ଆମ ପାଖରେ ଗୋଟାଏ ପ୍ରକାର ବଢ଼ିଆ ମାଂସ କବାବ ଅଛି—ମ୍ୟାରୁଲେଙ୍କ ବିଶେଷତ୍ୱ ।"

"ନାଁ, ଆଉ କିଛି ଦରକାର ନାହିଁ, ଧନ୍ୟବାଦ । ଆଚ୍ଛା ଆପଣଙ୍କ ସେହି ଇଟାଲୀୟ ଭଦ୍ରଲୋକଟି ଚଳୁଛନ୍ତି କେମିତି ?"

"ମୁଁ ଯେତେଦୂର ଜାଣେ ସେ ଖୁବ୍ ଭଲ ଅଛନ୍ତି ।"

"ବାସ୍ତବକ୍, ପିଙ୍ଗଳବର୍ଣ୍ଣ ସେ ଇଟାଲୀୟମାନଙ୍କୁ ମଣିଷ ସ୍ୱଭାବତଃ ସୁଖ ନ ପାଇଲେ କ'ଣ ହେଲା, ଏ ଲୋକଟାକୁ ସାବାସ୍ ଦେବାର କଥା । ଖଣ୍ଡିଏ ଠେଲା ଗାଡ଼ି ଠେଲୁଠେଲୁ ସେ କେତେ ସଂପତ୍ତି କରି ଗଲେଣି, ସତେ ! ଖୁବ୍ ହୁସିଆର୍ ଲୋକ ! ଧୋଇ ଶୁଖେଇ, ଲୁଣ ଜୁଆଇ ସେ କେତେ ଧନ ସାଇତି ରଖିଲେଣି ତାହା କେହି ଜାଣନ୍ତି ନାହିଁ । ତେବେ, ମୋର ସେ କଥା କହିବା ଉଚିତ ନୁହେଁ । ବ୍ୟାଙ୍କ୍‌ବାଲା ଏ ସବୁ ବିଷୟରେ ତୁଣ୍ଡ ନ ଫିଟାଇବାର କଥା ।"

"କାହିଁ, ତୁମେ ତ କିଛି କହିନାହଁ ।"

ଯେଉଁ କୋଣମୁଣ୍ଡେ ଏଲ୍‌ମ୍ ହାଇ ଷ୍ଟ୍ରୀଟ୍‌ରେ ମିଶି ଯାଇଛି, ଏତେ ବେଳକୁ ଦୁହେଁ ସେଇଠି ଆସି ପହଞ୍ଚି ସାରିଥିଲେ । ଯନ୍ତ୍ର-ଚାଳିତ ହେଲା ପରି ଦୁହେଁଯାକ ସେଇଠାରେ ଠିଆ ହୋଇ ଚାହିଁଲେ,ସେଇ ସ୍ଥାନକୁ, ଯେଉଁଠାରେ ପୂର୍ବେ ଥିଲା ପୁରୁଣା ବେ' ହୋଟେଲ । ତା' ଜାଗାରେ ବର୍ତ୍ତମାନ ଜମା ହୋଇଥାଏ କୁଢ଼ କୁଢ଼ ଖଣ୍ଡିଆ ନାଲିଆ ଇଟା ଓ ଚୂନ । ନୂଆ ଉଲ୍‌ଓ୍ୱର୍ଥ ଦୋକାନ କୋଠା ସେଠାରେ ଗଢ଼ା ହେବ ବୋଲି ବେ' ହୋଟେଲ୍ ଭଙ୍ଗା ହେଉଥାଏ । ହଳଦିଆ-ରଙ୍ଗ ବୁଲ୍‌ଡୋଜର ଓ ପ୍ରକାଣ୍ଡ ଏକ କ୍ରେନ୍—ଯାହା କି କାନ୍ଥ ଭାଙ୍ଗିବା ସକାଶେ ବ୍ୟବହୃତ ଲୁହା ପେଣ୍ଡୁକୁ ଚଳାଏ—ଦୁଇଟି ଯାକ ଯନ୍ତ୍ର ତୂନି ହୋଇ ଠିଆ ହୋଇଥାନ୍ତି । ସତେ ଯେମିତି ଏହି ଦୁଇ ଧ୍ୱଂସକାରୀ, ଯନ୍ତ୍ରଦାନବ ନିଜ କାର୍ଯ୍ୟ ପାଇଁ ବଡ଼ ସକାଳଟା ଉପଯୁକ୍ତ ସମୟ ନୁହେ ବୋଲି, ସେହି ଉପଯୁକ୍ତ ସମୟ ଅପେକ୍ଷାରେ ଚାହିଁ ରହିଛନ୍ତି ।

ଜପ୍ପି କହିଲେ, "ଏଇ ଯେଉଁ 'ଘରଭଙ୍ଗା କାମ ଯାକୁ କରିବାକୁ ମୋର ଭାରି ମନ । କ୍ରେନ୍ ଚଳାଇ ଏହି ଇସ୍‌ପାତ ବଲ୍‌ଟାକୁ ନେଇ ଢାଇକିନା କାନ୍ଥରେ ବଜାଇ ଏକାଥରକେ କାନ୍ଥଟା ଚୂନା କରି ଦେଲେ ବଡ଼ ବଢ଼ିଆ ଲାଗିବାର କଥା ।"

ଏଥାନ୍ କହିଲେ, ଫ୍ରାନ୍ସରେ ଏ କାମ ମୁଁ ବହୁତ ଦେଖିଛି ।"

"ହଁ, ହଁ ସମୁଦ୍ରକୂଳ ନୃତ୍ୟସ୍ଥଳୀରେ ତ ମୁଁ ଆପଣଙ୍କ କାମ ଦେଖିଛି !"

ଏଥାନ୍ ସେ କଥା ଛାଡ଼ି ଆରମ୍ଭ କଲେ, "ଆଚ୍ଛା ଯେଉଁ ବ୍ୟାଙ୍କ୍ ଲୁଟି କଥା କହୁଥିଲ, ଦସ୍ୟୁମାନେ ତୁମ ବଂଧୁଙ୍କୁ ଡରାଇ ସବୁ ଟଙ୍କା

ନେଇଗଲେ ବୋଲି, ସେ ଦସ୍ୟୁମାନେ ଧରା ପଡ଼ିଲେ ନା ?" ଏଥାନ୍ ବିଶ୍ୱାସ କରୁଥାନ୍ତି, ଜସ୍ପି ଯେଉଁ ବନ୍ଧୁଙ୍କ କଥା କହୁଥିଲେ ସେ କାଳ୍ପନିକ—ଖୋଦ୍ ଜସ୍ପି ହେଉଛନ୍ତି ସେଇ ବନ୍ଧୁ । ତାଙ୍କ କଥା ଶୁଣି ଯେ କୌଣସି ଲୋକର ଏଇ ବିଶ୍ୱାସ ହେବାର କଥା ।

"ହଁ ନିଶ୍ଚୟ । ପୁଲିସ୍ ମୂଷାଙ୍କୁ ଧଇଲା ପରି ତାଙ୍କୁ ଧରି ଯନ୍ତାରେ ପୁରାଇଦେଲେ । ଭାଗ୍ୟର କଥା, ଦସ୍ୟୁଗୁଡ଼ାକ ସାଧାରଣତଃ ଚଲାକ ନୁହନ୍ତି । ଜସ୍ପି ଖୋଁକାଟା ଯଦି ଖଣ୍ଡେ ବହି ଲେଖନ୍ତା, ବ୍ୟାଙ୍କ୍ କପରି ଲୁଟି କରିବ—ଏ ବିଷୟରେ, ତେବେ ପୁଲିସ୍ ଆଉ କୌଣସି ବ୍ୟାଙ୍କ୍ ଲୁଟେରାଙ୍କୁ ଧରି ପାରନ୍ତେ ନାହିଁ ।"

ଏଥାନ୍ ହସିଲେ, "ବହି ପାଇଁ ବିଷୟବସ୍ତୁ ସଂଗ୍ରହ କରନ୍ତି, କୁଆଡ଼ୁ ?"

"ପାଇପ୍ ବାଟେ ଯେମିତି ପେଟ୍ରୋଲ୍ ପ୍ରଭୃତି ଭସ୍ ଭସ୍ ଚାଲି ଆସେ, ମୋ' ପାଖରେ ସେପରି ସୂତ୍ର ସବୁ ଆସି ପହଞ୍ଚିବାର ଉପାୟ ରହିଛି । ଖବରକାଗଜ ତ ନିୟମିତ ପଢ଼େ; ତା'ବାଦ୍ ମୋର ଜଣେ ସାଙ୍ଗ ଅଛନ୍ତି ଯେ, ପୁଲିସ୍ ବିଭାଗରେ ଅଭିଜ୍ଞତା ଅର୍ଜନ କରିଛନ୍ତି । ଆପଣ ଏ ବିଷୟରେ ମୋ'ର ଭାଷଣ ଶୁଣିବେ ? ଦଶଟଙ୍କିଆ ଭାଷଣଟା ଦେବି ?"

"ନା, ମୋତେ ଦଶ'ଣା ମୂଲ୍ୟର ଭାଷଣଟାଏ ଶୁଣାଅ ।"

ଜସ୍ପି ଆରମ୍ଭ କଲେ, "ଭଦ୍ର ମହିଳା ଓ ଭଦ୍ରମହୋଦୟ ବୃନ୍ଦ ! ଆଜ ସକାଳେ ମୁଁ ଠିଆ ହୋଇଛି—ନାଃ, ଉପକ୍ରମଣିକା ଥାଉ; ଆପଣ ଠିକେ ଠିକେ ଶୁଣନ୍ତୁ । ବ୍ୟାଙ୍କ୍-ଦସ୍ୟୁମାନଙ୍କୁ କପରି ଧରିବାକୁ ହେବ ? ପ୍ରଥମ ସୂତ୍ର—ଦସ୍ୟୁର ପୂର୍ବ ଇତିହାସ ଅନୁସନ୍ଧାନ । ପୂର୍ବେ ଯଦି କୌଣସି ଅଭିଯୋଗରେ ଧରା ପଡ଼ିଛି ତେବେ ଖସି ପାରିବ ନାହିଁ । ଦ୍ୱିତୀୟ—ଦସ୍ୟୁମାନେ ଯଦି ଦଳବଦ୍ଧ ହୋଇ କାମ କରିଥାନ୍ତି, ତେବେ ମାଲ୍ ବାଣ୍ଟିବାରେ ନିଶ୍ଚୟ କଳିକଜିଆ ଲାଗିବ; ତାଙ୍କ ଭିତରୁ ଜଣେ ଶେଷରେ ସବୁ କଥା ମାନିଯାଇ ସମସ୍ତଙ୍କୁ ଧରାଇ ଦେବ । ତୃତୀୟ—ଏଭଳି ଦସ୍ୟୁ ସାଧାରଣତଃ ମାଇକିନିଆଙ୍କ ସଙ୍ଗେ ଲଟପଟ ହୋଇଥାନ୍ତି; ତାଙ୍କରି ଦ୍ୱାରା ଧରା ପଡ଼ନ୍ତି" ଚତୁର୍ଥ—ସୂତ୍ରଟା ତୃତୀୟ ସଙ୍ଗେ . ଯୋଡ଼ ହୋଇଥାଏ—ଟଙ୍କା ହାତରେ ପଡ଼ିଲା ମାତ୍ରେ, ଖୋଲେ ଖର୍ଚ୍ଚର ସୁଅ । ନୂଆ ଢଙ୍ଗରେ କିଏ ଖର୍ଚ୍ଚ କରୁଛନ୍ତି ଜାଣିଲେ, ଦସ୍ୟୁ ଧରା ପଡ଼ନ୍ତି ।

"ଅଧ୍ୟାପକ ମହାଶୟ, ନଗରପଦରେ କପରି ବ୍ୟାଙ୍କ୍ ଲୁଟି କରିବାକୁ ହେବ କହୁଥିଲେ ପରା !"

"ପାଣି ପରି ପରିଷ୍କାର କଥା, ଧରି ପାରିଲେ ନାହିଁ ? ଉପରେ ଯାହା କହିଗଲି ତା'ର ଓଲଟା କାମ କଲେ ହେଲା । ପ୍ରଥମତଃ, ଯଦି ଅନ୍ୟ କୌଣସି ଅପରାଧରେ କେବେ ପୁଲିସ୍ ହାତରେ ପଡିଛ, ତେବେ ବ୍ୟାଙ୍କ୍ ଲୁଟି କରିବାକୁ ଯାଅ ନାହିଁ । ତା'ପରେ—କାହା ସାଙ୍ଗରେ ନ ଯାଇ ଏ କାମ ଏକୁଟିଆ କରିବାକୁ ହେବ ; ଝିଅ ପିଲାଟାକୁ ବି ବିଶ୍ୱାସ କରି ପଦେ କହିବ ନାହିଁ । ଗୃହିଣୀଙ୍କରେ ବ୍ୟାଙ୍କ୍ ଲୁଟି କରିବ ତ, ମାଇକିନିଆଙ୍କୁ ଏକାବେଳକେ ପାସୋର ଦିଅ । ଶେଷରେ, ଲୁଟି କରିଥିବା ଟଙ୍କା ଆଦୌ ଖର୍ଚ୍ଚ ନ କରି ଠାଏ କୋଉଠି ଲୁଚେଇ ରଖ—ପାରିଲେ, ବର୍ଷ ବର୍ଷ ଧରି ଲୁଚାଅ । ତା'ପରେ, ତୁମ ହାତକୁ ସିଧା ରାସ୍ତାରେ କିଛି ପଇସା ଆସିବାର ବାଟ ହେଲେ, ଏ ଟଙ୍କାରୁ କିଛି କିଛି—ଖୁବ୍ ଅଳ୍ପ ଅଳ୍ପ ବାହାର କର ! ଖବରଦାର, ଯେତେ ବିଳମ୍ବରେ ବାହାର କଲେ ବି ଏ ଟଙ୍କା କେବେଁ ଖର୍ଚ୍ଚ କରିବ ନାହିଁ, ସେଆର୍ ଫେଆର୍ କିଣିବାରେ ଖଟାଇବ, ନ ହେଲେ ସରକାରୀ ସଞ୍ଚୟ ଯୋଜନାରେ ଖଟାଇବ ।"

"ଏ ସବୁ ତ ହେଲା । କିନ୍ତୁ ଦସ୍ୟୁ ଯଦି ଲୁଟ୍ କଲାବେଳେ ଚିହ୍ନା ପଡ଼ିଯାଏ ?"

"ସେ ଯଦି ମୁହଁ ଘୋଡ଼ାଇ ରଖେ ଓ ପାଟି ନ ଫିଟାଏ ତେବେ ତା'କୁ କିଏ କେମିତି ଚିହ୍ନଟ କରିବ ? ଘଟଣାସ୍ଥଳରେ ଉପସ୍ଥିତ ଥିବା ସାକ୍ଷୀମାନଙ୍କର ଜବାନ୍‌ବନ୍ଦୀ କେବେ ଖବର କାଗଜରେ ପଢ଼ିଛନ୍ତି କି ? ପଢ଼ିଲେ, ଦେଖିବେ, ସେ ସବୁ ବାଜେ । ମୋ ପୁଲିସ୍‌ବାଲା ସାଙ୍ଗ ମୋତେ କହିଛନ୍ତି, ଚିହ୍ନଟ ପରେଡ୍‌ରେ ତାଙ୍କୁ, ସନ୍ଦେହ ହେଉଥିବା ଲୋକଙ୍କ ସଙ୍ଗେ ଥରେ ଥରେ ସାକ୍ଷୀଙ୍କୁ ପରୀକ୍ଷା କରିବାକୁ, ଠିଆ କରାଇ ଦିଆଯାଏ ଯେ ସାକ୍ଷୀମାନେ ତାଙ୍କୁଇ ଆସାମୀ ବୋଲି ବାରମ୍ବାର ଚିହ୍ନଟ କରି ଦିଅନ୍ତି । ତାଙ୍କ ଭାଗ୍ୟରେ ଏମିତି କେତେବାର ହୋଇଛି । ସାକ୍ଷୀମାନେ ଆଖି ବୁଜି ହଲପ୍ କରି ଦିଅନ୍ତି ଯେ ଇତଲା ହୋଇଥିବା ଅପରାଧ ମୋର ସେଇ ପୁଲିସ୍ ବନ୍ଧୁ ହିଁ କରିଛନ୍ତି—ହଉ ଏତିକିରେ ଥାଉ । ଦଶ ଅଣାକୁ ବୁଢ଼ୀ ଲକ୍ଷଣ ହେଇଗଲା, ଆଜ୍ଞା !"

ଏଥାନ୍ ନଜର ପକେଟ୍ ଦରଣ୍ଡି କହିଲେ, "ତୁମର ଏ ପଇସାଟା ବାକିଆ ରହିବ ।"

ଜପ୍ସି ଉତ୍ତର ଦେଲେ, "ପରୁଆ ନାହିଁ, ମୁଁ ସ୍ୟାଣ୍ଡ୍ଉଇଚର ଦାମରେ ମଜୁରୀ କରି ଦେବ ।"

ଉଭୟେ ହାଇଷ୍ଟ୍ରୀଟ୍ ପାର ହୋଇ ଆର ପାଖେ ସମକୋଣ ହୋଇ ବାହାରିଥିବା କନ୍ଧରେ ପଶିଲେ । ଜପ୍ସି କନ୍ଧର ଗୋଟିଏ ବାଡ଼ ଦୁଆର ବାଟେ 'ପ୍ରଥମ ନ୍ୟାସନେଲ ବ୍ୟାଙ୍କ୍' ଭିତରେ ପଶିଲେ, ଓ ଏଥାନ୍ ଆର-ପାଖେ, କନ୍ଧଦୁଆର ମେଲାଇ ମ୍ୟାରୁଣ୍ଟଙ୍କ 'ଫଳ ଓ ସୌଖୀନ ଖାଦ୍ୟ-ସାମଗ୍ରୀ ପରିପୂର୍ଣ୍ଣ ଷ୍ଟୋର୍' ଭିତରକୁ ଗଲେ । ଗଲାବେଳେ ସେ ଜପ୍ସିଙ୍କୁ ପଚାରିଲେ, "ଘୁଷୁରି ଜଂଘା ମାଉଁସ ଓ ଛେନା ପରା ?"

"ହଁ ରାଇ-ରୋଟି ଭିତରେ, ସବ୍ଜ ଓ ଚଟଣି ସମେତ ।"

ସଂକୀର୍ଣ୍ଣ କନ୍ଧରାସ୍ତାରୁ କ୍ଷୀଣ ଆଲୋକ ଷ୍ଟୋର୍‌ର ଗୋଦାମ ଘରେ ପଡ଼ୁଥାଏ---ଏ ଆଲୋକ ଟିକକ ଝରକାର ମଇଳା ଲୁହା ରେଲିଂ ବାଟେ ଆସି କ୍ଷୀଣତର ହୋଇଥାଏ । ଏଇ ଆଲୁଅରେ ଠିଆ ହୋଇ ଏଥାନ୍ ଗୋଦାମ ଘରକୁ ଚାହିଁଲେ - ତଳୁ ଛାତ ପର୍ଯ୍ୟନ୍ତ ସେଲଫ୍ ସଜା ହୋଇଛି । ସେଲ୍‌ଫ୍‌ମାନଙ୍କର ପ୍ରତି ଥାକରେ, ଫଳ ଶାକସବଜ, ମାଛ, ରାନ୍ଧିବା ପାଇଁ କାଟଛାଣ୍ଟ୍ ହୋଇଥିବା ମାଂସଖଣ୍ଡ ଓ ଛେନାର ଡବା, ପୁଡ଼ା ଓ କାଠ ପେଟୀ ଭରି ରହିଛି । ଅଟା, ଶୁଖିଲା ଶିମ୍ବ ଓ ମଟର ମଞ୍ଜି ବସ୍ତାର ଫୁର୍-କୁଟିଆ ଗନ୍ଧ, କାଗଜ ବାକ୍‌ସରେ ପ୍ୟାକ୍ ହୋଇଥିବା ଡାଲଜାତୀୟ ଶସ୍ୟର କାଳିମିଶା କାଗଜଆ ଗନ୍ଧ, ଛେନା ଓ ମାଂସ କବାବ୍‌ର ଉତ୍କଟ ଆମ୍ବିଲ ବାସ୍‌ନା, ଘୁଷୁରି ମାଂସର ବର୍‌କାଳିଆ ଗନ୍ଧ, ଓ ବାଡଆଡ଼ ଦୁଆର ପାଖେ ମଇଳା ଟିଣରେ ପଡ଼ିଥିବା ବନ୍ଧାକୋବି ଓପର ପତ୍ର, ଶାକ୍‌ସବଜ ଚୋପା ଓ ବଟ୍-ମୁଣ୍ଡିର ପଚା ଦୁର୍ବାସନା ଭିତରେ ସେ ମୂଷାଙ୍କ ଗନ୍ଧ ବାରିବାରେ ଲାଗିଲେ । ମୂଷାଙ୍କ ବଶିଷ୍ଟ ମହୁ ମହୁଆ ଦୁର୍ଗନ୍ଧ ନ ପାଇବାରୁ ସେ ସ୍ଥିର କଲେ, ଦୋକାନର ସଂପତ୍ତି ଭିତରେ ମୂଷା ଅନଧିକାର ପ୍ରବେଶ କରି ନାହାନ୍ତି । ଆଶ୍ୱସ୍ତ ହୋଇ ସେ ପୁଣି କନ୍ଧଦୁଆରଟା ମେଲାଇ ମଇଳା ଟିଣ-ମାନଙ୍କର ମୁହଁ ବନ୍ଦ କରି ସେଗୁଡ଼ାକୁ କନ୍ଧକୁ ଗଡ଼ାଇ ଦେଲେ । ଗୋଟାଏ ଧଳା ବିରାଡ଼ି ଏଇ ଅବସରରେ ଗୋଦାମ ଭିତରେ ପଶିବାକୁ ଉଦ୍ୟମ କରିଥିଲା ; ତା'କୁ ଘଉଡ଼ି ଦେଲେ ।

ବଗଡ଼ଙ୍କୁ ସେ ଶୁଣାଇ ଦେଲେ, "ନା, ଭିତରେ ପଶିବା ଚଳିବ ନାହିଁ । ତୁମ ବଗଡ଼ମାନଙ୍କର ଉଚିତ ପ୍ରାପ୍ୟ, ସବୁ ପ୍ରକାର ମୂଷା ; କିନ୍ତୁ ଚୋ'ର ମନ ମାଂସ କବାବ୍ ରେକେଟିକୁ ! ଶୁଭୁଛି ନା ବେ, ଘଗ୍ । ବଗଡ଼ଟି ବସି ତା' ଗୋଡ଼ର ନାଲିଆ ଚଲପାକୁ ଗୃହୁଁଥିଲା, ଦ୍ୱିତୀୟ ଥର 'ଘଗ୍' ଶୁଣି ସେ ଲଙ୍ଗୁଡ଼ ଟେକି ଧାଇଁ ଗଲା, ଓ ବ୍ୟାଙ୍କ ପଛଆଡ଼େ ଥିବା କାଠବାଡ଼ ଉପରକୁ ଗମ୍ଭୀର ଗମ୍ଭୀର ଉଠିଗଲା । ଏଥାନ୍ ବଡ଼ ପାଟି କରି କହିଲେ, "ହଁ, ଏ 'ଘଗ୍' ଶବ୍ଦରେ ମନ୍ତ୍ରଶକ୍ତି ଅଛି ନିଶ୍ଚୟ" । ସେ ଗୋଦାମ ଘରକୁ ଫେରିଲେ ଓ ଦୁଆର ବନ୍ଦ କରିଦେଲେ ।

ତା' ପରେ ଏଥାନ୍ ଖଜେ କଲେ, ଗୋଦାମର ମଇଳା ଚଟାଣ ପାର ହୋଇ, ଦୋକାନର ଝୁଲା ଦୁଆର ଆଡ଼କୁ । ଯାଉ ଯାଉ କାନରେ ବାଜିଲା ପାଇଖାନା ଘର ପାଇପ୍ ରୁ ପାଣି ଝରୁଥିବା ସିର୍‌ସିର୍ ଶବ୍ଦ । ପାଇଖାନାଘରର ପ୍ଲାଇଉଡ୍ ଦୁଆରଟା ଫିଟାଇ ସେ ଭିତରେ ପଶି ଲାଇଟ୍ ସୁଇଚ୍ ଟିପି ଦେଲେ ଓ ପାଇଖାନାରେ ପାଣି ଛାଡ଼ିଦେଲେ । ତା'ପରେ ଖୋଲିଲେ ଷ୍ଟୋର୍‌ର ଓସାରିଆ ଦୁଆର—ଉପରେ ଥାଏ ଲୁହା ତାର ଘେରା କାଚର ଗ୍ରେଟ-ଜଳା । ଦୁଆରକୁ ପୂରା ଖୋଲିଦେଇ କାଠ-ଠେସଟାକୁ ଲଗାଇଦେଲେ ।

ସାମନାର ବଡ଼ ବଡ଼ ଝରକାମାନଙ୍କରେ ଟଙ୍ଗା ହୋଇଥିବା ପରଦାଗୁଡ଼ିକ ଯୋଗୁଁ ଷ୍ଟୋର୍ ଭିତରଟା ସାବଜା ଦିଶୁଥାଏ । ଏଠି ବି ଚଳୁ ଛାତପାଏଁ ଥାକ ଥାକ ହୋଇ ଖାଦ୍ୟଦ୍ରବ୍ୟ ରକ୍ଷା ହୋଇଥାଏ । କିନ୍ତୁ ଏ ଥାକଗୁଡ଼ିକ ସଫା ସୁଭୁରା । ଡବା ଓ କାଚ ଭିତରେ ରଖା ହୋଇଥିବା ଖାଦ୍ୟଦ୍ରବ୍ୟ ଚକ୍‌ଚକ୍ କରୁଥାଏ—ପେଟପାଇଁ ଖାଦ୍ୟର ଲୋଭମାୟ ସଂସ୍କାର । ଗୋଟାଏ ପାଖକୁ ଥାଏ,କାରବାର ଟେବୁଲ୍, ତା' ଉପରେ ହିସାବ ଖାତା; ପାଖରେ ଜିନିସ ପ୍ୟାକ୍ କରିବାକୁ ବ୍ୟାଗ୍ ଓ ଦଉଡ଼ି ; ଆଉ ଟିକିଏ ଦୂରରେ ଥାଏ ନିଷ୍କଳଙ୍କ ଇସ୍ପାତରେ ତିଆରି ଶୀତଳ-ଭଣ୍ଡାର; ତା ଧାରରେ ଧଳା ଇନାମେଲ୍ ରଙ୍ଗ ଦିଆ—ଭଣ୍ଡାର ଭିତରର ଇଲେକ୍‌ଟ୍ରିକ୍ ଯନ୍ତ୍ର ସିଁ, ସିଁ, ଶବ୍ଦ କରୁଥାଏ । ଏଥାନ୍ ଗୋଟିଏ ସୁଇଚ୍ ଟିପି ଦେଲେ, ଥଣ୍ଡା-ବାକ୍ସ ଭିତରେ କାକରରେ ରଖା ହୋଇଥିବା ମାଂସଖଣ୍ଡ, ଛେନା, କବାବ୍, ଚପ୍, କଟ୍‌ଲେଟ୍ ଓ ମାଛ ସବୁଜ ନିଅନ୍ ଆଲୁଅରେ ଭାରି ସୁନ୍ଦର ଦିଶିଲା ।

ଷ୍ଟୋର୍‌ର ଗ୍ଭତରେ ଝୁଲୁଥାଏ ଗୋଟିଏ ବଡ ଲାଇଟ୍; ତଳେ ଖଞ୍ଜା ହୋଇଥିବା କାଚରେ ପ୍ରତିବମ୍ବିତ ହୋଇ ସେଇ ଗୋଟିକ ଲାଇଟ୍ ସମଗ୍ର ଷ୍ଟୋର୍‌ଟିକୁ ବେଶ୍ ଆଲୋକିତ କରୁଥାଏ । ବଡ଼ ବଡ଼ ଗିର୍ଜାରେ ଥିବା ଲାଇଟ୍, ବିଶେଷ କରି ଫ୍ରାନ୍‌ସର ଗ୍ୟର୍ଟେ କ୍ୟାଥେଡ୍ରାଲ୍‌ର ଆଲୁଅ ପରି, ଏଥାନ୍‌ଙ୍କୁ ସେ ଆଲୁଅଟା ଦିଶିଲା । ଏଥାନ୍ ଏଇ ଆଲୋକରେ ଏପରି ବିଭୋର ହୋଇଗଲେ ଯେ ଷ୍ଟୋର୍‌ଟି ତାଙ୍କୁ ଦିଶିଲା ଗୋଟିଏ ଗିର୍ଜା ପରି—ଉପରକୁ ଓପର ସଜା ହୋଇ ରହିଥିବା ବିଲାତିବାଇଗଣ ଡବାଗୁଡ଼ିକ ହେଲେ ଗିର୍ଜାର ବାଦ୍ୟଯନ୍ତ୍ର; ଠା'ଠା' ହୋଇ ଥୁଆ ହୋଇଥିବା ସୋରିଷ ଓ ଅଲିଭ୍ ଥାକଗୁଡ଼ିକ ଦିଶିଲେ, ଗିର୍ଜାରେ ସଜ୍ଜିତ କ୍ଷୁଦ୍ର ଉପାସନା-ପୀଠ ପରି; ସାର୍ଡିନ୍ ମାଛର ଅଣ୍ଡାକାର ଡବାଗୁଡ଼ିକ ଗିର୍ଜା ଭିତରେ ଥିବା ପ୍ରଖ୍ୟାତ ମହାପୁରୁଷଙ୍କ କବର-ସ୍ତମ୍ଭର ସ୍ଥଳାଭିଷିକ୍ତ ହେଲା ପରି ଦିଶିଲେ ।

ଏଥାନ୍ ଧର୍ମଯାଜକଙ୍କ ପରି ଆନୁନାସିକ ସ୍ୱରରେ ଉପାସନା ଆରମ୍ଭ କଲେ—

"ଏକ ଓ ବହୁ—ଏକରେ ବହୁ ଓ ବହୁତ୍ୱ ଭିତରେ ଏକ । ବହୁତ୍ୱର ଆଡ଼ମ୍ବର ଭିତରେ 'ଏକ' ହିଁ ପ୍ରଧାନ ଓ ଏକମାତ୍ର ଉପାସ୍ୟ ବସ୍ତୁ – ତାହାହିଁ ଜଗତ୍‌ରେ ଏକମାତ୍ର ସତ୍ୟ—ସ୍ୱସ୍ତି, ସ୍ୱ – ସ୍ତି ।" ଏ ବ୍ୟାହୃତି ପରେ ତାଙ୍କୁ ଜଣାଗଲା, ସତେ ଯେପରି ତାଙ୍କ ପତ୍ନୀ ଟିପ୍‌ପଣୀ କରୁଛନ୍ତି, 'ନିରର୍ଥକ କଥା—ପୁଣି ଏଭଳି ମନ୍ତବ୍ୟ ଦେବାଦ୍ୱାରା ହୁଏତ କାହାର ମନରେ କଷ୍ଟ ହୋଇପାରେ । ମଣିଷ ମନରେ କଷ୍ଟ ହେଲା ପରି କଥା କହିବା ଅନୁଚିତ ।'

ଖାଦ୍ୟଦ୍ରବ୍ୟର ଗୋଟିଏ ଷ୍ଟୋରରେ—ଇଟାଲୀୟ ମ୍ୟାରୁଲୋଙ୍କ ଷ୍ଟୋରରେ—ଯେ ସାମାନ୍ୟ ଗୁମାସ୍ତା ମାତ୍ର । ଘରେ ଭାର୍ଯା ଓ ଅତି ଆଦରର ପାତ୍ର, ଦୁଇଟି ସନ୍ତାନ । ଏକୁଟିଆ ହୋଇ ରହିବେ କେତେବେଳେ ? ନିରୋଳାରେ ଟିକଏ ସମୟ କଟାଇବାକୁ ଅବସର କାହିଁ ? ଦିନ ଯାକ ଦୋକାନରେ ଗ୍ରାହକ ଲାଗିଛନ୍ତି ; ସଂଧ୍ୟାରେ ଘରକୁ ଗଲେ ଭାର୍ଯା ଓ ପିଲାଙ୍କ ଗହଳି; ରାତିରେ ଭାର୍ଯା—ପୁଣି, ରାତିପାଇଲେ, ଗ୍ରାହକ; ସଂଧ୍ୟାକୁ ଭାର୍ଯା ଓ ଛୁଆ ଦି'ଟା । ଏଥାନ୍ ଭାବୁଭାବୁ ବଡ଼ ପାଟିରେ କହି ଉଠିଲେ, "ଗାଧୁଆ

ଘର ନିର୍ଜ୍ଜନରେ ରହିବାର ଏକମାତ୍ର ଆଶ୍ରମ ! ତହିଁର ନିର୍ଜନତା ଉପଭୋଗ କରିବାର ପ୍ରକୃଷ୍ଟ ମୁହୂର୍ତ୍ତ ପୁଣି ପାଇଖାନାରେ ପାଣି ଗ୍ଲୁଡ଼ ଦେବାର ପୂର୍ବରୁ ମଇଳା, ଫୁତୁକୁଟିଆ ଗନ୍ଧ ଭିତରେ ନିର୍ଜନତାର ଉପଭୋଗ୍ୟ ଆମୋଦ— ମଳନତାର ପରିବେଶରେ ମନର ନିର୍ମଳତା ମେରିଙ୍କ ଅନୁଯୋଗ ମନେ ପକାଇ ସେ କହିଲେ, "ବୁଢ଼ା ଆଙ୍ଗୁଠିରୁ ମକରନ୍ଦ ଝରୁଥିବା ଠାକୁରାଣୀ ! ପାଇଖାନାର ନିର୍ମଳ ଆନନ୍ଦ ଉପଭୋଗ କରୁଥିବା ବେଳେ ଯାହା କହିଲେ ବି କୌଣସି ଲୋକର ମନକୁ କଷ୍ଟ ଦେଇ ପକାଇବି, କହ । ଏଠାରେ ଆଉ କେହି ନାହାନ୍ତି କ କାହାର ମନ, ପାଖରେ ନାହିଁ । ଏଠାରେ ମାତ୍ର ମୁଁ, 'ବନ୍ଧୁ' ଭିତରେ ମୋର ଏକତ୍ୱକୁ ବଜାୟ ରଖି ରହିଛି । ଠାକୁରଙ୍କ ଅଭିଶାପର ପାତ୍ର, ଏହି ଦାଣ୍ଡ ଦୁଆରକୁ ଯାଇ ଖୋଲିବା ଯାଏଁ ମୋତେ ଘାଣ୍ଟିବାକୁ ଆଉ କେହି ନାହିଁ ।"

ଟେବୁଲ୍‌ରେ ହିସାବଖାତା ଯେଉଁଠି ରହିଥିଲା ତା'ର ପଛପଟେ, ଟେବୁଲ ତଳେ ଥିବା ଗୋଟିଏ ଡ୍ରଅର୍‌ରୁ ସେ ଖଣ୍ଡିଏ ସଫା ଢିଲା ଆଚ୍ଛାଦନୀ ବାହାର କଲେ ଓ ତା'କୁ ମେଲେଇ ଦ୍ୱି' ପାଖର ଫିତା ଦ୍ୱି'ଟା ସଳଖିଲେ; ଆଚ୍ଛାଦନୀଟି ନିଜର ସରୁ ଅଣ୍ଟାରେ ବେଢ଼େଇ ଦେଇ ଫିତାକୁ ଅଣ୍ଟାରେ ଦୁଇବେଢ଼ ଗୁଡ଼ାଇ, ପଛପଟକୁ ଦୁଇଟି ଯାକ ହାତ ନେଇ ଫିତାରେ ଗୋଟିଏ ଗଣ୍ଠି ଦେଲେ ।

ଆଚ୍ଛାଦନୀଟି ଲମ୍ବା, ନଳଗୋଡ଼ ଦୁଇଟିର ଅଧାଯାଏଁ ଲମ୍ବିଥାଏ । ଏଥାନ୍ ଡାହାଣ ହାତକୁ ଓପରକୁ ଟେକିଲେ, ପାପୁଲିକୁ ଓପରକୁ କରି କଲ୍ୟାଣ କଲା ପରି ମୁଦ୍ରା ଦେଖାଇ, ଭାଷଣ ଦେଲେ, "ଶୁଣ ସମସ୍ତେ ! ପିଅର ଫଳ, ଆଙ୍ଗୁର, ଚଟଣି, ସମସ୍ତେ ଶୁଣ—ସିନ୍ଦୂର ଫାଟିବା ସାଙ୍ଗେ ସାଙ୍ଗେ, ଦେଶର ମୁରବି ଲୋକେ, ପ୍ରଧାନ ପୁରୋହିତମାନେ ଓ ଶାସ୍ତ୍ରଜ୍ଞ ପଣ୍ଡିତମାନେ ଏକାଠି ହୋଇ ପ୍ରଭୁଙ୍କୁ ସେମାନଙ୍କ ସଭାରେ ନେଇ ବସାଇଲେ— ମନେରଖ, ସିନ୍ଦୂର ଫାଟିବା ସାଙ୍ଗେ ସାଙ୍ଗେ ବେହିସାପୋ ଖୁବ୍ ବେଳାବେଳି କାମ ଆରମ୍ଭ କରିଦେଲେ, ନାଇଁ କ'ଣ ? ମୁହୂର୍ତ୍ତେ ବି ସମୟ ନଷ୍ଟ କରିବାକୁ ନାଇଁ । ତା' ପରେ ? ତା'ପରେ କ'ଣ ହେଲା ଶୁଣ । ଏବଂ ଦିନ ଛ' ଘଣ୍ଟା ଅତିକ୍ରାନ୍ତ ହୁଅନ୍ତେ—ମାନେ, ବୋଧହୁଏ ବା'ର ବଜେ—ସମଗ୍ର ପୃଥିବୀରେ ଅନ୍ଧାର ଘୋଟିଗଲା, ଦିନର ନଅଘଣ୍ଟା ପର୍ଯ୍ୟନ୍ତ; ଏବଂ ସୂର୍ଯ୍ୟ

ଅନ୍ଧାରରେ ଘୋଡ଼େଇ ହୋଇଗଲେ । ଏକଥା ମନେ ରଖିଛ କେମିତି ଜାଣ ? ବାପ୍‌ରେ ! ଆମ ପ୍ରଭୁଙ୍କୁ ପ୍ରାଣ ଛାଡ଼ିବା ସକାଶ କେତେଗୁଡ଼ାଏ ସମୟ ଲାଗିଲା—ଲମ୍ବା ତିନିଘଣ୍ଟା—କି ଭୀଷଣ ଲମ୍ବା ସମୟ !" ଏଥାନ୍ ହାତକୁ ତଳକୁ ଖସାଇଲେ ଓ ବସ୍ତୁପୂରରେ, ଭର୍ତ୍ତି ହୋଇଥିବା ଥାକମାନଙ୍କ ଉପରେ ଆଖି ବୁଲାଇଲେ—କେଜାଣି ବା ତା'ର ଭିତରୁ କେହି ତାଙ୍କୁ କଣ କହିବ ବୋଲି ଆଶଂକା କରି । ତା'ପରେ ସେ ନିଜ ସ୍ତ୍ରୀଙ୍କୁ ମନେ ପକାଇ କହିଲେ, "କାଲେ ମେରି ! ମୋ ପୂରମିଠା ! ଏତେବେଳେ ତ ତୁ କଣ କହୁନାହୁଁ ? ତୁ ବୋଧହୁଏ ଜେରୁଜେଲମ୍‌ର 'କନ୍ୟା' ମାନଙ୍କ ଭିତରୁ ଜଣେ ? ମନେ ଅଛି ? ପ୍ରଭୁ କହିଥିଲେ, 'ମୋ ପାଇଁ କାନ୍ଦ ନାହିଁ । କାନ୍ଦ ନିଜପାଇଁ, କାନ୍ଦ ନିଜର ପିଲାପିଲିଙ୍କ ପାଇଁ । କାହିଁକି ନା, ଗୋଟିଏ ସୁସ୍ଥ ଗଜା ଗଛକୁ ଯଦି ସେମାନେ ଯୁ। କରି ପାରୁଛନ୍ତି, ପୋକଖିଆ ଶୁଖିଲା ଶୁଖିଲା ଗଛକୁ କ କରିବେ କ'ଣ ?' ଏକଥା ମନେ ପଡ଼ିଲେ ମୋ ମନ ଆଜ ବି ଭାଙ୍ଗି ପଡ଼ୁଛି । ଡେବୋରା ପିଇସୀ ମୋତେ ପିଲାଦିନେ ବାଇବଲ୍ ପଢ଼ାଇଲା ବେଳେ ଯେତେ ଫଳ ହେବ ବୋଲି ଆଶା କରିଥିଲେ ତହିଁରୁ ବେଶି ଫଳ ଫଳିଥିଲା ପରି ମୋତେ ଲାଗୁଛି । ଯାହା ହେଉ, ଅଦ୍ୟାପି ତ ଦିନର ଛ' ଘଣ୍ଟା ହୋଇ ନାହିଁ—ବାକି ଅଛି ।"

ସେ ବଡ଼ ଝରକାମାନଙ୍କର ସାବଜା ପରଦା ସବୁ ଆଡ଼େଇ ଦେଇ କହିଲେ, "ସ୍ୱାଗତ, ଆଲୋକ !" ତା'ପରେ, ସାମନା ପଟ ଦୁଆର ସବୁ ଖୋଲୁ ଖୋଲୁ କହିଲେ, "ଆସ, ସଂସାରଯାକ !" ଲୁହାବାଡ଼ ଥିବା ଦୁଆର ସବୁ ମେଲାଇ ଦେଇ ସେ ଛିଟ୍‌କିଣି ଲଗାଇ ଦେଲେ । ସକାଳର କଅଁଳିଆ ଖରା ସଡ଼କ ଉପରେ ବିଞ୍ଚି ହୋଇଗଲା ; ହେବାର କଥା—ହାଇଷ୍ଟ୍ରୀଟ୍ ଠିକ୍ ଯେଉଁଠି ଉପସାଗର ଭିତରକୁ ପଶି ଯାଇଛି, ଏପ୍ରିଲ୍ ମାସରେ ସୂର୍ଯ୍ୟ ଠିକ୍ ସେଇଠି ଉଦିତ ହୁଅନ୍ତି । ଏଥାନ୍ ଦୁଆର ଖୋଲି ସାରି, ଦୋକାନ ସାମନା ବାଟ ଓଳାଇବା ନିମନ୍ତେ ଝାଡ଼ୁଣି ଖଣ୍ଡେ ପାଇଁ ପୁଣି ଗାଧୁଆ ଘର ଭିତରକୁ ଗଲେ ।

ଦିନଟା, କର୍ମଜଞ୍ଜାଳପୂର୍ଣ୍ଣ ଲମ୍ବା ଦିନ, ପ୍ରକୃତରେ ଗୋଟାଏ ନୁହେଁ, ଅନେକ ଗୁଡ଼ାଏ ଦିନର ସମଷ୍ଟି । ଦି'ପହର ଯାଏଁ ବଢ଼ି ବଢ଼ି ଓ ତା'ପରେ ଓସରି ଓସରି କ୍ଷୀଣ ହୋଇ ହୋଇ ଯେ ଦିନ ବଦଳୁ ଥାଏ ଖାଲି

ସେତିକି ନୁହେଁ; ଘଣ୍ଟାକୁ ଘଣ୍ଟା ଦିନର ରୂପ, ଢଙ୍ଗ, ପ୍ରକୃତି ଓ ସ୍ୱଭାବ ବଦଳୁଥାଏ । ପୁଣି ଋତୁ—ଶୀତ ଓ ତାପର, ନିଶ୍ଚଳତା ଓ ପବନର, ଗନ୍ଧ ଓ ସ୍ୱାଦର, ତୃଣ ଓ ତୁଷାରର, ପତ୍ର ପୁଷ୍ପର ଆଭରଣ ଓ ନିରାଭରଣତାର ସହସ୍ର ପରିବର୍ତ୍ତନ ଦିନର ରୂପ ଓ ପ୍ରକୃତିରେ ଭରଣି ପରି ଭରି ହୋଇ ବିଭିନ୍ନତା ଭିତରେ ବିଭିନ୍ନତା ସୃଷ୍ଟି କରୁଥାଏ । ଦିନର ଏଇ ହରଘଡ଼ି ପରିବର୍ତ୍ତନ ପ୍ରଭାବରେ ପୁଣି ପ୍ରଭାବିତ ହୁଅନ୍ତି ତା'ର ପ୍ରଜାମାନେ – କୀଟ ପତଙ୍ଗ, ପକ୍ଷୀ, ବିରାଡ଼ି, କୁକୁର, ପ୍ରଜାପତି ଓ ମଣିଷ ବି ।

ଏଥାନ୍ ଫ୍ରାଙ୍କଲେନ୍ ହ'ଲେ ଧୀର, ସ୍ମିତ, ଏକାନ୍ତରେ ଉପ-ଭୋଗ୍ୟ ଦିନ ଏତେବେଳକୁ ସରି ଯାଇଥାଏ । ଯେଉଁ ଲୋକ ଖାଦ୍ୟସାମଗ୍ରୀର ଡବାମାନଙ୍କୁ ଧର୍ମୋପଦେଶ ଦେଉଥିଲା, ସେହି ଐକାନ୍ତିକ ସନ୍ତୁଷ୍ଟ ଲୋକ ବା ନିଜ ନିର୍ବୋଧତାରେ ଆତ୍ମସନ୍ତୋଷ ଅନୁଭବ କରୁଥିବା ଲୋକର ସତ୍ତା ଆଜି ନ ଥାଏ, ତାକୁ ଧରି ସଡ଼କ କଡ଼ର ଅଳିଆ ଓଳାଉଥିବା ଲୋକଠାରେ ଏଥାନ୍, ସିଗାରେଟ୍ ଠୁଣ୍ଟି, ଲଜେଞ୍ଜ ପୁଡ଼ାର କାଗଜ, ଫୁଲଧରୁଥିବା ଗଛର ପାଖୁଡ଼ା ଓ ରାସ୍ତା ଉପରର ଧୂଳି ଓଳାଇ ଓଳାଇ ଅଳିଆ ସବୁ ନେଇ ନର୍ଦ୍ଦମା ପାଖକୁ ଆଉଜାଇ ଦେଲେ ; ମ୍ୟୁନିସିପାଲିଟିବାଲା ତା' ଧଳା ଟ୍ରକ୍ ଧରି ଆସିଲେ ମଇଳା ଉଠାଇ ନେବ ।

ମିଷ୍ଟର୍ ବେକର୍, ମ୍ୟାପଲ୍ ଷ୍ଟ୍ରୀଟ୍‌ରେ ଥିବା ତାଙ୍କ ଘରୁ ମନ୍ଥର ଗତିରେ ଚାଲି ଚାଲି ଫାର୍ଷ୍ଟ ନ୍ୟାସନାଲ ବ୍ୟାଙ୍କ୍‌ର ନାଲି ଇଟା-ପ୍ରାସାଦକୁ ଆସିଲେ । ତାଙ୍କର ପଦକ୍ଷେପ ସବୁବେଳେ ଯେ ସମାନ ହେଉ ନ ଥାଏ ତା'ର କାରଣ, ବାଟରେ ମାଛିକୁ ବି ମ' ନ କରି ନିରୀହ ଭାବରେ ଚାଲିବା ତାଙ୍କର ପିଲାଦିନୁଁ ଅଭ୍ୟାସ ।

ତାଙ୍କୁ ଦେଖି ଏଥାନ୍, କହିଲେ, "ନମସ୍କାର, ମିଷ୍ଟର, ବେକର୍", ଓ ମିଷ୍ଟର୍ ବେକର୍‌ଙ୍କ ସଫା ସର୍ଜ ପ୍ୟାଣ୍ଟ୍‌ରେ ଧୂଳି ପଡ଼ିବା ଆଶଂକାରେ, ଝାଡ଼ୁଣି ଅଟକି ଦେଲେ ।

"ନମସ୍କାର, ଏଥାନ୍, ସକାଳଟା ବଡ଼ ବଢ଼ିଆ ହୋଇଛି ।"

ଏଥାନ୍ କହିଲେ,"ଆଜ୍ଞା, ବସନ୍ତ ଆସିଗଲା । ମିଷ୍ଟର୍ ବେକର୍, ପାଣିପାଗବାଲାଙ୍କ ଭବିଷ୍ୟତ୍ ବାଣୀ ଏଥର ବି ଫଳିଲା ।"

ମିଷ୍ଟର୍ ବେକର୍ ଠିଆ ହେଲେ, କହିଲେ, "ହଁ, ସେ କଥା ମାନିବାକୁ ହେବ । ଆରେ, ଏଥାନ୍ ! ମୁଁ ତ ତୁମ ସଙ୍ଗେ କଥାବାର୍ତ୍ତା ହେବି ବୋଲି କେତେ ଦିନ ହେଲା ବସିଛି । ଆଚ୍ଛା, ତୁମ ସ୍ତ୍ରୀ ତାଙ୍କ ଭାଇଙ୍କ ଉଇଲ୍‌ରେ ପଚାଶ ହଜାରରୁ କିଛି ବେଶି ପାଇଲେ ସବୁ ! ନା, କଣ ?

"ହଁ, ଟିକସ୍ ଫିକସ୍ ଯାଇ ବତିଶ ହଜାର ପାଞ୍ଚଶ ।"

"ଆଚ୍ଛା, ଏତେ ଗୁଡ଼ାଏ ଟଙ୍କା ଖାଲି ବ୍ୟାଙ୍କ୍‌ରେ ପଡ଼ି ରହିଛି କାହିଁକି ? ଯାହାକୁ କୌଣସି ବେପାରରେ ଖଟାଇବା ଦରକାର । ଏ ବିଷୟରେ ଆଲୋଚନା କରିବି ତୁମ ସଙ୍ଗେ । ତୁମର ଏ ଟଙ୍କା ପଡ଼ିଆ ନ ହୋଇ, କାମରେ ଖଟିବା ଦରକାର ।"

"ବତିଶ ହଜାର ପାଞ୍ଚଶରେ କ'ଣ ଗୋଟାଏ ବା ହୋଇ ପାରିବ, ଆଜ୍ଞା ! ଏତକ, ଅଭାବ ଅସୁବିଧା ବେଳକୁ ପଡ଼ିଥାଉ ।"

"ଏଥାନ୍, ଟଙ୍କା ପଡ଼ିଆ ହୋଇ ପଡ଼ିବା ମୋତେ ଅଡୁଆ ଲାଗେ ।"

"ତେବେ, ପ୍ରୟୋଜନ ଅପେକ୍ଷାରେ, ଖାଲି ଠିଆ ହୋଇ ଗୃହିଁ ରହିବା ତ ପୁଣି ଗୋଟାଏ କାମ - ଏ ଟଙ୍କା ସେଇଆ କରୁଛି ।"

ବ୍ୟାଙ୍କର୍‌ଙ୍କ ସ୍ୱର ନିରସ ହୋଇ ଗଲା । "ମୁଁ ଏକଥାରୁ କିଛି ବୁଝୁ ନାହିଁ ।" କିନ୍ତୁ ତାଙ୍କ କହିବା ଢଙ୍ଗରୁ ବେଶ୍ ଜଣା ପଡ଼ିଲା, ଏଥାନ୍ ଯେଉଁ କବିଙ୍କ ଉକ୍ତିରୁ 'ଠିଆ ହୋଇ, ଗୃହିଁ ରହିବା' କଥାଟା ଉଦ୍ଧାର କରିଥିଲେ, ମିଷ୍ଟର୍ ବେକର୍ ତାହା ଠଉରେଇ ଥିଲେ ଓ ଏକଥା ମୁର୍ଖାଣ୍ଡି କଥା ବୋଲି ବୁଝୁଥିଲେ । ମିଷ୍ଟର୍ ବେକର୍‌ଙ୍କ ନିରସ ସ୍ୱରରେ ଏଥାନ୍‌ଙ୍କ ମନରେ ତିକ୍ତତା ସୃଷ୍ଟି ହେଲା ଓ ଏହି ତିକ୍ତତା ଜନ୍ମ କଲା ଗୋଟାଏ ମିଛ ।

ଖୁବ୍ ଆସ୍ତେ ଆସ୍ତେ ଗୁଞ୍ଜୁଣିଟା ରାସ୍ତା ଉପରେ ଥରେ ଚଳାଇଦେଇ ଏଥାନ୍ କହିଲେ, "ଆଜ୍ଞା, କଥାଟା ଆପଣଙ୍କୁ ପରିଷ୍କାର କରି କହିଦିଏଁ । ଏ ଟଙ୍କାଟି ମେରିର । ମୋ'ର ଯଦି କିଛି ଭଲ ମନ୍ଦ ଘଟେ, ତେବେ ଏଇଥିରେ ସେ କିଛି ଦିନ ଚଳିପିବ ବୋଲି ଏ ଟଙ୍କାଟା ରହିଛି ।"

"ତେବେ ତ ଏଥିରୁ କିଛି ଖଟାଇ ତୁମେ ତୁମର ଜୀବନବୀମା କରିଦେବାର କଥା ।"

"ଆଜ୍ଞା, ଏ ଟଙ୍କାଟା ସମୁଦାୟ ସ୍ଥାୟୀଭାବରେ ମେରିର ତ ହୋଇ ପାରିବ ନାହିଁ । ଏଇଟା ମେରିର ଭାଇଙ୍କ ସମ୍ପତ୍ତି । ତାଙ୍କ ମା' ଅଦ୍ୟାପି ବଞ୍ଚିଛନ୍ତି । ଆହୁରି ଅନେକ ବର୍ଷ ବି ବଞ୍ଚିପାରନ୍ତି ।"

ମିଷ୍ଟର୍ ବେକର୍ କହିଲେ, "ହଁ, ବୁଝୁଛି ; ବୁଢ଼ା ବୁଢ଼ୀ ତ ମଣିଷ ଉପରେ ବୋଝ ହୋଇ ରହନ୍ତି ।"

"ପୁଣି, ଟଙ୍କାଟା ବି ଜାବୁଡ଼ି ଧରି ପାରନ୍ତି"— ଏ ମିଛ ପଦକ କହିଲା ବେଳେ ଏଥାନ୍ ମିଷ୍ଟର୍ ବେକର୍ଙ୍କ ମୁହଁକୁ କଡ଼େଇ କରି ଗୁହିଁ ଦେଖିଲେ, ମିଷ୍ଟର୍ ବେକର୍ଙ୍କ କାମିଜ୍ କଲର୍ ଉପରେ, ମୁହଁକୁ ନାଲି ରଙ୍ଗ ଚଢ଼ିଛି ଆସିଲା । କଥାଟାକୁ ମୋଡ଼ ଦେବାକୁ ସେ ପୁଣି ଆରମ୍ଭ କଲେ, "ଆଜ୍ଞା, ଆଉ ଗୋଟିଏ ଭୟ ବି ଅଛି । ଆଜି ମେରିଠାରୁ ଟଙ୍କା ନେଇ ତ କାର-ବାରରେ ଲଗାଇବି । କିନ୍ତୁ ପୂର୍ବେ ଏଇମିତି କରୁ କରୁ ମୋ ନିଜ ଟଙ୍କା-ତକ ଯେମିତି ବୁଡ଼ିଗଲା, ସେମିତି ଯଦି ହୁଏ ?"

"ପୋଲ ତଳେ ସେ ଦିନୁଁ କେତେ ପାଣି ବୋହି ଗଲାଣି, ଏଥାନ୍ ! ବହୁତ ପାଣି ବୋହି ଗଲାଣି । ମୁଁ ଜାଣେ ତୁମେ ଚୋଟ ଖାଇଥିଲ । କିନ୍ତୁ ସେକାଳ କଥା ଆଉ ନାହିଁ । କେତେ ନୂଆ ନୂଆ ବାଟ ମେଲି ଗଲାଣି । ସୁବିଧା ସୁଯୋଗ ଫିଟି ଗଲାଣି ।"

"ମୁଁ କ'ଣ ସୁବିଧା ସୁଯୋଗ ପାଇ ନ ଥିଲି, ମିଷ୍ଟର ବେକର୍ ! ସୁବିଧା ସୁଯୋଗ ବହୁତ ମିଳିଥିଲା ଯେ, ମୋର ବୁଦ୍ଧି ବିବେକ ଥିଲା କମ୍ । ଆପଣ କ'ଣ ଭୁଲି ଗଲେଣି, ଯୁଦ୍ଧ ପରେ ପରେ ଏ ଷ୍ଟୋର୍‌ଟା ଥିଲା ମୋର ନିଜର । ଆମର ଶେଷ ସମ୍ବଳ ଥିଲା ଯେଉଁ ଘର ବାଡ଼ି ସେଥିରୁ ଅଧେ ବିକି ଏଥିରେ ଜିନିସ ଭର୍ତ୍ତି କରିଥିଲି ।"

"ମୁଁ ଜାଣେ ମ, ଏଥାନ୍ ! ମୁଁ ପରା ତମ ବ୍ୟାଙ୍କର୍ । ତୁମ ଡାକ୍ତର ତୁମ ନାଡ଼ିକୁ ଯେମିତି ଜାଣେ, ମୁଁ ତୁମ ବେପାର ଓ ସମ୍ପତ୍ତି ବାଡ଼ି ସେଇମିତି ଜାଣେ ।"

"ହଁ, ଆପଣ ତ ସବୁ ଜାଣନ୍ତି । ମାତ୍ର ବର୍ଷ ଦୁଇଟାରେ ମୁଁ ଦେଉ-ଳିଆ ହୋଇଯିବା ଅବସ୍ଥାରେ ପହଞ୍ଚି ଗଲି । ରହିବା ଘର ଖଣ୍ଡି ଗୁଡ଼ି ଆଉ ସବୁ ବିକିବାରେ ଯାଇ ଧାର ଉଧାର ପରିଶୋଧ ହେଲା ।"

"ସେ ବିପର୍ଯ୍ୟୟ ପାଇଁ ତୁମେ ପୂରାପୂରି ଦାୟୀ ହୋଇ ପାରିବ ନାହିଁ । ଅବଶ୍ୟ ତୁମେ ଲଣ୍ଡନରୁ ସଦ୍ୟ ଫେରିଥିଲ—ବେପାର ବୁଦ୍ଧି, ଅଭିଜ୍ଞତା ଆଦୌ ନ ଥିଲା । କିନ୍ତୁ ପାସୋରି ଦିଅ ନାହିଁ ଯେ, ସେତେବେଳେ ଅଯାଚିତ ଭାବେ ଆସି ପହଞ୍ଚି ଗଲା ବାଣିଜ୍ୟ ବ୍ୟବସାୟର ସାମୂହିକ ବିପ୍ରାତ—ଆମେ ଖାଲି ମନକୁ ବୋଧ ଦେଲେ, ଅସ୍ଥାୟୀ ମାନ୍ଦା ଅବସ୍ଥା ବୋଲି କହି । ତୁମେ ତ ନୂଆ ଲୋକ ; ସେ ପରିସ୍ଥିତିରେ କେତେଜଣ ଖୁବ୍ ପୁରୁଖା ବ୍ୟବସାୟୀ ବି ତଳିତଳାନ୍ତ ହୋଇଗଲେ ।"

"ଆଉ ଯାହାର ଯାହା ହେଉ ବା ନ ହେଉ, ମୋର ତ ଦଫା ରଫା ହୋଇଗଲା । ହ'ଲି ବଂଶର ଜଣେ, ଇଟାଲୀୟ ମାଲିକର ମଦ ଦୋକାନରେ ଗୁମାସ୍ତା ହେବ,ଇତିହାସରେ ଏ ନୂଆ କଥା ମୋ'ରିଠାରେ ହିଁ ଘଟିବାକୁ ଥିଲା ।"

"ଏଇ ଭଳି ନୈରାଶ୍ୟ ମୁଁ ସମର୍ଥନ କରିପାରେ ନାହିଁ, ଏଥାନ୍ ! ଦୈବାତ୍ ବିପର୍ଯ୍ୟୟ ଘଟିବା ଯେ କୌଣସି ଲୋକର ଭାଗ୍ୟରେ ଘଟିପାରେ । କିନ୍ତୁ ଥରେ ବିପର୍ଯ୍ୟୟ ହେଲା ବୋଲି, ଜୀବନ ତମାମ ମୁଣ୍ଡରେ ହାତ ଦେଇ ବସିବାର ଦୁର୍ବଳତା ମୁଁ ପସନ୍ଦ କରେ ନାହିଁ । ତୁମ ପକ୍ଷରେ ତ ଏହା ଆହୁରି ନିନ୍ଦନୀୟ—ତୁମର ଘରର ପ୍ରତିଷ୍ଠା ଅଛି, ପୂର୍ବ ସଂସ୍କାର ଅଛି, ପୁଣି ଶିକ୍ଷାଦୀକ୍ଷା ବି ଅଛି । ରକ୍ତର ତେଜ ନଷ୍ଟ ହେଲେ ଯାଇ, ଥରକର ବିପର୍ଯ୍ୟୟରେ ମଣିଷ ସବୁଦିନରୁ ନିରାଶ ହୋଇଥାଏ । ଏଥାନ୍, ତୁମେ ଏତେ ଦବି ଯାଇଛ କାହିଁକି ? କ'ଣ ବା ଏମିତି ଘଟଣା ଘଟିଛି ?"

ଏଥାନ୍ ଏହାର ଜବାବ୍ ରାଗରେ ଦେବାକୁ ଆରମ୍ଭ କରୁଥିଲେ—ମୁଁ କାହିଁକି ଦବି ଯାଇଛି, ଆପଣ ଜାଣିବେ କୁଆଡ଼ୁ ? ମୁଁ ଯେଉଁ ଦୁର୍ଦ୍ଦଶାରେ ପଡ଼ିଛି ସେଭଳି ଦୁର୍ଦ୍ଦଶାର ଅନୁଭୂତି ତ ଆପଣଙ୍କର ନାହିଁ—ଏ ସ୍ଥିତିରେ ଆହୁରି ଅଗ୍ରସର ନ ହୋଇ ସେ ନିଜ ଗୃହପଟୁ ଗୁଡ଼ାଏ ଲଜେଞ୍ଜବନ୍ଧା କାଗଜ ଓ ସିଗାରେଟ୍ ଠୁଣ୍ଟି ଓଳାଇ ଗଦା କଲେ ଓ ସେ ଗଦାକୁ ଗୁଞ୍ଜୁଣିରେ ପେଲି ପେଲି ନର୍ଦ୍ଦମା କଡ଼କୁ ନେଲେ । ତା'ପରେ ସେ ପୁଣି ଆରମ୍ଭ କଲେ, "ମଣିଷ ବିପର୍ଯ୍ୟୟରେ ଦବି ଯାଏନାହିଁ ; ଅର୍ଥାତ୍ ବଡ଼ ବିପଦ ଆସି ପହଞ୍ଚିଲେ ସେ କମର ବାନ୍ଧି ତାହାର ମୁକାବିଲା କରିବାକୁ ବାହାରିପଡ଼େ । କିନ୍ତୁ ବିପଦ ଏକାଥରକେ ନ ଆସି, ଯଦି ଆସ୍ତେ ଆସ୍ତେ ମଣିଷର ଆହ୍ଵାନ କୋରିବାକୁ

ଲାଗେ, ତେବେ ମଣିଷ ଅଜାଣତରେ ଗାତ ଭିତରକୁ ଭୁଷୁଡ଼ିପଡ଼େ । କ୍ଷୁଦ୍ର କ୍ଷୁଦ୍ର ଅଭାବ ଅସୁବିଧା ଲାଗି ରହିଲେ ମଣିଷ ମନରେ, ଗୋଟାଏ କମ୍ପିତ ଆତଙ୍କ ଆସ୍ତେ ଆସ୍ତେ ଆସି ସ୍ଥାୟୀ ଭାବରେ ରହିଯାଏ । ମୋର ସେଇଆ ହୋଇଛି । ମୋ ମନରେ ସବୁବେଳେ ଆତଙ୍କ, ସ୍ଥାୟୀ ଶଙ୍କିତା । ସବୁବେଳେ ଡରୁଛି, ହୁଏତ ଆଜ ଲଙ୍ଗ୍ ଆଇଲାଣ୍ଡ୍ ଇଲେକ୍ଟ୍ରିକ୍ କମ୍ପାନୀ ଲାଇନ୍ କାଟିଦେବ ; ଭାର୍ଯ୍ୟାର ନିତାନ୍ତ ଦରକାରୀ ପୋଷାକପତ୍ର କିଣା ହୋଇ ପାରୁନାହିଁ ; ପିଲା ଯୋଡ଼ିକଙ୍କର ଦୁଇହଳ ନୂଆ ଜୋତା କିଣା ହେବା ନିତାନ୍ତ ଦରକାର ; ମନ ଆନମାନ କରିବାକୁ ତାଙ୍କର କିଛି ଖର୍ଚ୍ଚ କରିବା ବି ଦରକାର, ଦେଇ ହେଉନାହିଁ । ସେ ତ ସୁଖସ୍ୱାଚ୍ଛନ୍ଦ୍ୟର କଥା ! ଧର, ପିଲା ଯୋଡ଼ିକଙ୍କର ଅତି ଆବଶ୍ୟକ ଶିକ୍ଷାର ଉପଯୁକ୍ତ ବ୍ୟବସ୍ଥା ଯଦି କରି ନ ପାରିବି ? ମାସକବାରି ଖାଇବାଖର୍ଚ୍ଚ ଯଦି ତୁଲାଇ ନ ହେବ ? ପିଲାଙ୍କର ଔଷଧ ଖର୍ଚ୍ଚା ଯଦି ନ ଦେଇପାରିବି ? ତାଙ୍କ ଦାନ୍ତ ପଡ଼ିବା, ଘଣ୍ଟିକା ବଢ଼ିବା ବେଳେ ଯଦି ଡାକ୍ତରଙ୍କ ଫିସ୍ ଦେବାକୁ ସାମର୍ଥ୍ୟ ନ ଥିବ ? ଏ ସବୁ ବର୍ତ୍ତମାନ ଭିଡ଼ି ଓଟାରି ତୁଲାଇବାକୁ ହେଉଛି ତ ! କିନ୍ତୁ ଏଇପରି ଘୋଷାରି ହେଉ ହେଉ ହଠାତ୍ ଦିନେ ଯଦି ମୁଁ ବେମାର ପଡ଼ିଯାଏ, ଓ ଦୋକାନର ଏଇ ଗେହାପୋ କନ୍ଧବସ୍ତାକୁ ଓଳେଇବା ପାଇଁ ଯଦି ସାମର୍ଥ୍ୟ ହରାଏ, ତେବେ ? ମୁଁ ଜାଣୁଛି, ଆପଣ ମୋର ପରିସ୍ଥିତିକୁ ଠିକ୍ କଳନା କରି-ପାରିବେ ନାହିଁ । ଆସ୍ତେ ଆସ୍ତେ ତଳକୁ ଖସୁ ଖସୁ ଆଜ ମୁଁ ଆସି ଏଇ ଅବସ୍ଥାରେ ପହଞ୍ଚିଛି । ବିପର୍ଯ୍ୟସ୍ତ ଏହିପରି ଆସ୍ତେ ଆସ୍ତେ ଆସିବାରୁ ହିଁ ଅଜାଣତରେ ମୋ ମନର ସବୁ ଆଣ୍ଠୁ କୋଣ ପକାଇଛି । ରେଫ୍ରିଜରେଟର୍ ବାବଦରେ ଆର ମାସ ପନ୍ଦରରୁ ଯେଉଁ କିସ୍ତି ଦେବାକୁ ହେବ, ତହିଁରୁ ଅଧିକ ବା ତହିଁର ଆଗକୁ ଚିନ୍ତା କରିବାର ସାମର୍ଥ୍ୟ ମୁଁ ହରାଇଛି । ଏ ଯେଉଁ ଚାକିରିଟା କରୁଛି ତା' ପ୍ରତି ମୋର ତିଳେ ମାତ୍ର ଶ୍ରଦ୍ଧା ନାହିଁ, ଅଥଚ କେଜାଣି ଏ ଚାକିରିଟା ହାତରୁ ଖସିଯିବ ଏଇ ଆଶଙ୍କାରେ ମୁଁ ଶିହରି ଉଠୁଛି । ଏ ଅବସ୍ଥାର ବିଡ଼ମ୍ବନା ଆପଣ ବୁଝିପାରିବା ଅସମ୍ଭବ ।"

ମିଷ୍ଟର୍ ବେକର୍ ପଚାରିଲେ, "ଆଚ୍ଛା, ମେରିଙ୍କ ମା'ଙ୍କ ଅବସ୍ଥା କ'ଣ ?"

ଏଥାନ୍ ଉତ୍ତର ଦେଲେ, "କହ୍ଲା ପଗ, ମେର ଉଇଲ୍‌ରେ ଯେଉଁ ଟଙ୍କା ପାଇବାର କଥା ଏ ବୁଢ଼ୀ ତା'ର ବାଟରେ କଣ୍ଟା ହୋଇ ବସିଛି । ସେଇମିଛ ଆଗୁଳା ପକାଇ ବସିଥିବ, ମରିବ ।"

"ଏ ପ୍ରତିବନ୍ଧକ କଥାଟା ମୁଁ ଜାଣି ନ ଥିଲି । ମେଭି ଏତେଗୁଡ଼ାଏ ଟଙ୍କାର ଉତ୍ତରାଧିକାରିଣୀ ହୋଇପାରନ୍ତି ବୋଲି ମଧ୍ୟ ମୋର ଧାରଣା ନ ଥିଲା । ମୁଁ ତ ଜାଣିଥିଲି, ସେ ଆସିଛନ୍ତି ଗୋଟିଏ ଦରିଦ୍ର ପରିବାରରୁ । ଏ କଥା ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ ହଠାତ୍ ବେମାର ପଡ଼ିଗଲେ, ତୁମର ଔଷଧପତ୍ର ଦରକାର ; ହୁଏତ ଅସ୍ତ୍ରୋପଚାର ଦରକାର ବା ଇଲେକ୍‌ଟ୍ରିକ୍ ସକ୍ ଚିକିତ୍ସା ଦରକାର । ଆମ ପୂର୍ବପୁରୁଷଙ୍କ କଥା ଥିଲା ସ୍ୱତନ୍ତ୍ର । ତୁମେ ତ ଜାଣ, ମୃତ୍ୟୁକୁ ସେମାନଙ୍କର ଭୟ ନ ଥିଲା ଓ ମୃତ୍ୟୁ ସେମାନଙ୍କୁ ଠିକ ଠିକ କରି ଗର୍ଭସ୍ଥ କରି ପାରୁ ନ ଥିଲା । ଅନ୍ୟ ଦିଗରୁ ଦେଖିଲେ, ସେମାନଙ୍କ ଯୁଗ ତୁଳନାରେ ଏ ଯୁଗରେ ଆମକୁ ଏପରି ଅନେକ ସୁବିଧା ସୁଯୋଗ ମିଳୁଛି, ଯାହା ସେମାନେ ସେତେବେଳେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ପାରୁ ନ ଥିଲେ । ଏ ସୁବିଧା ଓ ସୁଯୋଗର ଫାଇଦା ଆମେ ଉଠାଇବାକୁ ହେଳା କରିବା ହେତୁ ବିଦେଶୀ ଲୋକେ ଏ ସବୁ ମାରି ନେଉଛନ୍ତି । ବିଦେଶୀମାନେ ଆସି ଆମ ନିଜ ଦେଶରେ, ଆମ ନିଜ ଉପରେ ପ୍ରଭୁତ୍ୱ ବିସ୍ତାର କରିବାକୁ ବସିଛନ୍ତି । ଏଥାନ୍ ! ଏ ସବୁ ବିଚାର କରି ଜାଗି ଉଠ, ହାତ ପାଖକୁ ଆସୁଥିବା ସୁଯୋଗ ଓ ସୁବିଧା ହାତଛଡ଼ା କରନାହିଁ ।"

ଏଥାନ୍ ଜବାବ୍ ଦେଲେ, "ଭବିଷ୍ୟତ୍ ଉପରେ ଦୃଷ୍ଟି ରଖି ତ ଟଙ୍କା ଖଟାଇବି, ମାସକୁ ମାସ କିସ୍ତି ଦେବା ସର୍ତ୍ତରେ ଯେଉଁ ରେଫ୍ରିଜରେଟର୍ କଣା ହୋଇଛି ତା' କଥା କ'ଣ ହେବ ?"

"ଯଦି ନିତାନ୍ତ ଦରକାର ପଡ଼େ, ତେବେ ବର୍ତ୍ତମାନ ପାଇଁ ରେଫ୍ରିଜରେଟର୍ ତ୍ୟାଗ କରିବାକୁ ପଡ଼ିବ ।"

"ମେଭି ଓ ପିଲି ଦୁହିଙ୍କର ଦୈନନ୍ଦିନ ପ୍ରୟୋଜନ ତ ପୂର୍ଣ୍ଣ ଅଛି !"

"କର୍ତ୍ତୃତ୍ୱ ନିମନ୍ତେ ସେମାନଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟ ମଧ୍ୟ ପାସୋରିଦେବାକୁ ହେବ । ବର୍ତ୍ତମାନ ଯେଉଁ ଗାତ ଭିତରେ ପଡ଼ି ଘାଣ୍ଟି

ହେଉଛି, ସେଥିରୁ ମୁକ୍ତ ପାଇଲେ, ପରିବାରର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟିଦେବାକୁ ତୁମେ ଅଧିକ ସମର୍ଥ ହେବ । ପାଖରେ ପଇସା ହେଲେ ସ୍ତ୍ରୀ ଓ ପିଲ୍ଲମାନେ ତୁମକୁ ଅଧିକ ସ୍ନେହ ଓ ଶ୍ରଦ୍ଧା କରିବେ । ଆଜି, ଖାଲି ସେମାନଙ୍କ ପାଇଁ ଭଲ ହେଉଛି ମାତ୍ର ; ସେଥିରେ ତାଙ୍କର ବା କି ଲାଭ ହେଉଛି ?"

"ବ୍ୟବସାୟରେ ଖଟାଇବାକୁ ପାଖରେ ଯେଉଁ ସମ୍ବଳ ଅଛି, ତାହା ମୋ'ର ତ ନୁହେଁ, ମେରି । ତା' ଟଙ୍କା ବ୍ୟବସାୟରେ ଖଟାଉ ଖଟାଉ—"

"ବ୍ୟବସାୟରେ ଖଟାଇଲେ ସବୁ ତକ ଟଙ୍କା ବୁଡ଼ି ଯାଇ ପାରେ, ଏ ଆଶଙ୍କାରେ ନିଷ୍କ୍ରିୟ ହୋଇ ରହିବା ଠିକ୍ ହେବ ନାହିଁ—ସାହସ ଧରି, ଟଙ୍କା ବୁଡ଼ିଯିବାର ସମ୍ଭାବନାକୁ ଖାତିର ନ କରି ଆଗେଇ ଚାଲ । ସତ୍-ପରାମର୍ଶ ଗ୍ରହଣ କରି, ସାବଧାନ ହୋଇ ଟଙ୍କା ଖଟାଇଲେ କ୍ଷତି ହେବ କାହିଁକି ? କ୍ଷତିର ସମ୍ଭାବନା ଥିଲେ ବି କ'ଣ ସବୁ ସ୍ଥଳରେ କ୍ଷତି ହୁଏ ? ଆମର ପୂର୍ବପୁରୁଷ ପୂର୍ବେ ଦୁଷ୍ଟି ସହିତ ବିପଦ ବରଣ କରିଥିବାରୁ ନିଜେ ବିପଦରେ ପଡ଼ି ନାହାନ୍ତି, ଏକଥା ତ ତୁମେ ଜାଣ । ଏଥାନ୍ ! ମୁଁ ପୂର୍ବ-ପୁରୁଷଙ୍କ କଥା ଚେତାଇଦେବାଦ୍ୱାରା ତୁମର ମନରେ ଉତ୍ସାହ ଜଗାଇଦେବାକୁ ଚେଷ୍ଟା କରୁଛି । କ୍ୟାପ୍‌ଟେନ୍ ହ'ଲଙ୍କ ସ୍ମୃତି ତୁମ ମନରେ ଜାଗୁଛି ତ ? ଭାବି ଦେଖ, ତୁମେ ତାଙ୍କର ମହତ୍ତ୍ୱ ବଜାୟ ରଖିଛ ନା ନାହିଁ । ତାଙ୍କର ଦାୟାଦ ତୁମେ, ତାଙ୍କର ମହତ୍ତ୍ୱ ବଜାୟ ରଖିବା ଯେ ତୁମର କର୍ତ୍ତବ୍ୟ, ଏକଥା ଭୁଲିଗଲେ ଚଳିବ ନାହିଁ । ଜାଣ ତ, ତୁମର ଗୋସିଁବାପ କ୍ୟାପ୍‌ଟେନ୍ ହ'ଲ ଓ ମୋ'ର ବାପା—ଦୁହେଁ 'ବେଲ୍-ଆଡ୍ଭେଞ୍ଚର୍' ଜାହାଜର ଆଠ ଆଠ ପଣ ସରିକ୍‌ଦାର୍ ଥିଲେ । ସେ ଜାହାଜଟା ଥିଲା ତିମିଶିକାର ପାଇଁ ଅତି ଉତ୍କୃଷ୍ଟ ଜାହାଜ, ତା'ପରେ ଆଉ ସେପରି ଜାହାଜ ନିର୍ମିତ ହୋଇନାହିଁ । ସେ କଥା ମନେ ପକାଅ, ନିଜର ନିଷ୍କ୍ରିୟତା ପରିହାର କର । 'ବେଲ୍-ଆଡ୍ଭେଞ୍ଚର୍' ଜାହାଜକୁ ତୁମର ଗୋସିଁବାପ୍ ଯେଉଁ ସାହସରେ ଦରିଆରେ ପେଲି ଦେଇଥିଲେ ସେ ସାହସର ପରିଚୟ ଦିଅ । ରେଫ୍ରିଜରେଟର୍ ପାଇଁ ଟଙ୍କା ଧାରିଛ ବୋଲି ମୁଣ୍ଡରେ ହାତ ଦେଇ ବସି ରହ ନାହିଁ ।"

ଅଳଥା ସାଙ୍ଗେ ନ ଯାଇ ରହି ଯାଇଥିବା, ଖଣ୍ଡିଏ ଜରି କାଗଜକୁ ଗୁଞ୍ଝୁଣି ଅଗରେ ନର୍ଦ୍ଦମା କଡ଼କୁ ନେଉ ନେଉ ଏଥାନ୍ ହଠାତଭାବେ କହିଲେ, "ଆଜ୍ଞା, ସେଇ ଯେଉଁ 'ବେଲ୍-ଏଣ୍ଡାୟୁର୍' ଜାହାଜ କଥା କହୁଛନ୍ତି, ସେଇଠାରେ ପରି ନିଆଁ ଲାଗିଲା ଯେ ପାଣି ଉପରକୁ ଯେତେ ଅଂଶ ଥିଲା ସେତକ ଯାକ ଧ୍ୱଂସ ହୋଇଗଲା !"

"ହଁ, ପୋଡ଼ି ଗଲା । କିନ୍ତୁ ପୋଡ଼ିଗଲା ତ ଗଲା । ଜାହାଜଟା ପୋଡ଼ିଗଲା ବୋଲି କ'ଣ ଆମେ ସର୍ବସ୍ୱାନ୍ତ ହୋଇଗଲେ ?"

"ସେ ଜାହାଜ ପାଇଁ ଇନ୍‌ସିଓର୍ କରି ଯାଇଥିଲା ?"

"ହଁ, ଅବଶ୍ୟ, ଇନ୍‌ଓସିର୍ ହେବାର କଥା, ହୋଇଥିଲା ।"

"କିନ୍ତୁ ମୁଁ ଯେଉଁ ବେପାର କରିଥିଲି ସେଥିପାଇଁ ତ ଇନ୍‌ସିଓର୍ କରାଯାଇ ନ ଥିଲା ! ବ୍ୟବସାୟ ବୁଡ଼ିଲାବେଳେ ମୋର ସବୁ ସମ୍ବଳ ଯାଇ ଅବଶିଷ୍ଟ ରହିଲା ଏଇ ଘର ଖଣ୍ଡିକ ମାତ୍ର ।"

"ସେ କଥା ଗୁଡ଼ାକ ପାସୋରି ପକାଅ । ଛଟ କଥାଗୁଡ଼ାକ ମନେ ପକାଇ ତୁମେ ଖାଲି ଘାଣ୍ଟି ହେଉଛ ! ସାହସ ଧର, ନୈରାଶ୍ୟ ଭିତରେ ଆଶାର ସଂଚାର କର । ମୋର ପରାମର୍ଶ, ତୁମେ ବୃଥା ଆଶଂକା ଛାଡ଼, ମେରିଙ୍କୁ ମିଳିଥିବା ଟଙ୍କା ବ୍ୟବସାୟରେ ଖଟାଅ । ତୁମର ମଙ୍ଗଳ ପାଇଁ ମୁଁ ଏକଥା କହୁଛି, ଜାଣୁଛ ତ ?"

ଏଥାନ୍ କହିଲେ, "ହଁ ଆଜ୍ଞା, ଜାଣୁଛି; ମୋର ଆପଣ ହିତାକାଂକ୍ଷୀ ହୋଇଥିବାରୁ ମୁଁ ଆପଣଙ୍କଠାରେ କୃତଜ୍ଞ ।"

"ତା ଯଦି ଜାଣୁଛ, ତେବେ ମୋ ପରାମର୍ଶ ଅନୁସାରେ କାର୍ଯ୍ୟ କର । ଘର ଓଳାଇବାକୁ ଅଣ୍ଟାରେ ଏ ଯେଉଁ କନା ଗୁଡ଼େଇଛ ତା'କୁ ଛାଡ଼ । କ୍ୟାପ୍‌ଟେନ୍ ହ'ଲଙ୍କ ନାମର ମର୍ଯ୍ୟାଦା ରଖ, ତାଙ୍କର ନାତି ଯେ ସକାଳୁ ଉଠି ଅନ୍ୟର ଦୋକାନରେ ଝାଡ଼ୁ ଦେବ ଏକଥା ସେ କେବେଁ କଳ୍ପନା କରି ନ ଥିବେ ।"

"ମୁଁ ମାନୁଛି ଯେ, ସେ କଥା ସତ ।

"ମାନୁଛ ଟି ? ବେଶ୍ ! ଏଇଭଳି ବିଚାରିଲେ ସବୁ ଠିକ୍ ହୋଇଯିବ, ତୁମ ହାତରୁ ଏ ଝାଡ଼ୁ ମୁଠାଟା ଚିରକାଳ ପାଇଁ କାଢ଼ି ଦେଇ ପାରିବା ।"

"ମେରି ପାଇଁ, ପିଲା ଦୁହିଙ୍କ ପାଇଁ ସିନା ମୋର ଏପ୍ରୁ ଅବସ୍ଥା ! ନ ହେଲେ—"

"ଭାର୍ଯ୍ୟା କଥା, ପିଲାଙ୍କ କଥା ପାସୋର ଦିଅ । ଆଜି ସେମାନଙ୍କୁ ପାସୋର ପାରିଲେ ଯାଇ ଭବିଷ୍ୟତ୍‌ରେ ସେମାନଙ୍କର ମଙ୍ଗଳ ହେବ । ଆମ ଏଇ ନଉ ବେ-ଟାଉନ୍‌ରେ ନିକଟ ଭବିଷ୍ୟତ୍‌ରେ ଗୁଡ଼ାଏ ନୂଆ କଥା ଘଟିବାର ଅଛି । ସେଥିରେ ତୁମେ ଭାଗିଦାର ହୋଇ ପାରିବ ।"

"ଆପଣଙ୍କୁ ଧନ୍ୟବାଦ, ଆଜ୍ଞା ।"

"ଆଚ୍ଛା, ଆଚ୍ଛା, ଏ ସବୁ ବିଷୟରେ ମୁଁ ଆଉ ଟିକିଏ ଭାବି ଦେଖୁଛି ।"

"ମିଷ୍ଟର୍ ମର୍‌ଫି କହୁଥିଲେ, ଦି' ପହରେ ବ୍ୟାଙ୍କ୍ ବନ୍ଦ ହେଲେ, ସେ ଘରକୁ ନ ଯାଇ, ବ୍ୟାଙ୍କ୍‌ରେ କେତେକ ବାକିଆ କାମ ତୁଟାଇବେ । ତାଙ୍କ ପାଇଁ କେତେଟା ସ୍ୟାଣ୍ଡୁଇଚ୍ କରିବାକୁ ସେ ବରାଦ କରିଛନ୍ତି । ଆପଣଙ୍କ ପାଇଁ ମଧ୍ୟ କରିବି କି ?"

"ନା, ମୋର ଦରକାର ନାହିଁ । ଧନ୍ୟବାଦ । ମୁଁ ଜମ୍ଫି ଉପରେ କାମର ଦାୟିତ୍ୱ ଛାଡ଼ି ଦେଇଛି । ଆଚ୍ଛା ଲୋକଟିଏ ସେ । ମୁଁ ଦି'ପହରେ ବ୍ୟାଙ୍କ୍‌ରେ ରହିବି ନାହିଁ । ଗୋଟାଏ ସମ୍ପତ୍ତି ବିଷୟରେ ଟିକିଏ ବୁଝାବୁଝି କରିବାକୁ ଅଛି, ପଞ୍ଚାୟତ ଅଫିସ୍‌ରେ ; ସେଇଠାକୁ ଯିବି । ବାରଟାଠାରୁ ତିନଟା ପର୍ଯ୍ୟନ୍ତ ବେଶ୍ ଆରାମରେ, ଏକାନ୍ତରେ, ସେଇଠାରେ କଟାଇବି । ଏଇ ଯେଉଁ ସମ୍ପତ୍ତିଟା କଥା କହୁଛି, ସେଥିରେ ତୁମ ଟଙ୍କା ଖଟାଇବାର ସୁଯୋଗ ମିଳିପାରେ । ମୁଁ ଭଲ କରି ବୁଝାସୁଝା କରି ସାରେଁ, କଥାବାର୍ତ୍ତା ହେବା । ହଉ, ମୁଁ ଯାଉଛି ।" ଏହା କହି ମିଷ୍ଟର୍ ବେକର ରାସ୍ତାରେ ଗୋଟାଏ ଗାଡ଼ ପାର ହେବାକୁ ଲମ୍ବ ପାହୁଣ୍ଡଟି ପକାଇଲେ ଓ ଗଳି ରାସ୍ତାଟା ପାରହୋଇ ଫାର୍ଷ୍ଟ ନ୍ୟାସ୍‌ନ୍ୟାଲ୍ ବ୍ୟାଙ୍କ୍‌ର ସଦର ଦରଜା ଉପରକୁ ଉଠିଲେ । ଏଥାନ୍ ପଛରୁ ତାଙ୍କୁ ଗୁହିଁ ମୁରୁକି ମୁରୁକି ହସୁଥାନ୍ତି ।

ଏତେବେଳକୁ ରାସ୍ତାରେ ଗହଳି ଆରମ୍ଭ ହୋଇଥାଏ, କ୍ଷୀଣ ଧାରରେ ଯାଉ ଯାଉ ଲୋକେ ସୁଅ ଧରି କାମକୁ ମୁହାଇଁବାର ଦେଖି ଏଥାନ୍ ତରତରରେ ଝାଡ଼ୁ କାମ ସାରିଦେଲେ । ଷ୍ଟୋର୍‌ର ସାମ୍‌ନାରେ ସଜ ଫଳର ଅନ୍ଦାଗୁଡ଼ିକ ସଜାଇ ଦେଲେ । ତା'ପରେ ସେ ରାସ୍ତା ଉପରକୁ ଦୃଷ୍ଟି ପକାଇ, କେହି ଯାଉ ନାହାନ୍ତି ବୋଲି ଲକ୍ଷ୍ୟ କରି, କୁକୁର-ଖାଦ୍ୟର

ତିନଟା ପେଟି ଆଡ଼େଇ, ତା’ ପଛରେ ରଖା ହୋଇଥିବା ଟଙ୍କା ଥଳଟା ବାହାର କଲେ । କୁକୁର ଖାଦ୍ୟକୁ ଯଥାସ୍ଥାନରେ ରଖି, କାରବାର ଟେବୁଲ ଉପରେ ‘କାରବାର ବନ୍ଦ’ ବୋଲି ସାଇନ୍‌ବୋର୍ଡ଼ ଲଗାଇଦେଇ ଟଙ୍କା ଥଳି ଖୋଲିଲେ -- କୋଡ଼ିଏ ଟଙ୍କିଆ, ଦଶଟଙ୍କିଆ, ପାଞ୍ଚ ଟଙ୍କିଆ ଓ ଟଙ୍କିକିଆ ନୋଟ୍ ସବୁ ଅଲଗା ଅଲଗା କରି ଟଙ୍କା ଡ୍ରଅର୍‌ରେ ରଖିଲେ ଓ ଡ୍ରଅରର ସାମ୍‌ନାକୁ ଥିବା କାଠ ଗିନାମାନଙ୍କରେ ଆଠଣି,ଚଉଣି,ଦଶପଇସି, ପାଞ୍ଚପଇସି ଓ ତିନପଇସି, ଓ ପଇସାକୁ ଅଲଗା ଅଲଗା କରି ଥୋଇଲେ । ପଇସାକୁ ଏଇପରି ସଜାଡ଼ି ସେ ଟେବୁଲ ଡ୍ରଅର୍ ବନ୍ଦ କରି ଦେଲେ ଓ କାରବାର ପାଇଁ ପ୍ରସ୍ତୁତ ହେଲେ । ସାମାନ୍ୟ କେତୋଟି ଗ୍ରାହକ ମାତ୍ର ମୁହଁ ଦେଖାଇଲେ, ବେଶୀ ଭାଗ ସାନ ପିଲା । ଝିଅ ପିଲାଟିମାନଙ୍କର ଗୁଡ଼ର ଆଲୁର୍ ବାଲୁର୍ ବାଳ ସଜଡ଼ା ହୋଇ ନ ଥାଏ । ସେମାନେ ଆସିଥାନ୍ତି— କିଏ ଗୋଟାଏ ପାଉଁରୋଟି ପାଇଁ ତ, ଆଉ କିଏ ବୋତଲରେ ଦୁଧ ପାଇଁ, କାଲି ନେବାକୁ ଭୁଲି ଯାଇଥିବା କଫି-ଟିଣଟାଏ ପାଇଁ ବା କିଏ କେମିତି ଆସିଥାନ୍ତି ।

କିଛି ସମୟ ପରେ ଆସି ପହଞ୍ଚିଲେ ମାର୍ଗି ୟୁାଙ୍ଗ୍ ହାଣ୍ଡ୍—ସ୍ୟାମନ୍ ମାଛ ପରି ନାରଙ୍ଗ ରଙ୍ଗର ଗୋଟିଏ ସ୍ୱେଟର ଏମିତି ପିନ୍ଧିଥାନ୍ତି ଯେ ଉନ୍ନତ କୁଚ ଯୁଗଳ ଫୁଟି ଦିଶୁଥାଏ ; ଟୁଇଡ୍ କନାର ଘାଗରାଟି ତାଙ୍କ ନିତମ୍ବରେ ଲେସି ହୋଇ, ଜଙ୍ଘ ଯାଏଁ ଲମ୍ବିଥାଏ । ଏ ପୋଷାକ ଭିତରେ ତ ପ୍ରେମର ଇଙ୍ଗିତ ଥାଏ, କିନ୍ତୁ ୟାଠାରୁ ଅଧିକ ସଙ୍କେତ ଥାଏ ମାର୍ଗିଙ୍କର ପିଙ୍ଗଳ ଚକ୍ଷୁର ଅଳସ ଚାହାଣିରେ—ଏ ଚାହାଣି ଏଥାନ୍‌ଙ୍କ ପତ୍ନୀ ମେଷ୍ଟି କେବେହେଁ ଦେଖି ନାହାନ୍ତି । କାରଣ ମାଇପିଙ୍କ ଆଗରେ ମାର୍ଗିଙ୍କର ଏ ଚାହାଣି ଆତ୍ମପ୍ରକାଶ କରେ ନାହିଁ । ଏ ଚାହାଣି ଖୋଜୁଥାଏ ଶିକାର ; ମନ ମୋହିବାକୁ ଅନଙ୍ଗର ବାଣ ମାରୁଥାଏ ; ଗ୍ରୀକ୍ ମୃଗୟା ଦେବୀ ଆଟେମିସ୍‌ଙ୍କ ପରି ଏ ଚାହାଣିର ପ୍ରଧାନ ଲକ୍ଷ୍ୟ ଥାଏ, ମଣିଷର ହୃଦୟରେ ପ୍ରେମ ଜାଗରୁକ କରିବା । ବୁଢ଼ା କପ୍ତାନ୍ ହ’ଲି ଏଭଳି ଚାହାଣିକୁ କହନ୍ତି,‘ମାରଣା ଚାହାଣି’। ମାର୍ଗିଙ୍କର ସ୍ୱର ବି ମାଦକତାଭରା । ପୁରୁଷଙ୍କ ସଙ୍ଗେ ଏକାନ୍ତରେ ଥିଲା ବେଳେ ସେ ସ୍ୱରରେ ବ୍ୟଞ୍ଜିତ ହେଉଥାଏ, ବାହାରର କୋମଳତା ଭିତରେ

ଭିତରେ ମିଷ୍ଟର ଅଭିସନ୍ଧି । ମାଇପେ ଆସି ପହଞ୍ଚିଗଲେ ଏଇ ସ୍ୱର ବଦଳି ଯାଇ ହୁଏ, ମୃଦୁ ଆନ୍ତରିକତାପୂର୍ଣ୍ଣ ଆଳାପ ।

ଷ୍ଟୋର୍ ଭିତରେ ପଶି ମାର୍ଗି କହିଲେ, "ସୁପ୍ରଭାତ, ଏଥ୍ ! ଆଜି ସନ୍ଧ୍ୟାର ବଣ ଭୋଜି ପାଇଁ ବଡ଼ ବଢ଼ିଆ ହୋଇଚି ।"

"ସୁପ୍ରଭାତ । ମନେ ହେଉଚି, ତୁମର କଫି ନିଶ୍ଚୟ ସରି ଯାଇଚି, ନ ହେଲେ ଏତେ ସକାଳୁ ଆସନ୍ତ କାହିଁକି ?"

"କେବଳ କଫି ସରିଗଲେ ବା କୌଣସି ଜିନିଷ ଦରକାର ହେଲେ ଯାଇ, ମୁଁ ତୁମ ପାଖକୁ ଆସେ ବୋଲି ଯଦି ତୁମର ଧାରଣା, ତେବେ ମୋର ଆସିବା ଏକାବେଳକେ ବନ୍ଦ କରିବାକୁ ହେବ, ଦେଖୁଚି ।"

ଏଥାନ୍ କହିଲେ, "କାଲି ରାତିରେ ଖୁବ୍ ମଜାଜ ହୋଇଚି ବୋଧହୁଏ ।"

ମାର୍ଗି କହିଲେ, "ହଁ ଦୁଃଖେ ସୁଖେ କଟିଗଲା । ଗୋଟାଏ କମ୍ପାନୀର ଜିନିଷ ପ୍ରଚାର କରିବାବାଲା ଏଜେଣ୍ଟ । ଗୃହପତ୍ନୀ ପାଇଥିବା ମାଇକିନିଆ ପକ୍ଷରେ ଆଶାତୀତ । ବିନାମୂଲ୍ୟରେ ବିତରଣ କରିବାକୁ ଜିନିଷପତ୍ରର ନମୁନା ଗୋଟାଏ ବାକ୍ସରେ ଆଣିଛନ୍ତି । ଏଭଳି ପ୍ରଚାରକଙ୍କୁ ଢୋଲିଆ ବୋଲି ତୁମେ ଘୃଣା କରିପାର । ହୁଏତ ତୁମେ ତାଙ୍କୁ ଆଗରୁ ଚିହ୍ନିଥିବ । ତାଙ୍କର ନାମ ବଗର୍ କି ବଗର୍ ମୁଁ ଭଲ କରି ମନେ ରଖି ପାରିଲି ନାହିଁ । ବି. ବି. ଡି. ଏଣ୍ଡ୍ ଡି.କମ୍ପାନୀର ସେ ଏଜେଣ୍ଟ । ତାଙ୍କ ବିଷୟରେ ତୁମକୁ ଏତେଗୁଡ଼ାଏ କହିବାର କାରଣ, ସେ କହୁଥିଲେ ତୁମ ସଙ୍ଗେ ଆସି ଦେଖା କରିବେ ।"

"ଆମେ ତ ପ୍ରାୟ ସବୁଦିନେ ବେଲ୍ଟଣ୍ଡ୍ କମ୍ପାନୀରୁ ଜିନିଷ ମଗାଉଁ ।"

"କିଣ ବା ନ କିଣ, ସେଥିରେ ମୋର ଯାଏ ଆସେ କେତେ ? ଆଜି ସକାଳେ ମୋତେ ଯେମିତି ଲାଗୁଛି, ମିଷ୍ଟର୍ ବଗର୍‌ଙ୍କୁ ଯଦି ତାହାଁରୁ ଭଲ ଲାଗୁଥିବ, ତେବେ ହୁଏତ ସେ ତାଙ୍କ ଜିନିଷ ପାଇଁ ଢୋଲ ପିଟିବାକୁ ବାହାରି ପଡ଼ିବେଣି । ଏଥାନ୍, ମୋତେ ଗ୍ଲାସେ ପାଣି ଦେବ ? ସେଥିରେ ଦୁଇଟା ହଜମି ବଟିକା ପକାଇଲେ ଭଲ ହୁଅନ୍ତା ।"

ଏଥାନ୍ ଗୋଦାମ ଘର ଭିତରେ ପଶିଲେ, ଟ୍ୟାପ୍‌ରୁ ଗୋଟାଏ ବଡ଼ କପ୍‌ରେ କପେ ପାଣି ଆଣି ବଢ଼ାଇ ଦେଲେ ; ମାର୍ଗି ସେଥିରେ ନିଜ ପକେଟରୁ କାଢ଼ି ତିନଟା ହଜମି ବଟିକା ପକାଇ, ସେଁ ସେଁ ହୋଇ ସେ ବଟିକା ଗୁଡ଼ାକ ପିଗିଳିବାକୁ ଟିକିଏ ଅପେକ୍ଷା କରି, କପ୍‌ଟି ଯାକ ପାଣି ପିଇ ଦେଇ କହିଲେ, "କରି, ଏଥର ବଟିକାମାନେ ତମର କାମ ।"

ଏଥାନ୍ ପଚାରିଲେ, "ମୁଁ ଶୁଣୁଛି, ତୁମେ ଆଜ ଆମ ଘରକୁ ଯାଇ ମେରିଙ୍କ ଭାଗ୍ୟ ଗଣନା କରିବ ।"

"ଆରେ ବାପ୍‌ରେ ! ମୁଁ ତ ସେକଥା ଏକରକମ ପାସୋରି ଦେଇଥିଲି । ମୋତେ ଏ ଭାଗ୍ୟଗଣନା କାର୍ଯ୍ୟରେ ଭଲ କରି ଲାଗିଯିବାକୁ ପଡ଼ିବ । ଅନ୍ୟମାନଙ୍କର ଭାଗ୍ୟ ଗଣୁ ଗଣୁ ମୋର ଭାଗ୍ୟ ବି ଗଢ଼ି ପାରିବ ।"

"ମେରିଙ୍କର ତ ଭାଗ୍ୟଗଣନାରେ ଭାରି ବିଶ୍ୱାସ । ତୁମ ଗଣନା କ'ଣ ନିର୍ଭୁଲ୍ ହୁଏ ?"

"ଏଥିରେ ଭୁଲ ଠିକ୍‌ର କଥା ଇ ନାହିଁ । ଯାହାଙ୍କ ଭାଗ୍ୟ ଗଣନା କରିବ—ବିଶେଷ କରି ସ୍ତ୍ରୀ ଲୋକମାନଙ୍କର—ଆଗ ତାଙ୍କ କଥା ଭଲ କରି ଶୁଣିବ ; ତା' ପରେ ତାଙ୍କର ମନର କଥା ତାଙ୍କୁଇ ଶୁଣାଇଦେବ —ତାଙ୍କର କଥା ତୁମ ମୁହଁରୁ ଶୁଣି ସେମାନେ ବିଚାରିବେ, ସତେ ଯେମିତି ତୁମର ଯାଣୀ ଶକ୍ତି ଅଛି ।"

"ଆଚ୍ଛା, ଅଜଣା ଅଶୁଣା ପୁରୁଷ ଲୋକଙ୍କର ଭାଗ୍ୟ ଗଣନା କରିବାକୁ ପଡ଼ିଲେ, ପାରିବ ନାହିଁ ?"

"ସେ କଥା ସେମିତି ସେମିତି । ଯଦି ପୁରୁଷ ଲୋକଙ୍କର ଭାଗ୍ୟ ମୁଁ ଠିକ୍ ଭାବେ ଗଣନା କରି ପାରୁଥାନ୍ତି, ତେବେ ଏବେ ଯେପରି ବ୍ୟବସ୍ଥା ହେଉଛି ସେପରି ହେଉ ନ ଥାନ୍ତା । ଦୁଇଟା ଲୋକଙ୍କର ଭାଗ୍ୟ ଗଣନା କରି ତ ଭୁଲ୍ କରିବାରେ ଭାଇ !"

"ତୁମର ପ୍ରଥମ ସ୍ୱାମୀ ପରା ମରିଗଲେ ?"

"ନା, ନା, ମରିଛନ୍ତି ମୋର ଦ୍ୱିତୀୟ ସ୍ୱାମୀ । ସଇତାନର ସନ୍ତାନ ସେ । ଥାଉ, ଗଲା କଥା ଗଲାଣି; ତାଙ୍କ ଆତ୍ମାର ସଦ୍‌ଗତି ହେଉ ।"

ଏତିକିବେଳେ ବୟସ୍କା ମିସେସ୍ ଏଜେକ୍‌ଜନ୍‌ସ୍‌କି ଆସି ପହଞ୍ଚିଲେ । ଏଥାନ୍ ତାଙ୍କୁ ବିନୀତ ଭାବେ ସ୍ୱାଗତ କଲେ ଓ ତାଙ୍କୁ ଦୁଇ ଛଟାଙ୍କି ମାଦ

ମାଖନ ଦେଉ ଦେଉ ଘଡ଼ିଏ ସମୟ ନେଲେ ; ପାଗ ବିଷୟରେ ପଦେ ଦ’ପଦ ପ୍ରଶସ୍ତି ମଧ୍ୟ ଶୁଣାଇଲେ । ମାର୍ଗି ଯୁଙ୍ଗ୍-ହାଣ୍ଟ୍ ଏକାନ୍ତରେ ଆରାମ କରି ବସିଥାନ୍ତି ଓ ମୁଡ଼ୁକି ମୁଡ଼ୁକି ହସି କ୍ୟାସ୍ ରେଜିଷ୍ଟର୍ ପାଖରେ ଥାକରେ ରଖା ହୋଇଥିବା କ୍ୟାଭିଆର୍ ମଦର ବୋତଲ ଓ ଅନ୍ୟାନ୍ୟ ବହୁମୂଲ୍ୟ ସାମଗ୍ରୀ ଆଡ଼କୁ ଚାହିଁ ରହିଥାନ୍ତି ।

ବୃଦ୍ଧା ଶ୍ଳଥପଦରେ ଟଳିଟଳି, ପୋଲିସ୍ ଭାଷାରେ କ’ଣ ଗୁଡ଼ାଏ ବଡ଼ ବଡ଼ କରି କହି ଦୋକାନରୁ ବାହାରି ଯିବା ପରେ ମାର୍ଗି କହିଲେ, “ବେଶ୍, ବର୍ତ୍ତମାନ—”

ଏଥାନ୍ ପଚାରିଲେ, “କଣ, ବେଶ୍ ବର୍ତ୍ତମାନ ?”

ମାର୍ଗି କହିଲେ, “ଏଇ ଭାବୁଥିଲି—ସ୍ତ୍ରୀ ଲୋକମାନଙ୍କୁ ମୁ ଯେପରି ଚିହ୍ନିଛି, ପୁରୁଷମାନଙ୍କୁ ଯଦି ସେଇପରି ଚିହ୍ନି ପାରନ୍ତି, ତେବେ ମୁଁ ‘ସର୍ବଜ୍ଞ’ ବୋଲି ଦୁଆର ମୁହଁରେ ଗୋଟାଏ ସାଇନ୍‌ବୋର୍ଡ଼ ଟାଙ୍ଗି ଦିଅନ୍ତି । ଏଥାନ୍ ! ପୁରୁଷକୁ ଚିହ୍ନିବାକୁ ମୋତେ ତୁମେ ଟିକିଏ ଶିଖାଇଲେ ହୁଅନ୍ତା ନାହିଁ ?”

“ପୁରୁଷଙ୍କୁ ଯଥେଷ୍ଟ ଚିହ୍ନିଛ ତୁମେ । ବୋଧହୁଏ, ଯେତିକି ଜାଣି-ବାର କଥା, ତହିଁରୁ ବହୁତ ବେଶି ।”

“ଥାଉ, ଥାଉ, କେଡ଼େ ମୂର୍ଖାଣ୍ଡି କଥା କହ ଯେ ତୁମେ !”

ଏଥାନ୍ କହିଲେ, “ମେରିଙ୍କର ଭାଗ୍ୟ ଗଣନା କରିବାକୁ କ’ଣ ଏଇ ସାଙ୍ଗେ ସାଙ୍ଗେ ବାହାରିବ ?”

“ନା, ଦିନେ କେବେ ଫାଙ୍କାବେଳେ ସେ କାମ ହେବ ।”

ଏଥାନ୍ କହିଲେ, “ବେଶ୍, ପାଂଚଜଣିଏ ବସି ଆଲୋଚନା କରିବ—ମେରି, ତୁମେ ଓ ଆମର ପିଲି ଦୁହେଁ । ଆଲୋଚ୍ୟ ବିଷୟ ହେବ—‘ପୁରୁଷ ଜାତି ; ସେମାନଙ୍କ ଦୁର୍ବଳତା ଓ ନିର୍ବୋଧତା—ସେମାନଙ୍କୁ ନାରୀ ଜାତିର ସ୍ୱାର୍ଥରେ ଲଗାଇବାର ପ୍ରକୃଷ୍ଟ ପନ୍ଥା’ ।”

ମାର୍ଗି ଏ କଥା ନ ଶୁଣିଲି ପରି କହିଲେ,“ଦେଖ, ବେଶି ଗପିଡ଼ା ଏ କେବେହେଁ କାମ କରିବ ନାହିଁ । ମାସ ଶେଷରେ ହିସାବ ବାହାର କରିବାକୁ ତ ଭାରି ପରିଶ୍ରମ ପଡ଼ୁଥିବ !”

“ହିଁ, ମୁଁ ଖାତା ପତ୍ର ଘରକୁ ନେଇଯାଏ, ରାତିରେ କାମ କରିବାକୁ ।

ମାର୍ଗି ମୁଣ୍ଡ ଉପରକୁ ହାତ ଟେକି ନିଜ କେଶ ଭିତରେ ଆଙ୍ଗୁଠି ଚଳାଉ ଚଳାଉ ପଚ୍ଛରିଲେ, "ରାତିରେ ଘରେ କାହିଁକି କାମ କର ?"

ଏଥାନ୍ ଉତ୍ତର ଦେଲେ, "ହଗୁଡ଼ ପିଲାଙ୍କୁ କାହିଁକି ଗୁହ୍ଣୁଛ ବୋଲି ବିରାଡ଼କୁ ପଚ୍ଛରିଲେ ସେ ଯେଉଁ ଉତ୍ତର ଦିଅନ୍ତା, ମୋର ବି ସେଇ ଉତ୍ତର ।"

ମାର୍ଗି ସେ ପ୍ରସଙ୍ଗ ଛାଡ଼ି ପଚ୍ଛରିଲେ, "ମୋତେ ଶିଖାଇବାକୁ ହେଲେ ତୁମେ କ'ଣ ଶିଖାନ୍ତ, କହ ।"

ଏଥାନ୍ କହିଲେ, "ହଉ ତେବେ ଶୁଣ ।—ତା'ପରେ ସେମାନେ ତାଙ୍କୁ ବନ୍ଦୀ କଲେ ; ତାଙ୍କ ଦେହରୁ ପୋଷାକ କାଢ଼ି ଦେଇ ତାଙ୍କୁ ତାଙ୍କର ସାବକ ଜନା ପିନ୍ଧାଇ ଦେଲେ ଏବଂ ତାଙ୍କୁ କ୍ରୁଶ୍-ବଦ୍ଧ କରିବାକୁ ନେଇଗଲେ । ଗଲା ବେଳେ ସେମାନେ ସିରନ୍‌ର ଜଣେ ଲୋକକୁ ଦେଖିଲେ ; ତା ନାମ ସାଇମନ୍ । କ୍ରୁଶ୍ ବୋହିବାକୁ ତା'ର ମୁଣ୍ଡରେ ଲଦିଲେ । ତା'ପରେ ସେମାନେ ଆସିଲେ ଗଲ୍‌ଗୋଥା ନାମକ ସ୍ଥାନକୁ—ସେଠାରେ ମଲା ମଣିଷଙ୍କ ଖପୁରି—"

"ତୁମକୁ ଭଗବାନ୍‌ଙ୍କ ଦୁହାଇ, ଏ କଥା ବନ୍ଦ କର ।"

"ବନ୍ଦ କରିବି କାହିଁକି ? ଏ କଥା ଯେ ନିରାଟ ସତ୍ୟ ।"

"ତୁମେ କେଉଁ ବେହେଲ ପ୍ରକୃତିର ଲୋକ, ନିଜେ ବୋଧହୁଏ ଜାଣ ନାହିଁ ?"

"ହଁ, ଗୋ ! ଆଉ ତୁମେ ଜେରୁଜେଲମ୍‌ର ନିଷ୍ପାପ କନ୍ୟା !"

ହଠାତ୍ ମାର୍ଗି ହସି ପକାଇଲେ ; କହିଲେ, "ଜାଣ ନା, ମୁଁ ବର୍ତ୍ତମାନ କ'ଣ କରିବି ? ମୁଁ ଏଇ ସକାଳେ ଜଣେ ଦୁର୍ବୃତ୍ତ ଲୋକର ଭାଗ୍ୟ ଗଣନା କରିବାକୁ ଯାଉଛି ; ସେ ତୁମେ । ତୁମେ ବୋଧହୁଏ ଜାଣ ନାହିଁ ଯେ, ତୁମେ ଜଣେ ଖୁବ୍ ବଡ଼ ଲୋକ ହେବ । ତୁମେ ହେବ ଲୋକ-ନାୟକ । ତୁମ ହାତ ଯେଉଁଥିରେ ବାଜିଯିବ, ସେ ସୁନା ପାଲଟି ଯିବ ।" ଏହା କହି ମାର୍ଗି ତରତର ହୋଇ ସଦର ଦରଜା ପାଖକୁ ଚାଲିଗଲେ ଓ ପୁଣି ଫେରିପଡ଼ି ଦାନ୍ତ ନିକିଟି କହିଲେ, "ମୁଁ ବାଜି ପକାଉଛି, ଏକଥା ସତ କି ନୁହେଁ ପରୀକ୍ଷା କର ; ଏ କଥା ମିଛ ବୋଲି ପ୍ରମାଣ କରିବାକୁ ଚେଷ୍ଟା କର । ହଉ, ବିଦାୟ ନେଉଛି, ମହାତ୍ମନ୍ !" ଅଭିମାନରେ ଚମତ୍କାର

ହୋଇ ଯାଉଥିବା ମାର୍ଗିଙ୍କର ପଦଶବ୍ଦ ସଡ଼କ କଡ଼ର ପକା ଚଟାଣରେ ବଡ଼ ବିକଟାଳ ଶୁଭୁଥାଏ ।

ଦଶଟା ବେଳକୁ ଦୋକାନର ନିର୍ଜନତା ସଂପୂର୍ଣ୍ଣ ଭାଙ୍ଗିଗଲା । ବ୍ୟାଙ୍କ୍‌ର ପ୍ରକାଣ୍ଡ କାଚ କବାଟ ଖୋଲିଗଲା ଓ ମଣିଷ ସୁଅ ପରି ବ୍ୟାଙ୍କ୍ ଭିତରେ ଚେକ୍ ଭଙ୍ଗାଇ ଟଙ୍କା ଆଣିବାକୁ ପଶି, ଟଙ୍କା ଧରି ବାହାରିଲେ ଓ ଟଙ୍କା ଧରି ପଶିଲେ ମେରୁଜୋଙ୍କ ଷ୍ଟୋର୍‌ରେ—ଇଷ୍ଟର୍ ଉପଲକ୍ଷେ ସୁନ୍ଦର ସୁନ୍ଦର ଖାଦ୍ୟ ସାମଗ୍ରୀ କିଣିବା ପାଇଁ । ଦି'ପହର ପର୍ଯ୍ୟନ୍ତ ଏଥାନ୍ ଧଇଁସଇଁ ହୋଇ ସେମାନଙ୍କ ତାଗଦା ତୁଲାଇବାରେ ଲାଗିଲେ ।

ଟାଉନ୍‌ହଲ୍ ଗମ୍ବୁଜରୁ ପିଟାଘଣ୍ଟା ବଜ୍ରନିର୍ଘୋଷରେ ଦିନ ଦିପହର ସୂଚାଇ ଦେଲା । ଗ୍ରାହକମାନେ ସିଝା ମାଂସର ନାନାବିଧ ଖାଦ୍ୟସାମଗ୍ରୀ ଧରି ଗୋଟି ଗୋଟି ହୋଇ ଚାଲିଗଲେ । ଏଥାନ୍ ଷ୍ଟୋର୍ ଦୁଆର ମୁହଁରୁ ସଜ ଫଳର ଅଡ଼ାଗୁଡ଼ିକ ଭିତରକୁ ଆଣି ବାହାର ଦୁଆର ସବୁ ବନ୍ଦ କରି ଦେଲେ । ତା'ପରେ ସମଗ୍ର ପୃଥିବୀ ଉପରେ ଓ ତାଙ୍କ ଉପରେ ଅନ୍ଧକାର ଘୋଟିଗଲା—ଏହାରି ସଙ୍କେତ ସ୍ୱରୂପ ସେ ଦୁଆର ଓ ଝରକାମାନଙ୍କର ମୋଟା ସାବ୍‌ଜା ପରଦା ସବୁ ଟାଣି ଦେଲେ—ଷ୍ଟୋର୍ ଅନ୍ଧାର ହୋଇଗଲା । କେବଳ କାରବାର ଟେବୁଲ୍ ଉପରେ ଥିବା ନିଅନ୍ ଆଲୁଅରୁ ବିସଦୃଶ ସବୁଜ ଆଲୋକ ବିଚ୍ଛୁରିତ ହେଉଥାଏ ।

ସେଇ ଟେବୁଲ୍ ପାଖରେ ବସି ଏଥାନ୍ ଚାରିଖଣ୍ଡ ରାଇ-ରୋଟି ଟୁକୁରା କାଟିଲେ ଓ ସେଥିରେ ଖୁବ୍ ବହଳ କରି ମାଖନ ମାଖିଦେଲେ । ତା'ପରେ ଶୀତଳ ଭଣ୍ଡାରର ଦୁଆର ଖୋଲି ସ୍ୟାଣ୍ଡ୍‌ଉଇଚ ପାଇଁ ପ୍ରସ୍ତୁତ ହୋଇ ରହିଥିବା ଦୁଇଚାରୁଡ଼ା ସୁଇଜରଲାଣ୍ଡ୍ ଛେନା, ଦୁଇ ଟୁକୁରା ଘୁଷୁରିମାଂସ ବାହାର କଲେ ; ଗୋଟାଏ ଗୀତ ଯୋଡ଼ି ଗାଇଲେ, "ଶାକସବଜି ସାଙ୍ଗକୁ ଛେନା, ବିଭା ହେଲେ ପୁତା ଗଛକୁ ଅନା ।" ରୋଟିର ଉପର ଟୁକୁରା ପଛପଟେ ଗୋଟିଏ ଜାର୍‌ରୁ ଜେଲି ବାହାର କରି ଲଗାଇ ରୋଟି ଟୁକୁରା ଦୁଇଟିକୁ ଏକାଠି ଚାପି ଦେଲେ ଓ ବାହାରକୁ ବାହାରି ପଡ଼ିଥିବା ଶାକସବଜି ଓ ମାଂସର ଅଗ ସବୁ କାଟି ସମାନ କରିଦେଲେ । ବୋତଲେ ଦୁଧ ବାହାର କରି ସ୍ୟାଣ୍ଡ୍‌ଉଇଚକୁ ପ୍ୟାକ୍ କରିବାକୁ ଖଣ୍ଡେ ମହମ କାଗଜ କାଢ଼ିଲେ । ସ୍ୟାଣ୍ଡ୍‌ଉଇଚ୍ ପ୍ୟାକ୍ କରୁଛନ୍ତି, ଏଇ ସମୟରେ ସଦର ଦରଜାର ଚାବି

ଫିଟିବାର ଟୁକ୍ ଟୁକ୍ ଶବ୍ଦ ହେଲା ଓ ମ୍ୟାରୁଲେ ଷ୍ଟୋର ଭିତରକୁ ପଶି ଆସିଲେ । ମ୍ୟାରୁଲେ ଭଦ୍ରଲୋକଟି ଖଲୁପର ଧୂଷୁର ଧୂମ୍ରା, ଗୁଡ଼ିଟା ଗୋଟାଏ ବସ୍ତା ପରି ଏତେ ମୋଟା ଯେ ହାତ ଦୁଇଟା ଗଣ୍ଡିରୁ ବାହାରି ସାନ ସାନ ଶିଙ୍ଘ ପରି ଲଡ଼୍ ଲଡ଼୍ ହେଉଥାନ୍ତି । ଟୋପିଟା ମୁଣ୍ଡର ପଛପଟେ ଲଖିଥାଏ, ମୁଣ୍ଡ ଉପରର ଧଳାବାଳଗୁଡ଼ିକ ଦିଶୁଥାଏ ଟୋପି ପରି । ମ୍ୟାରୁଲେଙ୍କ ଚକ୍ଷୁ ଦୁଇଟି ଆର୍ଦ୍ର ଓ ନମ୍ରାକ୍ତ ଦିଶୁଥିଲେ ହେଁ ତାଙ୍କ ଚତୁର ବୁଦ୍ଧିର ସୂଚନା ଦେଉଥାଏ । ସୁନା ଗୁଡ଼ଣି ହୋଇଥିବା ତାଙ୍କ ସମ୍ମୁଦନ୍ତ ଦୁଇଟା କାଉଣ୍ଟର ଟେବୁଲ୍‌ର ନିଅନ୍ ଆଲୁଅରେ ଚକ୍ ଚକ୍ ଦିଶୁଥାଏ । ତାଙ୍କ ପ୍ୟାଣ୍ଟ୍‌ର ଓପର ବୋତାମ ଦୁଇଟା ଖୋଲା ଥିବାରୁ ଭିତରର ମୋଟା ଧଳା ଅନ୍ତର୍ବାସ ଫୁଟି ଦିଶୁଥାଏ । ପେଟତଳେ ପ୍ୟାଣ୍ଟ୍‌ର କମର୍‌ବନ୍ଧ ସନ୍ଧିରେ ସେ ତାଙ୍କ ଗ୍ଲୋଟ ଗ୍ଲୋଟ ଆଙ୍ଗୁଠି ଦୁଇଟା ଭର୍ତ୍ତି କରିଥାନ୍ତି ଓ ଅନ୍ଧାରିଆ ଘରଭିତରେ ଆଖି ମିଟିମିଟି କରୁଥାନ୍ତି ।

ଏଥାନ୍ ତାଙ୍କୁ ଦେଖି ଅଭିବାଦନ କଲେ, "ସୁପ୍ରଭାତ, ମିଷ୍ଟର ମ୍ୟାରୁଲେ ! ହ'ପହର ଗଡ଼ି ଗଲାଣି ବୋଧହୁଏ !"

"ହଁରେ, ଟୋକା ! ଖୁବ୍ ଶୀଘ୍ର ଦୋକାନ ବନ୍ଦ କରି ଦେଲୁଣି ଦେଖୁଛୁ ।"

"ଶୀଘ୍ର କାହିଁକି ହୁଅନ୍ତା ? ସହରର ସବୁ ଦୋକାନ ବନ୍ଦ ହୋଇ ସାରିଲାଣି, ମୁଁ ତ ବସିରହିଛି, ଆପଣ ଏତେବେଳେ ପ୍ରଭୁ ଯିଶୁଙ୍କ ଶେଷ-ଭୋଜନର ସ୍ମାରକୀରେ ଯୋଗ ଦେଉଥିବେ ।"

"ଆଜି ସେ ସ୍ମାରକୀ-ଉତ୍ସବ ହୁଏ ନାହିଁ । ବର୍ଷକରେ ଆଜି ଦିନଟି ମାତ୍ର ଛୁଟି ।"

"ସତେ ? ମୁଁ ଏକଥା ଜାଣି ନ ଥିଲି । ଆପଣଙ୍କର କ'ଣ ଦରକାର, କହନ୍ତୁ, କରିବ ।"

ମ୍ୟାରୁଲେ ନିଜର ଗ୍ଲୋଟ ମୋଟା ମୋଟା ହାତ ଦୁଇଟି ପ୍ରସାରିତ କଲେ ଓ କହୁଣିଠାରୁ ଦୁଇଚାରିଥର ଏପାଖ ସେପାଖ ହଲାଇ କହିଲେ, "ମୋ ହାତରେ ଭାରି ଯନ୍ତ୍ରଣା ହେଉଛି ରେ, ବାପ ! ବୋଧହୁଏ ଗଣ୍ଠିବାତ ଧରିଲାଣି । ବେଳକୁ ବେଳ ବଢ଼ୁଛି ।"

"ଚିକିତ୍ସାର୍ ଚେଷ୍ଟା କର ନାହାନ୍ତି ?"

"ବହୁତ ପ୍ରତିକାର କଲିଣି । ଗରମ ସେକ ଦେଉଛି, ମଗର ତେଲ ଘଷୁଛି, ବଟିକା ବି ଖାଉଛି । ତଥାପି ଯନ୍ତ୍ରଣାର ଉପଶମ ନାହିଁ ।—ଛାଡ଼ ସେ କଥା । ଦୋକାନଟି ପୂରା ବନ୍ଦ କରିଥିବାରୁ ବେଶ୍ ଥଣ୍ଡା ଲାଗୁଛି ! ଦୁହେଁ ବସି ଟିକିଏ କଥାବାର୍ତ୍ତା ହୁଅନ୍ତେ ବୋଲି ମୋ'ର ମନ । କ'ଣ କହୁଛ, ଟୋକା !" ମ୍ୟାରୁଲୋଙ୍କ ଛାମୁ ଦାନ୍ତ ଦୁଇଟି ବାହାରକୁ ବାହାରି ଚକ୍ ଚକ୍ କଲା !

"କ'ଣ କଛୁ ଅଡ଼ୁଆ ହୋଇଛି ?"

"ଅଡ଼ୁଆ ? ଅଡ଼ୁଆ କାହିଁ ?"

"ଆଚ୍ଛା ହେଉ । ଆପଣ ଅନୁଗ୍ରହ କରି ମିନିଟିଏ ଅପେକ୍ଷା କରନ୍ତୁ । ମୁଁ ଏଇ ସ୍ୟାଣ୍ଡୱିଚ୍ ଦୁଇଟା ବ୍ୟାଙ୍କ୍‌ରେ ଦେଇ ଆସେ । ମିଷ୍ଟର୍ ମର୍ଫି ଏଥିପାଇଁ ବରାଦ କରିଥିଲେ ।"

"ବେଶ୍ ଭଲ ଟୋକାଟିଏ ତୁ ! ଜିନିଷ ନେଇ ଗ୍ରାହକ ପାଖେ ବି ପହଞ୍ଚାଇ ଦେଉଛୁ । ଯେ ତ୍ୱିଂଅସଲ୍ ବ୍ୟବସାୟ ବୁଦ୍ଧି । ବେଶ୍ ଭଲ ।"

ଏଥାନ୍ ଗୋଦାମ ଘରଭିତର ଦେଇ ଗଳି ରାସ୍ତାକୁ ବାହାରିଲେ, ଗଳି ପାର ହୋଇ ବ୍ୟାଙ୍କ୍‌ର ପଛ ଦୁଆରେ ଠକ୍ ଠକ୍ କଲେ । ଜର୍ଫି ଆସିବାରୁ ତାଙ୍କ ହାତକୁ ସ୍ୟାଣ୍ଡୱିଚ୍ ଓ ଦୁଧ ବଢ଼ାଇ ଦେଲେ ।

ଜର୍ଫି କହିଲେ, "ଧନ୍ୟବାଦ ; ଆପଣ ଏତେ କଷ୍ଟ କଲେ କାହିଁକି ?"

"ଯେ ତ ଅସଲ ବ୍ୟବସାୟ ବୁଦ୍ଧି ; ମ୍ୟାରୁଲୋ ଏ କାମକୁ ଖୁବ୍ ପସନ୍ଦ କଲେ ।"

"ଦୁଇଟା କୋକ୍ ମୋ ପାଇଁ ରଖିଥିବେ । ଶୋଷରେ ମୋର ତୋଣ୍ଟି ଶୁଖି ଯାଉଛି ।"

ଏଥାନ୍ ଷ୍ଟୋର୍‌କୁ ଫେରି ଦେଖିଲେ ମ୍ୟାରୁଲୋ ଗୋଟାଏ ଅଳିଆ ଟିଣକୁ ଉଣ୍ଡ଼ୁଛନ୍ତି ।

"ମିଷ୍ଟର ମ୍ୟାରୁଲୋ ! କ'ଣ ପରା କଥାବର୍ତ୍ତା କରିବେ ବୋଲି କହୁଥିଲେ । କେଉଁଠି କଥା ପକାଇବା ?"

"କଥାବାର୍ତ୍ତା ଏଇଠି ଆରମ୍ଭ ହେଉ ।" ଅଳିଆ ଟିଣରୁ ଫୁଲ କୋବି ପତ୍ର କେତୋଟା ଉଠାଇ ସେ କହିଲେ, "ହାଇରେ ଟୋକା ! ମୁଁ ତ ଦେଖୁଛି ବହୁତ ଜିନିଷ ଫୋପାଡ଼ ଦେଉଛୁ !"

"ସକାଳ ବେଳକୁ ଜିନିଷଟା ଠିକଏ ସଫା ଦିଶିବ ବୋଲି କାଟ-ଛାଣ୍ଟ୍ କରିବା ଦରକାର ପଡ଼ୁଛି ।"

"ଫୁଲକୋବି ତ ଓଜନରେ ବିକା ହୁଏ । ସେଥିରୁ ଏତେ ଯଦି ଅଳିଆ ଟୋକେଇକି ଗଲା, ତେବେ ତ ପଇସା ଫୋପଡ଼ା ହେଲା ଜାଣ୍ । ମୁଁ ଗୋଟାଏ ଚଲାକ୍ ଗ୍ରୀକ୍ ଲୋକକୁ ଚିହ୍ନେ । ତା'ର ପ୍ରାୟ କୋଡ଼ିଏଟା ରେସ୍ତୁରାଁ । ସେ କହେ, ଅଳିଆ ଟିଣ ଉପରେ ନଜର ଦେବା ହିଁ ବେପାରରେ ଉନ୍ନତି କରିବାର ପ୍ରଧାନ ସାଧନ । କେଡ଼େ ଚଲାକ୍ ସେ ଲୋକ ! ବାସ୍ତବିକ୍ ଅଳିଆ ଟୋକେଇରେ ଯାହା ଫୋପାଡ଼ିଲୁ, ସେତକ ତ ଆଉ ବିକ୍ରୀ ହେଲା ନାହିଁ !"

ଏଥାନ୍ ଜବାବ୍ ଦେଲେ, "ସେ କଥା ସତ, ମିଷ୍ଟର୍ ମ୍ୟାରୁଲେ !" କିନ୍ତୁ ତାଙ୍କୁ ଘର ଅଡ଼ୁଆ ଅଡୁଆ ଲାଗୁଥାଏ । ସେ ଷ୍ଟୋର୍‌ର ସାମ୍ନା ପଟକୁ ମୁହାଁଇଲେ ; ମ୍ୟାରୁଲେ କହୁଣି ଦୁଇଟାକୁ ଇତସ୍ତତଃ ହଲାଇ ତାଙ୍କ ପଛରେ ଗଲୁଥାନ୍ତି ।"

"ଶାକ ସବ୍‌ଜି ଉପରେ ପାଣି ଛିଞ୍ଚୁଥିବାକୁ କହିଥିଲି ; ଛିଞ୍ଚୁଛୁ ?"

"ହଁ, ସେଥିରେ ହେଳା କରୁନାହିଁ ।"

ମ୍ୟାରୁଲେ ଗୋଟାଏ ଲେଟିସ୍ ଉଠାଇ ଆଣି କହିଲେ, "ହେଇଟି, ଏଇଟା ତ କେଡ଼େ ଶୁଖିଲା ଜଣାଯାଉଛି !"

"ମୁଁ ଏତେ ତଳକୁ ଯାଇ ପାରିବି ନାହିଁ, ମ୍ୟାରୁଲେ ! ଆଉ ଅଧିକ ପାଣି ସଡ଼ ସଡ଼ କରି ମୁଁ ଶାକସବଜି ବିକି ପାରିବି ନାହିଁ । ଏବେ ତ ଯୁା ଭିତରେ ତିନି ଭାଗରୁ ଭାଗେ ପାଣି ପଶିଛି !"

"ବେଶୀ ମୁନ୍ଦେଏ ପାଣି ଛିଞ୍ଚିଲେ, ପରିବାଟା ତାଜା ଦିଶେ, ସୁନ୍ଦର ଓ କଅଁଳ ଜଣାପଡେ । ତୁ ବିଗୁଡ଼ୁଛୁ, ମୁଁ ଏ ବେପାରର ସୂତ୍ର ଜାଣେ ନାହିଁ, ନା ? ଗୋଟାଏ ଠେଲା ଗାଡ଼ି ଧରି ମୁଁ ବେପାର ଆରମ୍ଭ କରିଥିଲି—ସବେ ମାତ୍ର ଗୋଟିଏ । ଏ ବେପାର୍‌ର ମୂଳରୁ ଅଗଯାଏଁ ମୋତେ ସବୁ ଜଣା । ବେପାରର ସୂତ୍ରଟି ନ ଜାଣିଲେ, ହାରିଯିବୁରେ, ବାପ ! ଜାଣିଥା ! ଆଚ୍ଛା, ଆମେ ଯେଉଁ ମାଂସ କିଣୁଥାଇଁ, ସେଥିକୁ ତ ଖୁବ୍ ଚଢ଼ା ଦାମ ଦେଉଥାଇଁ ।"

"ଆମ ମାଂସ ଏକ ନମ୍ବର ମାଂସ ବୋଲି ଯେ ପ୍ରଚ୍ଛର କରୁଥାଇଁ !"

"ଏକ ନମ୍ବର, ଦୁଇ ନମ୍ବର ତିନନମ୍ବର ଦେଖୁଛୁ କିଏ ? ଖାଲି କାର୍ଡ୍‌ରେ ଲେଖା ହୋଇ ରହିବା ଇ ସାର । ଦେଖୁଛୁ, ଅନେକ ବିଷୟରେ ତୋ'ର ଶିଖିବାର ଅଛି । ଗୁଡ଼ାଏ ଟଙ୍କା ତ ବାକି ପଡ଼ୁଛି, ଦେଖୁଛୁ । ଯେଉଁ ଲୋକ ମାସ ସରିବାର ପନ୍ଦର ଦିନ ଭିତରେ ପଇସା ଚୁକ୍ତି ନ କରୁଛି, ସେପରି ଲୋକକୁ ଧାରି ଦେବା ବନ୍ଦ କରି ଦେ ।"

"ସେ କଥା ଚଳିବ ନାହିଁ । ଯୁାଙ୍କ ଭିତରୁ ଅନେକେ ଆମ ଦୋକାନରୁ କୋଡ଼ିଏ ବର୍ଷ ହେଲା କାରବାର କରୁଛନ୍ତି ।"

"ଆରେ ଟୋକା, ମୋ କଥା ଶୁଣ୍ । ଆମ ସାମଗ୍ରୀରେ ବଡ଼ ଧରଣର କାରବାର କରୁଥିବା ମସ୍ତବଡ଼ ଦୋକାନମାନେ, ଜନ୍ ଡ଼ି. ରକ୍‌ଫେଲର୍‌ଙ୍କ ପରି ମହାଜନଙ୍କୁ ବି ମୁହାଁଳିଜା ଦେଖାନ୍ତି ନାହିଁ ।"

"ଆମ ସଙ୍ଗେ ଯେଉଁ ଗ୍ରାହକମାନେ ବାକି କାରବାର କରୁଛନ୍ତି, ସେମାନେ ପ୍ରାୟ ସମସ୍ତେ ଭଲ ଲୋକ । ତାଙ୍କ ଉପରେ ଟଙ୍କା ବୁଡ଼ିବ ନାହିଁ ।"

"ଆରେ, ଭଲ ଲୋକ ମନ୍ଦ ଲୋକରେ ଆମର କ'ଣ ଅଛି ? ଟଙ୍କା ତ ପଡ଼ି ରହୁଛି ! ବଡ଼ ବଡ଼ ଦୋକାନମାନେ ଗାଡ଼ି ଗାଡ଼ି ଜିନିସ କିଣୁଛନ୍ତି । ସେମାନେ ବାକି ଦେଲେ ତାଙ୍କର କ୍ଷତି ହେବ ନାହିଁ । କିନ୍ତୁ ଆମର ତ ଛୋଟିଆ କାରବାର । ମୂଳଧନ ଯେତିକି ଫେର୍‌ଫାର୍ ହେବ ଆମର ସେତିକି ଲାଭ । ତୋ'ର ବହୁତ ଶିଖିବାକୁ ଅଛିରେ, ବାପୁ ! ଭଲ ଲୋକ ବୋଲି କହି ଟଙ୍କା ବାକି ପକାଉଛୁ ! ଆମ ସୁନା କ'ଣ ଭେଣ୍ଡି ? ଗ୍ରାହକ ଯେମିତି ଭଲ ଲୋକ, ଆମ ଟଙ୍କା ସେମିତି ଭଲ ଧନ । ଆପଣା ଧନକୁ ଚାହିଁବା ନା ଗ୍ରାହକର ମୁହଁକୁ ଚାହିଁବା, କହିଲୁ ? ଆଉ ହେଇଟି, ଅଳିଆ ଟୋକେଇରେ ଏତେ ମାଂସ ଟୁକୁରା ଫୋପଡ଼ା ହେଉଛି କାହିଁକି ?"

"ସେ ଗୁଡ଼ାକ ଖାଲି ଚର୍ବି, ବା ଉପରର ଶୁଖିଲା ଚମ୍ଡ଼ା ।"

"ହଉ, ଆଗ ମାଂସକୁ ଓଜନ କରି ସାରି, ତା'ପରେ କାଟ୍‌ଛାଣ୍ଟ୍ କରି ଦେଲେ ତ ଚଳିବ ! ଏକନମ୍ବର ଜିନିସ ଯେତେବେଳେ ଦେଉଥାଇଁ, ଓଜନରେ ନ ଜିଗିଲେ ମୂଲ ଉଠିବ କୁଆଡ଼ୁ ? ତୋର ବହୁତ ଶିଖିବାକୁ ଅଛିରେ, ଟୋକା !" ଏତେବେଳକୁ ମ୍ୟାରୁଲୋଙ୍କ ସୁନାଛାଉଣି ଘୁମୁହାନ୍ତ ଆଉ ଦିଶୁ ନ ଥାଏ ; ଓଠ ଦୁଇଟା ଚୁପ୍ ଚପି ହୋଇ ଯାଇଥାଏ ।

ଅଜାଣତରେ ଏଥାନ୍ କ୍ରୋଧରେ ଜର୍ଜରିତ ହୋଇ ଗଲେ ଓ ଯାହା କହିଲେ ସେଥିରେ ସେ ନିଜେ ଚକିତ ହୋଇ ପଡ଼ିଲେ । ସେ କହି ପକାଇଲେ, "ମ୍ୟାରୁଲେ ! ମୁଁ ଏମିତି ଠକେଇ କାମ କରି ପାରିବି ନାହିଁ ।"

"ଠକେଇ କାମ କର ବୋଲି କିଏ କହୁଛି ? ବେପାରରେ ସାବଧାନ ହେବାକୁ ହେବ । ଜଗି ରଖି ବେପାର କଲେ ଯାଇ ବେପାର ଚଳିବ, ରହିବ । ଆଚ୍ଛା, ମିଷ୍ଟର୍ ବେକର୍ ତ ହେଉଛି ବେପାର କରୁଛନ୍ତି ! ସେ କ'ଣ ମାଗଣାରେ ନମୁନା ବାଣ୍ଟୁଛନ୍ତି ?"

ଏଥାନ୍‌ଙ୍କ ମୁଣ୍ଡ ଏକାବେଳକେ ଗରମ ହୋଇଗଲା । ସେ ଚିତ୍କାର କରି କହିଲେ, "ଶୁଣ ମୋ କଥା । ଆମ ହ'ଲି ବଂଶ ଏ ସହରରେ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରୁ ଆସି ରହିଲେଣି । ତୁମେ ବିଦେଶୀ ଲୋକ, କାଲି ବୋଇଲେ କାଲି ଆସିଛ । ଆମ ବଂଶ କଥା ତୁମେ ଜାଣିବ କୁଆଡ଼ୁ ? ଆମେ ଆରମ୍ଭରୁ ଆମ ପଡ଼ଶା ଲୋକଙ୍କ ସାଙ୍ଗେ ଭଲଭାବରେ ଚଳାଚଳ କରି ରହିଛୁ । ତୁମେ କାଲି ସିସିଲିରୁ ଭାସି ଆସି ଆମର ଗୃହଚଳନ ସବୁ ବଦଳାଇ ଦେବ ବୋଲି ଭାବୁଛ, ନା ? ସେକଥା ଘଟିବ ନାହିଁ । ମୋ'ର ଏଇ ଗୃହକରିଟା ତ ! ଏଇଟା ନେଇଯିବ ଯେବେ, ଏଇ ମୁହୂର୍ତ୍ତରେ, ଏଇଠାରେ ନେଇପାର । ହଁ, ଆଉ ଗୋଟିଏ କଥା । ମୋତେ 'ଡୋକା' ବୋଲି କହିବା ଚଳିବ ନାହିଁ ; କହିଲେ ଏକ ଘୁଷି ମାରି ତୁମ ନାକ ଉଡ଼ାଇ ଦେବି ।"

ଖାଲି ସୁନା ଗୁଡ଼ଣି ହୋଇଥିବା ଗ୍ରାମ୍ଭ ଦାନ୍ତ ଯୋଡ଼ିକ ନୁହେଁ, ମ୍ୟାରୁଲେଙ୍କ ଦୁଇ ଭାଡ଼ପାକ ଦାନ୍ତ ନିଅନ୍ ଆଲୁଅରେ ଏଥର ଦିଶିଗଲା । ସେ କହିଲେ, "ଆଚ୍ଛା, ବେଶ୍, ବେଶ୍, ଏମିତି ପାଗଳ ପରି ହୁଅନାହିଁ । ମୁଁ ତୁମର ଉପକାର କରିବାକୁ ବସିଥିଲି ମାତ୍ର ।"

ଏଥାନ୍ ଉତ୍ତର ଦେଲେ, "ମୋତେ ଡୋକା ବୋଲି କହି ପାରିବ ନାହିଁ । ଆମ ବଂଶ ଏ ସହରରେ ଦୁଇଶହ ବର୍ଷ ହେଲା ରହିଲେଣି ।" ଏ କଥାଗୁଡ଼ାକ ନିଜେ ଏଥାନ୍‌ଙ୍କୁ ବି ବଡ଼ ପିଲାଳିଆ ଜଣା ପଡ଼ିଲା ଓ ତାଙ୍କ ମନରୁ ସବୁତକ ରାଗ କୁଆଡ଼େ ଉଭେଇଗଲା ।

ମ୍ୟାରୁଲେ କହିଲେ, "ମୁଁ ଭଲ ଇଂରେଜ କହି ପାରୁନାହିଁ । ତୁମେ ମୋର ଏଇ ମ୍ୟାରୁଲେ ସାଂଙ୍ଗିକୁ ଇଟାଲୀୟ ନାମ ବୋଲି, ଗିନି, ଡାଗୋ

ଓ ଓ୍ୱେଲ୍ସ ନାମ ବୋଲି ତାଚ୍ଛଲ୍ୟ କରୁଛ । କିନ୍ତୁ ମୋର ଏଇ ନାମ, ସାଂଙ୍ଘା ହୁଏତ ଦୁଇ କି ତିନିହଜାର ବର୍ଷର ପୁରୁଣା ସାଂଙ୍ଘା । ମ୍ୟାରୁଲସ୍ ରୋମୀୟ ନାମ । ଭ୍ୟାଲେରିଅସ ମ୍ୟାକ୍ସିମସ୍ ତାଙ୍କ ଇତିହାସରେ ଏ ନାମର ଉଲ୍ଲେଖ କରିଛନ୍ତି । ମୋ' ନାମ ଆଗରେ, ତୁମର ମାତ୍ର ଦୁଇଶ ବର୍ଷର ଐତିହ୍ୟ ଥିବା ନାମର କି ତୁଳନା ବା ହୋଇ ପାରେ !"

ଏଥାନ୍ ପ୍ରତିବାଦ କଲେ, "ଯେତେ ପୁରୁଣା ନାମ ହେଉ ପଛେ, ତୁମେ ତ ଏଠାର ସ୍ଥାୟୀ ଲୋକ ନୁହଁ ।"

ମ୍ୟାରୁଲେ କହିଲେ, "ଦୁଇଶହ ବର୍ଷ ପୂର୍ବେ ତୁମେ ବି ଏଠାର ସ୍ଥାୟୀ ବାସିନ୍ଦା ନ ଥିଲ ।"

ଏତେବେଳକୁ ଏଥାନ୍‌ଙ୍କର କ୍ରୋଧ ନିଃଶେଷ ହୋଇଥାଏ ଓ ତାଙ୍କ ମନରେ ଏପରି ଗୋଟିଏ ଭାବ ଆସିଥାଏ, ଯେଉଁ ଭାବ ପ୍ରଭାବରେ ସେ ନିଜ ବ୍ୟକ୍ତିତ ଅନ୍ୟ ସମସ୍ତ ବାହ୍ୟ ବସ୍ତୁର ବାସ୍ତବତା ବିଷୟରେ ସନ୍ଦିହାନ ହୋଇଥାନ୍ତି । ତାଙ୍କ ଦୃଷ୍ଟିରେ ବିଦେଶାଗତ ଗିନି ଫଳବାଲାଙ୍କର ଘଟି ପରିବର୍ତ୍ତନ ହୋଇଗଲା । ମ୍ୟାରୁଲେଙ୍କର ଗମ୍ବୁଜାକୃତି କପାଳ, ବୃହତ୍ ଶୁକନାସା, କୋଟରଗତ ଭୟଶୂନ୍ୟ କିନ୍ତୁ ଭୟ-ଉତ୍ପାଦକ ଚକ୍ଷୁଦ୍ୱୟ ଓ ଦୃଢ଼ ମାଂସପେଶି ଉପରେ ସନ୍ନିବିଷ୍ଟ ମସ୍ତକ ଭିତରେ ଆଭିଜାତ୍ୟର ସ୍ୱାକ୍ଷର ସେ ସ୍ପଷ୍ଟ ଭାବରେ ଦେଖି ପାରିଲେ ଓ ବୁଝିଲେ ଯେ, ଏ ସମ୍ଭ୍ରାନ୍ତ ଆଭି-ଜାତ୍ୟ ଯୋଗୁଁ ହିଁ ମ୍ୟାରୁଲେ ବିନୟର ଅଭିନୟ କରିପାରୁଛନ୍ତି । ମ୍ୟାରୁଲେଙ୍କ ଚରିତ୍ରର ଏହି ଆବିଷ୍କାର ଫଳରେ ସେ ଚକିତ ହୋଇଗଲେ ; ମନେ ମନେ ବିଚାରିଲେ, ମ୍ୟାରୁଲେଙ୍କର ଅସଲ ସ୍ୱରୂପ ତ ଏପର୍ଯ୍ୟନ୍ତ ଦେଖି ପାରି ନ ଥିଲି । ଏହିପରି ଆଉ କେତେ କଥା ଦେଖି ପାରିନାହିଁ, ଜାଣି ପାରି ନାହିଁ, କେଜାଣି ?

ନରମ ଗଳାରେ ଏଥାନ୍ କହିଲେ, "ଆପଣଙ୍କୁ ଇଟାଲୀୟ ବୋଲି ଯେ ମୁଁ ଅବଜ୍ଞା କରୁଛି ସେ ଧାରଣା ଠିକ୍ ନୁହେଁ ।"

ମ୍ୟାରୁଲେ ଅବିଚଳିତ ଭାବେ କହି ଗଲିଲେ, "ବେପାର, ଭଲ ବେପାର ତୁମକୁ ମୁଁ ଶିଖାଇବାକୁ ବସିଛି । ତୁମର ମଙ୍ଗଳ ବ୍ୟତୀତ ଅନ୍ୟ କୌଣସି ଉଦ୍ଦେଶ୍ୟରେ ମୁଁ ତୁମକୁ ଏସବୁ କଥା କହୁନାହିଁ । ମୋତେ ଅଠଷଠି ବର୍ଷ ହେଲାଣି; ସ୍ତ୍ରୀ ବିୟୋଗରେ ମୋର ସଂସାର ଭାଙ୍ଗି ସାରିଛି;

ଗଣିବାତ ଯୋଗୁଁ ମୁଁ ସବୁବେଳେ ଯନ୍ତ୍ରଣା ଭୋଗୁଛି । ମୋର ଏ ଅବସ୍ଥାରେ କ'ଣ ବା ସ୍ୱାର୍ଥଚିନ୍ତା ଥାଇପାରେ ? ତୁମକୁ ଭଲ ବେପାର ଶିଖାଉଛି, ତୁମର ସ୍ୱାର୍ଥରେ । ହୁଏତ ତୁମେ ମୋର ଶିକ୍ଷା ଅନୁସାରେ ଚଳି ପାରିବ ନାହିଁ । ଏଭଳି ଅନେକ ଲୋକ ଦେଖିଛି, ଯେଉଁମାନଙ୍କୁ ଶିଖାଇଲେ ବି, ବେପାରରେ କୃତିତ୍ୱ ଅର୍ଜିପାରନ୍ତି ନାହିଁ । ତାଙ୍କର ବେପାର ଗଙ୍ଗାରୁଳ ଯାଏ ।"

ଏଥାନ ଅଭିଯୋଗ କଲେ, "ମୁଁ ଥରେ ବେପାରରେ ଫେଲ୍ ହୋଇଥିଲି ବୋଲି ଆପଣ ସେଇ କଥାଟାକୁ ଉପଲକ୍ଷ୍ୟ କରି ମୋତେ ଥରକୁ ଥର ଏପରି ଚେଙ୍କ ଦେବା ଠିକ୍ ହେଉନାହିଁ ।"

ମ୍ୟାରୁଲେ କହିଲେ, "ଭୁଲ୍ ବୁଝୁଛ । ମୁଁ ତୁମକୁ ତୁମ ଅତୀତ ଯୋଗୁଁ ଖୁମ୍ପୁ ନାହିଁ । ଭବିଷ୍ୟତ୍‌ରେ ଯେପରି ଆଉ କେବେ ବେପାରରେ ଫେଲ୍ ନ ହେବ ସେଇ ଉଦ୍ଦେଶ୍ୟରେ ମୁଁ ବେପାରର ଅବ୍ୟର୍ଥ ସୂତ୍ର ତୁମକୁ ଶିଖାଉଛି ମାତ୍ର ।"

"ମୋତେ ଏ ସବୁ ଶିଖାଇବା ନିରର୍ଥକ । ମୁଁ କେଉଁ ବେପାର କରୁଛି ଯେ, ଶିକ୍ଷା ପାଇଲେ ଉନ୍ନତ କରିବି । ମୁଁ ତ ତୁମ ଦୋକାନରେ ଗୁଡ଼ିକରିଆଟାଏ ମାତ୍ର !"

ମ୍ୟାରୁଲେ ଆଶ୍ୱାସନା ଦେଲେ, "ତୁମେ ତ ବର୍ତ୍ତମାନ ଟୋକା-ଟାଏ ମାତ୍ର । ଦୀର୍ଘ ଭବିଷ୍ୟତ୍ ଆଗକୁ ରହିଛି ।"

ଏଥାନ୍‌ଙ୍କ ମନ ମାନି ନ ଥାଏ । ସେ ପୁଣି ଅଭିଯୋଗ କଲେ, "ଦେଖନ୍ତୁ ମ୍ୟାରୁଲେ ! ଆପଣଙ୍କର ଏ ଦୋକାନଟା ମୁଁ ଏକୁଟିଆ ଚଳାଉଛି କହିଲେ ଚଳେ, ମୁଁ ହିସାବ ରଖୁଛି, ଟଙ୍କା ବ୍ୟାଙ୍କ୍‌ରେ ଜମା ଦେଉଛି, ଜିନିଷ ପତ୍ର ମଗାଇ ରଖୁଛି, ଗ୍ରାହକଙ୍କୁ ସନ୍ତୁଷ୍ଟ କରୁଛି ଓ ସେମାନଙ୍କଠାରୁ ବାକି ଆଦାୟ କରୁଛି । ମୋଠାରୁ ଥରେ ଯେ ସଉଦା କରୁଛନ୍ତି ସେ ମୋର ବନ୍ଧା ଗରାଖ ହେଉଛନ୍ତି । ଯାହାକୁ କ'ଣ ଭଲ ବେପାରୀ ଲକ୍ଷଣ ବୋଲି ଆପଣ ସ୍ୱୀକାର କରୁ ନାହାନ୍ତି ?"

"ନିଶ୍ଚୟ, ନିଶ୍ଚୟ, ତୁମେ ଭଲ କରୁଛ ବୋଲି ମୁଁ ମାନୁଛି । ଯା ଭିତରେ ତୁମେ ବେଶ୍ ପୋଖତ ହୋଇଗଲଣି । ପୂର୍ବର ଟୋକାଳିଆ ଢଙ୍ଗ ଆଉ ନାହିଁ ।—ଆଚ୍ଛା, ତୁମକୁ ମୁଁ ଟୋକା ବୋଲି କହିଦେଲି ଯେ ତୁମେ

ଚଟି ଉଠିଲ ! କ'ଣ ବୋଲି ତେବେ ଡାକିବି କହ । ମୁଁ ତ ସମସ୍ତଙ୍କୁ ଠୋକା ବୋଲି କହେ ।"

"କାହିଁକି, ମୋ ନାମ ଧରି ଡାକିଲେ ତ ହୁଅନ୍ତା ।"

"ନାମ ଧରି ଡାକିବାରେ ଆନ୍ତରିକତାର ପରିଚୟ ମିଳେନାହିଁ ; 'ଠୋକା' ଡାକରେ ସେ ଆନ୍ତରିକତାର ସଙ୍କେତ ଥାଏ ।"

"'ଠୋକା' ଡାକିବାରେ ଭଦ୍ରତା ନାହିଁ !"

"ଭଦ୍ରତା ଖୋଜିଲେ ସେ ଆନ୍ତରିକତା ମିଳେ ନାହିଁ !"

ଏଥାନ୍ ହସି ପକାଇଲେ, କହିଲେ, "ବିଦେଶୀ ଇତାଲୀୟର ଦୋକାନରେ ଗୁମାସ୍ତା ଚାକିରି କରୁଥିବା ଲୋକର ଅନ୍ତତଃ ଟିକିଏ ତ ଆତ୍ମମର୍ଯ୍ୟାଦା ଦରକାର—ନିଜ ପାଇଁ ନ ହେଲେ ବି ନିଜର ସ୍ତ୍ରୀ ଓ ପିଲା-ପିଲାଙ୍କ ସକାଶ । ବୁଝିଲେ ତ ?"

"ଏ ଆତ୍ମମର୍ଯ୍ୟାଦା କିନ୍ତୁ ନକଲି, ଅସଲି ନୁହେଁ ।"

"ସେ କଥା ସତ । ମୋ'ର ଯଦି ଅସଲି ଆତ୍ମମର୍ଯ୍ୟାଦା ଥାନ୍ତା ତେବେ ମୁଁ ସେଥିପାଇଁ ଏଭଳି ବାଇ ହେଉ ନ ଥାନ୍ତି । ମୋର ବୃଦ୍ଧ ପିତା ତାଙ୍କ ମୃତ୍ୟୁର ଅଳ୍ପ ଦିନ ପୂର୍ବରୁ ମୋତେ ଗୋଟିଏ କଥା କହିଥିଲେ. ମୁଁ ତାକୁ ଏ ପର୍ଯ୍ୟନ୍ତ ପାସୋରି ଦେଇଥିଲି । ସେ କହିଥିଲେ, "ମଣିଷର ମନର ପ୍ରକର୍ଷ ଓ ସାମାଜିକ ପ୍ରତିଷ୍ଠା ଯେତିକି କମ୍ ସେ ସେତିକି ସହଜରେ ଅପ-ମାନିତ ହୁଏ ; ଯାହାର ମନର ପ୍ରକର୍ଷ ଓ ସାମାଜିକ ପ୍ରତିଷ୍ଠା ବେଶୀ ତାକୁ ଅପମାନ ସ୍ପର୍ଶ କରି ପାରେ ନାହିଁ । ଯେଉଁ ଲୋକ ନିଜ ମା'ର ଚରିତ୍ର ବିଷୟରେ ସନ୍ଦେହୀନ ତାକୁ ବେଧିଆ ବୋଲି କହିଲେ କାଟେ । କିନ୍ତୁ ଆଲବର୍ଟ ଆଇନ୍‌ଷ୍ଟାଇନ୍ ଭଳିଆ ଲୋକଙ୍କୁ କେଉଁ ଅପମାନ ଭଲ୍ଲ କାଟିବ କାହିଁକି ?" ସେତେବେଳକୁ ଆଇନ୍‌ଷ୍ଟାଇନ୍ ବଞ୍ଚିଥାନ୍ତି । "—ସେ ଯାହା-ହେଉ, ମୋତେ 'ଠୋକା' ବୋଲି ଡାକିବାକୁ ଆପଣଙ୍କର ଯଦି ମନ, ତେବେ ସ୍ୱଚ୍ଛନ୍ଦରେ ଡାକିପାରନ୍ତି ।"

"ବେଶ୍, ବେଶ୍, ଏଥର ବୁଝିଲୁ ତ ଠୋକା ! ଠୋକା ବୋଲି କହିଲେ ଆନ୍ତରିକତା ପ୍ରକାଶ ପାଏ ।"

"ହଉ, ହେଲା । ବେପାର ବିଷୟରେ ମୋର କ'ଣ ଭୁଲ ହେଉଛି ବୋଲି ଆପଣ କହୁଥିଲେ, ଏବେ କହନ୍ତୁ ।"

"ବେପାରର ମୂଳ କଥା ହେଲା ପଇସା । ପଇସା ଉପରେ ମୁହବନ୍ଧ, ମୁଲାଇଜା ରଖିଲେ ଚଳିବ ନାହିଁ । ତୋ'ର ମେଳାପି ପ୍ରକୃତି, ସମସ୍ତଙ୍କ ସଙ୍ଗେ ଭଲରେ ଚଳିବାକୁ ମନ; ବୁଝିଲୁ ନା ଟୋକା ! ଏଭଳି ପ୍ରକୃତିରେ ପଇସା ରହିବ ନାହିଁ । ପଇସାର ଅସଲ ସାଙ୍ଗ କେବଳ ପଇସା, ଆଉ କେହି ନୁହଁ ।"

"ବାଜେ କଥା, ମ୍ୟାରୁଲେ ! ମୁଁ ଏଭଳି ଅନେକ ବେପାରୀଙ୍କୁ ଜାଣେ, ଯେଉଁମାନେ ଖୁବ୍ ଭଦ୍ର, ମେଳାପୀ ଓ ସଚ୍ଚୋଟ ଲୋକ ।"

"ହୋଇଥିବେ, କିନ୍ତୁ ବେପାର ଉପରେ ନୁହେ, ସାଧାରଣ ସାମାଜିକ ଜୀବନରେ ହୋଇଥିବେ । ଏଇ କଥାଟା ବୁଝୁ ବୁଝୁ ତୋ' ବେପାର ହୁଏତ ବୁଡ଼ିଯାଇ ସାରିଥିବ । ଆରେ ଟୋକା, ଏ ଦୋକାନଟା ମୋର ବୋଲି ତୁ ଯ୍ୟାକୁ ଏତେ ସୁନ୍ଦର ଭାବେ ଚଳାଉଛୁ ; କିନ୍ତୁ ଏଇଟା ଯଦି ତୋ' ନିଜର ହୋଇଯିବ, ତେବେ ପ୍ରିୟାପ୍ରୀତିରେ ମାତି ତୁ ହୁଏତ ଯ୍ୟାକୁ ଅଳ୍ପ ଦିନରେ ନଷ୍ଟଭ୍ରଷ୍ଟ କରିଦେବୁ । ସେ ସନ୍ଦେହ ହେବାରୁ ସ୍କୁଲ-ପିଲଙ୍କୁ ମାଷ୍ଟର୍ ପାଠ ପଢ଼ାଇଲା ପରି ମୁଁ ଏତେ କଥା କହୁଛି । ହଉ, ଆଜି ଏତିକି ଥାଉ, ବାପ ! ମୁଁ ଯାଉଛି ।" ଏତିକି କହି ମ୍ୟାରୁଲେ ତାଙ୍କ ହାତ ଦୁଇଟିକୁ ଟିକିଏ ଟିକିଏ ହଲଚଲ କରି ସଦର ଦରଜା ବାଟେ ବାହାରିଗଲେ ଓ ଦରଜାକୁ ପଛରୁ ଟାଣିନେଇ ବନ୍ଦ କରିଦେଲେ । ଏଥାନ୍ ଅନୁଭବ କଲେ, ସତେ ଯେପରି ସଂସାରଟା ତାଙ୍କ ପାଇଁ ଅନ୍ଧକାରରେ ଆଚ୍ଛାଦିତ ହୋଇଗଲା ।

ଟିକକ ପରେ ସଦର ଦରଜାରେ ପୁଣି ଠକ୍ ଠକ୍ ଶବ୍ଦ ହେଲା । ଏଥାନ୍ ପରଦା ଆଡ଼େଇ ବଡ଼ ପାଟିରେ ଶୁଣାଇ ଦେଲେ, "ତିନିଟା ପର୍ଯ୍ୟନ୍ତ ଷ୍ଟୋର୍ ବନ୍ଦ ।"

ଆଗନ୍ତୁକ କହିଲେ, "ମୋତେ ଭିତରକୁ ଯିବାକୁ ଦିଅନ୍ତୁ । ମୋ'ର ଆପଣଙ୍କ ସଙ୍ଗେ ଟିକିଏ କଥାବାର୍ତ୍ତା କରିବାକୁ ଅଛି ।"

ଆଗନ୍ତୁକ ଭିତରକୁ ଆସିଲେ—ପାତଳା ଲୋକ, ସବୁବେଳେ ଯୁବକ ପରି ଦିଶିବାକୁ ଚେଷ୍ଟା, ଯଦିଓ ଜୀବନରେ କେବେ ଯୁବକ ଥିଲେ ବୋଲି ଦେଖିଲେ ଜଣା ପଡୁନାହିଁ ; ଖୁବ୍ ଗ୍ଲୁଣ୍ଡ୍ କାଟ୍‌ର ପୋଷାକ ପିନ୍ଧିଛନ୍ତି ;

ମୁଣ୍ଡରୁ ବହୁତ ବାଳ ଉପୁଡ଼ିଯାଇଛି, ଯେଉଁତକ ଅଛି ସେତକ ମୁଣ୍ଡର ଖପୁରି ଉପରେ ସଯତ୍ନେ ରକ୍ଷିତ ହୋଇ ଚକ୍‌ଚକ୍ ଦିଶୁଛି ; ଆଖି ଦୁଇଟି ଅସ୍ଥିର କିନ୍ତୁ ପ୍ରଫୁଲ୍ଲ ।

ଆଗନ୍ତୁକ ଆରମ୍ଭ କଲେ, "ଆପଣଙ୍କୁ ଅସମୟରେ ବିରକ୍ତ କରୁଛି, କ୍ଷମା ଦେବେ । ସମଗ୍ର ସହରଟା ତମାମ ଚକର୍ ମାରିବାକୁ ହେବ । ଏକୁଟିଆ ବେଳେ ଆପଣଙ୍କ ସଙ୍ଗେ ଦି'ପଦ କଥାବାର୍ତ୍ତା ହେବାକୁ ଅପେକ୍ଷା କରିଥିଲି । ଭୟ ତ ହେଉଥିଲା, ବୁଢ଼ା ଦିନ ତମାମ ଏଠା ଛାଡ଼ିବ ନାହିଁ ବୋଲି ।"

"କିଏ, ମ୍ୟାରୁଲେ ?"

"ହିଁ, ମୁଁ ପଛ ଗଳିର ଆର ପାଖେ ଚାହିଁ ରହିଥିଲି ।"

ଏଥାନ୍ ଭଦ୍ରଲୋକଟିର ପରିଷ୍କାର ହାତ ଦୁଇଟିକୁ ଚାହିଁଲେ । ବାଁ ହାତର ମଝି ଆଙ୍ଗଠିରେ ଗୋଟାଏ ସୁନାମୁଦି, ତା'ଉପରେ ବସିଥାଏ ଗୋଟାଏ ବଡ଼ ମୂଲ୍ୟବାନ୍ ପଥର ।

ଆଗନ୍ତୁକଙ୍କର ନଜର ପଡ଼ିଲା ଏଥାନ୍‌ଙ୍କ ଦୃଷ୍ଟି ଉପରେ । ସେ କହିଲେ, "ମୁଁ ଡକାୟତି କରିବାକୁ ଆସିଛି ବୋଲି ସନ୍ଦେହ କରନ୍ତୁ ନାହିଁ । କାଲି ରାତିରେ ଆପଣଙ୍କର ଜଣେ ବନ୍ଧୁଙ୍କ ସଙ୍ଗେ ଦେଖା ହୋଇ-ଥିଲା ।"

"ମୋର ବନ୍ଧୁ ?"

"ହିଁ, ମିସେସ୍ ୟୁଙ୍ଗ୍ ହାଣ୍ଡ୍ ; ମାର୍ଗି ୟୁଙ୍ଗ୍‌ହାଣ୍ଡ୍ ।"

"ଓଃ ।"

ଏଥାନ୍ ଅନୁଭବ କରୁଥାନ୍ତି, ବଗୁର ଭଦ୍ର ଲୋକଟିର ମନ ଅଥୟ ହୋଇ ଖୋଜୁଥାଏ, ଗୋଟାଏ ସୂତ୍ର—ପାଇଲେ, ତାକୁଇ ଧରି ଏଥାନ୍‌ଙ୍କ ସଙ୍ଗେ ଆଳାପ ଜମାଇ ଦେବେ ।

"ମାର୍ଗି ଲୋକଟି ବେଶ୍ ଭଲ ମଣିଷ । ଆପଣଙ୍କୁ ଖୁବ୍ ବଡ଼େଇ କରି କହିଲେ । ତେଣୁ ମୁଁ ଭାବିଲି, ଆପଣଙ୍କ ସଙ୍ଗେ— । ମୋ ନାଁ ବଗର୍‌ଟ୍ । ଡ. ବ. ଡ. ଏଣ୍ଡ୍ ଡ଼ି. କମ୍ପାନୀର ମୁଁ ଏ ଅଞ୍ଚଳ ପାଇଁ ପ୍ରଚାରକ ।

"ଆମେ ତ ଓ୍ୱେଲଣ୍ଡ୍‌ସ୍ କମ୍ପାନୀରୁ ଖରିଦ କରୁଁ ।"

ମୁଁ ସେ କଥା ଜାଣେ । ସେଇଥିପାଇଁ ତ ଆସିଛୁ । ମୋର ଆଶା, ଆପଣ ଗୋଟିଏ ଠାରେ ଆବଦ୍ଧ ନ ରହି ଆପଣଙ୍କ ଦୃଷ୍ଟି ଟିକଏ ପ୍ରସାରିତ କରିବେ । ଏ ଅଞ୍ଚଳରେ ଆମେ ନୂଆ । ଆମର କାରବାର ଖୁବ୍ କ୍ଷିପ୍ର-ଗତିରେ ପ୍ରସାର ଲଭ କରୁଛି । ନୂଆ ଅଞ୍ଚଳରେ କାରବାର ପାଇବାକୁ ଭଲ ରକମ କମିସନ୍ ଦେବାକୁ ମଧ୍ୟ ପ୍ରସ୍ତୁତ ଅଛୁଁ । ଆପଣ ଏ କମିସନ୍‌ର ସୁଯୋଗ ନେଲେ ଦି’ପଇସା କରି ପାରିବେ ।”

“ଏ ବିଷୟରେ ଆପଣ ମିଃ ମ୍ୟାରୁଲୋଙ୍କ ସଙ୍ଗେ କଥାବାର୍ତ୍ତା କରନ୍ତୁ । ସେ ତ ସବୁବେଳେ ବେଲ୍ଲଣ୍ଡ୍‌ସ୍ କମ୍ପାନିରୁ ଜିନିସ ଆଣୁଛନ୍ତି ।”

ଭଦ୍ରଲୋକଙ୍କର ସ୍ୱର କ୍ଷୀଣ ନ ହେଲେହେଁ ସେଥିରେ ଗୋପନୀୟତାର ମୂର୍ଚ୍ଛନା ଟିକଏ ଲାଗିଲା ପରି ଜଣାଗଲା । ସେ କହିଲେ, “କିନ୍ତୁ ଆପଣ ତ ଜିନିସର ମଗାନ୍ତି ।”

“ହଁ, ସେ କଥା ସତ । ମ୍ୟାରୁଲୋଙ୍କୁ ଗଣ୍ଠିବାତ ଧରିଛି, ପୁଣି ତାଙ୍କର ଅନ୍ୟ ଧନ୍ଦା ଅଛି । ତେଣୁ ସେ ମୋତେ ଏ ଷ୍ଟୋର୍ ଚଳାଇବାକୁ ସ୍ୱାଧୀନତା ଦିଅନ୍ତି ।”

“ଆମର ଯେଉଁ ମୂଲ୍ୟ ତାଲିକା ଅଛି, ସେଥିରୁ ଟିକଏ କାଟଛାଣ୍ଟ୍ କଲେ ଚଳିବ ।”

“ଦରଦାମରେ ଯେତେ କାଟଛାଣ୍ଟ କରିବା ସମ୍ଭବ, ତା’ ନ କରି ମ୍ୟାରୁଲୋ ଛାଡ଼ନ୍ତି ନାହିଁ । ଯାହାହେଉ, ଆପଣ ତାଙ୍କ ସାଙ୍ଗେ ଦେଖା କରନ୍ତୁ ।”

“ତାଙ୍କ ସଙ୍ଗେ ଦେଖା କରିବାକୁ ମୁଁ ଚାହେଁ ନାହିଁ । ଯେ ନିଜେ ଜିନିସ ମଗାନ୍ତି ମୋ’ର କାମ ତାଙ୍କରି ସଙ୍ଗେ । ଏ ଅନୁଷ୍ଠାନରେ ସେ ଲୋକ ନିଜେ ଆପଣ ।”

“ମୁଁ ଏଠାରେ ସାମାନ୍ୟ କିରାଣୀ ମାତ୍ର ।”

“କିନ୍ତୁ ମିଷ୍ଟର୍ ହ’ଲ ! ଆପଣ ଯେ ନିଜେ ଜିନିସ ମଗାନ୍ତି ! ମୁଁ ଦାମ ଉପରେ ଶତକଡ଼ା ପାଞ୍ଚଟଙ୍କା ଛାଡ଼ି କରି ଦେବି ।”

“ଆମେ ଯେଉଁ ଜିନିସ ଅଣାଉଛୁ, ଆପଣଙ୍କ ଜିନିସର ଗୁଣ ଯଦି ତା’ ସଙ୍ଗେ ସମାନ, ତେବେ ମିଷ୍ଟର୍ ମ୍ୟାରୁଲୋ ଶତକଡ଼ା ପାଞ୍ଚ କମିସନ୍ ପାଇଲେ ଆକୃଷ୍ଟ ହୋଇ ପାରନ୍ତି ।”

"ସେ ଜାଣିଲେ ତ କମିସନ୍‌ଟା ଆପଣଙ୍କ ହାତକୁ ଆସିବ ନାହିଁ । ସେହି କାରଣରୁ ମୁଁ ମ୍ୟାରୁଲେଙ୍କ ପାଖକୁ ଯିବାକୁ ଚାହେଁ ନାହିଁ । ଏହି ଶତକଡ଼ା ପାଞ୍ଚ କମିସନ୍‌ଟା ଆପଣଙ୍କୁ ନଗଦ ଦେଇ ଦେବ—ଚେକ୍‌ରେ ନୁହେଁ ; ହିସାବପତ୍ର ବା ରସିଦ ରହିବ ନାହିଁ ; ଇନ୍‌କମ୍ ଟ୍ୟାକ୍‌ସ୍ ବାଲା ଏ ଟଙ୍କାର ଟେର୍ ପାଇବେ ନାହିଁ ; ନଗଦାନଗଦ ମୋ ହାତରୁ ଟଙ୍କା ଆପଣଙ୍କ ହାତକୁ ଯିବ ଏବଂ ଆପଣଙ୍କ ହାତରୁ ଆପଣଙ୍କ ନିଜ ପକେଟ୍‌କୁ ।"

"ଆଚ୍ଛା, ଏ କମିସନ୍‌ଟା ମ୍ୟାରୁଲେ କାହିଁକି ସିଧା ନ ପାଇବେ ?"

"ଆମ ବେପାରୀଙ୍କ ଇଉନିଅନ୍‌ରେ ଦରଦାମ ବିଷୟରେ ଚୁକ୍ତି ହୋଇଛି ; ତା'ର ଖିଲାପ କରି ପାରିବୁଁ ନାହିଁ ।"

"ଆଚ୍ଛା, ବେଶ୍ । ଆପଣଙ୍କଠାରୁ ଏ ଟଙ୍କାଟା କମିସନ ନେଇ ମୁଁ ଯଦି ମ୍ୟାରୁଲେଙ୍କ ହାତରେ ଦେଇଦିଏ, ତେବେ ଆପତ୍ତି କ'ଣ ?"

"ମାଲିକମାନଙ୍କୁ ମୁଁ ଯେପରି ଚିହ୍ନେ ଆପଣ ସେପରି ଚିହ୍ନନ୍ତି ନାହିଁ । ଧରନ୍ତୁ, ଆପଣ ଟଙ୍କାଟା ନେଇ ତାଙ୍କୁ ଦେବେ ; ତାଙ୍କର ସନ୍ଦେହ ହେବ, ବୋଧହୁଏ ଆପଣ ଏତିକି ତାଙ୍କୁ ଦେଇ ଆଉ କିଛି ନିଜ ପାଇଁ ଛପାଇ ଦେଲେ । ଏଭଳି ବିଚାରିବା ତ ସ୍ୱାଭାବିକ । ତେଣୁ ଏ ଟଙ୍କାର ଚିହ୍ନବର୍ଣ୍ଣ ତାଙ୍କୁ ଏକାବେଳକେ ନ ଦେଖାଇବା ଭଲ ।"

ଏଥାନ୍ ଚାପା ଗଳାରେ ଉତ୍ତର ଦେଲେ, "ମୁଁ ଯାହାର ଚାକିରି କରୁଛି, ତା'କୁ ଠକିବି—ଏଇଆ ଆପଣଙ୍କର ଇଚ୍ଛା ।"

"ଠକିବା ପ୍ରଶ୍ନ ରହିଲା କେଉଁଠି ? ତାଙ୍କର ପଇସାଟିଏ ବି କ୍ଷତି ନ ହୋଇ ଆପଣ ଟଂକେ ମଜେ ପାଇବେ । ଏଥିରେ ଆପତ୍ତି କରିବାର କ'ଣ ଅଛି ? ଉପରି ଟଙ୍କେ ମଜେ ଭ୍ୟାଇବାର ଅଧିକାର ପ୍ରତ୍ୟେକର ଅଛି । ମାର୍ଗି ତ ମୋତେ କହିଛନ୍ତି, ଆପଣ ବେଶ୍ ବିଚକ୍ଷଣ ଲୋକ ।"

"ବଡ଼ ଦୁର୍ଦ୍ଦିନ ଆଜି ।"

"ନା, ନା, ଦୁର୍ଦ୍ଦିନ ନୁହେଁ, ପରଦାଗୁଡ଼ାକ ଟାଣି ଦେଇଛନ୍ତି ବୋଲି ଆପଣଙ୍କୁ ସେପରି ଜଣା ଯାଉଛି ।" ସ୍ମିଥ୍ କହିଲେ ଧିନା, ଭଦ୍ର-ଲୋକଙ୍କର ସନ୍ଦେହ ମନରେ ସଂଶୟ ଜାତ ହେଲା । ଗୋଟାଏ ଆଉ ପଟାରେ ରଖା ହୋଇଥିବା ଶୁଖି ଆଉ ବାସନା, ଅନ୍ୟ ଆଡ଼ ଲେଖାର

ସୁଗନ୍ଧ ପାଇଲେ ମୂଷା ଯେପରି ହଡ଼ବଡ଼େଇ ଯାଏ ସେହିପରି ।

ବଗର୍ସ୍ କହିଲେ, "ମୁଁ କ'ଣ କରିଛି କି, ଆପଣ ଏ ବିଷୟ ଟିକିଏ ଭଲ କରି ବିଚାର କରନ୍ତୁ । ଦେଖନ୍ତୁ, ଆମକୁ ଆପଣଙ୍କ ବେପାରର କିଛି ଅଂଶ ଯଦି ଆସିପାରେ । ମୁଁ ପୁଣି ଏ ଅଞ୍ଚଳକୁ ଆସିଲେ, ଆପଣଙ୍କ ପାଖେ ଆସି ହାଜର ହେବି । ପ୍ରତି ଦୁଇ ହପ୍ତାରେ ଥରେ ଲେଖାଏଁ ମୁଁ ଏପଟକୁ ଆସେ । ମୋ ଠିକଣାଟା ହେଉଛି, ରଖନ୍ତୁ ।"

ଏଥାନ୍ ହାତ ବଢ଼ାଇଲେ ନାହିଁ । ବଗର୍ସ୍ ଠିକଣା-କାର୍ଡ୍ଟା ଥଣ୍ଡା-ଟେବୁଲ୍ ଉପରେ ରଖିଦେଇ କହିଲେ, "ଆଉ, ହେଉଛି ଗୋଟାଏ ସ୍ମାରକୀ । ବଶିଷ୍ଟ ବନ୍ଧୁଙ୍କୁ ଏଥିରୁ ଗୋଟିଏ ଗୋଟିଏ ଦେବାକୁ ରଖିଛି ।" ଏହା କହି ସେ ତାଙ୍କ କଡ଼ ପକେଟରୁ ଗୋଟିଏ ଚମଡ଼ା କେସ୍ ବାହାର କଲେ ; ସିଲ୍ ଚମଡ଼ାର ସୁନ୍ଦର ଜିନିଷଟିଏ । ଟେବୁଲ ଉପରର ଧଳା ପୋର୍ସିଲେନ୍ ପାତ୍ର ଉପରେ ନିଜେ ଦେଇଥିବା କାଠ ପାଖେ ସେ ଏ ଜିନିଷଟି ରଖି କହିଲେ, "ସୁନ୍ଦର ଜିନିଷଟିଏ; ଡ୍ରାଇଭିଂ ଲାଇସେନସ୍ ଓ କ୍ଲବ୍‌ର କାର୍ଡ଼ ପ୍ରଭୃତି ରଖିବାକୁ ତା ଭିତରେ ଖୋପ ଅଛି ।"

ଏଥାନ୍ ପଦେ ବି କିଛି କହିଲେ ନାହିଁ ।

ବଗର୍ସ୍ ପୁଣି କହିଲେ, "ହପ୍ତା ଦୁଇଟା ଭିତରେ ମୁଁ ପୁଣି ଆସି ପହଞ୍ଚିବି । ଆପଣ ମୋ ବିଷୟ ଭଲ କରି ବିଚାର କରନ୍ତୁ । ମୋର ଆସିବା ଏକାବେଳକେ ନିଶ୍ଚିତ । ମାଗି ସାଙ୍ଗେ ଫୁର୍ତ୍ତି କରିବାକୁ ଗୋଟାଏ ଦିନ ରଖିଛି । ବଢ଼ିଆ ଟୋକିଟାଏ କିନ୍ତୁ ।" ତଥାପି ଏଥାନଙ୍କଠାରୁ କୌଣସି ଜବାବ୍ ନ ପାଇ ସେ ପୁଣି କହିଲେ, "ହଉ ତେବେ ମୁଁ ଯାଉଛି, ଆପଣଙ୍କ ସଙ୍ଗେ ପୁଣି ଶୀଘ୍ର ଦେଖା ହେବ ।" ତା'ପରେ ହଠାତ୍ ଏଥାନ୍‌ଙ୍କ ପାଖକୁ ଲାଗି ଆସି ସେ କହିଲେ, "ଦେଖନ୍ତୁ, ମୂର୍ଖାମି କରିବେ ନାହିଁ । ମୁଁ ଯାହା କରିବାକୁ କହୁଛି, ତାହା ସମସ୍ତେ କରୁଛନ୍ତି; ସମସ୍ତେ !" ଏତକ କହି ସେ ତରତର ହୋଇ ସଦର ଦରଜା ବାଟେ ବାହାରି ଗଲେ ଓ ପଛରୁ ଦରଜା ଟାଣି ବନ୍ଦ କରି ଦେଇ ଗଲେ ।

ଅନ୍ଧାରିଆ ନିର୍ଜନତା ଭିତରେ ଏଥାନ୍‌ଙ୍କୁ କେବଳ ଶୁଣାଯାଉଥାଏ—କାଉଣ୍ଟର୍ ଉପର ନିଅନ୍ ଆଲୁଅର ଟ୍ରାନ୍‌ସ୍‌ଫର୍ମର୍ ଯନ୍ତ୍ରର କ୍ଷୀଣ ଟୁକ୍‌ଟୁକ୍ ଶବ୍ଦ । ଆସ୍ତେ ଆସ୍ତେ ଏଥାନ୍ ଆଖି ଫେରାଇଲେ । ଗଦା ଗଦା ହୋଇ ଚଳେ ଓ ଧାଡ଼ି ଧାଡ଼ି ହୋଇ ଥାକମାନଙ୍କରେ ସଜା ହୋଇ ରହିଥିବା ତାଙ୍କ ସଙ୍ଗୀ, ଶ୍ରୋତାମାନଙ୍କ ଆଡ଼କୁ ।

ସେମାନଙ୍କ ଆଡ଼କୁ ଚାହିଁ ଏଥାନ୍ କହିଲେ, "ତୁମ୍ଭେମାନେ ମୋର ଆପଣାର ବୋଲି ବିଚାରିଥିଲି । କାହିଁକି ମୋ ପାଇଁ ତ ଟିକିଏ ବାହାରିଲ ନାହିଁ । କେବଳ ଭଲ ବେଳର ସଙ୍ଗୀ ତୁମେ ଶାମୁକାଯାକ, ଆଷ୍ଟରଯାକ, ପିଠାପିଠି ଯାକ । ତୁମ ପ୍ରତି ଆଉ ସୌହାର୍ଦ୍ଦ୍ୟ ରଖିବାର ନୁହେଁ । ମୋର ତୁମମାନଙ୍କ ପ୍ରତି ଯେପରି, ସେଣ୍ଟ୍ ଫ୍ରାନ୍‌ସିସ୍‌ଙ୍କର ସେପରି ପଶୁପକ୍ଷୀଙ୍କଠାରେ ସ୍ନେହ । ସୁା ବୋଲି କଣ ଗୋଟାଏ କୁକୁର ଯଦି ତାଙ୍କୁ କାମୁଡ଼େ, ଗୋଟାଏ ପକ୍ଷୀ ଯଦି ତାଙ୍କ ଉପରେ ପୁରିଷ ଉତ୍ସର୍ଗ କରେ, ତେବେ କ'ଣ ବିରକ୍ତ ନ ହୋଇ ସେ କହିଥିବେ, 'କୁକୁର ମହାଶୟ, ତୁମକୁ ଧନ୍ୟବାଦ; ପକ୍ଷୀ ପତ୍ନୀ, ଭଲ କାମଟାଏ ତୁମେ କଲ !' କେଜାଣି ? ଏତେ ସହନଶୀଳତା ମୋତେ କଳ୍ପନାତୀତ ମନେ ହେଉଛି ।"

ଏତିକିବେଳେ ଗଳପଟ ଦୁଆରରେ ଠକଠକ, ଖଡ଼ଖଡ଼, ଧକମ୍‌ଧକା ଶବ୍ଦ ଶୁଣି ସେଆଡ଼କୁ ଏଥାନ୍ ମୁହଁ ବୁଲାଇଲେ ଓ ତରତରରେ ଗୋଦାମକାଟେ ଯାଇ ଦୁଆର ଫିଟାଉ ଫିଟାଉ ବଡ଼ବଡ଼ କରି କହିଲେ, "ଖୋଲି ଥିଲି ବେଳଠାରୁ ବନ୍ଦବେଳେ ତ କଣ ବେଶୀ ଗରାଖ ଆସୁଛନ୍ତି, ଦେଖୁଛି ।"

ଦୁଆର ଫିଟିବାରେ ଜସ୍ପି ମର୍‌ଫି ଟଳଟଳ ହୋଇ ପଶି ଆସିଲେ । ଛାତିକୁ ଦୁଇ ହାତରେ ଚାପି ଧରିଥାନ୍ତି ; ଗଁ ଗଁ ହୋଇ କହିଲେ, "ଭଗବାନଙ୍କ ହାହି, ରକ୍ଷା କର ; ଅନ୍ତତଃ ଗୋଟାଏ ପେପ୍‌ସି-କୋଲ୍ ଶୀଘ୍ର ଦିଅ, ଶୋଷରେ ମୋର ପ୍ରାଣ ବାହାରି ଯାଉଛି । ବାପରେ ! ଏତେ ଅନ୍ଧାର କାହିଁକି ଏଠାରେ ? ମୋର ଆଖି କ'ଣ ଫୁଟି ଯାଉଛି କି ?"

ଏଥାନ୍ କହିଲେ, "ପରଦା ସବୁ ଟାଣି ଦେଇଛି । ତୃଷାର୍ତ୍ତ ବ୍ୟାଙ୍କର୍‌ମାନେ ନ ଆସନ୍ତୁ—ଏଇ ଉଦ୍ଦେଶ୍ୟରେ ।"

ସେ ମର୍ଫିଙ୍କୁ ଶୀତଳ ଭଣ୍ଡାର ଆଡ଼କୁ ନେଲେ ଓ ଗୋଟାଏ ଥଣ୍ଡା କୋଲ୍ଡ ବୋତଲ ଫିଟାଇ ମର୍ଫିଙ୍କ ହାତକୁ ଦେଇ ଆଉ ଗୋଟାଏ ବାହାର କରି କହିଲେ, "ମୋର ବି ଗୋଟାଏ ଦରକାର ପରି ମନେ ହେଉଛି ।"

ଜର୍ଫି ଶୀତଳଭଣ୍ଡାରର ଆଲୋକିତ କାଚକାଡ଼ାକୁ ଆଉଜି କୋଲ୍ଡ ବୋତଲର ଅଧେ ଶେଷ କରି ଦେଇ ମୁହଁରୁ ବୋତଲ କାଢ଼ିଲେ; ତାଙ୍କର ନଜର ପଡ଼ିଲା, ବଗସ୍ ରଖିଦେଇ ଯାଇଥିବା ଚମଡ଼ା କେସ୍ ଉପରେ ; "ବାଃ, କିଏ ତ ଗୋଟାଏ ଭଲ ମାଲ ଛାଡ଼ି ଯାଇଛି" ବୋଲି କହି ସେ ତାକୁ ହାତରେ ଧରିଲେ ।

ଏଥାନ୍ କହିଲେ, " ବି.ବି.ଡି. ଏଣ୍ଡ୍ ଡି କମ୍ପାନୀର ତୋଲିଆ ସେ ଜଣ୍ଣପଟି ଆମକୁ ପୁରସ୍କାର ଦେଇଛି । ଆମଠାରୁ କିଛି ବେପାର ଛାଟି ନେବାକୁ ତା'ର ଇଚ୍ଛା । "

"ବେଶ୍, ବେଶ୍, ମୋଫତରେ ବେପାର ମାରିନେବାକୁ ତ ବସିନାହାଁ ନିଶ୍ଚୟ । ଏ ଜଣ୍ଣସଟା ତ ବଡ଼ିଆ ହୋଇଛି । ଯା ଉପରେ ତ ସୁନେଲି ଅକ୍ଷରରେ ତୁମ ନାମ ବି ଦରଜ ହୋଇଛି ।"

"ସତେ ?"

"ତେବେ କ'ଣ ଏଯାଏ ତୁମେ ଯାକୁ ଦେଖି ନାହଁ ?"

"ଏଇ ତ ମିନିଟ୍କ ଆଗରୁ ଭଦ୍ରଲୋକ ବିଦାୟ ନେଇଛନ୍ତି ।"

ଜର୍ଫି ଚମଡ଼ା କେଶର ଘଙ୍ଗି ଖୋଲିଲେ, ଭିତରୁ ପ୍ଲାଷ୍ଟିକ୍ ଖାମ୍ ଗୁଡ଼ିଏ ବାହାରିଲା । ଜର୍ଫି କହିଲେ, "ସାଙ୍ଗେ ସାଙ୍ଗେ କୌଣସି କ୍ଲବ୍‌ରେ ମେମ୍ବର ହୋଇଯାଅ । ମେମ୍ବରସିପ୍ କାର୍ଡ଼ ଏଇ ଖାମ୍ ଭିତରେ ରଖିବ ।" ତା'ପରେ ପଛପଟ ଖୋପ ଖୋଲି କହିଲେ, "ବାଃ, ବେଶ୍ ଦରଦ୍ଦ ଲୋକ; ମନ ବୁଝି ଯା ଭିତରେ ଯାକୁ ରଖିଛି ।" ଏହା କହି ବୁଢ଼ା ଓ ବଣି ଆଙ୍ଗୁଠିରେ ସେ ଖୋପ ଭିତରୁ ବାହାର କଲେ ଏକ ଅରଖ ନୂଆ ଶହେଟଙ୍କିଆ ନୋଟ୍ । "ମୁଁ ଶୁଣିଥିଲି, ବି.ବି.ଡ଼ି. ଏଣ୍ଡ୍ ଡ଼ି କମ୍ପାନୀ ପ୍ରଚାର କରିବାକୁ ଏ ଅଞ୍ଚଳକୁ ଆସିଛନ୍ତି, କିନ୍ତୁ ଏଭଳି ଅମୋଘ ଅସ୍ତ୍ର ଧରି ଆସିଛନ୍ତି ବୋଲି କଳ୍ପନା କରି ନ ଥିଲି । ବେଶ୍ ସ୍ମାରକଟାଏ— ମନରୁ ପାସୋର ଯିବ ନାହିଁ ।"

"ଏ ନୋଟ୍‌ଟା କ'ଣ ତା'ର ଭିତରେ ଥିଲା ?"

"ଆଉ କ'ଣ ମୁଁ ଏଇଟା ଚମଡ଼ା କେଶ୍ ଭିତରେ ପୂରାଇଦେଲି ବୋଲି ଭାବୁଛ ?"

"ଜମ୍ମି ! ଏ ବିଷୟରେ ତୁମ ସଙ୍ଗେ ଆଉ ଟିକିଏ କଥାବାର୍ତ୍ତା କରିବାକୁ ଅଛି । ସେ ଲୋକଟା ମୋତେ କହି ଯାଇଛି, ତାଙ୍କ କମ୍ପାନୀକୁ ମୁଁ ଯେତେ ଟଙ୍କାର ଅର୍ଡ଼ର୍ ଦେବି ତା' ଉପରେ ଶତକଡ଼ା ପାଞ୍ଚଟଙ୍କା ସେ ମୋତେ ଦେବ ।"

"ବେଶ୍, ବଢ଼ିଆ, ବଢ଼ିଆ, ସୁଦିନ ଆସିଲା ଶେଷରେ ! ସେ ତୁମକୁ ଯେଉଁ ପ୍ରତିଶ୍ରୁତି ଦେଇଛି, ତାହା ଯେ ସାର୍ଥକ ପ୍ରତିଶ୍ରୁତି ତା'ର ପ୍ରମାଣ ଏଇ ନୋଟ୍ । ମଉଜ କର । ମଉଜ କର । ତୁମର ଭାଗ୍ୟ ଏଥର ଖୋଲିଲା ।"

"ମାନେ, ତୁମେ କ'ଣ କହୁଛ ମୁଁ ସେ ଲୋକର ପ୍ରସ୍ତାବରେ ରାଜି ହେବି !"

"ନ ହେବ କାହିଁକି ? ତୁମେ ଯାହା ପାଇବ, ତାହା ଯଦି ଭାଉଚ-ର୍‌ରେ ଦରଜ ନ ହୁଏ, ତେବେ ଟଙ୍କା ନେଲେ ତ କାହାର କ୍ଷତି ହେବ ନାହିଁ ?"

"ସେ ଲୋକ ପୁଣି କହୁଛି, ଏକଥା ମ୍ୟାରୁଲେଙ୍କ କାନ କରିବାକୁ ହେବ ନାହିଁ । ମୁଁ ଯଦି କହେ, ତେବେ ମ୍ୟାରୁଲେ ସନ୍ଦେହ କରିବେ ଯେ ମୁଁ ବେଶୀ ପାଇ, ଏତିକ ମାତ୍ର ଦେଖାଉଛି !"

"ହଁ, ସେପରି ଭାବିବା ସ୍ୱାଭାବିକ ।—ଆଚ୍ଛା, ହ'ଲ ! ତୁମର ସ୍ନେହ ହୋଇଛି କ'ଣ ? ତୁମେ କ'ଣ ମନ ଖୁସିରେ ଏପରି ସାବ୍‌ଜା ବସୁଛ ! ଓଃ, ନିଅନ୍ ଆଲୁଅ ଯୋଗୁଁ ଏମିତି ବସୁଛ ! ମୁଁ ତ ଏଇପରି ସାବ୍‌ଜା ବସୁଥିବି ? ଆଚ୍ଛା, ଏ ପ୍ରସ୍ତାବ ଯେତେବେଳେ ଆସିଲା ତୁମେ କ'ଣ ତା'କୁ ପ୍ରତ୍ୟାଖ୍ୟାନ କରିବାକୁ ବସିଥିଲ ?"

"ସେ ଲୋକଟାର ପିଠିରେ ଗୋଇଠା ମାରିବାକୁ ମନ ହେଉଥିଲା । ବଡ଼ କଷ୍ଟରେ ସମ୍ଭାଳି ନେଲି ।"

"ତୁମର ତ ପ୍ରକୃତି ସେଇପରି ।"

"ଲୋକଟା କହିଲା, ସମସ୍ତେ ଏମିତି କରୁଛନ୍ତି ।"

"ସମସ୍ତଙ୍କୁ ଏଭଳି ସୁଯୋଗ ଜୁଟୁଛି କେତେବେଳେ ? ତୁମର ଭାଗ୍ୟ ସେମିତ ଥାଣ ବୋଲି ତୁମକୁ ଜୁଟିଛି ।"

"ଏ ଭଳି କରିବା କିନ୍ତୁ ଠିକ୍ ନୁହେଁ ।"

"ଅଠିକ୍ କାହିଁକି ? ଏଥିରେ କାହାର କ୍ଷତି ହେଉଛି କି ? ସେ ତ ଆଇନ୍‌ବିରୋଧୀ କାର୍ଯ୍ୟ ନୁହେଁ ।"

"ତୁମେ କଣ କହିବାକୁ ଚାହୁଁ, ତୁମେ ଏଭଳି କମିସନ ଗ୍ରହଣ କରନ୍ତି ?"

"ଗ୍ରହଣ କରିବା କଥା କ'ଣ ପଚାରୁଛ ? ମୁଁ ତ ଖାସ୍ ଏଥିପାଇଁ ହାତ ପତାନ୍ତି, କିନ୍ତୁ ମୋର ଯେଉଁ ବେପାର, ସେଥିରେ ସବୁ ଗଳାଆ ବୋଧ ହୋଇଛି । ବ୍ୟାଙ୍କରେ ଦୁଇ ପଇସା କରିବାକୁ ଯେତେ ବାଟ ଧରିବ ସେ ସବୁ ଆଇନ୍-ବିରୋଧୀ । ତେବେ ବ୍ୟାଙ୍କ୍‌ର ନିଜେ ଯଦି ପ୍ରେସିଡ଼େଣ୍ଟ୍ ହୁଅ, ତେବେ ଗୁଡ଼ାଏ ଖୁଣ ମାଫ୍ ହୋଇଯିବ । ତୁମ ମନରେ ଏତେ ଦ୍ୱିଧା କାହିଁକି ପଶୁଛି ମୁଁ ଜାଣି ପାରୁନାହିଁ । ଏ ଠଙ୍କାଟା ଯଦି ମ୍ୟାରୁଲୋ ବୁଢ଼ାଠାରୁ ମାରି ନେଉଥାନ୍ତି, ତେବେ ପୂର୍ବ ନ୍ୟାୟ୍ୟ ହେଲା ବୋଲି କହନ୍ତି ନାହିଁ । କିନ୍ତୁ ଏ କ୍ଷେତ୍ରରେ ତା' ତ ହେଉ ନାହିଁ । କମ୍ପାନୀର ତୁମେ ଉପକାର କରିବ, ତା'ର ପ୍ରତିବଦଳରେ ସେ ତୁମର ଉପକାର କରିବେ । ନୂଆ ନୋଟ୍ ଖଣ୍ଡେ ଖଣ୍ଡେ ତୁମ ହାତରେ ଗେଞ୍ଜି ଦେବେ । ଏଥିରେ ବିଚଳିତ ହେବାର କ'ଣ ଅଛି । ସଂସାରୀ ଲୋକ ତୁମେ—ଭାର୍ଯ୍ୟା ଅଛି, ଦୁଇଟି ବାଳୁତ ପିଲା ଅଛନ୍ତି । ତାଙ୍କ ଭଲ ମନ୍ଦ ତ ବିଚାରିବାକୁ ହେବ । ଆଜ କାଲି ସମୟରେ ପିଲାଙ୍କୁ ଷ କରିବା ତ ସହଜ ବ୍ୟାପାର ନୁହେ ।"

ବିରକ୍ତ ହୋଇ ଏଥି କହିଲେ, "ତୁମେ ସାଙ୍ଗେ ସାଙ୍ଗେ ଏଠାରୁ ଯାଅ ବୋଲି ମୋର ଇଚ୍ଛା ।

ଜିମ୍ମି ମର୍ଫି ଅଧା ସରିଥିବା କୋଲ୍ଡ ବୋତଲଟାକୁ ଧଡ଼୍‌କିନା କାଉଣ୍ଟରଟେବୁଲ୍ ଉପରେ ଥୋଇ ଦେଇ ବିରସ ସ୍ୱରରେ କହିଲେ, "ମିଷ୍ଟର୍ ହ'ଲ—ନା, ନା, ମିଷ୍ଟର୍ ଏଥାନ୍ ହ୍ୟାଲେନ୍ ହ'ଲ, ଆପଣ ଯଦି ବିଶ୍ୱାସ କରୁଥାନ୍ତି ଯେ ମୁଁ କୌଣସି ଅସତ୍‌କାର୍ଯ୍ୟ କରିବାକୁ ପାଇଁ, ଓ ଆପଣଙ୍କୁ ଅସତ୍ କାର୍ଯ୍ୟ କରିବାପାଇଁ ପ୍ରବର୍ତ୍ତାଇବା ମୋ ପକ୍ଷେ ସଂଭବ, ତେବେ ଆପଣ ମୋ' ସଂପର୍କ ତ୍ୟାଗ କରି ପାରନ୍ତି ।"

ଏହା କହି ଜସ୍ପି ଗୋଦାମଘରର ଆଡ଼କୁ ଆଗେଇଲେ ।

ବ୍ୟସ୍ତ-ସମସ୍ତ ହୋଇ ଏଥାନ୍ କହିଲେ, "ନା,ନା, ମୁଁ ସେପରି କଦାପି ମନେ କରି ନାହିଁ । ଭଗବାନ୍‌ଙ୍କୁ ସାକ୍ଷୀ ଦେଇ କହୁଛି, ଜସ୍ପି, ତୁମକୁ ମୁଁ ଭୁଲ ବୁଝିନାହିଁ । ଆଜି ଦିନଟାରେ ମୋ ମନରେ ଗୋଟାକ ପରେ ଗୋଟେ, ଦୁଇଟା ଧକ୍କା ଲାଗିଯିବାରୁ ମୁଁ ବିବ୍ରତ ହୋଇ ପଡ଼ୁଛି ମାତ୍ର । ଆଜି ଦିନଟା—ଏ ଗୁଡ଼୍ ଫ୍ରାଇଡେ ଛୁଟିଟା—ମୋ ପକ୍ଷରେ ବଡ଼ ଭୟାନକ ଦିବସ ।"

"କାହିଁକି ? ହଁ, ବୁଝିଲି । ତୁମ ମନର ଭାବ ମୁଁ ଧରି ପାରୁଛି । ବିଶ୍ୱାସ କର ।"

"ମୋର ପିଲାଦିନୁଁ ପ୍ରତି ବର୍ଷ ଏଇ ଦିନଟା ମୋ ପକ୍ଷରେ ବଡ଼ ଅସହ୍ୟ ହୁଏ । ଯେତିକି ବୟସ ବଢ଼ୁଛି ଏ ଦିନର ଯନ୍ତ୍ରଣାଟା ମୋ ପକ୍ଷରେ ସେତିକି ଅଧିକ ହେଉଛି । ବୋଧହୁଏ ବୟସ ବଢ଼ିବାରୁ, ଜ୍ଞାନ ବଢ଼ୁଛି ଓ ଏ ଦିନର ମର୍ମ ମୁଁ ବେଶୀ ହୃଦୟଙ୍ଗମ କରି ପାରୁଛି । ପ୍ରଭୁ ଯିଶୁ-ଖ୍ରୀଷ୍ଟଙ୍କର ଶେଷ ପ୍ରାର୍ଥନାର ମର୍ମ ବେଶୀ ବୁଝୁଛି ।"

"ତୁମ ମନର ଭାବ ମୁଁ ବୁଝୁଛି, ଏଥାନ୍ ! ଭଲ ରକମ ବୁଝି ପାରୁଛି । ଯାହାହେଉ, ଏ ଦୁଃଖ ଦିନର ଦୁଷ୍କାଳର ବେଳ ପାରି ହୋଇ-ଗଲଣି । ମୁଁ ଆସି ତୁମକୁ ଅଧିକ ବିଗଳିତ କରି ପକାଇଲି ବୋଲି ଦୋଷ ଧରିବ ନାହିଁ ।"

ଠିକ୍ ସେତିକିବେଳେ ଟାଉନ୍‌ହଲର ପିଟାଘଣ୍ଟାରେ ୦ଣ କରି ଗୋଟାଏ ବାଜିଲା ।

ଜସ୍ପି କହିଲେ, "ଯାଃ, ସରିଲା, ଏବର୍ଷ ପାଇଁ ଏ ଦୁର୍ଦ୍ଦିନ । ପୁଣି ବର୍ଷକ ପରେ ଯାଇ ପୁନରାବୃତ୍ତି ।"

ସେ ଧୀରେ ଧୀରେ ଗୋଦାମଘର ପାର ହୋଇ କନ୍ଧ ଦୁଆର ବାଟେ ବାହାରିଗଲେ ଓ ଗଲାବେଳେ ଦୁଆର ବନ୍ଦ କରିଦେଇ ଗଲେ ।

ଏଥାନ୍ ପରଦା ସବୁ ଟେକିଦେଲେ ଓ ଷ୍ଟୋର୍ ଖୋଲିଲେ । କିନ୍ତୁ ଉପର ଓଳି ବିଶେଷ କିଛି କାରବାର ହେଲା ନାହିଁ—କେବଳ ଟୋକା କେତୋଟା ଆସିଲେ କେତୋଟା ଦୁଧ ବୋତଲ ଓ ପାଉଁରୁଟି ନେବାକୁ; ଜଣେ ମେଣ୍ଢାଛୁଆମାଂସର ଗୋଟିଏ ଗ୍ଲେଟ ଚପ୍ ନେଲା, ଆଉ ଜଣେ

ଆସି ମିସ୍ ବର୍ଚର୍ଙ୍କ ଗରମ ସୁପ୍ ପାଇଁ ଗୋଟିଏ ଡବା ମଟରମଞ୍ଜି ନେଲା । ରାସ୍ତାରେ ଲୋକ ଯିବାଆସିବା ଏକାବେଳକେ ନ ଥିଲା କହିଲେ ଚଳେ । ଛ'ଟା ପୂର୍ବର ଅଧଘଣ୍ଟା ଭିତରେ, ଜଣେ ବି କେହି ଆସିଲେ ନାହିଁ । ଏଥାନ୍ ଦୋକାନ ବନ୍ଦ କରିବାକୁ ସଜବାଜ ହେଉଥାନ୍ତି । ଛ'ଟା ବାଜିବା ସାଙ୍ଗେ ସାଙ୍ଗେ ସେ ଦରଜା ବନ୍ଦ କରି ଘରକୁ ବାହାରି ପଡ଼ିବା ପରେ ଯାଇ ମନେ ପଡ଼ିଲା, ନିଜ ଘର ପାଇଁ ଖାଦ୍ୟସାମଗ୍ରୀ ନେବା କଥା । ବାଟରୁ ଫେରି ସେ ଦୋକାନ ଫିଟାଇଲେ ଓ ନିଜ ଘରର ସଉଦା, ଦୁଇଟି ବଡ଼ ବ୍ୟାଗ୍‌ରେ ଧରି ପୁଣି ଦୋକାନ ବନ୍ଦ କରି ବାହାରିଲେ ।

ଏଥାନ୍ ବିଗୁରିଥିଲେ, ଫେରିଲାବେଳେ ସମୁଦ୍ରକୂଳବାଟେ ଯିବେ; ଡକ୍‌ରେ ଗଦା ହୋଇଥିବା କଣ୍ଟସାର୍ତ୍ତ ଉପରେ ଉପସାଗରର ଫେନିଳ ତରଙ୍ଗ ବାଡ଼େଇ ହେବାର ଦେଖିବେ; ସମୁଦ୍ରଜଳର ଗନ୍ଧ ଆଘ୍ରାଣ କରିବେ; ଏବଂ ଜାହାଜ ନଙ୍ଗର ହେବା ଭେଳା ଉପରେ, ପବନ ଆଡ଼କୁ ଥଣ୍ଟ ଦେଖାଇ ବସିଥିବା ସାମୁଦ୍ରିକ ଚିଲକୁ ଦି'ପଦ କଥା କହି ଘରକୁ ଫେରିବେ । ସମୁଦ୍ର ଚିଲ ଡେଣାକୁ ସ୍ଥିର ରଖି ଚକ୍ରାକାରରେ ପବନରେ ପହଁରିବାର ଦେଖି ଅନୁପ୍ରାଣିତ ହୋଇଥିବା ଜଣେ ନାରୀ-କବିଙ୍କର କବିତା ତାଙ୍କର ମନେ ପଡ଼ୁଥିଲା । କବିତାର ପ୍ରଥମ ଦୁଇଧାଡ଼ି:—

ଆନନ୍ଦ ବିଭୋର ଆରେ ସମୁଦ୍ରଶକୁନି
ଏତେ ଉଷତ ତୋ ମନ କହ କାହାଘେନି ।

ଏ ପ୍ରଶ୍ନର ଉତ୍ତର ନାରୀ କବି ଶେଷ ପର୍ଯ୍ୟନ୍ତ ପାଇନାହାନ୍ତି; ବୋଧହୁଏ ପାଇବାକୁ ଇଚ୍ଛା ବି କରି ନାହାନ୍ତି ।

ଇଷ୍ଟର୍ ଛୁଟି ପାଇଁ ଆଣିଥିବା ସାମଗ୍ରୀର ଭରି ବ୍ୟାଗ୍ ଦୁଇଟି ଯୋଗୁଁ ଏଥାନ୍‌ଙ୍କର ସମୁଦ୍ରକୂଳଭ୍ରମଣ ଅଭିଳାଷ ଜାଗ୍ରତ ହେବାମାତ୍ରେ ଲୀନ ହେଲା । କ୍ଳାନ୍ତ ଓ ଅବସାଦରେ ସେ ହାଇଷ୍ଟ୍ରୀଟ୍ ପାରି ହେଲେ ଓ ଏଲ୍‌ମ୍ ଷ୍ଟ୍ରିଟ୍ ବାଟେ ନିଜ ପୈତୃକ ପୁରୁଣା ଘରକୁ ଫେରିଲେ ।

— ୦ —

# ଦ୍ୱିତୀୟ ପରିଚ୍ଛେଦ

ହଠାତ୍ ଭିତରେ ଏଥାନ୍ ପଶିବମାତ୍ରେ ମେଘାଙ୍କର ଦୃଷ୍ଟି ତାଙ୍କ ଉପରେ ପଡ଼ିଲା । ସେ ତରତରରେ ଆସି ତାଙ୍କ ହାତରୁ ଗୋଟିଏ ବ୍ୟାଗ୍ ନିଜେ ଧରି ପକାଇଲେ ଓ ଘରେ ପଶୁ ପଶୁ କହିଲେ, "ବହୁତ ଗୁଡ଼େ କଥା କହିବାକୁ ଅଛି । ନ କହି ମୁହୂର୍ତ୍ତେ ରହି ପାରିବ ନାହିଁ ।"

ଏଥାନ୍ ମେଘାଙ୍କୁ ଚୁମା ଦେଲେ; ମେଘ ଅନୁଭବ କଲେ, ଏଥାନ୍‌ଙ୍କ ଓଠ ଶୁଖି ଯାଇଛି ।

ସେ ପଚାରିଲେ, "ତମର ହୋଇଛି କ'ଣ ?"

ଏଥାନ୍ କହିଲେ, "କାଇଁ, ନାଇଁତ । ଟିକିଏ ହାଲିଆ ଲାଗୁଛି ।"

"କାହିଁକି ? ଆଜି ଦ'ପହରେ ତ ତିନିଘଣ୍ଟା ଦୋକାନ ବନ୍ଦ ରହିଥିବ ?"

"ହଁ ମେ, ଗୁଡ଼ାଏ କାମ ପଡ଼ିଗଲା ।"

"ପରିଶ୍ରମ କରି ହାଲିଆ ହୋଇଚ, ନା ମନ ଖରାପ ଅଛି, କହୁନାଁଅ !"

"ଆଜି ତ ମନ ଖରାପ ହେବାର ଦିନ ।"

ମନ ଖରାପ ହେବା ଦିନ ନୁହଁ ଗୋ ! ଆଜି ଗୋଟାଏ ବଢ଼ିଆ ଦିନ । ରହ, କହିବି ଶୁଣିବ ।"

"ପିଲେ ଗଲେ କୁଆଡ଼େ ?"

"ଉପର ମହଲରେ ରେଡ଼ିଓରେ ମାତିଛନ୍ତି । ତାଙ୍କର ବି ତମକୁ ଗୋଟାଏ କଥା କହିବାର ଅଛି ।"

"କ'ଣ ଗୋଟାଏ ଅନିଷ୍ଟ କଲେଣି ନିଶ୍ଚୟ ?"

"ଅନିଷ୍ଟ ବୋଲି ହଠାତ୍ ମନକୁ କାହିଁକି ଆଣୁଛ ଯେ ?"

"କାହିଁକି, କେଜାଣି ? ସେଇମିତି ଆଶଂକା ତ ହେଉଛି ।"

"ତୁମ ମନ ଖରାପ ଅଛି ନିଶ୍ଚୟ ।"

"ମୋ ମନରୁ କ'ଣ ପାଇବ ? ମୁଁ ବେଶ୍ ଭଲ ଅଛି ।"

"ଏତେ ଶୁଭ ଖବର ଭିତରେ— ! ଆମ ନିଜ ଶୁଭ ଖବର ଖିଆପିଆ ସରିଲେ କହିବି । ତାଜୁବ୍ ହେବ କି ନାଇଁ ଦେଖିବା ।"

ଏତିକ ବେଳକୁ ସ୍ୱାଲେନ୍ ଓ ମେଷ୍ଟ ଏଲେନ୍ ଭୂସ୍ ଭୂସ୍ ହୋଇ ସିଡ଼ିରେ ଧାଇଁ ଆସି ସିଧା ବେଷ୍ଟେଇଘରେ ଢୁକିଲେ । ଦୁହେଁ ଯାକ ଏକସ୍ୱରରେ କହି ଉଠିଲେ, "ଆରେ, ବାପା ଆସିଲେଣି !"

ସ୍ୱାଲେନ୍ ପଚାରିଲା, "ବାପା ! ଦୋକାନରେ ଫୀକ୍ସ୍ ଡବା ଅଛି ନା ?"

ଏଥାନ୍ ପଚାରିଲେ, "ଓଃ, ଗହମ ଦାନା ଯେଉଁ ଡବାରେ ଆସେ, ସେଇ ଡବା ?"

"ହଁ ସେଇ । ସେଇଥିରୁ କେତୋଟା ଡବା ଆଣିଦେବ, ବାପା ? ସେଇ ଯେଉଁ ଡବାର ମୁହଁପଟ ଢାଙ୍କୁଣିରେ ଗୋଟାଏ ମୂଷାର ମୁଖା ଥାଏ ।"

"ତୁ ଏତୁଟିଏ ହେଲୁଣି, ଏବେ ବି ମୂଷାମୁଖାରୁ ମନ ଗୁଞ୍ଜୁନାହିଁ ?"

ଏଲେନ୍ କହିଲା, "ବାପା ! ବିଜ୍ଞାପନ ବାହାରିଚି, ଏଇ ଡବାର ମୁହଁ ସାଙ୍ଗେ ଆଠ'ଣା ପଇସା ପଠାଇଦେଲେ ଜନ୍ତୁଜନ୍ତାଙ୍କ ସ୍ୱର ଅନୁକରଣ କରିପାରିବା ଯନ୍ତ୍ର ଗୋଟାଏ ମିଳିବ ଓ ତା'କୁ କିପରି ବ୍ୟବହାର କରିବାକୁ ହେବ ତାହାର ସୂଚନା—ପୁସ୍ତିକା ଖଣ୍ଡେ ମିଳିବ । ଏ ବିଜ୍ଞାପନ ଏଇନେଗେ ରେଡ଼ିଓ କହିଲା ।"

ମେଷ୍ଟ କହିଲେ, "ଆଉ କ'ଣ କରିବ ବୋଲି ବିଚାରୁଛ, ବାପାଙ୍କୁ କହ ।"

"ହଁ, ବାପା, 'ମୁଁ ଆମେରିକାକୁ ସୁଖ ପାଏ' ବୋଲି ଗୋଟାଏ ପ୍ରତିଯୋଗିତା ହେଉଛି, ସମଗ୍ର ରାଷ୍ଟ୍ରରେ । ଆମେ ସେଥିରେ ମିଶିବୁ ବୋଲି ଠିକ୍ କରିଛୁ । ପ୍ରଥମ ପୁରସ୍କାର ଯେ ପାଇବ, ତାକୁ ଓ୍ୱାସିଂଟନକୁ ନେବେ, ରାଷ୍ଟ୍ରପତିଙ୍କୁ ସାକ୍ଷାତ୍ କରାଇ ଦେବେ—ହଁ, ବାପା ମା'ଙ୍କୁ ସାଙ୍ଗରେ ନେବାକୁ ଦେବେ—ଯ୍ୱା ବାଦ୍ ଆହୁରି ବହୁତ ପୁରସ୍କାର ବି ମିଳିବ ।"

"ହଁ, ପୁରସ୍କାର ତ ବେଶ୍ ବଢ଼ିଆ । କିନ୍ତୁ ଏ ପ୍ରତିଯୋଗିତାଟାର ଅସଲ ସ୍ୱରୂପଟା କଣ କହ । ତୁମକୁ କ'ଣ କରି ପ୍ରତିଯୋଗିତାରେ ଯୋଗ ଦେବାକୁ ହେବ ।"

ଏଲେନ୍ ଉଚ୍ଛ୍ୱସିତଭାବେ କହିବାକୁ ଲାଗିଲା, "ହେଁର୍ଷ୍ଟଙ୍କ ପରିଚାଳିତ ଖବରକାଗଜ ମାନଙ୍କ ତରଫରୁ ଏ ପ୍ରତିଯୋଗିତା ସୁରୁ ହୋଇଛି—ସମଗ୍ର

ରାଷ୍ଟ୍ରପାଇଁ ଏକ ସର୍ତ୍ତ—କାହିଁକି ଆମେରିକାକୁ ସୁଖ ପାଅ, ସେଇ ବିଷୟରେ ପ୍ରବନ୍ଧଟିଏ ଲେଖିଦେଲେ ହେଲା । ଯେଉଁମାନେ ପୁରସ୍କାର ପାଇବେ ସେ ସମସ୍ତେ ଟେଲିଭିଜନ୍‌ରେ ନିଜ ନିଜ ପ୍ରବନ୍ଧ ପଢ଼ିବେ ବୋଲି ବି ବ୍ୟବସ୍ଥା ହୋଇଛି ।"

ଆ୍ୟାଲେନ୍ କହିଲା, "କରିବାକୁ ହେବ ଏତିକି ମାତ୍ର—ଏଇ ପ୍ରବନ୍ଧ ଲେଖିବାଟା—ଓ୍ୱାସିଂଟନ୍ ଯିବାକୁ ମିଳିବ, ହୋଟେଲରେ ରହିବ, ସିନେମା ଦେଖିବ, ରାଷ୍ଟ୍ରପତିଙ୍କ ସଙ୍ଗେ ସାକ୍ଷାତ ହେବ, କଳକାରଖାନା ଦେଖିବାକୁ ମିଳିବ—କେଡ଼େ ମଜା !—କାମକୁ ଚାହିଁଲେ କେଡ଼େ ବଡ଼ିଆ ପୁରସ୍କାର !"

"ସେ ସବୁ ତ ହେବ । ସ୍କୁଲ ପଢ଼ା କ'ଣ ଚୁଲିକୁ ଯିବ ?"

"ଏ କାମ ଏଇ ଖରା ଛୁଟି ଭିତରେ ସରିଯିବ । ଜୁଲାଇ ଚାରି-ତାରିଖରେ ପୁରସ୍କାର ଘୋଷଣା ହୋଇଯିବ ।"

"ହଉ, ସବୁତ ହେଲା । ବେଶ୍ ଭଲ କଥା । କିନ୍ତୁ କହିଲ ଭଲା, ତମର ଆମେରିକା ପ୍ରତି ଶ୍ରଦ୍ଧା ଅଛି ନା ଖାଲି ପୁରସ୍କାର ଲୋଭରେ ଏଥିରେ ମାତିଛ ?"

ମେରି ଅଭିଯୋଗ କଲେ, "ବାପ ବୋଲି ଆକଟ କରୁ କରୁ ପିଲାଙ୍କ ସୁଖଶ୍ରଦ୍ଧାକୁ ଏମିତି ମାରି କରୁଛ କାହିଁକି ?"

ଏଥାନ୍ କହିଲେ, "ମୂଷା ମୁଖାଥିବା ଖୋଳରୁ ଭିତରର ଶସ୍ୟକୁ ଟିକିଏ ଆଡ଼େଇ ଦେଉଛି ମାତ୍ର । ପିଲେ ଚଷୁ ଓ ଗହଳ ଏକାଠି କରି ଦେଉଛନ୍ତି ।"

"ବାପା ! ଏ ପ୍ରବନ୍ଧଟା ପାଇଁ ଉପକରଣ କେଉଁଠି ମିଳିବ କହିଲ ।"

"କେଉଁଠି କ'ଣ ମିଳିବ ବୋଲି ଚାହୁଁଛ ରେ ?"

"ମାନେ, ଏ ବିଷୟରେ ଅନ୍ୟମାନେ କ'ଣ କ'ଣ ଲେଖିଛନ୍ତି, କେଉଁଠି ପାଇବୁ ?"

"ତମ ପଣଗୋସିଁ ବାପ ଅନେକଗୁଡ଼ାଏ ଭଲ ଭଲ ବହି ସଂଗ୍ରହ କରି ରଖିଯାଇଛନ୍ତି । ପକାଉପର ଟ୍ରଙ୍କିରେ ସେ ସବୁ ଅଛି, ଯାଅ ଦେଖିବ ।"

“ କି କି ବହି ? ସେ ସବୁର ଲେଖକମାନେ କିଏ କିଏ ?”

“ଅନେକ ବହି । ଲିନ୍‌କଲନ୍‌ଙ୍କ ବକ୍ତୃତା ମାଳା ଅଛି । ଡାନିଏଲ୍ ଓ୍ୱେବ୍‌ଷ୍ଟର୍ ଓ ହେନ୍‌ରି ବ୍ଲେକ୍‌ଙ୍କ ପୁସ୍ତକ ଅଛି । ଥୋରୋ, ଓ୍ୱାଲ୍‌ଟ୍ ହ୍ୱିଟ୍‌ମ୍ୟାନ୍ ଓ ଇମର୍‌ସନ୍‌ଙ୍କ ଗ୍ରନ୍ଥାବଳୀ ବି ଅଛି—ମାର୍କ୍ ଟ୍ୱେନ୍‌ଙ୍କ ଲେଖା ସବୁ ବି ଅଛି । ଯାଅ ଟୁଙ୍ଗି ଘରେ ସବୁ ଦେଖିବ ।”

“ବାପା ! ତମେ ଏ ସବୁ ବହି ପଢ଼ିଛ ?”

“ତୁମର ଯେ ପଣଗୋସିଁ ବାପା ସେ ପରା ମୋର ଗୋସିଁ ବାପା । ମୋ ପିଲାଦିନେ ସେ ବଞ୍ଚିଥିଲେ । ଅନେକ ଥର ଏ ବହି ସବୁ ପଢ଼ି ମୋତେ ବୁଝାନ୍ତି ।”

“ତେବେ ତ ତମେ ଏ ପ୍ରବନ୍ଧ ଲେଖିବାରେ ଆମକୁ ସାହାଯ୍ୟ କରି ପାରନ୍ତ !”

“କିନ୍ତୁ ମୁଁ ଲେଖିଲେ ତ ସେ ଲେଖା ଆଉ ତୁମର ବୋଲି କହି ହେବ ନାହିଁ !”

ସ୍ମାଲେନ୍ କହିଲ, “ହଉ, ନ ଲେଖ । ତମେ ମନେ ପକାଇ ପୀକ୍‌ସ୍ ଡବା କେତୋଟା ଆଣିବ ଟି । ତା’ଭିତରର ଶସ୍ୟରେ ଲୌହ ଓ ଅନ୍ୟ ଅନେକ ରକମ ଖାଦ୍ୟସାର ମିଶ୍ରିତ ହୋଇଛି ବୋଲି ଲେଖା ହୋଇଥାଏ । ସେ ଶସ୍ୟ ଆମେ ଖାଇଲେ ଭଲ ହେବ, ଓପର ଖୋଳର ପ୍ରୟୋଜନ ତ ଅଧିକା କଥା ।”

“ଆଚ୍ଛା, ହଉ, ଦେଖିବା ।”

“ବାପା ! ଆମେ ଆଜି ସିନେମା ଦେଖି ଯା’ନ୍ତୁ ?”

ମେରି କହିଲେ, “ତମେ ପରା ବର୍ତ୍ତମାନ ଇଷ୍ଟର୍ ଉତ୍ସବ ପାଇଁ ଅଣ୍ଡା ଉପରେ ରଙ୍ଗ କରିବ ! ମୁଁ ତା’କୁ ସବୁ ସାଙ୍ଗେ ସାଙ୍ଗେ ସିଝେଇ ଦେଉଚି । ଖିଆପିଆ ସରିଲେ ତମେ ସେଗୁଡ଼ିକ ବାହାର ବାରଣ୍ଡାକୁ ନେଇ ସେଇଠାରେ ରଙ୍ଗ କରିବ ।”

“ଆମେ ବର୍ତ୍ତମାନ ପକ୍‌କାଉପର ଟୁଙ୍ଗିକୁ ଯାଇ ସେଠାରେ ବହି ଗୁଡ଼ିକ ଓଲଟାଇବୁ ତେବେ ?”

“ହଉ, ଯିବ ଯେବେ ଯାଅ, କିନ୍ତୁ ଆସିଲାବେଳେ ଆଲୁଅ ଲିଭାଇ ଦେଇ ଆସିବ । ଥରେ ଆଲୁଅ ଜଳିଲା ସମାନ ଗୋଟାଏ ହପ୍ତା । ଏଥାନ୍, ତୁମେ ସେଥର ଆଲୁଅ ଲିଭାଇବାକୁ ପାସୋରି ଆସିଥିଲ ।”

ପିଲମାନେ ଉପରକୁ ଯାଇ ସାରିବା ପରେ ମେଷ ପଚାରିଲେ, "ପିଲମାନେ ଏ ପ୍ରତିଯୋଗିତାରେ ଯୋଗ ଦେବା ତୁମକୁ ସୁଖ ଲଗୁନାହିଁ ?"

"ସୁଖ ନ ଲଗିବ କାହିଁକି ? କନ୍ତୁ ଠିକ୍ ଭାବରେ କାମଟି କଲେ ହେଲା ।"

ମେଷ କହିଲେ,"ହଁ ଏବେ ମୋ କଥା । ଆଉ ତାହା ମୋ ପେଟରେ ରଖି ହେଉ ନାହିଁ । ମାର୍ଗି ଆଜ ସକାଳେ ତାଙ୍କ କାର୍ଡ଼ ବାହାର କରି ମୋ ଭାଗ୍ୟ ଗଣନା କଲେ । ଥରେ ନୁହେଁ, ଥରି ଥର କରି ତିନିଥର । ପ୍ରଥମ ଥର ଭାଗ୍ୟ ଗଣନା କରି ସେ କହିଲେ, ଏପରି ଭାଗ୍ୟଫଳ ବାହାରି-ବାର ସେ କେବେ ଦେଖିନାହାନ୍ତି । ପ୍ରଥମ ଥର ସନ୍ଦେହ ହେବାରୁ, ଦ୍ୱିତୀୟ ଥର ଦେଖିଲେ, ପୁଣି ତୃତୀୟ ଥର ବି । ସବୁଥର ଏକା କଥା । ତିନିଥର ଯାକ ମୁଁ ନିଜ ଆଖିରେ ଠିକ୍ ଦେଖିଛି, କାର୍ଡ଼ଗୁଡ଼ିକ ତା' ମନକୁ ମନ ବାହାରୁଥାଏ ।"

ଏଥାନ୍ କହିଲେ, "ବାପ୍‌ରେ ବାପ୍ ।"

ମେଷ ଅଭିଯୋଗ କଲେ, "ସବୁ କଥା ଭଲ କରି ଶୁଣିଲେ, ତୁମେ ସବୁକୁ ହସରେ ଉଡ଼ାଇ ଦେଇପାରିବନାହିଁ । ଭାଗ୍ୟ ଗଣନା କଥା ଉଠିଲେ ତ ତୁମେ ନାନାପ୍ରକାର ଥଟ୍ଟା ତାମସା କର । ଡେଙ୍ଗା ହୋଇ କାଳିଆ ମଣିଷଟାଏ କୁଆଡ଼ୁ ଆସି ଅଜବ୍ କଥା କହିଗଲା ବୋଲି ନାକ ଟେକ । ପ୍ରକୃତରେ ଯାହା ଘଟିଲା ତାହା ତୁମେ କଳ୍ପନା ବି କରି ପାରିବ ନାହିଁ । କହିଲ ଭଲା ଦେଖି, ଭାଗ୍ୟ ଗଣନାରୁ କ'ଣ ବାହାରିଲା ?"

ଏଥାନ୍ କହିଲେ, "ଦେଖ, ମେଷ, ମୁଁ ଆଗରୁ ସାବଧାନ କରି ରଖୁଛି ।"

"ମୋତେ ପୁଣି ସାବଧାନ କରିବ, କ'ଣ ବୋଲି ? ଭାଗ୍ୟଫଳ କ'ଣ ବାହାରିଲା ସେ କଥା ତ ଏତେବେଳ ଯାଏ ଶୁଣି ନାହଁ । ବାହାରିଲା ଯେ ମୋ ଭାଗ୍ୟ ହେଉଛି, ତୁମେ ନିଜେ ।"

ଦାନ୍ତଚିପି ଫିସ୍ ଫିସ୍ କରି ଏଥାନ୍ ନିଜକୁ ତୁଚ୍ଛକରି ଗୋଟାଏ ଖରାପ ପଦ କହିଲେ ।

ମେଷ ପଚାରିଲେ, "କ'ଣ କହିଲ ?"

"କହିଲି, ମୁଁ ଯଦି ତୁମର ଭାଗ୍ୟ, ତେବେ ତାହା ଅତି ତୁଚ୍ଛ ବୋଲି ବୁଝିବାକୁ ହେବ ।"

"ତୁମେ ସିନା ତୁଛ ବୋଲି ଭାବୁଛ, କିନ୍ତୁ କାର୍ଡ ଭାବୁଛନ୍ତି ନାଆଁର । ସେ କାର୍ଡ ପକାଇଲେ ତିନିଥର, ଥରେ ଦ'ଥର ନୁହେଁ— ସବୁଥର ଏକ କଥା ।"

"ତେବେ କାର୍ଡମାନେ ବି ଭାବୁଛନ୍ତି ?"

ମେଷ୍ଟି କହିଲେ, "ଭାବୁ ନାହାନ୍ତି ଯେ, ଜାଣୁଛନ୍ତି । ମାଗି ଆମ ଘରେ କାର୍ଡ ପକାଇ ମୋର ଭାଗ୍ୟ ଗଣନା କଲେ । ସେଥିରୁ ବାହାରିଲା,ତୁମର ଭାଗ୍ୟର କଥା । ତୁମେ ଏ ସହରର ସବୁଠାରୁ ବଡ଼ ଲୋକଙ୍କ ଭିତରୁ ଜଣେ ହେବ । ମୋ ଷଗ୍ତରରେ ସେଇ କଥାଟା ସବୁଠାରୁ ବଡ଼ କଥା । ପୁଣି ସ୍ଥା ହେବାକୁ ବିଳମ୍ବ ବି ହେବ ନାହିଁ । ଖୁବ୍ ଶୀଘ୍ର ଘଟିବ । ଯେତୋଟା କାର୍ଡ ସେ ପକାଇଲେ ସବୁଥିରୁ ବାହାରିଲା—ଧନ ବଢ଼ିବ, ବହୁତ ବଢ଼ିବ— ଖାଲି ଧନ—ଆହୁରି ଧନ । ତୁମେ ଜଣେ ଧନୀ ଲୋକ ହେବାଇଁ ହେବ ।"

ଏଥାନ୍ କହିଲେ, "ପ୍ରିୟେ ! ମୋ କଥା ଓ୍ୱେନା କର । ମୁଁ ସାବଧାନ କରୁଛି । ଅନୁଗ୍ରହ କରି ମୋର ବାରଣ ମାନ ।"

ସେ କଥା ନ ଶୁଣି ମେଷ୍ଟି କହିଲେ, "ତୁମେ ଗୋଟାଏ କାମରେ ଟଙ୍କା ଖଟାଇବ ।"

"କିନ୍ତୁ ସେ ଟଙ୍କାଟା ପୁଣି ଆସିବ କେଉଁଠୁ ? କାହିଁକି ?" "ମୁଁ ତ ବଷ୍ଟରୁଛି ଭାଇଙ୍କଠାରୁ ଯେଉଁ ଟଙ୍କା ମିଳିଛି ତାକୁଇ ଖଟାଇବ ।"

ଏଥାନ୍ ଜୋର କରି କହିଲେ, "ନା, ନା, ସେ ଟଙ୍କା ମୁଁ ଛୁଇଁବ ନାଇଁ । ସେ ତୁମର ଟଙ୍କା, ତୁମର ହୋଇ ରହିବ । ଆଚ୍ଛା, ଏ ଟଙ୍କା ଖଟାଯିବ ବୋଲି ତୁମେ ଭାବିଲ ନା ସେ—"

"ନାଁ, ନାଁ, ସେ କଥା ସେ ଆଦୌ କହି ନାହାନ୍ତି । କାର୍ଡ୍ ମଧ କହିନାଇଁ । ଏତିକି ବାହାରିଲା ଯେ ତୁମେ ଜୁଲାଇରେ ଟଙ୍କା ଲଗାଣ କରିବ । ତା'ପରେ ଗୋଟାକ ପରେ ଗୋଟାଏ—ଗୋଟାକ ଉପରେ ଗୋଟାଏ ଏପରି ଘଟଣା ଘଟିବ । ଯାହା ଫଳରେ ତୁମ ହାତକୁ ଧନ ଆସିବ । ଆଚ୍ଛା, ଏକଥା ତୁମକୁ ସୁଖ ଲଗୁନାହିଁ ? ମୁଁ ତ ସ୍ଥା ଶୁଣି ଏକାବେଳକେ ଉଲସି ଉଠିଲି । ଏ କଥାକୁ ମାଗି ଏଇମିତି ଭାବରେ ପ୍ରକାଶ କଲେ, 'ମେଷ୍ଟି, ତୁମର ଭାଗ୍ୟବିଧାତା ଏଥାନ୍ । ନିକଟରେ ସେ ଖୁବ୍ ବଡ଼ ଧନୀ ଲୋକ ହେବେ—ବୋଧହୁଏ ସହରର ସବୁଠାରୁ ବଡ଼ ଲୋକ ହେବେ ।'

"କେଉଁ ଖଗପ ମାଇକଲଆଟେ ସେ ମାର୍ଗ ! ତା'ର କ'ଣ ଅଧିକାର ଅଛି ?"

ମେଗ୍ ଆକଟ କରି କହିଲେ, "ଏଥାନ୍ !"

"ମାର୍ଗ କ'ଣ କରୁଛି ଭଲ କରି ଜାଣୁଛ ? ତୁମେ ନିଜେ କ'ଣ କରିବାକୁ ଯାଉଛ, କଳନା କରୁଛ ?"

"ମୁଁ ଠିକ୍ ଜାଣୁଛି, ମୁଁ ଜାଣେ, ମୁଁ ପତିବ୍ରତା ସ୍ତ୍ରୀ, ଓ ମାର୍ଗି ମୋର ଅନ୍ତରଙ୍ଗ ବନ୍ଧୁ । ପିଲେ ଶୁଣିବା ଭଳି ତୁମ ସଙ୍ଗେ କଳି କରିବାକୁ ମୁଁ ଚାହେଁ ନାହିଁ । ଏତିକି ଜାଣ ଯେ ମାର୍ଗି ମୋର ସବୁଠାରୁ ବଡ଼ ସାଙ୍ଗ । ମୁଁ ଜାଣେ, ତାଙ୍କୁ ତୁମେ ସୁଖ ପାଅ ନାହିଁ । ମୋତେ ଲାଗୁଛି ମୋ ସାଙ୍ଗମାନଙ୍କ ଉପରେ ତୁମର ହିଂସା । ମୋର ଅନ୍ୟ କେହି ସାଙ୍ଗସୁଖ ନ ରହନ୍ତୁ ଏଇଆ ହିଁ ତୁମର କାମନା । ଓପରଓଳଟା ଟିକିଏ ମନଖୁସିରେ କଟାଇବାକୁ ବସିଥିଲି ଯେ ତମକୁ ଅଡୁଆ ଲାଗୁଛି । ଛି, କୋଉ କଥା ଯେ ତୁମର, କହିଲ ଦେଖି ।" ମେଗ୍‌ଙ୍କ ମୁହଁ କ୍ରୋଧ ଓ ନୈରାଶ୍ୟରେ ବିକୃତ ହୋଇଗଲା । ତାଙ୍କର ସୁଖସ୍ୱପ୍ନରେ ଏଥାନ୍ ଯେଉଁ ଅନ୍ତରାୟ ଆଣି ଥୋଇଲେ ତା' ବିରୁଦ୍ଧରେ ତାଙ୍କ ମନରେ ବିଦ୍ରୋହ ଜାତ ହେଲା ।

ସେ ଉତ୍ତ୍ୟକ୍ତ ହୋଇ ପୁଣି କହି ଲାଗିଲେ, "ଘରବୁଡ଼ିଆ ତୁମେ । ଖାଲି ଏଠି ବସି ଭଲ ଲୋକଙ୍କ ଇଜ୍ଜତ ମାରିବା କାମଟି ତୁମକୁ ଆସେ । ତୁମେ ବିଚାରୁଛ, ମାର୍ଗି ମନରୁ ଗଢ଼ି ମୋତେ କହୁଛି । ଏକଥା ଭୁଲ୍ । ସେ ସେପରି କିଛି କରିନାହିଁ । ପ୍ରତି ଥର ମୁଁ ତାସ ଗୁଡ଼ାକ ଫେଣ୍ଟିଛି । ଧର, ତୁମ କଥା ସତ, ସେ ଚଞ୍ଚକତା କରି ମୋତେ ଆମ ଭାଗ୍ୟ କଥା କହୁଛି । କାହିଁକି ସେପରି କହିଲା, କାହିଁକି ଚଞ୍ଚକତା କଲା ? ତା'ର ସେଥିରେ ସ୍ୱାର୍ଥ କ'ଣ ? ଆମ ପ୍ରତି ଅନୁକମ୍ପାରେ, ସୌହାର୍ଦ୍ଦ୍ୟରେ ତ ସେ ଯୁ କରିଛି ! ଏଥିପାଇଁ ତା' ପ୍ରତି ଏତେ ତୁଚ୍ଛ ଭାବ କାହିଁକି ? କହ, କାହିଁକି ତୁମେ କଥାଟା ସିଧା ସଳଖ ବିଚାର ନ କରି ଗୁଡ଼ାଏ ଏଣୁତେଣୁ ମନ୍ଦ ଚିନ୍ତା କରୁଛ ?"

ଏଥାନ୍ କହିଲେ, "ମାର୍ଗିର ପ୍ରକୃତ ଉଦ୍ଦେଶ୍ୟ କ'ଣ ଜାଣିବାକୁ ମୋ'ର ଇଚ୍ଛା । କିନ୍ତୁ ମଣିଷର ମନ କଥା ଜାଣିବି କିମିତି ? ମୋର ସନ୍ଦେହ, ଖାଲି ଦୁଷ୍ଟାମିରେ ସେ ଏପରି କରିଛି । ତା'ର ତ କାମ ନାହିଁ କି ଘଇତା ନାହିଁ । ଲଗାମ ଛଡ଼ା ଲୋକ ସିଏ । ଖାଲି ମଜାଟ ଦେଖିବାକୁ ଏତିକି କରିଥାଇଛି ।"

ମେଘା ନମ୍ରସ୍ୱରରେ ବଦ୍ରୁ ପରେ କହିଲେ, "ଦୁଷ୍ଟାମି କରି ଯୁକୁଟି ଦେଖିବାକୁ ସେ ଯୁ।ା କଲାବୋଲି ତ କହୁଛ ! ଖୁବ୍ ଜାଣିବା ଲୋକ ତୁମେ ! ତୁମ ଆଖି ଆଗରେ କେହି ତୁମର ଅନିଷ୍ଟ କଲେ ବି ତ ତୁମେ ଜାଣି ପାରିବ ନାହିଁ ; ସମସ୍ତଙ୍କଠାରେ ତୁମର ଏତେ ବିଶ୍ୱାସ ! ବିଚରା ମାର୍ଗି ବେଳକୁ ପ୍ରକୃତି ବଦଳୁଛି କାହିଁକି ? ସେ ବିଚରୀ କେତେ ଦୁଃଖରେ ଥାଏ, ତୁମେ କ'ଣ ଜାଣ ? ଏଇ ସହରର ଗୁଡ଼ାଏ ଲୋକ ସବୁବେଳେ ତା'ପଛରେ ଲାଗିଛନ୍ତି । ବଡ଼ଲୋକ ଗୁଡ଼ାକ, ବାହା ହୋଇଛନ୍ତି, ତଥାପି ଫୁସୁଲାଫୁସୁଲି କରି, କୁହା ରଚନା କରି ଯୁ।କୁ ଅବାଟକୁ ନେବାକୁ ବସି-ଛନ୍ତି । ବିଚରୀ କ'ଣ କରିବ, କିମିତି ଚଳିବ ଜାଣିପାରୁନାହିଁ । ସେଇଥି ପାଇଁ ସେ ମୋ ପାଖକୁ ଆସେ, ମାଇପି କଥା ମାଇପି ଲୋକ ବୁଝି ଆଶ୍ୱା-ସନା ଦେଇ ପାରିବ ବୋଲି । ସେ ମୋତେ ଏମିତି କେତେ କଥା କହୁଛି, ଯାହା ତୁମେ ପୁରୁଷ ଲୋକେ ଶୁଣିଲେ ବିଶ୍ୱାସ କରିବ ନାହିଁ । ଜାଣ, ଏମିତି ଲୋକ ଆମ ଏଠି ଅଛନ୍ତି, ଯେଉଁମାନେ ମାର୍ଗିକୁ ଜାଣନ୍ତି ନାହିଁ ବୋଲି ବାହାରେ କହନ୍ତି, କିନ୍ତୁ ଭିତରେ, ଲୁଚିଛପି କରି ତା'ଦୁଆରେ ଯାଇ ପହଞ୍ଚନ୍ତି, ଏବଂ ତାକୁ ଫୁସୁଲାନ୍ତି ନଷ୍ଟ କରିବାକୁ—ଧର୍ମାତ୍ମା ପୁରୁଷ-ଯାକ, ଦାଣ୍ଡରେ ନୀତିକଥା ବଖାନ କରୁଥାନ୍ତି, ଅଥଚ ପ୍ରକୃତି ଏଇମିତି । ଏଣେ ତମେ କହୁଛ, ଅନିଷ୍ଟ କରୁଛି ମାର୍ଗି ବୋଲି !"

ଏଥାନ୍ ପଚାରିଲେ, "ଆଚ୍ଛା, ଏ ମଣିଷଟିମାନ କିଏ, ମାର୍ଗି କହିଛି ?"

"ନା, ସେ କହିଲା ନାହିଁ, ଏଇଥିରୁ ତ ଜାଣିବ ସେ କେମିତି ଭଲ ଲୋକ ।

ତା' ଯୋଗୁଁ ଅନ୍ୟ ଲୋକ ଅଡ଼ୁଆରେ ପଡ଼ନ୍ତୁ, ଏକଥା ମାର୍ଗି ଚାହେଁ ନାହିଁ । ସେମାନେ ଅନିଷ୍ଟ କଲେ ବି ପ୍ରତିଶୋଧ ନେବାର ପ୍ରବୃତ୍ତି ତା'ର ନାହିଁ । ଖାଲି ମୋତେ ଏତିକି କହିଛି, 'ଯୁ।ଙ୍କ ଭିତରେ ଏପରି ଜଣେ ଲୋକ ଅଛି, ଯାହା ନାମ କହିଲେ ତୁମେ ଏକାବେଳକେ ବିଶ୍ୱାସ କରି ପାରିବ ନାହିଁ । ତା' ନାମ କହିଲେ ତତ୍‌କ୍ଷଣାତ୍ ତୁମ ମୁଣ୍ଡ ଫାଟି ଯାଇ ବାଳ ଯାକ ଧୋବ ହୋଇଯିବ ।"

ଏଥାନ୍ ସଁ କରି ଦମେ ପ୍ରଶ୍ୱାସ ନେଲେ ଓ କିଛି ସମୟ ପେଟରେ ପବନ ରୋକି ସୁ କରି ପବନକୁ ଦୀର୍ଘନିଃଶ୍ୱାସରେ ଛାଡ଼ି 'ଓଃ' ବୋଲି କହିଲେ ।

ମେଘ କହିଲେ, "ସେ ଲୋକଟା କିଏ ବିଚାରି ମୁଁ ଆଶ୍ଚର୍ଯ୍ୟ ହେଉଛି । ମାର୍ଗି ଯେପରି ଯାହା କହିଲା, ମୁଁ ଜାଣିଲି ସେ ଲୋକକୁ ଆମେ ଜାଣେ ଓ ଏତେ ଭଲ ଲୋକ ବୋଲି ଜାଣେ ଯେ, ସେ ଏପରି କରିବ ବୋଲି ବିଶ୍ୱାସ କରି ପାରିବା ନାହିଁ ।"

ଏଥାନ୍ ଧୀର ଭାବରେ କହିଲେ, "କିନ୍ତୁ ଏଭଳି ଅବସ୍ଥା ଘଟି ପାରେ ଯହିଁରେ କି ସେ ଲୋକର ନାମ ମାର୍ଗି ନିଶ୍ଚୟ କହିବାକୁ ବାଧ୍ୟ ହେବ ।"

"ହଁ, ବାଧ ହେଲେ ନିଶ୍ଚୟ କହିବ । ସେ କଥା ବି ସେ କହିଛି । ନିତାନ୍ତ ଯଦି ଦରକାର ପଡ଼େ—ତା' ଇଜ୍ଜତ, ତା' ସୁନାମ ଉପରେ ଆଞ୍ଚ ଆସିଲେ—ତୁମେ ତ ଜାଣି ପାରୁଥିବ । ଆଚ୍ଛା, ସେ ଲୋକଟା କିଏ ଅନୁମାନ କରି ପାରୁଛ ଭଲା ?"

"ବୋଧହୁଏ ତା'କୁ ମୁଁ ଜାଣେ ।"

ମେଘ ଉତ୍କଣ୍ଠାରେ କହି ପକାଇଲେ, "ତୁମେ ଜାଣ ? ସେଉଟା କିଏ ?"

ଏଥାନ୍ ନିର୍ବିକାରରେ କହିଲେ, "ମୁଁ ।"

ମେଘଙ୍କର ପାଟି ଆଁ ହୋଇଗଲା । ସେ କହିଲେ, "କେଡ଼େ କାବେଡ଼ା ତୁମେ ? ମୁଁ ସାବଧାନ ନ ହେଲେ ତ ତୁମେ ପ୍ରତି ମୁହୂର୍ତ୍ତରେ ମୋତେ ଫାନ୍ଦରେ ପକାଇଦେବ ! ହଉ, ହଉ, ମୁହଁ ଶୁଖେଇ ରହିବା ଅପେକ୍ଷା ବରଂ ଏପରି ରହସ୍ୟ କରିବା ଭଲ ।"

"ଆଉ ଉପାୟ କ'ଣ ? ନିଜ ସ୍ତ୍ରୀର ଅନ୍ତରଙ୍ଗ ବନ୍ଧୁ ସଙ୍ଗେ ପାପ ପ୍ରଣୟ କରିଛି ବୋଲି ପୁରୁଷ ସରଳଭାବେ ମାନିଗଲା ; ଅଥଚ ତାକୁ ବିଶ୍ୱାସ କରିବା ପରିବର୍ତ୍ତେ ସ୍ତ୍ରୀ କଥାଟିକୁ ହସରେ ଉଡ଼ାଇ ଦେଉଛି ! ମୁସ୍କିଲ୍ ବ୍ୟାପାର !"

"ଛି, ଏମିତି ଗୁଡ଼ାଏ କହିବା ସୁନ୍ଦର ନୁହେ ।"

"ଓଃ, ପୁରୁଷ ନିଜ ଦୋଷ ନ ମାନିଥିଲେ ବୋଧହୁଏ ସୁନ୍ଦର ହୋଇଥାନ୍ତା । ତେବେ ତା' ସ୍ତ୍ରୀ, ମନରେ ସନ୍ଦେହ କରି ସୁଦ୍ଧା, ମୁହଁରେ ତା' କଥାକୁ ବିଶ୍ୱାସ କରିଥାନ୍ତା ! ସେଇ କଥା କହିଯାଉ । ପ୍ରିୟେ ! ମୁଁ ସବୁପ୍ରକାର ରିଣ ପକାଇ କହୁଛି, କଥାରେ ବା କାର୍ଯ୍ୟରେ ମୁଁ କସ୍ମିନ୍ କାଳେ ମାର୍ଗି ପ୍ରତି ଟିକଏ ବି ମମତା ଦେଖାଇ ନାହିଁ । ଆଚ୍ଛା, ଏ ଉକ୍ତି ପରେ ଭଲା ମୁଁ ପାପ କରିଛି ବୋଲି ତୁମର ପ୍ରତ୍ୟୟ ହେବ ?"

"ଓଃ, କାହିଁକି ଏମିତି ଗୁଡ଼ାଏ ଗପୁଛ ଯେ !"

"ତୁମ ବନ୍ଧୁ ମାର୍ଗିଙ୍କ ତୁଳନାରେ ମୁଁ ଅଯୋଗ୍ୟ ବୋଲି ବିଚ୍ଚ୍-ରୁଛ ତେବେ ? ତାଙ୍କ ପକ୍ଷରେ ମୁଁ ଗ୍ରହଣୀୟ ନୁହେଁ; ମାନେ, ଯେଉଁ ଶ୍ରେଣୀର ମଣିଷ ହୋଇ ଥିଲେ ସେ ଆଦର କରନ୍ତେ, ସେ ଶ୍ରେଣୀକୁ ମୁଁ ପହଞ୍ଚି ପାରିନାହିଁ, ନା ?"

" ଅଛା ପରିହାସ ମୋତେ ସୁଖ ଲଗେ, ତୁମେ ତ ଜାଣ । କିନ୍ତୁ ଏଭଳି ବିଷୟରେ ପରିହାସ କରିବା ଭଲ ନୁହେଁ । ପିଲା ଦିହେଁ ଉପରଘର ଟ୍ରଙ୍କରୁ ବହି ବାହାର କରି ଦେଖୁଥିଲେ; ଟ୍ରଙ୍କ ଭିତରେ ପଶିଥିବା ବେଳେ ଉପରତାଙ୍କୁଣି ପଡ଼ିଯାଇଥିବ କେଜାଣି, ଯାଏ ଦେଖେ । କୌଣସି ଜିନିଷ ଘଣ୍ଟା ଘଣ୍ଟେ କଲା ପରେ ତା'କୁ ଯାଇଡି ରଖିବା ତାଙ୍କ ଜାତକରେ ନାହିଁ ।"

ଏଥାନ୍ ପୁଣି ଆରମ୍ଭ କଲେ, ' ସୁନ୍ଦରୀ ! କଥାଟାକୁ ପରିଷ୍କାର କରି ଦେବାକୁ ମୁଁ ଆଉ ଥରଟାଏ ଚେଷ୍ଟା କରୁଛି, ଧୈର୍ଯ୍ୟ ଧର । ଗୋଟାଏ ସ୍ତ୍ରୀ ଲୋକ, ତାର ନାମ 'ମା'ରେ ଆରମ୍ଭ ଓ ସାଂଙ୍ଗ 'ସ୍ୱ'ରେ । ସେ ମୋତେ ଫାନ୍ଦରେ ପକାଇବାକୁ ଗୁରିପଟୁ ଜାଲ ବେଢ଼େଇ ଦେଲଣି; କାରଣ କ'ଣ ତା'କୁ ଜଣା । କୌଣସି ନା କୌଣସି ମତେ ତା'ଫାନ୍ଦରେ ମୁଁ ପଡ଼ିଯିବାର ଘୋର ଆଶଂକା ହେଲଣି । ମୋର ଏ ବିପଦ ବେଳେ ତୁମେ ମୋତେ ଅବିଶ୍ୱାସ କଲେ ଚଳିବ ନାହିଁ ।"

ତୁମ ସୌଭାଗ୍ୟ କଥା ନ ବିଚ୍ଚରି, ଏମିତି ଗୁଡ଼ାଏ କାହିଁକି କହୁଛ ? ତାସରୁ ବାହାରିଛି,ଏଇ ଜୁଲାଇରେ ତୁମର ଭାଗ୍ୟୋଦୟ ହେବ । ଥରେ ନୁହେଁ, ତିନିଥର ଏଇ ଏକାକଥା ବାହାରିଛି—ମୁଁ ନିଜେ ଦେଖିଛି । ତୁମେ ଟଙ୍କା ପାଇବ—ଅଳ୍ପ ନୁହେଁ, କୁଡ଼ କୁଡ଼ । ଅନ୍ୟ ସବୁ କଥା ଛାଡ଼ି ସେଇ ବିଷୟରେ ମନ ଲଗାଅ ।"

ଏଥାନ୍ କହିଲେ, "ହଇଓ ମୋ' ଲେଟଣି ପାରି ! ପଇସା ପ୍ରତି ତ ତୁମର ଘରି ପ୍ରେମ !"

"ପ୍ରେମ ! କ'ଣ ତୁମେ କହୁଛ ଯେ ?"

"ପଇସା ପାଇଁ ଏତକ ଲାଳସା ଯେ, ତା'ରି ପାଇଁ ହଟଚମଟ, ଇନ୍ଦ୍ରଜାଲ, କମିଆ ପ୍ରଭୃତି ସବୁ ପ୍ରକାର ମାରଣ ତାରଣ ପ୍ରକ୍ରିୟାକୁ ତୁମେ ପସନ୍ଦ କରି ବସିଛ ?"

"ତମରି ଆଜ୍ଞୁ ଏକଥା ବାହାରିଲା । ଆଉ ମୋର ଦୋଷ ନାଇଁ । କଥାର ଜାଲରେ ଆଉ ତୁମେ ମୋତେ ଛନ୍ଦ ରଖି ପାରିବ ନାଇଁ । ପଗ୍ଚ-ରିଲ ପରି, ମୁଁ ପଇସାକୁ ପ୍ରେମ କରେ କି ନାହିଁ ବୋଲି ? କହୁଛି ଶୁଣ । ମୁଁ ପଇସାକୁ ପ୍ରେମ କରେ ନାହିଁ । ଯୁା ବୋଲି ଯେ ଅଭାବ, ଅସୁବିଧା, ଯନ୍ତ୍ରଣା, ମନସ୍ତାପକୁ ପ୍ରେମ କରେ ତା'ଭାବ ନାହିଁ । ଏ ସହରରେ ମୁଣ୍ଡ ଟେକ ଚାଲିବାକୁ ମୋର ଅଭିଳାଷ । ସହରର ଅନ୍ୟ ପିଲାଙ୍କ ପରି ଭଲ ଜାମା କୁରୁତା ଖଣ୍ଡେ ଖଣ୍ଡେ ପିନ୍ଧିବାକୁ ନ ପାଇ ମୋ ପିଲେ ବୁଲାକୁକୁର ପରି ସଂକୋଚରେ ଗ୍ଲାଲବୁଲ୍ କରିବା ମୋତେ ସୁଖ ଲାଗୁନାହିଁ । ମୁଣ୍ଡ ଟେକ ଚାଲିବାକୁ ମୋର ମନ ।"

"ତେବେ, ବୁଝୁଛ, ଧନ ହେଲେ ମୁଣ୍ଡ ଟେକ ହୋଇଯିବ ।"

"ଅନ୍ତତଃ, ଏ ସହରର କେତେକ ମହାତ୍ମାଙ୍କର ନାକ ଟେକା ତ ବନ୍ଦ ହୋଇଯିବ ।"

"ହେ'ଲି ବଂଶର ପୁଅ ବୋହୂଙ୍କୁ କଏ ନାକ ଟେକେ – ମୁଁ ତ ବିଶ୍ୱାସ କରି ପାରୁନାହିଁ !"

"ମନେ ମନେ ଗେଣ୍ଟ ହୋଇ ବସିଛ । ଲୋକଙ୍କ ନାକଟେକା ତୁମ ଆଖିକୁ ଦିଶୁନାହିଁ ।"

"ବୋଧହୁଏ ମୋ ଆଖି ତାହା ଦେଖିବାକୁ ଧଉଣି ହେଉନାହିଁ ।"

"ତୁମର ସେଇ ମର୍ଯ୍ୟାଦାବନ୍ତ ହେ'ଲି ନାମଟାର ବଡ଼ାଇ କରି ତୁମେ ମୋତେ ବୋଧ କରି ଦେବାକୁ ବସିଛ ।"

"ନାଇଁ ଲୋ ଧନ ଏକାଳରେ ଆଉ ସେ ନାମର ମହିମା ନାଇଁ ।"

"ଖୁବ୍ ଆନନ୍ଦର କଥା ଯେ ତୁମେ ଏକଥାଟା ବୁଝିପାରିଲଣି । ଏ ସହରରେ ହେଉ ବା ଅନ୍ୟ ଯେ କୌଣସିଠି ହେଉ, ମର୍ଯ୍ୟାଦାବନ୍ତ

ହ'ଲ ବଂଶର ଉତ୍ତରାଧିକାରୀ ଖାଦ୍ୟଦ୍ରବ୍ୟ-ଦୋକାନରେ ଗୁମାସ୍ତା ହେଲେ ବୋଲି କ'ଣ, ଗୁମାସ୍ତା କାମରେ ମର୍ଯ୍ୟାଦା ପଶିଯିବ ?"

"ଜୀବନ ସଂଗ୍ରାମରେ ପାରିଲି ନାହିଁ ବୋଲି ତୁମେ ମୋତେ ଘୃଣା କରୁଚ, ତେବେ ?"

"ନା, କଦାପି ନୁହେଁ କିନ୍ତୁ ନିଜର ଦୁରବସ୍ଥାରେ ସନ୍ତୁଷ୍ଟ ହୋଇ ତୁମେ ବସି ରହିବା ମୋତେ ସୁଖ ଲାଗୁନାହିଁ । ପୁରୁଣା କାଳିଆ ବସ୍ତୁରକୁ ଧରି ନ ବସି, ତୁମେ ଯଦି ଟିକିଏ ଉଦ୍ୟମ କରନ୍ତ ତେବେ ଆମ ଦୁଃଖ ଦୂର ହୋଇଯା'ନ୍ତା ବୋଲି ମୁଁ ସଫା ଜାଣିପାରୁଛି । ସମସ୍ତେ ତୁମକୁ ହସୁଛନ୍ତି । ପଇସା ନ ଥାଇ ତୁଚ୍ଛାରେ ଭଲ ଲୋକ ହେବାକୁ ବସିଲେ ସୁନ୍ଦର ଦିଶେନାହିଁ ।" କଥାଟା କହିଦେଲେ ସିନା, ତାହାର ମର୍ମ ମେସ୍ଙ୍କ ମସ୍ତିଷ୍କକୁ ଚଢ଼ିଯାଇ ମୁଣ୍ଡ ଫାଟିଗଲା ପରି ଲାଗିଲା; ଲାଜରେ ସେ ଭୂମୀ ହୋଇଗଲେ ।

ଏଥାନ୍ କହିଲେ, "ବେଶ୍,ବେଶ୍, ଆଜ ତୁମେ ମୋତେ ଗୋଟାଏ-ନାହିଁ, ତିନିଟା କଥା ଶିକ୍ଷା ଦେଇ ମୋର ନିର୍ବୋଧତା ଦୂର କରିଛ । ମୁଁ ଆଜ ଶିଖିଲି ଯେ ତିନୋଟି କଥା କେବେ ହେଲେ ବିଶ୍ୱାସ କରିବାକୁ ହେବ ନାହିଁ—ସତ୍ୟ, ସମ୍ଭବ୍ୟ ଓ ଯୁକ୍ତିସିଦ୍ଧ କଥା । ଏବେ ମୋତେ ବେଶ୍ ଦିଶିଗଲାଣି, କେଉଁଠୁ ଟଙ୍କା ଆଣି ଭାଗ୍ୟବାନ୍ ହେବାକୁ ହେବ ।"

ମେସ୍ ଉତ୍ସୁକ ହୋଇ ପଚାରିଲେ, "କେଉଁଠୁ ?"

ଏଥାନ୍ ନିର୍ବିକାର ଭାବେ ଉତ୍ତର ଦେଲେ, "ଗୋଟାଏ ବ୍ୟାଙ୍କ୍ ଲୁଟି କରିବ ।"

ଚରିକାରି ହୋଇଗଲାଣି ବୋଲି କଳ-ଚୁଲିର ଘଣ୍ଟି ଆସ୍ତେ ଆସ୍ତେ ଟିଣ୍ ଟିଣ୍ ହେବାକୁ ଆରମ୍ଭ କଲା ।

ମେସ୍ ତରତର ହୋଇ କହିଲେ, "ଯାଅ, ପିଲାଙ୍କୁ ଡାକ । ଚୁଲିଉପରେ କେତଲି ଡାକିଲାଣି । କହିବ, ଆଳୁଅ ଲିଭାଇ ଆସିବେ ।" ଏଥାନ୍ ଉପରକୁ ଗଲେ, ମେସ୍ ତାଙ୍କ ପାଦ ଶବ୍ଦକୁ କାନେଇଥାନ୍ତି ।

———

# ତୃତୀୟ ପରିଚ୍ଛେଦ

ମୋ'ସ୍ତ୍ରୀ, ମୋ' ମେଘଙ୍କର ନିଦ ବଡ଼ ବିଚିତ୍ର । ଗାଧୁଆ ଘରର ଦୁଆରଟି କଳ ଦେଲେ ଘରଟି ଯେପରି ନିଶୂନ ହୋଇଯାଏ, ସେହିପରି ଆଖି ମୁଦିଲେ ତ ତାଙ୍କର ସଂସାରରୁ ସମ୍ପର୍କ ଏକଦମ୍ ଛିଣ୍ଡିଗଲା । ତାଙ୍କ ନିଦ ହେବାର ଦେଖି ମୋର ହିଂସା ହୁଏ । କମନୀୟ ଶରୀରଟି ଆଗ ଟିକିଏ ଘାଗି ହୋଇଯାଏ, ଠିକ୍ ପୋକ ତା' ଖୋଳ ଭିତରେ ପଶିଲା ପରି; ଥରଟାଏ ସେ ଘାର୍ଘ ନିଃଶ୍ୱାସଟିଏ ପକାନ୍ତି; ତା'ପରେ ଆଖି ଦୁଇଟି ମୁଦି ହୋଇଯାଏ ଓ ଓଠ ଦୁଇଟିରୁ ସମସ୍ତ ଦୁଶ୍ଚିନ୍ତା ଦୂର ହୋଇ ପୁରାଣଯୁଗର ଗ୍ରୀକ୍‌ଦେଶୀୟ ଦେବତାଙ୍କ ମୂହଁର ଗମ୍ଭୀର ମୃଦୁହାସ ସେଥିରେ ଜକୁଟି ଉଠେ । ରାତି ତମାମ ନିଦରେ ଏଇ ହାସଟି ସେହିପରି ଅତୁଟ ରହିଥାଏ । କଣ୍ଠବାଟେ ନିଃଶ୍ୱାସ ପ୍ରଶ୍ୱାସ ଗୁଡ଼ୁଗୁଡ଼ୁ ଶବ୍ଦ କରି ଯିବା ଆସିବା କରୁଥାଏ—ହରଡ଼ପିଲ ଗୁଡ଼ୁଗୁଡ଼ୁ ହେଲାପରି । ପ୍ରଥମେ ମୁହୂର୍ତ୍ତକ ପାଇଁ ତାଙ୍କ ଦେହର ଉତ୍ତାପ ଟିକିଏ ବଢ଼ିଯାଏ । ତାଙ୍କ ପାଖରେ ଶୋଇଥିବା ମୋ ଦେହକୁ ସେ ଉତ୍ତାପର ଧାସ ବାଜଯାଏ—ମାତ୍ର ମୁହୂର୍ତ୍ତକ ପାଇଁ । ତା'ପରେ ପୁଣି ସ୍ୱାଭାବିକ ଶୀତଳତା ଫେରି ଆସେ ସେ ପୂର୍ଣ୍ଣ ସଂଜ୍ଞାହୀନ ହୋଇ ଏ ପୁରରୁ ଚାଲିଯାନ୍ତି କୁଆଡ଼େ କେଜାଣି ? ସେ କହନ୍ତି, ରାତିରେ ସେ ସ୍ୱପ୍ନ ଦେଖନ୍ତି ନାହିଁ, କିନ୍ତୁ ସ୍ୱପ୍ନ ଦେଖିବା ଯେ ସ୍ୱାଭାବିକ । ମୁଁ ବୁଝେ ହୁଏତ ସୁଖସ୍ୱପ୍ନ ଦେଖୁଥିବାରୁ ତାହା ତାଙ୍କ ମନକୁ ଆନ୍ଦୋଳିତ କରି ନ ପାରି ପାସୋରି ହୋଇଯାଏ , କିମ୍ବା ସ୍ୱପ୍ନ ତାଙ୍କୁ ଏତେ ବିଚଳିତ କରିପକାଏ ଯେ ଉଠିବା ପୂର୍ବରୁ ତା'ର ସ୍ମୃତି ସେ ଲିଭାଇ ଦିଅନ୍ତି । ଶୋଇବାରେ ତାଙ୍କର ଆନନ୍ଦ, ତେଣୁ ନିଦ୍ରା ତାଙ୍କୁ ଶ୍ରଦ୍ଧାକରେ । ମୋ'ର ହେଲେ ଏପରି ଗାଢ଼ ନିଦ ହେଉଥାନ୍ତା ! ମୋର ନିଘୋଡ଼ ନିଦ, ଶୋଇବାକୁ ଖରି ମନ, କିନ୍ତୁ ସ୍ୱଭାବତଃ ନିଦ ସାଙ୍ଗେ ମୋର ଅପଡ଼ ।

ତାଙ୍କର ମୋର ଏ ପାର୍ଥକ୍ୟ ବିଷୟରେ ମୁଁ ଚିନ୍ତା କରିଛି । ମୋର ମନେହୁଏ, ହୁଏତ ମେଘ ଜାଣନ୍ତି ଯେ ସେ ଚିରଞ୍ଜୀବିନୀ ହୋଇ ରହିବେ—ନିଦ୍ରାରୁ ଜାଗ୍ରତ ଅବସ୍ଥାକୁ ସେ ଯେପରି ସ୍ୱଚ୍ଛନ୍ଦରେ ଆସି-

ପାରୁଛନ୍ତି, ସେହିପରି ସ୍ୱଚ୍ଛନ୍ଦରେ ସେ ଏ ଜୀବନରୁ ଅନ୍ୟ ଏକ ଜୀବଜଗତ୍‌କୁ ସ୍ୱଚ୍ଛନ୍ଦରେ ଚାଲିଯିବେ । ଏ କଥା ତାଙ୍କ ଶରୀରର ସମସ୍ତ ଇନ୍ଦ୍ରିୟ ଏତେ ଦୃଢ଼ଭାବରେ ଅନୁଭବ କରୁଥାନ୍ତି ଯେ, ନିଃଶ୍ୱାସ ପ୍ରଶ୍ୱାସ ନେବାକୁ ଯେପରି ଚିନ୍ତା କରିବାକୁ ହୁଏ ନାହିଁ, ଜୀବନ ବିଷୟରେ ମଧ୍ୟ ସେ ସେଇପରି ନିଶ୍ଚିନ୍ତ । ତେଣୁ ତାଙ୍କୁ ଶୋଇବାକୁ ବେଳ ମିଳେ, ବିଶ୍ରାମ କରିବାକୁ ମିଳେ ଓ ନିଘୋଡ଼ ନିଦରେ ଏ ଜଗତ୍‌ରୁ କିଛି ସମୟ ପାଇଁ ଛୁଟି ନେବାକୁ ସେ ସମର୍ଥ ହୁଅନ୍ତି ।

ମୋ'କଥା ଅଲଗା । ମୁଁ ହାଡ଼େ ହାଡ଼େ ଅନୁଭବ କରେ ଯେ ଆଜି ହେଉ ବା କାଲି ହେଉ, ହଠାତ ନା ହଠାତ ମୋର ଜୀବନ ସାଙ୍ଗ ହୋଇଯିବ, ତେଣୁ ସାମୟିକ ମୃତ୍ୟୁ ଯେ ନିଦ୍ରା, ତା'କୁ ମୋର ମହା-ଭୟ । ନିଦ ଆସୁ ବୋଲି ନାନାମତେ ଚେଷ୍ଟା କରୁଥିବା ଭିତରେ ବି ମୁଁ ନିଦ ବିରୁଦ୍ଧରେ ବିଦ୍ରୋହୀ ହୋଇ ଉଠେ । ମୁଁ ଯେଉଁ ସମୟତକ ଶୁଏ, ସେତକ ସମୟ ପାଇଁ ମୁଁ ସଂସାରରୁ ବିଦାୟ ନେଇ ଯାଉଛି ଭଳି ବୋଲି ମୋର ମନସ୍ତାପ ହୁଏ । ନିଦରୁ ଉଠିବା ମାତ୍ରେ ମୋର ଏହି ମନ-ସ୍ତାପର ଅନୁଭୂତି ଆସେ । ହେଉଛି ଏଇ ମୁହୂର୍ତ୍ତରେ ମୋର ନିଦ ଭାଙ୍ଗିଗଲା, ସତେ ଯେମିତି ମୋତେ କିଏ ଗୋଟାଏ ମାଡ଼ ମାରିଲା ପରି କେତେ ଖରାପ ଲାଗୁଛି । ଜାଗ୍ରତ ଅବସ୍ଥାରେ ମୁହୂର୍ତ୍ତେ ବିଶ୍ରାମ ନ ମିଳୁଥିବାରୁ ନିଦରେ ବି ମୁଁ ବିଶ୍ରାମ ପାଏ ନାହିଁ । ଜାଗ୍ରତ ଅବସ୍ଥାର ଜଞ୍ଜାଳ ବିକଟ ରୂପରେ ମୋତେ ସ୍ୱପ୍ନରେ ଦିଶେ । ମତେ ଲାଗେ, ସତେ ଯେମିତି ମଣିଷ, ମୁଣ୍ଡରେ ମଇଁଷି ଶିଂଘ ବାନ୍ଧି, ମୁହଁରେ ମଇଁଷି ମୁଖା ପିନ୍ଧି ନାଚ କରୁଛନ୍ତି ।

ମେଘୀ ଯେତେ ଶୁଅନ୍ତି ତା' ତୁଳନାରେ ମୋର ନିଦ ଖୁବ୍ କମ୍ । ସେ କହନ୍ତି, ତାଙ୍କର ବହୁତ ଶୋଇବା ଦରକାର; ତା'ଅର୍ଥ ତାଙ୍କ ତୁଳନାରେ ମୋର କମ୍ ଦରକାର । ମୁଁ ଏକଥା ତୁଣ୍ଡରେ ସ୍ୱୀକାର କରେ, କିନ୍ତୁ ମନ ମାନେ ନାହିଁ । ମନୁଷ୍ୟ ଶରୀରରେ ନିର୍ଦ୍ଦିଷ୍ଟ ପରିମାଣର ଶକ୍ତି ସଂଚିତ ଥାଏ, ଖାଦ୍ୟ ଯୋଗୁଁ ଏ ପରିମାଣ କିଛି ଅବଶ୍ୟ ବୃଦ୍ଧି-ପାଏ; କିନ୍ତୁ ମୋଟ ପରିମାଣଟା ଅଳ୍ପ ବହୁତେ ସୀମାବଦ୍ଧ—ସେଇ ତା'ର ପୁଞ୍ଜି । ଏଇ ପୁଞ୍ଜିକୁ ମଣିଷ ଶୀଘ୍ର ଶୀଘ୍ର ବ୍ୟୟ କରିଦେଇ ପାରେ, ଯେମିତି ଜଣେ ଜଣେ ପିଲା ମିଠେଇ ପାଇଲେ ଏକାଥରକେ ଗିଳି ଦିଅନ୍ତି ।

ଖା'ନ କରି ଅଳ୍ପ ଅଳ୍ପ କରି ଖାଇ ମିଠେଇର ସ୍ୱାଦୁ ଆଉ ଜଣେ ଜଣେ ପିଲା ବେଶୀ ସମୟ ଉପଭୋଗ କରନ୍ତି । ଗୋଟିଏ ଝିଅଟିଆ ଝିଅକୁ ଦେଖିଛି; ସେ ତା'ମିଠେଇରୁ ଟିକିଏ ସାଇତି ରଖେ । ଗିଳିଦେବା ବାଲାଙ୍କ ମିଠେଇ ସରିବାର ବହୁ ସମୟ ପରେ ବି ତା'ପାଖରେ ମିଠେଇ ଟିକିଏ ଥାଏ । ଜୀବନ ବିଷୟରେ ସେହିପରି; ଯେ ଶକ୍ତିର ମିତବ୍ୟୟ କରୁଛି ତା'ର ଜୀବନ ବେଶୀ ଦିନ ରହିବ ଇ ରହିବ । ସେଇମିତି ଜଣେ ମୋ ମେଷ୍ଟ; ମୁଁ ଜାଣୁଛି, ମୋ'ଠାରୁ ସେ ବେଶୀ ଦିନ ବଞ୍ଚିବେ । ସେ ତା'ଙ୍କ ଜୀବନରୁ ଟିକିଏ ଟିକିଏ ଭବିଷ୍ୟତ୍ ପାଇଁ ସାଇତି ରଖୁଛନ୍ତି । ମୋଟାମୋଟି ଦେଖିଲେ, ଜଣାଯାଏ ସବୁ ସ୍ତ୍ରୀଲୋକଙ୍କର ଏଇ ଢଙ୍ଗ; ସାଧାରଣତଃ ସେମାନେ ପୁରୁଷଙ୍କଠାରୁ ବେଶୀ ଦିନ ବଞ୍ଚନ୍ତି ।

ଗୁଡ୍ ଫ୍ରାଇଡେ ମୋତେ ସବୁ ବର୍ଷ ବିଚଳିତ କରେ । ପିଲା-ଦିନେ ବି ଏ ଦିନମାନଙ୍କରେ ମୋତେ ଭାରି ଦୁଃଖ ହେଉଥିଲା — ଖ୍ରୀଷ୍ଟଙ୍କର କ୍ରୁଶବିଦ୍ଧ ହେବା ଯନ୍ତ୍ରଣା ଯୋଗୁଁ ନୁହେଁ, କ୍ରୁଶବିଦ୍ଧ ପ୍ରଭୁ ସେତେବେଳେ ନିଃସଙ୍ଗ ହୋଇ କେତେ ବିରସ ହୋଇଥିବେ ତାହା ବିଚାର କରି ମୋତେ ଦୁଃଖ ଲାଗେ । ସେଣ୍ଟ୍ ମେଥ୍ୟୁଙ୍କ ବର୍ଣ୍ଣନାକୁ, ମୋ'ର ନିଉ-ଇଂଲଣ୍ଡ ଜେଜେନାମା ତେବୋଗ୍ ତାଙ୍କ ଗୁରୁଗମ୍ଭୀର ସ୍ୱରରେ ରୋକଠୋକ ଭାବରେ ପଢ଼ି ଏ ଦୁର୍ଦ୍ଦିନର ଯେଉଁ ଦୁଃଖ ମୋ'ର ପିଲାମନରେ ରୋପିଥିଲେ ତାହା ଅଦ୍ୟାପି ମୋ ହୃଦୟରେ ବଞ୍ଚିରହିଛି ।

ଏ ବର୍ଷ ସେ ଦୁଃଖର ମାତ୍ରା ବଢ଼ିଛି ବୋଲି କହିଲେ ଚଳେ । ସେ ଦିନଟିର ଘଟଣାର ବିଷାଦ ଦେହକୁ ନେଇ ତା'ର ପ୍ରତିବିମ୍ବ ନିଜ ଜୀବନରେ ଦେଖିବା ସ୍ୱାଭାବିକ । ମୁଁ ଆଜି ସେଇଆ କରିଛି । ଆଜି ମେରୁଲେ ମୋତେ ବେପାରର ଗୂଢ଼ତତ୍ତ୍ୱ ବିଷୟରେ ଉପଦେଶ ଦେଲେ; ତାଙ୍କ ଉପଦେଶର ସାରବସ୍ତୁ ଆଜି ସର୍ବପ୍ରଥମେ ମୁଁ ଗ୍ରହଣ କଲି । ତାଙ୍କ ପକ୍ଷେ ପକ୍ଷେ ମୋତେ, ମୋ ଜୀବନରେ ସର୍ବପ୍ରଥମେ, ଲାଞ୍ଚ ଯଶ୍ଚ ହେଲା । ମୋ ଭଳି ବୟସ୍କ ଲୋକର, ଏତେ ଦିନରେ ସର୍ବପ୍ରଥମେ, ଏ ଅନୁଭୂତି ହେଲା ବୋଲି କହିବା ଆତ୍ମଶ୍ଲାଘା ପରି ଲାଗିପାରେ; କିନ୍ତୁ ଏଥିପୂର୍ବରୁ ଏଭଳି ଘଟଣା ଘଟିଥିବାର ମୋର ମନେ ନାହିଁ । ଶେଷରେ ମାର୍ଗି ୟଙ୍ଗ୍-ହାଣ୍ଟ୍ । ତା'କଥା ନ ବିଚାରି ରହି ହେଉନାହିଁ । ସେ ମାଇକନ୍-ଆ-

ଟାର ସ୍ୱଭାବ କ'ଣ ପ୍ରକୃତରେ ଯେପ ? କେଉଁ ଉଦ୍ଦେଶ୍ୟରେ ସେ ଆସି ମୋ ମୁଣ୍ଡରେ ବସିଲାଣି ? ସେ ମୋତେ ଭବିଷ୍ୟତରେ କ'ଣ ଗୋଟାଏ ମିଳିବ ବୋଲି ଲୋଭ ଦେଖାଇଛି ଓ ତାହା ଗ୍ରହଣ ନ କଲେ ମୋର ଅନିଷ୍ଟ ହେବ ବୋଲି ଧମକ୍ ବି ଦେଉଛି । କ'ଣ କରାଯାଏ ? ମଣିଷ ବୁଦ୍ଧି ବିଗୃହି ଜୀବନର ଗତି ନିର୍ଣ୍ଣୟ କରିବ ନା କାଳର ସ୍ରୋତରେ ନିଶ୍ଚେଷ୍ଟ ହୋଇ ଭାସି ଯାଉଥିବ । ଏଇ ସମସ୍ୟା !

ରାତି ପରେ ରାତି ମୁଁ ଚେତା ରହି ଶେଯରେ ପଡ଼ି, ମୋ ପାଖରେ ମେଘାଙ୍କ ନିଃଶ୍ୱାସ ପ୍ରଶ୍ୱାସ ପ୍ରତିଧ୍ୱନିର ମୃଦୁ ଗୁଞ୍ଜନ ଶୁଣେ । ସେତେବେଳେ ଆଖି ଖୋଲି ଅନ୍ଧାର ଘରକୁ ଗୃହିଁଲେ ନାଲି ରଙ୍ଗର ବିନ୍ଦୁ ଗୁଡ଼ିଏ ଆଖି ଆଡ଼କୁ ଭାସି ଆସୁଥାନ୍ତି । ସେ ସବୁ ଦେଖି ଦେଖି ଚିଟା ଲାଗିଲେ ଆଖି ବୁଜି ପଡ଼ି ରହେ । କିନ୍ତୁ ମେଘାଙ୍କୁ ଉଠାଏ ନାହିଁ । ମେଘାଙ୍କର ଶୋଇ-ବାରେ ବଡ଼ ଆନନ୍ଦ, ସେ ଆନନ୍ଦ ଅକ୍ଷୁଣ୍ଣ ରଖିବାକୁ ମୁଁ ସବୁବେଳେ ଇଚ୍ଛୁକ, ତାଙ୍କ ସଙ୍ଗ ଲାଭ ପାଇଁ ଉତ୍କଣ୍ଠାର ଆଘାତ ଇଲେକ୍ଟ୍ରିକ୍ ସକ୍ ପରି ଦେହକୁ ତତାଇ ଦେଲେ ବି ମୁଁ ସମ୍ଭାଳି ନିଏ । ମୁଁ ଶଯ୍ୟା ଛାଡ଼ିଲେ ତାଙ୍କର ନିଦ ଭାଙ୍ଗିଯାଏ, ତେଣୁ ନିଶ୍ଚଳ ଭାବେ ପଡ଼ି ରହିବା ବ୍ୟତୀତ ଆଉ ଉପାୟ ନ ଥାଏ । କେବଳ ବେମାର ବେଳେ ହିଁ ନିଦ ମାଡ଼ୁ ନ ଥିବାରୁ, ମୁଁ ଅନିଦ୍ରା ଥିବାର ଜାଣିଲେ ସେ ଧରି ନିଅନ୍ତି ଯେ ମୋର ଦେହ ଖରାପ ଅଛି । ଏ ଦୁଶ୍ଚିନ୍ତା ତାଙ୍କ ମନରେ ନ ଦେବା ପାଇଁ ମୁଁ ସାବଧାନ ଥାଏ ।

କିନ୍ତୁ ଆଜି ରାତିରେ ମୋତେ ବାଧ୍ୟ ହୋଇ ଶଯ୍ୟାତ୍ୟାଗ କରିବାକୁ ଓ ବାହାରକୁ ଯିବାକୁ ପଡ଼ିଲା । ତାଙ୍କ ନିଃଶ୍ୱାସ ପ୍ରଶ୍ୱାସ ମୃଦୁ ଗତିରେ ଚାଲିଥାଏ ଓ ତାଙ୍କ ମୁହଁରେ ପୁରାଣ ଯୁଗର ସେଇ ସ୍ମିତହାସ୍ୟ ଫୁଟି ବସିଥାଏ । ବୋଧହୁଏ ସେ ଆମ ସୌଭାଗ୍ୟର ସ୍ୱପ୍ନ ଦେଖୁଥାନ୍ତି, ମୁଁ ନିକଟରେ ଧନ ଅର୍ଜିବି ବୋଲି ଯେଉଁ ଆଶା ତାଙ୍କ ମନରେ ହୋଇଛି, ତାହାର ପରିପୂରଣ ସେ ସ୍ୱପ୍ନରେ ଦେଖୁଥାନ୍ତି । ଧନ ବିଷୟ ସେ ନିଶ୍ଚୟ ସ୍ୱପ୍ନ ଦେଖୁଥିବେ । କାରଣ ଧନର ମୋହ ତାଙ୍କୁ ଗ୍ରାସ କରି ପକାଇଛି ।

ବଡ଼ ବିଚିତ୍ର କଥା, ମଣିଷ ଧରିନିଏ ଯେ ବିଶିଷ୍ଟ ସ୍ଥାନରେ ରହିଲେ ଉନ୍ନତ ଚିନ୍ତା କରିବା ସମ୍ଭବ ହୁଏ । ମୋର ଏହିପରି ବିଶିଷ୍ଟ

ସ୍ଥାନଟିଏ ଅଛି ଓ ସେଠାକୁ ମୁଁ ବରାବର ଯାଏ—କିନ୍ତୁ ମୁଁ ସେଠାରେ ଯାଇ କିଛି କଳ୍ପନାଜଳ୍ପନା କରେ ନାହିଁ—ଅନୁଭବ କରେ, ଅଭିଜ୍ଞତା ଅର୍ଜନ କରେ ଓ ଅଶାନ୍ତର ସ୍ମୃତିକୁ ମନେ ପକାଏ । ସେ ସ୍ଥାନଟି ମୋର ନିରାପଦ ଆଶ୍ରୟ ସ୍ଥଳ—ମୋର ବିଶ୍ୱାସ, ପ୍ରତ୍ୟେକ ଲୋକର ଏଇପରି ଗୋଟିଏ ଗୋଟିଏ ପରମ ଆଶ୍ରୟ ସ୍ଥଳ ଥିବ , ଅବଶ୍ୟ କେହି କେବେ ମୋତେ ତାଙ୍କ ନିର୍ଦ୍ଦିଷ୍ଟ ଆସ୍ଥାନ ବିଷୟରେ କହି ନାହାନ୍ତି । ଲୁଚି ଛପି ଯାଉ ଯାଉ ଥିର୍‌କିନା ଟିକିଏ ଶବ୍ଦ ହୋଇଗଲେ, ପାଖରେ ଶୋଇଥିବା ମଣିଷର ନିଦ ଭାଙ୍ଗିଯାଏ, ଅଥଚ ଅନ୍ୟର ପ୍ରତିକ୍ରିୟାକୁ ଖାତିର ନ କରି ସ୍ୱାଭାବିକ ଭାବେ ଶବ୍ଦ କରୁଥିଲେ ନିଦ୍ରାଳୁର ନିଦରେ ଆଞ୍ଚ ଆସେ ନାହିଁ । ପୁଣି ମୋର ଦୃଢ଼ ବିଶ୍ୱାସ, ଶୋଇଥିବା ଲୋକର ମନ ନିଜ ଶରୀରରୁ ଛୁଟି ପାଇ ଅନ୍ୟଲୋକ ମନରେ ଅନଧିକାର ପ୍ରବେଶ କରିଥାଏ । ତେଣୁ ଲୁଚିଛପି ଶଯ୍ୟା ତ୍ୟାଗ ନ କରି ମୁଁ ଗାଧୁଆ ଘରକୁ ଯିବା ପାଇଁ ପ୍ରୟୋଜନ ସୃଷ୍ଟି କରିବାକୁ ମନକୁ ମନାଇଲି - ସେ ପ୍ରୟୋଜନ ଆସନ୍ତେ, ମୁଁ ସ୍ୱାଭାବିକ ଭାବେ ଶଯ୍ୟାତ୍ୟାଗ କରି ଗାଧୁଆ ଘରକୁ ଗଲି । ତା'ପରେ ଆସ୍ତେ ଆସ୍ତେ ତଳ ମହଲାକୁ ଓହ୍ଲାଇଲି । ସାଙ୍ଗରେ ଲୁଗାପଟା ନେଇ ତଳେ ଡ୍ରେସିଂ ଘରେ ପୋଷାକ ପିନ୍ଧିଲି ।

ମେଘ୍ନା କହନ୍ତି, ମୁଁ ଅନ୍ୟତ୍ର ଦୁଃଖ ଓ ଯନ୍ତ୍ରଣା ପଡ଼ୁଛି ବୋଲି ମିଛରେ କଳ୍ପନା କରି ସେଥିପାଇଁ ନିଜେ ଘାଣ୍ଟି ହୁଏ ହ୍ନଏତ ଏକଥା ସତ । କିନ୍ତୁ ଏଇ ମୁହୂର୍ତ୍ତରେ ମୁଁ ମେଘ୍ନାଙ୍କର ଯେଉଁ ଅଶାନ୍ତିର ସଂଭାବନା ଦେଖିଲି ତାହାତ ମିଥ୍ୟା କଳ୍ପନା ବୋଲି ମନେ ହେଉନାହିଁ । ମୁଁ ଅନୁମାନ କଲି, ଏଇ କ୍ଷୀଣ ଆଲୋକିତ ଡ୍ରେସିଂଘରେ କିଛି ସମୟ ପରେ ଉଦ୍‌ବେଗପୂର୍ଣ୍ଣ ଏକ ଅଭିନୟ ହେବ । ମେଘ୍ନା ଶେଯରୁ ଉଠି ମୁଁ କୁଆଡ଼େ ଗଲି ବୋଲି ଘର ଯାକ ଖୋଜି ଖୋଜି ଏଇଠାକୁ ଆସିବେ—ତାଙ୍କ ମୁହଁରେ ଉଦ୍‌ବେଗ ପ୍ରତିଫଳିତ ହୋଇଥିବ । ସେଇ ଆଶଂକାରେ ବଜାର ସଉଦା ପ୍ୟାଡ଼ରେ ଲେଖିଲି, "ପ୍ରିୟେ, ନିଦ ନ ହେବାରୁ ଟିକିଏ ବୁଲି ଯାଉଛି; ଶୀଘ୍ର ଫେରିବ ।" ମୋର ମନେ ପଡ଼ୁଛି, ଏଇ କାଗଜଖଣ୍ଡି ଡ୍ରେସିଂଘର ଟେବୁଲ୍‌ର ଠିକ୍ ମଝିରେ ଏମିତି ରଖିଲି ଯେ, କାହାରି ସୁଇଚ ଟିପି ଦେବାମାତ୍ରେ ସର୍ବପ୍ରଥମେ ସ୍ଲାର୍ ଉପରେ ଆଖି ପଡ଼ିବ ।

ତା'ପରେ ଆସ୍ତେ ଆସ୍ତେ ବାଉଡ଼ମନ୍ ଦ୍ୱାଆର ମେଲାଇ ଖୋଲା ପବନକୁ ବାଉଳା—ଭାରି ଥଣ୍ଡା, ଶୁଭ୍ର ତୁଷାର ପଡ଼ି ଭୂଇଁରେ ଜମାଟ ବାନ୍ଧିଲେ ଯେପରି ବାସ୍ନା ହୁଏ ସେଇପରି ଲାଗିଲା । ମୋଟା କୋଟ୍‌ଟାଏ ପିନ୍ଧିଲି ଓ ମୁଣ୍ଡରେ ହାତ ବୁଣା ନାଉଗ୍ଗ ଟୋପିଟାଏ ପିନ୍ଧି ତାକୁ କାନ ଉପରକୁ ଟାଣି ଦେଲି । ଗ୍ରେଷେଇଘରର ଇଲେକ୍‌ଟ୍ରିକ୍ ଘଣ୍ଟା ଗୁଡ଼ୁଗୁଡ଼ୁ ହେଉଥାଏ—ତିନଟାକୁ ଥାଏ ପନ୍ଦର ମିନଟ୍ । ଓଃ, ଏଗାରଟାଠାରୁ ଏତିକ ବେଳ ଯାଏଁ ପଡ଼ିରହି ମୁଁ ଅନ୍ଧାରରେ ନାଲି ବନ୍ଦୁ ଦେଖିବାରେ ଲାଗିଥିଲି !

ଆମ ନିଜ ବେ-ଟାଉନ୍‌ଟି ବେଶ୍ ସୁନ୍ଦର ସହର—ବହୁକାଳର । ଆମେରିକାରେ ସର୍ବପ୍ରଥମେ ସର୍ବାଙ୍ଗସୁନ୍ଦର ଯଥାର୍ଥ ସହର ଯେତେଟି ଗଢ଼ି ଉଠିଥିଲା, ତା'ଭିତରୁ ଏ ଗୋଟିଏ । ମୋର ବିଶ୍ୱାସ, ଏହାର ସର୍ବପ୍ରଥମ ବାସିନ୍ଦା—ମୋର ପୂର୍ବପୁରୁଷମାନେ ଥିଲେ ସେଇ ଅଶାନ୍ତ, ବିଶ୍ୱାସଘାତକ, କଳିଆ, ଲୋଭି ନାବିକମାନଙ୍କର ବଂଶଧର, ଯେଉଁମାନେ କି ଏଲିଜାବେଥ୍‌ଙ୍କ ଅମଳରେ ସମଗ୍ର ଇୟୁରୋପକୁ ବ୍ୟତିବ୍ୟସ୍ତ କରିଥିଲେ । ଏଇମାନେ କ୍ରମ୍‌ୱେଲ୍‌ଙ୍କ ସମୟରେ ଓ୍ୱେଷ୍ଟ୍ ଇଣ୍ଡିଜ୍ ଦ୍ୱୀପପୁଞ୍ଜକୁ ଅଧିକାର କରି, ସିଂହାସନକୁ ଫେରିଥିବା ଦ୍ୱିତୀୟ ଚାର୍ଲସ୍‌ଙ୍କଠାରୁ ଏହାର ସନନ୍ଦ ହାସଲ କଲେ । ବୃତ୍ତିରେ ଥିଲେ ସେମାନେ ଜଳଦସ୍ୟୁ ଓ ଧର୍ମରେ କଠୋରନୀତିପରାୟଣ ପ୍ୟୁରିଟାନ୍ । ପରସ୍ପର ବିରୋଧୀ ଏହି ଦୁଇ ଚରିତ୍ର ସେମାନଙ୍କ ଜୀବନରେ ବେଶ ମେଳ ଖାଇଥିଲା । ଠିକିଏ ତଳେଇ କରି ଦେଖିଲେ ଏହି ଦୁଇ ଚରିତ୍ର ସେତେ ପରସ୍ପରବିରୋଧୀ ନ ଥିଲେ କହିଲେ ଚଳେ । ଉଭୟେ ପ୍ରତିରୋଧ ଓ ପ୍ରତିବାଦ ବିରୁଦ୍ଧରେ ନିଆଁ ହୋଇ ଯାଉଥିଲେ ଓ ଉଭୟଙ୍କର ଆଖି ସବୁବେଳେ ଘୂରୁଥିଲା ପରସ୍ୱ-ଅପହରଣ କରିବାକୁ । ଏ ଉଭୟଙ୍କ ମିଳନରୁ ଜାତ ହେଉଥିଲେ, କଷ୍ଟସହିଷ୍ଣୁ ମର୍କଟପ୍ରକୃତିର ଦାୟାଦ । ମୁଁ ଏକଥା ଠଉରେଇଲି ମୋ ବାପାଙ୍କୁ ଦେଖି ଓ ତାଙ୍କ କଥା ଶୁଣି । ମୋ ବାପା ଥିଲେ ପିତୃପୁରୁଷଙ୍କର ଜଣେ ପରମ ଉପାସକ, କିନ୍ତୁ ପିତୃପୁରୁଷଙ୍କ ଗୁଣ ବା ସାମର୍ଥ୍ୟ ତାଙ୍କଠାରେ ନ ଥିଲା । ସାଧାରଣତଃ ଦେଖାଯାଏ, ଯେଉଁମାନେ ପିତୃପୁରୁଷଙ୍କ ପୂଜା କରନ୍ତି, ସେମାନଙ୍କଠାରେ ପିତୃପୁରୁଷଙ୍କ ଗୁଣ ନ ଥାଏ । ହୁଏତ

ସେଇଥିପାଇଁ ସେମାନେ ସ୍ମୃତିପୂଜାକୁ ବ୍ରତ କରିଥାନ୍ତି । ମୋ ପିତା ଥିଲେ, ବେଶ୍ ଭଦ୍ର ଲୋକ, ଖୁବ୍ ଜାଣିଥିଲେ,ବୁଦ୍ଧି ଥିଲା କିନ୍ତୁ ବଗୁରଶକ୍ତି ନ ଥିବାରୁ ବୁଦ୍ଧିଥାଇ ବି ସେ ଥିଲେ ଓଲୁ । ତାଙ୍କର ଗୋଟିଏ ଜୀବନରେ ସେ ସବୁ ହରାଇଲେ—ଶହ ଶହ ବର୍ଷରେ ମ୍ୟାଲେନ୍ ଓ ହ'ଲ ବଂଶର ପୂର୍ବପୁରୁଷମାନେ ଯେତେ ଜମି, ଧନସମ୍ପତ୍ତି, ପ୍ରତିପତ୍ତି ଓ ଭବିଷ୍ୟତ ଆଶା ସମ୍ପାଦିଥିଲେ, ସେ ସବୁ ଗଲା ୟାଙ୍କର ଏକ ଅମଳରେ । ଜୀବନର ସମସ୍ତ ବ୍ୟର୍ଥତା ଭିତରେ ମୋ'ର ପିତା ମୋ ଆଗେ ପିତୃପୁରୁଷଙ୍କ ଗୁଣ ଗାରିମା ଖୁବ୍ ବଖାଣୁଥାନ୍ତି । ତେଣୁ ସେମାନଙ୍କ ବିଷୟରେ ମୁଁ ବହୁତ କଥା ମନେ ରଖିଛି । ବୋଧହୁଏ ପୂର୍ବସ୍ମୃତିରେ ଓତପ୍ରୋତ ହୋଇଥିବାରୁ, ମୋତେ ଆଜି ଜଣେ ସିସିଲୀୟ ଲୋକର ଖାଦ୍ୟସାମଗ୍ରୀ ଦୋକାନରେ ଚାକିରି କରିବାକୁ ହେଉଛି । ଏ ଦୋକାନ ଯେଉଁ କୋଠାରେ ହୋଇଛି ତାହା ପୁଣି ଥିଲା ମୋ ପିତୃପୁରୁଷଙ୍କ ସମ୍ପତ୍ତି । ଏହା ବିଷୟରେ ମୁଁ ଅସନ୍ତୁଷ୍ଟ ହୋଇ ଉଠେ । ନ ହେଲେ ହୁଅନ୍ତା । ଆମ ଦୁର୍ଦ୍ଦଶା ଆମେ ହାତରେ ଅର୍ଜିଛୁ, ବ୍ୟବସାୟର ମାନ୍ଦା ଅବସ୍ଥା ପଡ଼ିବାରୁ ବା ଗିରାନ୍ତି ସମୟ ଆସିବାରୁ ଆମ ସମ୍ପତ୍ତି ଜୁର ହୋଇନାହିଁ ।

ନିଉ ବେ-ଟାଉନ୍ ଭଲ ସହରଟିଏ ବୋଲି କହୁ କହୁ ଏତେ ପୁରାଣ ଫିଟିଗଲା । ମୁଁ ଘରୁ ବାହାରି ଏଲ୍ମ୍ ଷ୍ଟ୍ରୀଟ୍‌ର ବାଁ ଆଡ଼କୁ ନ ଯାଇ ଡାହାଣ ହାତ ଧରିଲି ଓ ଶୀଘ୍ର ଶୀଘ୍ର ପାଦ ଚାଳି ପର୍‌ଲକ୍ ଷ୍ଟ୍ରୀଟ୍ ଆଡ଼କୁ ଚାଲିଲି । ଏହା ହାଇଷ୍ଟ୍ରୀଟ୍ ସାଙ୍ଗେ ଠିକ୍ ସମାନ୍ତରାଳ ଭାବେ ଯାଇଛି । ଏତେବେଳେ ଆମ ସହରର ମୋଟା ପହରିବାଲା କ୍ଳୁନି ଉଇଲି, ହାଇଷ୍ଟ୍ରୀଟ୍‌ରେ ପୁଲିସ ଗାଡ଼ିରେ ବସି ବୁଲାଉଥିବେ । ରାତିର ଏ ନିର୍ଜନ ସମୟରେ ତାଙ୍କ ହାବୁଡ଼େ ପଡ଼ି ତାଙ୍କ ସଙ୍ଗେ ଗପସପ କରିବାକୁ ମୋର ମନ ନ ଥିଲା । ଦେଖିଲେ ସେ କହନ୍ତେ, "ଇଥାନ୍, ରାତିର ଏ ବେଳେ ତୁମେ ବାଣ୍ଡକୁ ବାହାରିଚ କାହିଁକି ? ଗୋଟାଏ ଭଲ ମାଲ ହାବୁଡ଼େ ପଡ଼ିଛି ବୋଧହୁଏ ?" କ୍ଳୁନି ଉଇଲିଙ୍କର ରାତିଟା ନିର୍ଜନରେ କଟେ, ତେଣୁ ମଣିଷ ଦେଖିଲେ ସେ ଗପମଙ୍ଗ ଲଗାଇ ଦିଅନ୍ତି । ଏପରି ବିଭୋର ହୋଇ ପଡ଼ନ୍ତି ଯେ ଆଗ ଯେଉଁ କଥା କହୁଥାନ୍ତି, ପରେ ପୁଣି ତାକୁଇ ଆରମ୍ଭ କରନ୍ତି । ନିର୍ଜନ ରାତିରେ ଉଇଲିଙ୍କ ନାମରେ ଗୁଡ଼ାଏ ଷ୍ଟେଟ ଷ୍ଟେଟ

ଦୁର୍ନାମ ପ୍ରଚ୍ଚରିତ ହେଲାଣି । ଏଦନବେଳର ପହଚ୍ଚବାଲା ଷ୍ଟୋନ୍‌ଓ୍ୱାଲ୍ ଜ୍ୟାକ୍‌ସନ ସ୍ମିଥ୍ । ଷ୍ଟୋନ୍‌ଓ୍ୱାଲ ( ପଥରକାନ୍ଥ ) ନାମଟା ତାଙ୍କୁ ଚିତ୍ରୁ ମ କରି ସୃଷ୍ଟି କରା ହୋଇନାହିଁ । ଚର୍ଚ୍ଚର ନାମକରଣ ଉତ୍ସବରେ ତାଙ୍କୁ ଷ୍ଟୋନ୍‌ଓ୍ୱାଲ୍ ଜ୍ୟାକ୍‌ସନ୍ ନାମ ଦିଆ ଯାଇଥିଲା; ସ୍ମିଥ୍ ତାଙ୍କର ବାଂଶ । ଷ୍ଟୋନ୍‌ଓ୍ୱାଲ୍ ନାମରେ ତାଙ୍କୁ ଅନ୍ୟ ସ୍ମିଥ୍‌ମାନଙ୍କଠାରୁ ପୃଥକ୍ କରା-ଯାଇଛି । ସହରର ପହରାବାଲା ପୁଲିସ୍‌ଙ୍କର ପ୍ରକୃତି ପରସ୍ପରଠାରୁ ଏତେ ଭିନ୍ନ ଭିନ୍ନ କାହିଁକି ହୁଏ କେଜାଣି ? କିନ୍ତୁ ସାଧାରଣତଃ ସେମାନଙ୍କର ବିପରୀତ ପ୍ରକୃତି । ଷ୍ଟୋନ ସ୍ମିଥ୍ କୁନି ଉଇଲିଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ ପ୍ରକୃତିର । ତାଙ୍କୁ ନେଇ ହାକିମ ଆଗରେ କାଠଗଡ଼ାରେ ହଲଫ୍ ଦେଇ ଠିଆ ନ କଲେ, ସେ ବାରିର ନାମ ବି କହିବାକୁ ପ୍ରସ୍ତୁତ ନୁହନ୍ତି । ସ୍ମିଥ୍ ଆମ ସହରର ଥାନା ହାକିମ । ତାଙ୍କର ନିର୍ଦ୍ଦେଶରେ ଆମ ସହରର ପୁଲିସ୍‌କାମ ଚାଲେ । କାମରେ ତାଙ୍କର ଖୁବ୍ ଆନ୍ତରିକତା; ଅପରାଧୀଙ୍କୁ ଗିରଫ କରିବାକୁ ଯେତେ ନୂଆ ନୂଆ କୌଶଳ ବାହାରୁଛି ସେ ସେସବୁ ହାସଲ କରିଛନ୍ତି ଓ ଓ୍ୱାଶିଂଟନ୍‌ଯାଇ ରାଷ୍ଟ୍ରୀୟ ତଦନ୍ତ ବ୍ୟୁରୋରେ ତାଲିମ୍ ପାଇଛନ୍ତି । ମୋର ବିଶ୍ୱାସ, ଆମ ଦେଶର କୌଣସି ପୁଲିସ୍‌ବାଲା-ଠାରୁ ସେ କମସଲ୍ ନୁହନ୍ତି । ଟେଲିଭିଜନ୍‌ରେ ଦେଖାଯାଉଥିବା ପୁଲିସ୍‌ବାଲା ମାଫିକ୍— ଡେଙ୍ଗା, ଚମ୍ପୀର ଓ ଆଖି ଯୋଡ଼ାଏ ଯେ ତାତିଲା ଲୁହା ପରି ଜକ୍ ଜକ୍ କରୁଥାଏ । ଅପରାଧ କରିବାକୁ ଯଦି ତୁମର ମନ, ତେବେ ଆମ ଏଇ ପୁଲିସ୍‌ବାବୁଙ୍କ ହାବୁଡ଼ରେ ଯେପରି ନ ପଡ଼ିବ ସେଥିପାଇଁ ସାବଧାନ ରହିବ ।

କୁନି ଉଇଲ ସଙ୍ଗେ ଭେଟ ହେବ ନାହିଁ, ଏଇଥି ଯୋଗୁଁ ପୋର୍-ଲକ୍ ଷ୍ଟ୍ରୀଟ୍ ଆଡ଼େ ମୁହାଁଇଲି—ଏତିକି କହୁ କହୁ କେତେ କ'ଣ କହିଲିଣି । ପୋର୍‌ଲକ୍ ଷ୍ଟ୍ରୀଟ୍‌ରେ ନିଉ-ବେ-ଟାଉନର ସବୁଠୁ ସୁନ୍ଦର ସୁନ୍ଦର ଘର । ଉନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଆମ ଏଇ ସହର ଲୋକଙ୍କର ଶହେରୁ ଅଧିକ ତିମିଶିକାରୀ-ଜାହାଜ ନ ଥିଲା । ଜାହାଜ ଗୁଡ଼ିକ ଯାଆନ୍ତି ଯେ ଆଣ୍ଟାର୍କଟିକ୍ ମହାସାଗର ବା ଚୀନ୍ ସାଗର ପର୍ଯ୍ୟନ୍ତ ଯଇଁତରି କରି ବର୍ଷେ ଦି'ବର୍ଷରେ ଫେରନ୍ତି । ବହୁତ ଧନ ଆଣନ୍ତି । ଜାହାଜ ଗୁଡ଼ାକ ଝିମିତେଲରେ ପୂର୍ଣ୍ଣ ହୋଇ ଆସେ । ସ୍ୱଦେଶର ବନ୍ଦରରେ

ନଙ୍ଗର ପକାଇ ସେମାନେ ଖାଲି ବୈଦେଶିକ ଜିନିଷପତ୍ର ଆଣନ୍ତି ସେତିକି ନୁହେଁ, ବିଦେଶରୁ ନୂଆ ନୂଆ ରୁଚି ଓ ଅନୁଭୂତି ମଧ୍ୟ ଆଣନ୍ତି । ତେଣୁ ପୋର୍ଲକ୍ ଷ୍ଟ୍ରୀଟ୍‌ର ଘରମାନଙ୍କରେ ଅଦ୍ୟାପି ନାନାପ୍ରକାର ଚୀନ ଦେଶୀୟ ଜିନିଷପତ୍ର ଦେଖିବାକୁ ମିଳେ । ସେକାଳର ଜାହାଜମାନଙ୍କ କ୍ୟାପ୍‌ଟେନ୍‌ମାନଙ୍କର ବେଶ୍ ଉନ୍ନତ ରୁଚି ମଧ୍ୟ ଥିଲା । ଯେଉଁ ଧନ ଅର୍ଜୁଥିଲେ, ତାକୁ ଖର୍ଚ୍ଚ କରି ସେମାନେ ଇଂଲଣ୍ଡରୁ ରାଜମିସ୍ତ୍ରୀ ଅଣାଇ ନିଜର ଘର ସବୁ ତୋଳାଇ ଥିଲେ । ତେଣୁ ପୋର୍ଲକ୍ ଷ୍ଟ୍ରୀଟ୍‌ରେ ଇଂଲଣ୍ଡର ପ୍ରାଚୀନ ସ୍ଥାପତ୍ୟ ଓ ମଧ୍ୟଯୁଗରେ ଗ୍ରୀକ୍‌ମାନଙ୍କଠାରୁ ଆହୃତ ସ୍ଥାପତ୍ୟର ନମୁନା ଏତେ ଅଧିକ ମାତ୍ରାରେ ଦେଖାଯାଏ । ଗ୍ରୀକ୍ ସ୍ଥାପତ୍ୟର ପ୍ରଭାବ ସତ୍ତ୍ୱେ, ପ୍ରତିଘରର ଛାତଉପରେ ନାଗମାନଙ୍କ ପାଇଁ ଗମ୍ବୁଜ ଗୁଡ଼ ଯାଇନାହିଁ । ଏହା ତୋଳିବାର ଉଦ୍ଦେଶ୍ୟ, ଘରେ ବିରହିଣୀ ହୋଇ ରହିଥିବା ନାଗମାନେ ଏଇଠାରେ ବସି ସମୁଦ୍ର ବକ୍ଷରେ ଫେରୁଥିବା ଜାହାଜକୁ ପ୍ରତୀକ୍ଷା କରିବେ । ଖୁବ୍ ସଂଭବ ଅନେକ ନାବିକ ମହିଳା ବାସ୍ତବରେ ଏହା କରୁଥିଲେ । ମୋ ହ'ଲି ବଂଶ, ଫିଲିପ୍‌ସ୍ ବଂଶ, ଏଲ୍‌ଗାର ଓ ବେକର୍ ବଂଶ ପର୍ଲକ ଷ୍ଟ୍ରୀଟ୍ ଅଧିବାସୀଙ୍କଠାରୁ ସହରର ଆହୁରି ପୁରୁଣା ଅଧିବାସୀ । ଏମାନେ ଆଗରୁ ଏଲ୍‌ମ୍ ଷ୍ଟ୍ରୀଟ୍‌ରେ ରହିଛନ୍ତି ଓ ଏମାନଙ୍କ ଘର ସ୍ଥାପତ୍ୟକୁ ଆଦ୍ୟ-ଆମେରିକାନ୍ ଗଠନ ପ୍ରଣାଳୀ ବୋଲି ଆଜିକାଲି କୁହାଯାଉଛି । ସବୁଘରର ଗମ୍ବୁଜାକୃତି ଛାତ, କାନ୍ଥ ସବୁ ଜାହାଜ କାନ୍ଥି ପରି ପେଟୁଆ । ଆମ ଘର ହ'ଲି ନିବାସ ଏଇ ଢଙ୍ଗରେ ତିଆରି । ଆମ ପାଖର ଏଲମ୍ ଗଛ ଗୁଡ଼ିକ ଆମ ଘର ସବୁ ତୋଳା ହେଲା ଦିନୁଁ ଅଛି ।

ପର୍ଲକ୍ ଷ୍ଟ୍ରୀଟ୍‌ରେ ଗ୍ୟାସ୍-ବତ୍ତି-ଖୁଣ୍ଟ ସବୁ ପୂର୍ବପରି ରହିଛି; କିନ୍ତୁ ଏବେ ସେଗୁଡ଼ିକରେ ଗ୍ୟାସ୍‌ବତ୍ତି ପରିବର୍ତ୍ତେ ଇଲେକ୍‌ଟ୍ରିକ୍ ବଲ୍‌ବ୍ ଲାଗିଗଲାଣି । ଖରାଦିନେ ଆମ ସହରକୁ ପର୍ଯ୍ୟଟକ ଆସନ୍ତି, ଆମ ଘର-ମାନଙ୍କର ପ୍ରାଚୀନ ସ୍ଥାପତ୍ୟ ଦେଖିବାକୁ । ଏହାକୁ ସେମାନେ କହନ୍ତି 'ପୁରାଣଯୁଗର ଆକର୍ଷଣ' । ସବୁ ପ୍ରକାର ସୌନ୍ଦର୍ଯ୍ୟ ଓ ଆକର୍ଷଣ ପୁରାଣଯୁଗର ଏକଚାଟିଆ କାହିଁକି ହୋଇଛି କେଜାଣି ?

ଭେର୍‌ମଣ୍ଟ୍‌ର ଆଲେନ୍‌ମାନେ ହ୍ୱ'ଲି ମାନଙ୍କ ସଙ୍ଗେ ରକ୍ତ-ସଂପର୍କରେ କିପରି ମିଶିଗଲେ ସେ କଥା ମୋର ପାସୋର ହୋଇଗଲଣି । ସ୍ୱାଧୀନତା ସଂଗ୍ରାମର ପରେପରେ ଏହା ହୋଇଥିଲା । କିପରି ହେଲା ଖୋଜି ବାହାର କରିବା ଅସଂଭବ ନୁହେ ! ଓପରର ଝୁଙ୍ଗିଘରେ ଏ ବିଷୟରେ ବିବରଣ ନିଶ୍ଚୟ ଥିବ । ମୋ ବାପାଙ୍କ ମଲାବେଳକୁ, ମୋ ମେଗ୍‌, ହ୍ୱ'ଲି ବଂଶର ଗୁଣଗାରିମା ଶୁଣି ଶୁଣି ବିକ୍‌ଦାର ହୋଇ ଯାଇଥିଲେ । ବାପାଙ୍କ ଅନ୍ତେ ସେ ଯେତେବେଳେ ପ୍ରସ୍ତାବ କଲେ ଯେ ପୁରୁଣା କାଗଜ-ପତ୍ର ଝୁଙ୍ଗିରେ ସାଇତି ଦେବା, ସେତେବେଳେ ମୁଁ ତାଙ୍କ ମନର ଭାବ ବେଶ୍ ବୁଝି ପାରିଥିଲି । ଅନ୍ୟର ବଂଶାବଳୀ ଶୁଣି ଶୁଣି ବିଦାଙ୍ଗ୍ ଲାଗିବା ସ୍ୱାଭାବିକ । ପୁଣି ମେଗ୍‌ଙ୍କର ଜନ୍ମସ୍ଥାନ ବି ନିଜ ବେ-ଟାଉନ୍ ନୁହେଁ । ଆୟର୍‌ଲଣ୍ଡ୍‌ରୁ ତାଙ୍କ ପୂର୍ବପୁରୁଷମାନେ ଆସିଥିଲେ । ଆୟର୍‌-ଲଣ୍ଡ୍‌ର ହେଲେ ବି ସେମାନେ କ୍ୟାଥୋଲିକ୍ ସଂପ୍ରଦାୟର ନୁହନ୍ତି । ମେଗ୍ ଏ ବିଶେଷତ୍ୱ ଖୁବ୍ ଜୋର ଦେଇ କହନ୍ତି । ସେମାନଙ୍କ ପରିବାର ଆୟର୍‌ଲଣ୍ଡ୍‌ର ଆଲ୍‌ଷ୍ଟର୍ ଅଂଚଳରୁ ଆସି ବୋଷ୍ଟନ୍‌ରେ ବସତି କରିଥିଲେ । ମେଗ୍ ସେଇଠାରୁ ଆସିଛନ୍ତି ।

ସେ ଆସିଛନ୍ତି ବୋଲି କହିବା ଠିକ୍ ହେଉ ନାହିଁ; ମୁଁ ତାଙ୍କୁ ବୋଷ୍ଟନ୍‌ରେ ପାଇ ଆଣିଲି । ସେ ବେଳର କଥା ଆଜି ବେଶ୍ ମନେ ପଡୁଛି; ସେତେବେଳେ ଯେତେ ଅନୁଭବ କରୁଥିଲି, ଆଜି ସେବେଳର ଘଟଣା ତେର୍‌ ଅଧିକ ଅନୁଭବ କରୁଛି । ସେତେବେଳର ମୁଁ, ସେକଣ୍ଡ୍ ଲେଫ୍‌ଟ୍‌ନାଣ୍ଟ୍ ହ୍ୱ'ଲି ସପ୍ତାହାନ୍ତ ଛୁଟିର ପାସ୍ ଧରି ଆସିଥାଏ, ଲାଜ ଓ ଭୟରେ ଥରୁଥାଏ । ଅପରପକ୍ଷରେ କୋମଳାଙ୍ଗୀ, ବର୍ତ୍ତୁଳ-କପୋଳିନୀ, ପଦ୍ମଗନ୍ଧା ଯୁବତୀଟିଏ । ଯୁଦ୍ଧର ବିଭୀଷିକା ଓ ଓ ଗୃହୀଜୀବନର କଳ୍ପନା ବିଳାସ ଯୋଗୁଁ ତାଙ୍କର ଏହି ଆକର୍ଷଣମାନ ଦ୍ୱିଗୁଣିତ ହୋଇଥାଏ । ଆମ ଦୁହିଁଙ୍କର ସେ ବେଳର ଭାବ କେଡ଼େ ଦୁର୍ଦ୍ଦମ, ଅଥଚ କେଡ଼େ ଗମ୍ଭୀର । ଯୁଦ୍ଧରେ ମୁଁ ନିହତ ହେବି ବୋଲି ଧରି ନେଇଥାଉଁ, କିନ୍ତୁ ତାଙ୍କର ଦୃଢ଼ ସଂକଳ୍ପ, ସେ ମୋର ବୀର-ସ୍ମୃତିକୁ ସମ୍ବଳ କରି ଜୀବନ କଟାଇ ଦେବେ ! ସେତେବେଳେ ଲକ୍ଷ ଲକ୍ଷ ମିଙ୍ଗଳବର୍ଣ୍ଣପୋଷାକ ପିନ୍ଧିଥିବା ସୈନିକଯୁବକ ଓ ଛୋଟ ସେମିଜ୍ ପିନ୍ଧା

ଯୁବକଣ୍ଡ ଯୋଡ଼ ଯୋଡ଼ ହୋଇ ଭବିଷ୍ୟତ୍‌ର ଯେଉଁ ସ୍ୱପ୍ନ ଆଶା ଓ ଉତ୍କଣ୍ଠା ଭିତରେ ଦେଖୁଥିଲେ, ଆମେ ସେଇମାନଙ୍କ ସଙ୍ଗେ ସର୍ବତୋଭାବେ ସମାନ ଦୁଇଜଣ । "ପ୍ରିୟ ଜନ୍ ! ଆଉ ତୁମକୁ ଅପେକ୍ଷା କରି ନ ପାରି ମୋ ଗୃହା ମୁଁ ଧରୁଛୁ ।" ଏଇପରି ଖଣ୍ଡିଏ ଖଣ୍ଡିଏ ଚିଠିରେ ଅନେକଙ୍କ ସୁଖ ସ୍ୱପ୍ନ ଯେପରି ଭାଙ୍ଗିଯାଇଛି, ଆମର ସେପରି ଭାଙ୍ଗିଯାଇଥିଲେ ଅସ୍ୱାଭାବିକ ହୋଇ ନ ଥାନ୍ତା । ଭାଙ୍ଗିଲା ଯେ ନାହିଁ ତା'ର କାରଣ,ଏ ସ୍ଥଳରେ ଯୁବକଟି ତା' ସୈନିକଠାରେ ନିଜର ଆଶା ଆକାଂକ୍ଷା ସବୁମନ୍ତେ ସମର୍ପି ଦେଇ-ଥିଲା । ତା'ର ପତ୍ରାବଳୀ,ଏକନିଷ୍ଠ ପ୍ରେମର ରାଗରେ ସୁରଭିତ ହୋଇ ମୋତେ ଖୋଜି ଖୋଜି ବିଭିନ୍ନ ଯୁଦ୍ଧଘାଟିମାନଙ୍କୁ ଅନୁସରଣ କଲା । ସବୁବେଳେ ଏକରକମ ପତ୍ର—ଈଷତ୍ ନୀଳ କାଗଜ ଉପରେ, ଗାଢ଼ନୀଳ କାଳିରେ ମାଛ ମଞ୍ଜି ପରି ବର୍ତ୍ତୁଳ, ସ୍ପଷ୍ଟ ହସ୍ତାକ୍ଷର । ଆମ ଦଳର ପ୍ରତ୍ୟେକ ସୈନିକ ଏ ଚିଠିର ରୂପ ସଙ୍ଗେ ପରିଚିତ ହୋଇଗଲେ ଓ ମୋର ସୁଖରେ ସମସୁଖ ଅନୁଭବ କରିବାକୁ ଲାଗିଲେ । ଯଦ୍ୟପି କୌଣସି କାରଣରୁ ମୋ ମନ ତା'ଙ୍କଠାରୁ ଭାଙ୍ଗି ଯାଇଥାନ୍ତା, ତଥାପି ଏକାନ୍ତ ପତିବ୍ରତା ନାରୀମାନଙ୍କର ପବିତ୍ର ସ୍ମୃତିକୁ କଳଙ୍କିତ କରିବା ଭୟରେ, ମୁଁ ମେରୀଙ୍କର ଅବିଚଳିତ ପ୍ରେମ ଆଗରେ ମୁଣ୍ଡ ନୁଆଁଇ ତା'ଙ୍କୁ ଗ୍ରହଣ କରିବାକୁ ବାଧ୍ୟ ହୋଇ-ଥାନ୍ତି ।

ସେ ଦିନଠାରୁ ଆଜି ଯାଏଁ ମେରୀଙ୍କର ବିଶ୍ୱାସ ଓ ଆନୁଗତ୍ୟ ଅଟଳ ରହିଛି । ବୋଷ୍ଟନ୍‌ର ଆଇରିସ୍ ପରିବେଶରୁ ଏଲ୍‌ମ୍ ଷ୍ଟ୍ରୀଟ୍‌ର ହ'ଲ ନିବାସକୁ ଆସି ତାହା ଟଳି ନାହିଁ । ମୋ'ବେପାର ଆସ୍ତେ ଆସ୍ତେ ଭାଙ୍ଗି ଯାଉଥିବା ବେଳେ ଆମକୁ ଆସ୍ତେ ଆସ୍ତେ ଯେଉଁ ନୈରାଶ୍ୟ ଗ୍ରାସ କରୁ-ଥିଲା, ସେତେବେଳେ ସେ ଝିଲେମାନ ଚହଲି ଯାଇନାହାନ୍ତି; ପ୍ରସୂତିବେଦନା ବେଳେ ମୋ ପ୍ରତି ତାଙ୍କର ବିରାଗ ଆସି ନାହିଁ କି, ମୋର ଭବିଷ୍ୟତ୍ ପକ୍ଷାଘାତ-ରୋଗଗ୍ରସ୍ତ ହୋଇ ଦୀର୍ଘ ଗୁମାସ୍ତା-ଜୀବନରେ ପର୍ଯ୍ୟବସିତ ହେଲା ବେଳେ, ସେ ମୋ ପ୍ରତି ବିରକ୍ତ ହୋଇ ନାହାନ୍ତି । ଭାଗ୍ୟକୁ ଆଦର ଭବିଷ୍ୟତ୍‌କୁ ଅପେକ୍ଷା କରିବା ତାଙ୍କର ପ୍ରକୃତିଗତ—ଆଜି ଏତେ ଦିନ-ପରେ ମୁଁ ତାହା ବୁଝି ପାରୁଛି । ଆହୁରି ଦେଖୁଛି, ବହୁ ଦିନ ଅପେକ୍ଷା କରି କରି ଅବଶେଷରେ ତାଙ୍କର ଧୈର୍ଯ୍ୟଚ୍ୟୁତି ହେବାକୁ ବସିଲାଣି । ମୋ

ମେଗ୍ ଅନ୍ତା ପରିହାସ କରିବା ଲୋକ ନୁହନ୍ତି, ବିଦ୍ରୂପ କରି ନିଜର ଉଦ୍ଦେଶ୍ୟ ସିଦ୍ଧ କରିବାକୁ ସେ ପସନ୍ଦ କରନ୍ତି ନାହିଁ । ଆଜି ଧୈର୍ଯ୍ୟ ହରାଇ ସେ ଯାହା କରିଛନ୍ତି, ତାହାହିଁ ତାଙ୍କର ଆନ୍ତରିକ ଇଚ୍ଛା । ଆଜି-ଯାଏଁ ଏ ଇଚ୍ଛା ସେ ଲୁଚାଇ ରଖି ମୋତେ ଜାଣିବାକୁ ଦେଇ ନ ଥିଲେ । ଆଜିଯାଏଁ ଯେଉଁ ବିଷ ତାଙ୍କ ମୁଣ୍ଡକୁ ଚଢ଼ିନି ନ ଥିଲା, ତାହା ଆଜି ମେଗ୍‌ଙ୍କ ମୁଣ୍ଡକୁ ଚଢ଼ିଛି, ତାହାହିଁ ବିଚିତ୍ର ଲାଗୁଛି । ରାତ୍ରିରେ ଜମିଥିବା ତୁଷାର ଆସ୍ତରଣରେ ମଡ଼ ମଡ଼ ହୋଇ ପାଦଶବ୍ଦ ହେଲା ବେଳେ ମନରେ ମେଗ୍‌ଙ୍କ ନୂତନ ପ୍ରକଟିତ ମନୋବୃତ୍ତିର ଚିତ୍ର ଦିଶି ଯାଉଥାଏ ।

ନିଉ ବେ-ଟାଉନ ସହରରେ ପାହାନ୍ତିଆ ପହରରେ ଏକୁଟିଆ ଯିବାରେ ସଙ୍କୁଚିତ ହେବାର କୌଣସି କାରଣ ନାହିଁ । ଅବଶ୍ୟ କୁନି ଉଇଲି ମୋତେ ଏ ଅବସ୍ଥାରେ ଦେଖିଲେ ରହସ୍ୟ କରି ଦି'ପଦ କହନ୍ତେ, କିନ୍ତୁ ଅନ୍ୟମାନେ ପାହାନ୍ତିଆ ୩ଟା ବେଳେ ମୋତେ ରାସ୍ତା ଉପରେ ଯିବାର ଦେଖିଲେ, କିଛି ସନ୍ଦେହ ନ କରି ସିଧା ବିଚାରିବେ ଯେ ମୁଁ ମାଛ ମାରିବାକୁ ଯାଉଛି । ଆମ ସହରର ଲୋକଙ୍କର, କେତେବେଳେ କୋଉ ମାଛ ପଡ଼ନ୍ତି ସେ ବିଷୟରେ ବିଭିନ୍ନ ମତ ଅଛି । ଭିନ୍ନ ଭିନ୍ନ ପରି-ବାରରେ ପିଠା ଓ ତରକାରୀପତ୍ର କରିବାର ପ୍ରଣାଳୀ ଯେପରି ସ୍ୱତନ୍ତ୍ର ଓ ନିଜ ନିଜ ପରିବାର ଭିତରେ ଗୁପ୍ତଭାବେ ସୁରକ୍ଷିତ, ସେହିପରି ମାଛ ମାରିବାର ପ୍ରଣାଳୀ ଓ ପ୍ରକୃଷ୍ଟ ସମୟ ଭିନ୍ନ ଭିନ୍ନ ଲୋକଙ୍କର ଅଲଗା ଅଲଗା । ଏଥିରେ କେହି କାହାକୁ ସମାଲୋଚନା କରନ୍ତି ନାହିଁ, ବା ଅସମୟରେ ମାଛ ମାରିବାକୁ ଗଲେ ଖୁଣନ୍ତି ନାହିଁ ।

ରାସ୍ତା ପାଖ ପଡ଼ିଆ ଓ ଗଳି ରାସ୍ତାରେ ପଡ଼ିଥିବା ତୁଷାରର କଠିଣ ଆସ୍ତରଣ ବିଦ୍ୟୁତ୍ ଖୁଣ୍ଟର ଆଲୁଅରେ, ଲକ୍ଷ ଲକ୍ଷ ମୁକ୍ତା ଏକାଠି ପାରି ହୋଇ ଝଟକିଲା ପରି ଦିଶୁଥାଏ । ଏଭଳି ତୁଷାର ଆସ୍ତରଣରେ ପାଦଚିହ୍ନ ସ୍ପଷ୍ଟ ହୋଇ ରହେ; ଆଗରେ କୌଣସି ପାଦଚିହ୍ନ ନ ଦେଖି ମୁଁ ଠିକଣା କଲି ଯେ ମୋ ଆଗରେ କେହି ଏବାଟେ ଯାଇନାହାନ୍ତି । ସଦ୍ୟ ତୁଷାର ଆସ୍ତରଣ ଉପରେ ନୂଆ କରି ଚାଲିବାକୁ ମୋତେ ମୋ ପିଲାଦିନୁଁ ଭାରି ସୁଖ ଲାଗେ । ମୋତେ ଲାଗେ ଯେତେ ଯେମିତି ମୁଁ ଗୋଟାଏ ନୂଆ ଦେଶରେ ପ୍ରଥମ କରି ପାଦ ପକାଉଛି—ଅନ୍ୟମାନଙ୍କ ସ୍ପର୍ଶରେ କଳୁଷିତ ନ ହୋଇ-

ଥିବା ନୂଆ, ନିର୍ମଳ ଭୂଖଣ୍ଡ ଆବିଷ୍କାର କରିବାର ତୃପ୍ତି ମୁଁ ଅନୁଭବ କରେ । ଏତେ ରାତ୍ରରେ ମୋ ଆଗେ ଆଉ କିଏ ବା ଏ ତୁଷାରରେ ପାଦ ଦେଇଥାନ୍ତା ? ସାଧାରଣତଃ ବିଗିଡ଼ ଗୁଡ଼ାକ ରାତ୍ରରେ ଚଲାବୁଲା କରନ୍ତି, କିନ୍ତୁ ସେମାନଙ୍କୁ ତୁଷାରରେ ଚାଲିବା ତ ସ୍ୱପ୍ନ ଲାଗିବାର ନୁହେଁ । ମୋର ମନେ ଅଛି, ଥରେ ବାହାଦୁରି ଦେଖାଇ ମୁଁ ଖାଲି ଗୋଡ଼ରେ ତୁଷାର ଉପରେ ଗୋଡ଼ ପକାଇ ଦେଇଥିଲି, ଗୋଡ଼ ପୋଡ଼ିଗଲା ପରି ଲାଗିଲା । ଆଜି ସେ ଭୟ ନାହିଁ । ପାଦରେ ମୋଟା ମୋଜା ଉପରକୁ ରବର ଜୋତା, ଚକ୍ ଚକ୍ କରୁଥିବା ସଦ୍ୟ ତୁଷାରରେ ମୁଁ ନିର୍ବିକାରରେ ପ୍ରଥମ ପଦଚିହ୍ନ ଆଙ୍କି ଆଗେଇବାକୁ ଲାଗିଲି ।

ବ୍ଲିକ୍ ଷ୍ଟ୍ରୀଟର ଅନତିଦୂରରେ, ଯେଉଁଠାରେ ପର୍ଲକ୍ ଓ ଟର୍କଷ୍ଟ୍ରୀଟ୍ ପରସ୍ପର ପାର ହୋଇଛନ୍ତି, ସେଇ ଛକରେ ଗୋଟାଏ ସାଇକଲ୍ କାରଖାନା ଅଛି । ସେଇ ପାଖରେ ଦେଖିଲି, ନିର୍ମଳ ତୁଷାରରେ ପାଦ ଘୋଷରା ଚିହ୍ନ ପଡ଼ିଛି । ଚିହ୍ନିଲି, ସେ ଡାନି ଟେଲର୍‌ର ପାଦ ଚିହ୍ନ । ତା'କୁ ରାତ୍ରରେ ନିଦ ହୁଏ ନାହିଁ । ସେ ଗୋଟାଏ ଠାରେ ଥୟ ହୋଇ ରହି ପାରେ ନାହିଁ । ଗୋଟାଏ ସ୍ଥାନରୁ ଆଉଗୋଟିଏ ସ୍ଥାନକୁ ଯିବାକୁ ମନ କରି ଯାଏ, କିନ୍ତୁ ସେଠି ପହଞ୍ଚୁ ପହଞ୍ଚୁ ସେଠାରୁ ମନ ଉଠିଯିବାରୁ ପୁଣି ବାହାରେ ତୃତୀୟ ସ୍ଥାନକୁ । ରାତ୍ରଯାକ ସେ ଭୂତପରି ଏଠିକୁ ସେଠି ହେଉଥାଏ । ଆମ ସହରର ମାତାଲ୍ ସିଏ । ମୋ'ର ବିଶ୍ୱାସ ପ୍ରତି ସହରରେ ଏମିତି ଜଣେ ଜଣେ ଅଛନ୍ତି । ଆମ ସହରର ଅନେକ ବିଶିଷ୍ଟ ଲୋକ ଡାନି ପାଇଁ ଦୁଃଖ କରନ୍ତି—ବେଶ୍ ପୁରୁଣା ପ୍ରତିପତ୍ତିସମ୍ପନ୍ନ ବଂଶରେ ଜନ୍ମ ହୋଇଥିଲା, ଭଲ ପାଠ ବି ପଢ଼ିଥିଲା, କୁଳର ପୁଣି ଏକମାତ୍ର ଅଙ୍କୁର; ତା'ର ଏ ଦଶା ! ଦୁଃଖ କରିବାର କଥା । ନୌସ୍ଥଳନା ଶିକ୍ଷାଳୟରେ ଭର୍ତ୍ତି ହୋଇଥିଲା । ସେଇଥିରେ କ'ଣ ଗୋଳମାଳ କରିବାରୁ ବାହାରି ପଡ଼ିଲା ବୋଲି ଲୋକେ କହନ୍ତି । ଯାହା ତ ହେଲା, ହେଲା । ଏବେ ଭଲରେ ନ ଚଳୁଛି କାହିଁକି ? ଗୁଡ଼ାଏ ମଦ ଖାଇ ଆତ୍ମହତ୍ୟା କରୁଛି ସିନା ! ଭଦ୍ରଲୋକର ପିଲା ପକ୍ଷରେ ନିନ୍ଦାର କଥା ! ଆହୁରି ଲଜ୍ଜାର କଥା ଯେ ମଦ ପିଇବାକୁ ସେ ଭିକ ମାଗୁଛି । ସୁଖର କଥା, ପୁଅର ଏ ଦଶା ଦେଖିବା ପୂର୍ବରୁ ବାପ ମା ଚାଲିଯାଇଛନ୍ତି । ବଞ୍ଚିଥିଲେ ଏ ଅବସ୍ଥା ଦେଖି ସେମାନେ ପ୍ରାଣ-

ଧରି ରଖିପାରନ୍ତେ ନାହିଁ । ଆଗରୁ ମରିଯାଇ ଭଲ କରିଛନ୍ତି—ଆମ ସହରର ଲୋକେ ଡାନି ବିଷୟରେ ଏଇପରି କୁହାକୁହି ହୁଅନ୍ତି ।

ଡାନି ପାଇଁ ଦୁଃଖ ମୋ ମନରେ ସବୁବେଳେ ଲାଗିରହିଛି; ମୁଁ ତା' ଦଶା ପାଇଁ ନିଜକୁ ବି ଦୋଷ ଦିଏ । ତା'କୁ ରାସ୍ତାକୁ ଆଣିବାକୁ ମୁଁ ସମର୍ଥ ହୋଇଥିଲେ ଠିକ ହୋଇଥାନ୍ତା । ମୁଁ ବହୁ ଚେଷ୍ଟା କରିଛି, କିନ୍ତୁ ଡାନି ମୋ କଥା ଶୁଣିଲା ନାହିଁ । ମୋ'ର ନିଜର ଭାଇ ନ ଥିଲେ, ଡାନିକୁ ମୁଁ ନିଜ ଭାଇ ପରି ମନେ କରେ । ଏକା ବୟସ, ପିଲାଦିନେ ଏକାଠି ବଢ଼ିଥିଲୁଁ ; ଦୁହେଁଯାକଙ୍କର ବଳ ସମାନ, ଓଜନ ବି ସମାନ । ମୁଁ ତା'କୁ ରାସ୍ତାରେ ରଖିବାର କଥା, ନ ପାରିଥିବାରୁ ନିଜକୁ ଦୋଷେ । ଅନ୍ତରରେ ମୋ ଅପରାଧର ଅନୁଭୂତି ଅଦ୍ୟାପି ଏଡ଼େ ତୀବ୍ର ହୋଇ ରହିଛି ଯେ, ମନକୁ ଯେତେ ବୁଝାଇଲେ ବି ମନର ଦୁଃଖ ଦୂର ହେଉ-ନାହିଁ । ମୁଁ ମୋ'ର ଅପରାଧ କ୍ଷାଳନ କରିବାକୁ ଯେଉଁ ଯୁକ୍ତି ଦେଖାଏ, ତାହା ଯେଡ଼େ ଅକାଟ୍ୟ ହେଲେ ବି ମନ ବୁଝେ ନାହିଁ । ଗାଲ ହ'ଲ, ବା ବେକର୍ ବଂଶ କାହିଁକି, ସହରରେ ଯେତେ ପୁରୁଣା ଘର ଅଛନ୍ତି, ତାଙ୍କର ପରି ପୁରୁଣା ଘର ଟେଲର୍ ବଂଶର, ମର୍ଯ୍ୟାଦାରେ ସେମାନେ କାହାଠାରୁ ନ୍ୟୂନ ନ ଥିଲେ । ପିଲାଦିନେ କୌଣସି ଭୋଜଭାତ, ସର୍କସ୍, ଖେଳ, ଖ୍ରୀଷ୍ଟମାସ୍ ଉତ୍ସବରେ ମୁଁ ଡାନିକୁ ଛାଡ଼ି ଏକୁଟିଆ ଯୋଗ ଦେଇ-ଥିବାର ମନେ ପଡ଼ୁନାହିଁ । ମୋ ଡାହାଣ ହାତ ଯେପରି ସବୁବେଳେ ମୋ ସାଥିସାଥି, ଡାନି ସେହିପରି ମୋ ସାଙ୍ଗେ ଏକ ହୋଇଥିଲା । ଯଦି ଆମେ ଦୁହେଁ ଏକାସାଙ୍ଗେ କଲେଜ୍‌କୁ ଯାଇଥାନ୍ତୁ, ତେବେ ହୁଏତ ଡାନିର ଏ ଦୁର୍ଦ୍ଦଶା ହୋଇ ନ ଥାନ୍ତା । ମୁଁ ହାର୍‌ଭାର୍ଡ୍ ବିଶ୍ୱବିଦ୍ୟାଳୟକୁ ଯାଇ, ସାହିତ୍ୟ କଳାସରେ ମାତିଲି, ଭାଷାଜ୍ଞାନରେ ବ୍ୟୁତ୍ପନ୍ନ ହେଲି; ରହସ୍ୟମୟ ଅତୀତର ଚମତ୍କାରିତାରେ ମୁଗ୍ଧ ହୋଇ ଯେଉଁ ପାଣ୍ଡିତ୍ୟ ଅର୍ଜିଲି, ଖାଦ୍ୟସାମଗ୍ରୀର ଦୋକାନ ଚଳାଇବାରେ ସେ ପାଣ୍ଡିତ୍ୟର ପ୍ରୟୋଜନ ବା କ'ଣ ? କିନ୍ତୁ ଜୀବନସ୍ରୋତରେ ଭାସି ଭାସି ମୁଁ ଏଇ ଦୋକାନରେ ଯାଇ ଲାଗିବି ବୋଲି କିଏ ଜାଣିଥିଲା ? ମୁଁ କଲେଜକୁ ଗଲା ବେଳେ ମୋର ମନ ହେଉଥିଲା, ଡାନି ମୋ'ସାଙ୍ଗେ ଯାଇ ମୋ'ରି ପରି ଜ୍ଞାନ ଓ ପାଣ୍ଡିତ୍ୟର ତୀର୍ଥରେ ବୁଡ଼ ପକାଇ ଉନ୍ନତ ଓ ଉଦ୍‌ବୁଦ୍ଧ ହେବ । କିନ୍ତୁ

ତାନର ଗନ୍ତବ୍ୟପଥ ଥିଲା ଭିନ୍ନ । ସେ ପରା ସାମୁଦ୍ରିକ ଜୀବନ ପାଇଁ ଜନ୍ମ-ହୋଇଥିଲା । ଆମେ ପିଲା ଥିଲା ବେଳୁଁ ନୌ-ଶିକ୍ଷାଳୟରେ ସେ ଯୋଗ ଦେବ ବୋଲି କଳ୍ପନା ଜଳ୍ପନା ହେଉ ହେଉ ସ୍ଥିର ନିଶ୍ଚୟ ହୋଇ ସାରିଥିଲା । ପ୍ରତି ନିର୍ବାଚନରେ ଆମ ଅଞ୍ଚଳରୁ ଯେ କଂଗ୍ରେସକୁ ନିର୍ବାଚିତ ହୁଅନ୍ତି, ତାଙ୍କ ସଙ୍ଗେ କଥାବାର୍ତ୍ତା କରି ତାନିର ବାପା ତା'ପାଇଁ ନୌ ଶିକ୍ଷାଳୟରେ ସିଟ୍ ଠିକଣା କରି ରଖିଥିଲେ ।

ତାନି ତିନିବର୍ଷ ନୌ-ଶିକ୍ଷାଳୟରେ ସୁଖ୍ୟାତିର ସହିତ ଉତ୍ତୀର୍ଣ୍ଣ ହେବା ପରେ ବହିଷ୍କୃତ ହେଲା । ଏ ସମ୍ବାଦରେ, ତାନିର ପିତାମାତାଙ୍କର ଛାତି ଫାଟି ପ୍ରାଣଗଲା ବୋଲି ଲୋକେ କହନ୍ତି । ତାନିର ମଣିଷ ପଣିଆ ବି ପ୍ରାୟ ସରିଗଲା । ବାକୀ ରହିଲା ଏକ ଦାୟୀତ୍ୱହୀନ ପ୍ରାଣୀ—ରାସ୍ତାରେ ଏଣେ ତେଣେ ବୁଲି ବୋତଲେ ମଦ ପାଇଁ ପଇସା ଗୁରୁଅଣା ମାଗିବୁଲିବାର ଏକ କଳଙ୍କ । ଇଂରେଜ ଶୈଳୀରେ କୁହାଯାନ୍ତା, 'ତାନି ତା ସାଙ୍ଗସାଥିଙ୍କ ମାନ ତଳେ ପକାଇ ଦେଲା ।' ସତ, କିନ୍ତୁ ସାଙ୍ଗ ସାଥିଙ୍କର ଯେତେ ଦୁଃଖ ହୁଏ, ତାଙ୍କ ମାନ ତଳେ ପକାଇବା ବାଲାର ଦୁର୍ଦ୍ଦଶା ଯେ ତହିଁରୁ ଢେର ବେଶୀ । ତାନି ଏବେ ହୋଇଛି, ସର୍ଜିରେ; ପାହାନ୍ତିଆ ପହରରେ ଏକାକୀ ପାଦ ଘୋଷାରି ଘୋଷାରି ଏଠିକି ସିଂଠା ହୁଏ; ମାଲପାଣି ପାଇଁ ଠକ୍କେମସେ ସକାଶେ ହାତ ପତାଇଲା ବେଳେ ସେ ଯେପରି ଗୁହେଁ,ଦେଖିଲେ ବଗୁଡ଼ିବ, ସେ କ୍ଷମା କରିବାକୁ ଅନୁରୋଧ କରୁଛି, କିନ୍ତୁ ନିଜକୁ ନିଜେ କ୍ଷମା କରି ପାରୁ ନାହିଁ । ଉଇଲ୍‌ବର୍ସ୍ ଯେଉଁଠି ଜାହାଜ ତିଆରି କରୁଥିଲେ, ଏବେ ସେଇଠି ଡଙ୍ଗା ତିଆରି ହେଉଛି; ତା'ରି ପଛପଟେ ଗୋଟିଏ ଝୋପଡ଼ରେ ତାନି ରାତିରେ ଶୁଏ । ତାନି ତା' କୁଡ଼ିଆ ଆଡ଼କୁ ଯାଇଛି ନା କୁଡ଼ିଆରୁ ବାହାରି ବାଣ୍ଡକୁ ଯାଇଛି; ବାରିବାକୁ ମୁଁ ତା ପାଦଚିହ୍ନକୁ ଲଇଁପଡ଼ି ରହିଁଲି । ସେ ବାଣ୍ଡକୁ ଯାଇଛି ଜାଣି, ଆଶାକଲି ହୁଏତ ବାଟରେ କେଉଁଠି ତା ସଙ୍ଗେ ସାକ୍ଷାତ ହୋଇଯିବ । କୁନି ଉଇଲି ତାକୁ ହାଜତକୁ ନେବାର ସମ୍ଭାବନା ଆଦୌ ନାହିଁ; ତାକୁ ହାଜତ ବା ଜେଲରେ ଠୁଙ୍କିଲେ ଲାଭ କ'ଣ ?

ମୋ'ର ଗନ୍ତବ୍ୟ ସ୍ଥାନ ବିଷୟରେ ମୋ ମନରେ କୌଣସି ସଂଶୟ ନ ଥିଲା । ଶେଯରୁ ଉଠିବା ପୂର୍ବରୁ ମୁଁ ସେ ସ୍ଥାନର ସ୍ପର୍ଶ ଓ ଗନ୍ଧ ପାଇସାରିଥିଲି ।

ପୁରୁଣା ବନ୍ଦରଟି ଏବକୁ ଗଲାଣି ବୋଲି କହିଲେ ଚଳେ । ମ୍ୟୁନିସିପାଲିଟି ସମୁଦ୍ର ଭିତରକୁ ଯେଉଁ ପାହିଆ ଗଢ଼ିଥିଲା ସେ ଗଲା, ତା' ସାଙ୍ଗକୁ ନୂଆ ହୋଇ ଗଢ଼ା ଯାଇଥିବା ତରଙ୍ଗ-ନିବାରକ ବନ୍ଧ ଦୁଇଟା ମଧ୍ୟ ସମୁଦ୍ର-ସାତ୍ ହେଲା—ଫଳରେ ହ୍ୱିଟ୍‌ସନ୍ ପାହାଡ଼ରେ ଦୁଇ ଦାନ୍ତଭିତରେ ଜାହାଜ ନଙ୍ଗର କରିବାକୁ ଯେଉଁ ବନ୍ଦରଟି ତିଆରି ହୋଇଥିଲା ବାଲି ଓ ପଟୁ ପଶି ତାହା ପୋତି ହୋଇଲାଣି । ବନ୍ଦର ପୋତି ହେବା ସାଙ୍ଗେ ସାଙ୍ଗେ ଜାହାଜକୁ ଡକ୍‌କୁ ନେବା ପାଇଁ ଯେଉଁ ନାଳ ସବୁ ହୋଇଥିଲା ସେ ବି ପୋତି ହୋଇଗଲାଣି । ଆଉ ପୂର୍ବର ରଜ୍ଜୁ-ପଥ ନାହିଁ, କି ମାଲ ରଖିବାର ଗୋଦାମ ସବୁ ନାହିଁ । ସେ ସବୁ ଭାଙ୍ଗି ରୁଜି ଗଲାଣି, ସମୁଦ୍ରକୂଳରେ ତିମି-ତେଲର ପିପା ତିଆରି କରିବାକୁ ଯେଉଁ କାରିଗର ବସତି ଥିଲା ସେ ସବୁ ବି ଗଲାଣି । ଯେଉଁ ଡକ୍ କଡ଼ରେ ତିମିଶିକାରି ଜାହାଜ ବନ୍ଧା ହେଉଥିଲା ସେ ଡକ୍ ମଧ୍ୟ ତରଙ୍ଗାଘାତରେ ନଷ୍ଟ ହୋଇଗଲାଣି । ଏ ବନ୍ଦରରେ ଯେଉଁ ଜାହାଜସବୁ ଲାଗୁଥିଲେ ସେ ସମସ୍ତେ ପ୍ରାୟ ତିନି-ମାସ୍ତୁଲ୍ ବାଲା । ସେ ଗୁଡ଼ିକର ଚୌରକୋଣିଆ ପାଲ; ପଛ ମାସ୍ତୁଲ୍‌ରେ ଚୌରକୋଣିଆ ପାଲ ବି ଥିଲା, ତ୍ରିଭୁଜାକୃତି ପାଲ ବି ଥିଲା । ଜାହାଜଗୁଡ଼ିକର ଆକୃତି ଖୁବ୍ ବଡ଼ ଥିଲା ଏବଂ ଖୁବ୍ ଖରାପ ପାଗରେ ବି ବର୍ଷ ବର୍ଷ ଧରି ସମୁଦ୍ରରେ ରହିଲା ଭଳି ଶକ୍ତ ହୋଇ ତିଆରି ହୋଇଥିଲେ ।

ପୁରୁଣା ବନ୍ଦରର ଗୋଟିଏ ଲୁହାପଟ୍ଟ-ଖୋଦିତ ଚିତ୍ର ମୋ ପାଖରେ ଅଛି । ଏଥିରେ ଜାହାଜ ସହିତ ବନ୍ଦରର ଗୋଟିଏ ପୂର୍ଣ୍ଣ ଚିତ୍ର ରହିଛି । ଟିଣରେ ନିଆ ହୋଇଥିବା କେତେଗୁଡ଼ିଏ ଫଟୋ ବି ଅଛି; ଫଟୋ ଗୁଡ଼ିକ ଠାଏ ଠାଏ ଅସ୍ପଷ୍ଟ ହୋଇଗଲାଣି । ମୋର କିନ୍ତୁ ସ୍ମୃତି ସାହାଯ୍ୟ କରିବାକୁ ଏ ଚିତ୍ରମାନଙ୍କର ପ୍ରୟୋଜନ ହୁଏ ନାହିଁ । ବନ୍ଦର ଓ ଜାହାଜ ଗୁଡ଼ିକ ମୋ ସ୍ମୃତିରେ ଖୋଦିତ ହୋଇ ରହିଛନ୍ତି । ଜେଜେ ବାପା, ସିଙ୍ଘିଠାଳ ତିମିର ଶିଂଘରେ ତିଆରି ତାଙ୍କ ହାତଧରା ବାଡ଼ି ସାହାଯ୍ୟରେ, ଜାହାଜ ସହିତ ସମସ୍ତ ବନ୍ଦରକୁ ମୋ ମାନସପଟରେ ଆଙ୍କି ଦେଇ ଯାଇଛନ୍ତି । ପୂର୍ବେ ଯେଉଁଠି ଆମ ହ୍ୱ'ଲ ବଂଶର ଡକ୍ ଥିଲା, ତାହା ସମୁଦ୍ର ତୋଡ଼ରେ ଭାଙ୍ଗି ଠାଏ ପଥରକୁଦଟାଏ ରହିଛି । ସେହି କୂଦ ଉପରେ ତାଙ୍କ ତିମି ଶିଂଘବାଡ଼ିକୁ ଠୁକୁ ଠୁକୁ କରି ବାଡ଼େଇ ଜେଜେ

ବାପା ମୋତେ ଜାହାଜର ପାଲମାନଙ୍କ ନାମ ଶିଖାଇ ଦେଇଛନ୍ତି—ମୋର ବୃଦ୍ଧ ଜେଜେବାପାଙ୍କର ଖୁଷଣ ଆକୃତି; ଧଳା ଦାଢ଼ି ତାଙ୍କ ମୁହଁର ଧଡ଼ ପର ଦିଶୁଥାଏ । ତାଙ୍କୁ ମୁଁ ଖୁବ୍ ସୁଖ ପାଉଥିଲି, ତଥାପି ତାଙ୍କ ଟ୍ରେନିଂରେ ମୋର ସମଗ୍ର ଶରୀର ଥର ଯାଉଥାଏ ।

ତାଙ୍କର ଯେଉଁ ସ୍ୱର, ତା' ପାଇଁ ମେଗାଫୋନ୍ ଦରକାର ହେଉ ନ ଥିବ, କପ୍ତାନ୍‌ଙ୍କ ପଟତନରୁ ସମଗ୍ର ଜାହାଜକୁ ଶୁଣାଇବା ସକାଶ । ସେ ଆରମ୍ଭ କରନ୍ତି, "ଆଚ୍ଛା, ଜାହାଜର ସବୁ ପାଲର ନାମ କହିଯା ।" ଗଳା ଖୋଲି କହ, ଫୁସ୍ ଫୁସ୍ କଥା ମୋତେ ସୁଖ ଲଗେ ନାହିଁ ।

ମୁଁ କହିବାକୁ ଲଗେ । ଗୋଟିଏ ନାମ କହିଲେ, ସେ ତମି ଶିଂଘ ବାଡ଼ରେ ପାହାରେ ଠୁକନ୍ତି । ମୁଁ କହେ, "ଉପର ପାଲ" (ସେ କରନ୍ତି, ଠୁକ୍), ବାହାର ପାଲ (ଠୁକ୍), ଭିତର ପାଲ, ପୁଣି ଆଉ ଗୋଟେ ଭିତର ପାଲ (ଠୁକ୍‌ଠୁକ୍)

ଟିକିଏ ସ୍ୱର କମିଗଲେ, ପାଟି କରନ୍ତି, "ବଡ଼ ପାଟିକର, ଭୁ ଖାଲି ଫୁସ୍‌ଫୁସ୍ କରୁଛୁ ।"

ମୁଁ କହେ, "ସାମନା ମେଘା ପାଲ, ସାମନା ଆଗୁଆ ପାଲ, ସାମନା ଟପ୍-ଗ୍ୟାଲଣ୍ଟ୍ ପାଲ, ସାମନା ଓପର ପାଲ, ସାମନା ତଳ ପାଲ, ସାମନା ମଝିପାଲ—ପ୍ରତି ନାମକୁ ଥରେ ଥରେ ଠୁକ୍ ଠୁକ୍ ଆବାଜ ଚାଲିଥାଏ ।

"ମଝି ମାସ୍ତୁଲର ପାଲମାନଙ୍କ ନାମ ଡାକ ଦେ ।"

"ମଝି ମେଘା ପାଲ"—'ଠୁକ୍'

ବୟସ ବଢ଼ିବାରେ ଶ୍ରାନ୍ତ ହୋଇଯିବାରୁ ସେ ଏଇଠାରେ ବାଧା ଦେଇ କହନ୍ତି, "ଆଚ୍ଛା, ମଝି ମାସ୍ତୁଲର ସବୁ ପାଲ ତ ଟଣା ହୋଇଗଲା ଏଥର ପଛ ମାସ୍ତୁଲକୁ ଚାଲ । ଦେ ଡାକ୍ ଡାକ୍ ।"

"ହଇ, ଆଜ୍ଞା, ପଛ ମେଘା ପାଲ, ପଛ ବଡ଼ ପାଲ, ପଛ ଟପ୍-ଗ୍ୟାଲେଣ୍ଟ୍ ପାଲ ପଛ ଓପର ପାଲ, ପଛ ତଳ ପାଲି, ମଝି ପାଲ ।"

"ହଁ, ଆଉ ?"

"ସ୍ପ୍ୟାଙ୍କର୍ ପାଲ୍"

"କେମିତି ଟଣା ହୋଇଛି ?"

"ବୁମ୍ ଓ ଗ୍ୟାଫ୍ ଖୁଣ୍ଟିରେ, ଆଜ୍ଞା !"

ଡମି ଶିଂଘ ବାଡ଼ିର ପଥର କୁଡ଼ ଉପରେ ଠୁକ୍ ଠୁକ୍ ଶବ୍ଦ ଶୁଭୁଥାଏ ।

ବେଶୀ ବୁଢ଼ା ହୋଇଯିବାରୁ ତାଙ୍କର ଶ୍ରବଣଶକ୍ତି ଅତି କ୍ଷୀଣ ହୋଇଗଲା । ସେତେବେଳେ ସେ ସମସ୍ତଙ୍କୁ ଦୋଷନ୍ତି, ଫୁସ୍‌ଫୁସ୍ କରି କହୁଛି; ବୋଲି ; କହନ୍ତି, "ଯଦି ଗୋଟାଏ କଥା ସତ ବୋଲି ବିଶ୍ୱାସ କରୁଛ ଆଉ ଯଦି କଥାଟା ସତ ନ ହେଲେ ମଧ୍ୟ ତାହା କହିବ ବୋଲି ଭାବୁଛ, ତେବେ ବଡ଼ ପାଟିରେ କହ, ଫୁସ୍‌ଫୁସ୍ ହାଁକି ?"

ଜୀବନର ଶେଷ ବେଳକୁ ବୃଦ୍ଧ କପ୍ତାନଙ୍କର କାନ ଯିନା ତାବଦା ହୋଇଗଲା, ସ୍ମୃତି ବେଶ୍ ସତେଜ ଥାଏ । ଆମ ଉପସାଗରରୁ ସମୁଦ୍ରକୁ ପାଲ ମେଲିଥିବା ପ୍ରତି ଜାହାଜ କେତେ ଟନ୍ ଓଜନ ବୋହିପାରେ ଓ କେବେ କୁଆଡ଼େ ଯାଇଥିଲା ସେ ସବୁ କଥା ସେ ଘୋଷିଲା ପରି ଗାଇ ଯାଉଥିଲେ । ଫେରିଲାବେଳେ ଜାହାଜ କ'ଣ କ'ଣ ଜିନିସ ଆଣିଥିଲା ଓ ତାହା କାହା କାହା ଭିତରେ କିପରି ବଣ୍ଟା ହେଲା ସେ ସବୁ ମଧ୍ୟ କହି ଯାଉଥିଲେ । ଦୁଃଖର କଥା, ସେ କପ୍ତାନ ହେଲା ବେଳକୁ ତମିଶିକାରର ଅସଲ ବେଳ ଯାଇ ସାରିଥିଲା । କିରୋସିନକୁ ସେ କହୁଥିଲେ "ଗନ୍ଧତେଲ" ଓ କିରୋସିନ ଲଣ୍ଠନକୁ କହୁଥିଲେ, "ଗନ୍ଧ ଡିବି ।" ଇଲେକ୍‌ଟ୍ରିକ୍ ଆଲୁଅ ଆସିଲାବେଳକୁ ତାଙ୍କର ବେଳ ଯାଇଥିଲା, ଆଲୁଅର ପ୍ରୟୋଜନ ବି ନ ଥିଲା, ଖାଲି ଇଲେକ୍‌ଟ୍ରିକ୍ ଆସିଲା ବୋଲି ମନରେ ରହିଲା ମାତ୍ର । ଜାହାଜ ବିଷୟରେ ମୋତେ ତାଲିମ କରି କରିବା ସାଙ୍ଗେ ସାଙ୍ଗେ ସେ ତାଙ୍କ ମୃତ୍ୟୁ ବିଷୟରେ ମୋତେ ତାଲିମ କରି ଦେଇଥିଲେ । ତେଣୁ ତାଙ୍କ ମୃତ୍ୟୁରେ ମୁଁ ଅଭିଭୂତ ହୋଇ ନ ଥିଲି । ମନରେ କ'ଣ ବଡ଼ୁରିବ ଓ ବାହାରେ କିପରି ବ୍ୟବହାର କରିବ ସେ ବିଷୟରେ ମୁଁ ଆଗରୁ ତାଲିମ୍ ପାଇ ସାରିଥିଲି ।

ପଟୁ ଓ ବାଲିରେ ପୋତି ହୋଇ ପୁରୁଣା ବନ୍ଦରର ଯେଉଁ ତକ ଅଛି ତା'ର କଡ଼ରେ ଯେଉଁଠି ହ'ଲି ଡକ୍ ଥିଲା, ସେଠାରେ ପଥର ମୂଳଦୁଆଟା ଅଦ୍ୟାପି ଅକ୍ଷୁଣ୍ଣ ରହିଛି । ଭଟ୍ଟା ବେଳେ ସମୁଦ୍ର ଯେଉଁ ପର୍ଯ୍ୟନ୍ତ ଖସିଯାଏ, ଉପରୁ ସେଇ ପର୍ଯ୍ୟନ୍ତ ପଥର ଚଟାଣଟା

ଆସିଛୁ । ଜୁଆର ବେଳେ ସମୁଦ୍ର ପଥର ଚଟାଣର ଉପରକୁ ଧାଇଁଥାଏ । ଶେଷ ଆଡ଼କୁ ୧୦ ଫୁଟ ଦୂରରେ ଗୋଟିଏ ଛୋଟ ସୁଡ଼ଙ୍ଗ ଅଛି, ଚାରି ଫୁଟ ଓସାର, ଚାରିଫୁଟ୍ ଉଚ୍ଚ ଓ ୫ଫୁଟ ଗଭୀର । ଯା ଉପରେ ଖିଲଣ ବୁଲି ଯାଇ ହୋଇଛି । ବୋଧହୁଏ ଏକ ସମୟରେ ଏଇଟା ଥିଲା ଗୋଟାଏ ନାଳ । କୂଳ ଆଡ଼କୁ ଏହାର ମୁହଁ ବାଲି ଓ ପଥର ଖଣ୍ଡରେ ରୁନ୍ଧି ହୋଇ-ଯାଇଛି । ଏଇ ଗୁମ୍ଫାଟି ମୋର ନିଭୃତ ସ୍ଥାନ । ଏଇଭଳି ଗୋଟିଏ ଗୋଟିଏ ନିଭୃତ ସ୍ଥାନ ପ୍ରତ୍ୟେକ ବ୍ୟକ୍ତିର ଦରକାର ବୋଲି ମୁଁ ମନେ କରେ । ଯା ଭିତରେ ପଶିଲେ ସମସ୍ତଙ୍କର ଚକ୍ଷୁର ଅନ୍ତରାଳକୁ ଚାଲିଯିବ । କିଏ ଯଦି ଦେଖିବ ତ ସମୁଦ୍ର ଆଡ଼କୁ ଦେଖିବ, ବାକି ତିନିପାଖ ନିବୁଜ । ପୁରୁଣା ବନ୍ଦରରେ କେତୋଟି କଙ୍କଡ଼ା-ଧରାଳୀଙ୍କ ଝୁପୁଡ଼ି ବ୍ୟତୀତ ଆଉ କିଛି ଆଜିକାଲି ନାହିଁ । ଅତି ଧଡ଼ଡ଼ା ଏ ଝୁପୁଡ଼ି ଗୁଡିକ, ଶୀତ ଦିନେ ଯା ଭିତରେ କେହି ରହନ୍ତି ନାହିଁ । ଅନ୍ୟ ସମୟରେ କଙ୍କଡ଼ା-ଧରାଳୀ ଏଠାରେ ଥିଲେ ବି ନ ଥିଲା ପରି । ସେମାନେ ଦିନ ଭିତରେ ପଦେ ବି କଥା କହନ୍ତି କି ନାହିଁ ସନ୍ଦେହ, ସବୁବେଳେ ମୁହଁକୁ ତଳକୁ ପୋତି କଙ୍କଡ଼ା ଅନ୍ୱେଷଣରେ ଥାନ୍ତି, ଖାଁଆ ଦୁଇଟା ତଳକୁ ଝୁଙ୍କି କରିଥାଏ ।

ମୁଁ ମୋର ସେଇ ନିଭୃତ ସ୍ଥାନ ଉଦ୍ଦେଶ୍ୟରେ ମୁହାଁଇଥିଲି । ଯୁଦ୍ଧରେ ଯୋଗ ଦେବା ପୂର୍ବରୁ ମୁଁ ରାତିର ଜୁଆର ଆସି ଭର୍ତ୍ତି ହେବା ପର୍ଯ୍ୟନ୍ତ ଏଇଠାରେ ବସୁଥିଲି; ତା'ପରେ ମେରୀଙ୍କୁ ବିଭା ହେବା ପୂର୍ବରୁ ମଧ୍ୟ ଏଇଠାରେ ରାତି କଟାଉଥିଲି ; ଯାଲେନ୍‌ର ଜନ୍ମ ବର୍ଷ, ଯେତେ-ବେଳେ ମେରୀଙ୍କୁ ଖୁବ କଷ୍ଟ ହେଉଥିଲା, ସେତେବେଳେ ମଧ୍ୟ ରାତିର କେତେକ ସମୟ ମୋର ଏଇଠାରେ କଟିଥିଲା । ମୁଁ ଖୁସିରେ ଏଠାକୁ ଯାଉ ନ ଥିଲି, ମୋତେ କିଏ ଯେମିତି ବାଧ୍ୟ କରି ଏଠାକୁ ଟାଣି ନିଏ— ଭିତରେ ବସି ଲହଡ଼ି ଚଟାଣ କଡ଼ରେ ବାଡ଼େଇ ହେବାର ଶୁଣିବାକୁ ଓ ହ୍ୱିଟ୍‌ସନ୍ ପାହାଡ଼ର କରତ ମୁନ ଦନ୍ତୁରିତ ପ୍ରାନ୍ତ ଦେଖିବାକୁ । ଶେଷରେ ଘଡ଼ ଅନ୍ଧାରରେ ନାଲିଆ ବନ୍ଦୁମାନଙ୍କର ନର୍ତ୍ତନ ଦେଖିବା ଭିତରେ ମୁଁ ଏ ସ୍ଥାନକୁ ଦେଖିଥିଲି ଓ ସ୍ଥିର କରିଥିଲି ଯେ ମୋତେ ଏ ସ୍ଥାନକୁ ଆସି ବସିବାକୁ ପଡ଼ିବ । ଜୀବନର ଗତିରେ ଗୁରୁତର ପରିବର୍ତ୍ତନ ହେବା ବେଳେ ମୋତେ ଏ ସ୍ଥାନକୁ ଆସିବାକୁ ପଡ଼େ ।

ସମୁଦ୍ର କୂଳେ କୂଳେ ଦକ୍ଷିଣ ଡେଭନ୍‌ର ସୀମା ଲାଗିଛି । ପ୍ରେମିକ ପ୍ରେମିକା ସମୁଦ୍ର କୂଳରେ ଆସି ବିଶ୍ରମ୍ଭାଳାପ କଲାବେଳେ ଜୁଆର ଯୋଗୁଁ ବିପଦରେ ପଡ଼ିପାରନ୍ତି ଏହି ଭୟରେ ବିଚକ୍ଷଣ ଲୋକ ଆଗରୁ କୂଳେ କୂଳେ ଇଲେକ୍‌ଟ୍ରିକ୍ ଲାଇଟ୍ ଖଞ୍ଜି ସମୁଦ୍ର କୂଳକୁ ଆଲୋକିତ କରିଛନ୍ତି । ପ୍ରେମିକ ପ୍ରେମିକାମାନଙ୍କର ଏଇ ଆଲୁଅ ଯୋଗୁଁ ଏ ସ୍ଥାନ ଗୁଡ଼ିକ ଅନ୍ୟତ୍ର ମିଳନ ହେଉଛି । ପୁଣି ଆମ ସହରରେ ନିୟମ ଅଛି ଯେ ରାତି ପହରାବାଲା କୁନି ଉଇଲଙ୍କୁ ପ୍ରତି ଘଣ୍ଟାରେ ଥରେ ସମୁଦ୍ରକୂଳରେ ପହଁରିବା କରିବାକୁ ହେବ । ମୁଁ ପହଞ୍ଚିଲା ବେଳକୁ ସମୁଦ୍ରକୂଳରେ ଜନମାନବ କେହି ନ ଥିଲେ; ବଡ଼ ବିଚିତ୍ର କଥା, କାରଣ ସାଧାରଣତଃ ସବୁ ସମୟରେ କେହି ନା କେହି ମାଛ ମାରିବାକୁ ଆସୁଥାଏ, ବା ମାରୁଥାଏ ବା ମାଛ ମାରିସାରି ଫେରୁଥାଏ । ମୁଁ ଯାଇ ମୋ ଗୁମ୍ଫା ମୁହଁରେ ଲଇଁ ଭିତରକୁ ଗୁହାଁଳ ଓ ଲଇଁ ଲଇଁ ଭିତରକୁ ପଶିଲି । ଭିତରେ ଯାଇ ବସିବାକୁ ଉପକ୍ରମ କରୁଛି ଶୁଣିଲି, କୁନି ଉଇଲଙ୍କ ଗାଡ଼ି ସମୁଦ୍ରକୂଳ ସଡ଼କରେ ଚାଲିଗଲା । ତାଙ୍କ ସଙ୍ଗେ ରାତିର ଏ ବେଳରେ ମୁଲାକାତ୍ ହେବାର ଦୁର୍ଯୋଗରୁ ଯୀଶୁଙ୍କୁ ମିଶାଇ ଦୁଇଥର ରକ୍ଷା ପାଇଲି ।

ଗୁମ୍ଫାର ଗହ୍ୱରରେ ଚକା ପକାଇ ବୁଦ୍ଧଦେବଙ୍କ ପରି ଆଖି ମିଟିମିଟି କରି ବସିବା ଖୁବ୍ ଅସୁବିଧାଜନକ ମନେ ହୋଇପାରେ— ଏପରି ବସିବା ନିର୍ବୋଧର କାମ ବୋଲି କହିପାରି । କିନ୍ତୁ ମୋର ଅସୁବିଧା ହୁଏ ନାହିଁ । ଅଭ୍ୟାସବଶତଃ ଗୁମ୍ଫାର ପଥର ମୋତେ ସହି-ଗଲାଣି, ବା ପଥରକୁ ମୁଁ ସହିଗଲିଣି । ବହୁତ ଥର ବସିବା ଫଳରେ ମୋ ପିଚା ଗୁମ୍ଫାର ପଥର ଚଟାଣ ସଙ୍ଗେ ପରିଚିତ ହୋଇଗଲାଣି । ଆଉ ଯେଉଁ ନିର୍ବୋଧତା କଥା, ତା'କୁ ମୁ ପସନ୍ଦ କରେ ନାହିଁ । ବେଳେ ବେଳେ ନିର୍ବୋଧତାର ଆଶ୍ରୟ ନେଲେ ବେଶ୍ ସୁଖ ଲାଗେ । ବେଳେ ବେଳେ ପିଲାମାନେ କୁଣ୍ଡେଇ ଖେଳ ଖେଳି, କାଠ ବା ପଥର କୁଣ୍ଡେଇ ପରି ନିଶ୍ଚଳ ହୋଇ ବସି ରହନ୍ତି; ଭାରି ମଜା ଲାଗେ, ହସିହସି ଫାଟି ପଡ଼ନ୍ତି । ପୁଣି ମଝିରେ ମଝିରେ ନିର୍ବୋଧତାର ଅଭିନୟ କଲେ ଜଞ୍ଜାଳର ଡୋର ଛିଣ୍ଡି ଯାଏ, ପୁଣି ନୂଆକରି ନିଶ୍ଚିନ୍ତ ଗତି କରିବାକୁ ଅବସର ମିଳେ । ମୁଁ ଯେତେବେଳେ ଖବ ଚିନ୍ତାଗ୍ରସ୍ତ ହୋଇଯାଏ

ସେତେବେଳେ ମୋର ପତ୍ନୀଙ୍କ ଆଗେ ନିର୍ବୋଧତାର ଛଳନା କରେ—ଉଦ୍ଦେଶ୍ୟ, ମୋ ଦୃଷ୍ଟିକୋଣରେ ସେ ସନ୍ତୁଳ ନ ହୁଅନ୍ତୁ । ସେ ମୋର ଏ ଶୂନ୍ୟତା ଏ ଯାଏଁ ଧରି ପାରିନାହାନ୍ତି; ଯଦି ବା ଧରିପାରିବେ ମୋ'ର ଜାଣିବାର ଉପାୟ ନାହିଁ । ମୋ' ମେଘାଙ୍କ ଚରିତ୍ରର ବହୁ ବିଭାଗ ମୋତେ ଅଦ୍ୟାପି ଅଜ୍ଞାତ; ମୋ ବିଷୟରେ ତାଙ୍କ ମନରେ କି ଧାରଣା, ଏହି ଅଜ୍ଞାତ ବିଭାବମାନଙ୍କ ଭିତରୁ ଅନ୍ୟତମ । ମୋ'ର ବିଶ୍ୱାସ, ମୋ'ର ଏ ନିଭୃତ ସ୍ଥାନ କଥା ସେ ଜାଣନ୍ତି ନାହିଁ; ମୁଁ ତ ଯ୍ୱା ବିଷୟ ତାଙ୍କୁ ବା ଆଉ କାହାକୁ କହିନାହିଁ, ସେ ଜାଣିବେ କୁଆଡ଼ୁ ? ଆସ୍ଥାନ ବ୍ୟତୀତ ଏହାର ଅନ୍ୟ କୌଣସି ନାମ ମୋ ମନରେ ନାହିଁ, ଏଠାକୁ ଆସିବା ଓ ବସିବାର ସମୟ ବା ବିଧିବିଧାନ ବି ନାହିଁ । ଏ ସବୁ ନ ଥିଲେ, କୌଣସି ବିଷୟ ବାହାରକୁ ଜଣାପଡ଼ିବ କାହିଁକି ? ବିଭିନ୍ନ ବିଷୟରେ କଳ୍ପନା ଜଳ୍ପନା କରିବାର ସ୍ଥାନ ଯେ । ବାସ୍ତବରେ କେହି କାହା ବିଷୟରେ ବିଶେଷ କିଛି ଜାଣନ୍ତି ନାହିଁ । ଖୁବ୍ ହେଲେ ମଣିଷ ବିଷୟରେ, ଅନ୍ୟମାନେ ତା' ନିଜଠାରେ । ବର୍ତ୍ତମାନ ପବନରୁ ରକ୍ଷା ପାଇ ଏଠାରେ ବସି, ସମୁଦ୍ର କୂଳ ଆଲୁଅରେ ଜୁଆର ଛପି ଛପି ଉପରକୁ ଉଠିବାର ଲକ୍ଷ୍ୟ କରୁ କରୁ ମୁଁ ବିଚାରୁଛି. ଅନ୍ୟ କାହାରି ଏଭଳି ନିଭୃତ ସ୍ଥାନ ଅଛି କି ନାହିଁ ? ଯଦି ନାହିଁ, ରହିବା ଉଚିତ ନା ନୁହେଁ ? ଯାହାଙ୍କର ନାହିଁ ସେମାନେ ଏଭଳି ଗୋଟିଏ ସ୍ଥାନ ପାଇବାକୁ ଖୋଜି ହେଉଛନ୍ତି ନା ନାହିଁ ? ବେଳେ ବେଳେ ମଣିଷଙ୍କ ଆଖିକୁ ଲକ୍ଷ୍ୟ କରି ମୁଁ ଦେଖେ, ସେମାନେ ବିହ୍ୱଳିତ ହୋଇ ଗୋଟିଏ ଶାନ୍ତିପ୍ରଦ ନିଭୃତ ସ୍ଥାନ ଖୋଜୁଛନ୍ତି, ସେଠାରେ ବସି ଚଞ୍ଚଳ ମନକୁ ଶାନ୍ତ କରିବାକୁ । ନିଭୃତ ସ୍ଥାନ ପାଇଲେ ସିନା ମନୁଷ୍ୟ ନିଜର ଐକ୍ୟ ଅନୁଭବ କରି ନିଶ୍ଚିନ୍ତରେ ନିଜ ସମସ୍ୟାର ବିଚାର କରିପାରିବ ! ମୁଁ ଜାଣେ, ଲୋକେ କହନ୍ତି, ମଣିଷ ଜୀବନର ଘାତ ପ୍ରତିଘାତରେ ବିଚଳିତ ହୋଇ ମାତୃଗର୍ଭକୁ ଫେରିବାକୁ ଚାହେଁ ବା ମରଣ ଆଡ଼କୁ ଆଗେଇ ଯିବାକୁ ଚାହେଁ । ମୋ ନିଜ ଜୀବନରେ ଏକଥା ସତ ବୋଲି ଅନୁଭବ କରିନାହିଁ । ମୁଁ ମନେ କରେ, ଏପରି ବିଚାରିବା ଦ୍ୱାରା ସମସ୍ୟାର ସମାଧାନ ହୁଏ ନାହିଁ; ଭୀରୁ ଭାବରେ ଜୀବନର ବାସ୍ତବତାରୁ ପଳେଇଯିବା ଲୋକ ଏପରି ବିଶ୍ୱାସରେ ସ୍ୱସ୍ତି ପାଉଥିବେ ।

ମୁଁ ଏ ସ୍ଥାନରେ ଆସି ପହଞ୍ଚିଲେ, ସମସ୍ୟାକୁ ଏଡ଼ାଇ ନ ଦେଇ ପରିସ୍ଥିତିର କଳନା କରେ । କେହି କେହି ଏ କାର୍ଯ୍ୟକୁ ଉପାସନା ବୋଲି କହି ପାରନ୍ତି—ହୁଏତ ମୋ'ର କଳନା ଓ ଏମାନଙ୍କ ଉପାସନା ଏକ କାର୍ଯ୍ୟର ଦୁଇ ନାମ ହୋଇପାରେ । କଳନା ହେଉ ବା ଉପାସନା ହେଉ, ଏହାକୁ ସସ୍ତର ବା ମସୁଧା ବୋଲି କୁହାଯାଇ ନ ପାରେ । ମୁଁ ଯାହା କରେ ତାକୁ ଶବ୍ଦରେ ଫୁଟାଇବାକୁ ଗଲେ, ଶବ୍ଦଟି ଏଇପରି ହେବ—ଓଦାଲୁଗା ଖଣ୍ଡେ ମୃଦୁ ପବନରେ ଫଡ଼ଫଡ଼ ହୋଇ ଶୁଖୁଥିବ ଓ ତା'ର ଧବଳିମା କ୍ରମେ କ୍ରମେ କମନୀୟ ଭାବେ ଫୁଟି ବଶୁଥିବ । ସେଇ ଓଦାଲୁଗାଟି ମୋ ବକ୍ଷବନ୍ଧ ମନ । ଏଠାରେ ମୋର ମନର ଜଞ୍ଜାଳ ଦୂର ହୋଇ ଯେପରି ସଫା ହୁଏ, ତାହା ମୋତେ ଭଲ ଲଗେ; ଅନ୍ୟକୁ ଏହା ଭଲ କି ମନ୍ଦ ମୁଁ ବସ୍ତୁରନାହିଁ ।

ଆଜି ମୋର କଳନା କରିବାକୁ ବହୁତ ଗୁଡ଼ାଏ ସମସ୍ୟା ଅଛି । ଶିକ୍ଷକଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ପିଲାମାନେ ଯେପରି ସିଟ୍‌ରୁ ଉଠି ପଡ଼ି ହାତ ହଲାନ୍ତି, ଏ ସମସ୍ୟା ସବୁ ସେହିପରି ମନରେ କୁଦି ପଡ଼ି ମୋର ଦୃଷ୍ଟି ଆକର୍ଷଣ କରୁଛନ୍ତି । ସେ ସବୁ ଆଡ଼କୁ ମନ ଦେଲା ବେଳକୁ କାନରେ ବାଜିଲା ଗୋଟିଏ ଜାଲ-ବୋଟ୍‌ର ଇଞ୍ଜିନ୍ ଶବ୍ଦ ଏକ ସିଷ୍ଟନ ବାଲା ଇଞ୍ଜିନ୍, ବୋଧହୁଏ ମାଛୁଆ ଡଙ୍ଗା । ତା' ମାସ୍ତୁଲର ଆଲୁଅ ହ୍ୱିଇଟ୍‌ସାନ୍ ପାହାଡ଼ର ଆର ପାଖକୁ, ଦକ୍ଷିଣକୁ ମୋଡ଼ହେଲା । ବୋଟ୍‌ର ନାଲି ଓ ନେଳି ଆଲୁଅ ନାଲି ଭିତରକୁ ମୁହାଁଇ ପଶିବା ପର୍ଯ୍ୟନ୍ତ ମୁଁ ସବୁ କଳ୍ପନା ଜଳ୍ପନା ମନରୁ ଆଡ଼େଇ ଦେଇ ତା'ର ଆଡ଼କୁ ଚାହିଁ ରହିଥାଏ । ବୋଧହୁଏ ଆମ ଏଇ ସହରର ବୋଟ୍ ନ ଥିଲେ ଏଡ଼େ ସହଜରେ ନାଳର ମୁହଁ ଠଉରାଇଥାନ୍ତା କିପରି ? ନାଳ କୂଳରେ ନଙ୍ଗର ପଡ଼ିଲା ଓ ତା'ଭିତରୁ ଦୁଇଜଣ ହୁଲ-ଡଙ୍ଗାରେ କୂଳକୁ ଆସିଲେ । ଷ୍ଟୋଟ ଷ୍ଟୋଟ ତରଙ୍ଗ ନାଳକୂଳରେ ଆସି ବାଡ଼େଇ ହେଲା; ହୁରୁଡ଼ି ଯାଇଥିବା ଗାଙ୍ଗଚିଲମାନେ ପୁଣି ଆସି ନଙ୍ଗର-ଭେଲାମାନଙ୍କରେ ବସିବାକୁ ଟିକିଏ ବେଳ ଲଗିଲା । ସବୁ ପୁଣି ନିଶ୍ଚଳ ହେବା ପରେ ମୁଁ ମୋ ସମସ୍ୟାମାନଙ୍କର କଳନା କରିବାରେ ଲଗିଲି ।

ପ୍ରଥମ : ପ୍ରଥମ ଚନ୍ଦ୍ରାର ବୟସ୍କ ମୋ ମେଷ୍ଟ । ଅଧରରେ ଦୁର୍ବୋଧ ମୃଦୁହାସ ଉକୁଟାଇ ଏତେବେଳେ ଶୋଇଥିବେ । ମୋର ଆଶା, ନିଦରୁ ଉଠି ସେ ଏତେବେଳେ ମୋତେ ଖୋଜ ହେଉ ନ ଥିବେ । ଯଦିବା ଉଠି ଖୋଜୁଥିବେ, ତେବେ କ'ଣ ସେ କଥା ମୋତେ କହିବେ ? ସେ ବିଷୟରେ ମୋର ଘୋର ସନ୍ଦେହ । ମୋର ସନ୍ଦେହ, ମେଷ୍ଟ ମୋତେ ମନ ଖୋଲି ସବୁ କହନ୍ତି ବୋଲି ଜଣାପଡୁଥିଲେ ବି, ବହୁତ କଥା ଲୁଚାନ୍ତି । ଆଜ ଯେଉଁ ଭାଗ୍ୟଗଣନା ଉବାଦ୍ ଚାଲିଥିଲା ସେକଥା ବିଚାରିବାକୁ ହେବ । ମେଷ୍ଟ କ'ଣ ବାସ୍ତବିକ୍ ତାଙ୍କ ସମ୍ପତ୍ତି ଚାହୁଁଛନ୍ତି, ନା ମୋ ପାଇଁ ? କାହିଁକି କେଜାଣି,ମାଗସ୍ପୁଙ୍ଗ୍ ହ୍ୱାଣ୍ଡ୍ ଭାଗ୍ୟଗଣନା ଆଳରେ ମିଥ୍ୟା-ସମ୍ପତ୍ତିର ଗୋଟାଏ ଛଳନା ଆରମ୍ଭ କରିଛନ୍ତି । ସମ୍ପତ୍ତିର ବାସ୍ତବ ହେଉ ବା ପ୍ରତାରଣାମୂଳକ ହେଉ, ସେଥିରେ ଯାଏ କେତେ ଆସେ କେତେ ? ବାସ୍ତବ ସମ୍ପତ୍ତି ଓ ସମ୍ପତ୍ତିର ମଣ୍ଡଚକା, ବିଚାରିଲେ, ଉଭୟ ସମାନ । ବୋଧହୁଏ ଯାହାକୁ ବାସ୍ତବ ସଂପତ୍ତି ବୋଲି କହୁଥାଇଁ ସେ ବି ସଂପତ୍ତିର ଗୋଟାଏ ଆଭାସମାତ୍ର । ସାଧାରଣ ବୁଦ୍ଧି-ବୃତ୍ତିସଂପନ୍ନ ଯେ କୌଣସି ଲୋକ ସମ୍ପତ୍ତି ଅର୍ଜିପାରିବ, ପ୍ରକୃତରେ ଯଦି ସେଥିପାଇଁ ତା'ର ପୂର୍ଣ୍ଣ ଶ୍ରଦ୍ଧା ଥାଏ । ସମ୍ପତ୍ତି କରିବାକୁ ଯେଉଁମାନେ ଚାହାନ୍ତି ସେମାନଙ୍କ ଭିତରୁ ଅଧିକାଂଶଙ୍କର ସମ୍ପତ୍ତି ପ୍ରତି ପୂର୍ଣ୍ଣ ଶ୍ରଦ୍ଧା ନ ଥାଏ—ତାଙ୍କ ମନ ଥାଏ, ମାଇକିନିଆଙ୍କ ଉପରେ ସୁଖ ସ୍ୱାଚ୍ଛନ୍ଦ୍ୟ ଉପରେ ବା ଖ୍ୟାତିରେ ; ଏଥିଯୋଗୁଁ ଏମାନେ ସମ୍ପତ୍ତି-ଅର୍ଜନ ପଥରୁ ଅବାଟକୁ ଚାଲିଯାନ୍ତି । ମର୍ଗାନ୍ ବା ରକ୍‌ଫେଲର୍‌ଙ୍କ ପରି ଯେଉଁମାନେ ଧନର ଅସଲ ପୂଜାରୀ, ସେମାନେ ଅବାଟକୁ ନ ଯାଇ ସିଧାସଳଖ ଧନ ଅର୍ଜିବାରେ ଲାଗିଥିଲେ । ସେମାନେ ଏକନିଷ୍ଠ ଭାବେ ଧନ ଖୋଜିଥିଲେ ଓ ପାଇଲେ, ପ୍ରଭୂତ ଭାବରେ । ପରେ ସେ ଧନକୁ ସେମାନେ କ'ଣ କଲେ ସେ କଥା ସ୍ୱତନ୍ତ୍ର । ମୁଁ ତ ମନେକରେ ସେମାନେ ଯେଉଁ ଧନଭୂତର ଆବାହନ କଲେ, ପରେ ତା'କୁ କୌଣସି ମତେ ଶାନ୍ତ କରିବାକୁ ସେଇ ଧନ ତା'ରିଠାରେ ନୈବେଦ୍ୟ କଲେ ।

ଦ୍ୱିତୀୟ : ଧନ ହେଲେ, ଘର ସଜେଇବେ ଓ ପିଲାଙ୍କର ଉଚ୍ଚଶିକ୍ଷାର ବ୍ୟବସ୍ଥା ହୋଇ ପାରିବ ବୋଲି ମେଷ୍ଟ କହିଲେ । ଧନ ହେଲେ ସେ ମୁଣ୍ଡଟେକି ଚାଲି ପାରିବେ । ଆଜ ନିଜ ସ୍ୱାମୀଙ୍କ ହେତୁ

ମଳରେ ତାଙ୍କର ମୁଣ୍ଡ ଟିକଏ ତଳକୁ ହୋଇ ଯାଉଛି; ଧନ ହେଲେ ସେଇ ସ୍ୱାମୀଙ୍କପାଇଁ, ଲଜ୍ଜା ସ୍ଥାନରେ ଗର୍ବ, ଅହଂକାରର ଉଦୟ ହେବ । ରାଗରେ ସେ ଏଣ୍ଟପଣଗୁଡ଼ାଏ କହିଗଲେ, କିନ୍ତୁ ଏସବୁ ତାଙ୍କ ମନର ଖାଣ୍ଟି ସତ କଥା । ମୋ' ପ୍ରତି ଅନୁରକ୍ତି ଯୋଗୁଁ ଏତେକାଳ ଲୁଚି ରହିଲା ।

ତୃତୀୟ : ଖାଲି ମେଣ୍ଟ ଟଙ୍କା ଗୃହାନ୍ତି, ନା ମୁଁ ବି ଗୃହେ ? କାଇଁ, ମୋର ତ ଟଙ୍କା ପାଇଁ ଆଗ୍ରହ ଥିଲା ପରି ଲାଗୁନାହିଁ । ମୋ ମନ ଭିତରେ କିଏ ଖାଦ୍ୟସାମଗ୍ରୀ ଦୋକାନର ଗୁମାସ୍ତା ହେବାକୁ ଘୃଣା କରୁଛି । ସେନାରେ ମୁଁ ତ କ୍ୟାପ୍‌ଟେନ୍ ହେଲି; ମୋତେ ଅଫିସର୍ ପାହିଆରେ ଢୁକାଇଲା ମୋର ଆଭିଜାତ୍ୟ ଓ ସାମାଜିକ ସମ୍ପର୍କ । ମୋ ସୁନ୍ଦର ଆଖି ଦେଖି ମୋତେ କେହି ଅଫିସର୍ କରି ନ ଥିଲେ । ସେ ଯାହା ହେଉ, ମୁଁ ଅଫିସର୍ ଭାବରେ ଖ୍ୟାତି ଅର୍ଜିଥିଲି । ମୋ' ମନରେ ଯଦି ସେନାନାୟକ ହେବାର ଆକାଂକ୍ଷା ଥାନ୍ତା, ମୋ'ର କଥାରେ ସୈନ୍ୟମାନେ ମାତି ଉଠିବେ, ମୋ'ର ଇଚ୍ଛା ମୁଁ ତାଙ୍କ ଉପରେ ପ୍ରଭାବ ପକାଇବି—ଏଥିରେ ଯଦି ମୋ'ର ଶ୍ରଦ୍ଧା ଥାନ୍ତା, ତେବେ ମୁଁ ସେନା ଛାଡ଼ି ନ ଥାନ୍ତି; ହୁଏତ ଏତେବେଳକୁ ମୁଁ କର୍ଣ୍ଣେଲ୍ ହୋଇ ଯାଇଥାନ୍ତିଣି । କିନ୍ତୁ ମୋର ସେ ଦିଗରେ ମନ ଟେକିଲା ନାହିଁ; ଛାଡ଼ି ଚାଲି ଆସିବାକୁ ମନ ହେଲା । ଲୋକେ ଯଥାର୍ଥ କହନ୍ତି, ପ୍ରକୃତ ଯୋଦ୍ଧା ଯିଏ ସେ ଗୋଟାଏ ଲଢ଼େଇରେ ଯୋଗ ଦିଏ; ଦୀର୍ଘକାଳବ୍ୟାପୀ ସମରରେ ତା'ର ମନ ଲାଗେ ନାହିଁ—ସେ କାମ ଯୁଦ୍ଧ ନ କରୁଥିବା ଶାସକମାନଙ୍କର ।

ଚତୁର୍ଥ : ମ୍ୟାରୁଲୋ ମୋତେ ବେପାରର ଅସଲ ତତ୍ତ୍ୱ ବୁଝାଇଲେ; ବେପାର ମୂଳ ଲକ୍ଷ୍ୟ ହେଲା ଧନ ଭେଇବା । ଜର୍ଜି ମଧ୍ୟ ଠୋକଠୋକ୍ ଭାବେ ସେଇଆ କହିଥିଲେ । ମିଷ୍ଟର୍ ବେକର୍ ଓ ସେ ପ୍ରଚାରକ ବି କହିଲେ ସେଇ ଏକ କଥା । ସେମାନଙ୍କର ଏଇ ସିଧାସଳଖ କଥା ମୋତେ ପୋଚରା ଅଣ୍ଡା ପରି ଏତେ ଗନ୍ଧେଇଲା କାହିଁକି ? ମୁଁ କ'ଣ ଏତେ ମହତ୍, ଏତେ ଦୟାବନ୍ତ, ଏତେ ନ୍ୟାୟପରାୟଣ ? ଭୁଚ୍ଛା କଥା । ତେବେ କ'ଣ ମୋ'ର ଭାବ ଆତ୍ମ-ସମ୍ମାନ ? ହୁଏତ କେତେକାଂଶରେ ଏଇ ଆତ୍ମ ସମ୍ମାନ କଥା ତା ସତ । ପୁଣି ହୁଏତ ମୁଁ ଭାରି କୁଳୁଉଷୁଖୀ,

ଗୋଲମାଲ ଭିତରେ ପଶିବାକୁ ମୋର ଡର ? କାମରୁ ଓହରିବାର ଗୋଟାଏ ଫିକର ଏଇ ସଡ଼ାପଣିଆ ଆଳସ୍ୟ ବ୍ୟକ୍ତିତ୍ୱ ଆଉ କ'ଣ ? କାଦୁଅରେ ପଶିବ ନାହିଁକି ଗୋଡ଼ ଧୋଇବ ନାହିଁ । କାମ କଲେ ସିନା ଅଡୁଆରେ ପଡ଼ିବ ! ନ କଲେ ନିଶ୍ଚିନ୍ତ । ମୋର ମନୋବୃତ୍ତି ବୋଧହୁଏ ଏଇଆ ।

ସିନ୍ଦୂର ଫାଟିବା ପୂର୍ବରୁ ପ୍ରଭାତର ଆଗମନୀ ଅନୁଭୂତ ହୁଏ । ପବନର ମନ୍ଥରତାରୁ ମୁଁ ପ୍ରଭାତର ସୂଚକ ପାଇଲି । ଗୋଟିଏ ନୂଆ ନକ୍ଷତ୍ର ବା ଗ୍ରହ ଦେଖାଦେଇ ପୂର୍ବ ଆକାଶକୁ ଆଲୋକିତ କଲା । ଏ ଗ୍ରହ ବା ନକ୍ଷତ୍ରର ନାମ ମୋତେ ଜଣା ଥିବାର କଥା, କିନ୍ତୁ ମୁଁ ଜାଣେ ନାହିଁ । ପ୍ରଭାତର ଆଗରୁ ପବନର ଲବଣତା ଟିକିଏ କମିଯାଏ ଓ ତାହାର ଗତି ମନ୍ଥର ହୁଏ । ସେଇଆ ହେଲା । ଏଥର ମୋର ଘରକୁ ଫେରିବାକୁ ତତ୍ପର ହେବାର କଥା । ଏ ଯେଉଁ ପ୍ରଭାତୀ ତାରାଟି ବାହାରିଲା, ତାହା ଏତେ ଡେରିରେ ବାହାରିଛି ଯେ ଦିନ ହେବା ପୂର୍ବରୁ ନିଜ କରାମତି ଦେଖାଇବାକୁ ତା'ର ବେଳ ନାହିଁ କି ବଳ ନାହିଁ । ଲୋକେ ଯଥାର୍ଥ କହନ୍ତି, 'ତାରା ଓ ଗ୍ରହମାନେ ଭାଗ୍ୟ ସୂଚନ୍ତି ମାତ୍ର, ପ୍ରଭାବିତ କରନ୍ତି ନାହିଁ ।' ମୁଁ ଶୁଣିଛି, ଅନେକ ନିପୁଣ ଅର୍ଥବିଶାରଦ ଫାଟକା ବଜାରରେ ଟଙ୍କା ଖଟାଇବା ପୂର୍ବରୁ ଜ୍ୟୋତିଷ ନାହାକଙ୍କ ପରାମର୍ଶ ନିଅନ୍ତି । ଗ୍ରହ ନକ୍ଷତ୍ରମାନେ କ'ଣ ଫାଟକା ବଜାର ତେଜିବାର ସୂଚନା ଦିଅନ୍ତି ନା ବଜାରକୁ ପ୍ରଭାବିତ କରନ୍ତି ? ମୋ'ର ଯେଉଁ ଭାଗ୍ୟର ସଙ୍କେତ ମିଳିଛି ତାହା ସୁଦୂର ନକ୍ଷତ୍ରର ମଙ୍ଗଳମୟ ପ୍ରଭାବରେ ମିଳିଥିଲେ ଟିକିଏ ସାନ୍ତ୍ୱନା ମିଳିଥାନ୍ତା । ମୋ ଭାଗ୍ୟର ସୂଚନା ମିଳିଛି ଜଣେ ବେକାର, ଖଳପ୍ରକୃତି ସ୍ତ୍ରୀଲୋକ ହାତର ତାସ୍ ମୁଠାରୁ । ହୁଏତ ସେ ତାସ୍‌ମୁଠାର ତାସ୍‌ଗୁଡ଼ାକ କୌଶଳ କରି ଆଗରୁ ସଜାଇ ରଖିଥିଲା । ଏଇ ତାସ୍ ପୁଣି ଭାଗ୍ୟର ସୂଚନା ଦିଅନ୍ତି ନା ଭାଗ୍ୟକୁ ପ୍ରଭାବିତ କରନ୍ତି ? ଏତିକି ଜାଣୁଛି, ଏଇ ତାସର ସଙ୍କେତରେ ମୁଁ ଆସି ରାତି ଅଧରେ ମୋର ନିଭୃତ କନ୍ଦରରେ ପଶିଛି ଏବଂ ଯେଉଁ କଥାକୁ ମୁଁ ତୁଚ୍ଛ ବୋଲି ଅବଜ୍ଞା କରେ ତା'ରି ଉପରେ ଏତେଗୁଡ଼ାଏ ଭାବ ହେଉଛି । ଅନ୍ତତଃ ଏତିକି ଯେ କରାଇ ପାରିଲା ତାହା ତାସ୍‌ର କମ୍ ବୁଦ୍ଧିବଳର ପରିଚୟ ନୁହେ । ଅଚ୍ଛା,

ବେପାରରେ ଯେଉଁ ବିଚକ୍ଷଣତା ମୋର ମୂଳରୁ ନାହିଁ, ଏଇ ତାସ୍‌ର ସଂକେତରେ ମୋତେ କ'ଣ ସେ ବିଚକ୍ଷଣତା ମିଳି ପାରିବ ? ଧନ ସଂଚିବାର ଯେଉଁ ପ୍ରବୃତ୍ତି ମୋର ପ୍ରକୃତିବିରୁଦ୍ଧ ତାହା ମୋ' ପ୍ରକୃତିସୁଲଭ ହୋଇ ପାରିବ ? ମୋ'ର ଯାହା ଦରକାର ନାହିଁ, ଏ ତାସ୍‌ର ପ୍ରଭାବରେ ମୋର ସେଥିପ୍ରତି କ'ଣ ଶ୍ରଦ୍ଧା ଜାତ ହେବ ? ସଂସାରରେ ଭକ୍ଷକ ଅଛନ୍ତି ଓ ଭକ୍ଷିତ ଅଛନ୍ତି—ସୃଷ୍ଟି'ର ପ୍ରଥମ କଥା । ମାନ୍ଧ ଦୃଷ୍ଟିରୁ ଭଲ କଏ, ମନ୍ଦ କଏ—ଭକ୍ଷିତ ନା ଭକ୍ଷକ । ଶେଷରେ କିନ୍ତୁ ଭକ୍ଷକ ବି ଭକ୍ଷିତ ହୋଇଯାନ୍ତି—ଭକ୍ଷ୍ୟ ଓ ଭକ୍ଷକ ଭେଦ ଲୋପ ହୋଇଯାଏ—ଉଭୟେ ନିର୍ବିଶେଷରେ ମାଟିରେ ମିଶନ୍ତି । କିନ୍ତୁ ଧନ ପାଇଁ ଯେଉଁମାନେ ମଣିଷ-ମନରେ କ୍ରୂର ଓ ପ୍ରତାରକ ବୋଲି ଭ୍ରାନ୍ତି ଉତ୍ପାଦନ କରିଥାନ୍ତି ସେମାନେ ବି ଶେଷରେ ଅସହାୟ ହୋଇ କାଳକବଳରେ ପଡ଼ନ୍ତି ।

କଙ୍କଡ଼ା ମୁଣ୍ଡିଆ ଉପରେ କୁଆମାନେ କେତେବେଳୁ ରାବିଲେଣି; ତାହା ଶୁଣି ନ ଶୁଣିଲି ପରି ରହିଛି । ମନ ହେଉଛି ମୋ ନିଭୃତ ନିଳ-ୟରେ ବସି ରହି ଏଇଠାରୁ ସୂର୍ଯ୍ୟ ଉଦୟ ଦେଖନ୍ତି ।

ଆଗରେ କହିଛି, ମୋ ନିଭୃତ କନ୍ଦରରେ ପ୍ରବେଶ କରିବା ସଂବଧରେ ବିଧି ବିଧାନ କିଛି ନାହିଁ । ଏକଥା ପୂରା ଠିକ୍ ନୁହେଁ । ବେଳେ ବେଳେ ମୁଁ ଗୋଟାଏ ବିଧି ଅବଲମ୍ବନ କରେ । ପ୍ରତିଥର ଏ କନ୍ଦରରେ ପଶିଲେ ମୁଁ ମୋ'ର ଚିତ୍ତ ବିନୋଦନ ପାଇଁ ପୁରୁଣା ବନ୍ଦରର ରୂପ ଧ୍ୟାନ କରେ—ଡକ୍, ମାଲଖାନା, ମାସ୍ତୁଲ ବଣ ଓ ତା'ତଳେ ବୁଦୁବୁଦିଆ ଲଟା ପରି କୁଡ଼ କୁଡ଼ ପାଲ ଓ ଦଉଡ଼ିକୁ ଧ୍ୟାନରେ ଦେଖେ । ମୋ' ପିତୃପୁରୁଷଙ୍କୁ ବି ଦେଖେ—ତାଙ୍କ ଭିତରେ ଯେଉଁମାନେ ପିଲା ସେମାନେ ପଟଡନରେ ଖେଳୁଥାନ୍ତି, ଯେଉଁମାନେ ଟେଣ୍ଡା ସେମାନେ ମାସ୍ତୁଲ୍ ଉପରକୁ ଉଠିଥାନ୍ତି ଓ ଯେଉଁମାନେ ପୁରୁଖା ସେମାନେ କପ୍ତାନ୍—ପଲଟଣର ଚକ ପାଖରେ ଠିଆ ହୋଇଥାନ୍ତି । ମ୍ୟାଣ୍ଡସନ୍ ଆଭିନ୍ୟୁର ବେପାର ବଣିଜ ସେତେବେଳେ ମନରୁ ଖୁବ୍ ଦୂରରେ ଥାଏ । କୋଉଠୁ ଏତେ ପଇସା କାହିଁକି ଫୋପାଡ଼ି ଦେଲି ବୋଲି ଖୁଣିବାକୁ ସେତେବେଳେ ସାହସ କାହାର ? ସେତେବେଳେ ମଣିଷର ଇଚ୍ଛାରୁ ଥିଲା । ଶାନ୍ତିରେ ନିଃଶ୍ୱାସ ମାରିବାକୁ ଅବସର ଥିଲା ।

ସେସ୍ତ ମୋ ବାପାଙ୍କ କଥା, ବୋକା ବୋଲି ଯାହାଙ୍କୁ ଚିହ୍ନାଇଛି । ବୃଦ୍ଧ କପ୍ତାନ୍, ମୋ'ର ଜେଜେବାପା କିନ୍ତୁ ଏତେ ଭାବପ୍ରବଣ ନ ହୋଇ ଭାଗବଣ୍ଟାବଣ୍ଟିରେ କଳିତକରାଳ ଲାଗିବା କଥା କହନ୍ତି ; ଜନସପତ୍ରର ହିସାବରେ ମାରପେଞ୍ଚ ହୁଏ ; ଜାହାଜର ବାହାର ଓ ଭିତର ପଟାରୁ ଖଣ୍ଡେ ଅଧେ କିଏ ମାରିନେବାରୁ ଗାଳିଫଜିତ୍ ହୁଏ ; ଗାଳିଫଜିତ୍ରୁ ମାଲି ମକଦ୍ଦମାଯାଏଁ ବି କଥା ଉଠେ । ଖାଲି ସେତିକି ନୁହେଁ । ମାଇକିନିଆଙ୍କ ପାଇଁ, ଯଶ ପାଇଁ ଓ କିଏ କେତେ ବିପଦର ସମ୍ମୁଖୀନ ହୋଇଥିଲା, ସେ ବିଷୟରେ ହାତାହାତି ହେଉ ହେଉ ହତ୍ୟା ବି ହୁଏ । ଟଙ୍କା ପଇସା ପାଇଁ ବାଡ଼ିଆବାଡ଼େଇ ହାଣମାରି ବି ଯେ ନ ହେଉଥିଲା ତା'ନୁହେଁ । ଜେଜେବାପାଙ୍କଠାରୁ ଏ ସବୁ ଶୁଣିଛି । ଏ ସବୁ ବର୍ଣ୍ଣନା କରି ସେ ଶେଷରେ କହିଥିଲେ, ଭାଗରେ ଗୋଟିଏ ଖେପ ଜଳଯାତ୍ରା କରି ଫେରି ଆରଥର ବାହାରିଲାବେଳକୁ ଭାଗୁଆଳିଙ୍କ ଭିତରେ ମେଳ ଫାଟି ଯାଇଥାଏ । କ୍ୱଚିତ୍ ଦୁଇଭାଗୁଆଳି ମେଳ ରଖି ଖେପକୁ ଦି'ଖେପ ଜଳଯାତ୍ରା କରୁଥିଲେ । ଭାଗୁଆଳିଙ୍କର ମେଳ ଭାଙ୍ଗିଲାପରେ ଭୟାନକ କଳିତକରାଳ ଲାଗି ରହୁଥିଲା ; କଳିର କାରଣ ପାସୋରିଗଲା ପରେ ବି କଳିର ଅନ୍ତ ହେଉ ନ ଥିଲା ।

କ୍ୟାପ୍ଟାନ୍ ହ'ଲିଙ୍କ ନିଜ ଜୀବନରେ ଏପରି ଗୋଟାଏ ତିକ୍ତତା ଅନୁଭୂତ ହୋଇଥିଲା, ଯାହା କି ସେ ମଲାଯାଏଁ ପାସୋରି ପାରି ନ ଥିଲେ; ତାଙ୍କ ଭାଗୁଆଳି ଏପରି ଗୋଟାଏ ଅପରାଧ କରିଥିଲେ ଯାହାକୁ ବୃଦ୍ଧ କପ୍ତାନ୍ କ୍ଷମା ଦେଇପାରିଲେ ନାହିଁ । ପୁରୁଣାବନ୍ଦର ତଡ଼ରେ ବସି ବା ଠିଆ ହୋଇ ଏ ଘଟଣା ସେ ମୋତେ ବହୁବାର କହିଛନ୍ତି । ବନ୍ଦର ତଡ଼ରେ ସେ ଓ ମୁଁ ବହୁତ ସମୟ କଟାଉଥିଲୁଁ । ମୋ'ର ମନେ ଅଛି, ଡିମିଶିଂଘ ହାତବାଡ଼ି ବଢ଼ାଇ ସେ ମୋତେ କହନ୍ତି :—

"ହେଇଟି, ହ୍ୱିଟ୍ସାନ୍ ପାହାଡ଼ର ତୃଷ୍ଣପୂ ନାସିକୁ ଚାହାଁ । ଦେଖିଲୁ ? ଜୁଆର୍ ବେଳେ ପଟି ପଏଣ୍ଟ୍‌ର ଯେଉଁ ଶିଖ ଦିଶୁଛି ସେ ପର୍ଯ୍ୟନ୍ତ ଏଇ ତୃଷ୍ଣାପୂ ନାସିରୁ ଗୋଟାଏ ଗାର ଟାଣେ । ଟାଣିଲୁ ? ହ୍ୱଇଟ୍ସନ୍ ପାହାଡ଼ ନାସିରୁ ସେଇ ଗାର ସିଧା, ଅଧ ଦଉଡ଼ିଏ (ଯେଉଁ ଦଉଡ଼ିରେ

ବନ୍ଦାବୋଇ ଜାହାଜ ନଙ୍ଗର ହୁଏ ) ବାଟରେ ଜାହାଜଟା ବୁଡ଼ୁଛି, ପୂରା ଜାହାଜ ନୁହେଁ ସେ ତା' ପାଣି-ତଳସଟା ।"

"ବେଲ୍—ଏଡ଼ାପ୍ଟାର୍ ଜାହାଜର ?"

"ହଁ । ବେଲ୍ ଏଡ଼ାପ୍ଟାର୍ ଜାହାଜର !"

"ଆମ ଜାହାଜ !"

"ହଁ, ପୂରା ଆମର ନୁହେଁ; ସେଥିରେ ଆମର ଥିଲା ଅଧାଭାଗ । ଦୁଇଜଣ ଭାଗରେ କରାଇଥିଲୁ । ନଙ୍ଗର ପଡ଼ିଥିଲାବେଳେ ତାହା ପୋଡ଼ିଗଲା, ପାଣି ଗାରପର୍ଯ୍ୟନ୍ତ । ଅକସ୍ମାତ୍ ପୋଡ଼ିଗଲା ବୋଲି ମୁଁ ଆଦୌ ବିଶ୍ୱାସ କରି ପାରିନାହିଁ ।"

"ତେବେ କ'ଣ, ଆଜ୍ଞା, କିଏ ନିଆଁ ଲଗେଇଦେଲା ବୋଲି ଆପଣଙ୍କର ବିଶ୍ୱାସ ?"

"ହଁ, ହଁ, ସେଇଆ ହେଲା ।"

"କିନ୍ତୁ ଆପଣଙ୍କ ପକ୍ଷରେ ତ ଏ କାମ କରିବା ସମ୍ଭବ ନୁହେଁ ?"

"ନା, ମୁଁ ପାରନ୍ତି ନାହିଁ ।"

"ତେବେ କିଏ ପୋଡ଼ିଲା ?"

"ସେ କଥା ମୁଁ ଜାଣେ ନାହିଁ ।"

"ପୋଡ଼ିଲା କାହିଁକି ?"

"ଇନ୍‌ସ୍ୟୁରାନ୍‌ସ୍ ଟଙ୍କା ପାଇବାକୁ ।"

"ତେବେ କ୍ଷତି କିଛି ହୋଇନାହିଁ ?"

"ନା, କ୍ଷତି ହୋଇନାହିଁ ।"

"ତେବେ ମନରେ ଗୋଟାଏ ଦାଗ ରହିଗଲା ?"

"ହଁ, ଜଣକ ଉପରେ ସନ୍ଦେହ ରହିଗଲା—ସେଇଜଣକ ଉପରେ । ସେଇ ଜଣକଠାରୁ ମନ ଛାଡ଼ିଗଲା । ଆଉ କାହାରି ଉପରେ ବିଶ୍ୱାସ କରିବାକୁ ହିମ୍ମତ ହେଉନାହିଁ ।"

ବାପାଙ୍କଠାରୁ ଶୁଣିଛି, ସେଇ ଦିନଠାରୁ ସେ କପ୍ତାନ୍ ବେକର୍‌ଙ୍କ ସଙ୍ଗେ କଥାବାର୍ତ୍ତା ହେଲେ ନାହିଁ । ଶତ୍ରୁତା କିନ୍ତୁ କପ୍ତାନ୍ ବେକର୍‌ଙ୍କ ପୁଅ ବ୍ୟାଙ୍କରୁ ବେକରଙ୍କ ପ୍ରତି ପ୍ରସରି ନ ଥିଲା । ବୃଦ୍ଧ କପ୍ତାନ୍ ହ'ଲଙ୍କ ପକ୍ଷରେ ଜାହାଜ ପୋଡ଼ିବା ଯେପରି ଅସମ୍ଭବ, ବାପର ଦୋଷ ପାଇଁ ପୁଅକୁ ଦୋଷିବା ସେହିପରି ଅସମ୍ଭବ ।

ବାପ୍‌ରେ ! ଏଇସବୁ ଘବୁ ଘବୁ କେତେ ଉଚ୍ଚରେ ହୋଇଗଲଣି । ତୁରନ୍ତ ଘରେ ଯାଇ ପହଞ୍ଚିବା ଦରକାର । ସାଙ୍ଗେ ସାଙ୍ଗେ ବାହାରିଲି, ଧାଇଁଲି ବୋଲି କହିଲେ ଠିକ୍ ହେବ । ଏକାଗ୍ର ଭାବରେ ଯାଇ ହାଇଷ୍ଟ୍ରୀଟ୍ ଧଇଲି । ସେତେବେଳେ ଯାଏଁ ଅନ୍ଧାର ଥାଏ, କେବଳ ସମୁଦ୍ର ଉପରେ ଆଲୁଅର ଗୋଟାଏ କ୍ଷୀଣ ରେଖା ଦେଖା ଯାଉଥାଏ ; ସେଇ ଆଲୁଅରେ ତରଙ୍ଗ ଗୁଡ଼ାକ ପିଟା ଲୁହା ପରି ଧୂସର ଦିଶୁଥାନ୍ତି । ମୁଁ ଯୁଦ୍ଧ ସମର-ସ୍ମୃତି-ସ୍ତମ୍ଭଠାରେ ବଙ୍କେଇ ପୋଷ୍ଟ ଅଫିସ୍ ପାର ହେଉଛି, ଦେଖିଲି, ଗୋଟାଏ ଦୁଆର ଆଗରେ ଡାନି ଟେଲର୍ ଠିଆ ହୋଇଛି । ଏଇ ଅବସ୍ଥାରେ ତା'କୁ କେଉଁଠି ଠାଏ ଦେଖିବି ବୋଲି ଆଗରୁ ଅନୁମାନ କରିଥିଲି । ହାତ ଯୋଡ଼ିକ କୋଟ୍‌ର ଦୁଇ ପକେଟରେ ପୂରାଇ ଥାଏ ; ଧଡଡ଼ା କୋଟ୍‌ର କଲର୍ ଉପରକୁ ଟେକି ଦେଇଥାଏ ଓ ତା' ପୁରୁଣା ଟୋପିର କାନ ଦୁଇଟା ନିଜ କାନ ଉପରକୁ ଟାଣି ଦେଇଥାଏ ; ବେମାରି ଓ କାକରରେ ତା ମୁହଁ କେମିତି ନେଳି ପଡ଼ି ଯାଇଥାଏ ।

ମୋତେ ଦେଖିବାମାତ୍ରେ ସେ ଆରମ୍ଭ କଲା, "ଏଥି, ଏତେ ହଇରାଣ କରୁଛି, କ୍ଷମା କରିବୁ । ମୋର ମାଲ ପାଣି ଟିକେ ନିତାନ୍ତ ଦରକାର । ଜାଣୁ ତ, ନିତାନ୍ତ ବାଧ୍ୟ ନ ହୋଇଥିଲେ ତେତେ ମାଗନ୍ତି ନାହିଁ ।"

"ହଁ, ଜାଣେ—ମାନେ, ସେ କଥା ମୁଁ କଣ୍ଟ ଜାଣେ ନାହିଁ । କିନ୍ତୁ ତୋ' ଠାରେ ମୋର ପୂରା ବିଶ୍ୱାସ ।" ଏତକ କହି ତାକୁ ମୁଁ ପାଞ୍ଚ ଟଙ୍କିଆ ନୋଟ୍ ଖଣ୍ଡେ ବଢ଼ାଇ ଦେଇ କହିଲି, "ଏତିକରେ ହେବ ତ ?"

କାନ୍ଦ ମାଡ଼ିଲା ବେଳେ ପିଲାଙ୍କ ଓଠ ଯେପରି ଥରେ ତା' ଓଠ ଦୁଇଟି ସେହିପରି ଥରୁଥାଏ । ଟଙ୍କା ଧରି ସେ କହିଲା, "ତୋତେ ଧନ୍ୟବାଦ, ଏଥି । ହଁ ଏଥିରେ ମୁଁ ଆଜି ଦିନ ତମାମ, ହୁଏତ ରାତିଟା ବି କଟାଇ ନେବି ।" ଦିନ ଓ ରାତି ପାଇଁ ବ୍ୟବସ୍ଥା ହୋଇଗଲା—ଏଇ ଆନନ୍ଦରେ ତା'ର ଚେହେରା ବଦଳିଗଲା ।

ମୁଁ କହିଲି, "ଡାନି, ତୋତେ ଏ ଅଭ୍ୟାସ ଛାଡ଼ିବାକୁ ହେବ । ମୁଁ କ'ଣ ପାସୋରି ଦେଲିଣି ବୋଲି ଭାବୁଛ ? ଡାନି, ତୁ ଥିଲୁ ମୋର ଭାଇ; ଆଜି ବି ମୁଁ ତୋତେ ମୋ ଭାଇ ବୋଲି ଭାବୁଛି । ତୋତେ

ସାହାଯ୍ୟ କରିବାକୁ ଏ ସଂସାରରେ ଯାହା କରିବା ସମ୍ଭବ, ତା' କରିବାକୁ ମୁଁ ତିଆର ଅଛି ।"

ତା' ଶ୍ୱେତଗଡ଼ା ଗାଲ ଦୁଇଟି ଈଷତ୍ ଲାଲ ହୋଇଗଲା । ହାତର ନୋଟ୍‌କୁ ସେ ଟିକଏ ଚାହିଁଲା । ମନେ ହେଉଥାଏ, ଶ୍ୱେତରୁ ତା'ର ମୁହେଁ ମାଲପାଣି ହୋଇ ଯାଇଛି । ତା'ପରେ ମୋ ଆଡ଼କୁ ସେ ନିର୍ମମ ଦୃଷ୍ଟିରେ ଚାହିଁ କହିଲା :—

"ପ୍ରଥମ କଥା, ମୁଁ ଯେ ମାଲପାଣି ଖାଉଛି ସେ ବିଷୟରେ ଅନ୍ୟ କାହାରି ମୁଣ୍ଡ ବଥେଇବା ନିଷ୍ପ୍ରୟୋଜନ । ଦ୍ୱିତୀୟତଃ, ତୁ ମୋତେ ତିଆରିବାକୁ କିଏ ? ଏଥି ! ମୁଁ ଯେମିତି ଅନ୍ଧ ତୁ ସେଇମିତି ଅନ୍ଧ—ଫରକ ଏତିକି, ତୁ ଗୋଟେ କିସମର ଅନ୍ଧ ଓ ମୁଁ ଆଉ ଗୋଟେ କିସମ୍‌ର ।"

"ଡାକ୍ତର, ମୋ କଥା ଟିକଏ ଶୁଣୁ ଭଲା !"

"କାହିଁକି ? ତୋ' କଥା ଶୁଣିବା କି ଦରକାର ? ତୋ'ଠାରୁ ତ ମୋର ଅବସ୍ଥା ଭଲ । ମୋ'ର ତ ଯାହା କିଛି ଅଛି; ତୋ'ର ଭଲା କ'ଣ ଅଛି ? ମନେ ଅଛି ନା, ମଫସଲ୍‌ରେ ଆମର ଯେଉଁ ଜମି ଅଛି ?"

"ହଁ, ଯାହା ଉପରେ ଥିବା ଘର ପୋଡ଼ିଗଲା ଟି ? ସେଇ ଘରର ମେଣ୍ଟାଆଉଲ ଗୁମ୍ଫିରେ ବସି ଆମେ ଖେଳୁଥିଲେ !"

"ବେଶ୍ ତ ମନେ ରଖିଛୁ । ସେ ଜମିଟା ଅଦ୍ୟାପି ମୋ'ରି ଅଛି ।"

"ଡାକ୍ତର ! ସେ ଜାଗାଟା ବିକି ଦେଇ ପୁଣି ଥରେ ନୂଆ କରି ଜୀବନ ଆରମ୍ଭ କରନ୍ତୁ ବୋଇଲେ, କେଡ଼େ ଭଲ ହୁଅନ୍ତା !"

"ନା, ବିକିବା କଥା ପଡିବ ନାହିଁ । ପଞ୍ଚାୟତସଭା ପ୍ରତି ବର୍ଷ ଟିକସ୍ ବାବଦ୍‌କୁ ସେଥିରୁ ଟିକଏ ଟିକଏ ନେଉଛି । ତା' ବାଦ୍, ତା' ସାମନା ପଡ଼ିଆଟା ଅଦ୍ୟାପି ମୋର ଅକ୍ଷୁର୍ଣ୍ଣ ରହିଛି ।"

"ସେ ଖଣ୍ଡ ତ ବିକି ଦେଲେ ହୁଅନ୍ତା ।"

"ମୁଁ, ମୁଁ ବୋଲି ବିକିବି ନାହିଁ । ମୋ' ନା ଡାକ୍ତର ଏଲ୍ ଟେଲର୍, ଜାଣୁ ତ ? ଏ ଖଣ୍ଡ ମୋ' ହାତରେ ଥିବା ଯାଏଁ, କୋଉ ଶଳା ତା'କୁ ନେଇ, ଯା' କରିବ ତା' କରିବ ବୋଲି କହି ପାରିବ ନାହିଁ; କୋଉ ବଦ୍‌ମାସ୍ ମୋ'ର ମଙ୍ଗଳ କରିବ ବୋଲି କହି, ମୋତେ ଜେଲ୍ ଠେଲି ପାରିବ ନାହିଁ । ବୁଝିଲୁ, ବୁଝିଲୁ ?"

"ଶୁଣ୍, ଡାକ୍ତ !—"

"କିଛି ଶୁଣିବା ଦରକାର ନାହିଁ । ବୋଧହୁଏ ଭାବୁଛୁ, କୋଟ୍ ଖଣ୍ଡେ ଦେଇଛୁ ବୋଲି ମୋତେ ହିତୋପଦେଶ ଶୁଣାଇବାର ଅଧିକାରଟା ପାଇଗଲୁ ? ନେ, ତୋ' ଟଙ୍କା; ଫେରାଇ ନେ ।"

"ନାଇଁ, ତୁ ରଖ ।"

"ହଁ, ରଖୁଛି । ତୁ ଯାହା କହୁଛୁ, ତା'ର ଅର୍ଥ ତଳେ ମାତ୍ର ବୁଝିପାରୁ ନାହୁଁ । ଯେଉଁ କଥା ନ ଜାଣୁ ସେ ବିଷୟରେ କହୁ କାହିଁକି ? ମାତାଲଗିରି କେବେ କରିଛୁ ? ଜାଣିବୁ କୁଆଡ଼ୁ ? ଘୁଷୁରି ମାଂସ ପ୍ୟାକେଟ୍ କିପରି ବାନ୍ଧିବାକୁ ହେବ ସେ ବିଷୟରେ ତୋତେ ମୁଁ କେବେ ବତାଉଛି ଭଲା ? ସେ ତୋ କାମ, ତୁ ଜାଣୁ । ଏବେ ତୁ' ଯାଉ ତୋ ରାସ୍ତାରେ ଯିବୁ, ମୁଁ ଯାଇ ମଦ ଦୋକାନର ଝରକାରେ ଠୁକୁ ଠୁକୁ କରି ମାଲପାଣି ସଂଗ୍ରହ କରିବି । ହଁ, ଗୋଟିଏ କଥା କେଉଁଦି ପାସୋରିବୁ ନାହିଁ—ମୋ ଅବସ୍ଥା ତୋ'ଠାରୁ ଢେର ଭଲ । ମୁଁ ଗୁମାସ୍ତାଗିରି କରୁନାହିଁ । ଜାଣିଲୁ ?" ଏତିକି କହି ସେ ବୁଲି ପଡ଼ିଲା ଓ ବନ୍ଦ ହୋଇଥିବା ଦୁଆରର ଦୁଆରବନ୍ଧ ସନ୍ଧିରେ ମୁହଁ ଲୁଚାଇ ଦେଲା—ଆଖି ବୁଜିଇ ଦେଇ ପିଲେ ବାହାରର ଅସ୍ତିତ୍ୱ ନାହିଁ ବୋଲି ବିଚାରିଲା ପରି ସେ ମୋର ଅସ୍ତିତ୍ୱକୁ ଅସ୍ୱୀକାର କରିଦେଲା । ମୁଁ ହାର ମାନି ବାହାରି ଯିବା ଯାଏଁ ସେ ସେହିପରି ମୁହଁ ଗୁଞ୍ଜି ରହିଲା ।

କୁନି ଡଇଲି ହୋଟେଲ୍ ସାମନାରେ ଗାଡ଼ି ରଖି ଚୁଲାଉଥିଲେ । ମୋ'ର ପାଦ ଶବ୍ଦ ଶୁଣି ସେ ଉଠିପଡ଼ିଲେ ଓ ତାଙ୍କ ରେଭ୍ରୋଲେଟ୍ ଗାଡ଼ିର ଦୁଆର କାଚ ଖସାଇ କହିଲେ,

"ସୁପ୍ରଭାତ, ଏଥାନ୍ ! କ'ଣ ଘରୁ ଭୋର୍ ଭୋର୍ ବାହାରି ପଡ଼ିଛ, ନା ଘରକୁ ରାତିରେ ଯାଉ ଯାଉ ଡେରି ହୋଇ ଯାଇଚ ?"

"ଉଭୟ ।"

"ବୋଧହୁଏ ଭଲ ମାଲଟାଏ ହାବୁଡ଼େ ପଡ଼ିଗଲା ?"

"ହଁ, ଡଇଲି ! ବଢ଼ିଆ ମାଲ । ଗୋଟାଏ ଅପ୍‌ସରା !"

"ନା, ନା, ଏଥ୍ ! ତୁମେ କୌଣସି ଚରିତ୍ରହୀ ସଙ୍ଗେ ସମ୍ପର୍କ ରଖିବ ବୋଲି ମୁଁ ବିଶ୍ୱାସ କରି ପାରିବ ନାହିଁ ।"

"ମୁଁ ଶପଥ କରୁଛି, ସତ।"

"ତଥାପି ବିଶ୍ୱାସ କରିବି ନାହିଁ। ମୁଁ ନିଶ୍ଚୟ କରି କହିପାରେ, ତୁମେ ମାଛ ମାରିବାକୁ ଯାଇଥିଲ। ମିସେସ୍ କେମିତି ଅଛନ୍ତି ?"

"ଶୋଇଛନ୍ତି।"

"ଆଚ୍ଛା, ଯାଅ, ଯାଅ। ମୁଁ ହେଉଛି ଏଇ ଘଡ଼ିଏରେ ସମୁଦ୍ର-କୂଳକୁ ଯାଉଛି ଯେ।"

ମୁଁ ଚାଲିଲି। ସେ ଯେ ଘଣ୍ଟାକ ଆଗରୁ ସମୁଦ୍ରକୂଳକୁ ଯାଇଥିବାର ମୁଁ ଦେଖିଛି, ସେ କଥା ତାଙ୍କୁ କହିଲି ନାହିଁ।

ମୁଁ ଆସ୍ତେ ଆସ୍ତେ ବାଡ଼ଆଡ଼ ବାଟେ ଘର ଭିତରେ ପଶି ବୋଷେଇ-ଘରର ଆଲୁଅ ଟିପିଦେଲି। ମୋ'ଶଠି ଖଣ୍ଡ ଟେବୁଲ୍ ମଝିରେ ଠିକଏ ବାଁକୁ ରହିଥିବାର ଲକ୍ଷ୍ୟକଲି। ମୋର ପରିଷ୍କାର ମନେ ଥାଏ, ମୁଁ ତାହା ଟେବୁଲ୍‌ର ଠିକ୍ ମଝିରେ ରଖି ଯାଇଥିଲି।

ମୁଁ ଷ୍ଟୋଭ୍ ଉପରେ କଫି ପାଇଁ ପାଣି ଓ ଦୁଧ ବସାଇ ତାହା ଫୁଟିବାକୁ ଅପେକ୍ଷା କରି ବସିଲି। ଦୁଧପାଣି ଉତ୍ତୁରି ଉଠିଲା ବେଳକୁ ମେଗ୍ସ ଆସି ପହଞ୍ଚିଲେ। ମୋ' ପ୍ରିୟତମା ନିଦରୁ ଉଠିଲା ବେଳେ ଛୋଟ ଝିଅଟି ପରି ଦିଶନ୍ତି। ସେ ଯେ ଦୁଇଟା ବଡ଼ ବଡ଼ ପିଲାଙ୍କର ମା', ତାଙ୍କୁ ଦେଖି ତୁମେ କେବେଁ ଠଉରାଇ ପାରିବ ନାହିଁ। ତାଙ୍କ ଦେହରୁ ଗୋଟିଏ ସୁଗନ୍ଧ ବାହାରୁଥାଏ—ସଦ୍ୟ କଟା ହୋଇଥିବା ଘାସର ଗନ୍ଧ ; ମୋ ଜାଣିବାରେ ସବୁଠାରୁ ଅଧିକ ଆମୋଦ ଓ ଆହ୍ଲାଦଦାୟକ ଏଇ ଗନ୍ଧ।

"ତୁମେ ଏଡ଼େ ଭୋରରୁ ଏଠାରେ ବସି କ'ଣ କରୁଛ ?"

"ହଁ, ତୁମର ପଚାରିବାର କଥା। ଏକଥା ସାଦର ଅବଧାନ ହେଉ ଯେ, ଆଜ ପ୍ରାୟ ରାତିତମାମ ମୁଁ ଉନ୍ନିଦ୍ର ଅଛି। ଦୁଆରପାଖେ ମୋ ରବର ଜୋତା ଥୁଆ ହୋଇଛି, ଯାଅ ଦେଖିବ। ସେଥିରେ ହାତ ମାରି, କେଡ଼େ ଓଦା ହୋଇଚ।"

"କେଉଁଠିକି ଯାଇଥିଲ ଯେ ?"

"ସମୁଦ୍ର କୂଳରେ, ସମୁଦ୍ରର ଭିତର ଆଡ଼କୁ ମୋର ଗୋଟିଏ ଛୋଟ ଗୁମ୍ଫା ଅଛି, ଗୋ ଲେଟଣିପାରି ! ମୁଁ ତା'ର ଭିତରେ ପଶି ଅନ୍ଧାର ରାତିକୁ ଉପଭୋଗ କରୁଥିଲି।"

"ହେଉ, ଥାଉ, ଥାଉ ।"

"ପୁଣି ଦେଖିଲି, ସମୁଦ୍ର ଭିତରୁ ଗୋଟାଏ ତାରା ବାହାରି ଆସୁଛି । ସେ ବେଓ୍ୱାରିସ୍ ସମ୍ପତ୍ତି ଥିବାରୁ ମୁଁ ତାକୁ ଦଖଲ କରିନେଲି । ତା'କୁ ପୋଷ ମନେଇ, ଆଉ ଟିକିଏ ଗଣ୍ଡିକରିବ ବୋଲି ଚରିବାକୁ ଛାଡ଼ି ଦେଇଛି ।"

"କାବେରୀ ପରି ଏମିତି ଗୁଡ଼ାଏ କାହିଁକି କହୁଛ ? ମୁଁ ବିଗୁରୁଛି, ତୁମେ ଏଇଲାଗେ ଶେଯରୁ ଉଠି, ଆସିଲ । ତୁମେ ଆସିବାରେ ମୋ ନିଦ ଭାଙ୍ଗିଗଲା ।"

"ମୋ' କଥାରେ ଯଦି ଅବିଶ୍ୱାସ ହେବେ ଯାଅ, ଉଇଲିଙ୍କୁ ପଚ୍ଛରିବ; ତାଙ୍କ ସାଙ୍ଗେ କଥାବାର୍ତ୍ତା କରିଛି । ଆଉ ଶୁଣ, ତାଙ୍କୁ ପଚ୍ଛ-ରିବ; ତାଙ୍କୁ ପାଞ୍ଚଟଂକିଆ ନୋଟ୍‌ଟାଏ ଦେଇଛି ।"

"ତାଙ୍କୁ ଟଂକା ଦେବା ଠିକ୍ ହେଲା ନାହିଁ; ଆହୁରି ମାତାଲ ହେବେ ।"

"ତା' ସତ । ସେଇଥିପାଇଁ ତ ସେ ମୋତେ ଟଂକା ମାଗିଲା । ଆଚ୍ଛା ଆମ ସୌଭାଗ୍ୟ-ନକ୍ଷତ୍ର ରହିବ କେଉଁଠି କହ, ମଲ୍ଲି କଡ଼ି ?"

"ଥାଉ ସେ କଥା । କଫି ବାସ୍‌ନାଟା ଭଲ ଲାଗୁଛି ନା ? ସୁଖର କଥା, ତୁମେ ପୁଣି କାବେରୀ ପରି ହେଲଣି । ତୁମେ ମନ ମାରିଦେଲେ, ମତେ ଭାରି ଖରାପ ଲାଗେ । କାଲିର ସେ ଭାଗ୍ୟଗଣନା ସମ୍ପର୍କରେ ଯେଉଁ କଥାବାର୍ତ୍ତା ହେଲେ ସେଥିପାଇଁ ମୁଁ ବହୁତ ଅନୁତାପ କଲିଣି । ମୁଁ ସୁଖରେ ନାହିଁ ବୋଲି ତୁମର ଯେଉଁ ଧାରଣା ହେଲା ତାହା ତୁଚ୍ଛା ମିଛ ।"

"ସେ ବିଷୟରେ ଏତେ ଚିନ୍ତା କାହିଁକି ? ତାସରୁ ତ ବାହାରିଛି, ଆମର ଧନ ହେବ । ମୋର ସେଥିରେ ପୂରା ବିଶ୍ୱାସ ହୋଇଛି ।"

"ଏଁ ?"

"ଥଟ୍ଟା କରୁନାହିଁ । ମୁଁ ଅନୁଭବ କରୁଛି ଯେ, ମୁଁ ନିଶ୍ଚେ ସମ୍ପତ୍ତି କରିବ ।"

"କେଜାଣି, ବାବୁ ? ତୁମେ କେତେବେଳେ କ'ଣ ଯେ ବିଗୁରୁ, ମୁଁ କେବେ ତା'ର ଥଳକୂଳ ପାଏନାହିଁ ।"

"ସତ କହିଲେ ତ ସେଇ ଅଡୁଆ; ସତ କଥାକୁ ତୁମେ କେବେହେଲେ ବିଶ୍ୱାସ କର ପାରନାହିଁ । ଥାଉ ସେ କଥା । ଖ୍ରୀଷ୍ଟଙ୍କର ପୁନରାବିର୍ଭାବର ଆଜ ପୂର୍ବଦିନ । ଆବାହନୀ ଉତ୍ସବର ମଙ୍ଗଳକୃତ୍ୟ ପାଳିବାକୁ ଉପରକୁ ଯାଇ ପିଲ ବ'ଠାଙ୍କୁ ଗୁଡ଼ାଏ କୁଟିବ କ ? ମୁଁ ଜବାବ୍ ଦେଉଛି ଯେ ତାଙ୍କ ହାଡ଼ଗୋଡ଼ ଭାଙ୍ଗିବ ନାହିଁ ।"

ମେଘ କହିଲେ, "ମୁଁ ମୁହଁ ବି ଧୋଇ ନାହିଁ । ରାତିରେ ସେମିତି ଘରେ କିଏ ସେ ପଶି ଝୁଣ୍ଡଖାଣ୍ଡ କଲା ପରି ଲାଗୁଥିଲା । କିଏ କେଜାଣି ?"

ମେଘ ଗାଧୁଆ ଘରକୁ ଯାଆନ୍ତେ ମୁଁ ଖ୍ୟାଉରୁ ମୋ ଚିଠି ଖଣ୍ଡେ କାଢ଼ି ପକେଟ୍‌ରେ ପୂରାଇଲି । ମେଘ ଆସି ମୋ ଚିଠି ଦେଖିଥିଲେ କି ନାହିଁ ଏତେ କଥା ପରେ ବି ଜାଣିପାରିଲି ନାହିଁ । ବିଚିତ୍ର ମଣିଷର ମନ ! ଜଣକ ମନର ସୀମା ମାଡ଼ିବା ବି ଆଉ ଜଣକ ପକ୍ଷରେ କେଡ଼େ ଅସମ୍ଭବ ? ମେଘ ! ଗାଧୁଆ ଘରେ ପଶି କ'ଣ ବସିରୁଛ ? ଶୁଣୁଛ ? ତୁମେ କିଏ ନାରୀ ?

—o—

# ଚତୁର୍ଥ ପରିଚ୍ଛେଦ

ସେ ଶନିବାରର ସକାଳଟା ଆରବର୍ଷର ଏଇ ଶନିବାରର ପ୍ରତିରୂପ ପରି ଜଣାଯାଉଥାଏ । ବୋଧହୁଏ ଏହିପରି ସବୁ ଦିନ ଗୁଡ଼ିକ, ସେମାନଙ୍କ ପୂର୍ବର ସେହି ଦିନ ସେହିମାନଙ୍କର ଗୋଟିଏ ଗୋଟିଏ ନକଲ । ଆଜି ଦିନଟାରେ ମନ କମିତି ପଛକୁ ଟାଣିଟାଣି ହେଉଥାଏ । ମୋ ଜେଜେନାମା ଡେବୋରାଙ୍କ ପାକୁଆ ପାଟିର ଫୁସ୍‌ଫୁସ୍ ଶବ୍ଦ ପୁଣି ଆସି କାନରେ ବାଜିଲା, "ଆଜି ଦିନକ ପ୍ରଭୁ ଯିଶୁ ମୃତ । ସଂସାରରେ ଏଇ ଗୋଟିଏ ଦିନ—ଏଇ ଗୋଟିକ ଦିନ ସେ ଆମଠାରୁ ଅନ୍ତର ହୁଅନ୍ତି । ଆଜି ତାଙ୍କର ଯୋଗୁଁ ସଂସାରର ସବୁ ନରନାରୀ ମଧ୍ୟ ପ୍ରାଣହୀନ । ଆଜି ପ୍ରଭୁ ନରକରେ ଅଛନ୍ତି । କିନ୍ତୁ କାଲିକୁ ସବୁ ବଦଳିଯିବ । କାଲିକୁ ଅପେକ୍ଷା କର୍; ଦେଖିବୁ ଅଭିନବ ଘଟଣା !"

ତୁମର ଖୁବ୍ ନିକଟରେ ଥିବା ଲୋକକୁ ଭଲ କରି ଚିହ୍ନିବାର ଅବସର ନ ଥାଏ; ତେଣୁ ତା'ର ରୂପ ସ୍ମୃତିରେ ସ୍ପଷ୍ଟ ଭାବେ ଆଙ୍କି ହୁଏ ନାହିଁ । ସେହି କାରଣରୁ ମୋ ଜେଜେନାମାଙ୍କ ରୂପ ମୋ ସ୍ମୃତିରେ ପରିଷ୍କାର ଫୁଟି ଦିଶୁନାହିଁ । କିନ୍ତୁ ତାଙ୍କ କଥା ପରିଷ୍କାର ମନେ ଅଛି । ଦୈନିକ ଖବରକାଗଜ ପଢ଼ିଲା ପରି ସେ ମୋ ଆଗେ ବାଇବଲ୍ ପଢ଼ନ୍ତି । ମୋ'ର ମନେ ହୁଏ ସେ ବିଶ୍ୱାସ କରୁଥିଲେ ଯେ ବାଇବଲ୍ ଗୋଟିଏ ଦୈନିକ ଖବରକାଗଜ ପରି, ଅନନ୍ତକାଳରେ ଘଟୁଥିବା ଘଟଣାର ଦୈନନ୍ଦିନ ବିବରଣୀ—ସବୁ ଘଟଣା, ସଦା ନୂତନ ଓ ଚମତ୍କାର । ପ୍ରତି ଇଷ୍ଟର୍‌ର ଦିନ ଯିଶୁ ତାଙ୍କ ଦୃଷ୍ଟିରେ ମୃତ୍ୟୁର ଆବରଣ ଭେଦକରି ପୁନରାବିର୍ଭୂତ ହୁଅନ୍ତି । ତାଙ୍କର ଏହି ବିସ୍ଫୋରଣ ପ୍ରତିବର୍ଷ ନିର୍ଦ୍ଦିଷ୍ଟ ଭାବେ ଘଟିବ ବୋଲି ଆଗରୁ ଜଣାଥିଲେ ହେଁ ମୋ ଜେଜେନାମାଙ୍କ ପରି ବିଶ୍ୱାସୀଙ୍କ ପକ୍ଷରେ ଏ ଘଟଣା ପ୍ରତିବର୍ଷ ନୂତନତାରେ ଉଦ୍ଭାସିତ ହୋଇଥାଏ । ଏ

ଘଟଣା ଦୁଇ ହଜାର ବର୍ଷ ପୂର୍ବେ ଘଟିଥିଲା ପରି ତାଙ୍କୁ ଲାଗୁ ନ ଥିଲା । ବାଇବଲ୍ ପଢ଼ିଲାବେଳେ ସେ ମନେ କରୁଥିଲେ, ଘଟଣାଟା ସଦ୍ୟ ସେଇଲାଗେ ଘଟିଛି । ତାଙ୍କର ଏଇ ବିଶ୍ୱାସର ଗୋଟିଏ କ୍ଷୁଦ୍ର ଗୁର୍ବି ସେ ମୋ ହୃଦୟରେ ବି ଛେପି ଦେଇ ଯାଇଛନ୍ତି ।

ଆଜି ଦୋକାନ୍ ଫିଟାଇବାକୁ ମୋ ମନରେ ଯେଉଁ ଆଗ୍ରହ ଜାତ ହେଉଛି, ପୂର୍ବେ ଏପରି କେବେ ହୋଇଥିଲା ପରି ମୋର ମନେ ପଡ଼ୁନାହିଁ । ପ୍ରତ୍ୟେକ ସକାଳର କୁତ୍ସିତ ରୂପକୁ ଘୃଣାରେ ନାକ ଟେକିବା ତ ମୋ'ର ଅଭ୍ୟାସ ହୋଇ ଯାଇଥିଲା । ଆଜି ସେ ଅଭ୍ୟାସ ଛାଡ଼ି ମୁଁ ଦୋକାନକୁ ଯିବାକୁ ବ୍ୟଗ୍ର ହୋଇ ଉଠିଲି । ମୋ ମେରୀଙ୍କୁ ମୁଁ ଅନ୍ତରର ସହିତ ସୁଖପାଏ; କେତେକ ଭାବରେ ମୋ ନିଜଠାରୁ ବି ତାଙ୍କୁ ବେଶୀ ସୁଖ ପାଏ, କିନ୍ତୁ ତାଙ୍କ କଥାକୁ ମୁଁ ସବୁବେଳେ ମନଯୋଗ ଦେଇ ଶୁଣେ ନାହିଁ । ସେ ଯେତେବେଳେ ଲୁଗାପଟା କିଣା ଓ ମିଲିଙ୍କ ରୋଗବୈରାଗ୍ୟର ପାଞ୍ଜି ଫିଟାନ୍ତି, କିମ୍ବା ତାଙ୍କୁ ସୁଖ ଲାଗୁଥିବା ବା ମନକୁ ଛୋଇଁଥିବା କଥାବାର୍ତ୍ତାର ବର୍ଣ୍ଣନା କରି ବସନ୍ତି, ସେତେବେଳେ ମୁଁ ତାଙ୍କ କଥାକୁ ଆଦୌ କାନ ଦିଏ ନାହିଁ । ତେଣୁ ବେଳେବେଳେ ତାଙ୍କୁ ଅଭିଯୋଗ କରିବାକୁ ପଡ଼େ, "ତମେ ତ ଏକଥା ନିଶ୍ଚୟ ଜାଣ; ମୁଁ କହିଛି । ମୋର ପରିଷ୍କାର ମନେ ଅଛି, ଗୁରୁବାର ସକାଳେ ମୁଁ ଏକଥା ତୁମକୁ କହିଥିଲି ।" ତାଙ୍କ କହିବା ଯେ ସତ, ଏଥିରେ ମୋର ସଂଶୟ ନାହିଁ । ସେ ମୋତେ ନିଶ୍ଚୟ କହିଛନ୍ତି, କିନ୍ତୁ ମୋ କାନକୁ କହିଥିଲେ, ନା କାନ୍ଥ ବାଡ଼କୁ କହିଥିଲେ ଯେ କଥା ସେ ଜାଣିବେ କୁଆଡ଼ୁ ?

ଆଜି ସକାଳେ ମୋତେ ଯାହା ସବୁ କହୁଥାନ୍ତି ତାହା ମୁଁ ଆଦୌ ଶୁଣୁ ନ ଥାଏ । ଖାଲି ସେତିକି ନୁହେଁ; ତାଙ୍କ ଆଗରୁ ଖସି ଚାଲିଯିବାକୁ ମୁଁ ଗୋଡ଼ ଟେକି ରହିଥାଏ । ହୁଏତ ମୋର ମନ ହେଉଥିଲା, ତାଙ୍କୁ କିଛି କହିଥାନ୍ତି । କିନ୍ତୁ କହନ୍ତି କାହିଁକି ? ତାଙ୍କ ବିଷୟରେ ପୂର୍ଣ୍ଣ ନିର୍ବିକାର ଭାବେ ମୋତେ କହିବାକୁ ହେବ ଯେ, ସେ ମଧ୍ୟ ମୋ କଥାକୁ କାନ ଦିଅନ୍ତି ନାହିଁ—ଗୋଟାଏ ଦିଗରୁ ଦେଖିଲେ ଉଭୟଙ୍କ ପକ୍ଷରେ ଏହା ବେଶ୍ ଭଲ । ସେ ମୋ କଥା ନ ଶୁଣି ମୋ ସ୍ୱର ଓ କଥାର ଭଙ୍ଗୀରୁ ମୋର

ଶାରୀରିକ ଓ ମାନସିକ ଅବସ୍ଥା ଠଉରାଇ ନିଅନ୍ତି; ମୁଁ ବିଷର୍ଣ୍ଣ ଅଛି କି ଖୁସୀ ଅଛି ଜାଣନ୍ତି । ସେଇତକ ଜାଣିଲେ ଯଥେଷ୍ଟ ବୋଲି ସେ ବିଚାରନ୍ତି—ବାସ୍ତବିକ୍ ସେତକ ତ ଯଥେଷ୍ଟ । ଆଜ ଏ ବିଷୟ ଠିକ୍ ନିଠେଇ କରି ବିଚାରି ମୁଁ ଦେଖୁଛି, ମୋ କଥା ସେ ନଶୁଣିବାର କାରଣ, ମୁଁ ତାଙ୍କ ଆଗରେ ଯାହା କହୁଥାଏ, ତାହା ଯଥାର୍ଥରେ ତାଙ୍କୁ କହୁନଥାଏ—କହୁଥାଏ, ମୋ ନିଜ ଭିତରେ ଥିବା କୌଣସି ଅଜ୍ଞାତ ଶ୍ରୋତାକୁ । ସେ ମୋ'ଆଗରେ ଯାହା କହନ୍ତି, ହୁଏତ ସେ ତାହା ମୋତେ ନ କହି ତାଙ୍କ ଭିତରର ଜଣକୁ କହୁଥିବେ । ତେବେ, ପିଲାଙ୍କ କଥା ଯେତେବେଳେ ପଡ଼େ, କମ୍ବା ମୁଣ୍ଡ ଘୂରାଇବା ଭଳି କୌଣସି ପାରିବାରିକ ଜଞ୍ଜାଳ କଥା ଯେତେବେଳେ ଆସି ପହଞ୍ଚେ, ସେତେବେଳ କଥା ସ୍ୱତନ୍ତ୍ର; ସେତେବେଳେ ଏ ନିୟମର ବ୍ୟତିକ୍ରମ ହୋଇଥାଏ ।

ଏ ବିଷୟରେ ବହୁତ ଚିନ୍ତା କରି ମୁଁ ସିଦ୍ଧାନ୍ତ କରିଛି, ଶୁଣିବା-ବାଲାର ପ୍ରକୃତି ଅନୁସାରେ କଥାର ଢଙ୍ଗ ଏପାଖ ସେପାଖ ହୁଏ । ମୋର ଅଧିକାଂଶ କଥାର ଶ୍ରୋତା ମଲା ମଣିଷ—ପିଲାମୁଣ୍ଡିଆ ପାହାଡ଼ ପରି ଠାଣି ମୋ ଜେଜେମାଆ,ଅଥବା ମୋର ଜେଜେବାପା ବୃଦ୍ଧ କପ୍ତାନ୍ । ମୁଁ ତାଙ୍କ ସଙ୍ଗେ ଅନେକ ସମୟରେ କଥା କଟାକଟି କରିବାର ମନେ ପଡ଼ୁଛି । ଦିନକର କଥା—ତାଙ୍କ ସଙ୍ଗେ ଯୁକ୍ତିତର୍କରେ ଲଂଧା ଛିଣ୍ଡିଯାଉଥାଏ, ମୁଁ ପାଟି କରି କହିଲି, "ତେବେ କ'ଣ ଏ କଥା ମୋତେ କରିବାକୁ ହେବ ?" ସେ ଠାଇଁ କରି ଉତ୍ତର ଦେଲେ, "ନିଶ୍ଚୟ । ଗେଁ ଗେଁ ହୁଅନାହିଁ ।" ସେ ମୋତେ ଯୁକ୍ତି ଦେଖାନ୍ତି ନାହିଁ—ତାଙ୍କ ଧଡ଼ିରେ ତା' ଚଳେ ନାହିଁ । 'ନିଶ୍ଚୟ' ବୋଲି କହିଲେ ମୁଁ ଉଁ ଚୁଁ ନ କରି ତାଙ୍କର କଥା ମାନିଯାଏ । ଏ ଭଳି କଥାବାର୍ତ୍ତାରେ କୌଣସି ରହସ୍ୟ ବା କମିଆ ତ ନାହିଁ ! ମନ ଭିତରେ ଏପରି ଏକ ଶକ୍ତି ଅଛି ଯାହା ସ୍ଥିର ନିଶ୍ଚିତ ଭାବେ ଯେ କୌଣସି ସମସ୍ୟାର ସିଦ୍ଧାନ୍ତ କରି ଦେଇପାରେ - ସେଇ ଶକ୍ତିକୁ ମୁଁ ବୃଦ୍ଧ କପ୍ତାନ୍ ବା ଜେଜେମାଆଙ୍କ ନାମରେ ଆବାହନ କରେ ମାତ୍ର ।

କଥା କହିବାକୁ—ପଚାରିବା ତ ସେଇ କହିବାର ରୂପାନ୍ତର ମାତ୍ର—ଦୋକାନର, ମୂକ ଅଥଚ ମୋ ଦୃଷ୍ଟିରେ ବାଚାଳ, ଡବା ଓ ଶିଶିରେ ଥିବା ଖାଦ୍ୟଦ୍ରବ୍ୟ ମଧ୍ୟ ମୋ'ର ଶ୍ରୋତା ସାଜନ୍ତି । ବାଟରେ

ହାବୁଡ଼ବା ପଶୁପକ୍ଷୀଙ୍କ ସଙ୍ଗେ ବ ମୋ'ର ଆଳାପ ହୁଏ । ଏମାନଙ୍କ ସଙ୍ଗେ ଆଳାପ କରିବା ନିରାପଦ—ଏମାନେ ଯୁକ୍ତିତର୍କ କରନ୍ତି ନାହିଁ, କି ଛାନ କଥା ନେଇ ଯାଇ ତା' କାନରେ ଫୋଡ଼ନ୍ତି ନାହିଁ ।

ମେଘ କହିଲେ, "ଏତେ ବେଗେ ଯିବାକୁ ବାହାରିଛ କାହିଁକି ? ତମର ତ ଆଉ ଅଧଘଣ୍ଟା ଅଛି । ଭୋରରୁ ଉଠିପଡ଼ିବାରୁ ଇମିତ ବାଇ-ବାଛୁ ହେଉଛ ।"

ମୁଁ କହିଲି, "ନା, ଆଜ ବହୁତ କାମ । ଗୁଡ଼ାଏ ଡବା ଫିଟାଇ-ବାକୁ ପଡ଼ିବ । ସେଥିରୁ ଜିନିସ ପତ୍ର କାଢ଼ି, ଦୋକାନ ଖୋଲିବା ଆଗରୁ, ଥାକମାନଙ୍କରେ ସଜାଇବାକୁ ହେବ । ଏକଥା କଲାବେଳେ ବଡ଼ ବଡ଼ ସମସ୍ୟାର ନିଷ୍ପତ୍ତି କରିବାକୁ ପଡ଼େ । ଆଙ୍ଗୁର ଓ ବିଲାତି ବାଇଗଣ ଡବା ସବୁ ଏକା ଥାକରେ ରହିବେ ନା ନାହିଁ ? ଆପ୍ରିକଟ୍ ଡବା ଓ ପିଚ୍ ଡବା ଏକାଠି ରହିଲେ, ଆପ୍ରିକଟ୍ ଓ ପିଚଙ୍କର କଳି ଲାଗିବ ନା ସେମାନେ ସାଙ୍ଗ ସୁଖ ହୋଇ ରହିବେ ? ପୁଣି କେଉଁ ରଙ୍ଗ ସାଙ୍ଗକୁ କେଉଁ ରଙ୍ଗ ସାଜିବ ସେ କଥା ବ ଅଛି । ତମେ ତ ଜାଣ, ପୋଷାକରେ କେଉଁ ରଙ୍ଗ ସଙ୍ଗେ କେଉଁ ରଙ୍ଗ ରହିବ, କେତେ ଭାବିବାକୁ ପଡ଼େ ।"

ମେଘ କହିଲେ, "ତୁମର ପ୍ରତି କଥାରେ ଥଟ୍ଟା ତାମସା । ଯାହାହେଉ, ମତେ ଯେ ଭଲ । ମୁହଁ ସୁଲୁଟା କରିବାଠାରୁ ଥଟ୍ଟା ତାମସା ଢେର ଭଲ । ଗୁଡ଼ାଏ ଲୋକ ସବୁବେଳେ ଏତେ ମୁହଁ କରି ବସନ୍ତି ।"

ମୁଁ ଦୋକାନକୁ ବାହାରିଲି; ପ୍ରକୃତରେ ଆଜ ଖୁବ୍ ସଅଳ ହୋଇଗଲା । ଲାଲ ବେକର୍ ଘରୁ ବାହାରି ନଥାଏ । ସେ କୁକୁର କାହିଁକି, ଯେ କୌଣସି କୁକୁରର ଗତିବଧି ଦେଖି, ଘଣ୍ଟାର ଟାଇମ୍ ଠିକ୍ କରାଯାଇ-ପାରେ । ଆଉ ଠିକ୍ ଅଧଘଣ୍ଟାକରେ ସେ ତା'ର ଶୋଭାଯାତ୍ରା ଆରମ୍ଭ କରିବ । ଜର୍ପି ମର୍ଫି ମଧ୍ୟ ଦିଶିଲା ନାହିଁ । ନ ଦିଶିବାର କଥା । ଆଜ ବ୍ୟାଙ୍କ୍ ଛୁଟି, ହେଲେ ବ ଜର୍ପି ତ ନିଶ୍ଚୟ ବ୍ୟାଙ୍କ୍‌କୁ ଯିବ ହିସାବ ଖାତାରେ ମୁହଁ ଗେଞ୍ଜିବାକୁ; ତା'ର ବାହାରିବା ବେଳ ହୋଇନାହିଁ । ସହରଟା ଶୂନ୍‌ଶାନ୍ ଜଣା ପଡ଼ୁଥାଏ । ଖାଲି ସଅଳ ହୋଇଛି ବୋଲି ନୁହେଁ, ଇଷ୍ଟର୍ ଛୁଟିରେ ସହରର ଅନେକ ଲୋକ ଅନ୍ୟତ୍ର ଚାଲି ଯାଇଥାନ୍ତି । ଇଷ୍ଟର୍, ଜୁଲାଇ ଚାରି ଓ ଶ୍ରମିକ ଦିବସ— ଏଇ ତିନିଟା ଆମ ଏଠାରେ ବଡ଼ ଛୁଟି ।

ଯିବାକୁ ଇଚ୍ଛା ନଥିଲେ ବ ଏ ଛୁଟିମାନଙ୍କରେ ଲୋକେ ବାହାରକୁ ଗ୍ଲଲଯା'ନ୍ତି । ଆଜ ତ ଜଣାଯାଉଥାଏ, ଏଲ୍ମ୍ ଷ୍ଟ୍ରୀଟ୍ର ଘରଚଟିଆ ଯାକ ବ ଛୁଟିରେ ଯାଇଛନ୍ତି ।

ଯାହାହେଉ, ଷ୍ଟୋନ୍‌ୱାଲ୍ ଜ୍ୟାକ୍‌ସନ୍ ସ୍ମିଥ୍‌ଙ୍କୁ ନିଜ କାମରେ ହାଜର ଥିବାର ଦେଖିଲି । ଫୋର୍‌ମାଷ୍ଟର୍ କଫି ହୋଟେଲରୁ କଫି କପେ ପିଇ ସେ ଠିକ୍ ବାହାରୁଥିଲେ । ଘର ସରୁଆ ସିଏ, ଭଙ୍ଗି ପଡ଼ିଲା ପରି ଦିଶନ୍ତି । ତାଙ୍କ କମର୍‌ର ପିସ୍ତଲ୍ ଓ କାନ୍ଧରେ ଓହଳଥିବା ହାତକଡ଼ି ତାଙ୍କ ଦେହ ତୁଳନାରେ ମୋଟା ଦିଶୁଥାନ୍ତି । ପୁଲିସ୍ ଟୋପିଟା ସେ ମୁଣ୍ଡରେ ବଙ୍କେଇ କରି ପିନ୍ଧନ୍ତି, ଓ ତାଙ୍କ ମୁହଁରେ ଲେଶମାତ୍ର ଉଦ୍‌ବେଗର ଚିହ୍ନ କେବେ ଦେଖା ଯାଏନାହିଁ । ସରୁହୋଇ ଚଞ୍ଚାହୋଇ ଥିବା ଗୋଟାଏ ହଂସପରରେ ଦାନ୍ତ ଖୁଣ୍ଟିବା ତାଙ୍କର ଅଭ୍ୟାସ ।

ସେ ପାଖକୁ ଆସିବାରୁ ମୁଁ ଆରମ୍ଭକଲି, "ଗୋଟାଏ କ'ଣ ବଡ଼ ବେପାର ଜୁଟିଛି ବୋଧହୁଏ, ଷ୍ଟୋନି—ଖୁବ୍ ସକାଳୁ ବାହାରି ପଡ଼ିଲଣି, ରୋଜଗାରରେ !"

ସେ କହିଲେ, "ଧେତ୍, ଆଜ ସହରରେ ଗୋଟିଏ ହେଲେ କାଏ ନାହାନ୍ତି ।" ସେ ଯେପରି ସ୍ୱରରେ କହିଲେ, ସେଥିରୁ ଜାଣିଲି, ତାଙ୍କର ମନ, ସେ ବ ଏଠାରେ ନରହି କୁଆଡ଼େ ଯାଇଥାନ୍ତେ ।

"ଷ୍ଟୋନି ! ଆଜ କ'ଣ ହତ୍ୟା ଫତ୍ୟା କିଛି ମିଳିଛି ? ତମ ମନ ଖୁସି କଲାପରି ନୃଶଂସ କାଣ୍ଡଫାଣ୍ଡ କିଛି ଘଟିଛି ?"

"ସବୁ ଭୂକଚାନ୍ କହିଲେ ଚଳେ । ପଂଝ୍ଝେ ପିଲା ପୋଲଉପରେ ପିଟି ଗୋଟାଏ ମଟର ଭାଙ୍ଗିଛନ୍ତି । ମଟର ତାଙ୍କ ନିଜର । ଜଜ୍ ପୋଲ ମରାମତି ଖର୍ଚ୍ଚ ତାଙ୍କଠାରୁ ଆଦାୟ କରିବେ । ଫ୍ଲଉହାମ୍‌ଟନ୍ ବ୍ୟାଙ୍କ୍ ସମ୍ବାଦ ଶୁଣିଲ ତ ?"

"ନା ! "

"ଟେଲିଭିଜନ୍‌ରେ ବ ଶୁଣିନାହିଁ ?"

"ନା, ଅଦ୍ୟାପି ଆମର ଟେଲିଭିଜନ୍ ନାହିଁ । ଡକେଇତ କ'ଣ ବେଶି କିଛି ନେଇଛନ୍ତି ।"

"ଶୁଣିଲ, ପଞ୍ଚଷଠି ହଜାର । କାଲି ବ୍ୟାଙ୍କ୍ ବନ୍ଦ ହେବାର ଠିକ୍ ପୂର୍ବରୁ । ତିନିଜଣଙ୍କ କାମ । ଗୃହ ଷ୍ଟ୍ରିଟ୍‌ରେ ବିପଦ ସଙ୍କେତ ଦିଆ ହୋଇଛି । ଉଇଲ ବର୍ତ୍ତମାନ ସହର ରାସ୍ତାରେ ପହରା ଅଛି; ଅନ୍ୟଥାରେ ବଚରାର ମୁଣ୍ଡ ବଥାଉଥିବ ।"

"ସେ ତ ରାତି-ପହରାରେ ବେଶ୍ ଆରାମରେ ଶୋଇବାକୁ ପାଆନ୍ତି ।"

"ସେ କଥା ମୁଁ ଜାଣେ, କିନ୍ତୁ ମୁଁ କାଲିରାତି ଯାକ ଅନିଦ୍ରା ।"

"ଡକାୟତ ଧରା ପଡ଼ିବାର ଆଶା ଅଛି ତ ?"

"ହଁ, ନିଶ୍ଚୟ ଧରା ପଡ଼ିବେ । ଟଙ୍କା ଗଲେ, ଚୋରର ଧରା ପଡ଼ିବା-ମୂକର । ଇନସ୍ୟୁରାନ୍‌ସ କଂପାନୀ ତ ବସେଇ ଉଠେଇ ଦେବେ ନାହିଁ । ଡକାୟତ ଧରା ପଡ଼ି ଟଂକା ମିଳିବା ଯାଏଁ ସେ ନ ଛାଡ଼ନ୍ତି ।"

"ଚେଷ୍ଟା କରିଛ ବୋଲି ଇନ୍‌ସ୍ୟୁରାନସ୍ କଂପାନୀ ତୁମକୁ ନ ଧରିଲେ ରକ୍ଷା !"

"ସେ କଥା ମିଛ କି ?"

"ଷ୍ଟୋନ ! ମୋର ଅନୁରୋଧ, ତୁମେ ଡାନ ଟେଲର୍ ଉପରେ ଟିକିଏ ଦୃଷ୍ଟି ଦେବ । ବିଚରା ଭାରି ଖରାପ ଦିଶୁଛି ।"

ଷ୍ଟୋନ କହିଲେ, "ତା'କୁ ଆଉ ଦୃଷ୍ଟିଦେବ କ'ଣ ? ଶୀଘ୍ର ହେଉ ବା ବିଳମ୍ବରେ ସେ ଯିବ ଇ ଯିବ । କହିଲଣି ଯେତେବେଳେ, ତା'ପାଖକୁ ଯିବ । ବଡ଼ ଦୁଃଖର କଥା । ଭଲ ମଣିଷଟାଏ ! ଭଲ ପରିବାରର ସନ୍ତାନ !"

"ତା' କଥା ମତେ ବଡ଼ ବାଧୁଛି । ସେ ମୋର ସାଙ୍ଗ ।"

"ହେଲେ ବି ତୁମେ କରିବ କ'ଣ ? ଏଥି, ବର୍ଷା ଆସିଲା ପରି ଲାଗୁଛି । ଉଇଲ ବିଚରାର ଓଦା ହେବାକୁ ଭାରି ଡର ।"

ମୋ ମନେ ପଡ଼ିବାରେ ପଚ୍ଛିଲଥର, ମୁଁ ଆଜ ମନଖୁସିରେ ଗଳି ରାସ୍ତାକୁ ଗଲି ଓ ଉତ୍ସାହରେ ବାଡ଼ଦୁଆର ଫିଟାଇଲି । ବରାଡ଼ଟା ଦୁଆର ମୁହଁରେ ଗୁହାଁ ବସିଥାଏ । ଏମିତି କୌଣସି ଗୋଟାଏ ସକାଳ ମନେ ପଡ଼ୁନାହିଁ, ଯେବେ ମୁଁ ଏଇ ପାତିଆ ଛେଉକା ବରାଡ଼ଟାକୁ ଏଇ ଅବସ୍ଥାରେ ନ ଦେଖିଛି । ପ୍ରତ୍ୟହ ତା'ର ଚେଷ୍ଟା, ବାଡ଼ବାଟେ ଭିତରେ ପଶିବ । ପ୍ରତ୍ୟହ ନିୟମିତଭାବେ ମୁଁ ତାକୁ ବାଡ଼ ଖଣ୍ଡେ ଫୋପାଡ଼େ

ନହେଲେ ଘଉଡ଼ିବାକୁ ଗୋଡ଼େଇ ଯାଏ । ମୋ ଜାଣିବାରେ ହନେ ବ ସେ ଭିତରେ ପଶିପାରିନାହାଁନ୍ତି, ତଥାପି ଅଧ୍ୟବସାୟରେ ହେଲା ନାହିଁ । ଭୁଆ-ଟାଏ ବୋଲି ବଗୃରୁଛୁ, ଲଢେ଼ଇରେ ତା'କାନ ଦୁଇଟି ଚିରି ହୋଇ ଯିବାର ଦେଖି । ବଡ଼ନ ଏ ହବଗାଡ଼ ଜାତଟା । ହୁଏତ ଆମ ପ୍ରକୃତି ସଙ୍ଗେ ଏମାନଙ୍କ ପ୍ରକୃତିର ସାମ୍ୟ ଥିବାରୁ, ମାଙ୍କଡ଼ଙ୍କ ପରି ଏମାନଙ୍କ ପ୍ରତି ବ ଆମର ଆଗ୍ରହ ହୁଏ । ମଣିଷଙ୍କ ପରି ନଚ୍ଛୋଡ଼ବନ୍ଦା ଏ ବରାଡ଼ଟା । ଛ'ଶ କ ଆଠଶହ'ଥର ଚେଷ୍ଟା କଲ୍ଣି ପଶିବାକୁ; ସବୁଥର ଫେଲ୍ ହୋଇ ମଧ୍ୟ ତଥାପି ଉଦ୍ୟମ କରୁଛୁ ।

ବରାଡ଼କ କହିଲ, "ଆଜ ମୋ ବ୍ୟବହାରରେ ଚାଜୁବ୍ ହେବୁରେ ଟୋକା !" ଲଙ୍ଗୁଡ଼ର ଗୋଲେଇ ଭିତରେ ସେ ବସିଥାଏ । ତା' ଆଗ ଗୋଡ଼ ସାମନାରେ ଲଙ୍ଗୁଡ଼ର ଅଗ ହଲ ହଲ ହେଉଥାଏ । ଅନ୍ଧା-ରରେ ଗୋଦାମ ଭିତରେ ପଶି, ଥାକରୁ ଗୋଟାଏ ଦୁଧ ଡବା ଆଣିଲ; ଡବା କଣା କରି ଖୋଟାଏ କପ୍‌ରେ ଦୁଧତକ ଢାଳିଲ । ଗୋଦାମଘର ମୁହଁରେ ଦୁଧକପ୍‌ଟା ଭୂଇଁରେ ଥୋଇ ଦୁଆର ମେଲା ରଖି ଆଡ଼େଇ ହୋଇଗଲ । ଭୁଆଟା ମୋ'ଆଡ଼କୁ ତୀବ୍ର ଦୃଷ୍ଟିରେ ଟିକଏ ଗୃହିଁଲ୍, ଦୁଧକପ୍ ଉପରେ ଆଖି ବୁଲାଇ ନେଇ, ଉଠିଲ; ଗଳିର ଆର ପାଖକୁ ଆସ୍ତେ ଆସ୍ତେ ଯାଇ ବ୍ୟାଙ୍କର ପଛପଟ ବାଡ଼ ଡେଇଁ ଛୁ ମାଇଲ୍ । କୃତଘ୍ନ !

ମୁଁ ବରାଡ଼କୁ ଗୃହିଁଛୁ, ଜମ୍ବୁ ହୃର୍ପି ଗଳିକୁ ଆସିଲେ— ହାତରେ ବ୍ୟାଙ୍କ୍ ବାଡ଼ ଦୁଆରର ଗୃବ ପ୍ରସ୍ତୁତ ହୋଇଥାଏ ; ରାତି ଅନ୍ଧାର ହେଲ୍ଲ ପରି ସେ ଶୁଖିଲମୁହା ଦିଶୁଥାନ୍ତି ।

"କ, ମିଷ୍ଟର୍ ହ'ଲ !"

"ଆଜ ତ ତୁମର ବ୍ୟାଙ୍କ୍ ଛୁଟି, ନୁହେଁ ?"

"ଛୁଟି ଯେ, ମୋ ଭାଗ୍ୟର ଛୁଟି କାହିଁ ? ହିସାବରେ ଶହେ ଅଣି ଟଙ୍କା ଭୁଲ୍ ବାହାରିଛୁ । କାଲି ରାତି ଅଧଯାଏଁ ବସି ବସି କରୁ ଫଳ ହୋଇ ନାହିଁ ।"

"କ'ଣ ନାଅଣ୍ଟ ?"

"ନା, ଫାଜଲ୍ !"

"ତେବେ ତ ଭାଗ୍ୟର କଥା ।"

"ସେ ସଂଭାବନା ନାହିଁ । କେଉଁଠି ଭୁଲ ହୋଇଛି ବାହାର କରିବାକୁ ପଡ଼ିବ ।"

"ବ୍ୟାଙ୍କ୍‌ବାଲା କ'ଣ ଏତେ ସଚ୍ଚା ।"

"ବ୍ୟାଙ୍କ୍‌ମାନେ ସଚ୍ଚା । ବ୍ୟାଙ୍କ୍‌ରେ କାମ କରୁଥିବା ବ୍ୟକ୍ତିବିଶେଷ ନୁହନ୍ତି । ମୋତେ ଛୁଟି ପାଇବାକୁ ହେଲେ, ଏ ଭୁଲଟା ବାହାର କରିବାକୁ ପଡ଼ିବ ।"

"ମୋର ମନ, ବେପାର ବିଷୟରେ ମୁଁ କିଛି ଜାଣିନ୍ତି ।"

"ମୋତେ ସେ ବିଷୟରେ ଯାହା ଜଣା ତାହା ମୁଁ ଗୋଟିଏ ବାକ୍ୟରେ କହିଦେବି — ଟଙ୍କା ଥିଲେ ଟଙ୍କା ଆସେ ।"

"ଏଥିରେ ମୋ'ର କୋଉ ଲାଭ ? ଆକାଶ କଇଁଆ, ଚଳିକା ମାଛ !"

"ମୋର ବି ସେଇ ଦଶା । କିନ୍ତୁ ମୁଁ କେତେକ ଉପାୟ ବତାଇ ପାରେ ।

"ଯଥା ?"

"ଯଥା: କିଣିଲା ବେଳେ ପ୍ରଥମ ଡାକରେ ହୁଁ କରିବ ନାହିଁ; ଯଥା : ବିକିବାବାଲାର ଆକଟକୁ ଗୃହିଁ ଜିନିସର ଦାମ ହୁଏ ।"

"ବେପାରରେ ଉନ୍ନତି କରିବାକୁ ଏଇ ଗୁରୁନ୍ତ ଉପାୟ ?"

"ହଁ ଯେ, ପ୍ରଥମ କଥାଟି ନହେଲେ ଏ ସବୁ ନିରର୍ଥକ ।"

"ଓଃ, ପଇସା ଥିଲେ ପଇସା ଆସେ—ଏଇ ?

ହଁ; ସେଇ କଥାଟିରେ ଆମ ଭଳି ବହୁତ ଲୋକଙ୍କର ଦଫାରଫା !"

"କେହି କେହି ତ ପୁଣି କରଜ କରି ମୂଳଧନ ସଂଗ୍ରହ କରନ୍ତି ?"

"ହଁ ଯେ, ଭେଖ ଥିଲେ ତ ଭିଖ ମିଳିବ । ପତିଆରା ଥିବାର ଗୃହି । ପତିଆରା ତ ଗୋଟାଏ ରକମ ପଇସା ।"

"ଦେଖୁଛି, ମତେ ଏହି ଖାଦ୍ୟସମଗ୍ରୀ ଦୋକାନରେ ଇ ମୁହଁ ମାଡ଼ି ପଡ଼ି ରହିବାକୁ ହେବ ।"

"ଆପାତତଃ ସେଇଆ । ଶୁଣିଛ ନା, ଫ୍ଲଡ଼୍ ହ୍ୟାମ୍ପ୍ ଡେନ୍ ବ୍ୟାଙ୍କ୍ କଥା ?"

"ସ୍ଲୋନଙ୍କଠାରୁ ଶୁଣିଲି । ଅଦ୍ଭୁତ ଭାବେ ମେଳ ଖାଇଲା ଆମ କଥା । କାଲି ଆମେ ଏଇ କଥା ପକାଇଥିଲେ, ମନେ ଅଛି ନା ?"

"ମୋ'ର ସେ ବ୍ୟାଙ୍କ୍‌ରେ ଜଣେ ସାଙ୍ଗ ଅଛି । ଶୁଣିଲି, ତିନିଜଣ ପାଜିଙ୍କର ଏ କାମ । ସେଥିରୁ ଜଣଙ୍କର କଥାରେ ଜୋର ଦେଇ କହିବା ଅଭ୍ୟାସ, ଆଉ ଜଣେ ଥଙ୍ଗେଇ ଥଙ୍ଗେଇ କହେ । ତିନିଜଣଙ୍କର ମେଣ୍ଟ । ଏମାନେ ନିଶ୍ଚୟ ଧରା ପଡ଼ିବେ । ହପ୍ତାକରେ ହେଉ, ବା ଦୁଇ ହପ୍ତାରେ ହେଉ ।"

"ବଡ଼ ଦୁର୍ଦ୍ଦାନ୍ତ ଲୋକ ଗୁଡ଼ା !"

"କେଜାଣି ? କିନ୍ତୁ ଚଲାକ ନୁହନ୍ତି ବୋଲି ଜଣାପଡ଼ୁଛି । ଚଲାକ ନହେଲେ, ଏ କାମ ନେଇ ଆଣି ଥୋଇହେବ ନାହିଁ ବୋଲି କାଲିର ନିୟମାବଳୀରେ ଯୋଡ଼ିବାକୁ ହେବ ।"

"କାଲି ଆମେ ଯାହା ସବୁ କଥାବାର୍ତ୍ତା ହେଲେ ସେଥିପାଇଁ ମୁଁ ଅନୁତପ୍ତ ।"

ଅନୁତପ୍ତ ଯେବେ ପାସେରିହିଅ । ମୁଁ ତ ଗପିଲେ ଗୁଡ଼ାଏ ଗପେ । ହଁ, ଆଉ ଗୋଟାଏ ନିୟମ ଅଛି—ପାଟି ବନ୍ଦ କର । ଏ ନିୟମ ମାନିବା ମୋ ଦ୍ୱାରା ତ ହେବ ନାହିଁ । ହଁ, ମିଷ୍ଟର୍ ହ'ଲ, ଆଜି ତ ତୁମେ ଭାରି ଭଲ ଦିଶୁଛ !

"ନ ଦିଶିବାର କଥା । କାଲି ରାତିରେ ଯଥେଷ୍ଟ ଶୋଇ ପାରି-ନାହିଁ ।"

"ଘରେ କ'ଣ କିଏ ବେମାର ?"

"ନା, ତା' ନୁହେଁ,ଗୋଟାଏ ଗୋଟାଏ ରାତିରେ ଏମିତି ହୁଏ ।"

"ଓଃ, ସେ କଥା ମୋତେ ବେଶ୍ ଜଣା ।"

ମୁଁ ଦୋକାନଟା ଓଲେଇ ଦେଇ ଦୁଆର ଝରକାର ପରଦା ଟେକି ଦେଲି । ଏସବୁ ଖୁସିରେ କରୁଥାଏ କି ଅନିଚ୍ଛାରେ କରୁଥାଏ କେଜାଣି ? ଜଫିର ନିୟମାବଳୀ ମୋ' ମୁଣ୍ଡରେ ଏପଟ ସେପଟ ହେଉଥାନ୍ତି । ଥାକମାନଙ୍କରେ ଥିବା ମୋ ବନ୍ଧୁମାନଙ୍କ ସଙ୍ଗେ ମୁଁ କଥାବାର୍ତ୍ତା କରୁଥାଏଁ—ତୁନି ତୁନି ନା ବଡ଼ ପାଟିରେ, ମନେ ନାହିଁ ।

ମୁଁ କହୁଥାଏ, ବନ୍ଧୁଗଣ ! ଯଦି ଏ କାମ ଏତେ ସହଜ, ତେବେ ଆହୁରି ବେଶି ଲୋକ ଏକାମରେ ପଶୁନାହାନ୍ତି କାହିଁକି ? ଯେଉଁମାନେ କରୁଛନ୍ତି ତାଙ୍କ ଭିତରୁ ପ୍ରାୟ ପ୍ରତ୍ୟେକେ ଥରକୁ ଥର ଏକାରକମ ଭୁଲ କରୁଛନ୍ତି କାହିଁ ? ବୋଧହୁଏ, ମଣିଷର ମୌଳିକ ଦୁର୍ବଳତା—କୌଣସି ନା କୌଣସି ପ୍ରକାର ସ୍ନେହ ବା ପ୍ରୀତି, ଅନୁଗ୍ରହ ବା ଉଦାରତା ପ୍ରତ୍ୟେକଙ୍କୁ ଅଥଭ୍ରଷ୍ଟ କରି ଦେଉଛି । ମ୍ୟାରୁଲେ କହୁଥିଲେ, ଟଂକାର ଦୟା ମାୟା ନାହିଁ । ତାହା ଯଦି ସତ, ତେବେ ପଇସା ପଛରେ ଗୋଡ଼ାଉଥିବା ଯେ କୌଣସି ଲୋକ ପକ୍ଷରେ, କୌଣସି ପ୍ରକାର ମାୟା ମମତା ଦେଖାଇବା ଦୁର୍ବଳତା ବ୍ୟତୀତ ଆଉ କ'ଣ ହୋଇପାରେ ? ସ୍ନେହ ପ୍ରୀତି ଯଦି ମଣିଷର ସ୍ୱାଭାବିକ ଗୁଣ, ତେବେ ବ୍ୟକ୍ତିଗତ ଜୀବନରେ ଭଦ୍ର, ଆମେରିକାନ୍ ଯୁବକମାନେ ଯୁଦ୍ଧରେ ଶତ୍ରୁଙ୍କୁ ଅନାଘାତିଆ ମାରୁଛନ୍ତି କିପରି ? ଅବଶ୍ୟ, ଶତ୍ରୁର ଚେହେରା ଯଦି ନିଜଠାରୁ ଭିନ୍ନ, ତା' ଭାଷା ଯଦି ଅଲଗା, ତେବେ ତା'ପ୍ରତି ନିଷ୍କରୁଣ ହେବା ସହଜ ହୁଏ । କିନ୍ତୁ ଆପଣା ଦେଶ ଭିତରେ ତ ଅନ୍ତର୍ଦ୍ୱନ୍ଦ୍ୱ ଓ ଯୁଦ୍ଧ ହେଉଛି । ସେ କ୍ଷେତ୍ରରେ ନିଷ୍କରୁଣତା ଆସୁଛି କାହିଁକି ? ଆମେରିକାର ଅନ୍ତର୍ବିପ୍ଳବରେ ଏକପକ୍ଷ ଶିଶୁମାନଙ୍କୁ ମାରି ଖାଇଗଲେ ତ ଅପର ପକ୍ଷ ଯୁବତୀଙ୍କୁ ଖାଇବାକୁ ନ ଦେଇ ମାଇଲେ ! ନିଜ ସ୍ୱାର୍ଥସିଦ୍ଧି ପାଇଁ ମଣିଷ ମାୟାମମତାକୁ ଜଳାଞ୍ଜଳି ଦିଏ ବୋଲି ତ ଏଥିରୁ ପ୍ରମାଣିତ ହେଉଛି । କିଚା ବର୍ଟ୍ ଓ ଟିଣରେ ଥିବା ବାଲିଛତ୍ରୁମାନେ ! ଅପେକ୍ଷା କର, ମୁହୂର୍ତ୍ତିକେ ମୁଁ ତୁମ ପାଖକୁ ଯାଉଚି । ତୁମ ବିଷୟରେ କହିବି ବୋଲି ତୁମର ମନ । ସମସ୍ତଙ୍କର ସେଇ ଏକା ମନ । ମୁଁ ବି ସେଇ ଇଚ୍ଛାର ସରହଦ୍‌ରେ ଯାଇ ପହଞ୍ଚିଲଣି । ମନେ ରଖ । ଆମେ ଚିନ୍ତାରେ ଯେଉଁ ସ୍ୱାର୍ଥପରତା ଦେଖାଉ ଥାଇଁ, କାର୍ଯ୍ୟରେ ଯଦି ତାହା ପ୍ରତିଫଳିତ ହୁଏ ତେବେ ନୀତି, ନିୟମ, ବ୍ୟବହାର, ଓ ପାପପୁଣ୍ୟବିଚାରର ମାପକାଠି ହୋଇ କିଛି ରହିବ ନାହିଁ । ସବୁ ହୋଇଯିବ ଆପେକ୍ଷିକ—'ଯାହାକୁ ଯେପରି ସଜରେ ବାବା' ! ବିଶ୍ୱନିୟମରେ ଆପେକ୍ଷିକତା ପ୍ରମାଣିତ ହେବା ସ୍ଥଳେ, ବ୍ୟକ୍ତିର ନିୟମ ଅଲଗା ହେବ କାହିଁକି ? ଏ ଆପେକ୍ଷିକତା ଅବଶ୍ୟଂଭାବୀ, ଏଥିରୁ ବର୍ତ୍ତିବାର ଉପାୟ ନାହିଁ । ସ୍ୱେ ବି ମନେ ରଖିବାର କଥା ।

"ମୂଷାମୁଖାଥିବା ଶସ୍ୟଡବା ! ତୁମ ଡବା ଉପରର ମୁଖା ସାଙ୍ଗେ ଆଠ'ଣା ପଠାଇଲେ ଜନ୍ତୁଙ୍କ ସ୍ୱର-ଅନୁକରଣକାରୀ ଯନ୍ତ୍ର ମିଳିବ । ତୁମକୁ ଘରକୁ ନେବାକୁ ପଡ଼ିବ ମୋତେ । ସେ କଥା ତ ପଛକୁ ଅଛି । ବର୍ତ୍ତମାନ ତୁମେ ତୁମ ଜାଗାରେ ବସି, ଶୁଣ । ମୁଁ ଥଣ୍ଡାରେ ମୋ ପ୍ରିୟ-ତମା ମେରୀଙ୍କୁ ଯାହା କହିଥିଲି ବାସ୍ତବରେ ତାହା ସତ । ମୋ' ପୂର୍ବପୁରୁଷମାନେ, ପୂଜ୍ୟପାଦ ଜାହାଜ ମାଲିକ ଓ କପ୍ତାନମାନେ, ସ୍ୱାଧୀନତା ସଂଗ୍ରାମ ବେଳେ, ଓ ପରେ ପୁଣି ୧୮୧୨ରେ, ବଣିକ୍‌ମାନଙ୍କର ଜାହାଜ ଲୁଟି କରିବାକୁ ଅନୁମତି-ପତ୍ର ପାଇଥିଲେ । ଅନୁମତି ପାଇ ଲୁଟି କରିବାରେ ଧର୍ମ ଥିଲା, ଦେଶପ୍ରେମ ବି ଥିଲା । କିନ୍ତୁ ବ୍ରିଟିଶଙ୍କ ଦୃଷ୍ଟିରେ ତ ଏହି ପୂଜ୍ୟପାଦମାନେ ଥିଲେ ଜଳଦସ୍ୟୁ, ନା ଆଉ କ'ଣ ? ଫେର୍ କ'ଣ ? ଏମାନେ ଯାହା ଲୁଟି କରୁଥିଲେ ତାହା ଦେଶ ବା ଜାତିକୁ ନଦେଇ ସିଧାସଳଖ ନିଜ ଘରେ ନେଇ ପୂରାଉଥିଲେ । ଆମ ପରିବାରର ଯେଉଁ ସମ୍ପତ୍ତି ମୋ' ବାପା ଉଜାଡ଼ି ଦେଲେ, ତାହା ଗଢ଼ି ଉଠିଥିଲା ଏଇ ଡକେଇତି ଓ ଚୋରି ମାଲରୁ । ଟଂକା ହେବାରୁ ଆହୁରି ଟଂକା ଆସିଲା । ଏ ଧନ ପାଇଁ ତ ଆମର ପୁଣି ଗର୍ବ ହେବାର କଥା !"

ବିଲି ବାଇଗଣ ଜେଲିର ଗୋଟାଏ ବାକ୍ସ ଆଣି ଫିଟାଇଲି ଓ ସେଥିରୁ ସୁନ୍ଦର ସରୁ ଛୋଟ ଛୋଟ ଡବାମାନ ବାହାର କରି ତାଙ୍କ ନିର୍ଦ୍ଦିଷ୍ଟ ଥାକର ଖାଲି ଥାନ ପୂରଣ କଲି । ତାଙ୍କୁ କହିଲି, "ତୁମେ ତ ଏକ-ରକମ ବିଦେଶୀ; ତେଣୁ ହୁଏତ ଜାଣି ନଥିବ । ଟଂକାର ମାୟା ମମତା ଯେ ନାହିଁ, ଖାଲି ସେତିକି ନୁହେଁ, ଇଜ୍ଜତ ନାହିଁ, କି ମନେ ରଖିବାର ଶକ୍ତି ନାହିଁ । କିଛି ସମୟ ଟଂକାକୁ ପାଖରେ ରଖି ଦେଲେ ତା'ର ଇଜ୍ଜତ ମହତ ଆପେ ଆପେ ଗଜୁରି ଯାଉଛି । ଦରକାର ନାହିଁ ଯେ, ମୁଁ ଟଂକାକୁ ନିନ୍ଦା କରୁଛି । ଆଦୌ ନୁହେଁ; ଟଂକାକୁ ମୋର ବହୁତ ଖାତିର । ଭଦ୍ର ମହୋଦୟଗଣ ! ଆମ ଭିତରକୁ ନୂଆ ହୋଇ ଆସିଥିବା କେତେଜଣଙ୍କୁ ଆପଣମାନଙ୍କ ସଙ୍ଗେ ପରିଚିତ କରାଇ ଦେବି କି ? ଆପଣମାନଙ୍କ ସଙ୍ଗେ ତାଙ୍କୁ ରଖିବି କି ? ରେଟି ଓ ମାଖନରେ ତିଆରି ଏହି ଆଙ୍ଗୁର ଡବା-ମାନଙ୍କୁ ତାଙ୍କ ନୂଆ ବାସସ୍ଥାନରେ ସାଦର ସମ୍ଭାଷଣ କରନ୍ତୁ । (ଆଙ୍ଗୁରକୁ) ଆପଣମାନେ ନିଉଯୁର୍କର; ସେଇଠାରେ ଜନ୍ମ, ସେଇଠାରେ କଟା ହୋଇ

ବୋତଲରେ ପଶିଛନ୍ତି । ମୋର ପୁରୁଣା ବନ୍ଧୁମାନଙ୍କ ସଙ୍ଗେ ଟଂକା ବିଷୟରେ କଥାବାର୍ତ୍ତା ହେଉଥିଲି । ଆପଣଙ୍କ ନିୟୁୟର୍କର ଅନ୍ୟତମ ସୁଖ୍ୟାତ ବଂଶ—ନାମ କହିଲେ ଆପଣ ଚିହ୍ନିବେ—ମୋ'ର ବିଶ୍ୱାସ, ସଂସାରର ସମସ୍ତେ ତାଙ୍କ ନାମ ଶୁଣିଛନ୍ତି—ସେମାନଙ୍କ ପାଖକୁ ପ୍ରଥମେ ପଇସା କେମିତି ଆସିଲା ଜାଣନ୍ତି ? ଆମ ଦେଶର, ବ୍ରିଟିଶ୍‌ଙ୍କ ସଙ୍ଗେ ଲଢ଼େଇ ଲାଗିଥିବା ବେଳେ ଏମାନେ ଦେଶଦ୍ରୋହୀ ହୋଇ ବ୍ରିଟିଶଙ୍କୁ ଗୋମାଂସ ଯୋଗାଇବା ଫଳରେ ସର୍ବପ୍ରଥମେ ଧନ ଅର୍ଜିଲେ । କିନ୍ତୁ ଏ ହାରାମି ଧନରେ ତ କିଛି ଦୋଷ ଲାଗିଲା ନାହିଁ ; ହାରାମୀଙ୍କ ବଂଶ ତ ବେଶ୍ ପ୍ରତିଷ୍ଠା ପାଇଲେ । ସେଇ ନିୟୁୟର୍କର ଆଉ ଗୋଟିଏ ବଂଶ, ଏବେ ସର୍ବଶ୍ରେଷ୍ଠ ବ୍ୟାଙ୍କର୍ ବୋଲି ପରିଚିତ । ଏମାନଙ୍କର ପୂର୍ବ ପୁରୁଷ, ଯାହାଙ୍କ ଅମଳରେ ତାଙ୍କ ସଂପତ୍ତିର ଆରମ୍ଭ, ତାଙ୍କ କୃତିଆଦି ଶୁଣ । ସେ ସୈନ୍ୟ ବିଭାଗରୁ ୩୦୦ ଖଣ୍ଡ ରାଇଫଲ୍ କିଣିଲେ । ସେଗୁଡ଼ାକର ଦୋଷ ଥିଲା; ଯେଉଁ ଦୋଷ ଫଳରେ ତା'କୁ ବ୍ୟବହାର କରିବା ସୈନ୍ୟଙ୍କର ବିପଦର ସଂଭାବନା । ସୈନ୍ୟବିଭାଗ ତେଣୁ ସେଗୁଡ଼ାକ ବ୍ୟବହାରର ଉପଯୁକ୍ତ ନୁହେଁ ବୋଲି ବିକି ଦେଲେ । ଖୁବ୍ ଶସ୍ତାରେ ଏଗୁଡ଼ାକ ବିକା ହେଲା, ବୋଧହୁଏ ଗୋଟି ଅଢ଼େଇ ଟଙ୍କା ଦରରେ । ଏ କାରବାରର ଅଳ୍ପ ଦିନ ପରେ ଜେନେରାଲ୍ ଫ୍ରିମଣ୍ଟ୍ ରେଡ୍‌ଇଣ୍ଡିଆନ୍‌ଙ୍କ ବିରୁଦ୍ଧରେ ତାଙ୍କ ସାହସିକ ଅଭିଯାନରେ ପଶ୍ଚିମଦିଗକୁ ଯାତ୍ରା କରିବାର ଉଦ୍‌ଯୋଗ କଲେ । ଅସ୍ତ୍ରର ଅଭାବ ପଡ଼ିବାରୁ ସେ ଏଇ ରାଇଫଲ୍‌ଗୁଡ଼ାକ ପରୀକ୍ଷା ନକରି ଗୋଟି ଶହେ ଟଙ୍କା ଦରରେ କିଣି ନେଲେ । ଏହି ରାଇଫଲ୍‌ଗୁଡ଼ାକ ଫ୍ରିମଣ୍ଟ୍‌ଙ୍କ ସୈନ୍ୟଙ୍କ ହାତରେ ଫାଟି ସେମାନଙ୍କ ପ୍ରାଣ ନେଲା କି ଶତ୍ରୁ ବିରୁଦ୍ଧରେ କାମରେ ଲାଗିଲା ତା'ର ପ୍ରମାଣ କେହି ରଖିନାହିଁ । ଯାହାହେଉ, ଏଇ ରୀତିରେ ସ୍ୱାଙ୍କର ଧନାଗମ ହେଲା; ଟଙ୍କା ଥିଲେ ତ ଟଙ୍କା ଆସେ—ଏଇ ଟଙ୍କାରେ ଏ ବଂଶର ସଂପତ୍ତି ବଢ଼ିଲା । ତେଣୁ କହିଲି, ଟଙ୍କା କେଉଁ ବାଟରେ ଆସୁଛି ସେଥିରେ କିଛି ଯାଏ ଆସେ ନାହିଁ; ଆସିଲେ ହେଲା । ଆସିଲା ତ ତା'କୁ ଖଟାଇ ଆହୁରି ସଂଗ୍ରହ କରିହେବ । ମୁଁ ଦୋଷଦର୍ଶୀ ହୋଇ ଏଗୁଡ଼ାକ କହୁଛି ବୋଲି ମନେ କର ନାହିଁ । ଆମ୍ଭମାନଙ୍କର ପ୍ରଭୁ ଓ ମାଲିକ ପୁରାଣ

ରେମୀସ୍ ବଂଶାବତଂଶ ମ୍ୟାରୁଲେ ଯାହା କହିଛନ୍ତି ତାହା ନିଗଟ ସତ୍ୟ—ଟଙ୍କା କଥା ଉଠିଲେ ଆଚରଣର ଗତାନୁଗତିକ ମାର୍ଜିତଭାବ ଇସ୍ତଫା ଦେଇ ଚାଲିଯାନ୍ତି । ମୁଁ ତୁମମାନଙ୍କୁ, ଖାଦ୍ୟଦ୍ରବ୍ୟଙ୍କୁ ଏସବୁ କହୁଛି କାହିଁକି ? କାରଣ, ତୁମମାନଙ୍କର ବିବେକବୁଦ୍ଧି ଅଛି । ତୁମେ ମୋ କଥା ଆଉ କାହାକୁ କହିବ ନାହିଁ, ଚୁଗୁଲି ଚପଟ କରିବ ନାହିଁ । ପାଖରେ ପଇସା ଥିଲେ, ପଇସା ତୁଚ୍ଛ ଓ ତୁଚ୍ଛା ବୋଲି ମନେ ହୋଇପାରେ, କିନ୍ତୁ ଯାହାପାଖରେ ସେ ନାହିଁ, ତା'ପକ୍ଷରେ ପଇସାର ମାୟା ଖୁବ୍ ବେଶି । ପୁଣି, ଏକଥା ତ ତୁମେ ନିଶ୍ଚୟ ମାନିବ ଯେ, ଯେ ପଇସା ପାଇଁ ଲାଳାୟିତ, ସେ ପଇସାର ପ୍ରକୃତି ଓ ପ୍ରକାର ବିଷୟରେ କିଛି ଜାଣିବା ଦରକାର; କିପରି ପଇସା ଆସେ ଓ ଯାଏ ସେ କଥା ବୁଝିବା ତା ପକ୍ଷରେ ନିହାତି ପ୍ରୟୋଜନ । ମୋର ଧାରଣା, ଏଭଳି ଖୁବ୍ ଅଳ୍ପ ଲୋକ ଅଛନ୍ତି ଯେଉଁମାନେ ଖାଲି ପଇସା ପାଇଁ ପଇସା ଖୋଜନ୍ତି । ସେଭଳି ଯେଉଁମାନେ, ସେମାନେ ପଇସାର ମୋହରେ ପଡ଼ିଛନ୍ତି ; ସେମାନେ କୃପଣ । ଏଭଳି କୃପଣଙ୍କୁ ଯୋତା ମାରିବା ଦରକାର, ଯେଉଁମାନେ ହାତରୁ ଖସିଯିବ ବୋଲି ଡର ତା'କୁ ଜାବୁଡ଼ି ଧରି ବସିଥାନ୍ତି ।"

କଥା ସାଙ୍ଗେ କାମ ବି ଚାଲିଥାଏ । ଉପରୋକ୍ତ ବକ୍ତୃତା ସରିଲା ବେଳକୁ ଦୋକାନର ଚଟାଣରେ ଗୁଡ଼ାଏ ଖାଲି କାର୍ଡ୍‌ବୋର୍ଡ୍ ବାକ୍‌ସ୍ ଜମା ହୋଇ ପଡ଼ିଥାଏ । ସେ ଗୁଡ଼ାକ ନେଇ ଗୋଦାମ ଘରେ ସାଇତି ରଖିଲି । ଅନେକ ଗ୍ରାହକ ସେଇ ବାକ୍‌ସ ମାନଙ୍କରେ ତାଙ୍କ ସଉଦା ଘରକୁ ନିଅନ୍ତି । ମ୍ୟାରୁଲେ କହନ୍ତେ, "ଆରେ ଟୋକା, ଏ ବାକ୍‌ସ ଗୁଡ଼ାକ ସାଇତି ଥିଲେ, ବ୍ୟାଗ୍ ଗୁଡ଼ାଏ ଖର୍ଚ୍ଚ ନହୋଇ ରହିଯିବ ।"

ପୁଣି ସେଇ 'ଟୋକା' କଥା । ଏ ଡାକଟା ମୋର ଦେହସୁହା ହୋଇଗଲାଣି । ମ୍ୟାରୁଲେ ମୋତେ 'ଟୋକା' ବୋଲି ଡାକନ୍ତୁ ଏହା ଏବେ ମୋର ଇଚ୍ଛା; ଟୋକା ବୋଲି ଜ୍ଞାନ କଲେ ମଧ୍ୟ ଆପତ୍ତି ନାହିଁ । ମୁଁ ବାକ୍‌ସଗୁଡ଼ାକ ସାଇତି ରଖୁଛି, ସଦର ଦରଜାରେ ଧଡ଼ ଧଡ଼ ଶବ୍ଦ ଶୁଭିଲା । ମୁଁ ମୋର ପୁରୁଣା ରୁପା-ରେଲବାଇଘଡ଼ିକୁ ଚାହିଁଲି । ଜାଣ ତ, ମୋ ଜୀବନରେ ପ୍ରଥମ ଥର ଆଜି ମୁଁ ଠିକ୍ ନଅ ବଜେ ଦୋକାନ ଖୋଲି ନାହିଁ । ଘଣ୍ଟାରେ ୯ ବାଜି ୧୫ ମିନିଟ୍ ହୋଇ ସାରିଲାଣି ।

ଖାଦ୍ୟ-ଦ୍ରବ୍ୟମାନଙ୍କ ସଙ୍ଗେ କଥାବାର୍ତ୍ତା ହେଉ ହେଉ ମୋର ଏତେ ବିଳମ୍ବ ହୋଇ ଯାଇଛି । ଦୁଆରର କାଚ ଓ ଲୁହା ବାଡ଼ା ଭିତରେ ମୁଁ ଦେଖିଲି, ଆରପାଖେ ମାର୍ଗି ଯୁଙ୍ଗ୍-ହାଣ୍ଟ୍ ଠିଆ ହୋଇଛନ୍ତି । ମୁଁ ଆଜିଯାଏଁ ଭଲ କରି ତାଙ୍କୁ ଦେଖି ନଥିଲି କି ତାଙ୍କ ରୂପକୁ ଚିହ୍ନଖି କରି ନ ଥିଲି । ବୋଧହୁଏ ସେଇ ଯୋଗୁଁ—ତାଙ୍କ ଅସ୍ତିତ୍ୱ ମୁଁ ଉପଲବ୍ଧି କରିବି ବୋଲି ସେ ଭାଗ୍ୟଗଣନା ପ୍ରହସନଟା କରିଛନ୍ତି । ଭାଗ୍ୟ ଗଣନା କଲେ ବୋଲି, ସାଙ୍ଗେ ସାଙ୍ଗେ ମୋର ପୂର୍ବଗ୍ରହ ବଦଳାଇଦେବା ଠିକ୍ ହେବ ନାହିଁ ।

ମୁଁ ତରତରରେ ଦୁଆର ଖୋଲିଦେଲି ।

ସେ କହିଲେ, "ତୁମକୁ ଏତେ ଶୀଘ୍ର ଦାଣ୍ଡକୁ ଟାଣି ଆଣିବାକୁ ମୁଁ ଚାହୁଁନଥିଲି ।"

"ନା,ନା, ଆଜି ମୋର ଖୁବ୍ ବିଳମ୍ବ ହୋଇଗଲାଣି ।"

"ସତେ ?"

"ହଁ, ନଅ ବାଜି ସାରିଲାଣି ।"

ସେ ମନ୍ଦ-ମନ୍ଥର ଗତିରେ ଭିତରକୁ ଆସିଲେ । ତାଙ୍କ ପଛପଟ ବଡ଼ ଲୋଭନୀୟ ବର୍ତ୍ତୁଳ ଭାବରେ ବାହାରକୁ ବଢ଼ି ଧୀରେ ଧୀରେ ନାଚୁଥାଏ—ପ୍ରତିପଦରେ ଗୋଟିଏ ପାଖ ଉପରକୁ ଉଠିଲା ବେଳକୁ ଆର-ପାଖ ତଳକୁ ଯାଉଥାଏ । ତାଙ୍କର ଆଗ ପଟଟା ସ୍ୱଭାବତଃ ଉନ୍ନତ ଥିବାରୁ ତା'କୁ ଦେଖାଇବାକୁ ତାଙ୍କର ବିଶେଷ ଉଦ୍ୟମ ଦରକାର ନଥିଲା । ଉଦ୍ୟମ ନଥିଲେ ବି ଆଗରେ ସେ ଦୁଇଟା ଅଛନ୍ତି ବୋଲି ସେ ବେଶ୍ ବିଜ୍ଞାପନ କରୁଥିଲେ । ଜର୍ମି ଟୋକା ମାର୍ଗିଙ୍କୁ କହେ 'ଲୋଭନୀୟ ଖାଦ୍ୟ ସାମଗ୍ରୀ', ମୋ ନିଜ ଟୋକା ସ୍ୱାଲେନ୍ ବି ଏହିପରି ଭାଷା ହାସଲ କଲାଣି ବୋଲି ମୋର ଅନୁମାନ । ବୋଧହୁଏ ଆଜି ପ୍ରଥମ କରି ମୋର ମାର୍ଗିଙ୍କ ରୂପ ଉପରେ ନଜର ପଡ଼ୁଛି । ଅଙ୍ଗପ୍ରତ୍ୟଙ୍ଗ ଗୁଡ଼ିକ ବେଶ୍ ସୁଠାମ, ନାକଟି ଟିକିଏ ଲମ୍ବା, ଓଠ ଦୁଇଟି ପୂର୍ବ ଅପେକ୍ଷା ଟିକିଏ ଅଧିକ ଫୁଟି ଦିଶୁଛି, ବିଶେଷତଃ ତଳ ଓଠଟି । ତାଙ୍କର ବାଳ ଗୁଡ଼ିକରେ ଚେଷ୍ଟନଟ୍ ଫଳ ପରି ପିଙ୍ଗଳ ରଙ୍ଗ ଦିଆ ହୋଇଛି । ରଙ୍ଗଟା ପ୍ରାକୃତିକ ନହେଲେ ବି ସୁନ୍ଦର ଦିଶୁଛି । ଥୋଢ଼ ଖୁବ୍ ସରୁ ଓ ସୁଗଠିତ । ଦୋଷ ଭିତରେ, ଗାଲ ଦୁଇଟି ଟିକିଏ ବେଶି ମାଂସଳ ଓ ହନୁ ହାଡ଼ ଦୁଇଟି କିଞ୍ଚିତ୍ ପ୍ରଶସ୍ତ ।

ମାଗ ଆଖି ଦୁଇଟିର ସଯତ୍ନ ପ୍ରସାଧନ କରିଛନ୍ତି । ଆଲୋକର ତାର-ତମ୍ୟରେ ସେ ଦୁଇଟି, ପିଙ୍ଗଳରୁ ନୀଳ, ନୀଳରୁ ଧୂସର ରଙ୍ଗ ବଦଳାଉଥାନ୍ତି । ବେଶିଦିନ ସତେଜ ରହିବା ଭଳି ମୁହଁଟି; ଖୁବ୍ ଧସ୍ତାଧସ୍ତି ସହିଲାଣି, ଆଉ ସହିବାକୁ ବି ସାମର୍ଥ୍ୟ ସ୍ପଷ୍ଟ; ସମ୍ପୂର୍ତ୍ତା କାମୁଡ଼ା ସହିବାକୁ ବି ହଦେଇବ ନାହିଁ । ତାଙ୍କର ଆଖି ଦୁଇଟି ଅସ୍ଥିର ଭାବେ ଏଣେ ତେଣେ ହେଉଥାଏ— ଆଗ ମୋ ଉପରେ ପଡ଼ି, ଦୋକାନ ପସରା ଆଡ଼କୁ ଯାଉଥାଏ, ଓ ପୁଣି ମୋର ଉପରକୁ ଫେରି ଆସୁଥାଏ । ମୁଁ ଅନୁମାନ କଲି ତାଙ୍କର ଦୃଷ୍ଟି ତୀକ୍ଷ୍ଣ ଓ ଥରେ ପଡ଼ିଲେ ଆଉ ପାସୋରୁ ନଥିବ ।

ମୁଁ କହିଲି, "କାଲି ଯେଉଁ ସମସ୍ୟାରେ ପଡ଼ିଥିଲି, ଆଜି ବୋଧହୁଏ, ତାହା ନାହିଁ ବୋଲି ମୋର ଆଶା ।"

ସେ ହସିଲେ—"ନା,ନା, ସବୁ ଦିନ କ'ଣ ମୋତେ ପ୍ରଶ୍ନକର୍ତ୍ତା ଏ ମିଳୁଛି ? ଆଜି ସତରେ ମୋର କଫି ସରି ଯାଇଛି ।"

"ଅଧିକାଂଶଙ୍କର ସେଇ ଦଶା ।"

"ମାନେ ?"

"ପ୍ରତିଦିନ ସକାଳେ ପ୍ରଥମେ ଯେଉଁ ଦଶଜଣ ଆସନ୍ତି ସେ ସମସ୍ତଙ୍କର କଫି ସରିଥାଏ ।"

"ସତ ନା କ'ଣ ?"

"ନିରାଟ ସତ । ହଁ, କାଲି ଆପଣ ପ୍ରଶ୍ନକର ଭଦ୍ରଲୋକଟିକୁ ମୋ ପାଖକୁ ପଠାଇଥିବାରୁ ଆପଣଙ୍କୁ ମୋର ଧନ୍ୟବାଦ ଦେବାର କଥା ।"

"ମୁଁ ପଠାନ୍ତି କାହିଁକି ? ସେ ତ ନିଜ ଇଚ୍ଛାରେ ଆସିଲେ ।"

"କିନ୍ତୁ ତୁମେ ଇ ମୋ ପାଇଁ ସୁପାରିସ୍ କରିଥିଲ । ଆଚ୍ଛା, କି କଫି ଦେବି ?"

"ଯାହା ଇଚ୍ଛା । ଯେଉଁ ଭଲ କଫି ନେଲେ ବି ମୋ ହାତରେ ସେ ଅଖାଦ୍ୟ ହୋଇଯିବ ।"

"ମାପିକରି ପକାଅ ତ ?"

"ଯେତେ ମାପିଲେ ବି ସେଇଆ । ସେ ଆଉ କଫି ପରି ଲାଗେ ନାହିଁ—ତା'କୁ ମୁଁ ଗୁ' ବୋଲି କହି ଆସୁଥିଲି ।"

"ବେଶ୍, କହିଲଣି ତ । ଅଚ୍ଛା ଏଇ ମାର୍କା କପିଟା ନେଇ ଦେଖ ।" ମୁଁ ଥାକରୁ ଗୋଟିଏ ଟିଣ ଆଣିଲି । ହାତ ବଢ଼ାଇ ମୋଠାରୁ ତା'କୁ ନେଲାବେଳେ—ଇଙ୍ଗିତ ସ୍ପଷ୍ଟ—ତାଙ୍କ ଶରୀରର ପ୍ରତ୍ୟେକ ଅଙ୍ଗ ଚଞ୍ଚଳ ହୋଇଗଲେ, ଦୋଦୁଲ୍ୟମାନ ହୋଇ ନିଃଶବ୍ଦରେ ନିଜ ନିଜର ଅସ୍ତିତ୍ୱ ସୂଚାଇ ଦେଲେ । ଗୋଡ଼ କହିଲା, ମୁଁ ଅଛି; ଜଂଘ କହିଲା, ମୁଁ ବି; କୋମଳ ଉଦରଟି ଜଣାଇ ଦେଲା, ତା' ପାସଙ୍ଗରେ ଏମାନେ କେହି ପଡ଼ିବେ ନାହିଁ । ସମସ୍ତେ ନୂଆ କରି ଦେଖା ଦେଲେ, ମୋର ଶ୍ୱାସ ରୋକ ହୋଇ ଗଲା । ମେୟରି କହନ୍ତି, ମାଇପେ ଇଚ୍ଛା କଲେ ସିଂଗଲ ପକାଇ ଦିଅନ୍ତି, ଇଚ୍ଛା ନକଲେ ନାହିଁ । ତା' ଯଦି ସତ, ତେବେ ମେୟରିଙ୍କର ଏମିତି ଗୋଟାଏ ସିଗ୍ନଲ୍ ବ୍ୟବସ୍ଥା ଅଛି ଯାହା କି ତାଙ୍କ ଗୋଡ଼ର ପେଟେଣ୍ଟ୍ ଚମଡ଼ା ଯୋତାଠାରୁ ମୁଣ୍ଡର କୁଞ୍ଚିତ କୋମଳ ପିଙ୍ଗଳ କେଶ ପର୍ଯ୍ୟନ୍ତ ସମସ୍ତଙ୍କୁ ଏକ ସଙ୍ଗେ ଧରି, ପଡ଼ୁଛି ଉଠୁଛି ।

ସେ କହିଲେ, "ଦେଖୁଛି, କାଲି ତୁମର ଯେଉଁ ଅବସାଦ ଥିଲା, ଆଜିକୁ ତାହା ନାହିଁ ।"

"ହଁ, କାଲି ଥିଲା । କୁଆଡ଼ୁ ସେ କାହିଁକି ଆସେ କେଜାଣି ?"

"ହଁ, ମୋର ସେ ଅନୁଭୂତି ଅଛି । ମୋର ବେଳେ ବେଳେ ସେମିତି ହୁଏ ଯେ, ତୁମର ଯେଉଁ କାରଣରୁ ହୁଏ, ମୋର କାରଣ ତା' ନୁହେଁ ।"

"ଭାଗ୍ୟ ଗଣନା ନାମରେ ଭଲ ହାତ ସଫେଇଟେ ଦେଖାଇଲ ।"

"ତୁମେ ସେଥିପାଇଁ ରାଗିଛ କି ?"

"ନା, ରାଗି ନାହିଁ, କିନ୍ତୁ ତୁମେ କିମିତି ତା' କଲ ଜାଣିବାକୁ ଚାହେଁ ।"

"ସେଥିରେ ତୁମର ବିଶ୍ୱାସ ନାହିଁ ।"

"ବିଶ୍ୱାସ ଅବିଶ୍ୱାସ କଥା ଛାଡ଼ । ତାଜୁବ୍ କଥା, ମୁଁ ଯାହା ଚିନ୍ତୁଛି ଓ ଯାହା କରିବାକୁ ବସିଛି ତୁମେ ଲେଖି ବାନ୍ଧିଲ ପରି ସେଇ ସବୁ ତାସରୁ ବାହାର କରିଦେଲ !"

"ଯଥା ?"

"ଯଥା : ମୋର ଜୀବନର ଗତି ବଦଳାଇବାର ବେଳ ହେଲାଣି ।"

"ତୁମେ ବୋଧହୁଏ ମନେ କରୁଛ ମୁଁ ତାସ ସଜାଡ଼ିବାରେ କୃତ୍ରିମ କରିଦେଲି !"

"ସେ କଥା ନୁହେଁ । କୃତ୍ରିମ କଲେ, କର – କିନ୍ତୁ କାହିଁକି କଲ ? କିଛି ଉଦ୍ଦେଶ୍ୟ ରଖି ତ ଯୁା କରିଛ ?"

ସେ ସିଧା ମୋ ଆଡ଼କୁ ଚାହିଁଲେ—ମୋତେ ସନ୍ଦେହ କରି, ମୋ ମନର ଭାବ ଖୋଳି ତାଡ଼ି ବାହାରକରିବାକୁ ଚେଷ୍ଟା କରି ଓ ମୁଁ ମନରେ କ'ଣ ଭାବୁଛି ସେ ବିଷୟରେ ଜିଜ୍ଞାସୁ ହୋଇ । କିଛି ସମୟପରେ କୋମଳ ସ୍ୱରରେ କହିଲେ, "ଉହୁଁ ! ମୁଁ କୌଣସି ଅଭିସନ୍ଧି ରଖି ନାହିଁ । ସେ ବିଷୟ ଚିନ୍ତା ବି କରିନାହିଁ । ଯଦି କୃତ୍ରିମ କଲି, କ'ଣ ପାଇଁ କଲି ? ଯେ ତ କୃତ୍ରିମକୁ ଆହୁରି ରହସ୍ୟାବୃତ କରିବା କଥା ।"

ମିଷ୍ଟର୍ ବେକ୍‌ର ଦୁଆର ମୁହଁରେ ଠିଆ ହୋଇ ଚାହିଁଲେ; କହିଲେ, "ସୁପ୍ରଭାତ, ମାର୍ଗି !" "ଏଥାନ୍ ! କାଲି ଯେଉଁ ପରାମର୍ଶ ଦେଇଥିଲି, ସେ ବିଷୟରେ କିଛି ଭାବିଛ ?"

"ହଁ, ଅନେକ ଭାବିଛି । ଆପଣଙ୍କ ସଙ୍ଗେ ସେ ବିଷୟରେ କଥାବାର୍ତ୍ତା କରିବାର ଆକାଂକ୍ଷା ଅଛି ।"

"ଯେତେବେଳେ ତୁମର ସୁବିଧା, ଏଥାନ୍ !"

"ଦୁଃଖର ବିଷୟ, କାମ-ଦିନରେ ମୋତେ ଆଦୌ ଫୁରସତ୍ ନାହିଁ । ଆପଣ ତ ଜାଣନ୍ତି, ମ୍ୟାରୁଲେ ଦୋକାନକୁ ପ୍ରାୟ ଆସୁନାହାନ୍ତି । ବିଚାରିଛି, କାଲି ଆପଣଙ୍କ ଘରକୁ ଯିବି ।"

"ବହୁତ ଆଚ୍ଛା, ଗିର୍ଜା ଟାଇମ୍ ପରେ ଆସ । ଘରେ କଥାବାର୍ତ୍ତା ହେବା ସବୁ ଆଡ଼ୁ ଭଲ । ପ୍ରାୟ ଚାରିଟା ବେଳେ ମେରୀଙ୍କୁ ଧରି ଆସ । ମାଇପେ ଇଷ୍ଟର୍ ଟୋପି ବିଷୟରେ କଥାବାର୍ତ୍ତା ହେଲା ବେଳେ ଆମେ ସେମାନଙ୍କ ପାଖରୁ ଖସି ଯାଇ –।"

"ମୋ'ର ବହୁତ ଗୁଡ଼ାଏ ବିଷୟ ଅଛି ଆପଣଙ୍କ ସଙ୍ଗେ ଆଲୋଚନା କରିବାକୁ । ବୋଧହୁଏ ଆଗରୁ ସେ ସବୁର ତାଲିକା କରି ରଖିଲେ ଭଲ ହେବ ।"

"ମୋତେ ଯାହା ଜଣା ସେ ସବୁ ତୁମକୁ କହିବାକୁ ମୁଁ ସବଦା ପ୍ରସ୍ତୁତ । କାଲି ଦେଖାହେବ ତେବେ । ନମସ୍କାର, ମାର୍ଗି !"

ମିଷ୍ଟର୍ ବେକର୍ ଚାଲିଯିବା ପରେ ମାର୍ଗି କହିଲେ, "ତୁମେ ତ ନୂଆ ଅଧ୍ୟାୟ ସାଙ୍ଗେ ସାଙ୍ଗେ ଆରମ୍ଭ କରି ଦେଲଣି ।" .

"ହୁଏତ ଟିକିଏ ଗୋଡ଼ ବଢ଼ାଉଛି ମାତ୍ର । ମାର୍ଗି, 'ଗୋଟାଏ କାମ କରନ୍ତ ବୋଇଲେ ଭାରି ମଜା ହୁଅନ୍ତା । ଆଖି ମୁଜ, ଅଜାଣତରେ ତାସକୁ ଥରେ ବାହାର କର ; ଦେଖିବା, କାଲି ସଙ୍ଗେ ସମାନ ଫଳ ହେଉଛି ନା ନାହିଁ ।"

ମାର୍ଗି କହିଲେ, "ନା, ସେମିତି କଲେ ହେବ ନାହିଁ । ବିଧି ଅନୁସାରେ କରିବାକୁ ପଡ଼ିବ । ଆଚ୍ଛା କହିବଟି, ମୋ ସଙ୍ଗେ ତାମସା କରୁଛ, ନା ପ୍ରକୃତରେ ତୁମର ଏଥିରେ ବିଶ୍ୱାସ ହେଉଛି ?"

"ମୋ ବିଚାରରେ, ମୁଁ ବିଶ୍ୱାସ କରିବା ନ କରିବା ଏଠାରେ ଅବାନ୍ତର । ମୁଁ ଅତୀନ୍ଦ୍ରିୟ ଅନୁଭୂତିକୁ ବିଶ୍ୱାସ କରେ ନାହିଁ, ବିଜୁଳି କି, ଉଡ଼ନ୍‌ଯାନ ବୋମାକୁ ବି ବିଶ୍ୱାସ କରେ ନାହିଁ; ଧର, ରଙ୍ଗଣୀ ଫୁଲର ରଙ୍ଗକୁ ବି ବିଶ୍ୱାସ କରେ ନାହିଁ କି ମାଛ ଭେଳା ଭେଳା ହୋଇ ଚରନ୍ତି ବୋଲି ମାନେ ନାହିଁ । କିନ୍ତୁ ମୋ' ଅବିଶ୍ୱାସ ସତ୍ତ୍ୱେ ଏମାନେ ଯେ ବାସ୍ତବରେ ଅଛନ୍ତି ସେ କଥା ତ ମୋତେ ଜଣା । ମୁଁ ଭୂତରେ ବିଶ୍ୱାସ କରେ ନାହିଁ, କିନ୍ତୁ ସେମାନଙ୍କୁ ଦେଖିଛି ।"

"ତୁମେ ରହସ୍ୟ କରୁଛ ।"

"ନା, ଆଦୌ ନୁହେଁ ।"

"ତୁମର ବହୁତ ପରିବର୍ତ୍ତନ ଦେଖୁଛି । ତୁମେ ପୂର୍ବର ଏଥାନ୍ ନୁହଁ ।"

"ସେ କଥା ସତ । କେହି ତ ସବୁବେଳେ ସମାନ ରହନ୍ତି ନାହିଁ !"

"ଏଥି, ଏ ପରିବର୍ତ୍ତନ ଘଟିଲା କାହିଁକି, କିମିତି ?"

"କାହିଁକି କେଜାଣି ? ସମ୍ଭବତଃ ଖାଦ୍ୟସାମଗ୍ରୀ ଦୋକାନର ଗୁମାସ୍ତା ହୋଇ ହୋଇ ଚିନ୍ତା ଲାଗିଲାଣି ।"

"ନୂତନ ପର୍ଯ୍ୟାୟର ବେଳ ହୋଇଗଲାଣି ।"

"ଆଚ୍ଛା, ତୁମେ ମେଷିକୁ ସତରେ ସୁଖ ପାଅ ।"

"ଅନ୍ତରର ସହିତ । କିନ୍ତୁ ଏକଥା ପଚାରିଲ କିଆଁ ?"

"ତୁମେ ଦୁହେଁ ତ ଏକାପ୍ରକାରର—ମାନେ, ପ୍ରକୃତିରେ ତୁମେ ତାଙ୍କଠାରୁ ଖୁବ୍ ଅଲଗା ।"

"ତୁମ ମନର କଥା ବୁଝିଲି । କିନ୍ତୁ ସତରେ, ତାଙ୍କ ପ୍ରତି ମୋର ଖୁବ୍ ଶ୍ରଦ୍ଧା—ମୁଁ ତାଙ୍କୁ ପ୍ରେମ କରେ ।"

"ମୁଁ ବି ।"

"ଭାଗ୍ୟବାନ୍ !"

"ମୁଁ ଜାଣେ ମୁଁ ଭାଗ୍ୟବାନ୍ ।"

"ଭାଗ୍ୟ ମେଘାଙ୍କର ବୋଲି କହୁଥିଲି । ହଉ ଥାଉ, ମୁଁ ଯାଏ ମୋ' ଅଖାଦ୍ୟ କଫି କରିବାକୁ । ତାସ ବିଷୟରେ ଯାହା କହିଲି, ସେ କଥା ବିଚାର କରିବି ।"

"ଯେତେ ଶୀଘ୍ର ପାର— ଶୀତଳ ହୋଇଗଲେ ସୁଆଦ ରହିବ ନାହିଁ ।"

ସେ ଚଟପଟ ହୋଇ ଚାଲିଗଲେ, ସଜ ରବର୍ ପରି ତାଙ୍କ ସୁଠାମ ନିତମ୍ବ ଦୁଇଟି ନାଚିଇ ନାଚିଇ । ଆଜି ତାଙ୍କୁ ଯେପରି ଦେଖିଲି, ପୂର୍ବରୁ କେବେହେଁ ଏପରି ଦେଖି ନଥିଲି । ଏହିପରି କେତେ ମଣିଷଙ୍କୁ ମୁଁ ଚାହୁଁଛି, କିନ୍ତୁ ଦେଖିନାହିଁ—କେଜାଣି ? ମଣିଷ ବିଚାରିବାକୁ ଆରମ୍ଭ କଲେ ଥଳ-କୂଳ ପାଏ ନାହିଁ—ଏ ବି ଗୋଟାଏ ମନେ ରଖିବାର କଥା । ଦୁଇଜଣ ଦେଖା ହୁଅନ୍ତି—ଜଣେ ଅପରକୁ ନୂଆ ରକମରେ ଚାହେଁ; ଦୁଇ ଜଣ ନୂଆ ଲୋକର ପୁଣି ସୃଷ୍ଟି ହୁଏ । ଅର୍ଥାତ୍—ଅର୍ଥାତ୍ କିଆଁ ରଡ଼; ବାସ୍ତବତାର ସ୍ୱରୂପ ଓଲଟ ପାଲଟ ହୋଇ ଯାଉଛି । ଏଇସବୁ ଅଡ଼ୁଆ କଥା, ରାତିରେ ନିଦ ନହେଉଥିବା ବେଳେ ବିଚାରିବାକୁ ଆଡ଼େଇ ଦେଲି । ଠିକ୍ ସମୟରେ ସେ ଦୋକାନ ନ ଫିଟାଇଲି, ସେଇ କଥା ମନରୁ ଯାଉନାହିଁ, ମୋତେ ବିବ୍ରତ କରି ପକାଉଛି । ମଣିଷମାନଙ୍କ ସ୍ଥାନରେ ନିଜର ରୁମାଲ୍ ଛାଡ଼ି ଆସିବା ଭଲ କଥା ଇଏ ? କିନ୍ତୁ ଏ କଥାର କୋଉ ଅପରାଧ, କେଉଁ ମଣିଷମାନଙ୍କ ସାଙ୍ଗେ, କି ସମ୍ପର୍କ ?

ଢ' ପହରେ ଖୁବ୍ ଚଟା ସ୍ୟାଣ୍ଡୱିଇଚ୍ ତିଆରି କଲି, ଛେନା, ମାଂସ, ଶାକସବଜି ଓ ଜେଲି ଦେଇ । 'ମାଉଁସ ସାଙ୍ଗକୁ ଛେନା, ମାଉଁସ ସାଙ୍ଗକୁ ଛେନା ; ମାଇପ ସାଙ୍ଗରେ ମେଳକ ଜୁଟିଲେ, ଜଗତ ଉପରେ ଖାନା ।'

ଦୁଇଟା ସ୍ୟାଣ୍ଡ୍‌ଉଇଚ୍ ଓ ଗୋଟାଏ କୋକ୍ ବୋତଲ ଧରି ବ୍ୟାଙ୍କ୍‌ର ବାଡ଼ ଦୁଆରକୁ ଗଲି ଓ ଦରଜାର ଫାଙ୍କ ବାଟେ ଜପ୍ସିଙ୍କ ହାତକୁ ବଢ଼ାଇ ଦେଲି ; ପଚାରିଲି, "ଭୁଲ ଆଖିରେ ପଡ଼ିଲି ?"

"ନା, ଏତେବେଳ ଯାଏଁ ପାଇ ନାହିଁ । ହେଇଟି ଅଛି, ହେଇଟି ନାହିଁ । ମୁଁ ଜଳକା ହୋଇ ଗଲିଣି ।"

"ସୋମବାରକୁ ରଖି ଦେଉନାହିଁ ?"

"ଅସଂଭବ । ବ୍ୟାଙ୍କ କାମରେ ମାୟାମମତା ରହେ ନାହିଁ ।"

"ବେଳେବେଳେ ଦେଖିଛି, ଯେଉଁ ବିଷୟ ମନରୁ ଏକାବେଳକେ ଆଡ଼େଇ ଦେବ, ତାହା ଗୃଞ୍ଜି ହୋଇ ଆପେ ଆପେ ମନକୁ ଆସେ ।"

"ସେ କଥା ସତ । କିନ୍ତୁ ଏ ବିଷୟ ମନରୁ ଆଡ଼େଇ ପାରିବି କିମିତ ? ଯାହାହେଉ, ସ୍ୟାଣ୍ଡ୍‌ଉଇଚ୍ ପାଇଁ ଧନ୍ୟବାଦ ।" ସ୍ୟାଣ୍ଡ୍‌ଉଇଚ୍ ଭିତରେ ଶାକସବ୍‌ଜ ଓ ଜେଲି ଅଛି କି ନାହିଁ ବୋଲି ସେ ତା'ଭିତରକୁ ନିରେଖି ଚାହିଁଲେ ।

ଖାଦ୍ୟ ସାମଗ୍ରୀ କାରବାରରେ ଇଷ୍ଟର ପୂର୍ବ ଶନିବାର ଓପର-ଓଳାର ଯେଉଁ ବେପାର, ତାକୁ ମୋ 'ସି'-ଅକ୍ଷରବିବର୍ଜିତ ଅଥଚ ମହା-ମହିମ ପୁତ୍ରମଣିଙ୍କ ଭାଷାରେ 'ମୁତଫରକା' ବୋଲି କୁହାଯାଇପାରେ । କିନ୍ତୁ ଏଇ ଓପରଓଳି, ଏପରି ଦୁଇଟି ଘଟଣା ଘଟିଲି ଯହିଁରୁ ମୁଁ ଜାଣିଲି ଯେ, ମୋ ମନରେ ଅନ୍ତଃସଳିଳା ଫଲ୍‌ଗୁ ପରି ପରିବର୍ତ୍ତନର ଏକ ସ୍ରୋତ ପ୍ରବାହିତ ହେବାକୁ ଆରମ୍ଭ କରିଚି । ଅର୍ଥାତ୍, ଆଜି ମୁଁ ଏପରି କିଛି କଲି, ଯାହା କି କାଲି ବା ତା ପୂର୍ବର କୌଣସି ଦିନ କରି ପାରି ନଥାନ୍ତି । କାଗଜର ସାମ୍ପୁଲ ଦେଖିଲି ପରି ଫର୍ଦ୍ଦକୁ ଫର୍ଦ୍ଦ ଖୋଲୁ ଖୋଲୁ ଆଜି ଓପରଓଳି ମୁଁ ଏପରି ଗୋଟିଏ ଫର୍ଦ୍ଦ ଖୋଲିଲି, ଯାହାର କିସମ୍ ସମ୍ପୂର୍ଣ୍ଣ ଅଲଗା ।

ପ୍ରଥମ ଘଟଣା, ମ୍ୟାରୁଲ୍ଲୋଙ୍କ ଆଗମନ । ତାଙ୍କ ଗଣ୍ଠିବାତ ତାଙ୍କୁ ଘୋର ଯନ୍ତ୍ରଣା ଦେଉଥାଏ । ତକ୍ତ ବୋଝ ଉଠାଇଲି ; ପରି ସେ ଥରକୁ ଥର ହାତ ମେଲଉ ଥାନ୍ତି ଓ ଜାକୁଥାନ୍ତି ।

"କେମିତି ବେପାର ଚାଲିଛି ?"

"ମାଧା, ଆଲଫିଓ !" ଏଥିପୂର୍ବରୁ କେବେ ମୁଁ ତାଙ୍କୁ ନାମ ଧରି ଡ଼ାକି ନଥିଲି ।

"ଆଜି ସହରରେ କେହି ନାହାନ୍ତି—।"

"ମୋତେ ତୁମେ 'ଟୋକା' ବୋଲି ଡାକିଲେ ଅଧିକ ସୁଖ ଲାଗନ୍ତା ।"

"ମୁଁ ତ ବିଶ୍ୱରୁଥିଲି, ତୁମକୁ ସେ ଡାକ ସୁଖ ଲାଗୁନାହିଁ ।"

"ଏବେ ଅନୁଭବ କରୁଛି ମୋତେ ସେ ଡ଼ାକଟା ସୁଖ, ଆଲ୍‌ଫିଓ !"

"ସମସ୍ତେ ଛୁଟିରେ ଯାଇଛନ୍ତି ଘର ।" ଜଣା ଯାଉଥାଏ, ଖଞ୍ଜା ଭିତରେ ତାଙ୍କଲା ବାଲି ଥିଲା ପରି ତାଙ୍କ ଖୁଆମୁଣ୍ଡା ବନ୍ଧୁଥାଏ ।

"ତମେ ସିସିଲିରୁ କେତେବର୍ଷ ହେଲା ଆସିଲଣି ।"

"ବହୁତ ବର୍ଷ । ସତଗ୍ରୁଳଣ ।"

"ମଝିରେ କେବେ ଦେଖଲୁ ଯାଇଚ ?"

"ନା ।"

"ଥରେ ବୁଲି ଆସୁନାହଁ ?"

"କ'ଣ ପାଇଁ ? ଇତିମଧ୍ୟରେ ସବୁ ବଦଳି ଗଲାଣି ।"

"ନିଜ ଜନ୍ମଭୂମିରେ କି ପରିବର୍ତ୍ତନ ହୋଇଛି ଦେଖିବାକୁ କୌତୂହଳ ହେଉନାହିଁ ?"

"ନା, ବିଶେଷ ନୁହେଁ ।"

"ବନ୍ଧୁବାନ୍ଧବ କିଏ ସେଠାରେ ଅଛନ୍ତି ?"

"ନିଶ୍ଚୟ । ଭାଇ ଅଛି, ତା'ର ପିଲାକବିଲା ଅଛନ୍ତି; ତାଙ୍କର ବି ପିଲାକବିଲା ହେଲେଣି ।"

"ମୁଁ ତ ବିଶ୍ୱରୁଛି, ସେମାନଙ୍କୁ ଦେଖିବାକୁ ତୁମର ମନ ହେଉ-ଥିବ ।"

ସେ ମୋ ଆଡ଼କୁ ଗ୍ରହିଁଲେ । ମନେ କରୁଛି, ମୁଁ ଯେମିତି ଆଜି ମାର୍ଗିକୁ ନୂଆ କରି ଦେଖିଲି, ସେହିପରି ମ୍ୟାରୁଲେ ମୋତେ ନୂଆ କରି ଦେଖୁଥାନ୍ତି ।

ମୋ ଆଡ଼କୁ ଗୃହିଁ ଗୃହିଁ ସେ କହିଲେ, "କରେ ଟୋକା, ତୋ ମନରେ କ'ଣ ଅଛି କହୁନାହୁଁ ।"

"ତୁମ ଗଣ୍ଠିବାତ ଦେଖି ମୋତେ କଷ୍ଟଲାଗୁଛି । ବଗୃରଲି, ସିସିଲି ତ ଗରମ ଜାଗା ; ସେଠାକୁ ଗଲେ ଗଣ୍ଠିବାତ ଛାଡ଼ିଯାନ୍ତା ।"

ସନ୍ଦେହପୂର୍ଣ୍ଣ ଦୃଷ୍ଟିରେ ମୋତେ ଗୃହିଁ ସେ କହିଲେ, "ତୋ'ର ଆଜ ହୋଇଛି କ'ଣ ?"

"ମାନେ ?"

"ଆଜ ତୁ ଅଲଗା ରକମ ଦିଶୁଛୁ ।"

"ଓଃ, ଠିକଏ ଭଲ ଖବର ଗୋଟାଏ ପାଇଛି; ସେଥିପାଇଁ ହୋଇଥିବ ।"

"ଆରେ ଏ ଦୋକାନ କାମ ଛାଡ଼ିବାକୁ ବଗୃରୁନାହୁଁ ତ ?

"ନିକଟରେ ଛାଡ଼ିବା କଥା ନାହିଁ । ଯଦି ତୁମର ଇଟାଲୀ ଯିବାକୁ ମନ, ନିଶ୍ଚିନ୍ତରେ ଯାଇପାର । ମୁଁ ଜବାବ୍ ଦେଉଛି ଯେ, ତୁମ ଅନୁପସ୍ଥି-ତିରେ ମୁଁ କାମ ଛାଡ଼ ଗୃଲିଯିବ ନାହିଁ ।"

"କ ଭଲଆ ସୁଖବର ପାଇଛୁ ?"

"ଅଦ୍ୟାପି ସଠିକ କହି ପାରିବ ନାହିଁ । ଅଦ୍ୟାପି ଏଇପରି ଅଛି—।"ମୋର ପାପୁଲିକୁ ଓପର ତଳ କରି ବିଷୟଟିର ଦୋଦୁଲ୍ୟମାନ ଅବସ୍ଥା ସୂଗୃଇଲି ।

"କ'ଣ ଟଙ୍କା ପଇସା ସମ୍ବନ୍ଧୀୟ ଖବର ?"

"ହୋଇପାରେ । ଦେଖ, ତୁମର ତ ବହୁତ ଧନ, ଖର୍ଚ୍ଚ ପାଇଁ ଚିନ୍ତା ନାହିଁ । ଥରେ ସିସିଲିକୁ ଫେରି ଧନୀ ଆମେରିକାନ୍ କମିତି, ସେଠା ଲୋକଙ୍କୁ ତାହା ଦେଖାଇ ଆସୁନାହଁ ? ସୂର୍ଯ୍ୟ ଉତ୍ତାପ କିଛି ଦେହରେ ଲଗାଇ, ନୀରୋଗ ହୁଅ । ମୁଁ ଏକୁଟିଆ ଦୋକାନ ଚଳାଇପାରିବ । ମୋର ଆଶା, ତୁମର ସେ ବିଶ୍ୱାସ ମୋ ଉପରେ ଅଛି ?"

"ବୋଧହୁଏ ତୁ ଗୃକିରି ଛାଡ଼ିବା ମତଲବ୍‌ରେ ଅଛୁ ?"

"ଛେଇ୍, ବୃଥା କଥା । ମୋତେ ଏତେ ଦିନ ଜାଣିଲଣି, ମୁଁ ତୁମକୁ ନକହି, ଅସୁବିଧାରେ ପକାଇ ପଳାଇଯିବ ବୋଲି କେମିତି ଭାବୁଛ ?"

"ତୋ'ର ଖୁବ୍ ପରିବର୍ତ୍ତନ ହୋଇଛି ରେ ଟୋକା ! କାହିଁକି, ଠଉରାଇ ପାରୁନାହିଁ ।"

"କାରଣ କହିଲ ପରା ! ନିଶ୍ଚିନ୍ତ ହୁଅ ଓ ସ୍ୱଦେଶକୁ ଫେରି ନାତି ନାତୁଣୀଙ୍କୁ ଖେଳାଅ ।"

ସେ କହିଲେ, "ସେଠାରେ ଆଉ ମୋର ସ୍ଥାନ ନାହିଁ ।" ମୁଁ ଜାଣିଲି, ତାଙ୍କ ମନରେ ମୋ ବିଷୟରେ ଦୁଶ୍ଚିନ୍ତାର ମଞ୍ଜି ବୁଣିଦେଲି—ସାଙ୍ଗେ ସାଙ୍ଗେ ଗଜୁରି ଉଠିଲା । ମୋ'ର ଦୃଢ଼ ବିଶ୍ୱାସ, ସେ ଆଜି ରାତିରେ ଅଜାଣତରେ ଦୋକାନକୁ ଆସି ହିସାବପତ୍ର ଘାଣ୍ଟିବେ । ମ୍ୟାରୁଲେ ବୁଢ଼ା ସାଡ଼େ ବଦ୍‌ମାସ୍—ସ୍ୱଭାବତଃ ସନ୍ଦେହୀ ।"

ମ୍ୟାରୁଲେ ଦୋକାନରୁ ଗୋଡ଼ କାଢ଼ିବା ସାଥି ସାଥି—ଠିକ୍ କାଲି ପରି—ବି.ବି. ଡି.ଏଣ୍ଡ୍ ଡି. କଂପାନୀର ତୋଳିଆ ଆସି ପଶିଲେ ।

ସେ ସାଙ୍ଗେ ସାଙ୍ଗେ କହିଲେ, "ମୁଁ ବେପାରରେ ଆସିନାହିଁ । ହସ୍ପିଟାଲ୍ କୁଟିଟା ଏଇଠାରେ କଟାଇବି ବୋଲି ରହିଛି । ଖାଲି ସେମିତି ଟିକିଏ ଦେଖା କରିବାକୁ ପଶି ଆସିଲି ।"

"ଖୁବ୍ ଭଲ କଲେ । ଏ ଜିନିଷଟା ଆପଣଙ୍କୁ ଦେବା ପାଇଁ ତ ମୁଁ ଗୁହିଁ ରହିଥିଲି ।"

ଚମଡ଼ା କେସ୍‌ଟା ତାଙ୍କ ଆଡ଼କୁ ଦେଖାଇଲି; ଶହେ ଟଂକିଆ ନୋଟଟା ତା'ଭିତରୁ ବାହାରି ହଶୁଥାଏ ।

"ଏହେଁ, ଏହେଁ, ତାକୁ ଫେରାଉଛନ୍ତି କାହିଁକି ? ଆମ ସଦ୍‌ଭାବର ସଂକେତ ସ୍ୱରୂପ ସେଇଟା ଆପଣଙ୍କୁ ଦିଆ ହୋଇଛି । ପୁଣି ଏ ତ ବେପାର ସଂବଂଧୀୟ ଜିନିଷ । ମୁଁ ବର୍ତ୍ତମାନ ବେପାରରେ ଆସିନାହିଁ ।"

ମୁଁ ଜୋର୍‌ଦେଇ କହିଲି, "ଏଇଟା ନିଅନ୍ତୁ, ରଖନ୍ତୁ ।"

"ଏହାର କାରଣ କ'ଣ ?"

"ମୁଁ ଯେଉଁ ବଂଶରେ ଜାତ ସେ ବଂଶ ସଙ୍ଗେ ମୋର ଚୁକ୍ତି ଅଛି, ଘୁଷ ଗ୍ରହଣ ନ କରିବାକୁ ।"

"କାହିଁକି, କାହିଁକି, ? ମୋ ଉପରେ ରାଗିଲେ କି ?"

"କଦାପି ନୁହେଁ ।"

"ତେବେ ଏକଥା କାହିଁକି ?"

"ତୁମେ ଯିବାକୁ ଫେରଇ ନିଅ । ତୁମ ପ୍ରସ୍ତାବ ଗ୍ରହଣ କରି ପାରିବ ନାହିଁ ।"

"ବାବା ! – ଓ୍ୱେଲଣ୍ଡ କଂପାନୀ କ'ଣ ଆମ ଠାରୁ ଅଧିକ ଜଳ-ପାନି ଦେବାକୁ କହୁଛି ?"

"ନା,ନା,"

"ତେବେ ଆଉ କଏ ? ସେଇ ମୋଟା କମିସନ୍-କାରବାରି ଜଣେ କଏ ବୋଧହୁଏ ?"

ମୁଁ କିଛି ନକହି, ତାଙ୍କ ସ୍ୟୁଟପକେଟରେ ଉପରକୁ ମୁଣ୍ଡ କାଢ଼ି-ଥିବା ରୁମାଲ୍ ପଛକୁ ଶହେ ଟଂକାର ନୋଟ୍‌ଟା ଗେଞ୍ଜି ଦେଲି ; କହିଲି, "ଚମତ୍କା କେସ୍‌ଟା ମୁଁ ରଖୁଛି, ବଡ଼ ଲୋଭନୀୟ ହୋଇଛି ।"

ସେ କହିଲେ, "ଦେଖନ୍ତୁ, ହେଡ୍ ଅଫିସ୍‌କୁ ନ ଜଣାଇ ଆପଣଙ୍କ ପାଉଣାର ରେଟ୍ ବଢ଼ାଇବା ଅଧିକାର ମୋର ନାହିଁ । ଆପଣ ମଙ୍ଗଳ-ବାର ଯାଏଁ ରହନ୍ତୁ । ମୁଁ ଆପଣଙ୍କୁ ଟେଲିଫୋନ୍ କରିବି । ମୁଁ 'ହଁ' ବୋଲି କହିଲେ, ଆପଣ ମୋତେ ବୁଝିବେ ।"

"ଟେଲିଫୋନ୍ ଖର୍ଚ୍ଚଟା ବୃଥା ହେବ ମାତ୍ର ।"

"ସେ ଯାହାହେଉ, ଆମର ପ୍ରସ୍ତାବଟା ମଞ୍ଜୁର୍ ରଖନ୍ତୁ । ରଖିବେ ନା ?"

"ହଉ, ରହିଲା । ଆଚ୍ଛା, ବନ୍‌ସି ଫନ୍‌ସି ପକାଉଛନ୍ତି ?"

"ହଁ, ପକାଉଛି ଯେ, ମାଛ ପାଇଁ ନୁହେଁ, ମାଇକିନିଆ ପାଇଁ ।

"ସେଇ ଯେଉଁ ଲୋଭନୀୟା ମାଗିଟା; ତା'ଉପରେ ହାତ ପକାଇ-ଥିଲି; ମଙ୍ଗିଲା ନାହିଁ । ମୋର ମୁଣ୍ଡ ଫଟାଇ ଦେଇଥାନ୍ତା । ଏଠାରେ ମାଇକିନିଆ ଦେଖିବାକୁ ସ୍ୱପ୍ନ ।"

"କ୍ଷୀଣୁ କ୍ଷୀଣତର ଏବେ କାମିନୀର ଆଶା ।"

"ବାଃ, ଆଉ ଥରେ କହନ୍ତୁ ସେ ପଦଟା; ଗତ ୧୫ବର୍ଷ ଭିତରେ ଏମିତି ପଦେ ଶୁଣିନାହିଁ" ବୋଲି ସେ କହିଲେ ସିନା, ତାଙ୍କ ମନ ଖୁବ୍ ବିଚଳିତ ହୋଇଥିଲା ପରି ଜଣାଯାଉଥାଏ । ସେ ପୁଣି କହିଲେ, "ଦେଖନ୍ତୁ, ମୋ'ଠାରୁ ନଶୁଣିବା ଯାଏଁ ଶେଷ ନିଷ୍ପତ୍ତି କରିବେ ନାହିଁ । ମୁଁ ଆପଣଙ୍କୁ ମଫସଲିଆ ଲୋକ ବୋଲି ଭାବିଥିଲି; ସହଜେ କାମ ହାସଲ କରି ଦେଲି ବୋଲି ନିଶ୍ଚିନ୍ତ ଥିଲି । ଆପଣ ତ କୁସୁମ-ଗର୍ଭି ।"

"ମୁଁ ମୋର ମାଲିକଙ୍କୁ ଠକାଇ ପାରିବ ନାହିଁ ।"

"ଗ୍ରଡ଼ନ୍ତୁ ସେ ପୁରୁଣାକଥା । ମୁଁ ବୁଝୁଛି, ଆପଣ କଡ଼ି ଅଧିକ ଗୃହାନ୍ତ ।"

"ସେଇ କଥାଟା ଦୋହରେଇ ହେଉଛନ୍ତି କାହିଁକି ? ମୁଁ ଉପ୍‌ପତ୍ର ଗ୍ରହଣ କରିବାକୁ ଆଦୌ ପ୍ରସ୍ତୁତ ନୁହେ ବୋଲି ବୁଝି ରଖନ୍ତୁ ।"

ମୁଁ ଅନ୍ୟମାନଙ୍କ ଠାରୁ ଅଲଗା, ବୋଧହୁଏ ଏଇଥିରୁ ଜଣା ପଡ଼ିଲା । ଲୋକଟି ସଂଭ୍ରମରେ ମୋ ଆଡ଼କୁ ଗୃହିଁଲା; ଏ ଗୃହାଣି ମୋତେ ସୁଖ ଲାଗୁଥାଏ । ବଦ୍‌ମାସଟା ବିଗୃରିଥିଲା, ମୁଁ ତା'ରି ପରି ଜଣେ, କେବଳ ତା'ଠାରୁ ଅଧିକ ଗଣ୍ଡିଆ !

ଦୋକାନ ବନ୍ଦ କରିବାକୁ ଆରମ୍ଭ କରିବାର ଠିକ୍ ପୂର୍ବରୁ ମେଗ୍ରି ଟେଲିଫୋନ୍ କଲେ—"ଏଥାନ୍, ଶୁଣିବା ମାତ୍ରେ ନିଆଁ ବାଣ ହୁଅନାହିଁ—।"

"କ'ଣ ଶୁଣିବା ମାତ୍ରେ, ଗୋ ପଦ୍ମାସମ୍ମ !"

"ଦେଖ, ବିଗୃରୀ ନିଃସଙ୍ଗ ହୋଇ ଜୀବନ କାଟୁଛି । ସେଇଥିପାଇଁ ଇଥା ବିଗୃରିଲି । ମୁଁ ମାର୍ଗିକୁ ଖାଇବାକୁ ଡାକୁଛି ।"

"ଏଥିରେ ଦୋଷ କ'ଣ ?"

"ତମେ ଗ୍ରଗିଲ ?

"ନା, ଆଦୌ ନୁହେଁ, ଶପଥ କରୁଛି— ।"

"ନା, ନା, ଶପଥ କରିବା ମହାପାପ ! କାଲି ସେ ଇଷ୍ଟର୍ !"

"ହଁ, ମୋର ଗୋଟାଏ କଥା ମନେ ପଡ଼ିଲା । ତମର ସବୁଠାରୁ ସୁନ୍ଦର ସେମିଜ୍ ଇସ୍ତିରି କର । କାଲି ଗୃରିଟା ବେଳେ ବେକରଙ୍କ ଘରକୁ ଯିବା ।"

"ତାଙ୍କ ଘରକୁ ?"

"ହଁ, ଗ୍ଲ'କୁ ।"

"ମୁଁ ଇଷ୍ଟର୍‌ରେ ଯେଉଁ ପୋଷାକ ପିନ୍ଧି ଗିର୍ଜାକୁ ଯାଏ ତାକୁ ଇ ପିନ୍ଧିବ ।"

"ବଢ଼ିଆ, ବଢ଼ିଆ ଗୋ ମଲ୍ଲି କଢ଼ି !"

"ମାର୍ଗିକୁ ଡାକିଲି ବୋଲି ଗ୍ରଗି ନାହଁ ତ ?"

"ମୁଁ ତୁମକୁ ପ୍ରେମ କରେ, ଗୋ ସଖି !" ସତେ ପ୍ରେମ କରେ; ହୃଦୟର ସହିତ ପ୍ରେମ କରେ । ମଣିଷ ନିଜ ପତ୍ନୀ ପ୍ରତି ବିଶ୍ୱାସଘାତକ ହୋଇ କେତେ ତଳକୁ ଯାଇ ପାରେ ମନେ ପକାଇ ଚକିତ ହେଲି ।

# ପଞ୍ଚମ ପରିଚ୍ଛେଦ

ଏଲମ୍ ଷ୍ଟ୍ରୀଟ୍‌ରେ ଆସି ଆମ ଘରକୁ ପଡ଼ିଥିବା ରାସ୍ତା ଉପରେ ବଙ୍କେଇ ଘରମୁହାଁ ହେବାରେ, ମୋର ପୈତୃକ ଘର ଉପରେ ନଜର ପଡ଼ିଲା । ଆଜି ଏ ଘରଟା ମୋତେ ଅଲଗା ଜଣା ପଡ଼ୁଛି ! ଆଜି ମୁଁ ମନେ କରୁଛି, ଏହା ମୋର ନିଜସ୍ୱ । ମେଗିର ନୁହେଁ, କି ବାପାଙ୍କର ନୁହେଁ, କି ବୃଦ୍ଧ କପ୍ତାନ୍‌ଙ୍କର ନୁହେଁ—ଷୋଳ ପଣ ମୋ'ର । ବିକିଲେ ମୁଁ ବିକିବି, ପୋଡ଼ି ଧୂଳିସାତ୍ କରିଦେଲେ ମୁଁ କରିବି, ରଖିବି ବୋଇଲେ ମୁଁ ହିଁ ରଖିବି ।

ବାଡ଼ପଟ ସିଡ଼ିରେ ଦୁଇ ପାହାଚ ଉଠିଛି, କନା-କବାଟିଟା ଫଟ୍ କିନା ଫିଟିଲା ଓ ଷ୍ଟାଲେନ୍ ଉଭୁରିଲା ପରି ବାହାରି ପଡ଼ି ଚିତ୍କାର କଲା, "ପୀକ୍‌ସ୍ ଡବା କାହିଁ ? ମୁଁ କହିଥିଲି ପରା ପୀକ୍‌ସ୍ ଆଣିବା ପାଇଁ, ଆଣିନାହିଁ ?"

ମୁଁ କହିଲି 'ନା' । ବିସ୍ମୟର କଥା, ଘୋର ବିସ୍ମୟ—ଜିନିଷ ନ ଆସିଥିବାରୁ ମନ କଷ୍ଟରେ ସେ ବୋବେଇଲା ନାହିଁ, ମା'କୁ ଡାକି ମୁଁ ଜବାବଭ୍ରଷ୍ଟ ହେବା ଯୋଗୁଁ ପଡ଼ୁଚେଇଲା ନାହିଁ ।

ସେ କେବଳ 'ଓଃ' ବୋଲି କହିଲା ଓ ଧୀରେ ଧୀରେ ଚାଲିଗଲା ।

ତା' ପଛ ଆଡ଼କୁ ଚାହିଁ ମୁଁ କହିଲି, 'ନମସ୍ତେ'। ସେ ଠିଆ ହୋଇ 'ନମସ୍ତେ' ବୋଲି କହି ପୁଣି ଚାଲିଲା । 'ନମସ୍ତେ' ଶବ୍ଦଟା ସେ ଯେପରି ଉଚ୍ଚାରଣ କଲା, ଶୁଣି ମନେ ହେଲା, ଯେପରି ଗୋଟାଏ ବିଦେଶୀ ଶବ୍ଦ ନୂଆ କରି କହିବାକୁ ଶିଖୁଛି ।

ମେଗି ରୋଷେଇ ଘରକୁ ଆସି ମୋତେ ଦେଖି କହିଲେ, "ବାଳ କଟାଇଛ ପରା ।" ମୋ ଚେହେରାରେ କୌଣସି ପରିବର୍ତ୍ତନ ଦେଖିଲେ ସେ

ସାଙ୍ଗେ ସାଙ୍ଗେ ସିଦ୍ଧାନ୍ତ କରି ପକାନ୍ତି ଯେ, ମୁଁ ବାଳ କଟାଇଛି, କିମ୍ବା ମୋତେ ଜର ହୋଇଛି ।

ମୁଁ କହିଲି, "ନାଇଁ ଲୋ ସୁକେଶୀ, ବାଳ କଟାଇନାହିଁ ।"

"ଜାଣିଲ, ମୁଁ ଘର ସଜଡ଼ି ସଜଡ଼ି ଧଇଁସଇଁ ହୋଇ ଗଲିଣି ।"

"ସଜାସଜି କାହିଁକି ?"

"ତୁମକୁ କହିଥିଲି ପରା, ମାର୍ଗିକୁ ଖାଇବାକୁ ଡାକିଛି ।"

"ତା'ତ ଜାଣେ, କିନ୍ତୁ ଏଭଳି ଉତ୍ସବର ଆଡ଼ମ୍ବର କାହିଁକି ?"

"କେତେ କାଳ ହେଲା, କାହାକୁ ଖାଇବାକୁ ଡାକିଛେଁ ? ନୂଆ କଥାଟାକୁ ଟିକିଏ ସାଜସଜା ହେବ ନାଇଁ ?"

"ସତ କଥା ; ନିଘଞ୍ଚ ସତ କଥା ।"

"ତୁମେ ତୁମ କଳା ପୋଷାକଟା ପିନ୍ଧିବ ନା ?"

"ନା, ମୋ ସୁନ୍ଦର ଧଳା ପୁରୁଣା 'ଡବଲିନ୍' ପୋଷାକ ପିନ୍ଧିବି ।"

"କଳା ପୋଷାକଟା ପିନ୍ଧିଲେ କ୍ଷତି କ'ଣ ?"

"କାଲି ତାକୁ ପିନ୍ଧି ଚର୍ଚ୍ଚକୁ ଯିବି । ଆଜି ପିନ୍ଧିଲେ ଭାଙ୍ଗ ଭାଙ୍ଗିଯିବ ।

"ନା, ମୋର ସେଇ ପୁରୁଣା ଡବ୍ଲିନ୍‌ରେ ମନ । ସେପରି ସୁନ୍ଦର ପୋଷାକଟିଏ ଆମ ପଞ୍ଚାୟତ ଏରିଆରେ ବିରଳ ।

ପିଲାଙ୍କୁ ବଡ଼ ପାଟିରେ ଡାକି ସେ କହିଲେ, "ପିଲେ ! କିଛି ଘଣ୍ଟାଘଣ୍ଟି କରି ନାହିଁ । ମୁଁ କୋଳି ଥାଳିଆ ସବୁ ଟେବୁଲ୍‌ରେ ଥୋଇଛି । (ମୋ ଆଡ଼କୁ ଚାହିଁ) ତୁମେ କଳା ପୋଷାକଟା ପିନ୍ଧିବ ନାଇଁ ତେବେ ?"

"ନାଁ ।"

"ମାର୍ଗି ବଢ଼ିଆ ପୋଷାକ ପିନ୍ଧି ଆସିବେ ।"

"ମାର୍ଗି ମୋ ପୁରୁଣା 'ଡବଲିନ୍'କୁ ଭାରି ସୁଖ ପା'ନ୍ତି ।"

"ଜାଣିଲ କେମିତି ?"

"ସେ ମୋତେ କହିଛନ୍ତି ।"

"କଦାପି ନୁହେଁ ।"

"ଖବରକାଗଜର 'ସଂପାଦକଙ୍କୁ ଚିଠିପତ୍ର' ସ୍ତମ୍ଭରେ ଛପାଇ ଥିଲେ ।"

"ଟିକିଏ ଗାମ୍ଭୀର୍ଯ୍ୟ ରଖ । ସବୁବେଳେ ଖାଲି ଥଟ୍ଟା ପରିହାସ ! ମାର୍ଗି ପ୍ରତି ଭଦ୍ର ବ୍ୟବହାର କରିବ, ଜାଣିଲ ?"

"ମୁଁ ତାଙ୍କୁ ପ୍ରେମ ନିବେଦନ କରିବ ।"

"ତେବେ ତାଙ୍କ ଆସିବା ଉପଲକ୍ଷେ ତୁମେ କାଳିଆ ପୋଷାକଟା ପିନ୍ଧିବାକୁ ପସନ୍ଦ କରିବ ।"

"ଶୁଣ, ଫୁଲରାଣୀ ! ମୁଁ ଘରକୁ ଯେତେବେଳେ ଆସିଲି ସେତେ-ବେଳେ କ'ଣ ପିନ୍ଧିବି ସେ ବିଷୟରେ ତିଳେ ବି ଭାବି ନଥିଲି । ଦଶ ମିନିଟ୍ ଭିତରେ ତୁମେ ଏପରି ଅବସ୍ଥା ସୃଷ୍ଟି କଲଣି ଯେ, ସେଇ 'ଓଲଡ୍ ଡବ୍‌ଲିନ୍' ବ୍ୟତୀତ ଅନ୍ୟ କିଛି ପିନ୍ଧିବା ମୋ ପକ୍ଷରେ ଅସମ୍ଭବ ।"

"ଖାଲି କହ୍‌ରେ ତ !"

"ଅବଶ୍ୟ ।"

"ଯୁ୍ୟାଲେନ୍ ଯେଉଁ ସ୍ୱରରେ 'ଓଃ' ବୋଲି କହିଥିଲି, ମେଗିଠିକ୍ ସେ ସ୍ୱରରେ କହିଲେ, 'ଓଃ' ।

'ଖାଇବା ସାମଗ୍ରୀ କ'ଣ ? ଯେଉଁ ମାଂସ ହୋଇଥିବ ତା'କୁଇ ଯେମିତି ପରି ନେକ୍‌ଟାଇ ବାନ୍ଧିବ ।"

"ମୁରୁଗି ମାଂସର କବାବ୍ । ବାସନା ବାରି ପାରୁନାହଁ ?"

"ହଁ, ବାସ୍‌ନା ତ ହେଉଛି । ଆଚ୍ଛା, ମେଗି—" କିନ୍ତୁ ଆଉ ଆଗେଇଲି ନାହିଁ । ପ୍ରୟୋଜନ କ'ଣ ? ଗୋଟାଏ ଜାତିର ସ୍ୱଭାବକୁ ଜଣେ ବିଗୁରିଲେ କ'ଣ ଠିକ ପାରିବ ? ମେଗି ନିଶ୍ଚୟ ଯାଇଥିଲେ 'ସେଫ୍-ୱାଇଟ୍ ଷ୍ଟୋର୍'କୁ ; ତାଙ୍କ 'ଶସ୍ତା ମୁରୁଗି ଦିବସ'ର ସୁବିଧା ନେବାକୁ । ମ୍ୟାରୁଲ୍ୟାର ଦର ଅପେକ୍ଷା ଶସ୍ତା ପଡ଼ିଥିବ, କିନ୍ତୁ ମୁଁ ଆମ ଘରକୁ ଜିନିଷ ଆଣେ ପାଇକାରି ଦରରେ ନୁହେଁ, ବେପାରି ଦରରେ । ବହୁ ପଦାର୍ଥ ଏକାଠି ବିକୁଥିବା ଦୋକାନମାନଙ୍କର ଗ୍ରାହକ ଟାଣିବା ଫିସାଦ ମୁଁ ମେଗିଙ୍କୁ ବହୁତ ବୁଝାଇଛି । ଗୋଟାଏ କୌଣସି ଜିନିଷ ଶସ୍ତାରେ ମିଳିବ ବୋଲି ବିଜ୍ଞାପନ ମାରି ଦିଅନ୍ତି । ଏ ବିଜ୍ଞାପନ ପଢ଼ି ଲୋକେ ଦୋକାନକୁ ଧାଡ଼ି ଦିଅନ୍ତି । ସେଇ ଗୋଟିକ ଜିନିଷ ଶସ୍ତାରେ ମିଳେ ।

କିନ୍ତୁ ଗ୍ରାହକର ହାତ ପାଖେ ଆହୁରି ଅନେକ ପସରା ମେଲିଥାଏ, ଯାହାର ଦର ଶସ୍ତା ନୁହେଁ, ଓଲଟି ଶସ୍ତାରେ ଦିଆ ଯାଉଥିବା ଜିନିଷର କ୍ଷତିପୂରଣ ପାଇଁ ସେଗୁଡ଼ିକର ଦାମ ବଢ଼ାଇ ଦିଆ ଯାଇଥାଏ । ଶସ୍ତା ଜିନିଷ ପାଇଁ ଯାଇଥିବା ଗ୍ରାହକ ଏ ସବୁ ଜିନିଷ ଦେଖି ଲୋଭରେ ପଡ଼ି ଶସ୍ତା ସାଙ୍ଗେ ମହଙ୍ଗା ବି କିଣି ଆଣେ । ଏ କଥା ସମସ୍ତେ ଜାଣନ୍ତି, କିନ୍ତୁ ଜାଣିଲେ ବି ସେଇ ଫାନ୍ଦରେ ପଡ଼ନ୍ତି ।

ଏ ବିଷୟରେ ମେଗିଙ୍କୁ ମୋର ଉପଦେଶର, ପ୍ରସୂତି ଭବନରେ ମୃତ୍ୟୁ ହୋଇଛି । ନୂଆ ଏଥାନ୍ ଫ୍ରାଲେନ୍ ହେଲିଙ୍କୁ ମଧ୍ୟ ଜାଣିଶୁ ପ୍ରକୃତି ଧରିଲାଣି ଓ ଯେତେବେଳେ ପାରୁଛନ୍ତି ସେତେବେଳେ ଏଇ ଜାଣିଶୁ ମୂର୍ଖତାରେ ଭାଗ ନେଉଛନ୍ତି ।

ମେଗି କହିଲେ, "ମୋର ଆଶା, ମୁଁ ତୁମ ଦୋକାନରୁ ନ ଆଣିଲି ବୋଲି ମୋତେ ଅବଶ୍ୟ ବୋଲି ବିଚାରୁ ନାହଁ ।

"ପ୍ରିୟତମେ ! ଗୋଟାଏ ମୁରୁଗିର କିଣିବା ନକିଣିବା ଉପରେ କ'ଣ ପୁଣ୍ୟ ପାପର ମାପ ହେବ ।"

"ଭାରି ଶସ୍ତା ହୋଇଥିଲା ।"

"ଭଲ କଲ, ଗୃହକର୍ତ୍ରୀ ଯେଉଁ ପ୍ରକାର ବିଚାରବୁଦ୍ଧି ଦେଖାନ୍ତି ତୁମେ ତ ତାହାଇ ଦେଖାଇଛ ।"

"ତୁମେ ଥଟ୍ଟା କରୁଛ ।"

ଫ୍ରାଲେନ୍ ମୋ' ଶୋଇବା ଘରେ ମୋତେ ଅପେକ୍ଷା କରିଥାଏ । ମୋତେ ଦେଖି କହିଲା, "ମୁଁ ଆପଣଙ୍କ ନାଇଟ୍ ଟେମ୍ପଲର୍ ଖଣ୍ଡାଟା ଟିକିଏ ଧରନ୍ତି ।"

"ଆପତ୍ତି ନାହିଁ । ଗାଧୁଆ ଘର କୁଣରେ ତାହା ଅଛି ।"

ଖଣ୍ଡା କେଉଁଠି ରହେ ତା'କୁ ବେଶ୍ ଜଣା । ମୁଁ ମୋର ଲୁଗା-ପଟା ପାଲଟିଲା ବେଳକୁ ସେ ଚମଡ଼ା କେସ୍‌ରୁ ତା'କୁ ବାହାର କରି, କୋଷମୁକ୍ତ କରି ଉଲଗ୍ନ ତରବାରର ଉଜ୍ଜ୍ୱଳ ଧାରକୁ ଆଲୁଅକୁ ଟେକିଛି ଓ ଖଣ୍ଡା ଧରିଲେ ତା'ର ରୂପ କିପରି ଦିଶୁଛି, ଆଇନାରେ ଦେଖୁଛି ।

ମୁଁ ପଚାରିଲି, "ପ୍ରବନ୍ଧଲେଖା କେତେଦୂର ଗଲା ?"

"ଉଁ ?"

"କ'ଣ ପଗ୍ଉରଲେ ମୁଁ ଶୁଣି ପାରିଲି ନାହିଁ, ମୋତେ କ୍ଷମା କରନ୍ତୁ, ଆଜ୍ଞା'—'ଉଁ' ର ଏଇ ଅର୍ଥ ବୋଧହୁଏ ?"

"ଆଜ୍ଞା, ହଁ।"

"ମୁଁ ପଗ୍ଉରିଲି, ପ୍ରବଂଧ ଲେଖା କେତେଦୂର ଗଲ୍ଲ ?"

"ଓଃ, ବେଶ୍ ଗ୍ଲିଲିଛି।"

"ଭଲ ହେବ ଟି ?"

"ନିଶ୍ଚୟ।"

"ନିଶ୍ଚୟ ?"

"ନିଶ୍ଚୟ, ଆଜ୍ଞା।"

"ନାଇଟ୍ ଟେମ୍ପଲର୍ ଟୋପିଟା ଦେଖିବୁ ଯେବେ ଦେଖେ। ଥାକ ଉପରେ ବଡ଼ ଚମଡ଼ା କେସ୍‌ରେ ଅଛି। ପରଗୁଡ଼ାକ ହଳଦିଆ ପଡ଼ିଗଲ୍ଲଣି।"

"ସିଂହ-ଗୋଡ଼ିଆ ବଡ଼ ଟବ୍ ଭିତରେ ମୁଁ ପଶିଲି। ସେ କାଳରେ ଗାଧୁଆ-ସୁଖ ଅନୁଭବ କରିବେ ବୋଲି ଟବ୍‌ଗୁଡ଼ାକ ଏଡ଼କ ବଡ଼ କରିଥିଲେ। ମୋ' ଦେହରୁ ମ୍ୟାକ୍ରୁଲେଙ୍କ ଦୋକାନର ମଇଳା ଓ ଦିନ ତମାମର ଝାଳନାଳ ଗୋଟାଏ ବ୍ରୁସ୍ ଧରି ଛଡ଼ାଇଲି ଓ ଦର୍ପଣ ନ ଦେଖି ସେଇ ଟବ୍ ଭିତରେ ବସି ଖିଅର ହେଲି; ଆଙ୍ଗୁଠି ଅଗରେ ଦାଢ଼ି ଓ ନିଶ ବାରି ବାରି ଖୁର ଚଳାଉଥାଏ। ଏଭଳି ଖିଅର ହେବା ଅତି ପୁରୁଣାକାଳିଆ ଓ କ୍ଷୟିଷ୍ଣୁ ଦୁରଭ୍ୟାସ ବୋଲି ସମସ୍ତେ କହିବେ। କାଳ କୁଣ୍ଡାଇଲି ବେଳେ ମୁହଁକୁ ଗ୍ହିଁଲି। ବହୁଦିନ ହେଲ୍ଲ ମୁଁ ମୋ ମୁହଁକୁ ଦେଖି ନଥିଲି। ମୁଖର ସୌନ୍ଦର୍ଯ୍ୟ ବିଷୟରେ ଅତି ଆକାଂକ୍ଷୀ ନହେଲେ, ମୁହଁ ନ ଦେଖି ପ୍ରତିଦିନ ଖିଅର ହେବା ଖୁବ୍ ସଂଭବ। ଖାଲି ଚମଡ଼ାରେ ସୌନ୍ଦର୍ଯ୍ୟ ନାହିଁ, ଅସଲ ସୌନ୍ଦର୍ଯ୍ୟ ମନ ଭିତରେ। ଜୀବନରେ ଯଦି ମୋତେ ଉନ୍ନତି କରିବାକୁ ହେବ ତେବେ ଶେଷୋକ୍ତ ସୌନ୍ଦର୍ଯ୍ୟଟା ହିଁ ଦରକାର। ମୋ ମୁହଁଟା ସେପରି କିଛି କୁତ୍ସିତ ନୁହେ। କିନ୍ତୁ ମୁଁ ମୁହଁର ଚେହେରାକୁ ପସନ୍ଦ କରେ ନାହିଁ, ନିଜ ମୁହଁ ଦେଖିବାକୁ ମଧ୍ୟ ମୋତେ ସୁଖ ଲାଗେ ନାହିଁ। ଦର୍ପଣକୁ ଗ୍ହିଁ ହ' ଗ୍ଉରିଟା ମୁଖଭଙ୍ଗୀ କରି ସେଥିରୁ ବିରତ ହେଲି। ସେ ଭଙ୍ଗୀରେ

ମହତ୍ତ୍ୱ ନଥିଲା କି ନୃଶଂସତା ନଥିଲା, ଗର୍ବ ନ ଥିଲା କି କୌତୁକ ନଥିଲା । ସେଇ ସବୁବାଣୀଆ ମୁହଁ କେତୋଟା ମାମୁଲି ମୁଖଭଙ୍ଗୀ କରୁଥିଲା ମାତ୍ର ।

ମୋ ଶୋଇବା ଘରକୁ ଫେରି ଗୃହିଁଲି, ସ୍ୱାଲେନ୍ ଓଟପକ୍ଷୀପର-ଖଚିତ ନାଇଟ୍‌ଟେମ୍ପଲର୍ ଟୋପିଟା ମୁଣ୍ଡରେ ପିନ୍ଧିଛି—ମୋ'ର ପିନ୍ଧିଲା ବେଳେ ମୁଁ ଯଦି ଏଇପରି ଭେସଡ଼ା ଦିଶୁଥିବି ତେବେ ନାଇଟ୍-ଟେମ୍ପଲର୍ ସଂଘରୁ ସାଙ୍ଗେ ସାଙ୍ଗେ ଇସ୍ତଫା ଦେଇଦେବା ଉଚିତ । ଟୋପିର ଚମଡ଼ା ବାକ୍‌ସଟା ଖୋଲା ହୋଇ ତଳେ ପଡ଼ିଥାଏ । ବାକ୍‌ସ ଭିତରେ ଟୋପି ରଖିବାକୁ ଭେଲଭେଟ୍-ଗୁଣ୍ଠିତ କାର୍ଡ଼ବୋର୍ଡ଼ ଫର୍ମାଟିଏ ଅଛି—ଖିର ଥାଳିଆକୁ ଓଗୁଡ଼େଇ ରଖିଲେ ଯେପରି ଦିଶେ, କାର୍ଡବୋର୍ଡ଼ ଫର୍ମାର ସେଇଆକୃତି ।

"ଟୋପି ଉପରର ଓଟପକ୍ଷୀ ପରଗୁଡ଼ିକ ସଫାକରି ହେବ କି ନାହିଁ କେଜାଣି ? ଯଦି ନ ହୁଏ ତେବେ ଗୋଟାଏ ନୂଆ ଟୋପି କିଣିବାକୁ ପଡ଼ିବ ।"

"ଆପଣ ନୂଆ ଟୋପି କିଣିଲେ, ମୁଁ ଏଇଟା ନେଇ ପାରିବି ?"

"ଆପତ୍ତି କ'ଣ ? ଆଚ୍ଛା, ଏଲେନ୍ କାହିଁ ? ତା' ଶିଁ ଶିଁ ସ୍ୱର ତ ଆସିଲା ବେଳୁ ଶୁଣି ନାହିଁ !"

"ସେ ତା' 'ମୁଁ ଆମେରିକାକୁ ଭଲ ପାଏ'—ପ୍ରବନ୍ଧ ଲେଖିବାରେ ଲାଗିଛି ।"

"ଆଉ ତୁ ?"

"ମୁଁ କ'ଣ ଲେଖିବି ଭାବୁଛି । ପ୍ଲିକ୍‌ସ୍ ଡ଼ବା କେତେଟା ଘରକୁ ଆଣିବେ ?"

"ହୁଏତ ମୁଁ ପାସୋର ଦେଇ ପାରେ । ତୁ ଦିନେ ଷ୍ଟୋର୍‌ରେ ଯାଇ ପସନ୍ଦ କରି ନିଜେ ଆଣୁ ନାହୁଁ ?"

"ବହୁତ ଆଚ୍ଛା ! ଆଜ୍ଞା, ଗୋଟାଏ କଥା ପଚାରିବି ?"

"ପଚାରିଲେ ତ ମୋ' ପ୍ରତି ଅନୁଗ୍ରହ କରୁଛୁ ବୋଲି ବୁଝିବି ?"

"ହାଇ ଷ୍ଟ୍ରୀଟ୍‌ରେ ପୂର୍ବ ଦୁଇ ସାହାଲା ଘର ଆମର ଥିଲା ?"

"ହଁ, ଥିଲା ।"

"ପୁଣି ଆମର ତମି ଶିକାଗ୍ ଜାହାଜ କେତୋଟା ଥିଲା ?"

"ହଁ ।"

"ଆଚ୍ଛା, ଆଜକାଲି ସେ ସବୁ ଆମର ନାହିଁ କାହିଁକି ?"

"ଆମେ ସେସବୁ ବିକି ଭାଙ୍ଗି ଦେଲେ ।"

"କାହିଁକି ?"

"ଅଭାବ ପଡ଼ିଲା, ସମ୍ପତ୍ତି ଗଲା ।"

"ବେଶ୍ ରହସ୍ୟ ତ !"

"ସବୁ ଘଟଣାକୁ ବ୍ୟବଚ୍ଛେଦ କଲେ, ଦେଖିବୁ, ସେଥି ଏକ ଗୁରୁ-ଗମ୍ଭୀର ରହସ୍ୟ ।"

"ଆମେ ସ୍କୁଲରେ ଗୋଟାଏ ବେଙ୍ଗର ବ୍ୟବଚ୍ଛେଦ କରୁଛୁ ।"

"ତମକୁ ତ ମଜା ଲାଗୁଥିବ । କିନ୍ତୁ ବେଙ୍ଗକୁ ନୁହେଁ । ଆଚ୍ଛା, ଏ ଦୁଇଟି ସୁନ୍ଦର ନେକଟାଇରୁ ମୁଁ କେଉଁଟା ପିନ୍ଧିବି, କହିଲୁ ?"

ଟିକିଏ ବି ଆଗ୍ରହ ନ ଦେଖାଇ ସେ ଶୃଙ୍ଖଳରେ ଉତ୍ତର ଦେଲା, "ନେଲି ଟାଇଟା । ଆଚ୍ଛା, ପୋଷାକ ପିନ୍ଧି ସାରିଲା ପରେ, ଆପଣ ଟିକିଏ ଯିବେ—ଆପଣଙ୍କୁ ବେଳ ହେବ ପକା ଉପର ଠୁଙ୍ଗିକୁ ଯିବାକୁ ?"

"ସେପରି ଯଦି ଜରୁର୍ କାମ ଥାଏ, ତେବେ ସମସ୍ତ ବାହାର କରିବି ।"

"ଟିକିଏ ଆସିବେ କିଶ୍ଚେ ?"

"ହଁ, ଯିବି ନିଶ୍ଚୟ ।"

"ତେବେ ମୁଁ ଉପରକୁ ଯାଇ ଆଲୁଅ ଜାଳୁଛି ।"

ଠୁଙ୍ଗୀ ଉପରକୁ ଯାଇଥିବା, ଦରି ନ ପଡ଼ିଥିବା ପାହାଚରେ ତା'ର ପାଦର କ୍ଷୀଣ ଆଁବାଜ ଶୁଭୁଥାଏ ।

ବେକରେ ବୋ-ଟାଇ ବାନ୍ଧିଲା ବେଳେ, ଯଦି ସେ କାର୍ଯ୍ୟରେ ଧ୍ୟାନ ହଏ, ତେବେ ଟାଇଟା ବାନ୍ଧିବାରେ କଷ୍ଟ ହୁଏ, ତାହା ହାତରୁ ଖସି ଯାଉଥାଏ, କିନ୍ତୁ ମନରେ ଅନ୍ୟ କଥା ଭାବି, କେବଳ ଆଙ୍ଗୁଠି ଉପରେ ଯଦି ଟାଇ ବାନ୍ଧିବା କାମ ଛାଡ଼ି ହଏ ତେବେ ତତ୍‌କ୍ଷଣାତ୍ ଠିକ୍ ଭାବେ ଟାଇ ବାନ୍ଧି ହୋଇଯାଏ । ତେଣୁ ଆଙ୍ଗୁଠି ଉପରେ ସେ କାମ ଛାଡ଼ି ଦେଇ, ମୁଁ ପୈତୃକ ହୋ'ଲି ନିବାସ—ବର୍ତ୍ତମାନ ମୋର—ଓ ତହିଁର ଉପରେ ଥିବା ଠୁଙ୍ଗି ବିଷୟ ଚିନ୍ତା କରିବାରେ ମନକୁ ଲଗାଇ

ଦେଲ । ଏ [illegible]ଙ୍ଗିଟି ଭଙ୍ଗାରୁଜା ଆବର୍ଜନାର କଏଦଖା ଘର ନୁହେଁ । ଏ ଘରର ଝର[illegible]ଗୁଡ଼ିକର ଛୋଟ ଛୋଟ କାଚପଟଗୁଡ଼ିକ ବହୁଦିନର ପୁରୁଣା ହୋଇ[illegible]ଯିବାରୁ ଲଭେଣ୍ଡର ଫୁଲ ପରି ହରିତାଭ ହୋଇଗଲାଣି; ତା'ଭିତରେ ଆସୁଥିବା ଆଲୁଅ ଡେଉଳିଆ ଦିଶୁଥାଏ—ତା'ଭିତରୁ ଚାହିଁଲେ ପାଣି ଭିତରେ ଚାହିଁଲା ପରି ବାହାରଟା ସୁନ୍ଦର ଦିଶେ । ଝୁଙ୍ଗିରେ ଯେଉଁ ବସ୍ତୁଗୁଡ଼ିକ ଅଛି ତାହା ଫୋପଡ଼ା ହେବାକୁ ଥୁଆ ହୋଇ ନାହିଁ କି ନାଟକ ଅନୁଷ୍ଠାନକୁ ଦାତବ୍ୟରେ ବିତରଣ କରିବାର କଳ୍ପନା ନାହିଁ । ସେଗୁଡ଼ିକ ସବୁ ଥାକମାନଙ୍କରେ ସଜ୍ଜିତ ହୋଇ ରହିଛନ୍ତି ; ବେଳ ମିଳିଲେ ପୁଣି ଆବିଷ୍କୃତ ହେବେ ବୋଲି । କେତୋଟି ଚଉକିର ପିଠି ଚିରିଗଲାଣି ଓ ଆଉ କେତୋଟି ଆଜକାଲର ରୁଚି-ବହିର୍ଭୂତ ହେଲେ ହେଁ, ସବୁଗୁଡ଼ିକ ଚଉକି ବଡ଼ ଓ କୋମଳ । ଝୁଙ୍ଗି ଘରଟି ମଇଳା, ଅପରିଚ୍ଛନିଆଁ ବି ନୁହେଁ । ଘର ସଫା ହେଲା ବେଳେ ଏ ଝୁଙ୍ଗିଟି ମଧ୍ୟ ସଫା ହୁଏ ; ପୁଣି ପ୍ରାୟ ସବୁବେଳେ ଏ ଘର ବନ୍ଦ ରହୁଥିବାରୁ, ଧୂଳି ଫୁଳି ଯା ଭିତରେ ପଶିପାରେ ନାହିଁ । ମନେ ପଡ଼େ, ପିଲାଦିନେ, ମନ-ଦୁଃଖରେ ବିବଶ ହୋଇ ବା ଦୁଶ୍ଚିନ୍ତାରେ ହାଲିଆ ହୋଇ, ଏଇ ଝୁଙ୍ଗିରେ ପଶିଯାଏଁ ; ଓ ବହୁମୂଲ୍ୟ ପୁସ୍ତକମାନଙ୍କ ଭିତରେ ପଶି, ଲଭେଣ୍ଡର ଫୁଲ ପରି ବାଇଗଣି ଆଲୁଅରେ ଯାଇ ଗୋଟିଏ ବଡ଼ ଚଉକିରେ ବସି ପଡ଼େ—ବହୁକାଳ ଏ ଚଉକିରେ ମଣିଷ ବସି ବସି ଏହା ଖାଲୁଆ ହୋଇ ଯାଇ-ଥାଏ । ସେଇଠାରେ ବସି ମୁଁ ଛାତର କଡ଼ିକୁ ଚାହିଁ ରହେ । ଏ କଡ଼ି-ଗୁଡ଼ିକ ବାରସିରେ ଚାଞ୍ଛି ଚଉକୁଣିଆ ହୋଇଛି—କରତରେ ନୁହେଁ । କଡ଼ି-ଗୁଡ଼ିକ ପରସ୍ପର ସଙ୍ଗେ ବରଗାରେ କପରି ସଂଲଗ୍ନ ହୋଇଛନ୍ତି ଓ ଓକ୍-କାଠର ଗଣ୍ଠିଆ ଦିଆ ହୋଇ କିପରି ଟାଇଟ୍ କରା ହୋଇଛନ୍ତି—ତାହା ଦେଖୁଥାଏ । ଟିପି ଟିପି ବର୍ଷା ହେଉ ହେଉ ଟାଣ ଅସରା ପଡ଼ି ଛାତରେ ସରସର ହେଲା ବେଳେ ବି ଏଠାରେ ମୁଁ ନିରାପତ୍ତା ଅନୁଭବ କରେ । ବାଇଗଣି ଆଲୁଅରେ ଚିତ୍ରିତ ହୋଇଥିବା ପୁସ୍ତକଗୁଡ଼ିକୁ ଚାହିଁ ସାହସ ପାଏ । ସବୁ ପ୍ରକାର ବସ୍ତୁ ଏ ଝୁଙ୍ଗିରେ ସାଇତା ହୋଇଛନ୍ତି । ପିଲାଙ୍କ ଶିଶୁ ବସ୍ତ୍ର—ଯେଉଁ ପିଲାଙ୍କ ପାଇଁ ଏହା କିଣା ହୋଇଥିଲା ସେମାନେ ବଡ଼ ହୋଇ କୋଉ କାଳୁ ବିଦାୟ ନେଇ ଗଲେଣି ; ରହସିଆ ଓ କୌତୁକିଆ

ବନ୍ଧି; ହରେକ ରକମ ଦୈବୀବିପଦର ବର୍ଣ୍ଣନା—ଦାବାଗ୍ନି, ବନ୍ୟା, ସମୁଦ୍ର-ଉଚ୍ଛ୍ୱାସ ଓ ଭୂମିକମ୍ପ—ଏ ସବୁର ସରସ ବିବରଣୀ, ହ୍ୟାନ୍ସ୍ କ୍ରୀଶ୍ଚିୟାନ୍ ଯ୍ୟାଣ୍ଡର୍ସନ୍ଙ୍କର ହୃଦୟ-ବିଦାରକ ଗଳ୍ପାବଳୀ ; ଗ୍ରୀମ୍ ଭ୍ରାତୃଦ୍ୱୟଙ୍କ ଭୟାନକ ଓ ଦାରୁଣ ଗଳ୍ପଗୁଚ୍ଛ ; ମ୍ୟାଲୋରିଙ୍କ ମହାସ୍ୱାନ୍ ମୋର୍ଟ ଡା' ଆର୍ଥର୍—ଅବ୍ରି ବେୟାର୍ଡ୍ସ୍ଲୀଙ୍କ ହାତର ଚିତ୍ର-ଶୋଭିତ— ବିରାଟ ସୁପୁରୁଷ ମ୍ୟାଲରିଙ୍କ କୃତିକୁ ଦୁର୍ବଳ, କ୍ଷୀଣକାୟ ବେୟାର୍ଡ୍ସ୍ଲୀଙ୍କ ଚିତ୍ର । ବିଚିତ୍ର ସଂଯୋଗ

ହ୍ୟାନ୍ସ୍ ଯ୍ୟାଣ୍ଡର୍ସନ୍ ବାସ୍ତବିକ୍ କେଡ଼େ ବିଜ୍ଞ ପଣ୍ଡିତ ! ଏକଥା ମୁଁ ବହୁବାର ବିଚାରିବାର ମନେ ପଡ଼ୁଛି । ରଜା ତାଙ୍କର ଗୁପ୍ତ କଥା ସବୁ ଗୋଟିଏ କୂଅକୁ ମୁହଁ ପୋତି କହନ୍ତି— କଥା ଫିଟିଯିବାର ଆଶଙ୍କା ନ ଥାଏ । ମଣିଷ ବିଶ୍ୱାସ କଥା କହିଲା ବେଳେ, ବା ଗଳ୍ପ କହିଲା ବେଳେ, କାହାକୁ କହୁଛି ସେ କଥା ଆଗରୁ ବୁଝି ସାବଧାନ ହେବା ଦରକାର । କାରଣ, କଥା ଓ ଗଳ୍ପର ଅର୍ଥ ଭିନ୍ନ ଭିନ୍ନ ଶ୍ରୋତା ଓ ପାଠକମାନଙ୍କୁ ଭିନ୍ନ ଭିନ୍ନ ଜଣାଯାଏ । ପାଠକମାନେ ତାଙ୍କ ରୁଚି ଓ ସାମର୍ଥ୍ୟକୁ ଗୃହିଁ କଥାରୁ ସାର ଗ୍ରହଣ କରନ୍ତି; ତେଣୁ କଥାର ରୂପ ପ୍ରତି ପାଠକଙ୍କ ରୁଚି ଓ ସାମର୍ଥ୍ୟ ଅନୁସାରେ ବଦଳି ବଦଳି ଯାଏ । କେହି କେହି, କଥାର କେତେକାଂଶ ଗ୍ରହଣ କରି ବାକିତକ ଅଗ୍ରାହ୍ୟ କରିଦିଅନ୍ତି ; କେହି କେହି ନିଜ ମନର ପ୍ରତିଷ୍ଠିତ ଭାବର ମାନଦଣ୍ଡରେ କଥାର ମହତ୍ତ୍ୱ ପରୀକ୍ଷା କରନ୍ତି ; ଓ କେହି କେହି ନିଜ ମନର ଆନନ୍ଦରେ କଥାକୁ ରଞ୍ଜିତ କରି ତାହାର ଦୋଷଗୁଣ ପ୍ରତି ଅନ୍ଧ ହୋଇଯା'ନ୍ତି । ପ୍ରତି କଥା ବା ଗଳ୍ପର, ପ୍ରତ୍ୟେକ ପାଠକର ମନରେ ସଂବେଦନା ଆଣିବା ଭଳି ସାମଗ୍ରୀ ଦରକାର; ନ ହେଲେ, ସେଥିରେ ସେ ମଜ୍ଜିବ କାହିଁକି ? ମଜ୍ଜିଲେ ଯାଇ ସେ କଥାର ସୌନ୍ଦର୍ଯ୍ୟ ଉପଲବ୍ଧି କରିପାରିବ ସିନା ! ମେରୀଙ୍କୁ ମୁଁ ଯେଉଁ କଥା ଯେପରି ଭାବରେ କହେ, ୟାଲେନ୍କୁ ତାହା ସେପରି ଭାବରେ କହିଲେ ୟାଲେନ୍ ତା'ର ମୂଲ୍ୟ ବୁଝିପାରିବ ନାହିଁ ; ତା'ପାଇଁ ଗଳ୍ପକୁ ଭିନ୍ନ ଛାଞ୍ଚରେ ପକାଇବାକୁ ହେବ । ମେରୀଙ୍କୁ କହିବା ଗଳ୍ପ ପୁଣି ମ୍ୟାରୁଲେଙ୍କ ମନକୁ ଘେନିବା ସକାଶେ ଆହୁରି ସ୍ୱତନ୍ତ୍ର ରୂପରେ ରୂପାୟିତ ହେବାକୁ ପଡ଼ିବ । କିନ୍ତୁ ଯ୍ୟାଣ୍ଡର୍ସନ୍ଙ୍କ କୂଅକୁ କୁହା ହୋଇଥିବା କଥାରେ ଏ ସବୁ ଭିନ୍ନ

ରୂପ ଓ ଭିନ୍ନ ରଙ୍ଗର ପ୍ରୟୋଜନ ନାହିଁ । କୂଅ, କଥାଟି ଶୁଣିଲା, ପ୍ରତି-ଧ୍ୱନିଟିଏ ଶୁଣାଇଲା —ବେଶ୍, ସେତିକରେ ସବୁ ସ୍ଥିର, ନିଶ୍ଚଳ ।

ମୋର ମନେ ହୁଏ ଆମେ ସମସ୍ତେ, ନ ହେଲେ ବି ଅଧିକାଂଶ, ଊନବିଂଶ ଶତାବ୍ଦୀର ବାଲିଡର ଉପାସକ । ସେ ଶତାବ୍ଦୀର ବିଜ୍ଞାନ, ଯାହା ଦେଖି ପାରୁ ନ ଥିଲା, ମାପି ପାରୁ ନ ଥିଲା ବା ପ୍ରମାଣ କରି ପାରୁ ନ ଥିଲା, ସେ ସବୁର ଅସ୍ତିତ୍ୱ ଏକାବେଳକେ ଅସ୍ୱୀକାର କରି ଦେଉଥିଲା । ଆମେ ଯାହା ପ୍ରମାଣ କରି ନ ପାରିଲେ, ତାହାର ସତ୍ତା ଥିଲେ ବି ଆମେ ତାହାକୁ ଆମର ସମର୍ଥନ ଜଣାଇବାକୁ ପ୍ରସ୍ତୁତ ନ ଥିଲେ ; ଯାହା ବୁଝି ପାରୁ ନଥିଲେ, ତା'କୁ ଗ୍ରହଣ କରିବାକୁ ବି ରାଜି ହେଉ ନ ଥିଲେ । ଫଳତଃ ଜଗତ୍‌ର ବହୁ ଅଂଶ ପିଲାଙ୍କ ଖେଳ, ପାଗଳଙ୍କ ପ୍ରଳାପ, ମୂର୍ଖଙ୍କ ବାଗ୍‌ବଳତା ଓ ରହସ୍ୟ-ବାଦୀଙ୍କ କୁସଂସ୍କାରର ଆଖ୍ୟା ପାଇ ଅବଜ୍ଞାତ ହୋଇଥିଲା । ରହସ୍ୟବାଦୀ ଦାର୍ଶନିକ, ପିଲାଙ୍କ ପରି, ଯାହା ଦେଖୁଥିଲେ ସେଥିରେ ବିଭୋର ହୋଇ, ତାହା କାହିଁକି ସେପରି ହୋଇଛି ନିରୀକ୍ଷା କରିବାକୁ ନିଷ୍ପ୍ରୟୋଜନ ମନେ କରୁଥିଲେ । ବାସ୍ତବିକ୍, ଜଗତର ଅଜ୍ଞାତ ଗୁମ୍ଫମାନଙ୍କରେ ଏପରି ଅନେକ ସୁନ୍ଦର ଓ ସନାତନ ରହସ୍ୟ ଲୁଚି ରହିଛି, ଯାହାକୁ ଆମେ ଅବଜ୍ଞା କରିଥାଉଁ, ଯଦିଓ ତାକୁ ଏକାବେଳକେ ଅସତ୍ୟ ବୋଲି ଫୋପାଡ଼ି ଦେବାକୁ ଆମର ସାହସ ନାହିଁ ।

ଟର୍ଚ୍ଚିରେ ଘରର କଡ଼ରୁ, ଗୋଟିଏ ବୋଲି ତାକୁଣି ନ ଥିବା ଇଲେକ୍‌ଟ୍ରିକ୍ ଆଲୁଅ ଓହଳା ଘରଟିକୁ ଆଲୋକିତ କରୁଛି । ଚଟାଣ ହୋଇଛି ବାରସିରେ ହାଣି ତିଆରି ହୋଇଥିବା ପଟାରେ—ପ୍ରତ୍ୟେକ ପଟା କୋଡ଼ିଏ ଇଞ୍ଚ ଓସାର ଓ ଦୁଇ ଇଞ୍ଚ ମୋଟା—ସୁସଜ୍ଜିତ ଟ୍ରଙ୍କ ଓ ବାକ୍‌ସଗୁଡ଼ିକ, ଲ୍ୟାମ୍ପ ଓ ଗ୍ରହନା ଗାମଲା ପ୍ରଭୃତି ସବୁ ପ୍ରକାର ବିଳାସିତ ସୌଖିନ ଜିନିସର ଘର ସଂଭାଳିବାକୁ ଯଥେଷ୍ଟ । ଖୋଲା ସେଲ୍‌ଫରେ ଥିବା ସୁନ୍ଦର ଓ ସୁପରିଷ୍କୃତ ପୁସ୍ତକମାନଙ୍କରେ ଇଲେକ୍‌ଟ୍ରିକ୍ ବଲ୍‌ବ୍‌ର ମୃଦୁ ଆଲୋକ ପଡ଼ୁଥାଏ । ମୋ ମେଷ ଧୂଳିଧୂଳା ବିବୁଦ୍ଧିରେ ଲଢ଼େଇ କରିବାରେ ନିଷ୍କରୁଣ ଯେପରି, କଠୋର ସେହିପରି ; ହେଡ୍ ସର୍ଜେଣ୍ଟ ଚରି ସେ ପରିଷ୍କାର ପରିଚ୍ଛନ୍ନତାର ପକ୍ଷପାତୀ । ପୁସ୍ତକ, ଆକାର ଓ ମଲାଟର ରଙ୍ଗ ଅନୁସାରେ ସଜ୍ଜିତ ।

ସ୍ମାଲେନ୍ ଗୋଟିଏ ବହି-ସେଲ୍‌ଫରେ ମୁଣ୍ଡ ଭର ଦେଇ ଚଳ ଥାକର ବହିମାନଙ୍କୁ ଅନେଇ ଥାଏ । ଡାହାଣ ହାତରେ ନାଇଟ୍ ଟେମ୍ପ୍-ଲର ଖଣ୍ଡାର ମୁଠାକୁ ଧରିଥାଏ, ଖଣ୍ଡାର ମୁନକୁ ବାଡ଼ ଧଇଲା ପରି ତଳ ମୁହାଁ କରିଥାଏ ।

"ଯଥାର୍ଥ ଠାଣିରେ ଠିଆ ହୋଇଛୁରେ, ପୁଅ ! ଯୌବନ, ଯୁଦ୍ଧ ଓ ବନ୍ଧ୍ୟା, ସବୁର ପ୍ରତୀକ ହୋଇଛୁ ତୁ !"

"ମୁଁ ଆପଣଙ୍କୁ ପଚାରିବାକୁ ଅପେକ୍ଷା କରିଛି—ଆପଣ ପରା କହୁଥିଲେ, ମୋ ପ୍ରବନ୍ଧର ସାମଗ୍ରୀ ଥିବା ଭଳି ବହି ଏଠି ଅଛି ।"

"କ ପ୍ରକାର ସାମଗ୍ରୀ ?"

"ପ୍ରବନ୍ଧ ପାଇଁ ଉପଯୁକ୍ତ ଦେଶପ୍ରେମର ମାଲ ମସଲା ।"

"ହୁଁ, ଦେଶପ୍ରେମର ମାଲମସଲା ! ଆଚ୍ଛା ! ଶୁଣିଲୁ, ସେ କେମିତି ଲାଗୁଛି—'ପରାଧୀନତାର ଶୃଙ୍ଖଳ ଓ ଦାସତ୍ୱବନ୍ଧନକୁ ସ୍ୱୀକାର କରି ଜୀବନ ରଖିବା, ଶାନ୍ତିରେ ରହିବାକୁ ଆକାଂକ୍ଷା କରିବା ? ଏଭଳି ଜୀବନ କ'ଣ ଏତେ ଲୋଭନୀୟ, ଏଭଳି ଶାନ୍ତି କ'ଣ ଏତେ ଆଦରର ବସ୍ତୁ ? ଭଗବାନ୍ ଏଭଳି ଦୁର୍ଗତିରୁ ରକ୍ଷା କରନ୍ତୁ । ଇତର ଲୋକେ କ'ଣ ଗ୍ରହଣ କରନ୍ତି ମୋତେ ଜଣାନାହିଁ । କିନ୍ତୁ ମୁଁ ଚାହେଁ, ସ୍ୱାଧୀନତା; ସ୍ୱାଧୀନତା ନ ମିଳିଲେ ମୋ' ପକ୍ଷରେ ମୃତ୍ୟୁ ସ୍ପୃହଣୀୟ ।"

"ବାଃ, ବଢ଼ିଆ ମାଲ !"

"ନିଶ୍ଚୟ, ନିଶ୍ଚୟ ! ସେକାଳରେ ଆମ ଦେଶରେ ବିରାଟ ପୁରୁଷ-ମାନେ ଜନ୍ମଗ୍ରହଣ କରିଥିଲେ !"

"ସେଇ ସମୟରେ ଜନ୍ମ ପାଇଥାନ୍ତି ବୋଲି ମୋ'ର ମନ ହେଉଛି । ଜଳଦସ୍ୟୁ ହୋଇ ଜାହାଜରେ ପଇଁତରା ମାରିଥାନ୍ତି । ସାବା-ସ୍‌ରେ ଟୋକା ! ଛୁଟା । ପତାକା ତୁମର ଉଡାର ! ଡାଳ ଡାଳ କରି ସୁନା, ରେଶମ ଶାଢ଼ୀ ଓ ନାନାବିଧ ଅଳଂକାର ପିନ୍ଧିଥିବା ମାଇକିନିଆ ମୋର ହୁଅନ୍ତେ । ଆଃ, ସେ ସମୟରେ ଜନ୍ମ ହୋଇଥାନ୍ତି ହେଲେ ! ଆମ ଦେଶର ଲୋକେ ଏ ଭାଗ୍ୟର ଅଧିକାରୀ ହୋଇଥିଲେ ପରା ? ଆପଣ ତ ନିଜେ କହୁଥିଲେ !"

"ହଁ, ଏମାନେ ଥିଲେ ଗୋଟାଏ ରକମର ଭଦ୍ର ଜଳଦସ୍ୟୁ । ସରକାରୀ ନୌ-ବାହିନୀଭୁକ୍ତ ନ ହେଲେ ହେଁ ଏମାନେ ବେସରକାରୀ ନୌସୈନିକ ହୋଇ ସରକାରଙ୍କ ନିର୍ଦ୍ଦେଶରେ ଶତ୍ରୁର ଜାହାଜକୁ ଲୁଟି କରୁଥିଲେ । କିନ୍ତୁ ଏତେ ଦୂରରୁ ତାଙ୍କ କାମ ଯେତେ ସୁଖକର ଥିଲା ବୋଲି ବିଚାରୁଛୁ, ତାହା ସେପରି ସୁଖକର ନ ଥିଲା । କେବଳ ଗୋମାଂସ ଶୁଖୁଆ ଓ ବିସ୍କୁଟ୍ ଖାଇ ସେମାନେ ଜାହାଜରେ ବଂଚୁଥିଲେ । ସେ କାଳର ପୁଣି ଖାଦ୍ୟାଭାବରେ ଉତ୍କଟ ରୋଗ ହେଉଥିଲା ।"

"ରୋଗକୁ ବା ଖାଦ୍ୟ ଅଭାବକୁ ମୋର ପରୁଆ ନାହିଁ । ମୁଁ ସୁନା ଲୁଟି କରି ଘରକୁ ଆଣନ୍ତି ତ ! ଆଜିକାଲି ଏପରି କରିବାକୁ ଅନୁମତି ମିଳନ୍ତା କି ?"

"ଆଜିକାଲି ଏ କାମ ଚାଲୁଛି ଯେ—ବେଶ୍ ଚାଲୁଛି ; କିନ୍ତୁ ଦାଣ୍ଡକୁ ସଭ୍ୟ ଦିଶିଲା ପରି ସୁନିୟନ୍ତ୍ରିତ ହୋଇଛି । ଆଜିକାଲି ଏ କାମକୁ କହୁଛନ୍ତି, କୂଟନୀତି ।"

"ଆମ ସ୍କୁଲର ଗୋଟିଏ ପିଲା ଦୁଇଟା ଟେଲିଭିଜନ୍ ପୁରସ୍କାର ପାଇଛି—ଥରେ ଦୁଇଶହ ପଚାଶ ଟଂକା,ଆଉ ଥରେ ହଜାରେ । କେମିତି ବଡ଼ିଆ ?"

"ଖୁବ୍ ଚଲାକ ପିଲା ହୋଇଥିବ ।"

"ଚାଲାକ୍, ଆଦୌ ନୁହେଁ । ସେ କହୁଥିଲା, ଯେ ଗୋଟେ ଫିସାଦ । କୌଶଳଟା ଜାଣିଲି ତ ମାଇଲି ଝୁଣା ।"

"ଏଁ, ଝୁଣା ମାରିବ ?"

"ଅଲ୍‌ବତ୍ । ତୁମେ ଜଣେ ଖଞ୍ଜ ବୋଲି ପରିଚୟ ଦେବ, ନହେଲେ କହିବ, ବେଙ୍ଗ ପୋଷି, ତାକୁ ଦିନେ ତୁମ ବୁଢ଼ୀ ମା'କୁ ପୋଡୁଛି । ଏମିତି କଥା ଶ୍ରୋତାମାନଙ୍କୁ ସୁଖ ଲାଗେ ; ତେଣୁ ଟେଲିଭିଜନ୍‌ରେ ବାହାରିବାକୁ ତୁମକୁ ସୁବିଧା ମିଳେ । ସମଗ୍ର ଦେଶରେ ଯେତେ ପ୍ରତିଯୋଗିତା ହେଉଛି ଓ ଯେଉଁମାନେ ପୁରସ୍କାର ପାଉଛନ୍ତି—ସେ ସବୁର ବିସ୍ତୃତ ବିବରଣୀ ଦେଇ ଗୋଟାଏ ପତ୍ରିକା ତା'ପାଖରେ ଅଛି । ସେମିତି ଗୋଟାଏ ପତ୍ରିକା ମୋ ପାଇଁ ମଗାଇ ଦେବ, ବାପା ?"

"ବେଶ୍, ବେଶ୍, ଜଳଦସ୍ୟୁବୃତ୍ତି ସିନା ବନ୍ଦ ହୋଇଗଲାଣି, ପ୍ରବୃତ୍ତିଟା ରହିଯାଇଛି, ଦେଖୁଛି !"

"କିମିତି ?"

"ସହଜରେ ପାଇଯିବା ପ୍ରବୃତ୍ତି । ପରିଶ୍ରମ ନ କରି ସମ୍ପତ୍ତି ଅର୍ଜିବା ଇଚ୍ଛା !"

"ମୁଁ ସେ ପତ୍ରିକା ଖଣ୍ଡିଏ ମଗାନ୍ତି !"

"ମୁଁ ତ ଭାବୁଥିଲି 'ପାସ୍ପୋଲ୍ ଅପବାଦ'ପରେ ଏଭଳି ଠକେଇ କାମକୁ ଲୋକେ ଘୃଣା କରୁଛନ୍ତି ବୋଲି !"

"ଝୁଟା କଥା ; ମାନେ, ସେପରି ହୋଇନାହିଁ, ଆଜ୍ଞା ! ଆଇନ୍‌ର ଫାସରୁ ଖସିବା ପାଇଁ ପ୍ରକାରଟା ଟିକିଏ ବଦଳାଇ ଦେଉଛନ୍ତି ମାତ୍ର । ମୋର ମନ ହେଉଛି, ଏ ଉପାୟରେ ଟଂକା ମାରି ଦିଅନ୍ତି ।"

"ମାରି ଦିଅନ୍ତୁ, ନା ?"

"ଟଂକା ତ ଟଂକା, କି ଉପାୟରେ ତାହା ହସ୍ତଗତ ହେଲା ସେଥିରେ କ'ଣ ଅଛି ?"

"ମୁଁ ଏକଥା ପସନ୍ଦ କରି ପାରୁନାହିଁ । ଯେ କୌଣସି ଉପାୟରେ ଆଣିଲେ ପଇସାର ସିନା କିଛି ଯାଏ ଆସେ ନାହିଁ, କିନ୍ତୁ ଯେ ଆଣିବ ତା'ର ଯେ ଅଧଃପତନ ହେବ !"

"ତା' କାହିଁକି ହେବ ? ବେ-ଆଇନ୍ କାମ ତ ନୁହେଁ । ମୁଁ ଜାଣେ, ଆମ ଦେଶର ଖୁବ୍ ବଡ଼, ବଡ଼ ଲୋକେ – "

"ଠକେଇ କାମରେ, ପୁଅ, ଠକେଇ କାମ । ସେଥିରେ ମନ ଦେ ନା ।"

"ଠକେଇ କାମ କାହିଁକି ?"

"ଆଚ୍ଛା, ଯ୍ୟାଲେନ୍, ଧନ ନ ହେଲେ କ'ଣ ନ ଚଳେ । ଧନ କ'ଣ ଏତେ ଦରକାର ?"

"ଆପଣ କ'ଣ ଭାବୁଛନ୍ତି, ମଟରବାଇକ୍ ନ ଥାଇ ଚଳିବାକୁ ମୋତେ ସୁଖ ଲାଗୁଛି ? ସ୍କୁଲରେ ଅନ୍ତତଃ କୋଡ଼ିଏ ଜଣଙ୍କର ମଟର-ବାଇକ୍ ଅଛି । ପୁଣି ଘରେ ଖଣ୍ଡିଏ ମଟରକାର୍ ନ ଥିଲେ କେମିତି ଚଳି ହେବ କହିଲେ ? ଟେଲିଭିଜନ୍ ନ ହେଲେ ତ ନାହିଁ !"

"ତୋ କଥା ଶୁଣି ମୁଁ ଅଶ୍ଚର୍ଯ୍ୟ ହେଉଛି ।"

"ମୋତେ କ'ଣ ସହିବାକୁ ହେଉଛି, ତୁମେ ଜାଣୁନାହଁ, ବାପା ! ମୋ'ର ପଣଗୋସିଁ ବାପ ତମି-ଶିକାରୀ ଜାହାଜର କପ୍ତାନ୍ ଥିବା ମୁଁ କ୍ଲାସରେ ପ୍ରବନ୍ଧ ଲେଖିଥିଲି ।"

"ହେଲ୍ କ'ଣ ? ସତ କଥା ତ !"

"କ୍ଲାସ୍‌ର ସବୁ ପିଲ ମୋତେ ହସରେ ଉଡ଼ାଇ ଦେଲେ । ମତେ ସେମାନେ କମିତି ଥଟ୍ଟା କରୁଛନ୍ତି ଜାଣ ? 'ହ୍ୱେଲ' ନ କହି 'ହ୍ୱେଲି' (ତମିଶିକାରୀ) ବୋଲି ଡାକୁଛନ୍ତି । ଏମିତି ଡାକଲେ ତୁମକୁ ସୁଖ ଲଗନ୍ତା ?"

"ବଡ଼ ଖରାପ କଥା ତ !"

"ତୁମେ ଯଦି ଓକିଲ ହୋଇଥାନ୍ତ, ବ୍ୟାଙ୍କ୍ କାମ କରୁଥାନ୍ତ ବ ସେହିପରି କିଛି ଭଲ କାମ କରୁଥାନ୍ତ, ତେବେ ସେମାନେ ମୋତେ ବିଦ୍ରୂପ କରନ୍ତେ ନାହିଁ । ମୁଁ କିଛି ଟଙ୍କା ଝୁଣା ମାରି ପାରିଲେ ପ୍ରଥମେ କ'ଣ କରିବି ଜାଣ ?"

"କ'ଣ କରନ୍ତୁ, ମୁଁ କମିତି ଜାଣିବି ? କହିଲୁ !"

"ମୁଁ ତୁମ ପାଇଁ ଗୋଟେ ମଟର କିଣିବି । ମଟର ଥିବା ବାଲ୍‌କୁ ଦେଖି ତୁମକୁ ଆଜକାଲି ଯେମିତି ଖରାପ ଲାଗୁଛି ସେମିତି ଆଉ ଲଗନ୍ତା ନାହିଁ ।"

ମୁଁ କହିଲି, "ଧନ୍ୟବାଦ, ଫ୍ଲାଲେନ୍ ।" ମୋ' ଚୋଟି ଶୁଖି-ଯାଉଥାଏ ।

"ତୁମର ପାଇଁ ନିଶ୍ଚୟ କିଣିବି । ନିଜ ପାଇଁ କିଣନ୍ତି ଯେ, ମୋତେ ତ ଲାଇସେନ୍ସ୍ ମିଳିବନି ।"

"ଫ୍ଲାଲେନ୍, ଆମ ଦେଶର ବଡ଼ ବଡ଼ ଲୋକଙ୍କର ମହତ୍ତ୍ୱପୂର୍ଣ୍ଣ ବକ୍ତୃତା ସବୁ ଏଇ ସେଲ୍ଫରେ ଅଛି । ମୋ'ର ଆଶା, ସେଥିରୁ କେତୋଟି ତୁ' ପଢ଼ିବୁ ।"

"ନିଶ୍ଚୟ ! ସେଗୁଡ଼ିକ ତ ମୋର ନଗଦ କାମରେ ଆସିବ ।"

"ପଢ଼, ପଢ଼, ଉପକାର ହେବ ।" ମୁଁ ତରତର ହୋଇ ସିଡ଼ିରେ ଓହ୍ଲାଇ ଆସିଲି । ଆସିଲା ବେଳେ ଓଠ ଗୁଡ଼ିକ ଓଦା କରୁଥାଏ । ଫ୍ଲାଲେନ୍ ଯଥାର୍ଥ କହୁଛି । ମୋ'ର ଘୋର ଆତ୍ମଗ୍ଳାନି ହେଉଥାଏ ।

ପଢ଼ିବା ଆଲୁଅ ତଳେ ବଡ଼ ଚଉକିରେ ଯାଇ ମୁଁ ବସିବା ମାତ୍ରେ ମେଘା ଖବରକାଗଜଟା ଆଣି ମୋ ହାତରେ ଦେଲେ ।

"ତୁମ ପାଖକୁ ଆସିଲେ କେଡ଼େ ଆରାମ ଲାଗୁଛି, ଗଜଗମନୀ !"

"ପୋଷାକଟା ତୁମକୁ ଖୁବ୍ ମାନୁଛି ।"

"ପୋଷାକ ବିଷୟରେ ତୁମେ ହାରିଛ ସିନା, ତୁମ ରାନ୍ଧଣା ତ ମାତ୍ କରିଦେବ ।"

"ଯେଉଁ ନେକ୍‌ଟାଇଟା ପିନ୍ଧିଲ, ତୁମ ଆଖିର ରଙ୍ଗ ସାଙ୍ଗେ ଖୁବ୍ ଖାପ ଖାଉଛି ।"

"ଜଣା ଯାଉଛି, ତୁମର କ'ଣ ଗୋଟାଏ ମତଲବ୍ ଅଛି । ତୁମ କଥାଟି କହିଲେ, ମୁଁ ଗୋଟିଏ ବିଶ୍ୱାସ କଥା କହନ୍ତି ।"

"ମୋ'ର ତ ସେପରି କିଛି କଥା କହିବାକୁ ନାଇଁ !"

"ଗୋଟାଏ କ'ଣ ଫାନ୍ଦ ଦେଉ ନାହିଁ !"

"ମୋତେ ତାହା ଆସେ ନାହିଁ । ତୁମର ଗୁପ୍ତ କଥାଟା କ'ଣ କହ, ଏଥାନ୍ !"

"ପିଲା କାନପାରି ଶୁଣୁଥିବେ ?"

"ନାଇଁ, କେହି ନାଇଁ ।"

"ଶୁଣ, ମାର୍ଗି ୟୁଙ୍ଗ୍-ହାଣ୍ଡ୍ ଆଜି ଆସିଥିଲା । କଫି ସରିଯାଇଥିଲା ବୋଲି କହିଲା । ମୋ'ଠାରେ ତା'ର ଭାରି ମାୟା ଲାଗିଛି ବୋଲି ମନେ ହେଉଛି ।"

"କାହିଁକି ? କହ ।"

"ଆମ ଭାଗ୍ୟଗଣନା ବିଷୟରେ ତା'ର ମୋର କଥାବାର୍ତ୍ତା ହେଲା । ମୁଁ କହିଲି, ଆଉ ଥରେ କଲେ ଭଲ ହୁଅନ୍ତା; ପୂର୍ବଥର ଯାହା ବାହାରିଥିଲା ସେଇଆ ବାହାରୁଛି କି ନାଇଁ ଦେଖନ୍ତେ ।"

"ତମେ ଯ୍ୟା କହି ନ ଥିବ ।"

"ହଁ, କହିଲି; ଭଲ ହୁଅନ୍ତା ବୋଲି ସେ କହୁଛି ।"

"କିନ୍ତୁ ତୁମକୁ ତ ଏ ଭାଗ୍ୟଗଣନା ସୁଖ ଲାଗେ ନାହିଁ ।"

"ଆମର ଭଲ ଭାଗ୍ୟ ବାହାରିବାରୁ ସୁଖ ଲାଗୁଛି ।"

"ବିଗୁରୁଛ, ଆଜି ସେ ଭାଗ୍ୟଗଣନା କରିବ ?"

"ମୋ ଅନୁମାନ ଠିକ୍ ହେଲେ ମୋତେ ଘଣ୍ଟା ୧୦ ନୂଆ ପଇସି ଦେବ, ତେବେ ମୁଁ ବାଜି ମାରି କହିବ ଯେ ସେ ଆଜ ସେଇଥିପାଇଁ ଆସୁଛି ।"

"ନା, ଆଦୌ ନୁହେଁ । ମୁଁ ନିମନ୍ତ୍ରଣ କରିବାରୁ ସେ ଆସୁଛି ।"

"ତୁମକୁ ଭାଗ୍ୟ ଗଣନା ଫାନ୍ଦରେ ପକାଇଲାରୁ ସିନା ତୁମେ ଡାକିଲ ?"

"ତୁମେ ତାକୁ ସହି ପାରନାହିଁ ।"

"ଓଲଟା କଥା । ମୁଁ ତା'କୁ ଖୁବ୍ ସୁଖ ପାଇବାକୁ ଆରମ୍ଭ କରିଛି, ତା'କୁ ସମ୍ମାନ ବି କରୁଛି ।"

"ତୁମେ କେତେବେଳେ ରହସ୍ୟ କରୁଛ, କେତେ ବେଳେ ତତ୍ତ୍ୱରେ କହୁଛ, ଜାଣି ପାରନ୍ତି ହେଲେ !"

ଥିର ଥିର ହୋଇ ଏଲେନ୍ ପଶି ଆସିଲା; ସେ ଦୁଆର ଆର ପାଖେ ଲୁଚି ରହି ଆମ କଥା ଶୁଣୁଥିଲା କି ନାହିଁ ଠିକ୍ କରି କହି ପାରିବି ନାହିଁ, କିନ୍ତୁ ମୋର ସନ୍ଦେହ, ସେ ଶୁଣୁଥିଲା । ଏଲେନ୍ ଅତି କାମାସକ୍ତା ବାଳିକା; ତେର ବର୍ଷ ବି ହୋଇଗଲାଣି । କେତେବେଳେ ଫୁଲେଇ ହୁଏ, କେତେବେଳେ ମନ ମାରି ରହେ; କେତେବେଳେ ଖୁସିବାସି । ପୁଣି କେତେବେଳେ ଇଚ୍ଛା ହେଲେ, ବିଷାଦ ଓ ତୁଚ୍ଛଗଣତାର ଛଳନା ବି କରେ । ସେ ସୁନ୍ଦର ବୋଲି କହିଲେ ଚଳେ, ନ କହିଲେ ବି ଚଳେ । ଦେହରେ ଆଉଜ ପଡ଼ିବାକୁ ତା'ର ଭାରି ମନ । ମୋ' ଉପରେ ଆଉଜ ପଡ଼େ, ତା' ନିଃଶ୍ୱାସ ମୋ ପ୍ରଶ୍ୱାସରେ ମିଶାଇ ଦେବାକୁ ବସେ । ଖରାପ ଲାଗେ ନାହିଁ, ଗାଈ ନିଃଶ୍ୱାସ ପରି ତା' ନିଃଶ୍ୱାସ ସୁଗନ୍ଧ । ଦେହରେ ଘଷି ହେବାକୁ ବି ତା'ର ମନ ।

ଏଲେନ୍ ମୋ ଚଉକିର ହତା ଉପରେ ଆଉଜ ପଡ଼ିଲା ଓ ତା'ର ସରୁ, ସାନ ଖୁଆ ମୋ ଖୁଆରେ ଲାଗିଲା । ମୋ' କୋଟ ହାତ ତଳେ ଗୋଟିଏ ରକ୍ତାଭ ଆଙ୍ଗୁଳି ଭର୍ତ୍ତି କରି ମୋ କଚଟିର ରୁମରେ ଆଙ୍ଗୁଠି ମାଇଲା, ମୋତେ କୁତୁକୁତୁ ଲାଗୁଥାଏ । ତା'ବାହାର ସ୍ୱର୍ଣାଭ ରୁମଗୁଡ଼ିକ ଆଲୁଅରେ ସ୍ୱର୍ଣରେଣୁ ପରି ଦିଶୁଥାଏ । ବଡ଼ କୁଟିଳ ତା'ର ଗତି, ବୋଧହୁଏ କାମସକ୍ତା ସବୁ ବାଳିକାଙ୍କର ଗତି ଏଇପରି ।

ମୁଁ କହିଲି, "ନଖ ରଙ୍ଗେଇଛୁ ?"

"କୁଙ୍କୁମ ରଙ୍ଗରେ ନଖ ରଙ୍ଗେଇବାକୁ ମା' କହନ୍ତି । ଆପଣଙ୍କ ନଖଗୁଡ଼ାକ ଭାରି ଅଚିକଣ ।"

"ସତେ ନା କ'ଣ ?"

"କିନ୍ତୁ ବେଶ୍ ସଫା।"

"ମୁଁ ଘଷି ସଫା କରିଛି ।"

"ଯ୍ୟାଲେନ୍‌ର ନଖଗୁଡ଼ାକ ଭାରି ଅସନା; ମୋତେ ଘୃଣା ଲାଗେ ।"

"ଯ୍ୟାଲେନ୍‌ର ସବୁ ଜିନିଷ ଘୃଣା ଲାଗେ ।"

"ହଁ ।"

"ବଡ଼ ପ୍ରଶଂସାର କଥା ! ତା' ତୋଟି ଚିପି ଦେଉନାହଁ ?"

"କମିତି ବେଆଡ଼ା କଥା କହୁଛନ୍ତି ଆପଣ !" ସେ ମୋ କାନ ପଛ ଆଡ଼କୁ ତା' ଆଙ୍ଗୁଠି ଗୁଡ଼ିକ ନେଇ ସାଲୁ ସାଲୁ କଲା । ସ୍କୁଲରେ କେତେଟା ଟୋକାଙ୍କୁ ସେ ହନ୍ତସନ୍ତ କରୁଥିବ ବୋଲି ମୁଁ ଭାବୁଛି ।

"ଶୁଣିଲି, ତୋ' ପ୍ରବନ୍ଧଲେଖାରେ ଲାଗିଥିଲୁ ।"

"ସେଇ ଗନ୍ଧିଆଟା କହିଛି ନିଶ୍ଚେ ।"

"ଲେଖା ଭଲ ହେଉଚି ?"

"ନିଶ୍ଚୟ, ବେଶ୍ ଭଲ ! ସରିଲେ ଆପଣଙ୍କୁ ପଢ଼େଇବି ଯେ ।"

"ମୋ ଭାଗ୍ୟ ! ଦେଖୁଛି, ଭୋଜି ପାଇଁ ବେଶ ହୋଇଛୁ ।"

"ଏଇ ପୁରୁଣା ସେମିଜ୍‌ଟା । ମୋ ନୂଆ ପୋଷାକ କାଲି ପାଇଁ ରଖିଛି ।"

"ଭଲ କଥା । କାଲି କେତେ ଟୋକା ଗିର୍ଜାକୁ ଯାଉଥିବେ ।"

"ଟୋକାଙ୍କୁ ମୋର ଭାରି ଘୃଣା ; ବାସ୍ତବିକ ଘୃଣା ନ କରି ରହିପାରେ ନାହିଁ ।"

"ସେ କଥା ମୋତେ ଜଣା । ଘୃଣା କରିବା ତୋ'ର ମଜ୍ଜା । ଟୋକାଙ୍କୁ ମୁଁ ବି ସୁଖ ପାଏ ନାହିଁ । ହଉ, ମୋ ଦେହରୁ ଟିକିଏ ଓହ୍ଲ- କରି ଠିଆହେଲୁ । ମୁଁ ଖବର କାଗଜଟା ପଢ଼ିବି ।"

୧୯୨୦ ଖ୍ରୀଷ୍ଟାବ୍ଦର ସିନେମା ନାୟିକାଙ୍କ ପରି ସେ ଫଟ୍‌କିନା ଆଡ଼େଇ ଓହ୍ଲାଇଗଲା ଓ ତତ୍‌କ୍ଷଣାତ୍ ମୋ ଉପରେ ଦାଉ ସାଧିଲା । "ଆପଣ କେବେ ଧନୀ ହେବେ ଯେ ?"

ହଁ, ଏ ଶୋକ ଯୋଗୁ ଭବିଷ୍ୟତ୍‌ରେ ନିଶ୍ଚୟ ଗୋଟିଏ ଯୁବକର ମୁଣ୍ଡ ବିଗିଡ଼ିବ । ମୋ ମନ ହେଲା, ତା'କୁ ଧରି ପକାଇ ଗୁଡ଼ାଏ ଧସ୍ତାଧସ୍ତି କରି ଦିଅନ୍ତି; କିନ୍ତୁ ମୋର ଆଶଙ୍କା, ସେଇଆ ହେଉ ବୋଲି ତା'ର କାମନା । ତା' ଆଖିରେ କରୁଣାର ସଂକେତ ଦି ନ ଥିଲା; ଆଖି ଦୁଇଟି ଦିଶୁଥାଏ ଚିତାବାଘର ଆଖି ଦୁଇଟା ପରି ନୃଶଂସ ।

ମୁଁ ଉତ୍ତର ଦେଲି, "ଏକେଣା ଶୁକ୍ରବାର ।"

"ମୋର ଆଶା, ଆପଣ ଧନୀ ହେବା ପାଇଁ ତୁରନ୍ତ ଚେଷ୍ଟା କରିବେ । ଦରିଦ୍ରର ସନ୍ତାନ ହେବାକୁ ମୋତେ ବଡ଼ ବିଷ୍‌ପିତା ଲାଗିଲାଣି ।" ଏତକ କହି ସେ ସେଇଲାଗେ. ପାଖରୁ ବାହାରିଗଲା, ବୋଧହୁଏ କବାଟ କଣରେ ଲୁଚି ଶୁଣିବାକୁ । ମୋର ଏ ଝିଅଟା ଠାରେ ଭାରି ମମତା । ବଡ଼ ବିଚିତ୍ର କଥା, ଅନ୍ୟମାନଙ୍କଠାରେ ମୁଁ ଯେଉଁ ଦୁର୍ଗୁଣ ଦେଖି ଘୃଣା କରେ; ସେ ସବୁ ଯୁଆଠାରେ ପୂଳ ହୋଇ ରହିଛନ୍ତି; ଅଥଚ ଯୁ। ଠାରେ ମୋର ଏତେ ଶ୍ରଦ୍ଧା !

ଖବର କାଗଜ ପଢ଼ିବାର ସୁଯୋଗ ଜୁଟିଲା ନାହିଁ । ମୁଁ ଖବର କାଗଜ ମେଲେଇବାକୁ ଆରମ୍ଭ କରୁଛି, ମାର୍ଗି ଯୁଙ୍ଗ୍‌-ହାଣ୍ଡ୍ ଆସି ପହଞ୍ଚିଲେ । ଭାରି ସଜବାଜ ହୋଇଥାନ୍ତି ; ପ୍ରସାଧନକାଂଶ, ଦୋକାନରେ ଯେପରି ସଜବାଜ କରେ ସେହିପରି । ଏମିତି ସଜବାଜ ହେବାର କୌଶଳ ବୋଧହୁଏ ମେଗିଙ୍କୁ ଜଣା ଥିବ । ମୁଁ ସେ ବିଷୟରେ ମହାମୂର୍ଖ ।

ସକାଳେ କଫି ପାଇଁ ଅସିଥିବା ମାର୍ଗି ଭାଲୁପରି ଆସିଥିଲା ମୋତେ ଖାଇବାକୁ । ବର୍ତ୍ତମାନ ସେଇ ଏକାଦିନର ସଂଧ୍ୟାବେଳେ ସେ ଆସିଛି, ମେଗିଙ୍କ ଆଖି ଝଲସାଇ ଦେବାକୁ । ଏଇଲାଗେ ବି ତା' ନିତମ୍ବ ନୃତ୍ୟ କରୁଥିବ, କିନ୍ତୁ ମୋତେ ଦିଶିଲା ନାହିଁ । ତା ସୁନ୍ଦର ପୋଷାକ ତଳେ ଯାହା ଅଛି, ତାହା ଏତେବେଳେ ଲୁଚି କରି ରହିଛି । ଅନ୍ୟ ସ୍ତ୍ରୀ ଲୋକଙ୍କ ଦୃଷ୍ଟିରେ ନିଷ୍କଳୁଷ ଅତିଥି ସିଏ, ବର୍ତ୍ତମାନ ସାହାଯ୍ୟ କରିବାକୁ ତତ୍ପର, ସୁଭଦ୍ର, ଶୁଭଦର୍ଶୀ, ବିଶ୍ବରବନ୍ତ ଓ ବିନମ୍ରୀ । ସକାଳଠାରୁ ମୋ ବୟସ, ସମାନ ଗୁଳିଶ ବର୍ଷ ଅଧିକା ହୋଇ ଯାଇଥିଲା ପରି ସେ ମୋ ସଙ୍ଗେ ବ୍ୟବହାର କରୁଥାଏ । କେଡ଼େ ବିଚିତ୍ର ମାଇକିନିଆଙ୍କ ଗତି ! ସେମାନେ ଯାହା କରନ୍ତୁ ମୋତେ ସୁନ୍ଦର ଦିଶେ, ଯଦିଓ କାହିଁକି ସୁନ୍ଦର ଦିଶୁଛି ବୁଝିପାରେ ନାହିଁ ।

ମାଗି ଓ ମେଗ୍ ହସଖୁସିରେ କଥାବାର୍ତ୍ତା ଚଳାଇଥାନ୍ତି—"କେଡ଼େ ସୁନ୍ଦର କରି ତୁମେ ମୁଣ୍ଡ ବାନ୍ଧିଛ !"......"ମୋତେ ଏହା ବଡ଼ ସୁନ୍ଦର ଦିଶୁଛି !"........."ଏଇ ରଙ୍ଗଟା ତୁମକୁ ଭଲ ମାନୁଛି । ଏଇ ରଙ୍ଗର ପୋଷାକ ସବୁବେଳେ ପିନ୍ଧିବ ।"—ଏଇ ସବୁକଥା ସହଜରେ ମାଇ-କିନିଆଁଙ୍କ ମନ ଆକୃଷ୍ଟ କରେ । ଏମାନେ ଏଇ ସବୁ କଥାବାର୍ତ୍ତା ହେଉଥିଲ ବେଳେ, ମୋର ମନେ ପଡ଼ିଲା, ମାଇକିନିଆଁଙ୍କ ସମ୍ବନ୍ଧରେ ସବୁଠାରୁ କୌତୁକିଆ କଥା । ଜଣେ ପଚାରିଲା, "ତମ କେଶକୁ କେଡ଼େ ସୁନ୍ଦର ଭାବେ ସଜାଇଛ ! ମତେ ଜଣା ଯାଉଛି, ସତେ ଯେପରି ପର-ଚୁଳ !" ଆର ଜଣକ କହିଲା, "ପ୍ରକୃତରେ ପରଚୁଳ ତ !" ପ୍ରଥମ ଜଣକ ଉତ୍ତର ଦେଲା, "ଆଦୌ ଧରା ପଡ଼ୁନାହିଁ ପରା !"

ମାଇକିନିଆଁଙ୍କର ଏଭଳି କଥୋପକଥନ ତାଙ୍କ ହୃଦୟର କେଉଁ ଅନ୍ତର ପ୍ରଦେଶକୁ ଉଚ୍ଛ୍ୱସିତ କରେ, ଆମେ ଜାଣି ପାରିବା ନାହିଁ କି ଆମର ଜାଣିବାର ଅଧିକାର ନାହିଁ ।

ଭୋଜନ ବେଳେ ତ ଖାଲି ହର୍ଷ ଓ ବିସ୍ମୟର ଚତ୍କାର ଚାଲିଲା । ଜଣେ କହୁଥାଏ, ମୁରୁଗି କବାବଟା ଭାରି ବଢ଼ିଆ ହୋଇଚି; ଆଉ ଜଣେ କହୁଥାଏ, ଅତି ଅଖାଦ୍ୟ । ଏଲେନ୍ ଆମ ଅତିଥିଙ୍କୁ ଚାହିଁ ଆଖିବାଟେ ତାଙ୍କ କଥା ପିଇ ଯାଉଥାଏ—ତାଙ୍କ କେଶ ଓ ମୁହଁର ପ୍ରସାଧନ ଏକ-ମନରେ ଲକ୍ଷ୍ୟ କରୁଥାଏ । ମୁଁ ଆଜ ଲକ୍ଷ୍ୟ କଲି, ମାଇକିନିଆ ଝିଅ କେଡ଼େ ପିଲାଦିନୁ ସୂକ୍ଷ୍ମ ନିରୀକ୍ଷା ଆରମ୍ଭ କରନ୍ତି—ଏହାରି ଉପରେ ଭବିଷ୍ୟତରେ ତାଙ୍କ ସ୍ୱଭାବ ଓ ଅନ୍ତର୍ନିହିତ ଜ୍ଞାନ ଗଢ଼ିଉଠେ । ଏଲେନ୍ ମୋ ଆଡ଼କୁ ଆଦୌ ଚାହୁଁ ନଥାଏ । ସେ ଜାଣିଥାଏ ଯେ ସେ ମୋତେ ସାଂଘାତିକ ଆଘାତ କରିଛି; ମୋର ପ୍ରତିଶୋଧକୁ ସେ ପ୍ରତୀକ୍ଷା କରୁଥାଏ । ମୁଁ କେଡ଼େ ନୃଶଂସଭାବେ ପ୍ରତିଶୋଧ ନେବି ତୁମେ ଅନୁମାନ କରି ପାରିବ ନାହିଁ—ମୁଁ ତା' କଥା ଏକାବେଳେକେ ପାଶୋରି ଦେବି ।

ଯାହାହେଉ ଖାଇବାଟା ଖୁବ୍ ଭଲ ହେଲା—ଖୁବ୍ ମସଲା ମସଲି ଦିଆ ହୋଇ ରନ୍ଧା ବଢ଼ା ହୋଇଥିଲା; ଗୁଡ଼ାଏ କି ଖାଇବାକୁ ହେଲା—ସଙ୍ଗମେଳରେ ଖାଇ ହୋଇଯାଏ । ଟେବୁଲ ଉପରେ ପର୍ବତ ପ୍ରମାଣେ

ଥାଳ ଗିନା ଥାଳିଆ ଜମା ହୋଇଥାଏ—ସାଧାରଣ ଧନମାନଙ୍କରେ ଏ ସବୁର ଏତେ ପ୍ରୟୋଜନ ହୁଏ ନାହିଁ । ଶେଷରେ ଆସିଲା କଫି—ସାଧାରଣତଃ ଖାଇବା ପରେ ଆମ ଘରେ କଫି ଚଳେ ନାହିଁ ।

ମାର୍ଗି ପଗ୍ଭରିଲା, "ଖାଇବା ପରେ ଏମିତି କଫି ଖାଇଲେ ତ ରାତିରେ ନିଦ ହେଉ ନଥିବ ।"

ମେଷ୍ଟି କହିଲେ, "ଯାହା ଖାଉଲେ ବି ମୋର ଅନିଦ୍ରା ହେବା ଅସଂଭବ ।"

ମୁଁ କହିଦେଲି, "ମୋ'ର ବି ?"

ମେଷ୍ଟି କହିଲେ, "ଏଥାନ୍ ! ଖୁବ୍ ମିଛ କହୁଛ ତ ? ତୁମେ ତ ଆଦୌ ଅନିଦ୍ରା ରହନାହିଁ !"

ତା'ପରେ ଆରମ୍ଭ ହେଲା ଥାଳ ଗିନା ସଫା କରିବାର ନିଃଶବ୍ଦ, ଅଥଚ ଭୟାବହ ସଂଗ୍ରାମ । ମାର୍ଗି କହିଲା, "ମୁଁ ମଜାମଜରେ ସାହାଯ୍ୟ କରିବି ।"

ମେଷ୍ଟି କହିଲେ, "ମୁଁ ଦେବି ନାହିଁ । ତୁମେ ଯେ ଆଜ ଆମର ଅତିଥି !"

"ଅନ୍ତତଃ ମୁଁ ସେଗୁଡ଼ିକ ନଳା ମୁହଁକୁ ନିଏଁ ।"

ମେଷ୍ଟି ପିଲାଙ୍କୁ ଆଖି ବୁଲେଇ ଅନିଷା କଲେ; ତାଙ୍କ ଉପରେ ସେ ଭିତରେ ଭିତରେ ରକ୍ତ ଗୁଉଳ ହେଉଥାନ୍ତି । ତାଙ୍କ ଉପରେ ଏଇ-ଲାଗେ ବର୍ଷା ହେବ ବୋଲି ପିଲା ଦୁହେଁ ଆଶଂକା କରୁଥାନ୍ତି—ଆଉ ଉପାୟ କ'ଣ ?

ଓଲଟି, ମେଷ୍ଟି ମାର୍ଗିଙ୍କୁ କହି ଲାଗିଲେ, "ପିଲେ ଏ କାମ ସବୁ-ବେଳେ କରନ୍ତି ମ ! ବାସନ ମଜା କାମ ତାଙ୍କୁ ସୁଖ ଲାଗେ । ଖୁବ୍ ଯତ୍ନରେ ଭଲ କରି ମଜାମଜ କରନ୍ତି । ମୋତେ ଭାରି ଆନନ୍ଦ ଲାଗେ ।"

"ବେଶ୍ ବେଶ୍, କେଡ଼େ ସୁନ୍ଦର କଥା, ନୁହଁ ? ଆଜକାଲି ପିଲେ ଏ ସବୁ କାମରେ ଆଉ ମନ ଦେବାର ଦେଖିବ ନାହିଁ, ସଖି !"

"ସେ କଥା ସତ ଗୋ ଭଉଣୀ । ଆମ ଭାଗ୍ୟ, ଆମ ପିଲେ ଗୁଣର ।"

ମୋ ପିଲାଦୁହିଁଙ୍କ ନେଉଳ-ମୁହଁ ଦେଖି ତାଙ୍କ ମନର ଭାବ ମୁଁ ଅନୁମାନ କରି ପାରୁଥାଏ—ସେମାନେ ବସ୍ତୁରୁଥାନ୍ତି, କ'ଣ ଗୋଟାଏ

ଆଳ କରି ଝସି ଯିବେ—ପୋଖରୀପାଣି ଯିବା ନାମରେ ପଳେଇବେ, କିମ୍ବା ପୁରୁଣାକାଳର ସୁନ୍ଦର ଗାମଲା ଫାମଲା ଗୋଟାଏ ଭାଙ୍ଗି ଦେବେ । ତାଙ୍କ ପିଲା ମନର କଥା ମେରୀ ମଧ୍ୟ ଠଉରେଇଥିବେ ନିଶ୍ଚୟ । ସେ କହିଲେ, "ପ୍ରଶଂସାର କଥା ଯେ ସେମାନେ ବାସନ ବର୍ତ୍ତନ କେବେ ଭାଙ୍ଗନ୍ତି ନାହିଁ; କାଚ ଗ୍ଲାସଟାଏ ମଧ୍ୟ ତାଙ୍କ ହାତରେ ଖଣ୍ଡିଆ ହୁଏ ନାହିଁ ।"

"ବାସ୍ତବିକ୍, ତୁମେ ଭାଗ୍ୟବାନ୍" ମାର୍ଗି କହିଲେ, "ଏତେ ଗୁଣର ପଣ ସେମାନଙ୍କୁ ଶିଖାଇଲ କେମିତି ?"

"ମୁଁ ଶିଖାଇ ନାହିଁ । ସ୍ୱଭାବତଃ ସେମାନେ ସାବଧାନ । ଜାଣ ତ ଜଣେ ଜଣେ ଜନ୍ମରୁ ବାଲୁର । ୟୁାଲେନ୍ ଓ ଏଲେନ୍ ଜନ୍ମରୁ ସାବଧାନ; ତାଙ୍କ ହାତୁଟିମାନ ସ୍ୱଭାବତଃ କର୍ମକୁଶଳ ।"

ଏ କଥା ପିଲାଙ୍କୁ କେମିତି ଲାଗୁଛି, ମୁଁ ଲକ୍ଷ୍ୟ କରୁଥାଏ । ସେମାନେ ଜାଣୁଥାନ୍ତି ଯେ ସେମାନଙ୍କୁ ମିଛରେ ପ୍ରଶଂସା କରାଯାଉଛି । ମାର୍ଗି ୟଙ୍ଗ୍-ହାଣ୍ଟ୍ ତାଙ୍କର ପ୍ରକୃତ ସ୍ୱରୂପ ଜାଣନ୍ତି କି ନାହିଁ ସେ ବିଷୟରେ ସେମାନଙ୍କର ସନ୍ଦେହ ହେଉଥାଏ । ସେମାନେ ଖସି ଯିବାକୁ ଓର ଉଣ୍ଟୁଥାନ୍ତି । ମୁଁ ତାଙ୍କ ପାଇଁ ବାଟ କରି ଦେଲି; କହିଲି, "ପ୍ରଶଂସା ଶୁଣିବାକୁ ପିଲାଙ୍କର ମନ ହେବାର କଥା । କିନ୍ତୁ ତାଙ୍କର ଅନ୍ୟ ଆଡ଼େ ଭଲେ ମନ । ଆମ ଯୋଗୁଁ ତାଙ୍କର ଡେରି ହେଉଛି । ଶୀଘ୍ର ଯଦି ତାଙ୍କୁ ଯିବାକୁ ନଦେବା ତେବେ ସେ ଆଉ ସିନେମା ଟିକେଟ୍ ପାଇ ପାରିବେ ନାହିଁ ।"

ମାର୍ଗି ଭଦ୍ରତା ରକ୍ଷି ହସିଲେ ନାହିଁ ଓ ମେରୀ ମୋ'କଥାରେ ଚମକି ପଡ଼ି ମୋତେ ତାରିଫ୍ କରି ମୋ ଆଡ଼କୁ ଚାହିଁଲେ । ପିଲେ ସିନେମା ଦେଖି ଯିବାକୁ ଆମ ଦୁହିଙ୍କରୁ କାହାକୁ ଆଗରୁ କହି ବି ନଥିଲେ ।

ତେର ଚଉଦ ବର୍ଷର ପିଲେ ଯେତେ ତୁନି ହୋଇ ରହନ୍ତୁ ପଛେ, ସେମାନେ ଚାଲିଗଲେ ଘର ଉଶ୍ୱାସ ହୋଇଯାଏ । ସେମାନଙ୍କ ଉପସ୍ଥିତିରେ ହିଁ ତାଙ୍କ ଚାରିପଟ ବାୟୁମଣ୍ଡଳ ବିଷୁବ୍ଧ ହେଉଥାଏ । ପିଲା ଦୁହେଁ ଯିବା ପରେ ସମଗ୍ର ଘରଟା ସତେ ଯେମିତି ଦୀର୍ଘ ନିଃଶ୍ୱାସ ମାରି ଆଶ୍ୱସ୍ତ ହେଲା । ପ୍ରଥମ ଯୌବନରେ ପହଞ୍ଚିଥିବା ପିଲେ ଯେଉଁ ଘରେ ଥାନ୍ତି, କେବଳ ସେଇ ଘରମାନଙ୍କରେ ଭୂତ ଲାଗନ୍ତି, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ଯେଉଁ ବିଷୟଟିର ଆଲୋଚନା ଆମମାନଙ୍କ ଭିତରେ ନିଶ୍ଚୟ ଆସି ପହଞ୍ଚିବ ତାହା ଆମେ ତିନିହେଁ ଯାକ ଭାବୁଥିଲେ ହେଁ,କେହି ସେ କଥା ନ ଛୁଣ୍ଡେଇ ସାବଧାନତା ସହିତ ଅନ୍ୟ ବିଷୟର ଉତ୍‍ଥାପନ କରୁଥାଉଁ । କାଚ ଲାଗିଥିବା ଆଲମାରୀକୁ ଯାଇ ମୁଁ, ତିନୋଟି କଇଁଫୁଲିଆ ଲମ୍ବି-ବେକବାଲା ଗ୍ଲାସ ଟେବୁଲ ଉପରକୁ ଆଣିଲି; ସେଗୁଡ଼ିକ ବଳବଳ ହୋଇଥିବା କାଚରେ ତିଆରି । କେତେ ବର୍ଷ ପୂର୍ବେ ସେ ଗୁଡ଼ିକ ଇଂଲଣ୍ଡରୁ ଅଣାହୋଇଥିଲା ଭଗବାନ୍‍ଙ୍କୁ ଜଣା । ଗ୍ୟାଲନ୍ ମାପର ଗୋଟିଏ ଡ଼ିକାବ—ତା'ଉପରେ ବେତ ବୁଣା ହୋଇଥାଏ—ବାହାର କରି ସେଥିରୁ ତିନିଗ୍ଲାସରେ ମଦ ଢାଳିଲି । ଖୁବ୍ ପୁରୁଣା ମଦ—ବହୁଦିନ ରହି କେମିତି ଗୋଟାଏ କାଳିଆ ରଙ୍ଗ ଧରିଥାଏ ।

ମୁଁ କହିଲି, "ଜେମେଇକା ଦେଶର ମଦ । ଆମ ପୂର୍ବପୁରୁଷ-ମାନେ ନାବିକ ଥିଲେ ।"

ମାର୍ଗି ଯୁଙ୍ଗ୍‍ହାଣ୍ଟ୍ କହିଲେ, "ବହୁତ ଦିନର ଜିନିସ, ନିଶ୍ଚୟ ।"

"ତୁମଠାରୁ,ମୋଠାରୁ କାହିଁକି,ମୋ ବାପାଙ୍କଠାରୁ ବି ବୟସରେ ବଡ଼ ।"

ମେରୀ କହିଲେ, "ଏହାକୁ ଖାଇଲେ ମୁଣ୍ଡ ଫାଟିଯିବ । ଆଜି ତ ଗୋଟାଏ ଉତ୍ସବର ଦିନ କହିବାକୁ ହେବ । କେବଳ ବିଭାଘର ଓ ଶୁଦ୍ଧି-ଘର ନିମିତ୍ତରେ ଏଥାନ୍ ଏ ମଦ ବାହାର କରନ୍ତି । ପ୍ରିୟ ! ଏହାକୁ ପିଇବା ଠିକ୍ ହେବ ବୋଲି ଭାବୁଛ ତ ? ଠିକ୍ ଇଷ୍ଟର ଉତ୍ସବ ପୂର୍ବରୁ ଏଭଳି ମଦ ଗୁଡ଼ାଏ ପିଇବା ଉଚିତ ହେବ ନାହିଁ ବୋଲି ମୋର ମତ ।"

"ପ୍ରିୟେ ! କୋକା-କୋଲା ସହିତରେ ତ ପ୍ରଭୁଙ୍କର ଭୋଜି ଉତ୍ସବ ପାଳିତ ହୁଏ ନାହିଁ !"

ମାର୍ଗି କହିଲେ, "ମେରୀ ! ତୁମ ସ୍ୱାମୀ ତ ଏତେ ଖୁସୀ ହେବାର ମୁଁ କେବେ ଦେଖିନାହିଁ !"

ମେରୀ ଜବାବ୍‍ଦେଲେ, "ତୁମେ ଯେଉଁ ଭାଗ୍ୟ ଗଣନା କରିଛ, ତା'ର ଫଳରେ ସେ ହଠାତ୍ ବଦଳି ଯାଇଛନ୍ତି ।"

କି ବିଚିତ୍ର ଓ ଭୟାନକ ଏ ମାନବ ଶରୀର ! ଭିତରେ ଯାକ ଗୁଡ଼ାଏ ପରିମାପକ ଯନ୍ତ୍ର—ଶଙ୍କୁପନ୍ଥ ଓ ତାପ ଓ ଶକ୍ତି ନିୟନ୍ତ୍ରକ ସାଧନ

ପୂର୍ବ ରହିଛି । ଏଥିରୁ ଅଳ୍ପ କୋଠେଟି ମାତ୍ର ମଣିଷ ରହିଲେଣି, ତା'ବି ଭଲ କରି ନୁହେଁ । ସେମାନଙ୍କ କଥା ଶୁଣି ମୋ ପେଟଭିତରେ ଭୀଷଣ ଯନ୍ତ୍ରଣା ଆରମ୍ଭ ହେଲା । ସେଠାରୁ ତାହା ଉପରକୁ ଉଠି ମୋର ପଞ୍ଜରା ତଳକୁ ଖୁନ୍ଦି ପକାଇଲା; କାନ ଝାଁ ଝାଁ ହୋଇଗଲା । ଜାହାଜର ପାଲ ଫାଟିଇବା ପୂର୍ବକୁ ପବନର ଜୋରରେ ମାସ୍ତୁଲ ଭାଙ୍ଗିଯାଇ ଜାହାଜ ଯେପରି ଅସ-ହାୟ ଅବସ୍ଥାରେ ଭାସିଯାଏ, ମୋର ଅବସ୍ଥା ସେହିପରି ହେଲା । ମୋ'ର ପାଟି ପିତା ହୋଇଗଲା ଓ ଛାତି ଧଡ଼ ଧଡ଼ ହେବାକୁ ଲାଗିଲା । ଘୋର ବିପଦ, ବିପର୍ଯ୍ୟୟ ଓ ସନ୍ତାପର ନିଶାଣ ଶରୀରର ପ୍ରତି ଅଙ୍ଗ ପ୍ରତ୍ୟଙ୍ଗରେ ବାଜିଗଲା । ଦୁଇ ମହିଳାଙ୍କ ଗଡ଼କର ପଚ୍ଛପଟକୁ ମୁଁ ଯାଇଛି, ଏଇ ସମୟରେ ଯନ୍ତ୍ରଣାରେ ମୁଁ ପେଟ ଯାକି ଲଇଁ ପଡ଼ିଲି । ଯନ୍ତ୍ରଣା ଯେତିକି ବେଗେ ଆସିଥିଲା, ସେତିକି ବେଗେ ଉପଶାନ୍ତ ହୋଇଗଲା । ମୁଁ ସିଧା ଠିଆ ହୋଇ ମୋ ଜାଗାକୁ ଚାଲିଗଲି ; ବୋଧହୁଏ ମୋର ଶରୀରର ଏ ଉପଦ୍ରବ ମହିଳା ଦୁହିଁଙ୍କୁ ଜଣା ପଡ଼ିନାହିଁ । ମଣିଷକୁ ଭୂତ ଲାଗିବାରେ ପୂର୍ବେ ଲୋକେ ବିଶ୍ୱାସ କରୁଥିଲେ; କିପରି ସେ ବିଶ୍ୱାସର ସୃଷ୍ଟି ହୋଇଥିଲା ଆଜି ବୁଝିଲି । ମୁଁ ନିଜେ ସେଥିରେ ଏଇଲାଗେ ବିଶ୍ୱାସ କରୁନାହିଁ ବୋଲି କହି ପାରିବି ନାହିଁ । ଭୂତ ଲାଗିବ ! ଆଶ୍ଚର୍ଯ୍ୟ ହେଲେ ବି ସତ । ଶରୀରର ପ୍ରତି ଶିରା ପ୍ରଶିରାର ପ୍ରତିରୋଧ ସତ୍ତ୍ୱେ ଗୋଟାଏ ଅଜ୍ଞାତ ଅନୁଭୂତି ଶରୀରରେ ଜାତ ହେବ - ଶିରା ପ୍ରଶିରା, ପ୍ରତି-ରୋଧରେ ପରାସ୍ତ ହୋଇ ଅବଶ ହୋଇ ପଡ଼ିବେ ଓ ଅଜ୍ଞାତ ଶକ୍ତିକୁ ମାନିଯିବେ—ଏହାରି ନାମ ତ ଭୂତ ଲାଗିବା । ଶାରୀରିକ ପ୍ରକ୍ରିୟାର ଏହା ଗୋଟାଏ ବିପର୍ଯ୍ୟୟ; କିନ୍ତୁ ଏଇ ବିପର୍ଯ୍ୟୟଟା ଇଲେକ୍‌ଟ୍ରିକ୍ ଫୋଡ଼ଣିର ଚୋଟ଼ରେ ଆସି ଶରୀରରେ ବାଜେ ।

ମୋ' ପ୍ରିୟାର ସ୍ୱର ଏତିକିବେଳେ ଆସି କାନରେ ବାଜିଲା, "ନିଜ ବିଷୟରେ ଭଲ କଥା ଶୁଣିଲେ ମନକୁ ଖରାପ ଲାଗିବ କାହିଁକି ? ଭଲ ଲାଗିବାର କଥା ।"

ମୁଁ କହିବାକୁ ଚେଷ୍ଟା କଲି । ମୋର ସ୍ୱାଭାବିକ ସ୍ୱର ବାହା-ରିଲା– ସ୍ପଷ୍ଟ ଓ ଦୃଢ଼, "ଟିକିଏ ଅଶାର କଥା, ସେ ଆଶା ସଫଳ

ହେବାର ସମ୍ଭାବନା ନଥିଲେ ବି, ମଣିଷର ଅନାସ୍ଥା କରିବାର କଥା ନୁହେଁ ।" ଏହା କହି ମୁଁ ମଦ-ରେକାବିଟା ନେଇ ଆଲମାରୀରେ ରଖି-ଦେଲ ଓ ମୋ ଚଉକିରେ ଯାଇ ବସି ମୋ ଗ୍ଲାସରୁ ଅଧେ ପିଇଦେଲି । ପୁରାତନ ସୁଗନ୍ଧ ରମ୍-ମଦ୍ୟ ! ତା'ପରେ ମୁଁ ଚଉକି ଉପରେ ମୋର ଆଣ୍ଠୁ ଯାକି, ଦୁଇ ହାତର ଆଙ୍ଗୁଠି ମୋ' କୋଳରେ ଛନ୍ଦି ଶୋଇଲି ।

ମେଗି କହିଲେ, "ଯୀଙ୍କ ମନର ଗତି ମୁଁ ଜାଣି ପାରେ ନାହିଁ । ଭାଗ୍ୟ-ଗଣନାକୁ ତାଙ୍କର ସବୁବେଳେ ଘୋର ଘୃଣା : ବିଦ୍ରୂପ କରନ୍ତି । କିନ୍ତୁ ଆଜି ଏଭଳି ଉତ୍ସାହ କାହିଁକି କେଜାଣି ?"

ମୋ'ର ସ୍ନାୟୁ-ତନ୍ତୁର ଅଗ୍ରଭାଗ ସବୁ, ଶୀତ-ପବନରେ ଶୁଖିଲି ଘାସ ପରି ପିଟି ହେଉଥାଏ ଓ ପରସ୍ପରର ଗୁପରେ ମୋର ଆଙ୍ଗୁଳି ଗୁଡ଼ିକ ଶେତା ପଡ଼ି ଯାଇଥାଏ ।

ମୁଁ କହିଲି, "ମୋର ଚିନ୍ତାର ଧାରା ମୁଁ ମିସେସ୍ ସୁଙ୍ଗ—ମାର୍ଗିଙ୍କୁ ବୁଝାଇବାକୁ ଚେଷ୍ଟା କରିବି । କଥା କ'ଣ କି, ମେଗିଙ୍କ ଜନ୍ମ ଗୋଟିଏ ସମ୍ଭ୍ରାନ୍ତ ଅଥଚ ଦରିଦ୍ର ପରିବାରରେ ।"

ମେଗି ବାଧା ଦେଲେ,, "ଆମେ ସେପରି ନିତାନ୍ତ ଦରିଦ୍ର ନଥିଲୁଁ ।"

ମୁଁ କହି ଗ୍ଲଲଥାଏ, "ଏହାର ପ୍ରମାଣ ଆପଣ ତାଙ୍କ କଥା କହି-ବାର ଢଙ୍ଗରୁ ବାରିପାରୁଥିବେ ।"

ମେଗି ପୁଣି କହିଲେ, "ହଁ, ଅବଶ୍ୟ ତୁମେ ଏକଥା ଉଠାଇବାରୁ ମୋର ମନେ ପଡ଼ୁଛି ।"

ମୁଁ କହି ଗ୍ଲଲି, "ମେଗି ତ ମୁକ୍ତିପଦପ୍ରାପ୍ତ—ନ ପାଇଥିଲେ ପାଇବା ଉଚିତ—ଜେଜେମା ଥିଲେ ଜଣେ ପରମ ଧାର୍ମିକା ଖ୍ରୀଷ୍ଟିଆନ୍ ମହିଳା । ନାଇଁ, ମେଗି ?"

ମୋତେ ଜଣାଯାଉଥାଏ ମୋର ପ୍ରିୟତମାଙ୍କ ମନରେ ମୋ ପ୍ରତି ଟିକିଏ ବିରକ୍ତି ଜାତ ହେଉଥାଏ । ମୁଁ କହି ଗ୍ଲଲି, "ନିରୁତା ଖ୍ରୀଷ୍ଟିଆନ୍ ମତବାଦରେ ଧର୍ମ ସଙ୍ଗେ ପରି-ବିଶ୍ୱାସର ସମନ୍ୱୟ ନଥିଲେ ବି, ଯୀଙ୍କ ଜେଜେମାଙ୍କର ପରିରାଜ୍ୟର ଉପଦେବତାରେ ବିଶ୍ୱାସ ଥିଲି ।

"କିନ୍ତୁ ସେ କଥାର ଭାଗ୍ୟ-ଗଣନା ସଙ୍ଗେ କି ସମ୍ପର୍କ ?"

"ସେ କଥା ମତ, ପ୍ରିୟେ ! ସଂସାରରେ ପ୍ରତ୍ୟେକ ବସ୍ତୁ ଅନ୍ୟ ବସ୍ତୁଠାରୁ ଅଳ୍ପ ବହୁତେ ପୃଥକ୍ । ହେଲେ ବି, ଯେଉଁ ବିଷୟରେ ଆମେ କିଛି ନ ଜାଣେ ତା'କୁ ଅବିଶ୍ୱାସ କରି ପାରିବା କି ?"

ମେଗି କହିଲେ, "ସାବଧାନ ! ପ୍ରେ ଭାରି ଗୁଲାକ, ଏଆଡ଼ୁ ସେଆଡ଼ୁ କହି କଥାର ଜାଲରେ ଛନ୍ଦିଦେବେ ।"

"ସେପରି କିଛି ମୁଁ କରିବି ନାହିଁ । ମୋର ସିଧା କଥା । ଭାଗ୍ୟ ବିଷୟରେ ବା ଭାଗ୍ୟ-ଗଣନା ବିଷୟରେ ମୁଁ ବିନ୍ଦୁବିସର୍ଗ ଜାଣେ ନାହିଁ । ଏଥିରେ ବିଶ୍ୱାସ ନ କରିବି କିପରି ? ଭାଗ୍ୟ-ଗଣନା ହୁଏ, ତେଣୁ ଏଭଳି ଏକ ବିଦ୍ୟା ଅଛି ବୋଲି ମୁଁ ବିଶ୍ୱାସ କରେ ।

"କିନ୍ତୁ ଏହା ଫଳେ ବୋଲି ତୁମର ବିଶ୍ୱାସ ନାହିଁ ।"

"ଏ କଥା ଅବଶ୍ୟ ସତ ଯେ ଲକ୍ଷ ଲକ୍ଷ ଲୋକ ଆପଣାର ଭାଗ୍ୟ ଗଣାନ୍ତି ଓ ପଇସା ଦିଅନ୍ତି । ଏହା ଫଳୁ ବା ନଫଳୁ, ଏତିକ ଜାଣିବା ପରେ ଏ ବିଷୟରେ ଆଗ୍ରହୀ ହେବାର କଥା ନୁହେଁ ?"

"କିନ୍ତୁ ତୁମର ଯେ ବିଶ୍ୱାସ ନାହିଁ !"

"ଶୁଣ, ଶୁଣ, ମୁଁ ବିଶ୍ୱାସ କରେ ନାହିଁ ବୋଲି କହିବା ଠିକ୍ ନୁହେଁ । ମୋ'ର ଏ ବିଷୟରେ କିଛି ଜ୍ଞାନ ନାହିଁ—ଏ ଦୁଇ କଥା ତ ସମାନ ନୁହେଁ । ଭାଗ୍ୟ ଓ ଭାଗ୍ୟ-ଗଣନା ଏ ଦୁଇଟିରୁ କିଏ ଆଗ କିଏ ପଛ, ତାହା ମୋତେ ଜଣା ନାହିଁ ।"

ମାର୍ଗି କହିଲେ, "ସେ ଯାହା କହୁଛନ୍ତି, ତାହାର ଯଥାର୍ଥତା ବୋଧହୁଏ ମୁଁ ବୁଝୁଛି ।"

"ତୁମେ ବୁଝୁଛ ?" ମେଗି ଟିକିଏ ବିରକ୍ତ ହୋଇ ପଚାରିଲେ ।

"ହୁଏତ ଯେ ଭାଗ୍ୟ ଗଣନା କରୁଛି, ସେ ଭବିଷ୍ୟତରେ ଘଟିବାକୁ ଯାଉଥିବା ଘଟଣାମାନଙ୍କ ବିଷୟରେ କିଛି ଧାରଣା ଆଗରୁ କରି ରଖିଥାଏ । ଏଇଆ ଆପଣ କହୁଛନ୍ତି ନା ?"

"ତା ହୁଏତ ହୋଇପାରେ । କିନ୍ତୁ ସେ ଜାଣିଲା ବୋଲି, ତା'ଧ ଗୁଡ଼ିକ ଜାଣିବେ କିପରି ?" ମେଗି କହିଲେ ।

ମୁଁ କହିଲି, "କିନ୍ତୁ ଜଣେ ତା'ସବୁ ନ ଫେଣ୍ଟିଲେ ତ ତାସ ମନକୁ ଫେଣ୍ଟି ହୋଇଯିବ ନାହିଁ ।"

ମାର୍ଗି ମୋ' କଥା ଶୁଣି ମୋ ଆଡ଼କୁ ଥରେ ଚାହିଁଲେ ବି ନାହିଁ । ମୁଁ ଜାଣିଥାଏ, ସେ ମେଗ୍ସଙ୍କ ସଂଶୟ ଉପଲବ୍ଧି କରୁଥାନ୍ତି ଓ ତାହା ଦୂର କରିବା ପ୍ରୟୋଜନ ବୋଲି ବିଚାରୁଥାନ୍ତି ।

ମୁଁ ପଚାରିଲି, "ଆଚ୍ଛା, ଥରେ ପରୀକ୍ଷା କଲେ ହୁଅନ୍ତା ନାହିଁ ?"

ସେ କହିଲେ, "ପରୀକ୍ଷା କରିବା ବଡ଼ ଅଡୁଆ କଥା । ଯେଉଁ ଶକ୍ତି ଭାଗ୍ୟ ନିର୍ଣ୍ଣୟ କରେ, ପରୀକ୍ଷା କଲେ ତା'କୁ ସୁଖ ଲାଗେ ନାହିଁ । ତେଣୁ ସେ, ପରୀକ୍ଷା କରିବାକୁ ବସିଲେ, ଅନ୍ତର୍ହିତ ହୋଇଯାଏ । ତେବେ ଥରେ ପରୀକ୍ଷା କରି ଯାଉ । ପରୀକ୍ଷା କରିବାକୁ ଆପଣଙ୍କର ଇଚ୍ଛା, ତା' ହେଲେ ?"

ମୁଁ କହିଲି, "ତୁମେ ଦୁହେଁ ଯେ ଏ ପର୍ଯ୍ୟନ୍ତ ରମ୍ ଗ୍ଲାସକୁ ଛୁଇଁ-ନାହିଁ !" ଦୁହେଁ ଯାକ ଏକ ସଙ୍ଗେ ଦୁଇଟି ଯାକ ଗ୍ଲାସ ଟେକିଲେ ଓ ଥରେ ପିଇଥୋଇଦେଲେ । ମୁଁ ମୋ' ଗ୍ଲାସ୍ ନିଃଶେଷ କରି ପୁଣି ରେକାବି ହାବାର କଲି ।

ମେଗ୍ସ କହିଲେ, "ତୁମେ ଆଉ ପୁଣି ପିଇବ ?"

"ହଁ, ପ୍ରିୟେ !" ମୁଁ ମୋ ଗ୍ଲାସ୍ ଭର୍ତ୍ତି କରି ମାର୍ଗିଙ୍କୁ କହିଲି, "ଆଚ୍ଛା, ଆଜି ମୁଜ ତାସ ସଜାଡ଼ନ୍ତୁ ତ ?"

"କିନ୍ତୁ ସେଗୁଡ଼ିକରେ ଯାହା ଲେଖା ହୋଇଛି, ପଢ଼ିବାକୁ ତ ହେବ !"

"ଅଚ୍ଛା, ଯଦି ମେଗ୍ସ ବା ମୁଁ ତାସ ସଜାଡ଼ନ୍ତି ଓ ଆପଣ ପଢ଼ନ୍ତେ, ହୁଅନ୍ତା ନାହିଁ ?"

"କିନ୍ତୁ ଯେ ପଢ଼ିବ ତା'ସଙ୍ଗେ ତା'ସ ମାନଙ୍କରେ ଘନିଷ୍ଠ ସମ୍ପର୍କ ! ସେ ଯାହା ହେଉ, ଆପଣ ଯେପରି କହୁଛନ୍ତି, ସେପରି କରାଯାଉ । ଫଳ କ'ଣ ହେବ, କେଜାଣି ?"

ମେଗ୍ସ କହିଲେ, "ନିତାନ୍ତ ଯଦି କରିବାକୁ ହେବ, ତେବେ ଯଥାବିଧି କରିବା ଦରକାର ।" ତାଙ୍କ ପ୍ରକୃତି ସେଇପରି । ସେ ପରି-ବର୍ତ୍ତନ ବିରୋଧୀ ନାହିଁ—ମାନେ, ଛୋଟ ଛୋଟ କଥାରେ ପରିବର୍ତ୍ତନ । ଅନ୍ୟମାନଙ୍କଠାରୁ ତେର ନିପୁଣ ଭାବରେ ସେ ବଡ଼ଧରଣର ପରିବର୍ତ୍ତନ ବରଦାସ୍ତ କରି ପାରନ୍ତି । ଆଙ୍ଗୁଠିଟିଏ କଟିଗଲେ ସେ ବିବ୍ରତ ହୋଇ-

ପଡ଼ନ୍ତି, କିନ୍ତୁ ଚୋଟି କଟିଗଲେ ନିର୍ମମ ଭାବେ ବେଶ୍ ସହିପାରନ୍ତି । ଏ ଭାଗ୍ୟଗଣନା ବିଷୟ ମାର୍ଗିଙ୍କ ସଙ୍ଗେ ସକାଳେ ଆଲୋଚନା କରିଥିବା ମୁଁ ମେଗିଙ୍କୁ କହିଥିଲି । ବର୍ତ୍ତମାନ କଥା ଯେପରି ଚାଲିଥାଏ, ଜଣା ପଡ଼ୁଥାଏ, ଏ ବିଷୟ ମାର୍ଗିଙ୍କ ସଙ୍ଗେ ଅପ୍ରତ୍ୟାଶିତ ଭାବେ ଆଲୋଚିତ ହେଉଛି । ମୋତେ କେମିତି କେମିତି ଲାଗିଲା । ମୁଁ କହିଲି, "ସକାଳେ ଆମର ଏକଥା ପଡ଼ିଥିଲା ।"

ମାର୍ଗି କହିଲେ, "ହଁ, ସକାଳେ ମୁଁ ଦୋକାନକୁ କଫିପାଇଁ ଆସିଲା ବେଳେ । ସେତିକି ବେଳୁ ମୁଁ ଏ ବିଷୟ ବରାବର ଭାବୁଛି । ମୁଁ ତାସ ମୁଠାଏ ଆଣିଛି ମଧ୍ୟ ।"

କୌଣସି ବିଷୟରେ ଅଭିନିବେଶ ଦେଖିଲେ, ମେଗି ତା'କୁ କ୍ରୋଧ ବୋଲି ବୁଝନ୍ତି ଓ କ୍ରୋଧରୁ ଉପଦ୍ରବ ନିଶ୍ଚୟ ଜାତ ହେବ ବୋଲି ଭୟ କରନ୍ତି । ତାଙ୍କର ମାତାଲ କାକା କେତେଜଣଙ୍କର ଢଙ୍ଗରଙ୍ଗ ଦେଖି ତାଙ୍କର ଏଭଳି ଭୟ ହୋଇଯାଇଛି । ଦୁଃଖର କଥା, ମୁଁ ତାଙ୍କ ମନରେ ଏଇ ଭୟ ଜାତ ହେବାର ଅନୁଭବ କଲି ।

ମୁଁ କହିଲି, "ଚାଲ, ଭାଗ୍ୟଗଣନାରେ ନ ଲାଗି କ୍ୟାସିନୋ ଖେଳ ଖେଳିବା ।"

ମାର୍ଗି ମୋ'ର କୌଶଳ ବୁଝିପାରିଲେ, କାରଣ ଠକିଗଲେ; ବୋଧହୁଏ ସ୍ଥଳବିଶେଷରେ ସେ ନିଜେ ଏଇ ପନ୍ଥା ଅବଲମ୍ବନ କରନ୍ତି । ସେ କହିଲେ, "ମୋର ଆପତ୍ତି ନାହିଁ ।"

ମୁଁ କହିଲି, "ମୋ'ର ତ ସୌଭାଗ୍ୟ ଆସିବା କଥା ଜଣା ପଡ଼ିସାରିଛି । ମୁଁ ତ ନିଶ୍ଚୟ ଧନୀ ହେବି । ସେ ବିଷୟର ପୁନରୁତ୍ଥାନ ନିଷ୍ପ୍ରୟୋଜନ ।"

ମେଗି କହିଲେ, "ଦେଖିଲ ! ମୁଁ ଆଗରୁ କହୁଛି ଟିବ୍, ୟାଙ୍କର ଏଥିରେ ବିଶ୍ୱାସ ନାହିଁ । ଏଣୁତେଣୁ ଗୁଡ଼ାଏ ଗପି ପାଣି ବାଡ଼େଇଲେ । ଶେଷକୁ କ'ଣ ନା, ପରୀକ୍ଷା କରିବା ଦରକାର ନାହିଁ । ୟାଙ୍କ ଢଙ୍ଗରେ ମୁଁ ବେଳେ ବେଳେ ପାଗଳ ହୋଇ ଉଠେ ।"

"ପାଗଳ ହୋଇ ଉଠ ! କାହିଁ, ଜଣା ତ ପଡ଼ୁନାହିଁ ! ସବୁବେଳେ ତ ମୋର ଅନୁରକ୍ତା ପତ୍ନୀ ଭାବେ ମୁଁ ତୁମକୁ ଦେଖି ଆସିଛି ।"

ବଡ଼ ବିଚିତ୍ର କଥା, ସମୟେ ସମୟେ—ସବୁବେଳେ ନୁହେଁ—ଏକ ବିଷୟରେ ଅନୁକୂଳ ଓ ପ୍ରତିକୂଳ ମତ ଯୁଗପତ୍ ମନରେ ଜାଗି ଉଠେ । ମେଗି ସୁନିବଦ୍ଧ ଚିନ୍ତା କରିବାକୁ ନିଜ ମନକୁ ତାଲିମ କରି ନାହାନ୍ତି । ତେଣୁ ମନରେ ଯେତେବେଳେ ଯେଉଁ ଭାବ ଆସିଲା ସେଥିରେ ସେ ଭାସି ଯା'ନ୍ତି । ମୁଁ ବିଚାରିଲି, ବର୍ତ୍ତମାନ କଥାଟା ଯେଉଁଠି ପହଞ୍ଚିଲାଣି, ସମାଧାନ ନହେଲେ, ହୁଏତ ସେ ଆଉ ମାର୍ଗିଙ୍କର ଅନ୍ତରଙ୍ଗ ବନ୍ଧୁ ହୋଇ ରହି-ପାରିବେ ନାହିଁ – ହୁଏତ ତାଙ୍କ ସଙ୍ଗେ ଆଉ ସଦ୍‌ଭାବ ରଖି ପାରିବେ ନାହିଁ ।

ସମାଧାନ କରିବା ଉଦ୍ଦେଶ୍ୟରେ ମୁଁ କହିଲି, "ତାସ ସାହା-ଯ୍ୟରେ ଭାଗ୍ୟଗଣନା କରିବା ବିଷୟରେ ବାସ୍ତବିକ୍ ମୋ'ର ଜାଣିବାକୁ ମନ । ମୁଁ ଏ ବିଷୟରେ ଏକାବେଳକେ ଅଜ୍ଞ । ମୁଁ ବହୁବାର ଶୁଣିଛି, ଯାଯାବର ଜାତିର ଲୋକେ ଏହା କରନ୍ତି । ଆପଣ କ'ଣ ସେଇ ଜାତିର ଲୋକ ? ମୁଁ ଏ ପର୍ଯ୍ୟନ୍ତ ଯାଯାବର ଜାତିର ଲୋକ ଦେଖିନାହିଁ ।"

ମେଗି କହିଲେ, "ତାଙ୍କର କୁମାରୀ ନାମରୁ ଜଣାଯାଉଛି, ସେ ଋଷିଆର ଲୋକ; କିନ୍ତୁ ଆଲାସ୍କାରୁ ଆମେରିକା ଆସିଛନ୍ତି ।"

ତେବେ ତାଙ୍କ ଗାଲର ହାଡ଼ ଏତେ ପ୍ରଶସ୍ତ ଥିବାର କାରଣ ଧରା ପଡ଼ିଲା !

ମାର୍ଗି କହିଲେ, "ମୁଁ ତୁମଠାରୁ ଗୋଟିଏ କଥା ଲୁଚାଇଛି ବୋଲି ନିଜକୁ ମନେ ମନେ ଅପରାଧୀ ବୋଲି ଭାବେ । ମେଗି ! ଆମେ ଆଲାସ୍-କାକୁ କେମିତି ଗଲୁଁ ସେ କଥା ତୁମକୁ କହିନାହିଁ ।

ମୁଁ କହିଲି, "ଆଲାସ୍କା ତ ଋଷିଆର ଥିଲା । ଆମେ ଋଷିଆନ୍-ମାନଙ୍କଠାରୁ ତାହା ଖରିଦ୍ କରି ଆଣିଛୁଁ ।"

"ହଁ, କିନ୍ତୁ ଆପଣ ଜାଣନ୍ତିନାହିଁ, ସାଇବେରିଆ ପରି ଏହା ଋଷି-ଆର ଥିଲା ବନ୍ଦୀଶାଳା । ଗୁରୁତର ଅପରାଧରେ ଅଭିଯୁକ୍ତ ଲୋକେ ଏଠାକୁ ପଠା ହେଉଥିଲେ ।"

"କିଭଳି ଗୁରୁତର ଅପରାଧ ।"

"ଅତି ଜଘନ୍ୟ । ମୋ'ର ପଣ-ଗୋସାଁମା ଗୁଣିବିଦ୍ୟା କରିବା ଅପରାଧରେ ସେଠାକୁ ପଠା ହୋଇଥିଲେ ।"

"ସେ କ'ଣ କରିଥିଲେ ?"

"ସେ ଗୁଣିଝୁଣି କରି ଝଡ଼ ସୃଷ୍ଟି କରୁଥିଲେ ।"

ମୁଁ ହସି ପକାଇ କହିଲି, "ଆପଣ ତ ତାହାହେଲେ ପୈତୃକ ଧନରେ ସେଇଆ କରୁଛନ୍ତି !"

"ଝଡ଼ ସୃଷ୍ଟି କରୁଛି ?"

"ତା' ସହ ଭାଗ୍ୟଗଣନା କରିବା—ବୋଧହୁଏ ଏକା କଥା ।"

ମେଗ୍ କହିଲେ, "ତୁମେ ରହସ୍ୟ କରୁଛ । ଏହା ବୋଧହୁଏ ସତ ନୁହେଁ ।"

ମାର୍ଗି କହିଲେ, "ରହସ୍ୟ ପରି ଲାଗୁଥିବ । କିନ୍ତୁ ମୁଁ ଯାହା କହୁଛି, ସତ । ଗୁଣିଝୁଣି କରିବା ଥିଲା ଅତି ଜଘନ୍ୟ ଅପରାଧ, ମଣିଷ-ମାରୁଠାରୁ ବି ଜଘନ୍ୟ । ତାଙ୍କର ମକଦ୍ଦମା କାଗଜପତ୍ର ଅଦ୍ୟାପି ମୋ ପାଖରେ ଅଛି—ଅବଶ୍ୟ ଋସିଆନ୍ ଭାଷାରେ ।"

"ତୁମେ କ'ଣ ଋସିଆନ୍ ଭାଷା କହିପାର ?"

"ଆଜିକାଲିକୁ ସାମାନ୍ୟ ମନେ ଅଛି ।"

ମୁଁ କହିଲି, "ବୋଧହୁଏ ଗୁଣିଝୁଣି କରିବା ଆଜି ମଧ୍ୟ ସବୁଠାରୁ ବଡ଼ ଅପରାଧ ?"

ମେଗ୍ କହିଲେ, "ମୁଁ କଣ କହୁଥିଲି, ଦେଖୁଛନା ? ସ୍ତ୍ରୀଙ୍କର ଦସ୍ତୁର ଖାଲି ଏଣେ ତେଣେ କଥା ଘୂରାଇବା । ସତରେ କ'ଣ ଭାବୁଛନ୍ତି, ତୁମେ କେବେଁ ଠଉରେଇ ପାରିବ ନାହିଁ । କାଲି ରାତିରେ—ନାଇଁ ଆଜି ପାହାନ୍ତିଆରେ, ସେ ସକାଳ ହେବା ପୂର୍ବରୁ ଉଠିପଡ଼ି ବୁଲି ବାହାରି-ଗଲେ ।"

ମୁଁ କହିଲି, "ମୁଁ ତ ଗୋଟିଏ ପାଜି, ଦୁର୍ବୃତ୍ତ । ମୋ ଦୁର୍ବୃତ୍ତିର ସୀମା ନାହିଁ କି ସଂଶୋଧନର ସମ୍ଭାବନା ନାହିଁ ।"

ମେଗ୍ କହିଲେ, "ହଉ, ଥାଉ ! ମୁଁ ଏବେ ଯୁହେଁ, ମାର୍ଗି ଚାହା ସେଣ୍ଟନ୍ତୁ—କିନ୍ତୁ, ହଁ, ତାଙ୍କ ଢଙ୍ଗରେ ସେ କରନ୍ତୁ । ତୁମେ ସେଥିରେ ହାତ ଦେବା କଥା ପଡିବନାହିଁ । ଯେମିତି ଗପୁଥାଇଁ, ଗପ ସରିବ ନାଇଁ—ପିଲେ ଆସିଲେ ଏ କାମ ବି ହେବ ନାଇଁ ।"

ମୁଁ କହିଲି, "ମୋତେ ଟିକେ ପାଇଁ ମାଫ୍ କର ।" ମୁଁ ସିଡ଼ି ଚଢ଼ି ଆମ ଶୋଇବା ଘରକୁ ଗଲି । ଖଣ୍ଡାଟା ମୋ ଖଟଉପରେ ପଡ଼ିଥାଏ, ହ୍ୟାଟ୍-ପେଡ଼ାଟା ଖୋଲି ହୋଇ ତଳେ ଗଡ଼ୁଥାଏ । ମୁଁ ଗାଧୁଆଘରକୁ ଯାଇ, ପାଇଖାନାରେ ପାଣି ଛାଡ଼ିଦେଲି । ପାଣିର ଭସ୍‌ଭସ୍ ଶବ୍ଦ ଘର-ତମାମ ଶୁଣାଯାଏ । ଥଣ୍ଡା ପାଣିରେ ଗୋଟାଏ କନା ବୁଡ଼ାଇ ମୋ କପାଳରେ, ବିଶେଷ କରି ଆଖି ଉପରେ ରଖିଲି । ଆଖି ଦୁଇଟି ଭିତର ଠେଲିରେ ଡମା ଡମା ହୋଇ ବାହାରକୁ ବାହାରି ପଡ଼ିଲା ପରି ଜଣା-ପଡ଼ୁଥାଏ । ଥଣ୍ଡା ପାଣି ବାଜି ସୁଖ ଲାଗିଲା । ପାଇଖାନା ସିଟ୍ ଉପରେ ବସି, ଓଦାକନାରେ ମୁହଁ ପୋଛି ରହିଲି ; କନାଟା ଦେହ ତାପରେ ଉଷୁମ ଲଗିବାରୁ ତା'କୁ ପୁଣି ଓଦା କଲି । ଗାଧୁଆ ଘରୁ ବାହାରି, ଶୋଇବା ଘରବାଟେ ତଳକୁ ଗଲାବେଳେ, ହ୍ୟାଟ୍-ପେଡ଼ାରୁ ଓଟପକ୍ଷୀ-ପର-ଖଚିତ ନାଇଟ୍ ଟେମ୍ପଲର୍ ହ୍ୟାଟ୍‌ଟା କାଢ଼ି ତା'କୁ ମୁଣ୍ଡରେ ଦେଇ ବୀର ଦର୍ପରେ ତଳକୁ ଓହ୍ଲାଇଲି ।

ମେଘା କହିଲେ, "କେଡ଼େ ଭଣ୍ଡ ତୁମେ !" ତାଙ୍କ ମନରୁ ସବୁ ଦୁଶ୍ଚିନ୍ତା ଦୂର ହୋଇ ସେ ଖୁବ୍ ଖୁସି ହେଲା ପରି ଦିଶିଲେ । ବାୟୁମଣ୍ଡଳରୁ ସବୁ ପାପତାପ ଦୂର ହେଲା ।

ମୁଁ ପଚାରିଲି, "ଆଚ୍ଛା, ଆମ ଏଠାରେ ଓଟ ପକ୍ଷୀପର ସଫା ହୋଇପାରିବ ?"

ମାର୍ଗି କହିଲେ, "ହେବ, ବୋଧହୁଏ । ମିଷ୍ଟର୍ ସାଲ୍‌ଜ୍‌ଙ୍କୁ ପଚା-ରିବେ ।"

"ସୋମବାର ଦିନ ନେଇ କରି ଯିବ ।"

ମେଘା କହିଲେ, "ମାର୍ଗି ଏଥର ତାସ ଫେଣ୍ଟନ୍ତୁ । ମୋ'ର ସେଥିକି ଭାରି ମନ ।"

ସିଡ଼ି ମୁଣ୍ଡ ଗୋଲଖୁଣ୍ଟି ଉପରେ ଟୋପିଟା ରଖିଲି । ଟୋପିଟା ଲଗାଇ ଖୁଣ୍ଟି ମାତାଲ ନୌସେନାଧ୍ୟକ୍ଷଙ୍କ ପରି ଦିଶିଲା — ନୌ-ସେନାଧ୍ୟକ୍ଷ ମାତାଲ ହେବା ଯଦି ସମ୍ଭବ ।

ମେଘା କହିଲେ, "ତା'ସ ଖେଳ ଟେବୁଲ୍‌ଟା ଆଣ । ଯୁଆଙ୍କର ବହୁତ ଗୁଡ଼ାଏ ଜାଗା ଦରକାର ।"

ହଲ ପାଖ ଗ୍ଲେଟ ଘରୁ ଟେବୁଲଟା ଆଣିଲ ଓ ତା'ର ଗୋଡ଼-ଗୁଡ଼ାକ ମେଲେଇ ଟେବୁଲ୍‌ଟି ଥୋଇଲ ।

"ମାର୍ଗିଙ୍କର ଗୋଟିଏ ସିଧା-ପିଠି ଚଉକି ଦରକାର ।"

ଖାଇବା ଘର ଚଉକିରୁ ଗୋଟାଏ ଆଣି ରଖିଲ ।" ଏ କାମରେ ଆମର ଅଂଶ କ'ଣ ?"

"ତୁମେ ଖାଲି ଏକାଗ୍ର ମନରେ ବସ ।"

"କେଉଁ ବିଷୟରେ ମନକୁ ଏକାଗ୍ର କରିବ ।"

"କୌଣସି ବିଷୟରେ ନୁହେଁ । ମନକୁ ଯଥାସମ୍ଭବ ନିଶ୍ଚିନ୍ତ ରଖ । ସୋଫା ଉପରେ ମୋ ହାତବ୍ୟାଗଟା ଅଛି, ତାସ ସେଇଥିରେ ।"

ଭାଗ୍ୟ-ଗଣନା କରିବା ତାସ ଖୁବ୍ ମଇଳା, ମୋଟା ହୋଇଥିବ ଓ ତା'ର କୁଣ ସବୁ ମୋଡ଼ ହୋଇ ଯାଇଥିବ ବୋଲି ବିଶ୍ବାସିଥିଲି ; କିନ୍ତୁ ମାର୍ଗିଙ୍କ ତାସଗୁଡ଼ିକ ଭାରି ସଫା, ଚକ୍ ଚକ୍ କରୁଥାଏ, ପ୍ଲାଷ୍ଟିକ୍ ଲେପ ଉପରେ ଦିଆ ହେଲା ପରି । ଖେଳିବା ତାସଠାରୁ ଏଗୁଡ଼ିକ ସରୁ ଓ ଲମ୍ବା; ସଂଖ୍ୟା ମଧ୍ୟ ବା'ନରୁ ଯଥେଷ୍ଟ ଅଧିକ । ମାର୍ଗି ଟେବୁଲ ପାଖେ ସିଧା ହୋଇ ବସିଲେ ଓ ହାତରେ ତାସକୁ ବାଣ୍ଟିଲେ—ତାସ ଗୁଡ଼ିକରେ ଉଜ୍ଜ୍ୱଳ ରଙ୍ଗର ଚିତ୍ର ଓ ସେ ଗୁଡ଼ିକର ସାଜ ଭିନ୍ନ ରକମର । ଫ୍ରେଞ୍ଚ ଭାଷାରେ ତାସ-ଗୁଡ଼ିକର ନାମ ଲେଖା ହୋଇଥାଏ—ସମ୍ରାଟ, ସନ୍ନ୍ୟାସୀ, ସ୍ୟନ୍ଦନ, ସଂପ, ନ୍ୟାୟାଧୀଶ, ପାପପୁରୁଷ-ପୃଥିବୀ, ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର, ଖଡ୍‌ଗ, ପାତ୍ର, ଦଣ୍ଡ ଓ ଧନ—'ଧନ'ଚିତ୍ରର ସଙ୍କେତ ହୋଇ ଗୋଟିଏ ଗୋଲାପ ଫୁଲ ଚିତ୍ରିତ ହୋଇଥାଏ । ତାସର ପ୍ରତି ସାଜ (ଘର) ରେ ରାଜା, ରାଣୀ ଓ ଗୋଲାମ ମଧ୍ୟ ଥାନ୍ତି । ଯୁ। ବାଦ୍ ବିଚିତ୍ର, ଭାଗ୍ୟସଂଗୁରକ ତାସ କେତୋଟା ବି ଥିଲା—ବଜ୍ର ବାଜିଥିବା ଗୋଟାଏ ଦୁର୍ଗ, ଭାଗ୍ୟ ଚକ୍ର, ଫାସିଖୁଣ୍ଟରୁ ତଳମୁହାଁ ହୋଇ ଓହଳ ଥିବା ଗୋଟାଏ ମଣିଷ ଓ କଂକାଳ ହାତରେ ଗୋଟାଏ ଦା' ଥିବା ଚିତ୍ର—ତା' ତଳେ 'ମୃତ୍ୟୁ' ବୋଲି ଲେଖା ହୋଇଥାଏ ।

ମୁଁ କହିଲି, "ବଡ଼ ଦୁଃଖର ଚିତ୍ର ତ ! ଏ ଚିତ୍ରରେ ଯାହା ଅଛି ସ୍ତାଙ୍କ ଫଳ କ'ଣ ସେଇଆ ?"

"କ କ ସଂଯୋଗରେ ସେମାନେ ବାହାରବେ, ଫଳ ତା'ର ଉପରେ ନିର୍ଭର କରେ । ଓଲଟି କରି ପଡ଼ିଲେ ସାଂକେତିକ ଫଳର ଓଲଟା ଫଳ ମିଳେ ।"

"ଫଳରେ କମ୍ ବହୁତ ବି ଅଛି ?"

"ହଁ, ସଂଯୋଗକୁ ଦେଖି ସେ କଥା ନିର୍ଣ୍ଣୟ କରିବାକୁ ହୁଏ ।"

କାର୍ଡକୁ ଧରିବା ମାତ୍ରେ ମେଘିଙ୍କ ଆଚରଣରେ ନୈଷ୍ଠିକତା ଲକ୍ଷ୍ୟ କଲି । ମୁଁ ଆଗରୁ ଅନୁମାନ କରିଥିଲି ଯେ ମାର୍ଗି ଯେତେ ଦିଶୁଛନ୍ତି ତହିଁରୁ ଅଧିକ ବୟସର ଲୋକ । ଆଲୁଅରେ ତାଙ୍କ ହାତ ଦେଖି ମୋ' ଅନୁମାନ ଠିକ୍ ବୋଲି ପ୍ରମାଣିତ ହେଲା ।

ମୁଁ ପଚାରିଲି, "ତୁମେ ଏଥିକୁ ଶିଖିଲ କେଉଁଠୁ ?"

"ପିଲା ଦିନେ ଗୋସିଁମା ଏ କାମ କରିବାର ଦେଖିଥିଲି । ଭୋଜି ସଭାମାନଙ୍କରେ ଏ କୌଶଳ ଦେଖାଇ ଦେଖାଇ ଅଭ୍ୟାସ ହୋଇଗଲା— ଏହାଦ୍ୱାରା ମଣିଷ ଉପରେ ଲୋକଙ୍କର ଆଖି ପଡ଼େ ।"

"ତୁମର କ'ଣ ଏଥିରେ ବିଶ୍ୱାସ ଅଛି ?"

"ଠିକ୍ କହି ପାରିବି ନାହିଁ । ବେଳେ ବେଳେ ବିଚିତ୍ର, ବିଶ୍ୱାସ-ଜନକ ଫଳ ବାହାରେ ।"

"ଏହା କ'ଣ ମନର ଏକାଗ୍ରତା ଆଣିବାକୁ ଗୋଟାଏ ପ୍ରଣାଳୀ— ନା ମନୋବୈଜ୍ଞାନିକ ସାଧନା ?"

"ବେଳେ ବେଳେ ସେହିପରି ମନେ ହୁଏ । ତାସର ପୂର୍ବନିର୍ଦ୍ଧାରିତ ଫଳକୁ ଛାଡ଼ି ମୁଁ ବେଳେ ବେଳେ ଅନ୍ୟ ଫଳର ନିର୍ଦ୍ଦେଶ କରିଥାଏ ; ଦେଖେ, ଏହି ଅନ୍ୟ ଫଳ ହିଁ ଯଥାର୍ଥ ଫଳ ।" ସେ ତାସ ଫେଣ୍ଟିଲା ବେଳେ ଦେଖିଲି, ତାଙ୍କ ହାତ ଦୁଇଟି ଅଦ୍ଭୁତ ଭାବେ ପ୍ରଭାବିତ ହୋଇଛନ୍ତି । ସେ ତାସକୁ ଶଫଲ୍ କରି ଫେଣ୍ଟିଲେ, କାଟିଲେ, ପୁଣି ଶଫଲ୍ କଲେ ଓ କାଟିଲେ, ତା'ପରେ ମୋ ଆଡ଼କୁ ତାସ ବଢ଼ାଇ ଦେଲେ କାଟିବାକୁ ।

ମାର୍ଗି ପଚାରିଲେ, "କାହାର ଭାଗ୍ୟ ଗଣନା କରିବ ?"

ମେଘି କହିଲେ, "ଏଥାନ୍‌ଙ୍କ ଭାଗ୍ୟ । ଆଜ ଦେଖିବା, କାଲିର ଫଳ ସଙ୍ଗେ ସମାନ ମିଳୁଛି ନା ନାହିଁ ।"

ମାର୍ଗି ମୋ ଆଡ଼କୁ ଚାହିଁଲେ; କହିଲେ, "କଅଁଳ ବାଳ, ନେଳ ଆଖି । ତୁମର ବୟସ ଚାଳିଶରୁ କେତେ କମ୍ ?"

ମୁଁ କହିଲି, "ଠିକ୍ ଚାଳିଶି ।"

"ଦଣ୍ଡଧାରୀ ରାଜା" । ତାସ ବଣ୍ଡାରୁ ଏହିତାସଟି କାଢ଼ି କହିଲେ "ଏଇ ତୁମେ ।"—ରାଜପୋଷାକ ପିନ୍ଧିଥିବା ଓ ମୁଣ୍ଡରେ ମୁକୁଟ ଥିବା ଚିତ୍ର; ହାତରେ ନେଳ ରଙ୍ଗର ଗୋଟିଏ ଦଣ୍ଡ ଅଛି—ତଳେ ଲେଖା ହୋଇଛି 'ଦଣ୍ଡଧାରୀ ରାଜା' । ସେ ଏ ତାସଟି କାଢ଼ି ଓପରମୁହାଁ କରି ଟେବୁଲରେ ଥୋଇଲେ ଓ ପୁଣି ତାସ ଫେଣ୍ଟିଲେ ; ତା'ପରେ ଗୁଣୁଗୁଣୁ କରି କ'ଣ ପଢ଼ି ତାସଗୁଡ଼ିକ ଏପାଖ ସେପାଖ କରି ଗୋଟିଏ ତାସ ବାହାର କଲେ ଓ ତା'କୁ ମୋ 'ରାଜା' ତାସ ଉପରେ ଓଗୁଡ଼ାଇ ରଖିଲେ ; କହିଲେ, "ଏୟେ ତୁମକୁ ଆବୃତ କରି ରହିଛି ।" ଆଉ ଗୋଟିଏ ବାହାର କରି ଆଡ଼-ବାଗରେ ରଖି କହିଲେ, "ଏୟେ ତୁମର ବାଟ ଜଗି ରହିଛି ।" ପୁଣି ଗୋଟିଏ ବାହାର କରି ମୋ ତାସର ଓପରକୁ ଥୋଇ କହିଲେ, "ଏୟେ ତୁମ ମୁଣ୍ଡରେ ମୁକୁଟ ପିନ୍ଧାଇବ ।" ତଳପଟକୁ ଗୋଟିଏ ରଖି କହିଲେ, "ଏୟେ ତୁମର ମୂଳଦୁଆ ।" ଆଉ ଦୁଇଟି କଡ଼େଇ କରି ରଖି କହିଲେ, "ଏଥିରୁ ଗୋଟିଏ ତୁମ ଆଗରେ ରହିବ ଓ ଆରଟି ପଛରେ ।" ଏତେବେଳକୁ ଟେବୁଲ ଉପରେ ସେ ତାସରେ ଗୋଟିଏ କ୍ରୁସ୍ ଚିହ୍ନ ଆଙ୍କିଥାନ୍ତି । ତରତରରେ ସେ ଚାରିଟି ତାସ ବାହାର କରି ଏହି କ୍ରୁସ୍ର ବାମ ଭାଗରେ ଧାଡ଼ିକରି ରଖି ଦେଇ କହିଲେ, "ହେଇ, ଏୟେ ଚାରୋଟି ତୁମେ, ତୁମ ଘର, ତୁମ ଆଶା ଆକାଂକ୍ଷା ଓ ତୁମର ଭବିଷ୍ୟତ । ଶେଷରେ ଯେଉଁ ତାସଟି ଥୁଆ ହେଲା ସେଥିରେ ଥାଏ, ଫାଶିଖୁଣ୍ଟରେ ଓହଳା ହୋଇ-ଥିବା ମଣିଷର ଚିତ୍ର ; କିନ୍ତୁ ଚିତ୍ରଟିର ଉପର ଭାଗ ଥାଏ ତଳକୁ ଓ ତଳ ଭାଗ ଉପରକୁ, ମାର୍ଗିଙ୍କ ଆଡ଼କୁ; କିନ୍ତୁ ତାଙ୍କ ସାମନାରେ ଟେବୁଲ୍ର ଆରପାଖେ ମୋ ଆଡ଼କୁ ଚାହିଁଲେ ଏ ତାସର ଉପରଭାଗ ଉପରକୁ ଓ ତଳଭାଗ ତଳକୁ, ସ୍ୱାଭାବିକ ରୀତିରେ ଥିବାର ଦିଶୁଥାଏ ।

ମୁଁ କହିଲି, "ତେବେ ମୋ ଭବିଷ୍ୟତର ପରିଣତି ଏଇ ।"

ସେ କହିଲେ, "ହୁଏତ ଏହା ବିପଦରୁ ପରିତ୍ରାଣ ସୂଚାଉଛି ।" ହଣି ଆଙ୍ଗୁଠି ସେ ତାଙ୍କ ତଳ ଓଠ ଉପରେ ଚଲାଉଥାନ୍ତି ।

ମେସ୍ ଉତ୍ତର କଲେ, "ଟଂକା ମିଳିବ ବୋଲି ବାହାରିଲାଟି ?"

ଅନ୍ୟମନସ୍କ ଭାବରେ ମାର୍ଗି କହିଲେ, "ହଁ, ଟଂକା ମିଳିବ ବୋଲି ସୂଚନା ମିଳୁଛି ।" ଏତିକ କହି ହଠାତ୍ ତାସଗୁଡ଼ିକ ଗୋଟେଇ ପକେଇଲେ, ବାରଂବାର ଶଫଲ୍ କଲେ ଓ ତାଙ୍କ ମନ୍ତ୍ର ଯନ୍ତ୍ର ତୂନି ତୂନି ବୋଲି ପୁଣି ସେଗୁଡ଼ିକ ମେଲାଇଲେ । ଗୋଟି ଗୋଟି ତାସ ବାହାର ନ କରି, ସାଙ୍ଗେ ସାଙ୍ଗେ ପୂର୍ବରେ ବାହାର କରିଥିବା ସବୁଗୁଡ଼ିକ ତାସ ଏକ ସଙ୍ଗେ ଟେବୁଲରେ ପୂର୍ବପରି ସଜାଇଲା ପରି ବୋଧହେଲା । ତାହାଙ୍କ ଆଖିକୁ କୁହୁଡ଼ି ଡାକିଲା ପରି ଦିଶୁଥାଏ ଓ ତାଙ୍କ ମନ ଆମ୍ଭମାନଙ୍କଠାରୁ ବହୁଦୂରରେ ଥିଲା ପରି ଜଣାଯାଉଥାଏ ।

ତାଙ୍କ କାର୍ଯ୍ୟକୁ ଲକ୍ଷ୍ୟ କରି ମୁଁ ଭାବିଲି, ବେଶ୍ ଫନ୍ଦି ସେ ବାହାର କରିଛନ୍ତି, ସ୍ତ୍ରୀଲୋକମାନଙ୍କ ସମାଜରେ କାହିଁକି ଯେ କୌଣସି-ଠାରେ ସେ ମାତ୍ର କରୁଥିବେ, ସମସ୍ତଙ୍କୁ ଅଭିଭୂତ କରି ଦେଉଥିବେ । ଡେଲ୍‌ଫି ମନ୍ଦିରର ଦେବବାଣୀ-ପ୍ରଚାରିକା ଠିକ୍ ଏଙ୍କର ପରି ଦିଶୁଥିବ । ଧୀର ଶାନ୍ତ ଓ ଦର୍ଶକମାନଙ୍କର ବିଭ୍ରାନ୍ତିକାରୀ । ନିଜର ଗୀତଗତିରେ ଯଦି ଲୋକଙ୍କୁ ଅଭିଭୂତ କରି ଏପରି ରଖିଦେବ ଯେ ସେମାନେ ନିଃଶ୍ୱାସ ବନ୍ଦ କରି ବହୁକ୍ଷଣ ତୁମ ଆଡ଼କୁ ଜିଜ୍ଞାସୁ ହୋଇ ଚାହିଁରହିବେ, ତେବେ ତୁମ ମୁହଁରୁ ଯାହା ବାହାରିବ ତାହା ସେମାନେ ଅକ୍ଷରେ ଅକ୍ଷରେ ବିଶ୍ୱାସ କରିବେ । ଅଭିନୟର ପ୍ରୟୋଜନ ନାହିଁ, ସମସ୍ତ ଦେଖି, ନିଜ ଢଙ୍ଗରଙ୍ଗକୁ ବାଗେଇ ପାରିଲେ ହେଲା । ଏ ସ୍ତ୍ରୀଲୋକଟି ନିଜର ପ୍ରତିଭା, ବୁଦ୍ଧିବଳକୁ ଆୟତ୍ତ କରିବାରେ ବୃଥାରେ ନଷ୍ଟ କରୁଛନ୍ତି । ଆଜି ତ ଆମ ଦୁହିଙ୍କ ଉପରେ, ବିଶେଷ କରି ମୋ ଉପରେ ଏଙ୍କର !ପ୍ରଭାବ ପଡ଼ୁଛି ! କିନ୍ତୁ ଉଦ୍ଦେଶ୍ୟ କ'ଣ ? ମୋଠାରୁ ସେ କି ପ୍ରତିଦାନ ଆଶା କରନ୍ତି ? ହଠାତ୍ ସେ ତାସଗୁଡ଼ିକ ଗୋଟେଇ ପକାଇଲେ, ହାତ ମାରି ସଜାଡ଼ି ଦେଲେ ଓ ନାଲିଆ ବାକ୍‌ସରେ ସେ ସବୁ ପୂରାଇ ଦେଲେ । ବାକ୍‌ସ ଉପରେ ଗୋଟିଏ ଫ୍ରେଞ୍ଚ୍ କଂପାନିର ନାମ ଲେଖା ହୋଇଥାଏ ।

ତାସ ରଖି ସାରି ସେ କହିଲେ, "ଆଜି ଏହାର ବ୍ୟବହାର କରିପାରିବିନାହିଁ । ବେଳେ ବେଳେ ଇମିତି ହୁଏ ।"

ମେସ୍ ଅଣନିଃଶ୍ୱାସ ହୋଇ କହିଲେ, "ବୋଧହୁଏ ଏପରି କିଛି

ଜାଣି ପାରିଛ, ଯାହା ଆମ ଆଗେ କହିବାକୁ ସଂକୋଚ ହେଉଛି ।"

"ନା, ସଂକୋଚ ହେବ କାହିଁକି ? କହୁଛି, ଶୁଣ । ମୁଁ ପିଲାବେଳେ ଗୋଟିଏ ସାପ, କାତି ଛାଡ଼ିବାର ଦେଖିଥିଲି । ଗୋଟିଏ ପର୍ବତର କଣ୍ଟକଟିଆ ନାଗ । ମୂଳରୁ ଶେଷ ଯାଏଁ ତା'ର କାତିଛାଡ଼ିବା ଦେଖିଥିଲି । ବଡ଼ ଅଦ୍ଭୁତ କଥା, ଏଇଲାଗେ ମୁଁ ତା'ସକୁ ଚାହିଁଛି, ତାପ ସବୁ ଉଭେଇଗଲେ ଓ ତା' ଜାଗାରେ ମୁଁ ଦେଖିଲି ସେଇ ସାପ କାତି ଛାଡ଼ୁଛି—ତା'ର ଗୋଟାଏ ଅଂଶ କୁଞ୍ଚିତ ଓ ମଇଳା ଦେଖା ଯାଉଛି, ଓ ଅନ୍ୟ ଅଂଶ ନୂଆ ଓ ତେଜସ୍କର ଦିଶୁଛି । ଏଥର ଘଟଣାଟା ଅନୁମାନ କର ।"

ମୁଁ କହିଲି, "ମନେ ହୁଏ, ତୁମେ ସମାଧି ଅବସ୍ଥାରେ ରହିଗଲ ! ଏଭଳି ଆଉ କେବେ ହୋଇଥିଲା ?"

"ହଁ, ପୂର୍ବରେ ତିନିଥର ଏଇପରି ହୋଇଥିଲା ।"

"ଆରଥର କ'ଣ, ପରେ ଏ ଘଟଣାର ମର୍ମ ବୁଝି ପାରିଥିଲ ?"

"ନା, ବୁଝିପାରିଲା ପରି ମନେ ହେଉନାହିଁ ।"

"ପ୍ରତି ଥର କ'ଣ ଏଇ ସାପକୁ ଦେଖିଥିଲ ?"

"ନା, ଅନ୍ୟ ଦୃଶ୍ୟ ସବୁ; କିନ୍ତୁ ଏହାରି ପରି ଅଦ୍ଭୁତ ।"

ମେରି ଉଚ୍ଛ୍ୱସିତ ଭାବେ କହିଲେ, "ହୁଏତ ଏଥାନ୍‌ଙ୍କ ଭାଗ୍ୟରେ ଯେଉଁ ପରିବର୍ତ୍ତନ ହେବାକୁ ଯାଉଛି ତା'ରି ପ୍ରତୀକ ଏ ଦୃଶ୍ୟ !"

"ତେବେ କ'ଣ ଏଥାନ୍‌ଙ୍କୁ କଣ୍ଟକଟିଆ ନାଗ ବୋଲି କହୁଛ ?"

"ହଁ, ସତେ ତ ! ତୁମର ବିସ୍ମୟର କାରଣ ମୁଁ ସମଜିପାରୁଛି ।"

ମା'ଗ କହିଲେ, "ମୋ ଦେହ କମିତି ଶିତେଇ ଯାଉଛି । ପିଲାଦିନେ ମୋତେ ସାପ ସୁଖ ଲାଗୁଥିଲା; ପରେ, ବୟସ ବଢ଼ିବାରେ ସେ ଗୁଡ଼ାକ ମୋତେ ଖରାପ ଲାଗିଲା । ସାପ ଦେଖିଲେ ମୋର ମନ କେମିତି ହୋଇଯାଏ । ମୁଁ ଆଉ ରହି ପାରିବି ନାହିଁ; ଯାଉଛି ।"

"ଏଥାନ୍ ତୁମକୁ ଛାଡ଼ି ଦେଇ ଆସନ୍ତୁ ।"

"ନା, ତାହା ଦରକାର ନାହିଁ ।"

ମୁଁ କହିଲି, "ମୋର ଆଦୌ ଆପତ୍ତି ନାହିଁ ।"

ମା'ଗ ମେରିଙ୍କୁ ଚାହିଁ ଟିକିଏ ହସିଲେ; କହିଲେ, "ତାଙ୍କୁ ପାଖରୁ ନଛାଡ଼ି ପାଖେ ପାଖେ ରଖ । ଜଣେ ସଙ୍ଗୀ ନଥିଲେ କେମିତି ଲାଗେ ତୁମେ କୁଆଡ଼ୁ ଜାଣିବ ?"

ମେଘା କହିଲେ, "ବାଜେ କଥା । ଏତେ ଦୁଃଖ କାହିଁକି ? ଟିକିଏ ଆଙ୍ଗୁଠି ଇସାରା ଦେଲେ ତ ତୁମେ ସାଙ୍ଗେ ସାଙ୍ଗେ ସ୍ୱାମୀ ପାଇ ପାରିବ ।"

"ପୂର୍ବେ ସେଇଆ କରିଥିଲି ମ ! କିନ୍ତୁ ବୃଥା । ସହଜେ ଯେଉଁ ସ୍ୱାମୀ ମିଳନ୍ତି, ସେ ଟେକନ୍ତି ନାହିଁ ; ସେ ଭଳି ସ୍ୱାମୀ ଥିବା ନଥିବା ସମାନ । ତୁମ ସ୍ୱାମୀଙ୍କୁ ଜାବତାରେ ରଖ । କିଏ ଖସାଇ ନେବ ଟି !" କଥା କହୁଥାନ୍ତି, ତେଣେ କୋଠ ଲଗାଉଥାନ୍ତି, ଚଟାପଟ୍ ।

"ଭଲ ଖାଇବାକୁ ମିଳିଲି । ମୋର ମନ, ତୁମେ ଆଉଥରେ ଡାକିବ । ଏଥାନ୍, ଭାଗ୍ୟ ଗଣନାରେ ବାଧା ପଡ଼ିବାରୁ ମୁଁ ଦୁଃଖିତ ।"

"କାଲି ଚର୍ଚ୍ଚରେ ଦେଖା ହେବ ବୋଲି ଆଶାକରୁଛୁ ।"

"ନା, ଏଇରାତିରେ ମୁଁ ମଣ୍ଡାକ୍ ଚାଲିଯାଉଛି ।"

"କିନ୍ତୁ ସେ ଜାଗାରେ ତ ଏ ସମୟରେ ପାଣି ପବନ— ଘୋର ଥଣ୍ଡା ।"

"ସେଠାରେ ସକାଳେ ସମୁଦ୍ରକୁ ଦେଖିବାକୁ ମୋତେ ଘୋର ସୁଖ ଲାଗେ । ହଉ, ବିଦାୟ !" ମୁଁ ତାଙ୍କ ପାଇଁ ଦୁଆର ମେଲାଇବା ପୂର୍ବରୁ ସେ ଚାଲିଗଲେ; ସତେ ଯେମିତି ପଛରୁ ତାଙ୍କୁ କିଏ ଗୋଡ଼ାଉଛି ।"

ମେଘା କହିଲେ, "ଆଜି ରାତିରେ ସେ ମଣ୍ଡାକ୍ ଯିବେ ବୋଲି ତ ମୋତେ କହି ନଥିଲେ ।"

ମୁଁ ଏକଥା ଜାଣିଥିଲେ ବି ମେଘାଙ୍କୁ କହିବାକୁ ଭରସି ପାରି ନଥିଲି, ମାର୍ଗି ବି ଭରସି ପାରି ନଥିଲେ ନିଶ୍ଚୟ ।

ମେରି ମୋତେ ପଚାରିଲେ, "ଏଥାନ୍, ଆଜି ରାତିରେ ଯେଉଁ ଭାଗ୍ୟଗଣନା ହେଲା ସେଥିରୁ କ'ଣ ଠଉରେଇଲ ?"

'ଭାଗ୍ୟଗଣନା ହେଲା କୋଉଠି ? ସେ ତ କିଛି କହିଲେ ନାଇଁ ।"

"ତମେ ପାସୋରି ଦେଇଛ । ଟଙ୍କା ମିଳିବ ବୋଲି ସେ କହିଲେ ପରା ! କିନ୍ତୁ ପରେ ତାଙ୍କର ଯେଉଁ ଅବସ୍ଥା ହେଲା, ସେଇଟା କ'ଣ ? ମୁଁ ବିଶ୍ୱରୁଛି, ସେ ଏପରି କିଛି ଦେଖିଲେ, ଯାହା ଆମକୁ କହିବାକୁ ଇଚ୍ଛା କଲେ ନାହିଁ । କ'ଣ ଗୋଟାଏ ଦେଖି ସେ ବିବ୍ରତ ହୋଇ ପଡ଼ିଲେ ।"

"ମୁଁ ବୁଝୁଛି, ପୂର୍ବେ ଥରେ ସେ ସାପଟା ଦେଖିଥିବାରୁ, ସାପଭୟ ତାଙ୍କ ମନରେ ରହିଯାଇଛି ।"

"ସାପ ଦଂଶିବାର କିଛି ଅର୍ଥ ଅଛି ବୋଲି ବୁଝୁନାହିଁ ତେବେ ?"

"ପ୍ରିୟତମେ ! ତୁମେ ସିନା ଭାଗ୍ୟଗଣନାରେ ପଟୁ ହୋଇଗଲଣି । ମୋର ତ ସେଥିରେ ପ୍ରବେଶ ଇ ନାହିଁ !"

"ଛାଡ଼ ସେ କଥା; ଯାହା ହେଉ ତୁମେ ମାଗିଙ୍କୁ ଘୃଣା କରନାହିଁ, ଏହା ଦେଖି ମୋର ଆନନ୍ଦ । ମୋର ଆଶଂକା ଥିଲା, ତୁମେ ତାଙ୍କୁ ଘୃଣା କରୁଥିଲ ।"

ମୁଁ କହିଲି, "ମୁଁ ତ ଫିସାଦିଆ, ତୁମେ ଜାଣ । ମୁଁ ମୋ' ମନର କଥା ଲୁଚାଇ ରଖିଥିଲି ।"

"ମୋଠାରୁ ତୁମ ମନର କଥାମାନ ଲୁଚି ରହେ ନାହିଁ । ବୋଧହୁଏ ହିଲ୍ଲିଷ୍ଟସ୍ ଶୋ ଯାଏଁ ସେ ରହିବେ !

"ସେ କ'ଣ ଆଉ ଥରେ ଆସିବେ ?"

"ନାଇଁ ମ ! ପିଲେ ସିନେମାର ହିଲ୍ଲିଷ୍ଟସ୍ ଶୋ ଦେଖିବାକୁ ରହିବେ ବୋଲି କହୁଥିଲେ । ସବୁଥର ସେଇଆ କରନ୍ତି । ମୁଁ ତ ବୁଝିଲି, ଖାଦ୍ୟସାମଗ୍ରୀ ତୁମ ମନକୁ ପାଇଲା !"

ମୁଁ କହିଲି, "ମୋର ଗଣ୍ଡଗୋଳ ଜଟିଳ । ଯଥାସମୟରେ ମୁଁ ତୁମ ଇଜ୍ଜତ ଉପରେ ଆକ୍ରମଣ କରିବ । ଜାଣି ରଖ ।"

———

# ଷଷ୍ଠ ପରିଚ୍ଛେଦ

ଅନୁଭବ କଥା କହୁଛି । ଅନେକ ସମୟରେ କୌଣସି ସମସ୍ୟା ଆସି ପଡ଼ିଥିଲେ ସାଙ୍ଗେ ସାଙ୍ଗେ ତା'ର ସମାଧାନ ନକରି, ଭବିଷ୍ୟତରେ ବିଚାରିବାକୁ ରଖିଦିଏ । ପରେ, ସମୟ କରି, ସେ ବିଷୟର ବିଚାର ଆରମ୍ଭ କଲା ବେଳକୁ ଦେଖେ, ମନ ଭିତରେ କେତେବେଳେ ବିଚାର ସରି ସମସ୍ୟାର ସମଧାନ ହୋଇ ସାରିଛି ଓ ସିଦ୍ଧାନ୍ତ ନିଶ୍ଚିତ ହୋଇ ଯାଇଛି । ସମସ୍ତଙ୍କର ଏଇପରି ହେଉଥିବ କି ନାହିଁ, ମୁଁ ଜାଣେ ନାହିଁ, କିନ୍ତୁ ବିଚାରୁଛି, ଏଇ ଭଳି ଅବଶ୍ୟ ହେଉଥିବ । ମନେହୁଏ, ସତେ ଯେପରି, ମନଗହନର ଅନ୍ଧାର ଗମ୍ଭିଘରେ ରୂପହୀନ ବିଚାରକ ଦଳ ବସି ମୋ ସମସ୍ୟା ଉପରେ ସିଦ୍ଧାନ୍ତ ନିର୍ଣ୍ଣୟ କରି ସାରିଛନ୍ତି । ମୋ' ମନଭିତରର ଏହି ନିଭୃତ ଓ ଚନ୍ଦ୍ରାହୀନ ସ୍ଥାନଟି ଗୋଟିଏ ଗଭୀର, ତରଙ୍ଗହୀନ କୃଷ୍ଣ ଜଳରାଶିର ହ୍ରଦ ବୋଲି ମୁଁ କଳ୍ପନା କରେ । ଏଇଥିରେ ମୋର ଚିନ୍ତା ଓ ବିଚାରର ସନ୍ତାନ ପ୍ରସୂତ ହୁଅନ୍ତି । ଯାଙ୍କ ଭିତରୁ ମାତ୍ର କେତୋଟି ବାହାରକୁ ବାହାରନ୍ତି । ହୁଏତ ହ୍ରଦ ନହୋଇ ଏହା ଗୋଟିଏ ଲାଇବ୍ରେରୀ - ସୃଷ୍ଟି ଆରମ୍ଭରୁ ଜୀବଜଗତରେ ଯାହା ଯାହା ଘଟିଛି ସେ ସବୁ ସଂଗୃହୀତ ହୋଇ ଏଠାରେ ରହିଛି ।

ମୋ ମତରେ, ସମସ୍ତେ ଏ ସ୍ଥାନକୁ ସମାନ ଭାବରେ ପ୍ରବେଶାଧିକାର ପା'ନ୍ତି ନାହିଁ । କବିମାନଙ୍କ ପରି ଅଳ୍ପ କେତେଜଣ ଯା ଭିତରକୁ ଯାଇପାରନ୍ତି । ଯୁଦ୍ଧରେ ଥରେ, ପାହାନ୍ତିଆରେ ମାର୍ଚ୍ଚ କରିବାକୁ ଥିଲା । ମୋ ପାଖେ ଆଲାର୍ମଘଣ୍ଟା ନଥାଏ । ଏ ବିଷୟରେ ମନଗହନକୁ ବାର୍ତ୍ତା ପଠାଇ ଜବାବ୍ ପାଇବାର ଗୋଟାଏ ସୂତ୍ର ବାହାର କଲି । ରାତିରେ ବିଛଣାରେ ପଡ଼ି ମନେ ମନେ ଭାବିଲି, ମୁଁ ଯାଇ ସେଇ ଘନକୃଷ୍ଣ ଜଳଭାଗର କୂଳରେ ଠିଆ ହୋଇଛି; ମନେ ମନେ ଭାବିଲି, ମୁଁ ଗୋଟିଏ ଧଳା

ବାଲିଗରଡ଼ା ଆଣି ସେଥିରେ ଗାଡ଼ କଲା ମ୍ୟାଇରେ 'ଶ୍ରେଗ ଗୁରିଣ୍ଟା' ବୋଲି ଲେଖି, ତା'କୁ ସେଇ ପାଣିରେ ପକାଇ ଦେଲି; ମନେ ମନେ ଦେଖିଲି, ପଥରଟି ଧୂର୍ ଧୂର୍ ପାଣିରେ ପଡ଼ି ବୁଡ଼ିଗଲା । ଯାହା ବିଶ୍ବାସ ଥିଲି ସେଇଆ ହେଲା । କଣ୍ଟାକୁ କଣ୍ଟା ଗୁରିଣ୍ଟା ବେଳେ, ମୋ ନିଦ ଭାଂଗିଗଲା । ପରେ, ଗୁରିଣ୍ଟା ବାଜିବାକୁ ଦଶମିନିଟ୍ ଥାଇ, ବା ସଉଆ ଗୁରିଣ୍ଟାରେ ଉଠିବା ସକାଶ ଏଇ ଉପାୟ କରିଛି । କୌଣସି ଥର ଫେଲ୍ ହୋଇ ନାହିଁ ।

ବେଳେ ବେଳେ ମନଗହନର ଏହି ହ୍ରଦରୁ ବିଚିତ୍ର ଜନ୍ତୁ ବାହାରନ୍ତି; ବେଳ ବେଳେ ଖିପଣାକୃତି ସାପ ବା ଗୋଧି ଏହି ଗଭୀର ଜଳରାଶିରୁ ବାହାରିପଡ଼ନ୍ତି ।

ମାତ୍ର ବର୍ଷକ ପୂର୍ବେ, ମେରୀଙ୍କ ଭାଇ ଡେନିସ୍ ଆମର ଘରେ ମଲେ । ବଡ଼ ଦୁଃଖଯନ୍ତ୍ରଣାରେ ତାଙ୍କର ପ୍ରୟାଣ ହେଲା । ତାଙ୍କ ଗଳଗ୍ରନ୍ଥିରେ ଗୋଟାଏ ଘା' ହୋଇ ସେ ବହୁଦିନ ପଡ଼ିଲେ । ଘା' ଶୀଘ୍ର ଭଲ ନ ହେବାରୁ ବା ମାରକ ନ ହେବାରୁ ତିଳେ ତିଳେ ହୋଇ ମରଣଭୟ ତାଙ୍କୁ ଗ୍ରାସ କରୁଥାଏ । ଭୟ ଯେତିକି ବଢ଼ିଲା ସେ ସେତିକି ଅସ୍ଥିର ଓ ପ୍ରଚଣ୍ଡ-ପ୍ରକୃତି ହେଲେ । ଆଇରିସ୍ ଲୋକ ହୋଇଥିବାରୁ ତାଙ୍କ ମୁହଁଟା ତ ସହଜେ ଘୋଡ଼ା ମୁହଁ ପରି ; ହେଲେ ହେଁ, ସେଥିରେ ଆଗେ ସଦ୍‌ଭାବ ଓ ସହୃଦୟତାର ସଙ୍କେତ ଥିଲା । ରୋଗରେ ମୁହଁଟାରେ ଶ୍ୱାପଦର ହିଂସ୍ରତା ଫୁଟି ଉଠିଲା । ମୁଁ ତାଙ୍କୁ ବିଛଣାରେ ମାଡ଼ି ବସି ଶାନ୍ତ କରାଇବାକୁ ଓ ମନରୁ ମୃତ୍ୟୁଭୟ ଦୂର କରିବାକୁ ଚେଷ୍ଟା କରୁଥାଏ । ହପ୍ତେ ଖଣ୍ଡେ ଏଭଳି ଯନ୍ତ୍ରଣା ପାଇବା ପରେ ତାଙ୍କ ଫୁସ୍‌ଫୁସ୍‌ରେ ରସ ପୂରିଯାଇ ଘଡ଼ଘଡ଼ ଶବ୍ଦ ହେଲା । ମଣିଷର ମୃତ୍ୟୁ-ଦୃଶ୍ୟ ମେରୀ ଦେଖନ୍ତୁ ବୋଲି ମୁଁ ଚାହିଁଲି ନାହିଁ । ମୃତ୍ୟୁର ସ୍ୱରୂପ ସେ ପୂର୍ବରୁ ଦେଖି ନ ଥିଲେ, ଏଇଠାରେ ପ୍ରଥମେ ଦେଖୁଥାନ୍ତେ, ତାଙ୍କ ମନରୁ ଜଣେ ସହୃଦୟ ବ୍ୟକ୍ତିର—ତାଙ୍କ ଭାଇର ସ୍ମୃତି ଏକାବେଳକେ ପୋଛି ହୋଇଯିବ ବୋଲି ମୋର ଭୟ ହେଲା । ତେଣୁ ତାଙ୍କୁ ଆଳ କରି ଅନ୍ୟତ୍ର ପଠାଇ ଦେଇ ମୁଁ ଡେନିସ୍‌ଙ୍କ ଶଯ୍ୟାପାଖେ ବସି ରହିଲି । ସେତିକିବେଳେ ମୋ ହୃଦୟର ସେଇ ଘନକୃଷ୍ଣ ଜଳ-ଭଣ୍ଡାର ଭିତରୁ ବାହାରିଲା ଏକ ବିଚିତ୍ରାକାର ଜନ୍ତୁ । ଡେନିସ୍‌ଙ୍କୁ ମୁଁ ଘୃଣା

କରିବାକୁ ଲାଗିଲି,ତାଙ୍କୁ ମାରି ଦେବାକୁ, ତାଙ୍କ କାମୁଡ଼ କଣା କରିଦେବାକୁ ଇଚ୍ଛା କଲି । ମୋ ଦାନ୍ତ ପାଟିର ମାଂସପେଶୀ ଟାଣି ହୋଇ ଯାଉଥାଏ, ଶିକାର ଦେଖିଲେ ବାଘଟା ଯେପରି ଓଠ ଗୁଟିପକାଏ ମୁଁ ସେହିପରି କରିବାକୁ ଆରମ୍ଭ କଲି ।

ଡେନିସ୍‌ଙ୍କ କାଳ ପୂରି ଯିବାପରେ, ଅପରାଧବୋଧର ଆବେଗରେ, ମୁଁ ଡେନିସ୍‌ଙ୍କ ମୃତ୍ୟୁଶଯ୍ୟା ପାଖେ ଯେଉଁ ଦୁଶ୍ଚିନ୍ତା କରିଥିଲି ସେ ବିଷୟ ବୃଦ୍ଧ ଡାକ୍ତର ପୀଲ୍‌ଙ୍କୁ କହିଲି । ସେ ଡେନିସ୍‌ଙ୍କ ମୃତ୍ୟୁ ସାର୍ଟିଫିକେଟ୍‌ରେ ଦସ୍ତଖତ କରିଥିଲେ ।

ମୋ କଥା ଶୁଣି ସେ କହିଲେ, "ଏହା ତ ଅସ୍ୱାଭାବିକ ନୁହେଁ । ଅନେକ ଲୋକଙ୍କ ମୁହଁରେ ଏଇଭଳି ଭାବ ମୁଁ ଲକ୍ଷ୍ୟ କରିଛି । କିନ୍ତୁ ଲୋକେ ପ୍ରାୟଶଃ ଏକଥା ମାନନ୍ତି ନାହିଁ ।"

"କିନ୍ତୁ ଏଭଳି ଭାବ ହୁଏ କାହିଁକି ? ମୁଁ ତ ଡେନିସ୍‌ଙ୍କୁ ଶ୍ରଦ୍ଧା କରୁଥିଲି !"

ସେ କହିଲେ, "କୌଣସି ପୂର୍ବସ୍ମୃତି ଯୋଗୁଁ ଏ ଭାବ ଆସିଥିବ । ହୁଏତ ଏହା ଆଦିମ କାଳର ଗୋଟାଏ ସଂସ୍କାର । ସେତେବେଳେ ପରିବାର ବା ଗୋଷ୍ଠୀର ଜଣେ ସାଂଘାତିକ ଭାବେ ଆହତ ହେଲେ ବା ବେମାର ପଡ଼ିଲେ, ସମାଜର ଗତିବିଧି ଓ ଚଳଣିରେ ଅସୁବିଧା ହେଉଥିଲା । ଅଦ୍ୟାପି କେତେକ ପଶୁପକ୍ଷୀ ଓ ମାଛ ନିଜ ଗୋଷ୍ଠୀର ଦୁର୍ବଳ ପ୍ରାଣୀକୁ ମାରି ଖାଇ ଦିଅନ୍ତି ।"

"କିନ୍ତୁ ମୁଁ ତ ପଶୁ, ପକ୍ଷୀ ବା ମାଛ ନୁହେଁ !"

"ପଶୁ ପକ୍ଷୀ ବା ମାଛ ନୁହଁ ବୋଲି ତ ଏ ଭାବଟା ତୁମକୁ ଅସ୍ୱାଭାବିକ ବୋଧ ହେଉଛି । କିନ୍ତୁ ମନ ଭିତରେ କେଉଁଠି ନିଶ୍ଚୟ ପୂର୍ବ ସଂସ୍କାର ରହିଛି; ନିଶ୍ଚୟ ରହିଛି ।"

ଡ଼କ୍ଟର ପୀଲ ଜଣେ ସହୃଦୟ ବୃଦ୍ଧ; କାମ କରି କରି ହାଲିଆ ହୋଇଗଲେଣି । ଆମ ସହରରେ ଗତ ପଚିଶ ବର୍ଷରେ ଯେତେ ଜନ୍ମ ହୋଇଛନ୍ତି ଓ ମରିଛନ୍ତି ସେ ସମସ୍ତଙ୍କର ଜନ୍ମ ମରଣ ଏଇ ଡାକ୍ତରଙ୍କ ଜରିଆରେ ହୋଇଛି ।

ଅନ୍ତର ଭିତରର ଅନ୍ଧାର ଗର୍ଭ ଗିର ଯେଉଁ ବିଶୃଙ୍ଖଳତା କଥା କହୁଥିଲି, ପୁଣି ସେଇଥିକୁ ଫିରିବା । ମୋର ବିଶ୍ୱାସ, ଏ ବିଶୃଙ୍ଖଳତା ନିର୍ଦ୍ଦିଷ୍ଟ ସମୟ ବାହାରେ ବି କାମ କରୁଛି । ବେଳେ ବେଳେ ମଣିଷ କାମକୁ ହିଦେଇଯାଏ । ତୁମେ ଦେଖି କହ, "ଏ କାମକୁ ସେ ପାରିବନାହିଁ । ଏ କାମ ଯା ସାମର୍ଥ୍ୟର ବାହାରେ ।" ଖୁବ୍ ସଂଭବ, ଅସାମର୍ଥ୍ୟ ଯୋଗୁଁ ସେ ହିଦେଇ ନାହିଁ । ହୁଏତ ସେ ଏ ବିଷୟଟାକୁ ଭିନ୍ନ ଦୃଷ୍ଟିକୋଣରୁ ଦେଖୁଛି; ହୁଏତ ଉପରୁ ଓ ତଳୁ ଚାପ ପାଇ ତାର ମନ ଦବି ଯାଇଛି । ଯୁଦ୍ଧବେଳେ ଏହାର ପ୍ରମାଣ ବହୁତ ମିଳେ—ଭୀରୁ ବୀର ହୋଇଯାଏ, ଓ ସାହସୀ ବୀର ଭୀରୁତାରେ ପୋଡ଼ି ଜଳି ମରେ । ସାଧାରଣ ଜୀବନରେ ବେଳେ ବେଳେ ଖବର କାଗଜରେ ପଢ଼େଁ, ଜଣେ ଭଦ୍ର, ସଦାଶୟ ଗୃହସ୍ଥ ନିଜ ଭାର୍ଯ୍ୟା ଓ ପିଲାଙ୍କୁ ଟାଙ୍ଗିଆରେ ହାଣି ମାରି ପକାଇଲା । ମୋର ବିଶ୍ୱାସ ମଣିଷର ସ୍ଥିର ପ୍ରକୃତି ହୋଇ କିଛି ନାହିଁ; 'ଘଡ଼ି ଘଡ଼କେ ଆନ' ହେଉଛି । ଏଭଳି ସମୟ ଆସେ ଯେତେବେଳେ ପ୍ରକୃତିର ଏହି ପରିବର୍ତ୍ତନ ଆଖିକୁ ଦିଶେ । ମୋର ପ୍ରକୃତିରେ ଏବେ ଯେଉଁ ପରିବର୍ତ୍ତନ ଦେଖା ଯାଉଛି ତାର ମୂଳ ଖୋଜି ବସିଲେ, ମୋ ଜନ୍ମ ଦିବସାବଧି କାହିଁକି, ତା' ପୂର୍ବରୁ ବି ପରିବର୍ତ୍ତନର ସୂତ୍ରପାତ ହୋଇଥିବାର ଦେଖାଯିବ । ଏବେ ନିକଟରେ କେତୋଟି କ୍ଷୁଦ୍ର କ୍ଷୁଦ୍ର ଘଟଣା ଘଟି ବଡ଼ ଧରଣର ପରିବର୍ତ୍ତନର ରୂପ ନେଇଛି । ମୋର ସ୍ୱାଭାବିକ ପ୍ରକୃତି ଯାହା, ଅର୍ଥାତ୍ ଯାହା ବୋଲି ମୁଁ ଏପର୍ଯ୍ୟନ୍ତ ଧାରଣା କରି ଆସିଥିଲି, ଅବସ୍ଥା ସଂଘାତରେ ପଡ଼ି ମୋର ସେ ପ୍ରକୃତି ବଦଳି ଯାଇ ଅନ୍ୟ ଢଙ୍ଗରେ ମୋତେ ଟାଣିଲା ପରି ଲାଗୁଛି । ବ୍ୟବସାୟରେ ନପାରି, ଖାଦ୍ୟସମଗ୍ରୀ ଦୋକାନରେ ଗୁମାସ୍ତା ଗିରିକରି କରିବା, ନିଜ ପରିବାରର ଗ୍ରାସାଚ୍ଛାଦନ ଯୋଗାଇବା ଦାୟିତ୍ୱରେ ବାନ୍ଧି ହୋଇ, ଭବିଷ୍ୟତର ଆଶା ଆକାଂକ୍ଷା ହରାଇ ଯୋଷାରି ହେବା, ଏଇ ମୋର ସ୍ୱାଭାବିକ ଜୀବନ । ପୁଣି, ଏଇ ସବୁ ଭିତରେ, ନୀତି ଓ ଧର୍ମର ଯେଉଁ ଧାରଣା ମୋ ମନରେ ରହି ଆସିଛି, ତା'ର ସୀମାଭିତରେ ରହି ଚଳିବାକୁ ମୁଁ ପସନ୍ଦ କରି ଆସିଛି । ମୋ ମନରେ ମଧ୍ୟ ଗୋଟାଏ ଆତ୍ମ-ସନ୍ତୋଷ ରହି ଆସିଛି ଯେ ମୁଁ ଜଣେ ଭଲ ଲୋକ । ଭଲ ଲୋକର ପର୍ଯ୍ୟାୟରେ ଯେଉଁ ଗୁଣ ଓ ବୃତ୍ତି ଥିବାର ମୁଁ ବିଶ୍ୱାସ କରେ, ତା'ରି ଅନୁକୂଳରେ ରହିବାକୁ ମୁଁ ଧାରାବାହିକ ଚେଷ୍ଟା କରିଆସିଛି ।

ମୋ' ଗୃହପଟେ ଆମ ସହରରେ ଯାହା ଯାହା ଘଟୁଛି ସେ ସବୁ ଯେ ମୋତେ ଜଣାନାହିଁ, ତା' ନୁହେଁ । ନିଉ ବେ-ଟାଉନ୍ ଭଳି କ୍ଷୁଦ୍ର ସହରରେ ଅନ୍ୟମାନଙ୍କ ଗତିବିଧି ନ ଜାଣି ରହିହେବ ନାହିଁ । ଜାଣିଲେ ବି, କିଏ କ'ଣ କରୁଛି ସେ ବିଷୟରେ ମୁଁ ବିଶେଷ ମୁଣ୍ଡ ଖୁରାଉ ନଥିଲି । ଯେ ଯାହା କରୁ ପଛେ, ମୁଁ ଯାହାକୁ ସତ୍‌ପନ୍ଥା ବୋଲି ଜାଣେ, ତଦନୁସାରେ ଚଳିବା ଉଚିତ ବୋଲି ମୁଁ ବିଶ୍ୱାସ କରି ଆସିଛି । ମୁଁ ଜାଣେ, ଜଜ୍ ଉର୍‌ବାସ୍ ଅଣ୍ଟାଗୁଞ୍ଜା ବା ଅନ୍ୟ କୌଣସି ପ୍ରକାର ଲାଭ ପାଇ, ଅନ୍ୟାୟରେ ମଟର-ପରମିଟ୍ ଦେଉଛନ୍ତି । ଏକଥା ପ୍ରାୟ ସମସ୍ତେ ଜାଣିଲେଣି । ଟାଉନ୍ ମେନେଜର୍ ଯେ, ବାଡ଼୍ ବିଲଡ଼ିଂ ସପ୍ଲାଇଜ୍ କମ୍ପାନୀର ସେଇ ମାଲିକ; ସେ ନିଜ ପରିଚାଳିତ ସହର ପାଇଁ ନିଜ ଦୋକାନରୁ ଖୁବ୍ ଚଢ଼ା ଦରରେ ଜିନିଷପତ୍ର ଖରିଦ କରୁଛନ୍ତି; ପ୍ରୟୋଜନ ନଥିଲେ ବି ତାଙ୍କ ଦୋକାନରୁ ବେଳେ ବେଳେ ସେ ମ୍ୟୁନିସିପାଲିଟି ପାଇଁ ମାଲମତା ମଗାଉଛନ୍ତି । କୌଣସି ଗଳି ରାସ୍ତାକୁ ଓସାର ପକ୍କା କରିବାକୁ ଗଲାବେଳେ ଦେଖା ଯାଉଛି, ମିଷ୍ଟର୍ ବେକର୍, ମ୍ୟାରୁଲେ ଓ ଅନ୍ୟ ଚାରି ଛ' ଜଣ ଲୋକ ରାସ୍ତାପାଖର ସବୁତକ ଜମି ନିଜର କରି ସାରିଛନ୍ତି । ସେମାନଙ୍କୁ ଚଢ଼ା କ୍ଷତିପୂରଣ ଦେଇ ରାସ୍ତା ସକାଶ ଜମି ଦଖଲ କରିବାକୁ ପଡ଼ୁଛି । ସଡ଼କ ପକା ହେବାର ଯୋଜନା ସର୍ବସାଧାରଣରେ ପ୍ରକାଶ ହେବା ପୂର୍ବରୁ ଏମାନେ ଭିତର ଖବର ପାଇ ଜମି ସବୁ ଅକ୍ତିଆର କରି ଯାଇଛନ୍ତି । ଅନେକ ସ୍ଥଳରେ, ଆଗ ଜମିଗୁଡ଼ାକ ହସ୍ତଗତ କରି ସାରିଲା ପରେ ତାହାର ଉନ୍ନୟନ ପାଇଁ ଯୋଜନା ପାସ୍ କରାଇ ନେଇଛନ୍ତି । ଖାଲି ଏମାନେ କାହିଁକି, ଜନ ସାଧାରଣ ମଧ୍ୟ ଏଥିରେ କିଛି ଅନ୍ୟାୟ ଦେଖୁନାହାନ୍ତି । ନିଜର ଲାଭ ପାଇଁ ଏପରି କରିବା ମଣିଷର ସ୍ୱାଭାବିକ ପ୍ରବୃତ୍ତି ବୋଲି ଏମାନଙ୍କର ବିଶ୍ୱାସ ; କିନ୍ତୁ ମୁଁ ବିଶ୍ୱାସ କରୁଥିଲି ଯେ ମୋର ପ୍ରକୃତି ସ୍ୱତନ୍ତ୍ର । କିନ୍ତୁ ମ୍ୟାରୁଲେ, ମିଷ୍ଟର ବେକର୍, ଖାଦ୍ୟସାମଗ୍ରୀକଂ ପାନୀର ପ୍ରଚାରକ, ମାଗ ୟୁଙ୍ଗ୍-ହାଣ୍ଡ୍ ଓ ଜିପ୍ସି ମର୍ଫି--ଏମାନେ, ମେଣ୍ଟ ବାନ୍ଧିଲା ପରି, ମୋତେ ଏବେ ମୋ ବାଟରୁ ଅନ୍ୟ ଆଡ଼କୁ ଠେଲି ପେଲି ନେବାକୁ ଚେଷ୍ଟା କରୁଛନ୍ତି । ଏ ପରିସ୍ଥିତିରେ, କିଛି ସମୟ ଏ ସମସ୍ୟାକୁ, ବିଚାର ପାଇଁ, ଅଲଗା କରି କାଢ଼ି ଫଇସଲା କରିବାର ଦରକାର ପଡ଼ୁଛି ।

ମୋ'ର ପ୍ରିୟତମା ନିଘୋଡ଼ ନିଦରେ ଗୁଡ଼ୁ ଗୁଡ଼ୁ ହେଉଛନ୍ତି; ତାଙ୍କ ମୁହଁରେ ସେଇ ପୁରାତନ ସ୍ମିତହାସ୍ୟ । ବର୍ତ୍ତମାନ ତାଙ୍କ ମୁହଁରେ ସୁଖ ଓ ଶାନ୍ତିର ଗୋଟାଏ ଅଧିକା ଶୋଭା ଦେଖାଯାଉଛି । ପ୍ରଣୟ ପରେ ତାଙ୍କର ଏପରି ହୁଏ; ସେ ଗୋଟାଏ କିପରି ଶାନ୍ତି ସନ୍ତୋଷ ପାନ୍ତି ।

କାଲି ରାତିରେ ଗୁଡ଼ାଏ ବୁଲିଥିବା ହେତୁ ମୋତେ ବି ଏତେ-ବେଳେ ନିଦ ମାଡ଼ିବାର କଥା । କିନ୍ତୁ ନିଦର ଦେଖା ସାକ୍ଷାତ୍ ନାହିଁ । ସକାଳେ ଡେରିରେ ଉଠିବି ବୋଲି ଜାଣିଲେ, ମୋର ରାତିରେ ଶୀଘ୍ର ନିଦ ହୁଏ ନାହିଁ— ଏହା ସାଧାରଣ କଥା । କାଲି ତ ରବିବାର, ଆଜି ନିଦ ମାଡ଼ୁଛି କେତେବେଳେ ? ତେଣୁ ପଡ଼ିରହି ଅନ୍ଧାରରେ ମୋର ଚରି-ଚରିତ ନାଲିଦାଗ ଦେଖା ଚାଲିଥାଏ । ରାସ୍ତାର ଆଲୁଅ, ଏଲ୍ମ୍ ଶାଖା-ଗୁଡ଼ିକର ଛାଇକୁ କୋଠାଉପରେ ପକାଉଥାନ୍ତି; ବସନ୍ତ ପବନରେ ସେ ଛାଇଗୁଡ଼ିକ ଦୋଳି ପରି ଦୋହଲୁଥାନ୍ତି, ଝରକା ଅଧା ମେଲା ଥାଏ; ଯେଉଁବାଟେ ପବନ ପଶି, ନଙ୍ଗର ପଡ଼ିଥିବା ବୋଟ୍‌ର ପାଲ ଫୁଲିଉଠିଲା ପରି, ଝରକାର ଧଳା ପରଦା ଗୁଡ଼ିକୁ ଫୁଲେଇ ଦେଉଥାଏ । ମେରିଙ୍କର ଧଳା ପରଦାରେ ଭାରି ସଉକ, ସେଗୁଡ଼ିକ ପୁଣି ବାରଂବାର ସଫା ହେବା ଦରକାର । ଦୁଆର, ଝରକାରେ ଧଳା ପରଦା ଲଗିଲେ ଯାଇ ସେ ମନେ କରନ୍ତି ଘର ସୁସଜ୍ଜିତ ହେଲା; ସେଗୁଡ଼ିକ ବାରଂବାର ସଫା ହେଲେ ଯାଇ ସୁଖସ୍ୱାଚ୍ଛନ୍ଦ୍ୟ ଲାଭ ହେଲା । ଜରିପାଡ଼୍-ପରଦାବେଷ୍ଟିତ ତାଙ୍କ ଆଇରିସ୍ ଆତ୍ମା ଯୋଗୁଁ ତାଙ୍କର ଏପରି ମନୋବୃତ୍ତି ହୋଇଛି ବୋଲି ମୁଁ କହିଲେ, ସେ ଟିକିଏ କୃତ୍ରିମ ବିରକ୍ତି ପ୍ରକାଶ କରନ୍ତି ।

ପ୍ରଣୟ ଯୋଗୁଁ ମୋତେ ବି ସୁଖ ଲାଗୁଥାଏ, ସନ୍ତୋଷ ଲାଗୁଥାଏ ; କିନ୍ତୁ ସେଇ ସୁଖସନ୍ତୋଷ ମେରିଙ୍କର ନିଦ୍ରାର କାରଣ ହେବା ସ୍ଥଳେ, ମୋ'ଠାରୁ ନିଦ୍ରାର ପ୍ରୟୋଜନ ଏକାବେଳକେ ଦୂର କରି ଦେଇଥାଏ । ମୋତେ ଠିକ୍ କେତେ ସୁଖ ଲାଗୁଛି, ତାହା ସମ୍ପୂର୍ଣ୍ଣ ରୂପେ ନିର୍ଣ୍ଣୟ କରିବାକୁ ମୋର ମନ ହେଉଥାଏ । ପିଲେ, 'ମୁଁ ଆମେରିକାକୁ ସୁଖ ପାଏ' ପ୍ରବନ୍ଧ ପ୍ରତିଯୋଗିତାରେ ଯୋଗ ଦେବା ବିଷୟ ଭାବିବାକୁ ମୋର ମନ ହେଉଥାଏ । କିନ୍ତୁ ଏ ସବୁ ଚିନ୍ତା ଅପେକ୍ଷା, ମୋର ବିଶ୍ରାମବାର ଥାଏ, ମୋର ଅବସ୍ଥାର କି ପରିବର୍ତ୍ତନ ହେବାକୁ ଯାଉଛି ଓ ତାହା କିପରି ହେବ, ଓ ମୁଁ କଣ

କରିବ । ସ୍ୱଭାବତଃ, ପଛରେ ଚିନ୍ତା କରିବାକୁ ଥିବା ବିଷୟର, ଆଗ ଚିନ୍ତା କରିବାକୁ ବସିଲି ; ଦେଖିଲି, ମନଗହନର ବିଚାରକମଣ୍ଡଳୀ ଏ ବିଷୟରେ ଫଇସଲା କରି ସାରିଛନ୍ତି । ତାଙ୍କ ରାଏ ମନ ଭିତରେ ପ୍ରସ୍ତୁତ ହୋଇ ରହିଗଲାଣି । ଘୋଡ଼ାଙ୍କୁ ଘୋଡ଼ଦୌଡ଼ ପ୍ରତିଯୋଗିତା ପାଇଁ ତାଲିମ କରି, ନିର୍ଦ୍ଦିଷ୍ଟ ଦିନରେ ଥାନ ଉପରକୁ ଆଣି, ଦୌଡ଼ ଯେଉଁଠାରୁ ଆରମ୍ଭ ହେବ ସେଠାରେ ବାନ୍ଧି ସାରିବା ପରେ ତ, ଆଉ ଦୌଡ଼ରେ ଯୋଗ ନ ଦିଆଇ ଫେରାଇ ନେବାର ଅବସର ନ ଥାଏ । ବନ୍ଧୁକ ଫୁଟିଲି ତ ଦୌଡ଼ିବାକୁ ଇ ହେବ । ମୋର ଅବସ୍ଥା ବର୍ତ୍ତମାନ ସେଇପରି । ମୁଁ ଆସି ଦୌଡ଼ଚକ୍ରର ମୁଣ୍ଡରେ ଠିଆ ହେଲିଣି, ଅପେକ୍ଷା କେବଳ ବନ୍ଧୁକର ଆବାଜକୁ । ଏ କଥାଟି ଅନ୍ୟମାନେ ଜାଣିବା ପରେ, ସବାଶେଷରେ ମୋତେ ଜଣାଇ ଦିଆଗଲା ପରି ଆପାତତଃ ମନେ ହେଉଛି । ଦିନ ତମାମ ମୋତେ ଯେ ଦେଖିଛନ୍ତି ସେ କହିଛନ୍ତି ଯେ, ମୋର ଚେହେରା ଭାରି ପ୍ରସନ୍ନ ଦିଶୁଛି; ଅର୍ଥାତ୍, ମୁଁ ପୂର୍ବାପେକ୍ଷା ଅଲଗା ଦିଶୁଛି, ମୋର ଅଧିକ ଆତ୍ମ-ବିଶ୍ୱାସ ଆସିଛି, ମୋ ଭିତର ପରିବର୍ତ୍ତନ ହୋଇଛି । ପ୍ରଚାରକଟା ତ ଉପରଓଳି ମୋ'ର ରୂପ ଦେଖି ଚକିତ ହୋଇ ଯାଇଥିଲା ପରି ଜଣା ପଡ଼ୁଥିଲା । ମ୍ୟାରୁଥୋ ମୋତେ ଦେଖି ଆଚମ୍ବିତ ହୋଇଥିଲେ ଓ ଜସ୍ପି ମର୍ଫି, ମୁଁ କ'ଣ କରିଛି ବୋଲି ଜାଣିବାକୁ ଚାହିଁଥିଲେ । ଶେଷରେ ମାର୍ଗି ଯୁଙ୍ଗ୍-ହାଣ୍ଟ—ସମସ୍ତଙ୍କ ଭିତରେ ସେ ମୋ' ପରିବର୍ତ୍ତନ ଖୁବ୍ ସ୍ପଷ୍ଟ ଭାବରେ ଲକ୍ଷ୍ୟ କରିଥିଲେ ବୋଲି ତାଙ୍କ କଣ୍ଟକଟିଆ ନାଗ ପ୍ରହେଳିକାରୁ ଜାଣୁଛି । ମୁଁ ନିଜେ ଜାଣିବା ପୂର୍ବରୁ, ସେ କୌଣସିମତେ ମୋ ଅନ୍ତରରେ ପ୍ରବେଶ କରି, ମୋ ବିଷୟରେ ନିଶ୍ଚିତ ଧାରଣା କରି ସାରିଛନ୍ତି । ତାହାର ପ୍ରମାଣ ତାଙ୍କ ଆବିଷ୍କୃତ କଣ୍ଟକଟିଆ ନାଗ । ଏହା ବିଚାରୁ ବିଚାରୁ ମୁଁ ସ୍ୱତଃ ଅନ୍ଧାରରେ ହସିପକାଇଲି । କଣ୍ଟକଟିଆ ନାଗ କଥା କହି ସାରିଲା ପରେ ବିଭ୍ରାନ୍ତ ହୋଇ ସେ ମାଇକନିଆଁଙ୍କ ସେଇ ପୁରୁଣା କୌଶଳ ବାହାର କଲେ ମୋ ସ୍ତ୍ରୀଙ୍କ ପ୍ରତି ଧମକ୍—ମୁଁ ତାଙ୍କୁ ଛାଡ଼ି ଅନ୍ୟ ଆଡ଼େ ମନ ବଳାଇବି ବୋଲି । ବହି ଯାଉଥିବା ଜଳସ୍ରୋତରେ ବନ୍ସି ପକାଇ କେଜାଣି ଅବା ମାଛ ପଡ଼ିବେ ବୋଲି ଉଦ୍ୟମ କଲା ପରି, ମାର୍ଗିଙ୍କର ମୋ ପ୍ରିୟତମା ମନରେ ସନ୍ଦେହ ଉପୁଜାଇବା ସଙ୍ଗେ ସଙ୍ଗେ, ମୋତେ ଆକୃଷ୍ଟ କରିବାର

ଏହି ଫନ୍ଦି । ଆଜ ସକାଳେ ତାଙ୍କ ସମସ୍ତ ଶରୀରର ମୋ ପ୍ରତି ଯେଉଁ ଗୂଢ ଆହ୍ୱାନ ମୁଁ ଅନୁଭବ କରିଥିଲି, ଏତେବେଳକୁ ତାହା ଆଉ ମୋ ମନରେ ନାହିଁ । ଏତେବେଳେ ମୋତେ ଦିଶୁଛି, ତାଙ୍କର ଶୀର୍ଣ୍ଣ ହାତ ଦୁଇଟି, ଯହିଁରୁ ତାଙ୍କର ବୟସ ଓ ମନର ଚଞ୍ଚଳ ଅବସ୍ଥାର ପ୍ରମାଣ ପାଇଥିଲି ; ସେଇ ହାତ ଦୁଇଟି ଯେତେ ଅବା ନଖଯୁକ୍ତ ଶ୍ୱାପଦ-ପଂଝା ପରି ନୃଶଂସ ଭାବରେ ମୋତେ ଆକ୍ରମଣ କରିବାକୁ ଉଦ୍ୟତ ହୋଇଥିଲା, ଯେତେ-ବେଳେ ମାଗି ଜାଣି ପାରିଥିଲେ ଯେ, ମୁଁ ତାଙ୍କ ପ୍ରଭାବରେ ସହଜେ ପଡ଼ିବାର ପାତ୍ର ନୁହେଁ ।

ରାତିରେ ଯେଉଁ ଚିନ୍ତାଗୁଡ଼ାକ ମନକୁ ଆସେ, ତାହାର ଧର୍ମ ଜାଣିବାକୁ ମୋର ବେଳେ ବେଳେ ମନ ହୁଏ । ଏ ସବୁ ସ୍ୱପ୍ନର ସମାନ-ଧର୍ମୀ । ବେଳେ ବେଳେ ମୋର ନିଜର ଯେଉଁ ବିଷୟରେ ଇଚ୍ଛା, ମୁଁ ସେ ବିଷୟର ଚିନ୍ତା କରେ ; ପୁଣି ବେଳେ ବେଳେ, ସେମାନେ ବଳୁଆ, ଅମାନିଆ ଘୋଡ଼ାପରି ତାଙ୍କ ମନଇଚ୍ଛା ମୁଣ୍ଡ ଟେକି ମୋତେ ଘାବରେଇ ଦିଅନ୍ତି ।

ଆଜ ଡାକ୍ତର ଟେଲର୍‌ର ଚିନ୍ତା ଏଇପରି ଆସି ପହଞ୍ଚିଲା । ତା' କଥା ଚିନ୍ତା କରି ଦୁଃଖିତ ହେବାକୁ ମୋ'ର ମନ ନ ଥିଲା, କିନ୍ତୁ ଆଜ ମୋ'ର ଇଚ୍ଛା ଅନିଚ୍ଛାକୁ ମନ ଖାତିର କଲା ନାହିଁ । ତା' ଚିନ୍ତାରୁ ଉଦ୍ଧାର ପାଇବାକୁ ମୁଁ ଗୋଟିଏ ସୂତ୍ର କଲି—ଏହା ଥରେ ଜଣେ ବୟସ୍କ ସର୍ଜେଣ୍ଟ ମୋତେ ବତାଇଥିଲେ ଓ ଏହା ସଫଳ ହୁଏ ବୋଲି ମୁଁ ପରୀକ୍ଷା କରି ଦେଖିଛି । ଥରେ, ଗୋଟିଏ ଦିନ, ଗୋଟିଏ ରାତି ଓ ତା'ପରେ ପୁଣି ଗୋଟିଏ ଦିନ—ଏହିପରି ପୂରା ଛ'ତିଶ ଘଣ୍ଟା ଏକାଦିକ୍ରମେ ଯୁଦ୍ଧର ଜଘନ୍ୟ ଓ ଭୟା-ନକ ଘନଘଟା ଭିତରେ ଆମ୍ଭମାନଙ୍କୁ ରହିବାକୁ ହୋଇଥିଲା । ଏ ଘନଘଟା ଚାଲିଥିବା ଯାକ ମୁଁ କୌଣସି ମାନସିକ ଅବସାଦ ଭୋଗ କରି ନ ଥିଲି, କାରଣ ପ୍ରତି ମୁହୂର୍ତ୍ତରେ କାମ ଲାଗିଥିଲା ଓ ଶରୀର କ୍ଳାନ୍ତ ହୋଇ ପଡ଼ିଥିଲା । ପରେ, ଏ ଛତିଶ ଘଣ୍ଟାର ସ୍ମୃତି ବାରଂବାର ରାତିର ବିଶ୍ରାମ ବେଳେ ଆସି ମୋତେ ଚହଲାଇ ପକାଇଲା । ଯାହାକୁ ଯୁଦ୍ଧ-ଅବସାଦ ବୋଲି କହନ୍ତି ଓ ପୂର୍ବେ ଗୁଳାଗୁଳିର ଆତଙ୍କ ବୋଲି କହୁଥିଲେ, ମୋ'ର ସେଇ ଅବସ୍ଥା ଆସିବା ଫଳରେ ମୁଁ ପାଗଳ ପରି ହୋଇଗଲି । ଏହି ସ୍ମୃତି ମନରୁ

ପୋଛି ଦେବା ପାଇଁ ମୁଁ କେତେ ଉପାୟ କଲି, କିନ୍ତୁ କିଛି ଫଳ ହେଲା ନାହିଁ; ମୋର ସମସ୍ତ ଚେଷ୍ଟା ସତ୍ତ୍ୱେ ସେଇ ଚିନ୍ତା କାହୁଁ କାହୁଁ ଆସି ପହଞ୍ଚୁଥାଏ । ରାତି ହେଲେ ମୋତେ ଘାରିବ ବୋଲି ଏହି ସ୍ମୃତି ଦିନ ତମାମ ଛପି କରି ଥାଏ; ରାତି ହେଲା ମାତ୍ରେ ଅଲକ୍ଷିତରେ ଆସି ପହଞ୍ଚେ । ଥରେ ହୁସ୍କି ମଦର ନିଶାରେ ଭାବ-ପ୍ରବଣ ହୋଇ ମୁଁ ଏ ବିଷୟ ମୋ'ର ହେଡ୍ ସର୍ଜେଣ୍ଟ୍‌କୁ କହି ପକାଇଲି । ସେ ଜଣେ ପୁରୁଣା ଲଢୁଆ ; ଯେଉଁ ଯୁଦ୍ଧ ସବୁ କେବେ ହୋଇଥିଲା ବୋଲି ପଢ଼ିଲେ ଆମକୁ ଆସିବ ନାହିଁ, ସେ ଭଳି ଯୁଦ୍ଧମାନଙ୍କରେ ସେ ଲଢ଼ିଛନ୍ତି । ଲଢ଼େଇରେ ବହୁମାନ ସ୍ୱରୂପ ସେ ଯେତେ ଆଭୂଷଣ-ଫିତା ପାଇଛନ୍ତି, ସବୁ ଯଦି ଲଗାନ୍ତେ ତେବେ ତାଙ୍କ କୋଟ୍‌ରେ ବୋତାମ ପାଇଁ ମଧ୍ୟ ସ୍ଥାନ ରହନ୍ତା ନାହିଁ । ତାଙ୍କ ନାମ ମାଇକ୍ ପୋଲାଦ୍‌କି—ପୋଲ୍ ଜାତିର ଲୋକ, ଆମେରିକାରେ ନାଗରିକ ହୋଇଗଲେଣି , ଏବେ ଚିକାଗୋରେ ବାସ କରନ୍ତି ; ପ୍ରସିଦ୍ଧ ସେନା-ନାୟକ ପୁଲସ୍‌କିଙ୍କର ଅବଶ୍ୟ ସେ ଆତ୍ମୀୟ ନୁହନ୍ତି । ସୌଭାଗ୍ୟକୁ ସେ ବି ମଦନିଶାରେ ବେଶ୍ ମାତାଲ ହୋଇଥିଲେ, ନ ହେଲେ ଅଫିସର୍‌ଙ୍କ ସଙ୍ଗେ ଖୁସିଗପ କରିବା ଅନୁଚିତ ବୋଲି ତାଙ୍କର ଯେଉଁ ବଦ୍ଧମୂଳ ଧାରଣା, ସେଥିଯୋଗୁଁ ସେ କଥାବାର୍ତ୍ତାରେ ଜଗି ହୋଇଥାନ୍ତେ ।

ମାଇକ୍ ମୋ କଥା ମୂଳରୁ ଚୂଳ ଯାଏଁ ଶୁଣି ସାରି ଏକଦୃଷ୍ଟିରେ ମୋ ଆଖିର ପିତୁଳାକୁ ଚାହିଁ କହିଲେ, "ଠିକ୍ ଠିକ୍, ମୋ'ର ବି ଏ ଅନୁଭୂତ ଅଛି । ମଣିଷ ଏଭଳି ଦୁର୍ଯୋଗର ସ୍ମୃତି ଏକାବେଳକେ ମନରୁ ପୋଛି ଦେବାକୁ ଚେଷ୍ଟା କରିବା ଫଳରେ ଇ ଅଡୁଆରେ ପଡ଼େ । ସେପରି ଚେଷ୍ଟାରେ ଫଳ ଫଳିବ ନାହିଁ । ସେହି ସ୍ମୃତିକୁ ସ୍ୱାଗତ କରିବାକୁ ତିଆରି ହେଲେ ଯାଇ ତହିଁରୁ ଉଦ୍ଧାର ପାଇବ ।"

"ମୁଁ ତ ଏକଥା ବୁଝିପାରୁ ନାଇଁ, ମାଇକ୍ ।"

"ମୁଁ ଯେଉଁ ଉପାୟ ବତାଇବି ତାହାର ଫଳ ଫଳିବାରେ ଟିକିଏ ବିଳମ୍ବ ହୋଇପାରେ, କିନ୍ତୁ ନିଶ୍ଚୟ ଫଳିବ । ଧର, ବହୁତ ପୂର୍ବ କାଳର ଗୋଟାଏ ଘଟଣା ତୁମକୁ ଗୁଡ଼େଇ ଗୁଡ଼େଇ ଧରିଛି । ତା'କୁ ମୂଳରୁ ମାରିବାକୁ ହେଲେ, ମୂଳରୁ ଧରିବ । ଘଟଣାର ମୂଳରୁ ଶେଷ ପର୍ଯ୍ୟନ୍ତ ଯାହା ଯାହା ଘଟିଛି, ସବୁ ଗୋଟି ଗୋଟି କରି ମନେ ପକାଇବ ।

ସେତେଥର ଏ ଘଟଣାର ସ୍ମୃତି ମନକୁ ଆସିବ, ପ୍ରତିଥର ଏହିପରି ଆମୂଳଚୂଳ ଚିନ୍ତା କରିବାକୁ ହେବ । କିଛି ଦିନରେ ଏ ସ୍ମୃତି ହାଲିଆ ହୋଇଯିବ ; ଥରକ ପରେ ଆର ଥରକୁ ଏ ଘଟଣାର କେତେକ ଅଙ୍ଗ ପ୍ରତ୍ୟଙ୍ଗ ଛାଡ଼ି ଛାଡ଼ି ପଡ଼ିବ; ଏହିପରି ଛାଡ଼ି ଛାଡ଼ି, ଏପରି ଦିନ ଆସିବ ଯେତେବେଳେ କି ସମସ୍ତ ଘଟଣାର ସ୍ମୃତି ମନରୁ ଏକାବେଳକେ ଲିଭିଯିବ ।”

ମୁଁ ଏହି ଉପାୟ କରି ଭଲ ଫଳ ପାଇଲି । ଯେଉଁମାନଙ୍କର ପୂର୍ବସ୍ମୃତିରେ ମୁଣ୍ଡ ଘୂରୁଥାଏ, ସେମାନେ ଏ ଉପାୟ ଜାଣନ୍ତି କି ନାହିଁ ମୋତେ ଜଣା ନାହିଁ ; ଯଦି ଜାଣି ନଥାନ୍ତି, ଜାଣିବା ଉଚିତ ।

ଆଜି ଡାନି ଟେଲର୍‌ର ସ୍ମୃତି ମନକୁ ଆସିବାରେ ମୁଁ ସର୍ଜେଣ୍ଟ୍ ମାଇକ୍‌ଙ୍କ ଉପାୟ ଅବଲମ୍ବନ କଲି । ସେ ଓ ମୁଁ ଯେତେବେଳେ ପିଲା ଥିଲୁଁ—ଏକା ବୟସ, ଏକା ଆକୃତି, ଏକା ଓଜନ—ସେତେବେଳେ ହାଇଷ୍ଟ୍ରୀଟ୍ ଖାଦ୍ୟଶସ୍ୟ ଗୋଦାମକୁ ଯାଇ ଶସ୍ୟବସ୍ତା ଓଜନ ହେଉଥିବା ପଲାର ଦୁଇପାଖେ ଦୁଇ ଡାଲରେ ବସୁଁ । ଏ ହପ୍ତାରେ ମୁଁ ଓଜନରେ ଅଧପାଉଣ୍ଡ ଅଧିକା ହେଲେ, ଆର ହପ୍ତାକୁ ଡାନି ମୋ ସଙ୍ଗେ ସମାନ ହୋଇଯାଏ । ଆମେ ମାଛ ମାରୁଁ, ଶିକାର କରୁଁ, ଏକ ସଙ୍ଗେ ; ସାଙ୍ଗ ହୋଇ ସମୁଦ୍ରରେ ପହଁରିବାକୁ ଯାଉଁ ; ଏପରି କି, ଦୁହେଁଯାକ ଏକା ଟୋକିଙ୍କ ସଙ୍ଗେ ସାଙ୍ଗ ହେଉଁ । ନିଉ ବେ’ଟାଉନ୍‌ର ଅନ୍ୟ ପୁରୁଣା ବଂଶଙ୍କ ପରି ଡାନିଙ୍କ ପରିବାର ବେଶ୍ ସ୍ୱଚ୍ଛଳ ଅବସ୍ଥାରେ ଥିଲେ । ପର୍‌ଲିକ ଷ୍ଟ୍ରୀଟ୍‌ରେ ଡେଙ୍ଗାଡେଙ୍ଗା କରମଙ୍ଗିଆ ଖୁଣ୍ଟିଥିବା ଯେଉଁ ଧଳା କୋଠାଟା, ତାହା ଟେଲର୍‌ ଭବନ ଥିଲା । ଏକ ସମୟରେ ଏମାନଙ୍କର ମଫସଲ୍‌ରେ ବି ଘର ଥିଲା—ସହରରୁ ପ୍ରାୟ ତିନିମାଇଲ୍ ଦୂରରେ ।

ଆମ ସହରର ଚତୁର୍ଦ୍ଦିଗରେ ଖାଲି ପାହାଡ଼—ଉଚ୍ଚାବଚ ହୋଇ ବହୁ ଦୂର ବିସ୍ତୃତ । ପାହାଡ଼ଗୁଡ଼ିକ ଅଦ୍ୟାପି ବୃକ୍ଷଲତାପୂର୍ଣ୍ଣ—ସେଥିରେ ଗୁରିଆଡ଼େ ହ୍ୱାଇଟ 'ହ୍ୱାଇଟ 'ପାଇନ୍ ଗଛ ଓ କରମା ଓକ୍ ଗଛ ଅଦ୍ୟାପି ଅଛି ; କେତୋଟା ହିକରି ଗଛ ଓ କେତୋଟା ସେଡ଼ାର୍ ଗଛ ମଧ୍ୟ ଅଛି । ପୂର୍ବେ, ମୋ’ ଜନ୍ମର ବହୁ ପୂର୍ବରେ ପ୍ରକାଣ୍ଡ ଓକ୍ ଗଛମାନ ଥିଲା, ଏଡ଼େ ବଡ଼ ଯେ, ଏଇ ଗଛର ଗଣ୍ଡିରୁ ଆମ ନିଜ ଉପକୂଳରେ ତିଆରି

ଜାହାଜର ତଳ ଓ ଫର୍ମା ତିଆରି ହେଉଥିଲା । ଜାହାଜ ତିଆରି କାରଖାନାର ଅତି ନିକଟରେ ଭଲ କାଠ ମିଳିବାରୁ ସେଗୁଡ଼ିକ କାଟି କାଟି ସବୁ କଟା ହୋଇଗଲା । ଏହି ପାହାଡ଼ିଆ, ଅସମାନିଆ ଅଞ୍ଚଳ ମଝିରେ ଥିବା ଏକମାତ୍ର ସମତଳ ପ୍ରାନ୍ତରର ମଝିରେ ଥିଲା ଟେଲର୍ ପରିବାରର ମଫସଲ-ଘର । ଏଭଳି ସମତଳ ପଡ଼ିଆ ଖଣ୍ଡେ ସେଠାରୁ କେତେମାଇଲ୍ ଭିତରେ ଆଉ ନାହିଁ । ଏହା ବୋଧହୁଏ ପୂର୍ବେ ପୋତି ହୋଇ ପଡ଼ିଥିବା ଗୋଟିଏ ହ୍ରଦର ଶଯ୍ୟା । ଚୁଚୁଆଡ଼େ ଛୋଟ ଛୋଟ ପାହାଡ଼ ବେଷ୍ଟିତ ହୋଇ ମଝିରେ ଟେବୁଲ୍ ଉପର ପରି ସମତୁଲ ହୋଇ-ଥିବାରୁ ଏଭଳି ଅନୁମାନ ହେଉଛି । ପ୍ରାୟ ଷାଠିଏ ବର୍ଷ ତଳେ, ଏହି ପ୍ରାନ୍ତର ମଝିରେ ଥିବା ଟେଲର୍ ପରିବାରର ଘରଟି ପୋଡ଼ିଗଲା ଯେ ଆଉ ସାନ ତୋଳା ହେଲା ନାହିଁ । ପିଲାଦିନେ ଡାନ ଓ ମୁଁ ସାଇକେଲ୍ ଚଢ଼ି ଏଇ ଜାଗାକୁ ଯାଉ । ମାଟି ତଳେ ଥିବା ପଥରତିଆରି ଗୁମ୍ଫି ଘରେ ଖେଳୁଁ ; ପୁରୁଣାଘରର ନିଅଁ ଉପରେ ଗୋଟିଏ ଛୋଟ କୁଡ଼ିଆ ବି ତିଆରି କରିଥିଲୁଁ । ମନେ ହୁଏ, ଏଇ ଘରର ବଗିଚା ଖୁବ୍ ବଡ଼ିଆ ହୋଇଥିବ, ତା' ବେଳରେ । ଧାଡ଼ି ଧାଡ଼ି ହୋଇ ଗଛ ଅଦ୍ୟାପି ଅଛି, ଓ ମାଡ଼ି ଆସୁଥିବା ବୁଦୁବୁଦୁକିଆ ଜଙ୍ଗଲ ଭିତରେ ଅଦ୍ୟାପି ବାଡ଼ ଓ ରାସ୍ତାର ଶଙ୍କୁ ରହିଛି । ଠାଏ ଠାଏ କ୍ଷୁଦ୍ର କ୍ଷୁଦ୍ର ସ୍ତମ୍ଭଶ୍ରେଣୀ ଅଦ୍ୟାପି ଅଛି; ଠାଏ ବାଲିବନ୍ତରେ ପୁରାଣ ଗ୍ରୀକ୍‌ଦେବତା 'ପ୍ୟାନ୍'ଙ୍କର ଗୋଟିଏ ପଥର ତିଆରି ମୂର୍ତ୍ତି (ଅଣ୍ଟାଠାରୁ ମୁଣ୍ଡ) ପାଇଥିଲୁଁ । ମୂର୍ତ୍ତିଟି ମୁହଁ ମାଡ଼ି ପଡ଼ିଥିଲା ଓ ଏହାର ଶିଂଘା ଦୁଇଟି ଓ ମୁଛଦାଢ଼ି ବାଲିଆ ମାଟିରେ ପୋତି ହୋଇ ଯାଇଥିଲା । ଆମେ ତା'କୁ ମାଟିରୁ କାଢ଼ି ସଳଖ କରି ବସାଇଲୁ ଓ ସଫାସୁତୁରା କରି କିଛି ଦିନ ପର୍ଯ୍ୟନ୍ତ ତା'କୁ ସେଇଠାରେ ସଂପାଦିଲୁ । କିନ୍ତୁ ଲୋକମାନଙ୍କ ସାଙ୍ଗମେଳରେ ପଇସା ଖର୍ଚ୍ଚ କରିବାକୁ ଲୋଭ ହେବାରୁ, ମୂର୍ତ୍ତିଟି ସେଠାରେ ରହି ପାରିଲା ନାହିଁ । ଶେଷରେ ଶଗଡ଼ କରି ତା'କୁ ଆମେ ଫ୍ଲେଉ଼ହ୍ୟାମ୍ପଟନ୍ ସହରକୁ ନେଲୁଁ ଓ ପୁରୁଣା ଜିନିଷ କାରବାର କରୁଥିବା ଜଣେ ବେପାରୀକୁ ମୂର୍ତ୍ତିଟି ପଚିଶ ଟଙ୍କାକୁ ବିକି ଦେଲୁଁ । ବେପାରୀର ଆଗ୍ରହରୁ ମନେହୁଏ, ମୂର୍ତ୍ତିଟି ବହୁ ପୂର୍ବକାଳର ସୁନ୍ଦର ଶିଳ୍ପ ଥିଲା ।

ପ୍ରତି ପିଲାଙ୍କର ସାଙ୍ଗ ଥାନ୍ତି, ଆମେ ଦୁହେଁ ପରସ୍ପରର ସେହିପରି ସାଙ୍ଗ ଥିଲୁଁ—ଅତି ଅନ୍ତରଙ୍ଗ । ସେ ନୌ-ସେନା ବିଦ୍ୟାଳୟରେ ଯୋଗ ଦେବା ଯୋଗୁଁ ଆମେ ସର୍ବପ୍ରଥମେ ଛାଡ଼ିବାଡ଼ ହେଲୁଁ । ଥରେ ନୌବିଭାଗର ପୋଷାକରେ ତା'କୁ ମୁଁ ଦେଖିଥିଲି, ତା'ପରେ ଅନେକ ବର୍ଷଯାଏଁ ଆଉ ତା'ର ମୋ'ର ଦେଖା ହେଲା ନାହିଁ । ନଉ-ବେଟାଉନ୍, ପୂର୍ବ ଯେପରି ଏବେ ବି ସେହିପରି, ଗୋଟିଏ କସ୍‌କାସ୍ ଜାଗା । ସହର ଯାକ ସମସ୍ତେ ଜାଣନ୍ତି ଯେ ତାକୁ ନୌ-ଶିକ୍ଷାଳୟରୁ ବିତାଡ଼ିତ ହେଲା । କିନ୍ତୁ କେହି ତା' ବିଷୟରେ ଚୁଗୁଲିଚପଟ କରନ୍ତି ନାହିଁ । ହେଲର୍‌ବଂଶ ବୁଡ଼ିଗଲା, ହ'ଲି ବଂଶ ଯେପରି ବୁଡ଼ ବୁଡ଼ ଆସୁଛି । ସେଥିରେ ଅଛି ମୁଁ, ଓ ଆଉ ଜଣେ ଅବଶ୍ୟ, ମୋର ଉତ୍ତରାଧିକାରୀ ଆଲେନ୍ । ନିଜ ବଂଶର ସମସ୍ତେ ନ ମରିବା ପର୍ଯ୍ୟନ୍ତ ତାକୁ ବେଟାଉନ୍‌କୁ ଫେରିଲା ନାହିଁ ; ଆସିଲା ଯେତେବେଳେ ସେତେବେଳକୁ ସେ ବଡ଼ ମାତାଲ । ପ୍ରଥମେ ମୁଁ ତା'କୁ ବାଟକୁ ଆଣିବାକୁ ଉଦ୍ୟମ କଲି, କିନ୍ତୁ ମୋର ସାହାଯ୍ୟ ସହାନୁଭୂତି ସେ ଗ୍ରହଣ କରିବାକୁ ନାରାଜ ହେଲା । କାହାଠାରୁ ସାହାଯ୍ୟ ବା ସ୍ନେହ ସହାନୁଭୂତି ଗ୍ରହଣ କରିବାକୁ ସେ ପ୍ରସ୍ତୁତ ନ ଥିଲା । କିନ୍ତୁ ଏହା ସତ୍ତ୍ୱେ ତା'ର ଓ ମୋର ସମ୍ପର୍କ ଖୁବ୍ ଘନିଷ୍ଠ ହୋଇ ରହି ଆସିଛି ।

ଏହିପରି ମୂଳରୁ, ଆଜି ସକାଳେ ତା'କୁ ସାମୟିକ ଆତ୍ମବିସ୍ମୃତିରେ ମଗ୍ନ ହେବା ସକାଶ ପାଞ୍ଚଟଙ୍କା ଦେବା ପର୍ଯ୍ୟନ୍ତ, ତା ସମ୍ପର୍କରେ ଯେତେ କଥା ମନେ ପଡ଼ିଲା ସବୁ ସ୍ମରଣ କରିଗଲି ।

ମୋ'ଠାରେ ଏବେ ଯେଉଁ ପରିବର୍ତ୍ତନ ଲକ୍ଷିତ ହେଉଛି, ତାହା ବାହାର କୃପା ଯୋଗୁଁ ମୋ ମାନସିକ ପ୍ରତିକ୍ରିୟାର ଫଳ । ମେରୀଙ୍କର ଅଭିଳାଷ, ଆଲେନ୍‌ର ଆକାଂକ୍ଷା, ଏଲେନ୍‌ର ବିରକ୍ତି ସାଙ୍ଗକୁ ମିଷ୍ଟର୍ ବେକରଙ୍କର ସହାନୁଭୂତି ଓ ସାହାଯ୍ୟର ପ୍ରତିଶ୍ରୁତି ମିଶି ମୋ ମନରେ ଏ ଅବସ୍ଥା ସୃଷ୍ଟି କରିଛନ୍ତି । ମନରେ ପ୍ରଥମେ ଗୋଟାଏ ପ୍ରବୃତ୍ତି ଜାଗେ, ସେଇ ପ୍ରବୃତ୍ତିର ମୂଳଦୁଆ ଉପରେ ଘଟଣାଚକ୍ର କାନ୍ଥ ଗଢ଼େ, ଶେଷରେ ମନ ଏଇ କାନ୍ଥ ଉପରେ ଛାତ ପକାଏ । ତା'ପରେ ଆରମ୍ଭ ହୁଏ, ଏହି ଚିନ୍ତା-ସୌଧର ପ୍ରୟୋଜନ ପ୍ରତିଷ୍ଠା କରିବାକୁ, ଯୁକ୍ତି ଓ ପ୍ରମାଣ । ଧର, ମୁଁ ଯେ ସ୍ୱାଭାବିକରେ ଏହି ନୀଚ ଗୁମାସ୍ତାଗିରିକୁ ବରଣ କରି କାଳ

କଟାଇବାକୁ ଯାଉଛି, ଏହା ମୋ'ର ନ୍ୟାୟପନ୍ଥା ଅବଲମ୍ବନ କରିବାରି ପକ୍ଷପାତିତା ଯୋଗୁଁ ନୁହେଁ ; ଏହାର ଅସଲ ମୂଳରେ ହୁଏତ ଅଛି, ମୋର ନ୍ୟାୟ-ଅନ୍ୟାୟ ବିବେକର ଆଳସ୍ୟ । ଜୀବନରେ କୃତିତ୍ୱ ଅର୍ଜନ କରିବାକୁ ହେଲେ, ସାହସ ଦରକାର । ବୋଧହୁଏ, ମୋ କାର୍ଯ୍ୟର ପରିଣାମ ଖରାପ ହୋଇପାରେ, ଏହି ଭୟରେ ମୁଁ ନିଷ୍କ୍ରିୟ ହୋଇ ରହିଛି । ଯାହାର ନାମ ତ ଆଳସ୍ୟ । ଆମ ସହରରେ ଲୋକେ ଯେଉଁ ଯେଉଁ ବ୍ୟବସାୟରେ କୃତିତ୍ୱ ଅର୍ଜନ କରିଛନ୍ତି ସେ ବ୍ୟବସାୟ ସବୁ ଜଟିଳ ନୁହେଁ ; କି ଅବୋଧ ନୁହେଁ; ଏ ଯେଉଁ କୃତିତ୍ୱ ତାହା ସେପରି କିଛି ବଡ଼ ଧରଣର ବି ନୁହେଁ । ଆମ ସହରର ଯେଉଁମାନେ କୃତିତ୍ୱ ଅର୍ଜିଛନ୍ତି, ସେମାନେ ନିଜ ଇଚ୍ଛାରେ ନିଜ କୃତିତ୍ୱକୁ ସୀମାବଦ୍ଧ କରି ରଖିଛନ୍ତି । ସେମାନେ ଯେଉଁ ଅପରାଧ କରୁଛନ୍ତି, ତାହା ଛୋଟ ଛୋଟ ଅପରାଧ; ତେଣୁ ଯେଉଁ କୃତିତ୍ୱ ଅର୍ଜୁଛନ୍ତି ତାହା ବି ଛୋଟ ଧରଣର । ଆମ ସହରର ମ୍ୟୁନିସିପାଲିଟି ସଂସ୍ଥା ଓ ବ୍ୟବସାୟ-ପରଂପରାର ଗଭୀର ଅନୁସଂଧାନ କଲେ ଦେଖାଯିବ, ଶହେ ଖଣ୍ଡେ ଆଇନ୍ ଓ ହଜାରେ ଖଣ୍ଡେ ନୈତିକ ବିଧି ଏଠାରେ ଲଙ୍ଘନ କରାଯାଇଛି । କିନ୍ତୁ ଏ ଲଙ୍ଘନର ମାତ୍ରା ଅତି ସାମାନ୍ୟ—କଖାରୁ ଚୋର, କାକୁଡ଼ି ଚୋର ଯେମିତି ଆଇନ୍ ଓ ନୀତି ଲଙ୍ଘନ କରନ୍ତି, ସେଇ ଧରଣର । ବାଇବ୍‌ଲ-ଉକ୍ତ ଦଶ-ନିୟମରୁ ଏମାନେ କେତେଟାକୁ ଅବଜ୍ଞା କରି, ବାକୀଗୁଡ଼ିକ ମାନି ଚଳୁଛନ୍ତି । ଆମ ଆମ ଭିତରେ ଯେଉଁମାନେ କୃତିତ୍ୱ ଅର୍ଜନ କରିଛନ୍ତି, ସେମାନେ, ବିଧି-ନିଷେଧକୁ ଖାତିର ନ କରି, ନିଜର ଯାହା ପ୍ରୟୋଜନ ବା ଦରକାର ସେତକ ହାସଲ କରି ସାରିଲା ପରେ, ଲୁଗା ପାଲଟିଲା ପରି ଅବଲୀଳାକ୍ରମେ ପୁଣି ନୀତିମାର୍ଗକୁ ଫେରି ଯାଉଛନ୍ତି । ଆଇନ୍ ଅମାନ୍ୟ କରିଥିବାରୁ ବା ନୀତିନିୟମ ଲଙ୍ଘନ କରିଥିବାରୁ ତାଙ୍କ ମନରେ କୌଣସି ଅବ୍‌ଶୋଷ୍ ବି ରହୁନାହିଁ—ଧରା ନ ପଡ଼ିଛନ୍ତି ଯେତେବେଳେ, ତାଙ୍କର ପାପ ବା ଅନ୍ୟାୟ ହୋଇନାହିଁ ବୋଲି ଧରି ନେଉଛନ୍ତି । ଯାଙ୍କ ଭିତରୁ କେହି କ'ଣ କେବେ ପୂର୍ବକୃତ ପାପପାଇଁ ଅନୁତପ୍ତ ହେଉଛନ୍ତି ? ହେଉଥିବାର ମୋ ଗୋଚରକୁ ଆସି ନାହିଁ । ଛୋଟ ଛୋଟ ଅପରାଧକୁ ଯଦି ମଣିଷ ଏପରି ମାଫ୍ କରି ଦେଇପାରୁଛି, ଥରେ ସାହସ କରି ଗୋଟାଏ

ନିର୍ଘାତିଆ ଅପରାଧ କରିଦେଲେ, ମାଫ୍ ନ କରି ପାରିବ କାହିଁକି ? ଏକାଥରକେ ଧାଡ଼ିଏ କିମ୍ବା ଛୁରି ଭୁଷି ଆସାମୀକୁ ବିନା କଷ୍ଟରେ ଯମପୁରକୁ ପଠାଇ ଦେଲେ କ'ଣ ହେବ ବଡ଼ ଧରଣର ନରହତ୍ୟା, ଆଉ ଆସ୍ତେ ଆସ୍ତେ ଟିକି ଟିକି କରି ତୋଟି ଚିପିମାରିଲେ, ତାହା ହେବ ଶ୍ରେଷ୍ଠ —ଚେଣୁ କ୍ଷମଣୀୟ ହତ୍ୟା ? ମୁଁ ଯେଉଁ ଜର୍ମାନମାନଙ୍କୁ ହତ୍ୟା କଲି ସେଥି-ପାଇଁ ତ ମୋତେ ପାପ ଛୁଉଁ ନାହିଁ । ଧର, ମାତ୍ର କିଛି ସମୟ ପାଇଁ ମୁଁ, ଗୋଟିଏ ନୁହେଁ, ସବୁ ନୀତି ନିୟମ, ଆଇନ୍‌କାନୁନ୍‌କୁ ଜଳାଞ୍ଜଳି ଦେଇ ଦେଲି । କ୍ଷତି କ'ଣ ? ଉଦ୍ଦେଶ୍ୟ ସିଦ୍ଧ ପରେ ପୁଣି ସେହି ନୀତି ନିୟମାଦିକୁ ସ୍ୱାଗତ କରି ଫେରାଇ ଆଣିଲେ ତ ଚଳିବ । ଯୁଦ୍ଧରେ ତ ଏଇଆ ହୁଏ ; ବ୍ୟବସାୟ ଯେ ଏକରକମ ଯୁଦ୍ଧ, ଏହା ନିଃସନ୍ଦେହ ଭାବେ କୁହାଯାଇ-ପାରେ । ଶାନ୍ତି ସକାଶ ଯେପରି ଆଖିମୁଜା ଯୁଦ୍ଧ କରାଯାଉଛି, ବ୍ୟବ-ସାୟରେ ନିଜର ଉଦ୍ଦେଶ୍ୟ ସିଦ୍ଧି କରିବାକୁ, ସୁଖ ସ୍ୱାଚ୍ଛନ୍ଦ୍ୟ ପାଇବାକୁ, ସେହି-ପରି କଲେ କ୍ଷତି କ'ଣ ? ମିଷ୍ଟର ବେକର ଓ ତାଙ୍କ ବନ୍ଧୁମାନେ ମୋ'ର ପିତାଙ୍କୁ ପ୍ରାଣରେ ଅବଶ୍ୟ ମାରି ନଥିଲେ । ସେମାନେ ତାଙ୍କୁ ପରାମର୍ଶ ଦେଇଥିଲେ ମାତ୍ର । ସେହି ପରାମର୍ଶ ଫଳରେ ମୋ ପିତାଙ୍କର ସର୍ବନାଶ ହୁଅନ୍ତେ ତାଙ୍କର ଧନ ସଂପତ୍ତି ସେହି ବେକର୍ ଓ ତାଙ୍କ ବନ୍ଧୁଗଣ ଉତ୍ତରା-ଧିକାରୀ ପରି ପାଇ, ଉପଭୋଗ କରିବାରେ ତ ସଂକୋଚ କଲେନାହିଁ । ଏମାନେ ଯାହା କଲେ ତାହାର, ନରହତ୍ୟା ଠାରୁ କେତେ ବା ତଫାତ୍ ? ନୃଶଂସଭାବେ ଅପରକୁ ଧ୍ୱଂସ ନକରି କିଏ ବା କେବେ ସଂପତ୍ତି କରିଛି ? କି ଉପାୟରେ ସଂପତ୍ତି ଆସିଲା ସେ ବିଷୟରେ ମୁଣ୍ଡ ନ ଘୂରାଇ, ଆମେ ତ ପୁଣି ଏ ସଂପତ୍ତିକୁ ତାରିଫ୍ କରୁଥାଉଁ ! ସତ୍ ଉପାୟରେ ସଂପତ୍ତି କରି-ଥିବାର ଗୋଟିଏ ବି ଦୃଷ୍ଟାନ୍ତ ତ ମୋ ମନକୁ କାହିଁ ଆସୁନାହିଁ !

ଆଉ ଗୋଟିଏ କଥା । କିଛି ସମୟପାଇଁ ବି ନୀତି·ନିୟମକୁ ଜଳାଞ୍ଜଳି ଦେଲେ, ମୁଁ ଜାଣୁଛି, ମନରେ ଆଘାତ ଲାଗିବ । କିନ୍ତୁ ଦୁଃଖ, ଦୈନ୍ୟ ଓ ନୈରାଶ୍ୟର ଯେଉଁ ଆଘାତ ମୋ ମନରେ ଲାଗି ସାରିଛି, ତା'ଠାରୁ କ'ଣ ନୀତି ନିୟମ ଲଂଘନ କରିବାର ଏ ଆଘାତ ଅଧିକ କଷ୍ଟପ୍ରଦ ହେବ ? ଜୀବନ ସଂଗ୍ରାମରେ ବଂଚି ରହିବାକୁ ହେଲେ ତ ଏଭଳି ଆଘାତରୁ ମୁକ୍ତି ନାହିଁ ।

ମୋ'ର ଅଶାନ୍ତ ଓ ଅସନ୍ତୋଷର ସୌଧ ଉପରେ ଉପବେଶକ୍ତି ଚିନ୍ତାସ୍ରୋତ, ବାୟୁ-ନଶାଣର କାର୍ଯ୍ୟ କରୁଥାଏ । ସବୁ ବସ୍ତୁର ମୁଁ ସ୍ଥିର କଲି, ମୁଁ ବ ମାତ୍ତି ନିୟମ ଲଙ୍ଘନ କରିବ ; କାରଣ, ମୋ ପୂର୍ବରୁ ଅନ୍ୟ-ମାନେ ସେହିପରି କରିଛନ୍ତି । ବାକି ରହିଲା ଗୋଟିଏ ପ୍ରଶ୍ନ । ଥରେ ଯଦ ବିଧିନିଷେଧର ଦୁଆର ଫିଟିଗଲା, ପରେ ପୁଣି ତା'କୁ ବନ୍ଦ କରି ହେବ ତ ? କେଜାଣି ? କିନ୍ତୁ ଦୁଆର ନ ଫିଟିବା ପର୍ଯ୍ୟନ୍ତ, ବନ୍ଦ ହୋଇ ପାରୁଛି କି ନାହିଁ, ଜାଣିବ କେମିତି ? ମିଷ୍ଟର ବେକର୍ କ'ଣ ଜାଣିଥିଲେ ? ବିଧି ନିଷେଧକୁ ଜଳାଞ୍ଜଳି ଦେବା ପୂର୍ବରୁ ସେ କ'ଣ ଏହିଭଳି ଗୁଡ଼ାଏ ଚିନ୍ତା କରିଥିଲେ ? ମିଷ୍ଟର ବେକରଙ୍କ ପିତା, ଯେ ଇନ୍‌ସ୍ୟୁରାନ୍‌ସ ଟଙ୍କା ପାଇ-ବାକୁ ବେଲ୍-ଆଡେପ୍ଟର ଜାହାଜଟା ପୋଡ଼ିଦେଲେ, ସେ କ'ଣ ମୋ' ଜେଜେବାପା, ବୃଦ୍ଧ କପ୍ତାନ୍‌ଙ୍କ ମନରେ କି କଷ୍ଟ ଦେଇଛନ୍ତି, ଭାବିଥିଲେ ? ତେବେ କ'ଣ, ମିଷ୍ଟର୍ ବେକର୍ ଯେ ମୋତେ ସାହାଯ୍ୟକରିବାକୁ ବାହାରି-ଛନ୍ତି, ତାହା ମୋ ଜେଜେବାପାଙ୍କ ଦୁଃଖ ଓ ମୋ' ବାପାଙ୍କ ଦୁର୍ଦ୍ଦଶାର ପ୍ରାୟଶ୍ଚିତ୍ତ କରିବା ଉଦ୍ଦେଶ୍ୟରେ ? ନିଜର ଓ ନିଜ ପିତାଙ୍କର ପୂର୍ବକୃତ ପାପ ଯୋଗୁଁ କ'ଣ ତାଙ୍କ ମନରେ ଆଘାତ ଲାଗିଛି ?

ବାଲିଚଡ଼ାରେ ଲାଗି ଯାଇଥିବା ବଡ଼ ଜାହାଜକୁ ଛୋଟ ଛୋଟ ଅଗ୍ନି-ବୋଟ୍ ଗୁଡ଼ାଏ ଏ ପାଖକୁ ସେ ପାଖକୁ ଟାଣି ଠେଲି, ଚଳେଇବାକୁ ଲାଗନ୍ତି । ମୋ ମନରେ ବର୍ତ୍ତମାନ ଯେଉଁ ସଂଘର୍ଷ ଲାଗିଛି ତାହା ଏହି ଉଦ୍ୟମ ସଙ୍ଗେ ତୁଳନା କଲେ ଚଳିବ । ଅଗ୍ନିବୋଟ୍ ଓ ତରଙ୍ଗର ଆଘାତ ଫଳରେ ଜାହାଜ ଚଳିଲେ, ତା'ର ଲକ୍ଷ୍ୟସ୍ଥାନ ଆଡ଼କୁ ସେ ଗଲିବାକୁ ନିଜ ଇଞ୍ଜିନ ଚଳାଇବ । ଜାହାଜର ନିୟନ୍ତ୍ରଣ-କେନ୍ଦ୍ରରେ ପ୍ରଶ୍ନ ଉଠିବ, 'ସବୁ ଠିକ୍ ତ ? ଆମର ଲକ୍ଷ୍ୟ ତ ସ୍ଥିର ଅଛି । ଲକ୍ଷ୍ୟ ସ୍ଥାନରେ କେମିତି ପହଞ୍ଚିବା ତା'ର ଯୋଜନା ହେଉ । ବାଟରେ କେଉଁଠି ବୁଡ଼ି କରି ପଥର ଚଡ଼ା ଅଛି ତାହା ନିର୍ଣ୍ଣୟ କର ; ଆଗରେ ପାଣିପାଗ କିପରି ହେବ ନିର୍ଣ୍ଣୟ କର ।'

ମୋ ନିଜ ଜାହାଜର ଗନ୍ତବ୍ୟପଥରେ ଗୋଟିଏ ମାରାତ୍ମକ ପଥର-ଚଡ଼ା ଅଛି । ତାହା ହେଉଛି, ମନର କଥା ତୁଣ୍ଡରେ ଫିଟାଇ ଦେବା । ଯଶ ପାଇବାର ଦୁର୍ବାର ଆକାଂକ୍ଷାରେ, ଏପରି କି ଦଣ୍ଡ ପାଇ ନାମଖ୍ୟାତ

କରିବା ଅଭିପ୍ରାୟରେ, ଅନେକ ଲୋକ ନିଜକୁ ନିଜେ ଧରେଇ ଦିଅନ୍ତି, ଅନ୍ୟ କେହି ସେମାନଙ୍କୁ ଧରା ପକାଇବା ପୂର୍ବରୁ । ବଢ଼େଇ କରି ମନର କଥା ଭୁଣ୍ଡରେ ଫିଟାଇ ଦେବାରୁ ଏହା ହୁଏ । କାହାକୁ କହିବାକୁ ଯଦି ପ୍ରବୃତ୍ତି ହେଉଛି, ତେବେ ସେଇ ଏଣ୍ଡରସନ୍‌ଙ୍କ କୂଅକୁ କହ । ତାକୁ କହିଲେ, ସେ ବିଶ୍ୱାସଘାତକ ହେବ ନାହିଁ ।

ମୁଁ ବୃଦ୍ଧ କପ୍ତାନ୍‌ଙ୍କୁ ଡାକିଲି, "ଆଜ୍ଞା, ମୁଁ ଯେଉଁ ଗନ୍ତପଥ ନିର୍ଣ୍ଣୟ କଲି ତା'କୁ ଧରି ଚାଲିବି କି ? ଏ ପଥ ନିରାପଦ ତ ? ମୁଁ ସୁବିଧାରେ ମୋ ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରିବି ତ ?"

ମୋ ଜୀବନରେ ଏଇ ସର୍ବପ୍ରଥମ ଥର ବୃଦ୍ଧ କପ୍ତାନ୍ ମୋତେ ନିରାଶ କଲେ । ସେ ହୁକୁମ ଦେବାକୁ ନାସ୍ତିକଲେ; କହିଲେ, "ତୁମ ଗନ୍ତ-ପଥ ନିରାପଦ କି ନୁହେଁ ତୁମେ ନିଜେ ସ୍ଥିର କର । ଜଣକୁ ଯାହା ଭଲ, ତାହା ଅନ୍ୟ ଜଣକୁ ମନ୍ଦ ହୋଇପାରେ । ଏହା ପୁଣି ଜଣା ପଡ଼େ, ଯାହା ଶେଷରେ, ଆରମ୍ଭରେ ନୁହେଁ ।"

ଖବିସ ବୁଢ଼ାଟା ମୋତେ ସାହାଯ୍ୟ କରିଥିଲେ ଭଲ ହୋଇଥାନ୍ତା । ନ କହିଲା ତ ନାଇଁ । ଯାଏ କେତେ, ଆସେ କେତେ ? ମଣିଷ କ'ଣ ସତରେ ପରାମର୍ଶ ଖୋଜେ ? ଅନ୍ୟର ପରାମର୍ଶରେ ଚାଲିବାକୁ ଚାହେଁ ? ସେ କେବଳ ଚାହେଁ, ତା'ର ନିଜ ସିଦ୍ଧାନ୍ତରେ ପରାମର୍ଶ-ଦାତା ହଁ ଭରୁ ।

———

## ସପ୍ତମ ପରିଚ୍ଛେଦ

ମୋ ନିଦ ଭାଙ୍ଗିଲାବେଳକୁ, ଶୋଇବାରେ ସବୁବେଳେ ପାରଙ୍ଗମ ମୋ ମେଷ୍ଟ୍ରୀ, ଉଠିସାରି ଷ୍ଟୋଭେଇଘରକୁ ଯାଇଥାନ୍ତି, ଓ କଫି ଓ ଘୁଷୁରି-ମାଂସର କବାବ୍ ବନୁଥାଏ । ତାହାର ଗନ୍ଧ ମୋ ନାକରେ ବାଜିଲି । ଖ୍ରୀଷ୍ଟଙ୍କର ପୁନରାବର୍ତ୍ତବ ପାଇଁ ଆଜଠାରୁ ଆଉ ଭଲ ଦିନ ମିଳିବା ଦୁର୍ଲଭ—ସବୁଜ, ନୀଳ ଓ ହଳଦିଆ ସବୁ ରଙ୍ଗରେ ରଞ୍ଜିତ ହୋଇ ଦିନଟି ଆରମ୍ଭ ହୋଇଥାଏ । ଶୋଇବା ଘରର ଝରକାବାଟେ ବାହାରକୁ ଚାହିଁ ଦେଖିଲି, ସତେ ଯେପରି ଘାସ ଓ ଗଛବୃଛ—ସମସ୍ତେ ଅନ୍ତମଶପୂନରୁ ପୁନରାବର୍ତ୍ତିତ ହେଉଛନ୍ତି । ଆମ ପୂର୍ବପୁରୁଷମାନେ ଖ୍ରୀଷ୍ଟଙ୍କ ପୁନରାବର୍ତ୍ତବ ପାଇଁ ଅସଲ ଋତୁ ଠିକଣା କରିଯାଇଛନ୍ତି ବୋଲି ତାରିଫ୍ କଲି । ବାହାରକୁ ବାହାରିବା ପୋଷାକ ପିନ୍ଧିବା ପୂର୍ବରୁ ଯେଉଁ ଘାଘରା ଖଣ୍ଡ ଦେହରେ ଗଳାଇ ଦେଲି ଓ ଚଟି ମାଡ଼ିଲି ସେଥିରେ ମଧ୍ୟ ବିଶେଷତ୍ୱ ଥିଲି । ଘାଘରାଟି ଖ୍ରୀସ୍‌ମାସ୍‌କୁ କିଣା ହୋଇଥିଲି ଓ ଚଟି ହଳକ ମୋ ଜନ୍ମ ଦିନର ଉପହାର । ଗାଧୁଆ ଘରେ ଯ୍ୟାଲେନ୍‌ର କେଶମଲମ ହାବୁଡ଼େ ପଡ଼ିଲି । ସେଥିରୁ ଟିକିଏ ମୁଣ୍ଡରେ ମାରିଦେଲି । ବାଳ କୁଣ୍ଡାଇ ବ୍ରସ୍ ମାରି ଦେବା ପରେ, ଏହି ମଲମ ଯୋଗୁଁ ମୁଣ୍ଡର ବାଳ ଖପୁରିରେ ଟୋପି ପରି ଲାଖିଗଲି ।

ଇଷ୍ଟର ରବିବାରର ପ୍ରାତରାଶ, କୁକ୍‌କୁଟାଣ୍ଡ ଓ କୁକ୍‌କୁଟାଣ୍ଡ ମିଶ୍ରିତ ଚକୁଳିର ଗୋଟାଏ ଭୈରବୀ ଉତ୍ସବ କହିଲେ ଚଳେ । ସବୁ ଖାଦ୍ୟ ସାମଗ୍ରୀକୁ ଘୁଷୁରି ମାଂସର କବାବ୍, ରୋଷ୍ଟ ଓ କଟ୍‌ଲେଟ୍ ଘେରାଉ କରି ରହିଥାଏ । ମୁଁ ଅଲକ୍ଷିତରେ ମେଷ୍ଟ୍ରୀଙ୍କ ପାଖକୁ ଯାଇ, ଥଟ୍ଟାରେ ପଦେ କହି, ମସୃଣ ରେଶମ କନାର ସେମିଜ୍‌ରେ ଆଚ୍ଛାଦିତ ତାଙ୍କ ନିତମ୍ବରେ ହାତ ମାରିଦେଲି ।

ସେ ଚମକି ପଡ଼ି କହିଲେ, "ଓଃ ! ତମେ ଆସି ପାଖରେ ପହଞ୍ଚିଲଣି ମୁଁ ଜାଣି ପାରିଲି ନାହିଁ ।" ସେ ମୋର ସୁନ୍ଦର ଆଲଖାଲାକୁ ଗୁହିଁ କହିଲେ, "କେଡ଼େ ସୁନ୍ଦର ଦିଶୁଛୁ । ସବୁ ଦିନ ସକାଳେ ଯ୍ୟାକୁ ପିନ୍ଧିଲେ ହୁଅନ୍ତା ନାହିଁ ?"

ମୁଁ କହିଲି, "ହୁଅନ୍ତା ଯେ, ଯ୍ୟାକୁ ପିନ୍ଧିବାକୁ ବେଳ କାହିଁ ? ଆଜ ଯାଏଁ ଯ୍ୟାକୁ ଗୁହିଁବାକୁ ବେଳ ବି ହୋଇ ନଥିଲା ।"

ସେ କହିଲେ, "ଯାହାହେଉ, ଭାରି ସୁନ୍ଦର ଆଲ୍‌ଖାଲା ଏଇଟି ।"

"ହେବାର ତ କଥା । ତୁମେ ପରା ଯ୍ୟାକୁ ଦୋକାନ ଯାକରୁ ଖୋଜି ଖୋଜି ଆଣିଥିଲ ! ପ୍ରୀତବାଶର ଏଡ଼େ ସୁନ୍ଦର ବାସ୍‌ନାରେ ବି ପିଲା ଦିଇଟା ଏତେବେଳ ଯାଏଁ ଖଟଲଗି ହୋଇ ପଡ଼ିଛନ୍ତି ?"

"ନାଇଁ, ନାଇଁ, ଉଠିଲେଣି । ବାଡ଼ପଟେ ଚହିଡ଼-ଅଣ୍ଡା ସବୁ ଲୁଗୁଉଛନ୍ତି । ମିଷ୍ଟର ବେକର କି ମତଲବ୍‌ରେ ଆମକୁ ଡାକଛନ୍ତି, ସମଜି ପାରୁନାହିଁ !"

ଗୋଟାଏ କଥାରୁ ଅନ୍ୟ କଥାକୁ ମେରିଙ୍କର ଏଭଳି ହଠାତ୍ ଡେଇଁବାରେ ମୁଁ ସଦାକାଳେ ଆଶ୍ଚର୍ଯ୍ୟ ହୋଇଯାଏ ; କହିଲି, "ମିଷ୍ଟର୍ ବେକର ! ମିଷ୍ଟର ବେକର ! ହଁ, ହଁ, ଡାକଛନ୍ତି ତ ! ବୋଧହୁଏ ମୋ'ର ଅବସ୍ଥା ଉନ୍ନତ କରିବାକୁ ତାଙ୍କର ଆନ୍ତରିକ ଇଚ୍ଛା !"

"ତାଙ୍କୁ କହିଦେଲ ପରା ! ଆମ ଭାଗ୍ୟ ଗଣନା କଥା ତାଙ୍କୁ କହିଛ କି ?"

"'ମୁଁ ଯ୍ୟା' କରନ୍ତି ? ହୁଏତ ସେ ଅନୁମାନ କରି କିଛି ସୁରାକ ବାରିଥିବେ ।" ତା'ପରେ ଗମ୍ଭୀର ସ୍ୱରରେ କହିଲି, "ଆଚ୍ଛା, ଛେନାମଣ୍ଡା ! ତମର ବୋଧହୁଏ ଧାରଣା ଯେ ମୋ'ର ବେପାରରେ ଉନ୍ନତି କରିବା ଶକ୍ତିଟା ଅଛି । ନାଇଁ କ'ଣ ?

"କ'ଣ ଯେ କହୁଛ, ମୁଁ କିଛି ବୁଝିପାରୁ ନାହିଁ ।" ସେ ଚକୁଲିଟାଏ ଲେଉଟାଇବାକୁ ଲୁହା ଖଡ଼ିକାରେ ଟେକିଥିଲେ ; ଚକୁଳି ସେଇପରି ଶୂନ୍ୟରେ ରହିଲା ।

ମୁଁ କହିଲି, "ତୁମେ ତୁମ ଭାଇଠାରୁ ଯେଉଁ ଟଙ୍କା ପାଇଛ ତା'କୁ ବେପାରରେ ଖଟାଇବାକୁ ମିଃ ବେକର୍‌ଙ୍କର ଇଚ୍ଛା ।"

"ଯଦ୍ଵ ମି: ବେକରଙ୍କ ଇଚ୍ଛା—"

"ରହ, ରହ, ମିଷ୍ଟର୍ ବେକର୍ ଯାହା କହନ୍ତୁ ପଛେ, ସେ ଟଙ୍କାରେ ହାତ ଦେବାକୁ ମୋ'ର ଇଚ୍ଛା ନୁହେଁ । ଟଙ୍କା ତମର—ତମର ଆପଦ୍‌ଧନ ।"

"ପ୍ରିୟ ! ମିଷ୍ଟର୍ ବେକର୍ ତ ସେ କଥା ପାସୋରି ଦେଇ ଟଙ୍କା ଲଗାଇବାକୁ କହୁନାହାନ୍ତି ! ତାହା ମୋ'ର ଆପଦ୍‌ଧନ ବୋଲି ତୁମେ ଯେପରି ବୁଝୁଛ, ମିଷ୍ଟର୍ ବେକର୍ ତୁମଠାରୁ ତାହା ଢେର ଅଧିକ ବୁଝୁଥିବେ ।"

"ସେ ବିଷୟରେ ମୋର ସନ୍ଦେହ । ମିଷ୍ଟର୍ ବେକର୍ ଘରି ବୁଦ୍ଧିବନ୍ତ ବୋଲି ମୋ ବାପା ବୁଝି ନ ଥିଲେ କି ? ଆଜି ତ ମିଷ୍ଟର୍ ବେକର୍‌ଙ୍କ ବୁଦ୍ଧିର ବୃଦ୍ଧି ଯୋଗୁଁ, ମୁଁ ମ୍ୟାରୁଲେଙ୍କ ପାଖେ ଗୁମାସ୍ତା ହୋଇଚି !"

"ତଥାପି ମୁଁ ବୁଝୁଛି, ମିଷ୍ଟର ବେକର –"

"ସାଙ୍ଗୀ, ତୁମେ ମୋ କଥାରେ ଚଳିବ ଟିକି ?"

"ଏଥିରେ ବି ତୁମର ସନ୍ଦେହ ? ସବୁ ବିଷୟରେ ତୁମ କଥା ମୁଁ ମାନେ ।"

"ସବୁ ବିଷୟରେ ?"

"ଏମିତି ରହସ୍ୟ କଲାପରି କ'ଣ କହୁଛ ମ ?"

"ମୁଁ ଆଦୌ ରହସ୍ୟ କରୁନାହିଁ । ଖୁବ୍ ତତ୍ତ୍ୱରେ ପଚାରୁଛି ।"

"ସେଇଆ ତ ଦେଖୁଛି । କିନ୍ତୁ ମିଷ୍ଟର୍ ବେକର୍‌ଙ୍କୁ ଏତେ ସନ୍ଦେହ କିଆଁ ? ସେ ତ—ସେ ତ –"

"ସେ ତ ପୁଣି ମିଷ୍ଟର୍ ବେକର ! ତାଙ୍କ କଥା ଭଲ କରି ଶୁଣିବା, ତା' ପରେ ଆମ ବୁଦ୍ଧିରେ— । ମୋର ତଥାପି ଇଚ୍ଛା, ସେ ଟଙ୍କାତକ ଯେପରି ବ୍ୟାଙ୍କରେ ଅଛି, ସେହିପରି ହାତ ନ ବାଜି ରହୁ ।"

ବାଟୁଲି ମାଇଲା ପରି ଯ୍ୟାଲେନ୍ ବାଡ଼ପଟ ଦୁଆର ପଟେ ପଶି ଆସି ଚିତ୍କାର କଲା, "ମ୍ୟାରୁଲେ ! ମିଷ୍ଟର ମ୍ୟାରୁଲେ ବାହାରେ ଠିଆ ହୋଇଛନ୍ତି । ଆପଣଙ୍କୁ କ'ଣ କହିବେ ।"

ମେଷ୍ଟି କହି ଉଠିଲେ, 'ପ୍ରେମ ତ ଅପୂର୍ବ—'

ମୁଁ ସ୍ମାଲେନ୍‌କୁ କହିଲି, "ହଉ ତାଙ୍କୁ ଡାକେ ।"

"ଡାକିଲି ଯେ, ସେ କହିଲେ ବାହାରେ ଆପଣଙ୍କ ସଙ୍ଗେ ଦେଖା କରିବେ ।"

"ଏଥାନ୍, ସ୍ମା ତ ହେବ ନାଇଁ; ତମେ ଆଲଖାଲ୍ଲ ଲଗାଇ ଦାଣ୍ଡକୁ ଯିବା ଠିକ୍ ହେବନାଇଁ । ଆଜ ପରା ଇଷ୍ଟର୍ ରବିବାର !"

ମୁଁ କହିଲି, "ସ୍ମାଲେନ୍, ଯା' ତାଙ୍କୁ ଯା କହିବୁ ,ମୁଁ ପୋଷାକ ପିନ୍ଧି ନାହିଁ । ସେ ଆଜ ଟିକିଏ ପଛେ ଆସିଲେ ଭଲ ହେବ । ନିତାନ୍ତ ଜରୁରି କାର୍ଯ୍ୟ ଯଦି ଅଛି, ସେ ଦାଣ୍ଡ ଦୁଆର ବାଟେ ଭିତରକୁ ଆସନ୍ତୁ । ଦୁହେଁ ସେଇଠି ବାରେଣ୍ଡାରେ ବସି କଥାବାର୍ତ୍ତା ହେବୁ ।" ସ୍ମାଲେନ୍ ଧାଇଁ ଗଲା ।

"ସେ କାହିଁକି ଆସିଛନ୍ତି, କେଜାଣି ଲୋ ମା ! ରାତିରେ କ'ଣ ଦୋକାନରେ ଗୈର ପଶିଲେ ?"

ସ୍ମାଲେନ୍ ପୁଣି ଧାଇଁ ଧାଇଁ ଆସିଲା, "ସେ ଦାଣ୍ଡଦୁଆରକୁ ଗଲେଣି ।"

ମେଘ ମୋତେ ପଛରୁ ଡାକ କହିଲେ, "ପ୍ରିୟ ! ତାଙ୍କ ଯୋଗୁଁ ଖାନା ଥଣ୍ଡା ନହେଉ । ଶୁଣିଲ ?"

ମୁଁ ଘର ଭିତରବାଟେ ଦାଣ୍ଡଘରକୁ ଯାଇ ଦାଣ୍ଡ ଦୁଆର ଫିଟାଇଲି । ମ୍ୟାରୁଲେ ଦାଣ୍ଡ ଦୁଆର ସ୍ଥଳରେ ଠିଆ ହୋଇଥାନ୍ତି; ଇଷ୍ଟର ସ୍ମୃତି ଉତ୍ସବ ଉପଲକ୍ଷ୍ୟେ ସବୁଠାରୁ ଭଲ ପୋଷାକ ପିନ୍ଧିଥାନ୍ତି, ତାଙ୍କର ସବୁଠାରୁ ବଢ଼ିଆ ପୋଷାକ ବୋଇଲେ, କଳା ବନାତର ପୋଷାକ ଓ କୋଟ ଉପରେ ଘଣ୍ଟାର ମୋଟା ସୁନାଚେନ୍ । ହାତରେ କଳାଟୋପିଟି ଧରିଥାନ୍ତି ଓ ଅନଧିକାର ପ୍ରବେଶ କରିଥିବା କୁକୁର ପରି ଅତଙ୍କିତ ହୋଇ ଟିକିଏ ଟିକିଏ ହସୁଥାନ୍ତି ।

"ଆସନ୍ତୁ, ଆସନ୍ତୁ ।"

ସେ କହିଲେ, "ନା, ବସିବାକୁ ବେଳ ନାହିଁ । ପଦେ କଥା କହିବ ବୋଲି ବାହାରି ଆସିଲି । ସେ ପ୍ରଗୃହକଟା ତୁମକୁ କେମିତି ଲାଞ୍ଛ ଯାଉଥିଲା, ମୁଁ ଶୁଣିଛି ।"

"ଏଁ ?"

"ହଁ, ତାଙ୍କୁ ତୁମେ କେମିତି ବିଦା କରିଦେଲ ସେ କଥା ସବୁ ବି ଶୁଣିଛି ?"

"ସେଥିରେ ଆଉ କହିବାର କ'ଣ ଅଛି ? ମୁଁ ତା ଯୋଗ ଗିଳି ଥିଲେ ଭଲ ହୋଇଥାନ୍ତା ବୋଲି କ'ଣ ଆପଣ ଚାହାନ୍ତ ?"

ସେ ଆଗେଇ ଆସି ମୋର କରମର୍ଦ୍ଦନ କଲେ; ଲୌକିକ ବିଧିରେ ମୋ ହାତକୁ ଦୁଇ ଥର ତଳକୁ ଉପରକୁ ହଲାଇ, କହିଲେ, "ତୁମେ ଜଣେ ଭଲ ଲୋକ ବୋଲି ଚହ୍ନିଲି ।"

"ହୁଏତ, ଲୋକଟି ମୋତେ ଯାହା ଦେବାକୁ କହିଲି, ତାହା ଯଥେଷ୍ଟ ହେଲା ନାହିଁ ବୋଲି ମୁଁ ନାସ୍ତି କରିଥାଇ ପାରେ ।"

"ନା, ନା, ତା ନୁହେଁ, ତୁମେ ରହସ୍ୟ କରି କହୁଛ । ତୁମେ ଭଲ ଲୋକ, ଏଥିରେ ସନ୍ଦେହ ନାହିଁ ; ତୁମେ ସଚ୍ଚା ଲୋକ ।" ଏହା କହି ସେ, ତାଙ୍କ କୋଟ୍‌ପକେଟ୍‌ରେ ହାତ ପୂରାଇଲେ—ପକେଟ୍‌ଟା ଫୁଲେଇ ଥିଲି ପରି ବାହାରକୁ ଦିଶୁଥାଏ—ସେଥିରୁ ସେ ଗୋଟାଏ ପୁଡ଼ା ବାହାର କରି କହିଲେ, "ହେଇଟି, ଏଇଟା ରଖ," । ତାପରେ ମୋ କାନ୍ଧରେ ହାତ ମାରି, ସେ ଲଜ୍ଜା ଓ ସଂକୋଚରେ ବ୍ୟତିବ୍ୟସ୍ତ ହେଲାପରି ମୁହଁ ବୁଲାଇଲେ ଓ ତରତର ହୋଇ ବାହାରିଗଲେ । ତାଙ୍କ ଛୋଟ ଛୋଟ ଗୋଡ଼ଗୁଡ଼ିକ ଯଥାସମ୍ଭବ ଶୀଘ୍ର ତାଙ୍କୁ ଆମ ହତା ପାର କରିଦେଲା । ଦେଖିଲି, ତାଙ୍କ ବେକର କଡ଼ା-ଇସ୍ତ୍ରୀଦିଆ କଲାର୍ ଉପରକୁ ଯେଉଁ ମାଂସଳ ଅଂଶଟା ବାହାରି ପଡ଼ିଥାଏ, ତାହା ଲାଲ ପଡ଼ି ଯାଇଥାଏ ।

"ପୁଡ଼ାରେ ଏ ଜିନିସ କ'ଣ ?"

ପୁଡ଼ା ଫିଟାଇ ଚାହିଁଲି । ଇଷ୍ଟର୍ ଉପଲକ୍ଷ୍ୟେ ଡିଆରି ଅଣ୍ଡାକୃତି ରଙ୍ଗିନ୍ ମିଠେଇ । ଷ୍ଟୋର୍‌ରେ ଗୋଟିଏ ଗୁଣ୍ଡିକୋଣିଆ ବଡ଼ ବୟାମରେ ଏଥିରୁ ଗୁଡ଼ାଏ ଥିଲା । ମୁଁ କହିଲି, "ପିଲାଙ୍କ ପାଇଁ ଉପହାର ଦେଇଗଲେ ।"

"ମିଷ୍ଟାର ଲୁଲେ ! ସେ ଉପହାର ଦେଇ ଗଲେ ! ଏହାର କାରଣ ତ ଜାଣିପାରୁ ନାହିଁ !"

"ଦେଲେ ତ, କାରଣରେ କ'ଣ ଅଛି ?"

"କିନ୍ତୁ ଆଜି କାହିଁକି ଦେଲେ ? ଏଭଳି ଉପହାର ତ ସେ କେବେ ଦେବାର ମନେ ନାହିଁ ।"

"ମୋ'ର ମନେ ହେଉଛି, ତାଙ୍କର ମୋ'ଠାରେ ଶ୍ରଦ୍ଧା ହୋଇଛି ।"

"ଏମିତି କ'ଣ କିଛି ଘଟିଛି, ଯାହା ମୁଁ ଜାଣି ନାହିଁ ?"

"ହରଗଉରୀ ଗୋ ! ସଂସାରରେ ଏମିତି ଲକ୍ଷେ ଘଟଣା ଘଟୁଥିବ, ଯାହା ତୁମକୁ ଜଣା ନାହିଁ କି ମୋତେ ଜଣା ନାହିଁ ।" ପିଲାମାନେ ମେଲା ରହିଥିବା ବାଡ଼ କବାଟ ପାଖେ ଠିଆ ହୋଇ ଗୃହିଁଥାନ୍ତି । ମୁଁ ପୁଡ଼ାଟା ସେମାନଙ୍କୁ ଦେଖାଇ କହିଲି, "ଆମକୁ ସେହ କରୁଥିବା ଜଣକ ଠାରୁ ମିଳିଛି ଏ ଉପହାର । କିନ୍ତୁ ସକାଳ ଜଳଖିଆ ଖାଇବା ପୂର୍ବରୁ ଏଥିରେ ଲାଗିବାକୁ ହେବ ନାହିଁ ।"

ଗିର୍ଜାକୁ ଯିବାକୁ ଆମେ ପୋଷାକ ପିନ୍ଧୁଛୁ, ମେଘ କହିଲେ, "ଏ ଘଟଣା ମୂଳରେ କ'ଣ ଅଛି, ଜାଣିବାକୁ ଭାରି ଉତ୍କଣ୍ଠା ହେଉଛି ।"

ମୁଁ କହିଲି, "ଏଇ ମେରୁଲୋଙ୍କ ଘଟଣା ନା ? ପ୍ରିୟେ ! ମୋର ବି ସେଇ ଉତ୍କଣ୍ଠା ।"

"କିନ୍ତୁ ମେରୁଲେ ଶସ୍ତା ମିଠେଇ ପୁଡ଼ାଟାଏ ଏପରି ଆଣି ଦେବା— ।"

"ହୁଏତ ଅତି ସରଳ ମନରେ ପୁଅକୁ ଆଣି ଦେଇଛନ୍ତି । ନାଇଁ, କ'ଣ ?"

"ମୁଁ କିଛି କୂଳ କିନାରା ପାଉନାହିଁ ।"

"ବିଚରାଙ୍କ ଭାର୍ଯ୍ୟା ମରିଛନ୍ତି । ପିଲା କବିଲା କେହି ନାହାନ୍ତି । ଆସି ବୁଢ଼ା ହେଲେଣି । ହୁଏତ ନିଃସଙ୍ଗ ଜୀବନ ଯୋଗୁଁ ଭାବାନ୍ତର ଆସିଥିବ ।"

"ପୂର୍ବେ କେବେ ତ ଆସି ନଥିଲା ! ଯାହାହେଉ, ନିଃସଙ୍ଗତା ଯୋଗୁଁ ତାଙ୍କର ଭାବାନ୍ତର ଦେଖିଲେ, ତୁମ ଦରମା ଟିକିଏ ବଢ଼ାଇବା ପାଇଁ କହିବ । ଆଚ୍ଛା, ସେ ତ କେବେ ମିଷ୍ଟର୍ ବେକର୍‌ଙ୍କ ଘରକୁ ଯା'ନ୍ତି ନାହିଁ । ଆମ ଘରକୁ କାହିଁକି ଆସିଲେ ? ମୋତେ କେମିତି କେମିତି ଲାଗୁଛି ।"

ମୁଁ ଉଦ୍ୟାନର ଫୁଲ ପରି ନିଜକୁ ଭୂଷିତ କଲି—ସୁରୁଚି-ସଂପନ୍ନ କାଳିଆ ପୋଷାକ, ଗାଢ଼ କଳା କାମିଜ୍ ଓ କଲର୍ ଏଡେ ଧଳା ଓ ମଣ୍ଡଦେଇ କଡ଼ା ଇସ୍ତ୍ରୀ ହୋଇଥାଏ ଯେ, ସେଥିରେ ପଡ଼ୁଥିବା ସୂର୍ଯ୍ୟ କିରଣକୁ ସିଧା ସୂର୍ଯ୍ୟଙ୍କ ମୁହଁକୁ ଫିଙ୍ଗି ଦେଉଥାଏ—ଆସମାନି ରଙ୍ଗର ଟାଇର ବହଯାକ ଯୋଡ଼ ଯୋଡ଼ ଚୌପି ଚିହ୍ନ ଥାଏ ।

ମାର୍ଗି ୟୁଙ୍ଗ୍-ହାଣ୍ଟ୍ କ'ଣ ତାଙ୍କ ଗୋସିଁମାଙ୍କ ବିଦ୍ୟା ଖଟାଇ ମୋ ଜୀବନରେ ଝଡ଼ ସୃଷ୍ଟି କରିବାକୁ ବସିଛନ୍ତି ? ଖବରଟା ମ୍ୟାରୁଲେ ପାଇଲେ କିପରି ? ପ୍ରଚୁରକ ମିଷ୍ଟର୍ ବଗର୍ କହିଥିବେ ମାର୍ଗିଙ୍କୁ, ଓ ମାର୍ଗିଙ୍କଠାରୁ ଶୁଣିଥିବେ ମିଷ୍ଟର୍ ମ୍ୟାରୁଲେ !—ଘୋର ଅବିଶ୍ୱାସ ଜାଗେ ଆଗୋ ମାର୍ଗିବାଳା, ତୋ' ପ୍ରତି ମୋ ମନେ; କାହିଁକି ନପାରେ ଜାଣି, କିନ୍ତୁ ଅନୁଭବେ ଭୟ ପ୍ରତିକ୍ଷଣେ—ମନରେ ଏଇ ଗୀତ ଗୁଣି ଗୁଣି ବଗିଚ୍ଚରେ ପଶିଲି, ଇଷ୍ଟର୍‌ର ଉପଲକ୍ଷ୍ୟେ ମୋ ବୋତାମ କଣାରେ ଖୋସି-ବାକୁ ଫୁଲ ପାଇଁ । ଆମ କୋଠାର ନିଅଁ ଓ ମାଟିତଳ ଗୁମ୍ଫିର ଗଡ଼ାଣିଆ ଦୁଆର-ସନ୍ଧିରେ ଗୋଟିଏ ଉଷ୍ଣମ ଜାଗା ଅଛି—ଚୁଲିର ଧାସ ସେଥିରେ ବାଜେ ଏବଂ ଶୀତ ଦିନେ ଯେଉଁ ଟିକିକ ସୂର୍ଯ୍ୟକିରଣ ମିଳେ ସେ ସବୁ ସେଥିରେ ପଡ଼େ । ସେଇ ଜାଗାଟିରେ ଲଗିଛି ଧଳା ଭାଇଓଲେଟ୍ ଫୁଲର ଗଛ । ୟାକୁ ଆଣିଥିଲି ମୋ ପିତୃପୁରୁଷଙ୍କ କବରଖାନାରୁ, ସେଠାରେ ଏ ଗଛ ବହୁତ ଅନାବନା ହୋଇ ବଢ଼ିଛି । ମୋ' କୋଟରେ ଲଗାଇବାକୁ ତିନୋଟି ସିଂହମୁହାଁ ଛୋଟ ଫୁଲ ଆଗ ସଂଗ୍ରହ କଲି; ତା' ପରେ ମୋର ପ୍ରିୟତମା ପାଇଁ ତୋଳିଲି ଡଜନେ କାନ୍ଦେରେ ଫୁଲ, ସେଇ ଫୁଲର ପୀତାଭ ପତ୍ରରେ ତାକୁ ଗୁଡ଼ାଇ ଗୋଟିଏ ତୋଡ଼ା ତିଆରି କରି, ରୋଷେଇ ଘରୁ ଆଲୁମିନମ୍ ପତା ଖଣ୍ଡେ ଆଣି, ସେଥିରେ ତା' ମୂଳକୁ ଟାଣି କରି ବାନ୍ଧିଲି ।

ତା'କୁ ଦେଖି ମେଗି କହିଲେ, "ବାଃ, କେଡ଼େ ସୁନ୍ଦର ହୋଇଛି ତୋଡ଼ାଟି ! ରହ, ମୁଁ ଗୋଟିଏ କଣ୍ଟା ଆଣେ, ୟାକୁ ମୋ ମୁଣ୍ଡରେ ଲଗାଇବି ।"

"ଶୁକ୍ଳ-ସାରସ ଗୋ ! ଏ ଋତୁର ପ୍ରେ ସର୍ବପ୍ରଥମ ସ୍ତବକ । ତୁମ ଦାସ ଏହା ତୁମ ପାଇଁ ସଂଗ୍ରହ କରିଛି । ଆଜି ଖ୍ରୀଷ୍ଟଙ୍କର ଆବିର୍ଭାବ । ସଂସାରର କେଡ଼େ ଆନନ୍ଦର ଦିନ ! ସବୁ ଦୁଃଖ ଶୋକ ଆଜି ବିଦାୟ ନେଇଛନ୍ତି ।"

"ପ୍ରିୟେ ! ଏଡ଼େ ପବିତ୍ର ଦିବସରେ ଏଡ଼େ ମନଫୁଲାଣିଆ ହେଉଛ କିଆଁ ?"

"ସଖି ! କି ବିଚିତ୍ର ବେଶରେ ଆଜି ସାଜିଅଛ ତବ ଏ କିବଶି ?"

"ତୁମକୁ ସୁନ୍ଦର ଦିଶୁଛି ?"

"ମୁଁ ତ ତା ପ୍ରେମରେ ପାଗଳ । ସବୁଦିନ ଏଇପରି କର ସଖି, କେଶ ପ୍ରସାଧନ ।"

"ତୁମକୁ ଏହା ସୁନ୍ଦର ଦିଶିବ କି ନାହିଁ ବୋଲି ଡରୁଥିଲି । ମାଗି କହିଲେ, ଯୁା ଉପରେ ତୁମର ନଜର ପଡ଼ିବ ନାହିଁ । ରହ, ତାଙ୍କୁ କହିବ ଯେ, କେମିତି ହାଙ୍ଗେ ସାଙ୍ଗେ ତୁମ ନଜର ପଡିଲା ।" ମେରି ଫୁଲ ତୋଡ଼ାଟି ମୁଣ୍ଡରେ ଖୋସିଲେ—କାମଦେବଙ୍କୁ ବାସନ୍ତୀ ପୂଜୋପହାର ।

ମେରି ପଚାରିଲେ, "ଭଲ ମାନିଲଟି ?"

"ଖୁବ୍ ମାନିଲା ।"

ତା'ପରେ ଚାଲିଲା ପିଲାଙ୍କ ଅଙ୍ଗ-ପରୀକ୍ଷା—କାନ, ନାକ, ଜୋତାର ଦୋଷତ୍ରୁଟି । ପ୍ରତି ପଦରେ ସେ ଦୁହେଁ ପ୍ରତିବାଦ କରୁଥାନ୍ତି । ୟାଲେନ୍‌ର ମୁଣ୍ଡବାଳରେ ଏତେ ତେଲ ଯେ ସେ ଭଲକରି ଗୁହିଁ ପାରୁ ନଥାଏ । ତା ଜୋତାର ରେଡ଼ିରେ ବନକ ବାଜି ନଥାଏ, କିନ୍ତୁ ବହୁ ଯତ୍ନକରି ସେ ତା'ର କପାଳରେ ଗୋଟାଏ ସୁନ୍ଦର କାଟିଥାଏ, ସମୁଦ୍ରର ଖରାଦିନିଆ ଲହଡ଼ି ପରି ।

ଏଲେନ୍ ତ କାମକଳାରେ କୁଶଳା, ମୂଳରୁ । ତା' ବେଶର ଯାହା ଆଖିକୁ ଦିଶୁଥାଏ ସେ ସବୁ ଯଥାଯଥ । ମୁଁ ତା'ର ଶ୍ରଦ୍ଧା ଫେରାଇ ଆଣିବାକୁ ଚେଷ୍ଟାଟାଏ କଲି । "କଲେ ! ଏଲେନ୍ ! ତୁ ତ ଗୋଟାଏ ନୂଆ ଢଙ୍ଗରେ ମୁଣ୍ଡ କୁଣ୍ଡେଇଚୁ ! ବେଶ୍ ମାନୁଛି । ମେରି, ଦେଖିଲ ଦେଖି, ଏଲେନ୍‌ର ମୁଣ୍ଡକୁଣ୍ଡିଆ କେମିତି ସୁନ୍ଦର ଦିଶୁଛି । ନା ?"

"ହଁ, ସୁନ୍ଦର ବୋଲି ତା ମନରେ ଗର୍ବ ଉଙ୍କି ମାଇଲଣି ।"

ଆମ ହତାଭିତରୁ ଶୋଭାଯାତ୍ରା କଲା ପରି ବାହାରି ଆମେ ଏଲମ୍ ଷ୍ଟ୍ରୀଟ୍‌କୁ ଗଲୁଁ ; ତା ପରେ ଅଗ୍ରସର ହେଲୁ, ପରଲକ୍ ଷ୍ଟ୍ରୀଟ୍‌କୁ । ସେଇ ଷ୍ଟ୍ରୀଟରେ ଗିର୍ଜା । ବହୁ କାଳର ଏ ଗିର୍ଜାଟି । ଏହାର ଚୂଡ଼ାଟି ଶୁଭ୍ର ଶୁକ୍ଳବର୍ଣ୍ଣ; ବିଖ୍ୟାତ ସ୍ଥପତି ଖ୍ରୀଷ୍ଟଫର୍ ରେନ୍‌ଙ୍କ ସ୍ଥାପତ୍ୟ ପ୍ରଣାଳୀର ପୂର୍ଣ୍ଣ ଅନୁକରଣରେ ତିଆରି ।

କ୍ରମେ କ୍ରମେ ବଢ଼ି ଯାଉଥିବା ଜନସ୍ରୋତରେ ଆମେ ମିଶିଗଲୁଁ । ସେଇ ସ୍ରୋତରେ ଚାଲୁଥିବା ପ୍ରତି ମହିଳା ତାଙ୍କ ସହଯାତ୍ରିକାର ଟୋପି ଦେଖି ତାରିଫ୍ କରୁଥାନ୍ତି ।

ମୁଁ କହିଲି, "ଇଷ୍ଟର୍ ଉତ୍ସବ ପାଇଁ ମୁଁ ଗୋଟିଏ ଟୋପିର ନକ୍ସା କଳ୍ପନା କରୁଛି । ମୁହଁକୁ ଢାଙ୍କି ଦେଲା ଭଳି କଣ୍ଢାର ଗୋଟିଏ ମୁକୁଟ, ମୁଣ୍ଡ-ପଟିରେ ସୁନା ଗୁଡ଼ଉଣି ହୋଇଥିବ ; କପାଳକୁ ଝୁଲିଥିବ ମୋତିର ଝାଲର ।"

ରୁଢ଼ ଭାବରେ ମେଗ୍ କହିଲେ, "ଏଥାନ୍ ! ଏ ସବୁ ଯଦି ଆଉ କିଏ ଶୁଣନ୍ତି, ତେବେ ?"

"ଶୁଣିଲେ ବି, ଏ ଟୋପିଟା ଏତେ ଲୋକପ୍ରିୟ ହେବ ବୋଲି ତ ମନେ ହେଉ ନାହିଁ ।"

ମେଗ୍ କହିଲେ, "ମୁଁ ଦେଖୁଛି, ତୁମ ପ୍ରକୃତି ଅତି ବିରକ୍ତିକର ହୋଇ ଗଲଣି ।" ମୁଁ ବି ସେଇଆ ଦେଖୁଥାଏ-ଖାଲି ବିରକ୍ତିକର କାହିଁକି, ତହିଁରୁ ଜଘନ୍ୟ ଆଉ କିଛି ନିଶ୍ଚୟ । ତଥାପି ମନରେ ବିଚାରୁଥାଏ, ମିଷ୍ଟର ବେକର୍ଙ୍କ ମୁଣ୍ଡବାଳ ଉପରେ ଟୀକା କଲେ ତାଙ୍କୁ କେମିତି ଲାଗୁଛି, ଦେଖନ୍ତି ।"

ଆମ କ୍ଷୁଦ୍ର ଉପନଦୀ ଅନ୍ୟ ଉପନଦୀମାନଙ୍କ ସଙ୍ଗମରେ ବଡ଼ ନଦୀ ହେଲା ବେଳେ ପରସ୍ପର ଭିତରେ ସ୍ୱାଗତ ସଂଭାଷଣର କଳନାଦ ଚାଲିଥାଏ—ଏହିପରି ଯାଇ ସମସ୍ତେ ପଶିଲୁଁ ସେଣ୍ଟ୍ ଟୋମାସ୍ଙ୍କ ଏପି-ସ୍କୋପାଲ୍ ଗିର୍ଜା ଭିତରେ । ଗିର୍ଜାଟି ବେଶି ଉଚ୍ଚ ନୁହେଁ, ମଧ୍ୟଭିଳିଆ ଢଙ୍ଗର ।

ଜୀବନର ଗୂଢ଼ତତ୍ତ୍ୱ ବିଷୟରେ ମୋ ପୁଅକୁ ଅବହିତ କରିବା ସମୟ ଯେତେବେଳେ ଆସିବ – ମୋ'ର ତ ମନେ ହୁଏ ସେ ସବୁ ଗୂଢ଼ତତ୍ତ୍ୱ ତା'କୁ ମାଲୁମ୍ ହୋଇ ସାରିଲାଣି—ଯାହାହେଉ, ମୋ ବିଚାରରେ ଯେତେ ବେଳେ ସେ ସମୟ ଆସିବ, ସେତେବେଳେ ନିଶ୍ଚୟ ମନେ କରି ତା'କୁ କେତେ-ତତ୍ତ୍ୱଟି କହି ରଖିବି । କେଣ ବିଷୟରେ ଅପରକୁ ପ୍ରଶଂସା କରି ପଦେ କହି ପାରିଲେ, ମୋ ପୁଅର କ୍ଷୁଦ୍ର ହୃଦୟର ସମସ୍ତ କାମନା ପୂରଣ କରିବାରେ ଆଉ କୌଣସି ଅନ୍ତରାୟ ରହିବ ନାହିଁ । ତା'କୁ ଏତିକିମାତ୍ର ସାବଧାନ ରହିବାକୁ ହେବ—ଅପରକୁ ଗୋଇଠା ମାରୁ, ନିସ୍ତୁକ ଚେଞ୍ଚୁ, ଚାଳକୁ ଫୋପାଡ଼ୁ, ଝିଙ୍କା ଓଟାରୁ, ଗଡ଼ଗଡ଼ା ଦେଉ, ଯାହା କରୁ ପଛେ, କସ୍ମିନ୍ କାଳେ, କଦାପି, ତା'ର ମୁଣ୍ଡ ବାଳକୁ ଅଡ଼ୁଆ କରିବ ନାହିଁ,

ବାଳରେ ହାତ ଦେବ ନାହିଁ । ଏଇ କଥାରେ ସାବଧାନ ରହି ପାରିଲେ ସମାଜରେ ସେ ପ୍ରତିଷ୍ଠା ଲାଭ କରିବ, ସନ୍ଦେହ ନାହିଁ ।

ବେକର୍ ଦମ୍ପତି ଆମର ଠିକ୍ ସାମନାରେ ପାହାଞ୍ଚ ଉଠୁଥାନ୍ତି; ତାଙ୍କ ପାଖକୁ ଆଗେଇ ଯାଇ ଆମେ ସୌଜନ୍ୟପୂର୍ଣ୍ଣ ଅଭିବାଦନ ଜଣାଇଲୁଁ । ମିଷ୍ଟର୍ ବେକର୍ କହିଲେ, "ମୋ'ର ଆଶା, ଚ୍ଚ' ଖିଆବେଳେ ଆମେ-ମାନେ ମିଶିବା ।"

ମୁଁ ଉତ୍ତର ଦେଲି, "ହଁ, ଆଜ୍ଞା, ନିଶ୍ଚୟ ଆସିବୁଁ । ଈଶ୍ବରରେ ଆପଣଙ୍କ ଶୁଭକାମନା କରୁଛୁଁ ।"

"ଏଁ, ଯେ ତ ସ୍କାଲେନ୍ ? ଆରେ, କେଉଁଠିଏ ହେଲଣି ମ ? ଆଉ, ମେଷ୍ଟ ଏଲେନ୍ ! ଭଲ କଥା ! ଏମାନଙ୍କୁ ତ ଚହ୍ନିବା ମୁସ୍କଲ୍— ଧାଉଁ ଧାଉଁ ବଢ଼ି ଯାଉଛନ୍ତି ।"

ଯେଉଁ ଗିର୍ଜାର ଛାୟାରେ ମଣିଷର ଜୀବନ ଆରମ୍ଭ ହୋଇ ଚାଲିଥାଏ, ତାହା ପ୍ରତି ମଣିଷର ମନରେ ଅଦ୍‌ଭୁତ ମମତା ଜନ୍ମି ଯାଏ । ଆମ ଗିର୍ଜାର ପ୍ରତ୍ୟେକ ନିଭୃତ କନ୍ଧ ବକନ୍ଧ ମୋତେ ଜଣା ; ସେଣ୍ଟ୍ ଟମାସଗିର୍ଜାର ଗୋଟାଏ ସ୍ବତନ୍ତ୍ର ସୁଗନ୍ଧ ମୋ' ଇନ୍ଦ୍ରିୟ ଉପଭୋଗ କରେ । ହେଇଟି ଏଇ ଜଳକୁଣ୍ଡରେ ମୋର ପ୍ରଥମ ଦୀକ୍ଷା-ନାମକରଣ ଉତ୍ସବ ହୋଇଥିଲା, ସେଇ ବାଡ଼ ପାଖେ ମୋର ବ୍ରତ-ସଂସ୍କାର ହୋଇଥିଲା; ଏଇ ପୀଠରେ ହ'ଲମାନେ ବସି ଆସୁଛନ୍ତି, କେବେଠୁଁ ଈଶ୍ବରଙ୍କୁ ଜଣା । ଭାଷା ବିଳାସରେ ମୁଁ ଏପରି ବଢ଼େଇ କହୁ ନାହିଁ, ଏହା ଯଥାର୍ଥ ସତ୍ୟ । ଏହି ଗିର୍ଜାର ପ୍ରଭାବରେ ମୋ' ମନରେ ଧର୍ମଭାବର ଗଭୀର ଛାପ ପଡ଼ିଛି ନିଶ୍ଚୟ, ନହେଲେ ମୁଁ ଏଠାରେ ଯେତେ ଯାକ ପାପକାର୍ଯ୍ୟ କରିଛି ସେ ସବୁ ମୋର ଏତେ ପରିଷ୍କାର ଭାବେ ମନେ ରହିଥାନ୍ତା କିପରି ? ସେ ସବୁର ସଂଖ୍ୟା ବି କିଛି କମ୍ ନୁହେଁ । ଗିର୍ଜା ଭିତରେ ଯେତେ ଜାଗାରେ ନଖରେ ମୁଁ ମୋ'ର ନାମ ଦସ୍ତଖତ କରିଛି ସେ ସବୁ ମୁଁ ଏବେ ବି ଦେଖାଇ ଦେଇ ପାରେ । ଥରେ ଉପାସନା ବେଳରେ ଡାନି ଟେଲର୍ ଓ ମୁଁ, ଗୋଟାଏ ଅତି ଖରାପ ଶବ୍ଦ ପିନ୍‌ରେ ଫୋଡ଼ି ଫୋଡ଼ି ଲେଖି ଦେଲୁଁ । ମିଷ୍ଟର୍ ହୁଇଲର୍‌ଙ୍କ ହାବୁଡ଼େ ପଡ଼ି ଦଣ୍ଡ ପାଇଲୁଁ ସତ, କିନ୍ତୁ ସେ ବର୍ଷରେ, ଓ ଅନ୍ୟ ଉପାସନା ଓ ସ୍ତୋତ୍ର ବର୍ଷମାନଙ୍କରେ ଏପରି କାଣ୍ଡ ଘଟିଛି କ

ନାହିଁ, ନିଶ୍ଚିତ ଭାବେ ଦେଖିବା ସକାଶେ ଧର୍ମଯାଜକଗଣଙ୍କୁ ସେ ସବୁ ବିଷୟ ତନ୍ନତନ୍ନ କରି ଖୋଜିବାକୁ ହୋଇଥିଲା ।

ଥରେ ଶାସ୍ତ୍ରପାଠ-ପୀଠତଳେ ଥିବା ଆସନ-ପିଣ୍ଡିରେ ଗୋଟାଏ ଭୟାବହ ଘଟଣା ଘଟିଥିଲା । ପିଲାଦିନେ ମୋ ବେଳରେ ପବିତ୍ର ଝାଲର୍ ପକାଇବାର ସୌଭାଗ୍ୟ ପାଇଥିଲି ; ମୁଁ କ୍ରୁସ୍ ଧାରଣ କରି ଗୋଟିଏ ସରସ ଧର୍ମସଂଗୀତ ଉଚ୍ଚ ସ୍ୱରରେ ଗାନ କରିବା ପାଇଁ ନିଯୁକ୍ତ ହୋଇ-ଥିଲି । ଦିନେ ସ୍ୱୟଂ ବିଶପ୍ ଆସିଥାନ୍ତି ପୌରୋହିତ୍ୟ କରିବାକୁ—ସୁନ୍ଦର ଗେଡ଼ା ଲୋକଟିଏ, ମୁଣ୍ଡରେ ଗୋଟିଏ ବି ବାଳ ନଥାଏ, ପୋଡ଼ା ଉଲି ପିଆଜ ପରି ସଫା—ତାଙ୍କ ଟାଙ୍କରା ମୁଣ୍ଡରୁ, ପବିତ୍ରତାର କିରଣ ବାହାରୁ ଥିଲାପରି ମୋତେ ଦିଶୁଥାଏ । ତାଙ୍କୁ ଦେଖି ମୁଁ ଏତେ ଅଭିଭୂତ ହୋଇଗଲି ଯେ, ସ୍ତବପୁସ୍ତିକା ସାମନାରେ ଥୋଇ ଧର୍ମସଂଗୀତ ବୋଲିବା ଆଗରୁ କ୍ରୁସ୍‌ଟି ତା'ଖାପରେ ରଖିଲା ବେଳେ ତା'କୁ ଧରି ରଖିବା ପିତଳ ଅର୍ଗଳଟି ଲଗାଇ-ବାକୁ ପାସୋରି ଦେଲି । ମୋରି ଠିକ୍ ତଳକୁ ବିଶପ୍ ବସିଥାନ୍ତି ଆସନପିଣ୍ଡି ଉପରେ । ପ୍ରଥମ ସଂଗୀତଟି ସାରି ଦ୍ୱିତୀୟଟି ଗାଇବାକୁ ଆରମ୍ଭ କରୁଛି, ଭୟଭୀତ ହୋଇ ଦେଖିଲି, କ୍ରୁସ୍‌ଟା ଦୋହଲି ଯାଇ ଖସିଲା ଓ ସିଧା ସଳଖ ଯାଇ ବିଶପ୍‌ଙ୍କ ପବିତ୍ର କେଶହୀନ ମସ୍ତକରେ ପଡ଼ିଲା । ବେଳରେ କଂସେଇର ଟାଙ୍ଗିଆ ମାଡ଼ ହେଲେ ଗାଈର ଯାହା ଅବସ୍ଥା ହୁଏ, ବିଶପ୍‌ଙ୍କର ସେଇ ଅବସ୍ଥା ହେଲା । ମୁଁ ବେଳରେ ପବିତ୍ର ଝାଲର୍ ପକାଇବାରୁ ବଞ୍ଚିତ ହେଲି ଓ ଧର୍ମସଂଗୀତ ବୋଲିବାର ଅଧିକାର ଆଉ ଜଣକ ପାଖକୁ ଗଲା, ଯେ ମୋ ପରି ଆଦୌ ବୋଲି ପାରିଲା ନାହିଁ । ତା' ନାମ ଷ୍ଟକ୍‌ଫୁର୍ଟ୍ ହିଲ୍, ସେ ଏବେ ପଶ୍ଚିମାଞ୍ଚଳରେ କେଉଁଠି ନୃତତ୍ତ୍ୱଗବେଷକ ହୋଇଛି । ସେ ଘଟଣାରୁ ମୁଁ ଶିକ୍ଷା ପାଇଛି ଯେ, ଉଦ୍ଦେଶ୍ୟ ଯେତେ ଭଲ ହେଉ ବା ମନ୍ଦ ହେଉ, ସେଥିରେ ବିଶେଷ ଯାଏ ଆସେ ନାହିଁ । ଭାଗ୍ୟ, ଦୈବ ନିର୍ଦ୍ଦେଶ ବା ସେଇପରି ଗୋଟାଏ କ'ଣ ଅଛି, ଯାହାର ଇଙ୍ଗିତରେ ଅକସ୍ମାତ୍ ଘଟଣା-ମାନ ଘଟେ ।

ଉପାସନା ବିଧିର ମୂଳରୁ ଶେଷ ଯାଏଁ ଆମେ ନିଜ ନିଜ ପିଣ୍ଡିରେ ବସିଲୁଁ ; ସମ୍ବାଦ ଘୋଷିତ ହେଲା ଯେ ପ୍ରଭୁ ଯିଶୁଙ୍କର ପୁନରାବିର୍ଭାବ ବାସ୍ତବରେ ହେଲା । ସବୁଥର ପରି ଏଥର ମଧ୍ୟ ଏ ସମ୍ବାଦ ଶୁଣି ମୋର

ମେରୁଦଣ୍ଡ ଭିତରେ ଶୀତେଇଗଲା । ମୁଁ ଆନ୍ତରିକତା ସହିତ ପ୍ରଭୁଙ୍କ ଶେଷଭୋଜନ ଉତ୍ସବରେ ଯୋଗଦାନ କଲି । ଯ୍ୟାଲେନ୍ ଓ ମେଗି ଏଲେନ୍‌ର ଏ ପର୍ଯ୍ୟନ୍ତ ବ୍ରତ-ସଂସ୍କାର ହୋଇ ନାହିଁ ; ସେ ଦୁହେଁ ଆହୌ ଥିର ହୋଇ ବସି ପାରୁ ନଥାନ୍ତି, ତାଙ୍କ ଫୁସ୍‌ଫାସ୍ ବନ୍ଦ କରିବାକୁ ବାରି-ବାରି ତାଙ୍କ ଉପରେ କଡ଼ା ନଜର ରଖିବାକୁ ପଡ଼ୁଥାଏ । ମେଗିଙ୍କ ଗୃହିଣୀ ଯେତେବେଳେ କଠୋର ହୋଇଯାଏ, ସେତେବେଳେ ତାହା ସହଜରେ, କୈଶୋର-ଅବାଧତାର ପଥର ଫଟାଇ ଦେଇପାରେ ।

ସମସ୍ତ ବିଧିବିଧାନ ସରିଲା ପରେ, ଆମେ ସବୁ ଗିର୍ଜାରୁ ବାହାରିଲୁଁ । ସୂର୍ଯ୍ୟକିରଣ ସର୍ବାଙ୍ଗକୁ ପୁଲକିତ କରୁଥାଏ । ଆମ୍ଭେମାନେ – ଆମ ପ୍ରତିବେଶୀ ଗୋଷ୍ଠୀ, ପରସ୍ପରର କରମର୍ଦ୍ଦନ କରି ସଂଭାଷଣ କଲୁଁ ଓ ପରସ୍ପର ପ୍ରତି ବସନ୍ତର ଶୁଭକାମନା ଜଣାଇଲୁଁ । ଆସିଲା ବେଳେ ଯେଉଁ-ମାନଙ୍କ ସଙ୍ଗେ ସଂଭାଷଣ କରିଥିଲୁଁ, ଫେରିଲା ବେଳେ ସେମାନଙ୍କ ସଙ୍ଗେ ବିଦାୟ-ସଂଭାଷଣ କଲୁଁ — ଏହି ସଂଭାଷଣ ବିଧି, ଗିର୍ଜାଭିତର ଉପାସନା ପଦ୍ଧତିର ଅନୁମାନବୃତ୍ତି ପରି ଲାଗୁଥାଏ ; ପ୍ରତ୍ୟେକଙ୍କ ସଙ୍ଗେ ସୌଜନ୍ୟପୂର୍ଣ୍ଣ ସଦାଚାରରେ କଥାବାର୍ତ୍ତା କରି, ପ୍ରତ୍ୟେକ ପ୍ରତ୍ୟେକଙ୍କର ଶ୍ରଦ୍ଧା ଓ ସମ୍ମାନର ପାତ୍ର ହେବାକୁ ନୀରବ ଉଦ୍ୟମ କଲାପରି ଜଣାଯାଉ ଥାଏ ।

"ନମସ୍କାର ! ଆଜିର ଏ ଅପୂର୍ବ ଦିବସରେ ଆପଣଙ୍କର ସବୁ କୁଶଳ ତ ?"

"ସବୁ କୁଶଳ ; ଆପଣଙ୍କୁ ଧନ୍ୟବାଦ । ଆପଣଙ୍କ ମା' କିପରି ଅଛନ୍ତି ?"

"ବୃଦ୍ଧାବସ୍ଥା— ବାର୍ଦ୍ଧକ୍ୟ ତ ବଢ଼ି ଚାଲିଛି—ତା'ର ସ୍ୱାଭାବିକ କ୍ଲେଶ ଓ ଯନ୍ତ୍ରଣା ଭୋଗୁଛନ୍ତି । ଆପଣ ତାଙ୍କ କଥା ପଚାରୁଥିଲେ ବୋଲି ତାଙ୍କୁ ନିଶ୍ଚୟ କହିବି ।"

ଏସବୁ ଆଳାପ ଅର୍ଥହୀନ — ଅବଶ୍ୟ ପରସ୍ପର ପ୍ରତି ସେଇ ସମୟର ମନୋଭାବ ପ୍ରକାଶ କରେ ମାତ୍ର । ମନୁଷ୍ୟ ନିଜର ସାମୟିକ ମନୋଭାବ ଅନୁସାରେ କ'ଣ କାର୍ଯ୍ୟ କରେ ? ଅନୁଭୂତି କ'ଣ ଚରିତ୍ରକୁ ପ୍ରଭାବିତ କରେ ? ଚରିତ୍ର ଅନୁସାରେ କ'ଣ କାର୍ଯ୍ୟ କରିହୁଏ ? ଏ ବିଷୟରେ ମୋର ଘୋର ସଂଶୟ । ଆମର କ୍ଷୁଦ୍ର ଗୋଷ୍ଠୀର କିଛିଟା ଆଗରେ ମିଷ୍ଟର୍ ବେକର୍

ଚ୍ଳୁଥାନ୍ତି, ବାଟରେ ଥିବା ଫାଟ ଓ ଗାତକୁ ଡେଇଁ ଡେଇଁ । ତାଙ୍କ ମା' ଗତ କୋଡ଼ିଏ ବର୍ଷ ହେଲା ଇହଧାମ ତ୍ୟାଗ କରି, ପିଠିହାଡ଼ ଭଙ୍ଗା ଯନ୍ତ୍ରଣାରୁ ଉଦ୍ଧାର ପାଇଛନ୍ତି । ମିଷ୍ଟର୍ ବେକରଙ୍କ ପାଖେ ପାଖେ ମିସେସ୍ ବେକର୍, ଆମେଲିଆ, ଖପ୍ ଖୁପ୍ ହୋଇ ଚ୍ଳୁଥାନ୍ତି ; ପାଦ ଦୁଇଟି ଦ୍ରୁତ ଗତିରେ ଚ୍ଳି ମିଷ୍ଟର୍ ବେକରଙ୍କ ବିଷମ ପଦକ୍ଷେପ ସଙ୍ଗେ ତାଳ ପକାଇ ଚଳିବାକୁ ସେ ପାରୁପର୍ଯ୍ୟନ୍ତ ଉଦ୍ୟମ କରୁଥାନ୍ତି । ମିସେସ୍ ବେକର ଖର୍ବାକୃତି ସ୍ତ୍ରୀଲୋକ ; ଆଖି ଯୋଡ଼ିକ ଉଜ୍ଜ୍ୱଳ ; ବଣିପରି ପତଳା ହେଲେ କ'ଣ ହେବ, ଯଥେଷ୍ଟ ଦାନା ଖାଇବାକୁ ପାଉଥିବା ବଣି ପରି ସମର୍ଥ ଓ ସ୍ଫୁର୍ତ୍ତି ।

ମୋ ପୁଅ ଫ୍ରାଙ୍କଲେନ୍, ତା' ଭଉଣୀ ପାଖେ ପାଖେ ଯାଉଥାଏ ; କିନ୍ତୁ ଏ ଦୁହିଙ୍କୁ ଦେଖିଲେ ଜଣାଯାଉଥାଏ ସତେ ଯେପରି ସେ ଦୁହେଁ ପରସ୍ପରକୁ ଆଦୌ ଚିହ୍ନନ୍ତି ନାହିଁ । ମୋର ମନେ ହୁଏ, ଭଉଣୀ ଭାଇକୁ ଘୃଣା କରେ ଓ ଭାଇ ଭଉଣୀକୁ ଅବଜ୍ଞା କରେ । ଏ ତିକ୍ତତା ଜୀବନ ତମାମ ରହିବ ବୋଲି ମୋର ଆଶଂକା । ଅବଶ୍ୟ ଯଥାକାଳରେ, ଏ ଭାବକୁ ସ୍ନେହବ୍ୟଞ୍ଜକ ଭାଷାର କୁହେଳରେ ଘୋଡ଼ାଇ ରଖିବାକୁ ସେମାନେ ଶିଖିଯିବେ । ଥାଉ ଏ ଦୁଶ୍ଚିନ୍ତା । ଏହା ମୋର ଏକଚୁଟିଆ ସ୍ୱତ୍ୱ । ମୋର ସଖୀ, ମୋ ପତ୍ନୀଙ୍କର ଏସବୁ ଦୁଶ୍ଚିନ୍ତା ନାହିଁ । ସେ ଏଥର ତାଙ୍କୁ ଆପ୍ୟାୟିତ କରିବେ ତାଙ୍କ ମଧ୍ୟାହ୍ନ ଭୋଜନରେ—ଟାଣସିଝା ଡିମ୍ବ ସାଙ୍ଗକୁ ଚଟଣୀ, ଜେଲି-ମଟରମଞ୍ଜି-ଲହୁଣୀ-ପୂରିଦିଆ ସ୍ୟାଣ୍ଡୱିଇଚ୍, ଟିଣ ପିପାରେ ବନ୍ଦ ହୋଇ ଆସିଥିବାରୁ ଟିଣିଆ ଗନ୍ଧାଉଥିବା ଲାଲ ଲାଲ ଆପେଲ୍ । ଏହିପରି ଖୋଇପେଇ ମଣିଷ କରି ଶେଷରେ ସଂସାର-ସମୁଦ୍ରରେ ଏମାନଙ୍କୁ ମେଲିଦେବେ ବଂଶବୃଦ୍ଧି କରିବାକୁ ।

ଯାହା ବଚ୍ଛୁରୁଥିଲି ସେଇଆ । ମେରି ପିଲାଙ୍କୁ ମଧ୍ୟାହ୍ନ-ଭୋଜନ ଦେଇ ଦେଲେ । ଦୁହେଁ ଗୋଟିଏ ଗୋଟିଏ କାଗଜ ଠୋଙ୍ଗାରେ ଖାଦ୍ୟ ଭର୍ତ୍ତି କରି ଅଲଗା ଅଲଗା ରାସ୍ତା ଧରିଲେ, ନିଜର ନିଭୃତ ସ୍ୱତନ୍ତ୍ର ସଂସାରରେ ମଧ୍ୟାହ୍ନଭୋଜନ ସୁଖ ଭୋଗ କରିବାକୁ ।

ଆମେ ଦୁହେଁ ଏକୁଟିଆ ହେବାରୁ ପଚ୍ଚରିଲି, "ପ୍ରିୟତମେ, ଗିର୍ଜାର ବିଧିବିଧାନ ଓ ଉପାସନାରେ ମନ ଲାଗିଲା ଟି ?"

"ନିଶ୍ଚୟ, ମୋର ମନ ଲାଗେ ଓ ମୁଁ ସେଥିରେ ପୂର୍ଣ୍ଣ ବିଶ୍ୱାସ କରେ । କିନ୍ତୁ ମୋର ସନ୍ଦେହ, ସନ୍ଦେହ କାହିଁକି, ମୁଁ ଜାଣେ, ତୁମର ଏ ସବୁରେ ବିଶ୍ୱାସ ନାହିଁ । ତୁମେ ବେଳେ ବେଳେ ଧର୍ମକୁ ଯେଉଁ ରହସ୍ୟ କର, ସେଇଥିରୁ ଜାଣୁଛି ।"

"ହଉ, ହଉ, ଆସ ବସ, ଫୁଲ୍‌କିବାଲୀ !"

"ମୁଁ ପରା ଯାଇ ମଧ୍ୟାହ୍ନ ଭୋଜନ ସାମଗ୍ରୀ ଆଣିବି ।"

"କେଉଁଥିଆ ମଧ୍ୟାହ୍ନ ଭୋଜନ ।"

"ଯାହା କହୁଥିଲି ସେଇଆ । ସେଇ ରହସ୍ୟ ।"

"ମଧ୍ୟାହ୍ନ ଭୋଜନ କ'ଣ ଏତେ ପବିତ୍ର ଯେ ତା'କୁ ଗାଳି ଦେଲେ ବାଧୁଛି ? ମନ କ'ଣ ହେଉଛି, ଜାଣ ? ଆଉ ଟିକିଏ ଗରମ ପାଗ ହୋଇଥାନ୍ତା କି, ତୁମକୁ ଧରି ଯାଆନ୍ତି ଗୋଟାଏ ଡୁଙ୍ଗା-ଡଙ୍ଗାକୁ । ସେଇ-ଥିରେ ବସି ତରଙ୍ଗ-ବନ୍ଧ ପାର ହୋଇ ସମୁଦ୍ର ଭିତରକୁ ଯାଇ ପର୍‌ଗି ମାଛ ଧରନ୍ତେ ।"

"ବେକର୍‌ଙ୍କ ଘରକୁ ଯିବା ପରା ! ଆଚ୍ଛା, ଏଥାନ୍, ତୁମର ଗିର୍ଜାର ଉପାସନା ଓ ବିଧି ବିଧାନରେ ବିଶ୍ୱାସ ଅଛି କି ନାହିଁ କହ ତ ? ଗିର୍ଜାରେ ବିଭା ହୋଇ ଥାଇଁ, ଅଥଚ ତୁମେ ମୋତେ ଏତେ ପ୍ରକାର ବେଆଡ଼ା ନାମରେ ଡାକ କାହିଁକି ? ମୋ ଅସଲ ନାମ ତ ଥରେ ମାତ୍ର ତୁଣ୍ଡରେ ଧରିବାର ଶୁଣୁ ନାହିଁ ?"

"ଏକା ନାମ ବାରଂବାର ଧଇଲେ, ତୁମକୁ ଖରାପ ଲାଗିବ ବୋଲି ଏତେ ପ୍ରକାର କରି ଡାକେ । କିନ୍ତୁ ଜାଣ, ତୁମ ନାମଟା ମୋ ହୃଦୟ ଭିତରେ ଘଣ୍ଟା ପରି ସବୁବେଳେ ଟଣ୍ ଟଣ୍ କରୁଛି । ଆଉ ଯାହା ପଚ୍ଛରିଲ, ବିଶ୍ୱାସ କଥା । ଏ ପ୍ରଶ୍ନ କାହିଁକି ? ବନ୍ଧୁକରେ ଗୁଳି ଭର୍ତ୍ତି ହେଲା ପରି, ଖ୍ରୀଷ୍ଟ ଧର୍ମ ତତ୍ତ୍ୱରେ ଭର୍ତ୍ତି ହୋଇଥିବା ପ୍ରତ୍ୟେକ ଗମ୍ଭୀରାର୍ଥ ଶବ୍ଦକୁ କ'ଣ ମୁଁ ଗୋଟି ଗୋଟି କରି ବିଶ୍ଳେଷଣ କରୁଛି ? ସେପରି କରିବା ମୁଁ ନିଷ୍ପ୍ରୟୋଜନ ମନେ କରେ । ମେରି ! ଧର୍ମ-ବିଶ୍ୱାସ ପ୍ରତ୍ୟେକ ଲୋକର ମନରେ ଅଲଗା ଅଲଗା ରୂପ ଧାରଣ କରେ । ନିଜେ ଧର୍ମକୁ ଯେପରି ଦେଖି, ଅନ୍ୟ ଲୋକ ସେପରି ଦେଖେ ନାହିଁ ବୋଲି ତାକୁ ଅଧର୍ମୀ କହିବା ଠିକ୍ ହେବ ନାହିଁ । ଯଦି ମୋ ମନ ଓ ଆତ୍ମାରେ ଧର୍ମ ବୋଲି

କିଛି ବିଶ୍ୱାସ ନ ଥାନ୍ତା, ମୋ ମନ ଭିତର ଯନ୍ତ୍ର ଜାହାଜରେ ଖାଇବାକୁମିଳୁ-ଥିବା ଶିମ୍ବମଞ୍ଜି ପରି ଶୁଖା ଖଡ଼ଖଡ଼ ହୋଇଥାନ୍ତା, ତେବେ ବି ଉପାସ-ନାର ଏଇ ପଦ ଗୁଡ଼ିକର କି ପ୍ରତିକ୍ରିୟା ମୋ ମନରେ ହୁଅନ୍ତା, ଜାଣ ? —'ପ୍ରଭୁ ମୋର ରକ୍ଷକ ଓ ପାଳକ । ମୁଁ କୌଣସି କଥାକୁ ମନ ବଳାଇବି ନାହିଁ । ସେ ମୋତେ ନେଇ ସବୁଜ ଚରାଭୂଇଁରେ ପହଞ୍ଚାଇବେ ।" ସମସ୍ତ ଅବିଶ୍ୱାସ ସତ୍ତ୍ୱେ, ଏ ପଦାବଳୀ ଶୁଣି ପେଟ ଭିତର ଘାଣ୍ଟି ହୋଇ ଯା'ନ୍ତା, ଛାତିରେ ଅଦ୍ଭୁତ କଂପନ ଅନୁଭୂତ ହୁଅନ୍ତା, ଓ ମସ୍ତିଷ୍କରେ ନୂତନ ଆଲୋକ ଜଳି ଉଠନ୍ତା । ବିଧି-ବିଧାନରେ ବିଶ୍ୱାସ, ଅବିଶ୍ୱାସ ପ୍ରଶ୍ନ ଉଠାଉଛ, କାହିଁକି ?"

"ଏ କଥାର ଅଗମୂଳ ମୁଁ କିଛି ବୁଝୁନାହିଁ ।"

"ସୁନା ପିଲାଟି ମୋର ! ନ ବୁଝିଛ, ଠିକ୍ କରିଛ । ମୁଁ ବି କହିଲି ପରିନା, କିଛି ବୁଝି ନାହିଁ । ଏତିକି କହିଲେ ଯଥେଷ୍ଟ ହେବ । ମୁଁ ଯେତେ-ବେଳେ ପିଲା ଥିଲି ଓ ମୋର ହାଡ଼ ନରମ ଓ ନମନୀୟ ଥିଲା, ସେତେ-ବେଳେ ମୋତେ କ୍ରୁସ୍-ଆକାରର ଗୋଟିଏ ଏପିସ୍କୋପାଲ୍ ମତାନୁସାରୀ ବାକ୍ସରେ ପୂରାଇ ରଖା ହୋଇଥିଲା ; ତଦନୁସାରେ ମୋ'ର ଆକୃତି ଗଢ଼ି ଉଠିଲା । ପରେ ଯେତେବେଳେ ବାକ୍ସ ଭାଙ୍ଗି ମୁଁ ବାହାରିଲି, କୁକୁଡ଼ା ଛୁଆ ଡିମ୍ବ ଭାଙ୍ଗି ବାହାରିଲା ପରି, ସେତେବେଳକୁ ମୋ'ର ଆକୃତି ଯେ ସମାନ କ୍ରୁସର ଆକୃତି ଧରିଥିଲା ଏଥିରେ ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ । ଦେଖିଛ ତ, କୁକୁଡ଼ା ଗୁଡ଼ାକ ମୋଟା ମୋଟି ଡ଼ିମ୍ବାକୃତି ।"

"ଏଇ ଭଳି ସଂସାରବାହାର କଥା ଗୁଡ଼ାକ ତୁମେ ପିଲାଙ୍କୁ ମଧ୍ୟ କହୁଛ !"

"ଆଉ, ସେମାନେ କ'ଣ ମୋତେ ସହଜରେ ଛାଡ଼ୁଛନ୍ତି ? ହେଇଟି କାଲି ରାତିରେ ଏଲେନ୍ ପଚାରିଲା, ବାପା, ଆମର ଧନ ହେବ କେବେ ? ମୁଁ ଏ ବିଷୟରେ ଯାହା ଜାଣେ ସେ କଥା କିନ୍ତୁ ତା'କୁ କହିନାହିଁ । ମୁଁ କହିଥାନ୍ତି, 'ଅଳ୍ପ ଦିନରେ ଆମର ଧନ ହେବ, କିନ୍ତୁ ଦାରିଦ୍ର୍ୟରେ ଯେପରି ବ୍ୟତିବ୍ୟସ୍ତ ହେଉଛ, ଧନ ପାଇ ମଧ୍ୟ ସେହିପରି ବିବ୍ରତ ହେବ' । ଏହା ବାସ୍ତବ କଥା । ଦାରିଦ୍ର୍ୟରେ ଏଲେନ୍ ହିଂସୁକ ହୋଇଛି; ଧନ ହେଲେ ତା'ର ଦର୍ପ ହେବାର ଆଶଂକା ଅଛି । ଧନ ହେଲେ ମନର ବିକାର ତ ଦୂର ହେବ ନାହିଁ, ବିକାରର ଲକ୍ଷଣରେ ପରିବର୍ତ୍ତନ ହେବ ମାତ୍ର ।"

"ନିଜ ପିଲାଙ୍କ ବିଷୟରେ ତ ତୁମର ଏଇ ମତ; ଆଉ ମୁଁ ଯେ ପର, ମୋ ବିଷୟରେ ମତ କ'ଣ ?"

"ତୁମେ ? ତୁମେ ମୋର ଦେବଦତ୍ତ ଅନୁଗ୍ରହ; ମୋ'ର ପ୍ରିୟତମା, ମୋର କୁଜ୍ଝଟିକାମୟ ଜୀବନରେ ଆଲୋକରେଖା !"

"ତୁମେ ମାତାଲଙ୍କ ପରି କଥା କହୁଛ; ନିଶା ଖାଇଛ ବୋଧହୁଏ ।"

"ଖାଇଛି ତ ।"

"କଦାପି ନୁହେଁ, ଖାଇଥିଲେ ମୁଁ ବାସ୍ନାରୁ ବାରିପାରନ୍ତି ।"

"ଠିକ୍ ବାରିଛ ତ, ପ୍ରିୟତମେ !"

"ତମର ହୋଇଛି କ'ଣ ?"

"ଏଁ, ଜାଣି, ବୋଧହୁଏ କ'ଣ ହୋଇଛି । ଜାଣ ନାହିଁ ? ମୋର ହୋଇଛି ପରିବର୍ତ୍ତନ । ଗୋଟାଏ ବଡ଼, ଭୟାନକ ଝଡ଼ ମୋ ଭିତରେ ବହୁ ସବୁ ଓଲଟ ପାଲଟ କରିଦେଇଛି । ସେ ଝଡ଼ର ଅନ୍ତିମଭାଗରେ ଯେଉଁ ବାତ୍ୟାବିକ୍ଷୁବ୍ଧ ତରଙ୍ଗ ଚାଲୁଛି ମାତ୍ର ତୁମେ ଦେଖୁଛ ।"

"ଏଥାନ୍, ତୁମ ଯୋଗୁଁ ମୋ' ମନରେ ଘୋର ଉଦ୍‌ବେଗ ହେଉଛି । ବାସ୍ତବିକ ମୋ ମନ ଘାଣ୍ଟି ହୋଇ ଯାଉଛି । ତୁମେ କେଡ଼େ ଉଚ୍ଛୃଂଖଳ ଭାବେ କଥାବାର୍ତ୍ତା କରୁଛ, ସତେ !"

"ଆଚ୍ଛା ମୋର ଆଭୂଷଣ ସବୁ ତୁମେ ଦେଖିଛ ତ ?"

"ଓଃ, ତୁମେ ଯୁଦ୍ଧରେ ଯେଉଁ ମେଡାଲ୍ ସବୁ ପାଇଥିଲ, ସେଇ ନା ?"

"ହଁ, ସେ ସବୁ ମିଳିଥିଲି ଉଚ୍ଛୃଂଖଳତା ଯୋଗୁଁ, ଭ୍ରାନ୍ତି ଯୋଗୁଁ । ନୁହେଁ ? କାହାକୁ ମାରିବି, ଏ କଳ୍ପନା ମୋ ମନରୁ ଯେତେ ଦୂରରେ ଥିଲା, ଆଉ କାହାରି ସେପରି ନଥିବ । କିନ୍ତୁ ହେଲା କ'ଣ ? ଆଉ ଗୋଟାଏ ପ୍ରକାର ବାକ୍‌ସ ତିଆରି କରି ସେଥିରେ ମୋତେ ଖୁନ୍ଦି ଭର୍ତ୍ତିକରି ଦେଲେ । କହିଲେ କ'ଣ ନା, ଅବସ୍ଥାଚକ୍ରର ଯେ ମୁହୂର୍ତ୍ତ ଗୁହୁଛି ଯେ, ମୁଁ ମଣିଷ ମାରିବି; ମାରିଲି ।"

"ସେ ତ ଯୁଦ୍ଧ ବେଳ ! ପୁଣି, ଯାହା କଲ ତୁମ ଦେଶ ପାଇଁ କଲ !"

"ସେଇପରି ବେଳ ତ ସବୁବେଳେ ଗ୍ଲୁଲିଛି । ଏ ପର୍ଯ୍ୟନ୍ତ ମୁଁ ନିଜ ବେଳ କଥା ମୁଣ୍ଡକୁ ନ ନେଇ ଅନ୍ୟମାନଙ୍କ ବେଳ ଧରି ଗ୍ଲୁଲିଥିଲି ।"

ମୋ' ଝିଅଘଡ଼ ! ମାନିବ ତ, ଯୁଦ୍ଧରେ ମୁଁ ଭଲ ବନ୍ଧୁକଧାରୀ ଯୋଦ୍ଧା ହୋଇଥିଲି—ବିଚକ୍ଷଣ, କ୍ଷିପ୍ର ଓ ନିଷ୍ଠୁର ଥିଲି; ଯୁଦ୍ଧ ବେଳ ପାଇଁ ମୁଁ ଥିଲି ଜଣେ ସୁଚତୁର ଦକ୍ଷ ଲୋକ । ଏ ବେଳରେ, ସେହିପରି ଚତୁର,ଦକ୍ଷ ଓ ନିର୍ମମ ଲୋକ ନ ହୋଇ ପାରିବି କିଆଁ ?"

"କ'ଣ ଗୋଟାଏ ମୋତେ କହିବ ବୋଲି ବିଚାରୁଛ ବୋଧହୁଏ ।"

"ଦୁଃଖର ବିଷୟ, ଠିକ୍ ଅନୁମାନ କରିଛ । ତାହା ଶୁଣିବ ନାହିଁ ବୋଲି ମନ କରୁଥିଲ ପରି ଜଣା ପଡ଼ୁଛି । ବୋଧହୁଏ ମୋ ଅନୁମାନ ଠିକ୍, ନୁହେଁ ?"

"ମୁଁ ଯାଉଛି ଖାନା ସଜାଇବି ।"

"ପ୍ରାତରାଶ ରୂପରେ ଯେଉଁ ଉତ୍ତରାପବନର ମାଡ଼ ବସିଛି, ତା ଫଳରେ କ୍ଷୁଧା ଏକାବେଳକେ ଫେରାର୍ ।"

"ନାଇଁ ମ, ଯାହା ମନ ହେବ ଟିକିଏ ଚାଖିବ । ମିସେସ୍ ବେକର୍‌ଙ୍କ ଟୋପି ଦେଖିଲ ? ତା'ଙ୍କୁ ନିଶ୍ଚୟ ନ୍ୟୁୟର୍କ୍‌ରୁ ଆଣିଛନ୍ତି ।"

"ଆଚ୍ଛା, ତାଙ୍କ ବାଳର ତ ବଡ଼ ଅଭିନବ ପ୍ରସାଧନ କରିଛନ୍ତି ?"

"ତୁମ ଆଖି ପଡ଼ିଛି ତା' ହେଲେ ? ରଙ୍ଗ ଠିକ୍ ଷ୍ଟ୍ରବେରି ଫଳ ପରି ଲାଲ ।"

"ବିଧର୍ମୀମାନଙ୍କୁ ବାଟ ଦେଖାଇବା ଆଲୋକ ପରି ହୋଇ ଇଜ୍‌ରାଇଲ୍ ଲୋକଙ୍କ ଗୌରବର କାରଣ ହେବ ।"

"ଆଚ୍ଛା, ଏ ଋତୁରେ ମାର୍ଗି ମଣ୍ଟାକ୍ ଯିବାର କାରଣ କ'ଣ ?"

"ପ୍ରଭାତର ଦୃଶ୍ୟ ଦେଖିବାରେ ତା'ର ଆନନ୍ଦ ।"

"କିନ୍ତୁ ସେ ଯେ ପ୍ରଭାତରେ ଶେଯ ଛାଡ଼ିବାବାଲି ନୁହେଁ । ଏଥି-ପାଇଁ ମୁଁ ତା'କୁ ଟାପର କରେ । ପୁଣି, ମେରୁଲେ ଅଣ୍ଡା-ମିଠେଇ ଉପହାର ଦେବା କେଡ଼େ ବିଚିତ୍ର କଥା, କହିବ ଟି ?"

"ଏ ଦୁଇଟି ଯାକ ଘଟଣା କ'ଣ ତେବେ ପରସ୍ପର-ସଂଯୁକ୍ତ ବୋଲି ମନେ କରୁଛ—ମାର୍ଗ ଭୋରରେ ଶଯ୍ୟା ତ୍ୟାଗ କରିବା ଓ ମ୍ୟାରୁଲେ ମିଠେଇ ଉପହାର ଦେବା ?"

"ପୁଣି ତ କାବେଡ଼ା ପରି ହେଲଣି ।"

"ନା, ଆଦୌ ନୁହେଁ । ଖୁବ୍ ଗମ୍ଭୀର ଭାବରେ କହୁଛି । ଆଚ୍ଛା,

ବିଶ୍ୱାସରେ ଗୋଟିଏ ଗୁପ୍ତ କଥା କହିବ, କାହାକୁ କହିବ ନାହିଁ ତ ?"

"ଗୋଟାଏ କ'ଣ ଛାପିବା କରିବ ।"

"ନା ।"

"ହଉ, କଥା ଦେଉଛି, କାହାକୁ କହିବି ନାହିଁ ।"

"ମୁଁ ବିଶ୍ବରୁଛି, ମ୍ୟାରୁଲେ ନିକଟରେ ଇଟାଲି ଭ୍ରମଣ କରିବାକୁ ଯିବେ ।"

"ତମେ କେମିତି ଜାଣିଲ ? ସେ କ'ଣ ତୁମକୁ କହିଲେ ?"

"ଠିକ୍ କହି ନାହାନ୍ତି । ବିଭିନ୍ନ ଘଟଣାକୁ ଏକାଠି କରି—ବିଭିନ୍ନ କଥାକୁ ଯୋଡ଼ାଯୋଡ଼ି କରି ମୁଁ ଏହା ଆବିଷ୍କାର କରିଛି ।"

"ସେପରି ହେଲେ ତ, ଦୋକାନରେ ତମେ ଏକୁଟିଆ ହୋଇଯିବ ! ତୁମକୁ ସାହାଯ୍ୟ କରିବାକୁ ଜଣକୁ କାହାକୁ ରଖିବାକୁ ପଡ଼ିବ ତା'ହେଲେ ।"

"ମୁଁ ଏକୁଟିଆ ବେଶ୍ ପାରିବି ।"

"ଆଜକାଲି ତ ସବୁ ତୁମେ ଏକୁଟିଆ କରୁଛ କହିଲେ ଚଳେ । କିନ୍ତୁ ଆଉ ଜଣେ ସାଙ୍ଗକୁ ରଖିବା ଦରକାର ।"

"ହଁା, ଖବରଦାର—ମୁଁ ନିଶ୍ଚିତ କରି କିଛି ଜାଣେ ନାହିଁ ; ପୁଣି, ଯାହା କହିଲି ଗୁପ୍ତ ରଖିବ ।"

"ଯାଃ, ଜବାବ କରି ଭାଙ୍ଗିବା ଲୋକ ମୁଁ ନୁହେଁ ।"

"କିନ୍ତୁ ଦେଖେଇ ଶିଖେଇ ଯଦି କ'ଣ କହିଦେବ ?"

"ଏଥାନ୍ ! ମୁଁ କେବେ ସେପରି କରିବି ନାହିଁ, ତୁମେ ଜାଣ ।"

"ବେଶ୍ ଜାଣେ, ତୁମେ କପରି । ତୁମେ ଗୋଟିଏ କୌତୁକିଆ ଶଶାଙ୍କୁଆ—ମୁଣ୍ଡରେ ପେନ୍ଥାଏ ଫୁଲ ।"

"ହଉ, ଭୋଷେଇଘରକୁ ଯାଅ, ଯାହା ମନ ହେବ ଖାଇବ । ମୁଁ ଯାଉଛି ଟିକଏ ଧୁଆଧୋଇ ହେବି ।"

ମେଗ୍ ଯିବା ପରେ ମୁଁ ଚଉକିରେ ହାତଗୋଡ଼ ଲମ୍ବେଇ ଦେଇ ପଡ଼ିଲି; ମୋ କାନରେ ଚୁପ୍ ଚୁପ୍ କରି କିଏ କହିଲା ପରି ଜଣାଗଲା, "ପ୍ରଭୁ ! ତୁମର ବାଣୀ ସତ୍ୟ ହେଉ । ତୁମ ଦାସକୁ ଶାନ୍ତିରେ ଯିବାକୁ ଦିଅ ।" ତାଜୁବ୍ କଥା, ସାଙ୍ଗେ ସାଙ୍ଗେ ମୋତେ ନିଦ ଘୋଟିଗଲା ।

ସେଇ ବୈଠକଖାନାରେ ଗୋଟାଏ ଉଚ୍ଚ ପର୍ବତ ଶିଖରରୁ ମୁଁ ଅନ୍ଧକାରମୟ ଗହ୍ୱରକୁ ଖସି ପଡ଼ଲି । ଏଭଳି ଅସ୍ୱାଭାବିକ ଭାବେ ନିଦ ମୋତେ କେବେ ହୁଏ ନାହିଁ । ତାଙ୍କ ଚେଲର୍ ବିଷୟ ଜାଗ୍ରତ ଅବସ୍ଥାରେ ଚିନ୍ତା କରୁଥିବାରୁ, ନିଦ୍ରିତ ଅବସ୍ଥାରେ ତାଙ୍କୁଇ ସ୍ୱପ୍ନରେ ଦେଖିଲି । ଦେଖିଲି, ଆମେ ଓ୍ୱେଷ୍ଟ ନୁହଁ କି ବଡ଼ ନୁହଁ —ବଢ଼ିଲା ପିଲା । ଆମେ ଯାଇଛୁ ସେଇ ସମତଳ, ଶୁଷ୍କ ହ୍ରଦଶଯ୍ୟାକୁ—ଯେଉଁଠି ତାଙ୍କ ପୁରୁଣାଘରର ନିଅଁ ଅଛି ଓ ତା'ର ଭିତରେ ମାଟିଭିତରେ ଗୁମ୍ଫଟା ଅଛି । ଗ୍ରୀଷ୍ମ ଋତୁର ପ୍ରଥମାବସ୍ଥା ନିଶ୍ଚୟ, କାରଣ, ଦେଖିଲି, ଗଛର ପତ୍ର ଗୁଡ଼ାକ ଖୁବ୍ ପୁଷ୍ଟ ଓ ତଳେ ଘାସ ଏପରି ବଢ଼ିଛି ଯେ, ଆପଣା ଭାରରେ ଆପେ ଲଇଁ ପଡ଼ୁଛି । ଏଇଭଳିଆ ଦିନରେ ମଣିଷକୁ ସୁସ୍ଥ, ସବଳ ଓ ମଜ୍ଜୁଆଳ ହେଲା ପରି ଲାଗେ । ଡାଇନ ଗୋଟିଏ କୁନ୍ଦପର୍ ଗଛ ମୂଳକୁ ଚାଲିଗଲି । ଗଛଟି ଗୋଟିଏ ଖୁଣ୍ଟି ପରି, ସରୁ ଓ ସଳଖ ଭାବେ ଉଠିଯାଇଛି । ସେଠାରୁ ତା' ସ୍ୱର ଶୁଣିଲି—ଗମ୍ଭୀର ଓ ବିକୃତ, ଠିକ୍ ପାଣି ଭିତରେ ଥାଇ କଥା କହିଲେ ଯେପରି ଶୁଭେ ସେଇପରି । ମୁଁ ତା' ପାଖକୁ ଧାଇଁଗଲି; ଦେଖିଲି, ସେ ତରଳି ଯାଉଛି, ତା ମାଂସ ପାଣି ହୋଇ ତା' କଙ୍କାଳରୁ ତଳକୁ ବୋହି ପଡ଼ୁଛି । ଦୁଇ ହାତରେ ପୋଷ ପୋଷ କରି ମୁଁ ତା' ମାଉଁସକୁ ତା କଙ୍କାଳରେ, ଓପରକୁ ଓପରକୁ ଲେପିବାକୁ ଚେଷ୍ଟା କଲି—ଓଦା ସିମେଣ୍ଟ ତଳକୁ ବୋହି ଗଲେ, ଯେମିତି ଫର୍ମାରେ ଓପରକୁ ଟେକି ଲେପନ୍ତି । କିନ୍ତୁ କିଛି ଫଳ ହେଲା ନାହିଁ । ମୋ ଆଙ୍ଗୁଠି ସନ୍ଧିରେ ତା' ଶରୀରର ନିର୍ଯ୍ୟାସ ବୋହି ଯାଉଥାଏ । ଲୋକେ କହନ୍ତି ସ୍ୱପ୍ନଟାଯାକ ମୁହୂର୍ତ୍ତକ ଭିତରେ ଦେଖା ହୋଇଯାଏ । କିନ୍ତୁ ଏ ସ୍ୱପ୍ନ ଅବିରତ ଲାଗି ରହିଲା ; ମୁଁ ଯେତେ ରୋକୁଥାଏ, ସେ ସେତିକି ବୋହିଯାଉଥାଏ ।

ମୋତେ ମେରି ଉଠାଇଲା ବେଳକୁ ମୁଁ ଶ୍ରାନ୍ତିରେ ଧଇଁ ସଇଁ ହେଉଥାଏ ।

"ତୁମକୁ ବସନ୍ତକାଳୀନ ଜର ଆସିଲାଣି", ସେ କହିଲେ, "ପ୍ରଥମ ଲକ୍ଷଣ ଏହି । ମୋର ଯେତେବେଳେ ବଢ଼ିବା ବୟସ, ସେତେବେଳେ ମୁଁ ଏତେ ଶୋଇଲି ଯେ ମୋ ମା' ଭୟ କରି ଡକ୍ଟର୍ ରାଡ଼ଙ୍କୁ ଡାକିଲେ ।

ମା ବିଗୁଡ଼ିଲେ ମୋତେ ଘୁମାରୋଗ ଧରିଛି । କିନ୍ତୁ ଡାକ୍ତର କହିଲେ ବସନ୍ତ କାଳ ପାଇଁ ମୁଁ ବଢ଼ିବାରେ ଲାଗିଥାଏ ।”

“ଧନ ବେକ୍ଲୁଠାରେ ମୁଁ ଗୋଟାଏ ଦୁଃସ୍ୱପ୍ନ ଦେଖିଲି । ମୋ ଶତ୍ରୁ ଏଭଳି ସ୍ୱପ୍ନ ନ ଦେଖୁ ବୋଲି ମୋର କାମନା ।”

“ତୁମ ମନ ଅତିଶୟ ବିଚଳିତ ହୋଇ ଯିବାର ଫଳ ପ୍ରିୟେ । ଯାଅ, ଉପରକୁ ଯାଇ ମୁହଁ ଧୋଇ ବାଳ କୁଣ୍ଡେଇ ପକାଅ । ଅତି ଶ୍ରାନ୍ତ କ୍ଲାନ୍ତ ଦିଶୁଛ, ଧନ ! ଦେହ ଭଲ ଲାଗୁଛି, ତ ? ତାଙ୍କ ଘରକୁ ଯିବା ବେଳ ହୋଇଗଲାଣି । ତୁମେ ପୂରା ଦୁଇଘଣ୍ଟା ଶୋଇଗଲ । ନିଦ ବାକିଆ ଥିଲା ନିଶ୍ଚୟ । ବେକର୍‌ଙ୍କ ମନରେ କ’ଣ ଅଛି ଜାଣି ପାରନ୍ତ ହେଲେ !”

“ଜାଣିବ ପ୍ରିୟେ ! ଅଚିରେ ଜାଣି ପାରିବ । ହଁ, ପ୍ରତିଜ୍ଞା କର ଯେ ତାଙ୍କର ପ୍ରତି କଥା ପଦକ ବସି ଶୁଣିବ ।”

“କିନ୍ତୁ ସେ ତୁମ ସଙ୍ଗେ ଏକାନ୍ତରେ କଥାବାର୍ତ୍ତା ହେବାକୁ ଚାହିଁ ପାରନ୍ତି ! ବ୍ୟବସାୟୀ ଲୋକ ମାଇପିଙ୍କ ଆଗରେ ବେପାର କଥା ପକାଇବାକୁ ଚାହାନ୍ତି ନାହିଁ ।”

“ନାଃ, ସେ କଥା କଲେ ପଟିବ ନାହିଁ । ଆମ କଥାବାର୍ତ୍ତାରେ ତୁମେ ରହିବା ଦରକାର ।”

“ତୁମେ ତ ଜାଣ, ମୋତେ ବ୍ୟବସାୟ ବିଷୟରେ କିଛି ଜଣା ନାହିଁ ।”

“ଜାଣେ । କିନ୍ତୁ ସେ ଯେ ତୁମର ଟଙ୍କା ବିଷୟରେ ଇ କଥାବାର୍ତ୍ତା କରି ବସିବେ ।”

ବେକର୍‌ମାନଙ୍କ ପରି ଲୋକଙ୍କୁ, ତୁମେ ତୁମ ମା’ ପେଟରୁ ବାହାରିଲା ବେଳୁ ଯଦି ନ ଚିହ୍ନିଛ, ତେବେ ଜୀବନରେ ଆଉ ଚିହ୍ନି ପାରିବ ନାହିଁ । ଚିହ୍ନା ପରିଚୟରେ, ଏପରି କି ତାଙ୍କ ସଙ୍ଗେ ବନ୍ଧୁତା କରି ମଧ୍ୟ ତାଙ୍କର ଅନ୍ତ ପାଇବ ନାହିଁ । ମୁଁ ବେକର୍ ବଂଶକୁ ଜାଣେ, କାରଣ, ରକ୍ତ, ମୂଳ ଜନ୍ମସ୍ଥାନ, ବେପାର ଓ ଅର୍ଜିତ ବିଭବ—ସବୁଥିରେ ହ’ଲ ବଂଶ ଓ ବେକର୍ ବଂଶ ଏକ ସମାନ । ଏହି ସମାନତା ଗୋଟିଏ ଜୀବକୋଷ ପରି ଆମ ଦୁଇ ପରିବାରର ସ୍ତର ପଟେ ଗଢ଼ି ଉଠିଛି । ଆମ ସ୍ତରପଟେ, ଗୋଟାଏ ପାଚେରି ଓ ଗଡ଼ଖାଇ ପରି ଏହା ଏପରି ରହିଛି ଯେ ବାହାର ଲୋକେ

ଭିତରେ ପଶି ଆମକୁ ବନ୍ଦିବାର ଉପାୟ ନାହିଁ । ମୋ ବାପା ଆମ ପୈତୃକ ସଂପତ୍ତି ହରାଇଲା ପରେ ବି ମୋତେ ବେକର୍ ବଂଶ ପୂରା ଆଡ଼େଇ ଦେଇ ନଥିଲେ । ଅଙ୍କ ବି ହ'ଲା ହୋଇଥିବାରୁ, ବେକର୍ ପରିବାରରେ ମୋର ପ୍ରବେଶ ଅଛି । ବୋଧହୁଏ, ମୋ ଜୀବନ ତମାମ ଏପରି ଚାଲିବ ; କାରଣ, ସେମାନେ ମୋତେ ତାଙ୍କ ସ୍ୱଜନ ବୋଲି ମନେ କରନ୍ତି । ଯେତେ-ହେଲେ ବି, ମୁଁ ତାଙ୍କର ଦରିଦ୍ରବନ୍ଧୁ । ଭଦ୍ର ଲୋକ ନିର୍ଧନ ହେଲେ, ଆସ୍ତେ ଆସ୍ତେ ଭଦ୍ରଲୋକ ହରାନ୍ତି । ଧନ ନ ହେଲେ, ମୋ ପୁଅ ଫ୍ରାଲେନ୍ ବେକର୍‌ମାନଙ୍କ ସଙ୍ଗେ ସଂପର୍କ ରଖିପାରିବ ନାହିଁ;ତା'ପୁଅ ତ ଏକାବେଳକେ ଅଣସଜାତି ପରି ବାହାରେ ରହିପିବ । ବଂଶ ନାମ ବା ପିତୃପୁରୁଷଙ୍କ ସ୍ମୃତି ସେତେବେଳେ ଆଉ କାମ ଦେବନାହିଁ । ଧନ ହରାଇ ଆମେ ଭୂମିହୀନ ପଶୁପାଳକ, ସେନାହୀନ ସେନାପତି, ପଦାତିକ ଅଶ୍ୱାରୋହୀ ହୋଇ ଯାଇଛୁ । ଆମେ ଛିଡ଼ି ରହିବାର ଉପାୟ ନାହିଁ । ବୋଧହୁଏ, ସେହି କାରଣରୁ, ସଂପ୍ରତି ମୋ ମନୋବୃତ୍ତିରେ ପରିବର୍ତ୍ତନର ସୂତ୍ରପାତ ହୋଇଛି । ଧନ ପାଇଁ ଧନ, ଏହା ମୁଁ କେବେଁ ଚାହିଁ ନାହିଁ, କି ଆଜି ବି ଚାହେଁ ନାହିଁ । କିନ୍ତୁ ମୁଁ ଯେଉଁ ଗୋଷ୍ଠୀରେ ରହି ଆସିଛି,ଯେଉଁ ଗୋଷ୍ଠୀରେ ରହିବାରେ ମୁଁ ଅଭ୍ୟସ୍ତ ଓ ଯେଉଁ ଗୋଷ୍ଠୀରେ ମୁଁ ସୁଖଶାନ୍ତି ଉପଭୋଗ କରିଛି, ସେ ଗୋଷ୍ଠୀରେ ରହିବାକୁ ମୋର ଯେ ଧନ ଦରକାର, ମୋ ମନ ଗହନର ତଳେ ନିଭୃତ ଅନ୍ଧକାରମୟ ପ୍ରକୋଷ୍ଠରେ, ଏ ସବୁ ବିଷୟର ବିଚାର ହୋଇ ସିଦ୍ଧାନ୍ତ ଅବଶ୍ୟ ହୋଇ ସାରିଛି ବୋଲି ମୋର ବିଶ୍ୱାସ । ଏହି ସିଦ୍ଧାନ୍ତ ତେଣୁ ମୋ ମନରୁ କଳ୍ପନା ରୂପରେ ପ୍ରକାଶ ନପାଇ, ବର୍ତ୍ତମାନ ନିଷ୍ପତ୍ତି ରୂପେ ବାହାରୁଛି ।

ମିଷ୍ଟର ବେକର୍ ମୋତେ ଦେଖିବାମାତ୍ରେ କହିଲେ, "ସୁ-ଅପରାହ୍ଣ । ତୁମେ ଆସି ପାରିଲ ଦେଖି, ମୁଁ ବିଶେଷ ଆନନ୍ଦିତ । ମେଘ ! ତୁମେ ଆମକୁ ଏକାବେଳକେ ଛାଡ଼ିଗ କରି ଦେଲଣି । ଆଜି ଦିନଟା କେଡ଼େ ସୁନ୍ଦର ସତେ ! ଗିର୍ଜାର ଉପାସନା ସୁଖ ଲାଗିଛି ନିଶ୍ଚୟ । ଆଜିର ଧର୍ମଯାଜକ, ଧର୍ମଯାଜକଙ୍କ ମାପକାଠିରେ, ବେଶ୍ ସୁନ୍ଦର ଲୋକ ।"

ସେ ପୁଣି କହି ଲାଗିଲେ, "ତୁମମାନଙ୍କ ସଙ୍ଗେ ଆମର ଯେତେ ଦେଖାସାକ୍ଷାତ୍ ହେବାର କଥା, ଏବେ ସେତେ ହୋଇପାରୁ ନାହିଁ ।

ତୁମ ଜେଜେବାପା, ହେଉ ଏଇ ଚଉକରେ ବସି, 'ମେଇନ୍' ଜାହାଜକୁ ବଦମାସ୍ ପ୍ରେମୀପୁମାନେ ବୁଡ଼ାଇ ଦେଲେ ବୋଲି ଖବର ଦେବାର ମୋର ବେଶ୍ ମନେଅଛି, ଏଥାନ୍ ! ଏହା କହୁ କହୁ ତାଙ୍କ ହାତରୁ ଟି' ଢାଳ ହୋଇଗଲା; ଅବଶ୍ୟ ତାହା ଠିକ୍ ଟି' ନୁହେଁ । ବୃଦ୍ଧ କପ୍ତାନ୍ ହ'ଲି ମଦ୍ୟ-କପ୍‌ର ଧଡ଼ରେ ଟିକଏ ଟି' ଢାଳୁଥିଲେ ମାତ୍ର । ସେ ଭାରି ବଡ଼ ମେଜାଜୀ ଲୋକ ; କେହି କେହି କହନ୍ତି ସବୁବେଳେ କଳି କରିବାକୁ ବାହାରି ପଡ଼ୁଥିଲେ ।"

ମୁଁ ଦେଖିଲି, ମିଷ୍ଟର୍ ବେକର୍‌ଙ୍କ ଏଭଳି ଆନ୍ତରିକତା ଦେଖି, ମେରୀ ପ୍ରଥମେ ଚହଲି ଯାଇଥିଲେ । କିନ୍ତୁ ପରେ ନିଜକୁ ସଂଯତ କରି ପ୍ରୀତ ହେଲା ପରି ହସିଲେ । ଅବଶ୍ୟ ସେ ଜାଣି ନଥିଲେ ଯେ, ମୁଁ ତାଙ୍କ ପରୋକ୍ଷରେ, ତାଙ୍କୁ ମିଷ୍ଟର୍ ବେକର୍‌ଙ୍କ ଆଗରେ ଜଣେ ବହୁ ସଂପତ୍ତିର ଉତ୍ତରାଧିକାରିଣୀ ବୋଲି ଚିହ୍ନଣ କରିଛି । କାରବାରରେ ଧନ ଯେପରି ବାନ୍ଧନୀୟ, ଧନ ଥିବାର ପରିଆସ୍ତି ମଧ୍ୟ ସେହିପରି ।

ମିସେସ୍ ବେକର, ବୋଧହୁଏ କୌଣସି ସ୍ନାୟୁବିକ ବିକାର ଯୋଗୁଁ, ସବୁବେଳେ ମୁଣ୍ଡ ହଲଚଲ କରୁଥାନ୍ତି । ମ୍ୟାଗ୍ନୋଲିଆ ଫୁଲର ପାଖୁଡ଼ା ପରି ସରୁ ଓ ସୂକ୍ଷ୍ମ କପ୍‌ମାନଙ୍କରେ ସେ ଟି' ଢାଳୁଥାନ୍ତି । ମୁଁ ଲକ୍ଷ୍ୟ କଲି, ତାଙ୍କ ଶରୀରର ଏକମାତ୍ର ଟି' ଢାଳିବା ଅଙ୍ଗଟି ମାତ୍ର ନିଷ୍କମ୍ପ ଅବସ୍ଥାରେ ଥାଏ ।

ମିଷ୍ଟର୍ ବେକର୍ ଚିନ୍ତିତ ଥିଲା ପରି ଟି' କପ୍‌ରେ ଚାମଚ ବୁଲାଉ ବୁଲାଉ କହିଲେ, "ମୁଁ ଟି' ଖାଇବାକୁ ସୁଖ ପାଏ, ନା ଟି' ପାର୍ଟିର ଲୌକିକତାକୁ ସୁଖ ପାଏ, କେଜାଣି ? ପ୍ରତ୍ୟେକ ରକମ ଲୌକିକତାର ଆଡ଼ମ୍ବରରେ ମୋର ଶ୍ରଦ୍ଧା - ସେ ଲୌକିକତା ନିରର୍ଥକ ହେଲେ ବି ।"

ମୁଁ କହିଲି, "ମୋର ବିଶ୍ୱାସ, ମୁଁ ଆପଣଙ୍କ ମନର ଭାବ ବୁଝି ପାରୁଛି । ମୋର ବି ସେଇ ଅବସ୍ଥା । ଆଜି ଗିର୍ଜାର ଯେଉଁ ବିଧି-ବିଧାନ, ସେ ମୋତେ ବେଶ୍ ସୁଖ ଲାଗିଲା ; କାରଣ, ସେଥିରେ ଗତାନୁଗତିକ ବିଧିବିଧାନ ବ୍ୟତୀତ ନୂଆକଥା କିଛି ନଥିଲା । ଯାହା ବକ୍ତୃତାରେ କୁହାଗଲା, ତା'ର ପ୍ରତିଶବ୍ଦ କୁହାଯିବା ପୂର୍ବରୁ ମୁଁ ଜାଣିଥିଲି ।"

ମିଷ୍ଟର୍ ବେକର୍ ଆରମ୍ଭ କଲେ, "ଏଥାନ୍, ଯୁଦ୍ଧ ଭିତରେ— ଶୁଣ ଗୋ ମହିଳା ବୁଢ଼ୀ, ଏପରି କଥା ଆଉ କେବେ ଶୁଣିଛ ଯଦି କହିବ—ଯୁଦ୍ଧ ଭିତରେ, ମୁଁ ଯୁଦ୍ଧ ବିଭାଗ ସେକ୍ରେଟାରୀଙ୍କର ପରାମର୍ଶଦାତା ଥିଲି । ଓ୍ୱାସିଂଟନରେ ବହୁତ ସମୟ ରହିବାକୁ ପଡ଼ୁଥିଲା ।"

ମିସେସ୍ ବେକର୍ କହିଲେ, "ତୁମେ ଓ୍ୱାସିଂଟନରେ ରହିବା ମୋତେ ସୁଖ ଲାଗୁ ନଥାଏ ।"

"ଛାଡ଼ ସେ କଥା । ଥରେ ସାମରିକ ଅଫିସରମାନଙ୍କର ଗୋଟାଏ ଟୀ' ପାର୍ଟି ହେଲା—ଭାରି ଗହଳ—ପ୍ରାୟ ପାଞ୍ଚଶହ ନିମନ୍ତ୍ରିତ ହୋଇ-ଥିଲେ । ସବୁଠାରୁ ବଡ଼ ପାହିଆର ମହିଳା ଯେ, ସେ ପଞ୍ଚତାରକା-ଭୂଷିତ ଜଣେ ସେନାପତିଙ୍କ ସ୍ତ୍ରୀ ; ତାଙ୍କ ତଳକୁ ଥିଲେ ଜଣେ ଲେଫ୍‌ଟେନାଣ୍ଟ ଜେନେରାଲ୍‌ଙ୍କ ସ୍ତ୍ରୀ । ନିମନ୍ତ୍ରଣ-କାରିଣୀ ଥିଲେ ସେକ୍ରେଟାରୀଙ୍କ ସ୍ତ୍ରୀ । ସେ ପଞ୍ଚତାରକ-ପତ୍ନୀଙ୍କୁ କହିଲେ, ପ୍ରଥମେ ଟୀ' ପରଷିବାକୁ ଓ ତିନିତାରକଙ୍କ ସ୍ତ୍ରୀଙ୍କୁ କହିଲେ କଫି ଲଗାଇବାକୁ । ମିସେସ୍ ପଞ୍ଚ-ତାରକ ମୁହଁ ମୋଡ଼ି ରହିଲେ । ସେ ଯାହା କାରଣ ଦେଲେ, ତାଙ୍କର ଭାଷାରେ କହୁଛି, 'ସମସ୍ତେ ଜାଣନ୍ତି ଟୀ'ଠାରୁ କଫିର ମର୍ଯ୍ୟାଦା ବେଶି ।' ଆଚ୍ଛା, ଏଭଳି କଥା କେବେ ଶୁଣିଛ ?" ନିଜ କଥାରେ ନିଜେ ହସି ହସି ମିଷ୍ଟର୍ ବେକର୍ କହିଲେ, "ଶେଷରେ ଦେଖାଗଲା, ଟୀ ଓ କଫି ଉଭୟଙ୍କଠାରୁ ବେଶି ମର୍ଯ୍ୟାଦାବନ୍ତ ହେଲା ହୁଇସ୍କି ।"

ମିସେସ୍ ବେକର୍ କହିଲେ, "ବଡ଼ ତରତରିଆ ଜାଗାଟେ ସେଇ ଓ୍ୱାସିଂଟନ୍ । ସେଠାରେ କିଛି ଦିନ ରହି, ସେ ସ୍ଥାନର ଅଭ୍ୟାସ ଓ ଚାଲିଚଳଣି ଜାଣିବେ କ'ଣ ନା, ମଣିଷଗୁଡ଼ାକ ଆସି ପହଞ୍ଚୁ ପହଞ୍ଚୁ ଆଉ କୁଆଡ଼େ ଚୁ'ମାରି ଦିଅନ୍ତି ।"

ମେଷ୍ଟ୍ରୀ ତାଙ୍କ ଗପ କହିଲେ—ବୋଷ୍ଟନ୍ ସହରରେ ତାଙ୍କ ଆଇରଲ୍ୟାଣ୍ଡବାସୀଙ୍କ ଟୀ' ଭୋଜ କଥା । ମେଜ୍ ଚୁଲି ଉପରେ ଗୋଟାଏ ଗୋଲକାର ଟବ୍ ବସିଥାଏ; ଟୀ' ପତ୍ର ପଡ଼ି ସେଥିରେ ପାଣି ଫୁଟୁଥାଏ; ଟିଣ ଡବ୍ବିରେ ଡବ୍ବି ଡବ୍ବି କରି ନେଇ ଟୀ' ଦେଉଥାନ୍ତି । ଫୁଟନ୍ତା ପାଣିରେ ଟୀ' ପକାଇ ଉତାରିବା ପରିବର୍ତ୍ତେ, ସେମାନେ ଲାଗିପଡ଼ି ପତ୍ରକୁ ଫୁଟାଉ-

ଥାନ୍ତି । ଚ୍ଚ' ଏତେ କଡ଼ା ହେଉଥାଏ ଯେ ବାଣ୍ଟିସ୍‌କର ଟେବୁଲ୍ ଉପରେ ସେଥିରୁ ଟିକଏ ପଡ଼ିଲେ ବାର୍ଣ୍ଣିସ୍ ଉଠିଯାନ୍ତା ।"

ତାତ୍ତ୍ୱିକ ଆଲୋଚନା ବା ଗୁରୁତର କାର୍ଯ୍ୟ ଆରମ୍ଭ ହେବା ପୂର୍ବରୁ ପ୍ରାରମ୍ଭିକ ଭାବେ ମାମୁଲି କଥାବାର୍ତ୍ତା ଚାଲିବାର କଥା; ପଛକୁ ବେଶି ଗୁରୁତର କଥାବାର୍ତ୍ତା ଥିଲେ, ଏହି ପ୍ରାରମ୍ଭିକାଟା ଲମ୍ବାହୁଏ ଓ ମନ-ଫୁଲଣିଆ ଗୀତ ବି ଚାଲେ । ଉପସ୍ଥିତ ପ୍ରତ୍ୟେକ ବ୍ୟକ୍ତି ପ୍ରାରମ୍ଭିକ ଆମୋଦପ୍ରମୋଦକୁ ମସ୍‌ଗୁଲ୍ କରିବାକୁ କିଛି କିଛି ରଙ୍ଗିନ୍ ଉପାଦାନ ଯୋଗାନ୍ତି । ମେଘ ଓ ମିସେସ୍ ବେକର୍ ପରବର୍ତ୍ତୀ ଗୁରୁତର ବ୍ୟାପାରରେ ଅଂଶ ଗ୍ରହଣ ନକରିବାର ଥିଲେ, ସେମାନେ ଆପଣା ଆପଣାଭିତରେ ନିଷ୍ଟୟ ଅନ୍ୟ କଥା ପକାଇ ସାରନ୍ତେଣି । ମିଷ୍ଟର୍ ବେକର୍ ଆମ କଥାବାର୍ତ୍ତାର ପ୍ରାରମ୍ଭିକ ଉତ୍ସବ ଯଥାବିଧି ଆରମ୍ଭ କରି ସାରିଛନ୍ତି, ମୋ' ମେଘ ବି ସେଥିରେ ଅଂଶ ନେଇ ସାରିଲେଣି । ତାଙ୍କ କଥାକୁ ଶ୍ରୋତାମାନେ ମନ ଦେଇ ଶୁଣିବାରେ ସେ ଆମୋଦିତ ଓ ଉଚ୍ଛ୍ୱସିତ ହୋଇଥାନ୍ତି । ବାକି ଥାଉଁ, ମୁଁ ଓ ମିସେସ୍ ବେକର୍ । ମୁଁ ମନେ କରୁଥାଏ, ଶିଷ୍ଟାଚାର ଖାତିର୍‌ରେ ମୁଁ ରହିବି ସବା ଶେଷକୁ ।

ମିସେସ୍ ବେକର୍ ତାଙ୍କ କଥା ଆରମ୍ଭ କଲେ; ପୂର୍ବବର୍ତ୍ତୀ ଦୁଇଜଣଙ୍କ ପରି ତାଙ୍କ କଥାର ବିଷୟ ବସ୍ତୁ ଚା-କେଟ୍‌ଲିରୁ ବାହାରିଲା । "ମୋର ମନେଅଛି, ସେ ଦିନର କଥା, ଯେତେବେଳେ ଶହେ ପ୍ରକାରରେ ଚା ତିଆରି ହେଉଥିଲା । ଯାହାର ଯେଉଁ ପତ୍ର,ଲଟି ମନକୁ ଆସିଲା, ସେ ତା'କୁ ପକାଇ ତଦନୁସାରେ ଚା' ତିଆରି ପ୍ରଣାଳୀ ପ୍ରଚାର କରୁଥିଲା । ମୋ ଜାଣିବାରେ, ସେ କାଳେ ଏପରି କୌଣସି ଲଟି, ପତ୍ର ବା ଫୁଲ ନ ଥିଲା ଯେଉଁଥିରୁ କୌଣସି ନା କୌଣସି ପ୍ରଣାଳୀରେ ଚା' ତିଆରି ନ ହେଉଥିଲା । ଏବକୁ ବାକି ରହିଛି, ମାତ୍ର ଦୁଇଟି ପତ୍ର—ଭାରତର ଓ ଚୀନର ଚା'ପତ୍ର । ତେବେ, ଆମ ଦେଶରେ ଭାରତୀୟ ଚା'ପତ୍ର ଯେତେ ଚଳୁଛି, ଚୀନାପତ୍ର ସେତେ ଚଳୁନାହିଁ । ମନେ ଅଛି ନା, ସେ କାଳର ଟ୍ୟାନ୍‌ସି, କ୍ୟାମୋମିଲ ଓ କମଳା ଲେମ୍ବୁ ଗଛମାନଙ୍କର ପତ୍ର ଓ ଫୁଲର ଚା' ; ଶେଷକୁ ପୁଣି କ୍ୟାମ୍ବ୍ରିକ୍ ଟି ?"

ମେଘ ପଚାରିଲେ, "କ୍ୟାମ୍ବ୍ରିକ୍ ପୁଣି କ'ଣ ?"

"ଗରମ ପାଣି ଯେତିକ ଗରମ ଦୁଧ ସେତିକ, ବେଶ୍—ପିଇଲ୍‌କୁ ଏହା ଖୁବ୍ ସୁଆଦ ଲଗୁଥିଲା ! କିନ୍ତୁ ଏଥିରେ ନା ଥାଏ ପାଣିର ସୁଆଦ, ନା ଦୁଧର ।" ଏତିକରେ ମିସେସ୍ ବେକର୍‌ଙ୍କ ଅଧ୍ୟାୟ ସରିଲା ।

ଏଥର ମୋ ପାଳି । ମନ ହେଉଥିଲା, ମେରିଙ୍କ ବୋଷ୍ଟନ୍ ଗ୍ଲୁ ଘେଞ୍ଚ ଉପରେ ଏଣୁ ତେଣୁ ଦ'ପଦ ନିରର୍ଥକ କଥା କହି ମୋ କାମ ସାରିବି । କିନ୍ତୁ ସବୁବେଳେ କ'ଣ ମନର ଇଚ୍ଛା ଅନୁସାରେ କାମ ହୁଏ ? ଅନୁମତିକୁ ଅପେକ୍ଷା ନ ରଖି ଅଚାନକରେ କାହୁଁ ଆସି କ'ଣ ହାବୁଡ଼ିଯାଏ ।

ମୁଁ କହିବାର ଶୁଣୁଥାଏ—"ଗିର୍ଜାରୁ ଫେରି ମୁଁ ଶୋଇ ପଡ଼ିଲି ଓ ଡାନି ଟେଲରକୁ ସ୍ୱପ୍ନରେ ଦେଖିଲି । ବଡ଼ ଭୟାନକ ସ୍ୱପ୍ନ । ଆପଣଙ୍କର ଡାନି ମନେ ଅଛି ନା ?"

ମିଷ୍ଟର୍ ବେକର୍ କହିଲେ, "ହତଭାଗ୍ୟ ବଗୁରା !"

"ଏକ ସମୟରେ ଆମେ ଦୁହେଁ ଥିଲୁଁ ଦୁଇ ଭାଇଙ୍କଠୁଁ ବେଶି ଆପଣାର । ମୋ'ର ତ ନିଜର ହୋଇ ଭାଇ ନଥାଏ । ମୁଁ ଜାଣୁଛି, ମୁଁ ତାକୁ ମୋର ନିଜ ଭାଇ ବୋଲି ଏକରକମ ମନେ କରିଥିଲି । ମୁଁ ଅନୁଭବ କରୁଛି, ମୋ ଭାଇ ଡାନିକୁ ସତ୍‌ପଥକୁ ଆଣିବା ମୋର କର୍ତ୍ତବ୍ୟ । କିନ୍ତୁ କାର୍ଯ୍ୟରେ କିଛି କରି ପାରୁନାହିଁ ।"

ଏ ପର୍ଯ୍ୟନ୍ତ କଥାବାର୍ତ୍ତା ଯେଉଁ ତାଆରେ ଚାଲିଥିଲା ତାହା ମୁଁ ଭାଙ୍ଗି ଦେବାରୁ ମେରିଙ୍କୁ ବିରକ୍ତ ଲାଗୁଥାଏ । ସେ ପ୍ରତିହିଂସା ଗ୍ରହଣ କରିବାକୁ ସ୍ପେଟକାଟ ଉଦ୍ୟମଟାଏ କଲେ । "ଏଥାନ୍ ତାଙ୍କୁ ଟଙ୍କା ଦେଇ-ଛନ୍ତି । ଏଭଳି ଟଙ୍କା ଦେବା ଅନୁଚିତ ବୋଲି ମୋର ମତ । ସେ ତ ଯେତେ ପାଇବେ ସବୁ ନିଶାପାଣିରେ ଉଡ଼ାଇ ମାତାଲ ହେବେ ।"

ମିଷ୍ଟର୍ ବେକର୍ କହିଲେ, "ଉଁ—ଉଁ—।"

"ସେ କଥା ଯାହା ହେଉ, ମୋର ଏ ସ୍ୱପ୍ନଟା ହୋଇଛି ଦୁଇପ୍ରହର ବେଳାର ଏକ ମହା ଦୁଃସ୍ୱପ୍ନ । ଟଙ୍କା ଯାହା ଦିଏଁ ସେ କିଛି ନୁହେ—ମଝିରେ ମଝିରେ କେତେବେଳେ କେମିତି ଟଙ୍କା ଝଟା ଦେଇ ପକାଏ । ମୋଟେ ତ ପାଞ୍ଚ ଟଙ୍କା; ସେଥିରେ ମଦ ନଖାଇ ସେ କ'ଣ ବା କରନ୍ତା ?"

ଏକା ଥରକେ ବେଶି କରି କଛୁ ଟଙ୍କା ମିଳଲେ, ହୁଏତ ସେ ମଦ ଅଭ୍ୟାସ ଛାଡ଼ ପାରନ୍ତା ।"

ମେଷି କହ ଉଠିଲେ, "କୋଉ ସାହସରେ କଏ ତାଙ୍କୁ ଏକାଥରକେ ଗୁଡ଼ାଏ ଟଙ୍କା ଦେଇ ପକାଇବ ? ସେ ବଞ୍ଚିଥାଇ ଏତେ ଟଙ୍କା ଏକ ସଙ୍ଗେ ପାଇ ପାରିବେ ନାହିଁ । ଆପଣ କ'ଣ କହୁଛନ୍ତି, ମିଷ୍ଟର୍ ବେକର୍ ?"

ମିଷ୍ଟର୍ ବେକର୍ କହଲେ, "ଆହା ବିଚାରା ! ଟେଲର୍ ବଂଶଟି ଆମ ଏଠାର ବେଶ୍ ସଂଭ୍ରାନ୍ତ ବଂଶ ଥିଲେ । ଆଜ ତାଙ୍କଙ୍କର ଏ ଦଶା ଦେଖି ମୋତେ ଭାର ବାଧୁଛି । କନ୍ତୁ ମେଷି ଯାହା କହୁଛନ୍ତି, ତାହା ଯଥାର୍ଥ କଥା ବୋଲି ମୋତେ ମାନିବାକୁ ପଡ଼ିବ । ସମ୍ଭବତଃ ସେ ଆରୋଗ୍ୟ ନ ହୋଇ ଏଇପରି ମଦ ପିଉ ପିଉ ଶେଷରେ ମରିବେ ।"

"ହଁ, ସେ କଥା ସତ । କନ୍ତୁ ମୋ ପଇସାରେ ମଦ ପିଇ ମରିବା ଅସମ୍ଭବ । ତା'ଙ୍କୁ ଦେବା ପାଇଁ ସେତେ ପଇସା ବା ମୁଁ ପାଇବ କୁଆଡ଼ୁ ?"

ମିଷ୍ଟର୍ ବେକର୍ କହଲେ, "ଏତେ ସେତେରେ କଛି ନାହିଁ । ମଦ ପିଇବାକୁ ପଇସା ଦେବା କଥାଟା ପଡ଼ୁଛି । ନୀତି ଦୃଷ୍ଟିରୁ ତାହା ଗର୍ହିତ ।"

ମିସେସ୍ ବେକର୍ ଗୋଟାଏ ନାଗରିକୋଚିତ ଆଘାତ ଦେଲେ, "ତା'ଙ୍କୁ ଏପରି ଗୋଟାଏ ଅନୁଷ୍ଠାନରେ ଭର୍ତ୍ତି କରିଦେବା ଦରକାର, ଯେଉଁଠି ତା'ର ହେପାଜତ ନିଆ ଯାଇ ପାରିବ ।"

ତିନିହେଁ ଯାକ ମୋ ଉପରେ ବିରକ୍ତ ହୋଇ ଉଠିଲେ । ବିଚାରି କୋଷ୍ଟନ୍ ଗ୍ର' ଭୋଜ ପ୍ରସଙ୍ଗରେ ରହି, ଏକଥା ନ ଉଠାଇଥିଲେ ଭଲ ହୋଇଥାନ୍ତା ।

ମନର ଗତି ବଡ଼ ବିଚିତ୍ର । ଗୁପ୍ତ ଅଭିସନ୍ଧି ଓ ଗୂଢ଼ ରହିଥିବା ବାଧା ବିଘ୍ନ ଭିତରେ ବାଟ ଖୋଜିବା ଯେତେବେଳେ ପ୍ରୟୋଜନ ହୁଏ, ସେତେ-ବେଳେ ମନ ସେଥିରେ ନ ଲାଗି, ତୁଚ୍ଛା କଥା ଗୁଡ଼ାକରେ ନିବିଷ୍ଟ ରହେ । ବେକର୍ ବଂଶ ଓ ହ'ଲ ବଂଶର ଭିତର କଥା ସବୁ ମୋତେ ଜଣା । ଯୁଆଙ୍କ ମଝିରେ କେତେ କଳା ପରଦା, କେତେ ଅଲଂଘ୍ୟ ଅନ୍ତରାୟ, ସର୍ପୀ କରଣ ପଶି ନ ପାରୁଥିବା କେତେ ଘନ ଜଙ୍ଗଲ । ଘରର ବାସନ ବର୍ତ୍ତନ, କାନ୍ଥରେ ଟଙ୍ଗା ହୋଇଥିବା ଚିତ୍ର ଓ ଫଟୋ ଗ୍ରାଫ୍‌ରେ ଓ ଆସ୍‌ବାବ

ପଦରରେ ମଧ୍ୟ, ଦୁଇ ବଂଶର ସ୍ୱତନ୍ତ୍ର ସତ୍ତା ଅଦ୍ୟାପି ଫୁଟି ଉଠୁଛି । କୁଳ ଓ ସୁଖସ୍ୱାଚ୍ଛନ୍ଦ୍ୟର ଅବବୋଧ ସମୟର ଗର୍ଭରେ ବଦଳି ଯିବାରୁ ଚଉକିର ଆକାର ପ୍ରକାର ବଦଳି ଯାଉଛି ସିନା, କାଠ ସିନ୍ଦୁକ, ଟେବୁଲ୍, କବ୍ଧ ଆଲମାରି ସବୁ ଅତୀତର ସ୍ଥାୟୀ ସ୍ମାରକ ହୋଇ ଅଦ୍ୟାପି ରହିଛନ୍ତି । ହ'ଲ ବଂଶ ତ ଖାଲି ଗୋଟାଏ ବଂଶ ନୁହେଁ, ଏହା ଅତୀତର ଗୋଟାଏ ସ୍ୱପ୍ନର ପ୍ରତୀକ । ନିଜ ବଂଶର ସେହି ସ୍ୱତନ୍ତ୍ରତା ରକ୍ଷା କରିବା ନିମନ୍ତେ ବିଶ୍ୱର ଡାନି ଟେଲର୍ ପଡ଼ିଆଟାକୁ ଜାବୁଡ଼ି ରହିଛନ୍ତି । ଏତିକି ଗଲେ, ତା'ର ସ୍ୱାତନ୍ତ୍ର୍ୟ ଗଲା, ନିଜ ବଂଶର ନାମ ବି ଲିଭିଯିବ । ସେତିକି ଅଦ୍ୟାପି ଥାଇ ସୁଦ୍ଧା, ପ୍ରକାଶିତ ଇଚ୍ଛା, ଅପ୍ରକାଶିତ ଇଙ୍ଗିତ ଓ ସ୍ୱରର ଇସାରାରେ ମୋ ପାଖେ ବସିଥିବା ତିନିଜଣ ଯାକ, ତାହାର ସତ୍ତା ଅସ୍ୱୀକାର କରି ସାରିଲେଣି ।

ବୋଧହୁଏ, ନିଜର ସତ୍ତା ବିଷୟରେ ନିଜକୁ ସଚେତ ରଖିବା ଉଦ୍ଦେଶ୍ୟରେ ଲୋକେ ଚାହାନ୍ତି, ନିଜର ଘର ଖଣ୍ଡିକ ରହିଥାଉ ଓ ବଂଶର ନାମ ପଡ଼ୁଥାଉ । ଜାଗା ଖଣ୍ଡିକ ସଙ୍ଗେ ଅତୀତ କୀର୍ତ୍ତିକଳାପର ସ୍ମୃତିର ବା କି ବାସ୍ତବ ସଂପର୍କ ! ତଥାପି ମନ ବୁଝାଇବା କଥା । ଦୋକାନରେ ମୁଁ ବ୍ୟର୍ଥଜୀବନର ଗୋଟିଏ ପ୍ରତିମୂର୍ତ୍ତି, ଗୁମାସ୍ତା; କିନ୍ତୁ ମୋ ଘରେ ମୁଁ ଯେ ହ'ଲ ବଂଶର ଦାୟାଦ । ଘର ଖଣ୍ଡିକ ଗଲେ ମୋ'ର ବି ସତ୍ତା ଲୋପ ହୋଇଯିବ ବୋଲି ମୋର ମହାଭୟ । ଘର ଖଣ୍ଡିକ ଥିବାରୁ ବେକର୍ ବି ମୋତେ ପଦେ ପଚାରିବାକୁ ମନ କରୁଛନ୍ତି । ସେ ଖଣ୍ଡିକ ଗଲେ, ସେ ମୋତେ ମନରୁ ପୋଛି ଦେବେ ନିଶ୍ଚୟ । ସମାଜରେ ଯେଉଁ ସଂପର୍କ, ତାହା ମଣିଷ ସଙ୍ଗେ ମଣିଷର ନୁହେଁ, ଘର ସଙ୍ଗେ ଘରର, ଜମି ସଙ୍ଗେ ଜମିର । ଡାନି ଟେଲର୍‌ର ସତ୍ତା ଲୋପ ହେବା ମୋତେ ବାଧୁଛି ସିନା, ବିନା ଘରବାଡ଼ିରେ ତାହା ତ ଲୋପ ହେବ ଇ ହେବ ; ମୁଁ ରୋକିବାକୁ କିଏ ? ଏହିପରି ବିଚାରିବା ଫଳରେ, ମୋ'ର ପ୍ରକୃତି ଟାଣ ଓ ତୀକ୍ଷ୍ଣ ହୋଇଗଲା । ଆଜି ବେକର୍, ହ'ଲ ବଂଶର ସ୍ମୃତିକୁ ଘଷିମାଜି ଉଜ୍ଜଳ କରିବାକୁ ଚାହାନ୍ତି କାହିଁକି ? ମେରିଙ୍କର କଳ୍ପିତ ସଂପଦରେ ନିଜେ ଅଂଶୀଦାର ହେବା ଆଶାରେ ସିନା ! ମୋତେ ଜଣା ପଡ଼ିଲା, ମୁଁ ଘୋର ବିପଦର ସମ୍ମୁଖୀନ । ମୋ'ର ଏଇ ନିଃସ୍ୱାର୍ଥ ବନ୍ଧୁଙ୍କ ବିରୁଦ୍ଧରେ ମୋ ମନ ଟାଣ ହୋଇଗଲା । ଧୀରେ ଧୀରେ ମୋ ମନ ବିପଦର ଆଶଂକା କରି ସାବଧାନ ହେବାର ଅନୁ-

ଉବ କଲି । ମନର ପ୍ରେରଣାରେ ମୋ'ର ଜାଗି ଉଠିଲା ଲଢ଼େଇ କରି-ବାର ପ୍ରବୃତ୍ତି, ଶୃଂଖଳିତ ନୃଶଂସତାର କାରସାଦ—ତା'ର ସର୍ବପ୍ରଥମ ନିୟମ—ଏଠିରେ ଆତ୍ମାରକ୍ଷା କରି ଯେ ଆକ୍ରମଣ କଲି ପରି ଦିଶିବ ।

ମୁଁ ଆରମ୍ଭ କଲି, "ମିଷ୍ଟର ବେକର୍ । ପଛ କଥା ଗୁଡ଼ାକରେ ଗୁଡ଼ାଏ ଘାଣ୍ଟି ହେବା ନିଷ୍ପ୍ରୟୋଜନ । ମୋ'ର ପିତା କପରି ଆସ୍ତେ ଆସ୍ତେ କିନ୍ତୁ ନିଶ୍ଚିତ କ୍ରମରେ, ଆମର ପୈତୃକ ସଂପତ୍ତି ସବୁ ହରାଇଲେ, ତାହା ମୋଠାରୁ ଆପଣଙ୍କୁ ଅଧିକ ଜଣା । ମୁଁ ସେତେବେଳେ ଲଢ଼େଇରେ । ତାଙ୍କ ଦୁର୍ଦ୍ଦଶା କପରି ହେଲା କହନ୍ତେ ?"

"ତାଙ୍କ ଉଦ୍ଦେଶ୍ୟ ଠିକ୍ ଥିଲା, କିନ୍ତୁ ବଗୃରବୁଦ୍ଧି—"

"ମୁଁ ଜାଣେ ତାଙ୍କର ସାଂସାରିକ ବୁଦ୍ଧି ଖୁବ୍ କମ୍ ଥିଲା । କିନ୍ତୁ ଠିକ୍ କି ଭାବରେ ସଂପତ୍ତି ଚାଲି ଗଲା ?"

"ସେତେବେଳେ ତ ଲୋକେ ଅନ୍ଧାଧୁନ୍ଦା ଟଙ୍କା ଲଗାଣ କରୁଥାନ୍ତି । ତୁମ ବାପା ସେଇଆ କଲେ ।"

"ତାଙ୍କୁ ସତ୍ପରାମର୍ଶ ମିଳିଲା ନାହିଁ ?"

"ଯେଉଁ ଯୁଦ୍ଧ ସରଂଜାମ ଗୁଡ଼ାକ ତମାଦ ହୋଇ ଯାଉଥାଏ, ସେଇଭଳି ସରଂଜାମ ତିଆରି କରୁଥିବା କାରଖାନାରେ ସେ ଟଙ୍କା ଖଟାଇଲେ । ସରକାର ଏ ସରଂଜାମ କିଣିବାକୁ କରିଥିବା କଣ୍ଟ୍ରାକ୍ଟ୍ ରଦ୍ଦ କରି ଦେବାରୁ ଯାଙ୍କ ଧନ ବୁଡ଼ିଲା ।"

"ଆପଣ ତ ଓ୍ୱାସିଂଟନ୍‌ରେ ଥିଲେ । ଏ କଣ୍ଟ୍ରାକ୍ଟ ରଦ୍ଦ ହେବ ବୋଲି ଆଗରୁ ତ ଜାଣିପାରିଥିବେ ?"

"ହଁ, ମୋଟାମୋଟି ଜାଣୁନଥିଲି କ'ଣ !"

"ଅବଶ୍ୟ ଟିକିଏ କିଛି ଜାଣିଥିବାରୁ ତ ପୁଣି, ଆପଣ ନିଜେ ସେଥିରେ ଟଙ୍କା ଲଗାଇଲେ ନାହିଁ ?"

"ସେ କଥା ସତ । ମୁଁ ଲଗାଇଲି ନାହିଁ ।"

"ମୋ ବାପା ଟଙ୍କା ଲଗାଇବା ବେଳେ ତାଙ୍କୁ ଟିକିଏ ସାବଧାନ କରିଥିଲେ ହୋଇ ନଥାନ୍ତା ?"

"ମୁଁ ପରା ସେତେବେଳେ ଓ୍ୱାସିଂଟନରେ ।"

"କିନ୍ତୁ ଦୂରରେ ଥିଲେ ବି, ଆପଣ ତ ଜାଣିଥିଲେ ସେ ପୈତୃକ ସଂପତ୍ତି ବନ୍ଧକ ରଖି ଲଗାଣ ପାଇଁ ଟଙ୍କା ନେଉଛନ୍ତି ?"

"ହଁ, ତା ଜାଣୁଥିଲି ନିଶ୍ଚୟ ।"

"କିନ୍ତୁ, ଏଭଳି କାରବାରରେ ଟଙ୍କା ଲଗାଅ ନାହିଁ ବୋଲି କହିଲେ ନାହିଁ ତ ?"

"କହିଲି ପରା, ସେତେବେଳେ ମୁଁ ଓ୍ୱାସିଂଟନରେ ।"

"କିନ୍ତୁ ଆପଣଙ୍କ ନିଜ ବ୍ୟାଙ୍କ୍ ତ ବନ୍ଧକୀ ଟଙ୍କା ପାଇଁ ସମ୍ପତ୍ତି ଦଖଲ କଲା । ତାହା ଜାଣନ୍ତି ତ ?"

"ଜାଣେ ଯେ, ବନ୍ଧକ ତମାଦି ହେଲେ, ବ୍ୟାଙ୍କ୍‌ର ଅନ୍ୟ ଗତି କ'ଣ ? ଏତକ ତ ତୁମେ ଜାଣୁଥିବ, ଏଥାନ୍ !"

"ହଁ ଜାଣେ, କିନ୍ତୁ ଦୁଃଖ ଏତିକି, ମୋ ବାପା ଯଥାସମୟରେ ଅପଣଙ୍କ ପରାମର୍ଶ ନେଇ ପାରିଲେ ନାହିଁ ।"

"ଏଥାନ, ମୁଁ ଭାବୁଛି ନିଜ ପିତାଙ୍କୁ ଦୋଷିବା ତୁମ ପକ୍ଷରେ ଉଚିତ ନୁହେଁ ।"

"ତାଙ୍କର ବିପର୍ଯ୍ୟୟର କାରଣ ଆଜ ଜାଣିଲି; ତାଙ୍କୁ ଆଉ ଦୋଷୁନାହିଁ । ତାଙ୍କର ଦୋଷ ବାଛିବାକୁ ମୁଁ କେବେହେଁ ଇଚ୍ଛା କରିନାହିଁ । ଘଟଣାଟା ଠିକ୍ କପରି ଘଟିଲା ଏପର୍ଯ୍ୟନ୍ତ ଜାଣିପାରି ନଥିବାରୁ, ଧାନ୍ଦି ହେଉଥିଲି ସିନା !"

ମିଷ୍ଟର୍ ବେକର୍ ମୋ ସଙ୍ଗେ ଟଙ୍କା କଥା ପକାଇବା ସକାଶେ ଗୋଟିଏ ପ୍ରଣାଳୀ ନିଶ୍ଚୟ ଆଗରୁ ଭାବ ରଖିଥିଲେ । ମୁଁ ମୋ ବାପାଙ୍କ ବିପର୍ଯ୍ୟୟ କଥା ଆରମ୍ଭ କରି ଦେଇ, ତାଙ୍କ ବାଟରେ ଅନ୍ତରାୟ ହୋଇ-ଗଲି । ଏଥର ତାଙ୍କ ସୁବିଧାରେ କପରି ପୁଣି କଥାଟା ଆରମ୍ଭ କରିବେ, ସେଥିପାଇଁ ସେ ଧନ୍ଦ ହେଉଥାନ୍ତି । ସେ ଆଗ ଖଣ୍ଡିଖାସ ଦେଲେ, ଧୁଁ କରି ନାକ ସଫା କଲେ, ପକେଟରୁ କାଗଜ ରୁମାଲର ଗୋଟାଏ ତାଡ଼ା ବାହାର କରି, ଖଣ୍ଡିଏ ରୁମାଲ ଆଗ କାଢ଼ି ନାକ ସଫା କଲେ; ଆଉ ଖଣ୍ଡେ କାଢ଼ି ଆଖି ପୋଛିଲେ ; ତୃତୀୟରେ ଖଣ୍ଡେ ବାହାର କରି ଚଷମା ସଫା କଲେ । ପ୍ରତ୍ୟେକ ଲୋକର ସୁବିଧା ସମୟକୁ ଡକେଇବାର ଅଲଗା ଅଲଗା ରୀତି । ଜଣେ ଲୋକ ଏଇଭଳି ଅବସ୍ଥାରେ ପଡ଼ି ନିଜ ପାଇପ୍‌ରେ ଧୂଆଁ ପତ୍ର ଭର୍ତ୍ତି କରି ନିଆଁ ଧରାଇବାକୁ ପୂରା ପାଞ୍ଚମିନିଟ ନେବାର ଦେଖିଛି ।

ମିଷ୍ଟର୍ ବେକର୍ ଘର ଘର ତାଙ୍କ ଆଡ଼୍କୁ କଥା ପକାଇବାକୁ ଆରମ୍ଭ କରିବେ ବୋଲି ଠଉରାଇ ମୁଁ ପୁଣି ଆଉ ଥରେ ମୋ ଆଡ଼୍କୁ ଆରମ୍ଭ କରିଦେଲି, "ଆଜ୍ଞା, ଆପଣଙ୍କଠାରୁ ସାହାଯ୍ୟ ପାଇବ ବୋଲି ଦାବି କରିବାର କୌଣସି ଅଧିକାର ମୋର ନାହିଁ, ଏକଥା ମୁଁ ଜାଣେ । ଆପଣ ମୋ ପ୍ରତି ଅନୁକମ୍ପା କରି ଆମ ଦୁଇ ପରିବାର ଭିତରେ ପୂର୍ବେ ଥିବା ବ୍ୟବସାୟଗତ ସଂପର୍କ କଥା, ନିଜ ଆଡ଼୍କୁ ଉଠାଇଛନ୍ତି ।"

ସେ କହିଲେ, "ହଁ, ଆମ ଦୁଇ ପରିବାରର ସଂପର୍କ ତ କଥାର କଥା ନୁହେଁ । ଆମ ଦୁଇ ବଂଶର ପୂର୍ବପୁରୁଷ ଥିଲେ ବେଶ୍ ସଦ୍‌ଭାବସଂପନ୍ନ ଲୋକ; ପ୍ରାୟଶଃ, ସେମାନଙ୍କର ଉତ୍କୃଷ୍ଟ ଧରଣର ବ୍ୟବସାୟ-ବୁଦ୍ଧି ଥିଲା ; ସେମାନେ ନିଜର ପୈତୃକ ମର୍ଯ୍ୟାଦା ରକ୍ଷିବାରେ ଖୁବ୍ ସଚେଷ୍ଟ ଥିଲେ ......... ।"

"ହଁ ଯେ, ସେମାନେ ସେ ଚେଷ୍ଟା ନବୁଝି ନ ବିଚାରି, କରୁ-ନ ଥିଲେ । ଆଗ ବୁଝି ବିଚାରି ଯାହା କର୍ତ୍ତବ୍ୟ ବୋଲି ନିର୍ଣ୍ଣୟ କରୁଥିଲେ, ସେଥିରୁ କନ୍ତୁ କେବେ ପଛଘୁଞ୍ଚା ଦେଉ ନଥିଲେ ।"

"ନିଶ୍ଚୟ ସତ କଥା ।"

"ନିଜର ଉଦ୍ଦେଶ୍ୟ ସିଦ୍ଧି ପାଇଁ ପଡ଼ିଲେ ଶତ୍ରୁର ଜାହାଜକୁ ବୁଡ଼ାଇ ଦେଇ ପାରୁଥିଲେ, ନିଆଁ ଧରାଇ ପୋଡ଼ି ବି ପାରୁଥିଲେ ।"

"ଏଭଳି କରିବାକୁ ତ ସେମାନଙ୍କୁ ସରକାର ଅଧିକାର ପତ୍ର ଦେଇଥିଲେ ।"

"କନ୍ତୁ, ବୋଧହୁଏ, ୧୮୦୧ ଖ୍ରୀଷ୍ଟାବ୍ଦରେ, ସେମାନଙ୍କୁ ଥରେ ଜବାବଦେହି ପଡ଼ିଥିଲା, ଅମୁକ ଅମୁକ ଜାହାଜକୁ ଶତ୍ରୁଜାହାଜ ବୋଲି କେଉଁ କାରଣରେ ବିଚାରି, ପୋଡ଼ିଦେଲେ ବା ବୁଡ଼ାଇ ଦେଲେ ବୋଲି ।"

"ଗୋଟାଏ ଲଢ଼େଇ ପରେ, ଏଇଭଳି ଖୁଣ୍ଟି ନାଟି ପରୀକ୍ଷା ନିରୀକ୍ଷା ହେବା ସ୍ୱାଭାବିକ ।"

"ସେ କଥା ସତ । ଏସବୁ ପୁରୁଣା କଥା ଉଠାଇ ଯୁକ୍ତିତର୍କ କରି-ବାରେ ଲାଭ କଛି ନାହିଁ । ମୂଳ କଥା, ମିଷ୍ଟର୍ ବେକର୍ ! ମୋର ଅବସ୍ଥା କପରି ଟିକଏ ଭଲ ହେବ, ସେଇ ବିଷୟରେ ଆପଣଙ୍କ ପରାମର୍ଶ ଲାଭ କରିବାକୁ ମୋର ଆକାଂକ୍ଷା ।"

"ବେଶ୍, ବେଶ୍, ଏଥାନ୍ ! ଏଇଭଳି ଉଚ୍ଚାକାଂକ୍ଷାକୁ ମୁଁ ପସନ୍ଦ କରେ । କେତେ ଦିନ ହେଲା ତ ମୋ ମନରେ ଗୋଟାଏ ଧାରଣା ହୋଇଛି ଯେ, ତମ ବଂଶର ସ୍ୱାଭାବିକ ଉଚ୍ଚ ଚିନ୍ତା ତୁମଠାରୁ ଉଭେଇ ଯାଉଛି ।"

"ବୋଧହୁଏ ସେ କଥା ସତ; ହୁଏତ ସେ ଉଚ୍ଚଚିନ୍ତାକୁ ମୁଁ ଆପଣଙ୍କ ଆଖିରେ ପଡ଼ିବା ଭଳି ଏ ଯାଏଁ ପ୍ରସ୍ଫୁଟ କରି ପାରିନଥିଲି । ଆପଣ ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେବାରୁ ମୋତେ ହିମ୍ମତ ମିଳିଛି । କି ଦିଗରେ ମୋ ଉଦ୍ୟମ ଆରମ୍ଭ କରିବି କହନ୍ତୁ ।

"ସର୍ବାଦୌ ଆବଶ୍ୟକ ମୂଳଧନ । ତୁମ ପକ୍ଷରେ ତ ତାହା ପ୍ରଧାନ ସମସ୍ୟା ।"

"ତା' ତ ଜାଣୁଛି । କିନ୍ତୁ ଯଦି ବା ମୁଁ କିଛି ମୂଳଧନ ଯୋଗାଡ଼ କରିବି, ତା'କୁ ଲଗାଣ କରିବି କେଉଁ ଯୋଜନାରେ ?"

ମିଷ୍ଟର ବେକର୍ କହିଲେ, "ଆମେ ଯେଉଁ କଥା ପକାଉ ଥାଇଁ ତାହା ନାରୀମାନଙ୍କୁ ଅଡୁଆ ଅଡୁଆ ଲାଗୁଥିବ । ଚାଲ, ଆମେ ଲାଇବ୍ରେରୀକୁ ଯାଇ ଆମ କଥା ପକାଇବା । ବେପାର ବଣିଜ କଥା ତାଙ୍କୁ ବଡ଼ ନୀରସ ଲାଗିବା ସ୍ୱାଭାବିକ ।"

ଏଇଠାରେ ମିସେସ୍ ବେକର୍ ଠିଆ ହୋଇ ପଡ଼ିଲେ । "ବଡ଼ ଶୋଇବା ଘର କାନ୍ଥରେ କାଗଜ ମାରିବା ପାଇଁ କେତେ ଗୁଡ଼ାଏ ନମୁନା ଆଣିଛି । ଏଇଲେ ବିଚାରୁଥିଲି, ମେରୀଙ୍କୁ ସାଙ୍ଗରେ ନିଅନ୍ତି, ସେଥିରୁ ଭଲ ନମୁନା ଗୋଟାଏ ପସନ୍ଦ କରିବାରେ ମୋତେ ସାହାଯ୍ୟ କରିବାକୁ । ମେରୀ, ଯିବା ? ନମୁନା ଗୁଡ଼ାକ ଉପର ମହଲାରେ ଅଛି ।"

ମୁଁ କହିଲି, "ଆମ କଥା ମେରୀ ଶୁଣିଲେ ଭଲ ହୁଅନ୍ତା ।"

କିନ୍ତୁ ମେରୀ ତାଙ୍କ ପଛିଆ ହେଲେ ; ସେ କଥା ମୋତେ ଆଗରୁ ଜଣାଥିଲା । ମେରୀ କହିଲେ, "ବେପାର ବଣିଜ ବିଷୟରେ ମୋତେ ବିନ୍ଦୁ-ବିସର୍ଗ ଜଣାନାହିଁ । କିନ୍ତୁ କାନ୍ଥକୁ କେମିତି କାଗଜ ସୁନ୍ଦର ଦିଶିବ, ସେ କଥାରେ ତ ହେଲେ ପଦେ କହି ପାରିବ ।"

"କିନ୍ତୁ ପ୍ରିୟେ ! ଆମେ ଯାହା କଥାବାର୍ତ୍ତା ହେବୁଁ, ସେଥିରେ ଯେ ତୁମର ବି ସଂପର୍କ ନିଶ୍ଚୟ ।"

"ଏଥାନ୍, ତୁମେ ତ ଜାଣ ଏ ସବୁ କଥା ମୋତେ ଅଡୁଆ । ମୁଣ୍ଡ ଗୋଳମାଳ ହୋଇଯିବ ।"

"ପ୍ରିୟେ, ତୁମେ ନଥାଇ ମୁଁ ଏକୁଟିଆ କଥାବାର୍ତ୍ତା ହେଲେ ତୁମଠାରୁ ବେଶି ଗୋଳମାଳଆ ହୋଇଯିବ, ମୋ ମୁଣ୍ଡ ।"

ବୋଧହୁଏ କାନ୍ଥରେ ମାରିବାକୁ କାଗଜ ବାଛିବା କଥାଟା ମିଷ୍ଟର୍ ବେକର୍ ଆଗରୁ ସୂଚାଇଥିଲେ । ମୁଁ ପରିଷ୍କାର ଜାଣୁଛି, ମିସେସ୍ ବେକର୍ ତାଙ୍କ ଘର କାନ୍ଥରେ ମରାହେବା କାଗଜ ବାଛନ୍ତି ନାହିଁ । ଆମେ ବସିଥିବା ଘରର କାନ୍ଥରେ ଜ୍ୟାମିତି-ଚିତ୍ର ଅଙ୍କିତ ଯେଉଁ କାଗଜ ମରା ହୋଇଛି ତାହା କୌଣସି ସ୍ତ୍ରୀଲୋକ କେବେ ବାଛନ୍ତା ନାହିଁ ।

ମହିଳା ଦୁହେଁ ଉପରକୁ ଚାଲିଯିବା ପରେ ମିଷ୍ଟର୍ ବେକର୍ କହିଲେ, "ତେବେ, ବର୍ତ୍ତମାନ ତୁମର ସମସ୍ୟା ହେଲା ମୂଳଧନ ଯୋଗାଡ଼ କରିବା । ଏଥାନ୍, ତୁମ ଘର ଉପରେ ତ ବନ୍ଧକ ଫନ୍ଧକ ନାହିଁ । ତାକୁ ବନ୍ଧକ ଦେଇ ଟଙ୍କା ଉଠାଅ ।"

"ତାହା କରିପାରିବ ନାହିଁ ।"

"ଅବଶ୍ୟ ତୁମେ କାହିଁକି ଘର ବନ୍ଧକ ଦେବାକୁ ନାହିଁ କରୁଛ ମୁଁ ବୁଝୁଛି । କିନ୍ତୁ ସ୍ୱାବାଦ୍ ଅନ୍ୟ କୌଣସି ତାବାଦ୍ ତ ତୁମର ନାହିଁ । ମେରିଙ୍କ ଟଙ୍କାତକ ଅଛି ଯେ, ସେ ତ ସାମାନ୍ୟ । ହଉ, ଏଇ ଅଳ୍ପ ଧନ ଖଟାଇ, ସାମାନ୍ୟ କିଛି ଲାଭ କରିପାର ।"

"କିନ୍ତୁ ସେ ଟଙ୍କାରେ ହାତ ଦେବାକୁ ମୋର ଇଚ୍ଛା ନୁହେଁ । ଆପଦ୍ ବିପଦ୍‌କୁ ତା'ର ସେତିକ ସମ୍ବଳ ।"

"ସେ ଟଙ୍କା ତ ତୁମ ଦୁହିଁଙ୍କ ନାମରେ ଜମା ଅଛି । ପଇସାଟିଏ ସୁଧ ବି ମିଳୁନାହିଁ ।"

"ଧରନ୍ତୁ, ମୋର ସେ ଟଙ୍କା ବିଷୟରେ ଯେଉଁ ଦ୍ୱିଧା ତା'କୁ ଛାଡ଼ିବି । ସେ ଟଙ୍କା କେଉଁ ବେପାରରେ ଖଟାଇବି ବୋଲି ଆପଣ କହୁଛନ୍ତି ?"

"ଆଚ୍ଛା, ତୁମ ଶାଶୁଙ୍କ ସମ୍ପତ୍ତି ବିଷୟରେ ତୁମର କିଛି ଧାରଣା ଅଛି ?"

"ଠିକ୍ କହିପାରିବି ନାହିଁ; ମୋ'ର ଅନୁମାନ ତାହା କମ୍ ନୁହେଁ ।"

ସେ ଖୁବ୍ ଯତ୍ନରେ ତାଙ୍କ ଚଷମା ସଫାକଲେ, କହିଲେ, "ମୁଁ ବର୍ତ୍ତମାନ ଯାହା କହିବି ତାହା ଖୁବ୍ ଗୋପନୀୟ ରଖିବାକୁ ହେବ ।"

"ନିଶ୍ଚୟ, ଆଜ୍ଞା !"

"ସୌଭାଗ୍ୟର କଥା ତୁମେ ଗପୁଡ଼ି ନୁହଁ । ତୁମ ବାପାଙ୍କ କଥା ଅଲଗା; ତାଙ୍କ ବ୍ୟତୀତ ତୁମ ବଂଶର ଅନ୍ୟ କେହି ଗପୁଡ଼ି ନଥିଲେ । ଶୁଣ, ବ୍ୟବସାୟୀ ଦୃଷ୍ଟିରୁ ଦେଖି ମୁଁ ଜାଣୁଛି, ଆମ ନିଜ ବେ-ଟାଉନ୍ ସହର, ନିକଟରେ ଖୁବ୍ ବଢ଼ିବ । ବଢ଼ିବାର ସବୁ ସାମଗ୍ରୀ ଏହାର ଅଛି—ବନ୍ଦର ଅଛି, ସୁନ୍ଦର ସମୁଦ୍ର ଉପକୂଳ ଅଛି । ନଈ ନାଳ ବି ଅଛି । ଥରେ ଏହାର ଉନ୍ନତି ହେବାକୁ ଆରମ୍ଭ ହେଲା ତ ଆଉ ରୋକ-ହେବ ନାହିଁ । ସହରର ଉନ୍ନତିରେ ସବୁମନ୍ତେ ସାହାଯ୍ୟ କରିବା ପ୍ରତ୍ୟେକ ବ୍ୟବସାୟୀର ଏକାନ୍ତ କର୍ତ୍ତବ୍ୟ ।"

"ହଁ, ସହରର ଉନ୍ନତି ନାମରେ ସେ ନିଜର କିଛି ଫାଇଦା ବି ଉଠାଇ ପାରିବ ।"

"ତା' ତ ସ୍ୱାଭାବିକ କଥା ।"

"ଆଚ୍ଛା, ଏପର୍ଯ୍ୟନ୍ତ ସହରର ଉନ୍ନତି ଆରମ୍ଭ ନ ହୋଇଛି କାହିଁକି ?"

"କାରଣ, ତୁମେ ଜାଣ ବୋଧହୁଏ । ନଗର ସଭାରେ ଯେଉଁ ବୁଢ଼ବକ୍ ଗୁଡ଼ାକ ଅଛନ୍ତି ସେମାନଙ୍କ ଯୋଗୁଁ ସବୁ ଅଟକୁଛି । ସେମାନେ ଆଗକୁ ନ ଚାହିଁ ଆମ ଅତୀତକୁ ଧୋଇ ଶୁଖେଇ ଖାଉଛନ୍ତି ।"

ବେପାରରେ ନିଜର ଲାଭ ଉଠାଇବା କେଡ଼େ ପରୋପକାରୀ କାମ—ତାହା ଶୁଣିବାକୁ ମୋତେ ସବୁବେଳେ ବଡ଼ କୌତୁକ ଲାଗେ । ଉନ୍ନତି-ପିପାସା ଓ ଲୋକମଙ୍ଗଳର ଯେଉଁ ମୁଖା ସେ ପିନ୍ଧିଥାନ୍ତି, ତାକୁ କାଢ଼ିଦେଇ, ମିଷ୍ଟର୍ ବେକରଙ୍କୁ ଚାହିଁଲେ ତାଙ୍କ ମୁହଁରୁ ତାଙ୍କର ସ୍ୱରୂପ ପ୍ରକାଶ ପାଇବ । ସେ ଓ ତାଙ୍କରି ପରି ଆଉ ଅଳ୍ପ କେତେଜଣ, ଭବିଷ୍ୟତ ଉନ୍ନତିର ସବୁ ଯାକ ବାଟଘାଟ ନିଜ ଅକ୍ତିଆରକୁ ଆଣିବା ପର୍ଯ୍ୟନ୍ତ, ଏବେ ନଗର ସଭାରେ ଯେଉଁମାନେ ଅଛନ୍ତି ସେମାନଙ୍କ ପକ୍ଷ ଧରି ରହିଥିବେ । ଭବିଷ୍ୟତର ଚାବିକାଠି ହାତ ହୋଇ ଯିବା ପରେ, ଏମାନେ ନଗର ସଭାର ମେମ୍ବରମାନଙ୍କୁ ଓ ନଗର ପରିଚାଳକଙ୍କୁ ସ୍ଥାନଚ୍ୟୁତ କରି

ଉନ୍ନତିର ନିଶାଣ ଉଡ଼ାଇ ଦେବେ । ସେତେବେଳେ ଦେଖାଯିବ, ନଗରର ଉନ୍ନତି ପାଇଁ ଯାହା ଯାହା କରିବାକୁ ହେବ, ଯେଉଁ ଜମି ଓ ଜାଗା ଖରିଦ୍ କରିବାକୁ ପଡ଼ିବ, ସେ ସବୁ ମିଷ୍ଟର୍ ବେକର୍ ଓ ତାଙ୍କ ମୁଷ୍ଟିମେୟ ବନ୍ଧୁଙ୍କ ହାତରେ ଅଛି । ଏମାନେ ସେ ଜମି ଇତ୍ୟାଦି ପାଇଁ ଯେତେ ଚାହିଁବେ, ଅକ୍ଳେଶରେ ସେତେ ପାଇବେ । ପୂର୍ବବନ୍ଧୁତା ଯୋଗୁଁ ଭବିଷ୍ୟତ୍-ଲାଭର ସାମାନ୍ୟ ଅଂଶ ମୋ ପାଇଁ ରଖିବାକୁ ମିଷ୍ଟର୍ ବେକର୍ ମନ କରୁଛନ୍ତି । କେବେ କପରି ଏ ଲାଭ ପାଇଁ ଉଦ୍ୟମ ହେବ ସେ ବିଷୟ ମୋତେ ଓ୍ୱାକିବ୍ କରିବାକୁ ତାଙ୍କର ପ୍ରକୃତରେ ଇଚ୍ଛା ଥିଲା କି ନାହିଁ କହିପାରୁ ନାହିଁ । ହୁଏତ, ଅତି-ଉତ୍ସାହରେ କଥାଟା ଆରମ୍ଭ କରି ସେ ସୂଚନା ଦେଇ ପକାଇଲେ । ସ୍ପଷ୍ଟ କରି କିଛି ନ କହିଥିଲେ ହେଁ ତାଙ୍କ କହିବାର ଢଙ୍ଗରଙ୍ଗରୁ ମୁଁ ଏ ବିଷୟରେ ମୋଟା ମୋଟି ଧାରଣା କରି ନେଲି । ନଗର-ସଭାର ନିର୍ବାଚନ ଆସନ୍ତା ଜୁଲାଇ ୭ ତାରିଖରେ । ତା’ ପୂର୍ବରୁ ମିଷ୍ଟର୍ ବେକର୍ଙ୍କ ଅଗ୍ରଗାମୀ ଦଳ ଉନ୍ନତିର ଗତି-ଚକ୍ରକୁ ନିଜ ଅକ୍ତିଆରରେ ରଖିବାକୁ ଯୋଗାଡ଼ଯନ୍ତ୍ର ଚଳାଇଛନ୍ତି ।

ପରକୁ ଉପଦେଶ ଦେବାକୁ ସୁଖ ନପାଉଥିବା ଲୋକ, ସଂସାରରେ ଜଣେ କେହି ନାହାନ୍ତି ବୋଲି ମୋ’ର ଧାରଣା । ମୁଁ ଟିକିଏ ଜଗିଜାଗି ହେବାର ଦେଖି ମୋର ସଦାଶୟ ଉପଦେଶକ ଦ୍ୱିଗୁଣିତ ଉତ୍ସାହରେ ତାଙ୍କ ଅଭିସନ୍ଧିକୁ ଅଧିକ ସ୍ପଷ୍ଟ କରି ଉପଦେଶ ଦେଇ ଲାଗିଲେ ।

ମୁଁ କହିଲି, “ମହାଶୟ, ଏ ବିଷୟରେ ମୁଁ ଟିକିଏ ଭଲ କରି ବିଚାର କରିବି । ଆପଣଙ୍କୁ ଯାହା ଅତି ସରଳ ଜଣାଯାଉଛି, ତାହା ମୋ ପକ୍ଷରେ ରହସ୍ୟାବୃତ । ପୁଣି ଏ ବିଷୟରେ ମେରିଙ୍କ ସମ୍ମତି ମଧ୍ୟ ଟିକିଏ ମସୁଧା କରିବା ପ୍ରୟୋଜନ ।”

ସେ କହିଲେ, “ମୋ ବିଚାରରେ ଏଇଟି ତୁମର ଭୁଲ । ବ୍ୟବସାୟରେ ମାଇକିନିଆ ଆଜିକାଲି ଯେପରି ମୁଣ୍ଡ ଘୂରାଉଛନ୍ତି ତାହା ଆଦୌ ଠିକ୍ ନୁହେଁ ।”

“କିନ୍ତୁ ସମ୍ପତ୍ତିଟା ତ ତାଙ୍କ ମା’ଙ୍କଠାରୁ ସେ ପାଇବେ ।”

“ଆଗରୁ ତାଙ୍କୁ କିଛି ନ ଜଣାଇ ଅଙ୍ଗନକ ଭାବେ ତାଙ୍କୁ ଯଦି କିଛି ଲାଭ ଦେଖାଇଦେଇ ପାରିବ, ତେବେ ସେ ବେଶି ଖୁସି ହେବେ । ମାଇକିନିଆଁ ସେଇଆ ଚାହାନ୍ତି ।”

"ମିଷ୍ଟର୍ ବେକର୍, ମୁଁ ଆପଣଙ୍କ ସଦୁପଦେଶ ପାଇଁ କୃତଜ୍ଞ ନୁହେଁ ବୋଲି ମନେ କରିବେ ନାହିଁ । ମୋ'ର ତ ଟିକିଏ ମୋଟା ବୁଦ୍ଧି । କଥାଟାକୁ ଟିକିଏ ମନେ ମନେ ଫେଣେଇଲେ ଯାଇ ଭଲ ସମଜି ପାରିବି । ଆଚ୍ଛା, ଆପଣ ଶୁଣିଛନ୍ତି, ମ୍ୟାରୁଲେ ଇଟାଲିକୁ ଫେରିବା କଥା ।"

ତାଙ୍କ ଦୃଷ୍ଟି ତୀକ୍ଷ୍ଣ ହୋଇଗଲା । ସେ ପଚାରିଲେ, "କ'ଣ ଏକାବେଳକେ ଯିବେ ?"

"ନା, କେବଳ ଟିକିଏ ବୁଲି ଆସିବାକୁ ମାତ୍ର ।"

"ଆରେ ! ବଡ଼ ଅଡ଼ୁଆ କଥା ତ ! ତାଙ୍କର ଯଦି ସେଠାରେ ଭଲ ମନ୍ଦ କିଛି ହୁଏ ତେବେ ତୁମର ନିରାପତ୍ତା ପାଇଁ ସେ ଗୋଟାଏ କିଛି ବ୍ୟବସ୍ଥା କରିବା ଦରକାର । ତାଙ୍କର ତ ଆଉ ବୟସ ବସି ନାହିଁ । ଆଚ୍ଛା, ସେ ଭଲା ଉଇଲ୍ ଫୁଇଲ କିଛି କରିଛନ୍ତି ?"

"ମୁଁ ତା' କିମିତି ଜାଣିବି ?"

"ତାଙ୍କ ଅନ୍ତେ ଯଦି ତାଙ୍କ ଦେଶରୁ ତାଙ୍କର ଦଳେ ଉତ୍ତରାଧିକାରୀ ଆସି ତୁକନ୍ତି, ତେବେ ତ ତୁମ ଗୃହକର୍ତ୍ତୀ ଖଣ୍ଡି ଯିବାର ଆଶଂକା ଅଛି ।

ମୁଁ ଅନିର୍ଦ୍ଦିଷ୍ଟ କଥାର ଆବରଣ ଛଳେ ଆତ୍ମଗୋପନ କଲି ; "ଆପଣ ମୋ'ର ଭବିଷ୍ୟତ ଗଢ଼ିବା ପାଇଁ ବହୁତ ମାଲମସଲା ଯୋଗାଇଲେଣି । ଆପଣ ଯେଉଁ ଯୋଜନାରେ ମନ ଦେଇଛନ୍ତି ତାହା କେବେ କିପରି କାର୍ଯ୍ୟକାରୀ ହେବ ସେ ବିଷୟରେ ଟିକିଏ ନିର୍ଦ୍ଦିଷ୍ଟ ସୂଚନା ଦେଲେ ନିଶ୍ଚିନ୍ତ ହୁଅନ୍ତି ।"

"ତୁମକୁ ଏତିକିମାତ୍ର ବର୍ତ୍ତମାନ କହିପାରେ । ବୁଝ ଯେ, ଆଜି କାଲି ଉନ୍ନୟନ ଯୋଜନାର ପ୍ରଧାନ ଅବଲମ୍ବନ ଯାତାୟାତର ସୁବିଧା ।"

"ଠିକ୍ କଥା । ଜାତୀୟ ରାଜପଥ ଗୁଡ଼ାକ ତ ବଢ଼ିବାରେ ଲାଗିଛି ।"

"ଅଦ୍ୟାପି ତାହାର ଆହୁରି ବିସ୍ତାର ହେବାକୁ ବାକି ଅଛି । କିନ୍ତୁ ଆମ ନଗରର ଉନ୍ନତି ପାଇଁ, ଯେତେ ପରିମାଣର ଧନ, ଯେଉଁ ଶ୍ରେଣୀର ଲୋକେ ଦେବେ ବୋଲି ଆମର ଆଶା, ସେମାନଙ୍କୁ ଆମ ନଗରକୁ ଆକୃଷ୍ଟ କରିଯାଇପାରିବ, ଜାତୀୟ ରାଜପଥ ବାଟେ ନୁହେଁ, ବ୍ୟୋମମାର୍ଗରେ ।"

"କିନ୍ତୁ ଆମ ନଗରରେ ଉଡ଼ାଜାହାଜ ପଡ଼ିଆ ନାହିଁ ।"

"ଠିକ୍ ଧରିଛ !"

"ପୁଣି, ଆମକୁ ଘେରି ରହିଥିବା ପାହାଡ଼ଗୁଡ଼ାକୁ ଚୂନା ନ କଲେ, ଉଡ଼ାଜାହାଜ ପଡ଼ିଆ ପାଇଁ ଉପଯୁକ୍ତ ଜାଗା ବି ଆମର ନାହିଁ ।"

"ପାହାଡ଼ ଚୂନା କରିବା ବହୁତ ବ୍ୟୟସାପେକ୍ଷ । ଯାହା ଆୟ ହେବାର ଆଶା, ବ୍ୟୟ ତା'ଠାରୁ ବେଶି ଅଧିକା ହୋଇଯିବ ।"

"ସେଥିଲୁ କ'ଣ ବିଚାରିଛନ୍ତି ?"

"ଏଥାନ୍, ତୁମେ ମୋ ଉପରେ ବିଶ୍ୱାସ ରଖିବାକୁ ହେବ । ସବୁ କଥା ଫିଟାଇ କହୁ ନାହିଁ ବୋଲି ଦୁଃଖ କର ନାହିଁ । ବର୍ତ୍ତମାନ ତୁମକୁ ସବୁ କଥା ଫିଟାଇ କହି ପାରିବି ନାହିଁ । କିନ୍ତୁ ଏତିକି ଜବାବ୍ ଦେଉଛି ଯେ, ତୁମେ ଯଦି କିଛି ମୂଳଧନ ସଂଗ୍ରହ କରି ପାରିବ, ତେବେ, ଉନ୍ନତି-ସୌଧର ଉପର ମହଲରେ ନ ହେଲେ ବି ତଳ ମହଲରେ ତୁମ ପାଇଁ ସ୍ଥାନ ରଖିବାକୁ ମୁଁ ଯତ୍ନ କରିବି । ଆହୁରି କହିପାରେ ଯେ, ଆମ ଆଗରେ ଗୋଟାଏ ସମସ୍ୟା ଆସି ପହଞ୍ଚିଛି, ତାହାର ସମାଧାନ କରିବାକୁ ପଡ଼ିବ ।"

"ଆଜ୍ଞା, ଆପଣ ମୋ ପାଇଁ ଯେତିକି କରିବାକୁ ଇଚ୍ଛା କରୁଛନ୍ତି, ସେତିକି ପାଇଁ ମଧ୍ୟ ମୁଁ ଯୋଗ୍ୟ ନୁହେଁ ।"

"ଏଥାନ୍, ପୁରୁଣା ପରିବାରମାନଙ୍କର ପୁରୁଣା ସମ୍ପର୍କକୁ ଜୀଆଇ ରଖିବାକୁ ତ ହେବ ।"

"ଆପଣଙ୍କ ଗୋଷ୍ଠୀଭିତରେ କ'ଣ ମ୍ୟାରୁଲୋ ଅଛନ୍ତି ?"

"ନା, ନା । ତାଙ୍କ ନିଜ ଗୋଷ୍ଠୀ ଧରି ସେ ଅଛନ୍ତି ; ତାଙ୍କ ନିଜ ରାସ୍ତାରେ ଚାଲିଛନ୍ତି ।"

"ବୋଧହୁଏ ତାଙ୍କ ଗୋଷ୍ଠୀ ମଧ୍ୟ ଭଲରେ ଅଛନ୍ତି—ଆଗେଇ ଚାଲିଛନ୍ତି ।"

"ସେମାନେ ଯେପରି ଆଗେଇଛନ୍ତି, ତାହା ସମୂହ ହିତ ଦୃଷ୍ଟିରୁ ନୁହେଁ । ଗୁଡ଼ାଏ ବିଦେଶୀ ଲୋକ ପଶି ଆମ ଭିତରେ ପ୍ରତିଷ୍ଠା ଅର୍ଜିବା ମୋତେ ସୁଖ ଲାଗୁନାହିଁ ।

"ଆମ ରଣ-ବାଦ୍ୟ ତେବେ ଜୁଲାଇ ୭ ରେ ବାଜିବାକୁ ଆରମ୍ଭ କରିବ ?"

"ମୁଁ କ'ଣ ତା' କହିଲି ?"

"ନାଇଁ ଯେ, ମୁଁ ବୋଧହୁଏ ସେଇଆ ଅନୁମାନ କରୁଛି ।"

"ହଁ, ଅନୁମାନ କରିଥାଇ ପାର ; ମୁଁ କିନ୍ତୁ ସେପରି କିଛି କହିନାହିଁ ।"

ଏତିକବେଳେ କାନ୍ତୁ ପାଇଁ କାଗଜ ବାଛିବା କାର୍ଯ୍ୟରୁ ମୁକ୍ତ ପାଇ ମେଷ୍ଟି ତଳକୁ ଆସିଲେ । ଆମେ ସଦାଗର-ସମ୍ମତ ରୀତିରେ ବିଦାୟ ନେଇ ଧୀରେ ଧୀରେ ସ୍ୱଗୃହ ଅଭିମୁଖେ ବାହୁଡ଼ିଲୁଁ ।

ମେଷ୍ଟି ପଚାରିଲେ, "ଆମକୁ କେତେ ଅନୁଗ୍ରହ ନ ଦେଖାଇଲେ ଏମାନେ ! ଆଚ୍ଛା, ମିଷ୍ଟର୍ ବେକର୍ କ'ଣ କହିଲେ ?"

"ସେଇ ପୁରୁଣା କଥା । ମୁଁ ତୁମ ଟଙ୍କା ବେପାରରେ ଖଟାଇ ଆଗେଇବ ! ମୁଁ ନାହିଁ କରିଦେଇଛି ।"

"ପ୍ରିୟ ! ମୋର ଭବିଷ୍ୟତ ପାଇଁ ଭଲ ହୋଇ ତୁମେ ପଛୁଉଛ ! କିନ୍ତୁ ମୁଁ ଜାଣୁଛି, ମିଷ୍ଟର୍ ବେକର୍ଙ୍କ ପରାମର୍ଶ ଅନୁସାରେ ତୁମେ ଯଦି କାମ ନକର, ତେବେ ଭୁଲ କରିବ ।"

"ସେ କଥା ମୋତେ ସୁଖ ଲାଗୁନାହିଁ । ଧର, ତାଙ୍କ କଳ୍ପନା ଯଦି ସଫଳ ନ ହୁଏ ? ତେବେ ତୁମର ଆପଦ ବିପଦକୁ ଯେ କିଛି ସମ୍ବଳ ନ ଥିବ ।"

"ଏଥାନ୍, ମୁଁ କିନ୍ତୁ ଏକଥା କହି ରଖୁଛି । ତୁମେ ଯଦି ତାଙ୍କ ପରାମର୍ଶରେ ଟଙ୍କା ନ ଖଟାଅ, ତେବେ ମୁଁ ଟଙ୍କାତକ ବ୍ୟାଙ୍କରୁ କାଢ଼ି, ନିଜେ ତାହା ତାଙ୍କ ହାତରେ ଦେଇ ଆସିବ ; ଏହା ନିଶ୍ଚୟ କରିବ, ନିଶ୍ଚୟ ।"

"ରହ, ମୁଁ ଟିକିଏ ଆଗ ଭାବେ । ତୁମକୁ ନେଇ ବେପାରରେ ଢାଳିବା ମୋର ଇଚ୍ଛା ନୁହେଁ ।"

"ଆବଶ୍ୟକ ବି ତ ନାହିଁ । ଟଙ୍କା ଦୁହିଁଙ୍କ ନାମରେ ଅଛି । ତୁମେ କାଢ଼ି ଦେଇ ଦେଲେ ଗଲା । ଭାଗ୍ୟ ଗଣନାରେ କ'ଣ ବାହାରିଛି, ଜାଣ ତ ?"

"ଭଗବାନ୍—ପୁଣି ସେଇ ଭାଗ୍ୟ ଗଣନା !"

"କାହିଁକି ? ମୋର ତ ସେଥିରେ ପୂରା ବିଶ୍ୱାସ !"

"କିନ୍ତୁ ଦେଖ, ଯଦି ଦୈବାତ୍ ଟଙ୍କା ଟିକେ ବୁଡ଼ିଯାଏ—ତୁମେ ମୋତେ ଘୃଣା କରିବ ।"

"ମୁଁ କଦାପି ତାହା କରିବି ନାହିଁ । ତୁମେଇ ତ ମୋର ଭାଗ୍ୟ । ମାଗି ପରିଷ୍କାର ଭାବେ ସେଇଆ କହୁଛନ୍ତି ।"

"ମାଗିଙ୍କର କଥା ସ୍ୱର୍ଣ୍ଣାକ୍ଷରରେ ଲେଖି, ରଖିଛି ହୃଦୟେ ଆଗୋ ପ୍ରାଣସଖୀ । ଯାବତ୍ ଏ ଦେହ ନ ହୋଇଛି ଲୟ, ତାବତ ସେ କଥା ଥିବ, ଏହା ଥୟ ।"

"ପୁଣି ଗୁଡ଼ାଏ ଥଟ୍ଟା ତାମସା ଆରମ୍ଭ କର ନାହିଁ ।"

"ମୁଁ ତ ଥଟ୍ଟା କରୁ ନାହିଁ । ସମ୍ପଦ ପାଇ ଆମ ଦାରିଦ୍ର୍ୟର ସୁଖ ନଷ୍ଟ ହୋଇ ନଯାଉ, ଏତିକି ମାତ୍ର କାମନା ।"

"ସାମାନ୍ୟ କିଛି ପଇସା ମିଳିଗଲେ, ଆମର ସବୁ ସୁଖ କେମିତି ଭଣ୍ଡୁର ହୋଇ ଯିବ ମୁଁ ଜାଣି ପାରୁ ନାହିଁ । ଗୁଡ଼ାଏ ସଂପତ୍ତି ମୁଁ ଲୋଡ଼ୁନାହିଁ—ନିତାନ୍ତ ଯେତିକି ଦରକାର, ସେତିକି ଯଥେଷ୍ଟ ।" ମୁଁ କିଛି ଉତ୍ତର ଦେଲି ନାହିଁ । ସେ ପୁଣି କହିଲେ, "ତୁମେ କ'ଣ ସତରେ ବିଶ୍ୱାସ କରୁଛ, ପଇସା ହେଲେ ଖରାପ ହେବ ?"

ମୁଁ କହିଲି, ଆଗୋ ରାଜଦୁଲାରି ! ଟଙ୍କା କେତେବେଳେ ହେଲେ ଯଥେଷ୍ଟ ହୁଏ ନାହିଁ, । ଟଙ୍କାର ମାପ ଦୁଇଟି—ଗୋଟିଏ ହେଉଛି ଟଙ୍କାର ଅଭାବ, ଅନ୍ୟଟି ହେଉଛି ଅପ୍ରଚୁରତା ।

"ସ୍ୱା କାହିଁକି ହୁଅନ୍ତା ମ ?"

"ଏଇୟା ହୁଏ । ଟଙ୍କା ଯେତେ ହେଲେ ବି ମନ ହୁଏ, ଆଉ ହୁଅନ୍ତା । ଚେକ୍‌ସାସ୍‌ର ସେ କୋଟିପତିଙ୍କ କଥା ମନେ ଅଛି ତ ? ହୋଟେଲର ଗୋଟିଏ ବଖରାରେ ସେ ଜୀବନ କଟାଇଦେଲେ; ଗୋଟିଏ ଛୋଟ ସୁଟ୍‌କେସ୍‌ରେ ତାଙ୍କର ସବୁ ଜିନିଷପତ୍ର ରଖୁଥିଲେ । ତାଙ୍କର ଉତ୍ତରାଧିକାରୀ କେହି ନଥିଲେ କି ସେ ସଂପତ୍ତି ଉଇଲ୍ କରି କାହାକୁ ଦେଇ ଯାଇ ନାହାନ୍ତି । କାହିଁକି ଜାଣ ? ତାଙ୍କଠାରେ ଯଥେଷ୍ଟ ସଂପତ୍ତି ଥିଲା ବୋଲି ତ ମନରେ ବିଶ୍ୱାସ କରି ପାରିଲେ ନାହିଁ, ଏତେ ଅଳ୍ପ ସଂପତ୍ତି କାହାକୁ କମିତି ଦେବେ ସଂକୋଚ ଲାଗିଲା । ଟଙ୍କାର ଦସ୍ତୁର ଏଇଆ । ଯେତେ ବେଶି ରୋଜଗାର କରିବ, ମନ ସେତିକି ଆଉ ଖୋଜିବ—ଯଥେଷ୍ଟ ହେଲା ବୋଲି ସଂତୋଷ ଆସିବ ନାହିଁ ।"

ବଦ୍ରୁପ କରି ମେଘ କହିଲେ, "ଆମ ରହିବା ଘରେ ନୂଆପରଦା ଲଗାଇବାକୁ ମୁଁ କହୁଛି; ଗରମ ପାଣି ମୁନ୍ଦେ କରିବାକୁ ଗୋଟେ କଳ ରଖିବା ବୋଲି କହୁଛି—ଏକାଦିନକେ ସ୍ତ୍ରୀଜଣ ମଣିଷ ଗାଧୋଇବାକୁ ଯଥେଷ୍ଟ ପାଣି ଏକାଥରକେ ଗରମ ହୋଇ ପାରନ୍ତା । ବାସନ ବର୍ଦ୍ଧିନ ବି ମାଜି ପାରନ୍ତି— ଏ ଜିନିଷ ସବୁ ଖୋଜିବା ପାପ ବୋଲି ତୁମେ ବିଗୃହୁଛ ପରି ?"

"ମୁଁ ପାପ ପୁଣ୍ୟ ଉପରେ ମନ୍ତବ୍ୟ ଦେଉ ନାହିଁ ଗୋ, ଅଘର-ବାସୀ ! ମୁଁ ଯାହା କହୁଛି ତାହା ପ୍ରକୃତିର ଗୋଟାଏ ନିୟମ, ନିଘାଟ ସତ୍ୟ କଥା ।"

"ମଣିଷର ପ୍ରକୃତି ପ୍ରତି ତୁମର ଟିକିଏ ହେଲେ ବିଶ୍ବର କି ଆସ୍ଥା ନାହିଁ ବୋଲି ମୋର ବିଶ୍ବାସ ।"

"ଖାଲି ମଣିଷ ପ୍ରକୃତି ନୁହେଁ, ମୋ ମେଘ—ମୁଁ ଯାହା କହୁଛି ତାହା ସମସ୍ତ ଜୀବଜଗତ୍‌ର ସାଧାରଣ ପ୍ରକୃତି—ସ୍ୱଭାବ । ଗୁଣ୍ଡିଚ ମୂଷାର ଯେତିକି ଦ୍ବିକୋରି ଫଳ ଦରକାର ତହିଁରୁ ଦଶଗୁଣ ସେ ସାଇତି ରଖେ । କ୍ଷୁଦ୍ର ଜୀବ ଗଫର୍‌କୁ ଦେଖିଥିବ, ଖାଦ୍ୟରେ ପେଟ ପୂର୍ଣ୍ଣ ହୋଇଥାଏ, ତଥାପି ଗାଲର ଥଳି ଦୁଇଟିରେ, ବସ୍ତାରେ ଜିନିସ ଖୁନ୍ଦିଲା ପରି, ଖୁନ୍ଦିବାରେ ଲାଗିପଡ଼େ । ପୁଣି, ମହୁମାଛି ଏଡ଼େ ଚଲାକ୍; କିନ୍ତୁ କାର୍ଯ୍ୟରେ କେଡ଼େ ମୂର୍ଖ—ଯେତିକି ଖାଏ ତହିଁରୁ କେତେ ଗୁଣ ଅଧିକ ଖାଦ୍ୟ ସାଇତି ରଖେ, ଜାଣ ତ ?"

ମେଘ ଯେତେବେଳେ ବିଚଳିତ ବା ବାଉଳା ହୋଇଯାନ୍ତି ସେତେବେଳେ ତାଙ୍କ ଦେହରୁ ଝଲକା ଝଲକା ହୋଇ କ୍ରୋଧ ବାହାରି ପଡ଼େ, ଯେପରି ସାମୁଦ୍ରିକ ଅଷ୍ଟପଦୀର ଦେହରୁ କଳା ରଙ୍ଗର ନାଳ ବାହାରେ । ସେହି ଅଷ୍ଟପଦୀ ପରି ସେ ଏହି କ୍ରୋଧର ଅନ୍ଧକାର ଭିତରେ ଆତ୍ମଗୋପନ କରନ୍ତି ।

ମୋ କଥା ଶୁଣି ସେ କହିଲେ, "ତୁମ କଥାରେ ମୋର ବଡ଼ ବିରକ୍ତି ଆସୁଛି । ମଣିଷ ଟିକିଏ ସୁଖରେ ରହୁ—ଏକଥା ତୁମକୁ ଭାରି ଅଡୁଆ ଲାଗୁଛି ।"

"ପ୍ରିୟତମେ ! ସେପରି କାହିଁକି ଭାବୁଛ ? ତୁମେ ସୁଖରେ ରହିବା ତ ମୋର କାମ୍ୟ । ଦୁରାଶାରୁ ଯେଉଁ ଅସନ୍ତୋଷ ହୁଏ ସେଥିକୁ ମୋର ଡର । ପଇସା ହେଲେ ମଣିଷର ଆସେ ଅକାରଣ ଆତଙ୍କ । ପଇସା ହିଁ ଏକମାତ୍ର ରକ୍ଷାକର୍ତ୍ତା ବୋଲି ଯେ ପଇସାକୁ ଯେତିକି ଆଶ୍ରା କରେ; ଅନ୍ୟର ସେତିକି ଈର୍ଷାର ପାତ୍ର ହୁଏ ।" ପଇସାର ଏହି ପରିଣାମକୁ ସେ ଅବଚେତନ ମନରେ ନିଜେ ଭୟ କରୁଥିଲେ ନିଶ୍ଚୟ । ତା'ର ପ୍ରତିକ୍ରିୟାରେ ସେ ଓଲଟି ମୋରି ଉପରେ ରାଗ ଝାଡ଼ିଲେ । ମୋ'ର ଯେଉଁ କଥାରେ ସବୁଠାରୁ ଅଧିକ ଆଘାତ ଲାଗିବ ତାହା ଆବିଷ୍କାର କରି ତୀକ୍ଷ୍ଣ ବାକ୍ୟବାଣ ମୋତେ ହାଣିଦେଲେ, "ସାମାନ୍ୟ ଖାଦ୍ୟ ସାମଗ୍ରୀ ଦୋକାନରେ ଗୁମାସ୍ତା, ପାଖରେ କାଣି କଉଡ଼ି ନାହିଁ, ଯିଆଙ୍କ ପ୍ରକାରକୁ ଦେଖ । ଧନହେଲେ କେତେ ବଡ଼ ବିପଦ ହେବ ଭାବି ବାୟା ହୋଇ ଯାଉଛନ୍ତି ! ତୁମେ ଯେପରି କଥା କହୁଛ, ତା' ଶୁଣିଲେ ମଣିଷ ମନେ କରିବ, ସତେ ଯେମିତି ହାତ ବଢ଼ାଇ ଦେଲେ ତୁମ ହାତରେ ଆସି ଧନସମ୍ପତ୍ତି ଅଜାଡ଼ି ହୋଇଯିବ ।"

"ମୁଁ ତ ସେଇଆ ମନେ କରୁଛି ସତରେ !"

"କାହିଁକି ? କେମିତି ?"

"ସେଇ ତ ଚିନ୍ତା !"

"ପଇସା କେମିତି ହୁଏ ତୁମକୁ ଜଣା ନାହିଁ । ଜାଣିଥିଲେ, ତୁମେ କେତେ ଆଗରୁ ପଇସା ପାଇବା ପାଇଁ ଯତ୍ନ କରି ସାରନ୍ତଣି ।"

ଅନ୍ୟର ଆଘାତରେ ମଣିଷ ମନରେ ରାଗ ହେବାର କଥା । ମୋ ମନରେ କ୍ରୋଧର ତାପ ମୁଁ ଅନୁଭବ କଲି । କୁତ୍ସିତ, ସାଙ୍ଘାତିକ ଶବ୍ଦାବଳୀ ମୋର ନୈରାଶ୍ୟ-ଉନ୍ମତ୍ତ ଅବସ୍ଥାରେ ସାପର ବିଷ ପରି ବାହାରିବାକୁ ବସିଲା । କ୍ରୋଧ ଓ ଘୃଣାର ତିକ୍ତତା ମୋତେ ଘାରି ପକାଇଲା ।

ଏତିକିବେଳେ ମେଘ ଚିତ୍କାର କଲେ, "ଦେଖ, ଦେଖ, ଗଲା, ଗଲା, ଦେଖିଲ ଟି ?"

"କଏ ? କାଇଁ ? କୁଆଡ଼େ ଗଲା ?"

"ହେଇଟି ପରୀ ଏଇ ଗଛ ପାରିହୋଇ ଆମ ଅଗଣାରେ ପଶିଗଲା !"

"ମେଘ ! କ'ଣ ସେ ଗଳ୍ପ ? ମୋତେ କହ । କ'ଣ ଦେଖି ତୁମେ ଏପରି ହେଉଛ ?"

ମୁହଁ ସଞ୍ଚାର ଆଲୋକରେ ଦେଖିଲି, ସେ ମୁରୁକ ମୁରୁକ ହସୁଛନ୍ତି, ମାଇକିନିଆଁଙ୍କର ସେଇ ଅଦ୍ଭୁତ ହସ ! ଯୁବକମାନେ ତାଙ୍କୁ ବଣ୍ଣରବୁଦ୍ଧିର ପ୍ରତୀକ ବୋଲି କହନ୍ତି; ଏହା କିନ୍ତୁ ବର୍ବରବୁଦ୍ଧି ନୁହେଁ । ଏହା ଗୋଟାଏ ପ୍ରକାର ମନୋବୃତ୍ତି, ଯାହା ଥିଲେ ବର୍ବରବୁଦ୍ଧିର ଆଉ ପ୍ରୟୋଜନ ପଡ଼େ ନାହିଁ ।

ମୁଁ କହିଲି, "ମେଘ ! କିଛି କୁଆଡ଼େ ନଦେଖି ତୁମେ ଏଭଳି ଭଣ୍ଡି ହେଉଛ !"

"ହଁ ମ, ଦେଖିଲି; ଗୋଟାଏ କଳକଜଆ—କିନ୍ତୁ ସେ କୁଆଡ଼େ ଖସି ପଳାଇଲା ।"

ମୁଁ ତାଙ୍କ ଅଣ୍ଟାରେ ହାତ ଦେଇ ତାଙ୍କ ମୁହଁକୁ ମୋ ମୁହଁ ଆଡ଼କୁ ମୋଡ଼ିଦେଲି; କହିଲି, "ଘର ଭିତରକୁ ଯିବା ପୂର୍ବରୁ ଚାଲ, ଘର ଆର ପଟେ ଟିକିଏ ବୁଲି ଆସିବା ।"

ଅନ୍ଧାରର ସୁଡ଼ଙ୍ଗ ଭିତରେ ଆମେ ନିଃସଙ୍କୋଚରେ ଟହଲ ମାଇଲୁ । ସେ ମୋତେ କିଛି କହିଲେ ନାହିଁ କି ମୁଁ ତାଙ୍କୁ କିଛି କହିଲି ନାହିଁ । କଥାବାର୍ତ୍ତାର ପ୍ରୟୋଜନ ବି ନଥିଲା ।

— — —

## – ଅଷ୍ଟମ ପରିଚ୍ଛେଦ –

ପିଲାଦିନେ ମୁଁ ଖୁବ୍ ଉତ୍ସାହ ଓ ଆନନ୍ଦରେ ଛୋଟ ଜୀବମାନଙ୍କୁ ଶିକାର କରି ମାରୁଥିଲି । ଶଶା, ଗୁଣ୍ଡୁଚିମୁଷା, ଛୋଟ ଛୋଟ ପକ୍ଷୀ, ପରେ ଗେଣ୍ଡି ଓ ହଂସ ମୋ ଗୁଳି ଖୋଳରେ ତଳକୁ ଖସୁଥିଲେ—ହାଡ଼, ରକ୍ତ, ରୁମ ଓ ପର ଲୋଷ୍ଟକୋଷ୍ଟ ହୋଇ ମେଞ୍ଚା ମେଞ୍ଚା ତଳେ କୁଢ଼ାଇ ହୋଇ ଯାଉଥିଲେ । ଭଗବାନ୍‌ଙ୍କ ସୃଷ୍ଟିର ଜୀବମାନଙ୍କୁ ଅନ୍ୟରୂପରେ ଗଢ଼ିବାର ଗୋଟାଏ ନୃଶଂସ ମନୋବୃତ୍ତି ମୋତେ ଘୋଟିଥାଏ—କିନ୍ତୁ ଯାହାଙ୍କୁ ଏ ଦଶା ଦିଏ ତାଙ୍କ ପ୍ରତି ମୋ ମନରେ ରାଗ ନ ଥାଏ କି ଦ୍ୱେଷ ନ ଥାଏ । ମୁଁ ପାପ କରୁଛି ବୋଲି ସନ୍ତାପ ବି ନ ଥାଏ । ମୋର ଏହି ଧ୍ୱଂସ କରିବାର ମନୋବୃତ୍ତି ଯୁଦ୍ଧ ଫଳରେ ଦୂର ହୋଇଗଲା । ପିଲାଙ୍କୁ ବହୁତ ଗୁଡ଼ାଏ ମିଠେଇ ଖାଇବାକୁ ମିଳିଲେ ଯେପରି ସେଥିପ୍ରତି ସେମାନଙ୍କର ବିତୃଷ୍ଣା ଆସେ, ମୋର ସେଇ ଅବସ୍ଥା ଆସିଗଲା । ବନ୍ଧୁକର ଆବାଜ ହେଲେ ମୋତେ ଆଗେ ଜଣାଯାଉଥିଲା, ସତେ ଯେମିତି ମୁଁ ଭୀଷଣ ଆନନ୍ଦରେ ଚିତ୍କାର କରି ଉଠୁଛି । ଯୁଦ୍ଧରୁ ଫେରିବା ପରେ ସେ ଭାବ ଆଉ ରହିଲା ନାହିଁ ।

ଏ ବର୍ଷ, ଏହି ବସନ୍ତର ପ୍ରଥମାବସ୍ଥାରେ, ଦଳେ ଶଶା ଖୁପ୍‌ଖୁପ୍ ହୋଇ ପ୍ରତ୍ୟହ ଆମ ବଗିଚାକୁ ଆସିବାକୁ ଲାଗିଲେ । ମୋ ମେରିଙ୍କ କାରନେସନ୍ ଫୁଲଗୁଡ଼ିକ ତାଙ୍କ ପାଟିକୁ ସୁଆଦ ଲାଗିଲା ସବୁଠାରୁ ବେଶୀ । ପ୍ରତ୍ୟେକଟି ଫୁଲ ସେ ଦୁହେଁ ଡେମ୍ଫ ପର୍ଯ୍ୟନ୍ତ ଚୁଙ୍କି ଦେଉଥାନ୍ତି ।

ମେରି କହିଲେ, "ଏ ଦୁଇଟିଙ୍କୁ ତୁମେ ମାରିବାକୁ ପଡ଼ିବ ।"

ମୁଁ ମୋ' ୧୨-ବୋର୍‌ବାଲା ବନ୍ଧୁକ ବାହାର କଲି; ବ୍ୟବହାର ନ ହୋଇ ଚର୍ବି ବୋଳାହୋଇ ରଖା ହୋଇଥିବାରୁ ଚକଚକ ହୋଇଥାଏ । ଖୋଜା ଖୋଜି କରି ପାଞ୍ଚ ନମ୍ବର ଛର୍‌ରା ଥିବା ପୁରୁଣା, କାକରରେ

ଫୁଲ ଯାଇଥିବା ଗୁଳା କେତୋଟା ପାଇଲି । ଦିନେ ସଂଧ୍ୟାବେଳେ ମୁଁ ବନ୍ଧୁକରେ ଗୁଳା ଭର୍ତ୍ତି କରି ଆମ ବାଡ଼ ପଟ ପାହାଚରେ ଶଶା ଦୁଇଟାକୁ ଚାହିଁ ବସିଲି । ଦୁହେଁଯାକ ଏକ ସମୟରେ ବନ୍ଧୁକ ନଳ ସିଧା ପଡ଼ିବା ମାତ୍ରେ, ଏକ ଗୁଳିରେ ଦୁହିଙ୍କୁ ଫାୟାର୍ କରିଦେଲି । ବାଲୁଆ ମାଉଁସ ମେଞ୍ଚା ଦୁଇଟାକୁ ନେଇ ବୁଢ଼ା ଲିଲାକ୍ ଗଛ ମୂଳରେ ପୋତି ଦେଲି । କିନ୍ତୁ ପେଟ ଭିତରଟା କେମିତି ଘାଣ୍ଟି ହେଉଥାଏ ।

ସିଧା ସଳଖ କଥା, କିନ୍ତୁ ପ୍ରାଣୀ ହତ୍ୟା କରିବା ଅଭ୍ୟାସ ମୋର ଛୁଟିଗଲା ହୋଇ ଗଲାଣି । ଅବସ୍ଥା-ଚକ୍ରରେ ପଡ଼ିଲେ ମଣିଷ, ଯେ କୌଣସି କାର୍ଯ୍ୟ କରିବାରେ ଅଭ୍ୟସ୍ତ ହୋଇ ଯାଇପାରେ—ହତ୍ୟା କରିପାରେ, ଶବସତ୍କାର କରିପାରେ, ପ୍ରାଣଦଣ୍ଡ ପାଇଥିବା ଆସାମୀକୁ ଫାସି ଖୁଣ୍ଟରେ ଝୁଲାଇ ପାରେ ବା ଶୂଳରେ ବସାଇପାରେ । ଅଭ୍ୟସ୍ତ ହୋଇଗଲେ, ମଣିଷକୁ ଫାସିଖୁଣ୍ଟରେ ଠିଆକରିବା ବା ଚମୁଟାରେ ଭିଡ଼ିବାରେ ବଡ଼ କଷ୍ଟ ରହେ ନାହିଁ; ତାହା ହୋଇଯାଏ ଏକ କର୍ତ୍ତବ୍ୟର ଅଙ୍ଗ ।

ପିଲା ଦୁହେଁ ନିଦ୍ରା ଯିବା ପରେ ମୁଁ କହିଲି, "କିଛି ସମୟ ମୁଁ ବାହାରେ ବୁଲି ଆସେ ।"

କାହିଁକି ଯିବ ଓ କେଉଁଠିକି ଯିବ ବୋଲି ମେଣ୍ଟ ମୋତେ ପଚାରିଲେ ନାହିଁ । କିଛି ଦିନ ପୂର୍ବେ ଏଭଳି ପଚାରିବା ଅଭ୍ୟାସ ତାଙ୍କର ଥିଲା । ଏବକୁ ସେ ଅଭ୍ୟାସ ଛୁଟିଗଲାଣି । ଖାଲି ଏତିକି କହିଲେ, "କ'ଣ, ଗୁଡ଼ାଏ ଡେରି କରି ଆସିବ ?"

"ନା, ଡେରି ହେବ ନାହିଁ ।"

ସେ କହିଲେ, "ମୁଁ ଚେଇଁ ରହି ପାରିବ ନାହିଁ । ମୋତେ ନିଦ ମାଡ଼ିଲାଣି ।" ମୋର ମନେ ହୁଏ, ମନକୁ ଗୋଟାଏ ଆଡ଼େ ମଡ଼ାଇ ନେଇଥିବାରୁ ସେ ମୋଠାରୁ ବେଶି ଆଗକୁ ବଢ଼ି ଯାଇଥିଲେ । ଶଶକ-ହତ୍ୟାର ଅନୁତାପ ମୋତେ ଛାଡ଼ି ନଥାଏ । ଯେଉଁ ଲୋକ କିଛି ଧ୍ୱଂସ କରିଥାଏ, ତା'ମନରେ, ତା'ର ପ୍ରତିବଦଳରେ କିଛି ଗୋଟାଏ ସୃଷ୍ଟି କରି, ସୃଷ୍ଟିର ମମତା ଆଣିବାକୁ ଆକାଂକ୍ଷା ଜାତ ହେବା ସ୍ୱାଭାବିକ । କିନ୍ତୁ ମେଣ୍ଟ ମନରେ କ'ଣ ସେ ଆକାଂକ୍ଷା ଜାତ ହୋଇଥିଲା ?

ଅନ୍ଧାରରେ ବାଟ ବଣି ଡାକ୍ତରଙ୍କ ରହୁଥିବା କୁକୁରଘର ପରି ଦୁର୍ଗନ୍ଧ କୁଡ଼ିଆ ଭିତରେ ପଶିଲି । ଗୋଟାଏ ଚୀନାମାଟି ଥାଳିଆ ଉପରେ ତାଙ୍କ ଖଟପାଖେ ମହମ ବତିଟିଏ ଜଳୁଥାଏ । ଖଟଟି ସୈନିକ-ମାନଙ୍କୁ ମିଳୁଥିବା କ୍ୟାନଭାସ୍ ଖଟ ।

ଡାକ୍ତରଙ୍କ ଅବସ୍ଥା ବଡ଼ ଖରାପ ଜଣା ଯାଉଥାଏ । ଦେହର ନେଳି ଶିରାସବୁ ବାହାରକୁ ଦିଶୁଥାନ୍ତି; ଅତି କୃଶ ଓ ଦୁର୍ବଳ ଦିଶୁଥାଏ । ଅସନା ଜାଗାରେ, ନିସ୍ପୃମିତ ଗାଧୁଆ ପାଧୁଆ ନକରୁଥିବା ଏ ଅସନା ମଣିଷଟା ପାଖେ ବସି ମୁଁ ଅସ୍ୱସ୍ତି ବୋଧ କରୁଥାଏ; ଡାକ୍ତ ପିନ୍ଧିଥିବା ଗରମ କୁରୁତାଟାରୁ ବି ଅସହ୍ୟ ପୁରୁକୁଟିଆ ଗନ୍ଧ ବାହାରୁ ଥାଏ ! ତା' ଆଖିଗୁଡ଼ାକ ଡେଗାଡେଗା ଓ କାଚପରି ଦିଶୁଥାଏ । ମୁଁ ତ ବିଶ୍ୱରୁଥିଲି, ଏ ଅବସ୍ଥାରେ ସେ ପାଗଳ ପରି ଏଣୁ ତେଣୁ ବକିବ । କିନ୍ତୁ ସେ ବେଶ୍ ସ୍ପଷ୍ଟଭାବେ କଥାବାର୍ତ୍ତା ହେଲା, ପୂର୍ବର ସ୍ୱାଭାବିକ ସ୍ୱର ଓ ଢଙ୍ଗରେ । ଦେହର ଏ ଅବସ୍ଥାରେ ମସ୍ତିଷ୍କ ଠିକ୍ ଥିବା ଦେଖି ମୁଁ ବିସ୍ମିତ ହେଲି ।

ସେ ପଚାରିଲା, "ଏ ସ୍ଥାନକୁ ଆସିଛୁ କାହିଁକି, ଏଥାନ୍ ?"

"ତୋତେ ସାହାଯ୍ୟ କରିବାକୁ ମୋର ଇଚ୍ଛା ।"

"ତାହା ଯେ ସମ୍ଭବ ନୁହେଁ, ଏହା ତୋ'ର ଜାଣିବା ଉଚିତ ।"

"କିନ୍ତୁ ତୁ ଯେ ଏତେ ଅସୁସ୍ଥ ଡାକ୍ତ !"

"ମୁଁ ଯେ ଅସୁସ୍ଥ ସେ କଥା ନିଜେ ଜାଣି ନାହିଁ ବୋଲି ଭାବୁଛୁ ପରା ! ଅନ୍ୟମାନଙ୍କ ଅପେକ୍ଷା ତାହା ମୋତେ ଅଧିକ ଜଣା ପଡ଼ିବାର କଥା ।" ସେ ଖଟିଆ ପଛ ଆଡ଼କୁ ହାତ ବଢ଼ାଇ ଓଲ୍ଡ଼ ଫରେଷ୍ଟର-ମାର୍କା ହୁଇସ୍କି ବୋତଲଟାଏ ବାହାର କଲା—ସେଥିରେ ତିନିଭାଗରୁ ଭାଗେ ହୁଇସ୍କି ଥାଏ । "ଏଥିରୁ ମୁନ୍ଦେ ପିଇ ।"

"ନା, ଡାକ୍ତ, ମୁଁ ପିଇବି ନାହିଁ । ଏ ଯେ ଖୁବ୍ ଦାମିକା ହୁଇସ୍କି !"

"ମୋତେ ଦେନାବାଲା ବନ୍ଧୁ ଅଛନ୍ତି ।"

"କିଏ ଯିଏକୁ ଦେଲା ?"

"ତୋ'ର ସେଥିରେ କ'ଣ ଅଛି, ଏଥ୍ !" ସେ ବୋତଲରୁ ଢୋକେ ପିଇ, ବୋତଲଟି ତଳେ ଥୋଇ ଦେଲା । ମୁହୂର୍ତ୍ତକ ପାଇଁ ତା'କୁ ଟିକିଏ କଷ୍ଟ ହେଲା ବୋଧହୁଏ – କିନ୍ତୁ ସେଇ ମୁହୂର୍ତ୍ତକ ପରେ ତା'ର

ଚେହେରା ବଦଳିଗଲା । ସେ ହସି ହସି କହିଲା, "ମୋ ବନ୍ଧୁ ମୋ ସଙ୍ଗେ ବେପାର ବଣିଜ କଥା ପକାଇବାକୁ ଆସିଥିଲେ, କିନ୍ତୁ ତାଙ୍କୁ ଗିରଫଦେବା ନାଂ ଦେଇଦେଲି । ସେ ତାଙ୍କ କଥା ପକାଇବା ପୂର୍ବରୁ ମୁଁ ବେହୋସ ହୋଇ ପଡ଼ିଲି । କେତେ ସହଜରେ ମୁଁ ମଲାପରି ହୋଇ ଯାଇପାରେ ସେ କଥା ତାଙ୍କୁ କି ଜଣା ? ଏଥ୍‌ ! ତୁ କ'ଣ ବେପାର କଥାବାର୍ତ୍ତା କରିବାକୁ ଆସିଛୁ ? ଆସିଛୁ ଯେବେ, ଦେଖ୍‌, କେତେ ଶୀଘ୍ର ମୋର ସଂଜ୍ଞା ଲୋପ ହୋଇଯିବ ।"

"ଜୋନ୍‌, ମୋ ପ୍ରତି ତୋ ମନରେ କିଞ୍ଚିତ୍‌ ଶ୍ରଦ୍ଧା କ'ଣ ନାହିଁ ? ତୁ ମୋତେ ବିଶ୍ୱାସ କରୁ ନାହୁଁ ? ମୋ ପ୍ରତି ତୋ'ର ଟିକିଏ ଅନୁକମ୍ପା ହେଉ ନାହିଁ ?"

"ସବୁ ଅଛି, କିନ୍ତୁ ମନର ସମସ୍ତ ଭାବ ଉପରେ ମୋର ଯାହା ଅଛି ତା'କୁ ଚିହ୍ନି, ମୁଁ ମାତାଲ—ଏଇ ଗୁଣ ଆଉ ସବୁ ଗୁଣକୁ ଘୋଡ଼ାଇ ପକାଇବାର କଥା । ମାତାଲର ସବୁ ମମତା ମଦ ଉପରେ ।"

"ମୁଁ ଯଦି ଟଙ୍କା ଯୋଗାଡ଼ କରି ପାରିବି, ତୁ' ନିଶା ଅଭ୍ୟାସ ଛାଡ଼ିବାକୁ ଚିକିତ୍ସାଳୟକୁ ଯିବୁ ?"

ଏତେ ଶୀଘ୍ର ସେ ସ୍ୱାଭାବିକ ସ୍ୱଚ୍ଛନ୍ଦ ଅବସ୍ଥାକୁ ଫେରି ଆସିବାର ଦେଖି ମୋତେ କିମିତି ଭୟ ହେଲା । ତା' ଢଙ୍ଗରୁ ଦେଖିଲି ସେ ତା'ର ପୂର୍ବ ପ୍ରକୃତି ଫେରି ପାଇଛି । ସେ କହିଲା, "ଏଥାନ୍‌, ହୁଏତ ମୁଁ କହିବି, ଚିକିତ୍ସାଳୟକୁ ଯିବାକୁ ମୁଁ ରାଜି । କିନ୍ତୁ ମାତାଲଙ୍କୁ ତୁ ଚିହ୍ନି ନାହୁଁ । ଚିକିତ୍ସାଳୟକୁ ଯିବି ବୋଲି କହି ତୋଠାରୁ ଟଙ୍କା ମାରିନେବି ଓ ସେତକ ଯାକ ହୁଏତ ମଦଦୋକାନରେ ଦେଇ ପକାଇବି ।"

"କିନ୍ତୁ ମୁଁ ଯଦି ତୋ' ହାତକୁ ଟଙ୍କା ନ ଦେଇ ଚିକିତ୍ସାଳୟରେ ଟଙ୍କା ଜମା ଦେଇଦିଏ । ତେବେ ?"

"ଅସଲ କଥାଟା କହିଦେଉଛି, ଶୁଣ୍‌ । ହୁଏତ ଆରୋଗ୍ୟ ହେବାର ଆନ୍ତରିକ ଉଦ୍ଦେଶ୍ୟ ରଖି ମୁଁ ଯିବି । କିନ୍ତୁ ଦିନେ କେତୋଟା ଚିକିତ୍ସାଳୟରେ ରହି ପୁଣି ଖସି ଆସିବି । ଏଥ୍‌, ମାତାଲଙ୍କୁ ବିଶ୍ୱାସ କରିବାର ନୁହେଁ । ତାଙ୍କ ଗତି ତୁ ସମଜିପାରିବୁ ନାହିଁ । ମୁଁ ତୋ'ର ବିଶ୍ୱାସ ଜାତ କରାଇବାକୁ ଯାହା କହେ ବା କରେ ନା କାହିଁକି, ମଦ ଖାଇବାକୁ ନିଶ୍ଚୟ ଚାଲି ଆସିବି ।"

"ଡାକ୍ତ, ଏ ମଦ ଅଭ୍ୟାସ ଦୂର କରିବାକୁ ତୋ'ର ମନ ହେଉ-ନାହିଁ ?"

"ବୋଧହୁଏ ନୁହେଁ । ମୁଁ ପ୍ରକୃତରେ କ'ଣ ଗୁହେଁ, ତୁ ଜାଣି ପାରିଲୁଣି, ବୋଧହୁଏ ।" ସେ ପୁଣି ବୋତଲ ଟେକିଲା । କେତେ ଶୀଘ୍ର ତା'ର ଢଙ୍ଗ ବଦଳିଲା ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । ସେ ଯେ ପୁରୁଣା କାଳର ଢଙ୍ଗରଙ୍ଗ ଫେରି ପାଇଲା, ଖାଲି ସେତିକି ନୁହେଁ, ତା'ର ମନ ଓ ବିଚାରବୁଦ୍ଧି ତୀକ୍ଷ୍ଣତର ହୋଇଗଲା ; ଏତେ ତୀକ୍ଷ୍ଣ ଯେ, ସେ ମୋର ମନର କଥାକୁ ଠଉରେଇ ନେଲା । ସେ କହିଲା, "ମୋର ସଦ୍‌ବୃତ୍ତି ଦେଖି ଭୁଲି ଯା' ନା' । ଏ ଅବସ୍ଥା ଖୁବ୍ ଅଳ୍ପ ବେଳ ରହିବ । ମଦ ହଠାତ୍ ଟିକିଏ ମସ୍ତିଷ୍କକୁ ତେଜି ଦିଏ, ଅଳ୍ପ ସମୟରେ ପୁଣି ଅବସାଦ ଆସିଯିବ । ସେ ଅବସ୍ଥା ଦେଖିବାକୁ ତୁ ଏଠାରେ ନ ରହ ବୋଲି ମୋର ଇଚ୍ଛା । ଅବଶ୍ୟ ମୋର ଅବସନ୍ନ ଅବସ୍ଥା ଆଜି ଶୀଘ୍ର ଆସିବ ନାହିଁ । ମାଲ ପାଖରେ ଥିଲେ ଅବସାଦ ଆସେ ନାହିଁ ।" ତା'ର ଆଖି ମହମବତୀର ଆଲୁଅରେ ଜଳଜଳ ଦିଶୁଥାଏ । ସେ ମୋ' ଭିତରେ ପଶିଗଲା ପରି ଗୁହିଁ କହିଲା, "ତୁ ପରା ମୋତେ ଆରୋଗ୍ୟ କରିବାକୁ ଟଙ୍କା ଦେବୁ ବୋଲି କହୁଥିଲୁ ? ତୋ ପାଖରେ ଟଙ୍କା ତ ନଥିବ, ଏଥାନ୍ !"

" ମୁଁ ଯୋଗାଡ଼ କରିବ । ମେଷ୍ଟ୍ରି ତାଙ୍କ ଭାଇଙ୍କଠାରୁ କିଛି ଟଙ୍କା ପାଇଛନ୍ତି ।"

" ଆଉ ତୁ ବିଚାରୁଛୁ, ସେ ଟଙ୍କା ମୋ ପିଛା ଖର୍ଚ୍ଚ କରି-ଦେବୁ ?"

"ହଁ ।"

"ମାତାଲକୁ ବିଶ୍ୱାସ କର ନା' ବୋଲି ମୁଁ କହିବା ସତ୍ତ୍ୱେ ? ଟଙ୍କାଟା ନେବ, କିନ୍ତୁ ତୋତେ ନିରାଶ କରିବ ବୋଲି ନିର୍ଭରଭାବେ କହିବା ସତ୍ତ୍ୱେ ?"

"ଡାକ୍ତ, ତୋ ଯୋଗୁଁ ତ ମୁଁ ବର୍ତ୍ତମାନ ନିରାଶ ହୋଇଛି । ଟଙ୍କା ବୁଡ଼ିଲେ ଆଉ ଅଧିକ କ'ଣ ଟାଏ ହେବ ? ଡାକ୍ତ, ତୋ ବିଷୟରେ ମୁଁ ଆଜି ଗୋଟାଏ ସ୍ୱପ୍ନ ଦେଖିଲି । ଆମେ ତୋ'ର ସେଇ ପୁରୁଣା ଜାଗାକୁ ଯାଇଥିଲେ—ମନେ ଅଛି ନା ସେ ଜାଗା ?"

ସେ ମଦ ବୋତଲକୁ ପୁଣି ଟେକିଲା, କିନ୍ତୁ ଠିପି ନ ପିଟାଇ ଥୋଇ-ଦେଲା; କହିଲା, "ନା, ଏତେ ଶୀଘ୍ର ନୁହେଁ, ଆଉ ଟିକିଏ ଯାଉ ।—ହଁ, ଏଥାନ୍, ସାବଧାନ ! ମାତାଲକୁ କେବେବି ବିଶ୍ୱାସ କରି ନା । ସେ—ମୁଁ ବିକଟ ରୂପ ଧରିଲି ପରେ—ମରି ଶୋଇଲି ବେଳେ ମଧ୍ୟ, ଶରୀର ଭିତରେ ମନ ଲୁଚି ରହି ଜାଗିଥିବ; ସେ ମନର କିନ୍ତୁ ବୃତ୍ତି ଭଲ ନୁହେଁ । ବର୍ତ୍ତମାନ, ଏହି ମୁହୂର୍ତ୍ତରେ, ମୁଁ ତୋ'ର ପୂର୍ବବନ୍ଧୁ, କିନ୍ତୁ ତୋତେ ମିଛ ତ କହି ପାରିବି । ସଂଜ୍ଞା ହରାଇଥିଲି ବୋଲି ଯାହା କହିଲି, ତାହା ମିଛ । ସଂଜ୍ଞା ଅବଶ୍ୟ ହରାଇଥିଲି । କିନ୍ତୁ ମୋ' ପାଖରେ ବୋତଲ ଯେ ଅଛି ଏ ଜ୍ଞାନଟା ଥାଏ ।"

ମୁଁ କହିଲି, "ରହ, ମୋ କଥାରେ ଅଗ୍ରସର ହେବା ପୂର୍ବରୁ ଭଲ କରି ଭାବେ । ତରତରରେ ମୋ କଥାରେ ରାଜି ହୋଇଗଲେ, ପରେ, ମୁଁ ଅଭିସନ୍ଧି ରଖି ତୋତେ ମତାଇଲି ବୋଲି ସନ୍ଦେହ କରିପାରୁ । ଆଚ୍ଛା, ଏ ବୋତଲଟା ବେକର୍ ଆଣି ତୋତେ ଦେଇଛନ୍ତି ନା ? ସତ କହ ।"

"ହଁ, ସେଇ ଆଣିଥିଲେ ।"

"ଗୋଟାଏ କ'ଣ କାଗଜରେ ସେ ତୋ'ର ଦସ୍ତଖତ ଚାହୁଁଥିଲେ, ନାଁ ?"

"ହଁ ଯେ, ମୁଁ ଠିକ୍ ସମୟରେ ଅଚେତ ହୋଇଗଲି ।" ସେ ମନେ ମନେ ଖୁବ୍ କୁରୁଡ଼ି ହୋଇ ପୁଣି ବୋତଲ ଟେକି ପାଟିକୁ ନେଲା । କିନ୍ତୁ ବତି ଆଲୁଅରେ ମୁଁ ଦେଖିଲି,ବୋତଲରେ ଖୁବ୍ ସାନ ଭୁଡୁକାଟିଏ ଉଠିଲା । ଅଳ୍ପ ଟିକିଏ ମାତ୍ର ସେ ପିଇଲା ।

"ସେଇ ବେକର୍‌ଙ୍କ ବିଷୟରେ ତୋତେ ସତର୍କ କରିବା ମୋ'ର ଆସିବାର ଅନ୍ୟତମ ଉଦ୍ଦେଶ୍ୟ । ତମ ସେଇ ପୁରୁଣା ପଡ଼ିଆଖଣ୍ଡ ପାଇଁ ସେ କହୁଥିଲେ, ନା ?"

"ହଁ ।"

"ସେ ଖଣ୍ଡ ତୁ ଆଜଯାଏଁ ନ ବିକି କେମିତି ରଖିଛୁ ?"

"କାରଣ, ତୋତେ କହୁଛି, ବୋଧହୁଏ । ଜମି ଖଣ୍ଡ ଥିବାରୁ ମୁଁ ଭଦ୍ରଲୋକ ତାଲିକାରେ ଅଛି, ଯଦିଓ ଭଦ୍ରଲୋକର ଆଚରଣ ଆଉ ନାହିଁ ।"

"ହଉ, ଏଖଣ୍ଡ ହାତଛଡ଼ା କରନା; ରଖି ଥା ।"

"ତୋ'ର ଏଥିରେ ଲାଭ କ'ଣ ? ନ ବିକବୁ କାହିଁ ?"

"ନିଜର ଆତ୍ମସମ୍ମାନ ପାଇଁ ।"

"ଆତ୍ମସମ୍ମାନ ବୋଲି ମୋର ଆଉ କିଛି ନାହିଁ । ଅଛି କେବଳ, ସମାଜରେ ଗୋଟିଏ ସ୍ଥାନ ମାତ୍ର ।"

"ନା, ଆତ୍ମସମ୍ମାନ ତୋ'ର ନିଶ୍ଚୟ ଅଛି । ମୋତେ ଯେତେବେଳେ ଟଙ୍କା ମାଗିଲୁ, ମୁଁ ଲକ୍ଷ୍ୟ କରିଛି, ତୋତେ ଲାଜ ମାଡ଼ିଲା । ସେଇ ତ ଆତ୍ମସମ୍ମାନ ।"

"ଭୁଲ୍ ବୁଝିଛୁ । ତୋତେ କହିଲି ପରା ସେ ମୋର ଗୋଟାଏ କୌଶଳ । ଜାଣିଥା, ମାତାଲପଣ ଭାରି ସ୍କୁଲ୍ । ମୁଁ ଲଜ୍ଜିତ ହେଉଛି ଦେଖି ତୋତେ ବ୍ୟସ୍ତ ଲାଗିଲା, ତୁ ମୋତେ ପାଞ୍ଚଟଙ୍କିଆଟେ ପକାଇଦେଲୁ । ମୋ ଲାଜଟା ଗୋଟାଏ ହିସାବ୍; ମାଲପାଣି ଦରକାର ଥିବାରୁ ଲଜ୍ଜାର ଅଭିନୟ କରିଦେଲି ।"

"ଜାଣି, ସେ ସବୁ କଥା ଥାଉ । ପଡ଼ିଆଟା ବିକ ନା । ଏହା ବହୁମୂଲ୍ୟ ସମ୍ପତ୍ତି । ଏହାର ପ୍ରୟୋଜନ ବେଳରୁଙ୍କୁ ଜଣା । ବହୁମୂଲ୍ୟ ନ ହୋଇଥିଲେ କୌଣସି ଜିନିଷ କିଣିବାକୁ ସେ ବାହାରନ୍ତେ ନାହିଁ ।"

"ଏହାର ମୂଲ୍ୟଟା କ'ଣ ମୁଁ ବୁଝି ପାରୁନାହିଁ ।"

"ଉଡ଼ାଜାହାଜ ଷ୍ଟେସନ୍ ହେବା ପାଇଁ ଆମ ପାଖ ଆଖରେ ଏଇ ଖଣ୍ଡିକ ମାତ୍ର ସମତଳ ଜାଗା ।"

"ଓଃ, ବୁଝିଲି ।"

"ତୁ ଯଦି ଟିକିଏ ଅଡ଼ି ବସିବୁ, ତେବେ ଏଇ ପଡ଼ିଆଟି ଯୋଗୁ ତୋ'ର ନବଜୀବନ ଆରମ୍ଭ ହୋଇ ପାରିବ । ଜାଣି, ଏଖଣ୍ଡ ହାତଛଡ଼ା କର ନା । ଆଗ ଯା' ଚିକିତ୍ସାଳୟରେ ରହି ନିଶା ଅଭ୍ୟାସଟା ଛାଡ଼ିଆ । ଆସିଲା ବେଳକୁ ଦେଖିବୁ, ଏ ଖଣ୍ଡିକ ତୋ'ର 'ହାତରେ ପାଞ୍ଚ' ହୋଇ ରହିବ—ଏହା ତୋ'ର ବାକ୍ସରେ ତାଲା ପଡ଼ି ରଖାହୋଇଥିବା ଧନ ।"

"କିନ୍ତୁ ବାକ୍ସ ଯେ ନାହିଁ ! ହୁଏତ, ଯାଙ୍ଗେ ଯାଙ୍ଗେ ଏଖଣ୍ଡ ବିକି ଦେଇ ପଇସାତକ ମାଲପାଣିରେ ଉଡ଼ାଇ ଦେଲେ ଭଲ ହୁଅନ୍ତା ।"

'ସରିଯିବ ଏ ଜୀବନ ; ବୁଡ଼ିଯିବ ଭେଲା—ବୁଡ଼ିଗଲେ ଭେଲା ଆଉ କାହୁଁ

ଲୀଳା ଖେଳା'—ନିଁ ନିଁ ସ୍ୱରରେ ଏକ୍ସପର ଗାଇ ସେ ଗୁଡ଼ାଏ ହସିଲା; ପରେ କହିଲା, "ଏଥି, ତୋ'ର ନିଜର ଏ ଜାଗା ଖଣ୍ଡକରେ ଲୋଭ କରେ ? ସେଥିପାଇଁ ମୋ ପାଖକୁ ଆସିଛୁ ?"

"ଜାନି, ମୋର ସେ ଅଭିସନ୍ଧି ନାହିଁ । ମୁଁ କେବଳ ଚାହେଁ; ତୁ ଭଲ ହୁଅ ।"

"ମୁଁ ବେଶ୍ ଭଲ ଅଛି ।"

"ମୁଁ ମୋ'ର ମନର କଥା ଭଲ ବୁଝାଇ ପାରିଲି ନାହିଁ, ବୋଧହୁଏ ! ଜାନି, ତୁ ଗୋଟାଏ ଅକିଞ୍ଚନ ମଦ୍ୟପ ହୋଇଥିଲେ, ତୋର ଯାହା ଇଚ୍ଛା ତାହା କରିଯା'ନ୍ତୁ, କେହି କିଛି କହନ୍ତେ ନାହିଁ । କିନ୍ତୁ ଆମ ସହରର କେତେକ ଉନ୍ନତିକାମୀ ଲୋକଙ୍କର ଯାହା ନିତାନ୍ତ ପ୍ରୟୋଜନ ଓ ଆବଶ୍ୟକ, ତାହା ଯେ ତୋ ପାଖରେ ଅଛି ! ଏ ଅବସ୍ଥାରେ ତୋତେ ସେମାନେ ସହଜେ ଛାଡ଼ିବେ ନାହିଁ ।"

"ଟେଲର୍ ପଡ଼ିଆ ! ସେଇଟା ତା'ହେଲେ ଏମାନଙ୍କର ଦରକାର । ତା'କୁ କାହା କଥାରେ ହାତରୁ ଛାଡ଼ିବ ନାହିଁ । ଯେଉଁମାନେ ଯା'କୁ ଚାହାନ୍ତି ବୋଲି କହୁଛୁ, ସେମାନଙ୍କର ଯେତିକ ପୁରୋଦୃଷ୍ଟି ମୋ'ର ବି ସେତିକ ।" ଏହା କହି ସେ ଶ୍ରଦ୍ଧାଳୁ ଦୃଷ୍ଟିରେ ମଦ ବୋତଲକୁ ଚାହିଁଲା ।

"ଜାନି, ମୁଁ ଯେପରି କହିଲି, ଉଡ଼ାଜାହାଜ ପଡ଼ିଆ ପାଇଁ ଉପଯୁକ୍ତ ସ୍ଥାନ ମାତ୍ର ଏଇ ଖଣ୍ଡିକ ଅଛି । ଆମ ଉନ୍ନୟନ ଯୋଜନାର ଏଇ ଜାଗାଟି କୁଞ୍ଚିକାଠି ପରି । ଯୋଜନାକାରୀମାନେ ଏଖଣ୍ଡ ନିଶ୍ଚୟ ନେବେ—ନ ନେଲେ, ମୁଣ୍ଡିଆ ସବୁ ଚୂନାକରି ସମତଳ କରିବାକୁ ହେବ । ଖର୍ଚ୍ଚ ଦୃଷ୍ଟିରୁ ତାହା ଅସମ୍ଭବ ।"

"ତେବେ ତ ତାଙ୍କ ଲଙ୍ଗୁଡ଼ ମୋ ହାତରେ; ଅସଲ ମୋଡ଼ଟାଏ ଦେବି ନିଶ୍ଚୟ ।"

"ଜାନି, ପାସୋରି ଯାଉଛୁ । ସମ୍ପତ୍ତି ଯାହା ପାଖେ, ସେ ବହୁ-ମୂଲ୍ୟ ପଦାର୍ଥ । ତା'ଠାରେ ସମସ୍ତଙ୍କର ଆଦର । ମୁଁ ତ ଶୁଣି ସାରିଲେଣି, ସେଇ ଆଦରରେ ସେମାନେ ନେଇ ତୋତେ ଗୋଟାଏ ଚିକିତ୍ସା-ପ୍ରତିଷ୍ଠାନରେ ରଖିବେ ; ସେଇଠାରେ ତୋ'ର ଯତ୍ନ ନେବେ ।"

"ମୋତେ ଜବର୍‌ଦସ୍ତି କେଉଁଠାକୁ ନେବାକୁ ତାଙ୍କର ଏତେ ସାହସ !"

"ସାହସ କରିବେ ନିଶ୍ଚୟ—ଏବଂ ତୋ'ର କ୍ଷତି କରୁଛନ୍ତି ବୋଲି ଆତ୍ମସନ୍ତୋଷ ବି ଅନୁଭବ କରିବେ । ଆମର ଯେ ଜଜ୍—ତାଙ୍କ ଗୁଣଗ୍ରାମ ତ ତୋତେ ଜଣା—ସେ ରାଏ ଦେବେ ଯେ, ତୋ' ସମ୍ପତ୍ତି ଦେଖାମଣା କରିବାକୁ ତୁ ଅସମର୍ଥ । ସେ ତୋ'ର ଜଣେ ଅଭିଭାବକ ନିଯୁକ୍ତ କରିବେ; ସେ ଅଭିଭାବକ କିଏ ହେବେ ତା' ମୁଁ ବେଶ୍ ଅନୁମାନ କରି ପାରୁଛି । ତୋତେ ଅନୁଷ୍ଠାନରେ ରଖିବାରେ ଓ ଅଭିଭାବକ ତୋ' ସମ୍ପତ୍ତି ବୁଝିବାରେ ବହୁତ ଖର୍ଚ୍ଚ ତ ହେବ । ସେ ଖର୍ଚ୍ଚ ପାଇଁ ତୋ' ସମ୍ପତ୍ତି ବିକ୍ରୀ କରିବାକୁ ହେବ ; ତା'ର ଖରିଦ୍‌ଦାର କିଏ ହେବେ ତାହା ବି ମୋତେ ଜଳଜଳ ଦିଶୁଛି ।"

ଡାକିର ଆଖି ଜଳଜଳ ଦିଶୁଥାଏ ; ସେ ଆଁ କରି ମୋ କଥା ଶୁଣୁଥାଏ । କଥା ସରିଲାପରେ ସେ ଉପରକୁ ଚାହିଁଲା , ମୋତେ କହିଲା, "ତୁ ମୋତେ ଧଡ଼କେଇ ଦେବାକୁ ବସିଛୁ, ଏଥ୍ ! ଭଲ ସମୟ ଦେଖି ଆସିଥାନ୍ତୁ । ମୋତେ ହସ୍ତ କରିବାର ଉପଯୁକ୍ତ ସମୟ ଏ ନୁହେଁ । ସକାଳେ ଆସିଥାନ୍ତୁ କି ?—ସେତେବେଳେ ମୁଁ ଶୀତରେ ଥରୁଥାନ୍ତି, ସଂସାରଟା ସବୁଜ ବାନ୍ତି ପରି ଦିଶୁଥାନ୍ତା । ସେତିକିବେଳେ ତୋ' ମନକାମନା ପୂରଣ କରିବାର ପ୍ରକୃଷ୍ଟ ସମୟ । କିନ୍ତୁ ଏ ବେଳରେ ମୋର ଦଶଟା ଜୁଆନଙ୍କର ବଳ—କାହିଁକି ଜାଣୁ ? ପାଖରେ ବୋତଲ ଯେ ରହିଛି ।" ବୋତଲଟାକୁ ସେ ଖଣ୍ଡା ପରି ହଲାଇଲା; ମହମବତି ଆଲୁଅରେ ଦେଖିଲି, ମୋତେ ଏକଲୟରେ ଚାହିଁ ତା' ଆଖି କୋରଡ଼ରେ ପଶିଛି । "ଏଥ୍ ! ତୋତେ କହୁଛି ନା ? କହୁଛି, ବୋଧହୁଏ—ମାତାଲର ଗୋଟାଏ ରକମ ଅସାଧାରଣ ବୁଦ୍ଧିବୃତ୍ତି ଥାଏ ।"

"କିନ୍ତୁ ଯାହା ଘଟିବାକୁ ଯାଉଛି, ମୁଁ ତୋତେ ଠିକ୍ ଠିକ୍ କହୁଛି ।"

"ମୁଁ ମାନୁଛି, ତୋ କଥା ସତ । ତୁ ଯେପରି କହୁଛୁ, ସେପରି କରିବାକୁ ଷଡ଼ଯନ୍ତ୍ର ଲାଗିବା ସତ । ତୋ' କଥା ମୁଁ ବେଶ୍ ସମଝିଲି । କିନ୍ତୁ ତୁ ଯେ ମୋତେ ହସ୍ତ କରିବାକୁ ବସିଥିଲୁ, ତାହା ହୋଇ ନାହିଁ ।

ତୋ' କଥାରେ ମୋ ମନରେ ଭୂତ ଜାଗି ଉଠିଛି । ମାତାଲ ଲୋକ ଅସହାୟ ବୋଲି ଯେ ବିଶ୍ବରେ ସେଇ ମାତାଲ । ମାତାଲ ଅସାଧାରଣ ଜନ୍ତୁ, ଅସାଧାରଣ ତା'ର ସାମର୍ଥ୍ୟ । ମୋ ସଙ୍ଗେ ଯେ ଲଢ଼ିବାକୁ ବସିଛନ୍ତି, ତାଙ୍କୁ ମୁଁ ପାନେ ଦେବ; ଏଇ ମୁହୂର୍ତ୍ତରେ ତ ମୁଁ ସେମାନଙ୍କ ମୁକାବିଲା କରିବାକୁ ପ୍ରସ୍ତୁତ ହୋଇଗଲେଣି ।"

"ସାବାସ୍ ! ସାବାସ୍ ବଚ୍ଚା ! ମୁଁ ସେଇ କଥା ଶୁଣିବାକୁ ଚାହେଁ ।"

ସେ ବୋତଲକୁ ଧରି ବୋତଲବେକକୁ ବନ୍ଧୁକ ନଳପରି ମୋ' ଆଡ଼କୁ ଦେଖାଇଲେ; ମନେ ହେଲା, ସତେ ଯେପରି ସେ ମନେ କରୁଛି ବୋତଲ ଠିପିଟା ରାଇଫଲ୍ ଅଗର ମାଛି । "ମେସାଙ୍କ ଟଙ୍କା ତୁ ମୋତେ କରଜ ଦେବୁ ?"

"ହଁ ।"

"କିଛି ବନ୍ଧକ ନ ରଖି ।"

"ନାଁ, କିଛି ଦରକାର ନାହିଁ ।"

"ଏ ଟଙ୍କା ଫେରସ୍ତ ମିଳିବାର ଆଶା ହଜାର ଅଂଶରୁ ଅଂଶେ ନାହିଁ ବୋଲି ଜାଣି ସୁଦ୍ଧା ?"

"ହଁ ।"

"ଏଥି ! ମାତାଲର ଗୋଟାଏ ବଡ଼ ଦୋଷ ଅଛି ରେ—ତାହା ଅବିଶ୍ବାସ ! ମୁଁ ତୋତେ ବିଶ୍ବାସ କରିପାରୁନାହିଁ ।" ଶୁଖିଲା ଓଠରେ ସେ ଜିଭ ବୁଲାଇଲା । "ମୋ ହାତରେ ଆଣି ସେ ଟଙ୍କା ଦେବୁ ?"

"ତୋ'ର ଯେଉଁ ମୁହୂର୍ତ୍ତରେ ଇଚ୍ଛା ।"

"ମୋତେ ଟଙ୍କା ଦେ' ନା ବୋଲି ସାବଧାନ କରୁଛି, ଜାଣି ଥା ।"

"ମୁଁ ତ ନିଶ୍ଚୟ ଦେବ ।"

ଏଥର ସେ ବୋତଲଟା ସିଧା କରି ମୁହଁରେ ଉଗୁଡ଼ାଇ ଦେଲା ।

ବୋତଲର ଭିତରେ ବଡ଼ ବଡ଼ ଭୁଡ଼ୁକା ଉଠିଲା । ମଦପିଆ ସରିଲା ବେଳକୁ ତା' ଆଖି ଦୁଇଟି ଆହୁରି ଜକଜକ ଦିଶୁଥାଏ ସିନା, ସେଥିରେ କ୍ରୂର ନିର୍ମମତାର ସଙ୍କେତ ଦିଶୁଥାଏ—ଠିକ୍ ଯେପରି ଗୋଖୁର ସାପର ଆଖି । "ଏଥି, ଏଇ ହପ୍ତାରେ ଟଙ୍କାଟା ଆଣି ପାରିବୁ ?"

"ହଁ ।"

"ଏଇ ବୁଧବାର ?"

"ଆପତ୍ତି ନାହିଁ ।"

"ଆଚ୍ଛା, ବର୍ତ୍ତମାନ ପାଖରେ ଟଙ୍କା ଦଶଟା ହେବ ?"

ଦୈବାତ୍ ମୋ ପାଖରେ ଠିକ୍ ସେତିକ ଥାଏ—ପାଞ୍ଚ ଟଙ୍କିଆ ନୋଟ୍ ଗୋଟାଏ, ଗୋଟାଏ ଦୁଇ ଟଙ୍କିଆ, ଯୋଡ଼ାଏ ଗୋଲଟଙ୍କା ଓ ଗୁରଟା ସୁକ'ଣି । ସେ ସବୁତକ ମୁଁ ତା'ର ବଢ଼ାଇଥିବା ପାପୁଲିରେ ଦେଇ ଦେଲି ।

ସେ ବୋତଲଟି ନିଃଶେଷ କରିଦେଲା ଓ ଖାଲି ବୋତଲଟା ଭୂଇଁରେ ପକାଇଦେଲା । "କେଜାଣି କାହିଁକି, ତୋତେ ମୁଁ ଚଲାକ ଲୋକ ବୋଲି କେବେହେଁ ବିଚାରି ନାହିଁ, ଏଥି ! ତୁ ଭଲ ଜାଣୁ,ମୋଟାମୋଟି ଭାବରେ ମୋ'ର ମଦ ଅଭ୍ୟାସ ଛଡ଼ାଇବାକୁ ନିକୁଛି ପକ୍ଷେ ପାଞ୍ଚ ହଜାର ଟଙ୍କା ଲାଗିବ ?"

"ଲାଗୁ ।"

"ବଡ଼ ମଜାର କଥା ତ ! ସେ ଚେସ୍ ଖେଳ ନୁହେଁ, ସେ ପୂରା ଦସ୍ତୁର ଜୁଆଖେଳ । ଜୁଆଖେଳରେ ମୁଁ ଓସ୍ତାଦ୍—ପ୍ରତିପକ୍ଷକୁ ସର୍ବସ୍ୱାନ୍ତ କରିବାରେ ଓସ୍ତାଦ୍ । ତୁ ବୋଧହୁଏ ବିଚାରୁଛୁ, ମୁଁ ମୋ ପଡ଼ିଆଟା ତୋତେ ବନ୍ଧକ ଦେବି । ପୁଣି ବୋଧହୁଏ ବିଚାରୁଛୁ, ପାଞ୍ଚ ହଜାର ଟଙ୍କାର ମାଲ-ପାଣିରେ ମୋର ଦଫାରଫା ହୋଇ ଯିବ, ଓ ତୁ ଅନାୟାସରେ ଉଡ଼ା-ଜାହାଜ ଷ୍ଟେସନ୍ ପାଇଁ ଗୋଟାଏ ଉପଯୁକ୍ତ ସ୍ଥାନ ପାଇଯିବୁ !"

"ଜାନ୍, ତୁ ଅତି କଦର୍ଯ୍ୟ ଚିନ୍ତା କରୁଛୁ !"

"ତୋତେ ମୁଁ ଆଗରୁ ତାଗିଦ୍ କରି ଦେଇଛି, ମୁଁ ବଡ଼ କଦର୍ଯ୍ୟ ଲୋକ ।"

"ମୁଁ ତୋ ପାଇଁ ଯାହା ବିଚାରୁଛି ତାହା ସାଧୁଭାବରେ, ସରଳ-ଭାବରେ ବିଚାରୁଛି ବୋଲି ତୋ'ର ବିଶ୍ୱାସ ହେଉନାହିଁ ?"

"ନା, କିନ୍ତୁ ମୋ ଚିନ୍ତାର ଧାରା ମୋର, ତୋ ଉଦ୍ଦେଶ୍ୟ ତୋ'ଠାରେ ଥାଉ । ଏଥି, ତୁ ଆମର ପିଲା ଦିନର ବନ୍ଧୁତା ମନେ ରଖିଛୁ ବୋଲି କହୁଛୁ । କ'ଣ ବିଚାରୁଛୁ ? ମୋର ସେ ସବୁ କିଛି ମନେ ନାହିଁ ?

ପିଲାଙ୍କୁ ନେଇ ତୁ ଜଳ୍ପରେ ବିସ୍ତରିବୁ । ଥାଉ ସେ ସବୁ । ମୋ' ତୋଣ୍ଟି ଶୁଖିଲାଣି । ବୋତଲ ଖାଲି । ମୁଁ ଚାଲିଲି ଦାଣ୍ଡକୁ । ମୋର ମୂଲ୍ୟ ପାଞ୍ଚ ହଜାର । ଜାଣିଲୁ ?"

"ବେଶ୍ ।"

"ବୁଧବାର ଦିନ ନଗଦ ଟଙ୍କାରେ

"ମୁଁ ଠିକ୍ ଆଣିବି ।"

"କିନ୍ତୁ କିଛି ଲେଖି ଦେବି ନାହିଁ; ଦସ୍ତଖତ ନାହିଁ, କିଛି ନାହିଁ । ଆଉ ଗୋଟିଏ କଥା, ପୁରୁଣା ମାଙ୍ଗ ବୋଲି ମୋ ପ୍ରତି ସହାନୁଭୂତି ଦେଖାଉଛୁ, ଏକଥା ମନକୁ ଆଣେ ନା, ଏଥାନ୍ ! ମୋର ଏ ଯେ ନୂତନ ବଂଧୁ, ସେ ମୋର ମନ ସବୁ ଓଲଟ ପାଲଟ କରି ଦେଇଛି । ମୋ'ର ନ୍ୟାୟ ଅନ୍ୟାୟ ବିଚାର ନାହିଁ କି ମାୟା ମମତା ନାହିଁ । ଟଙ୍କା ବିନିମୟରେ ତୁ ପାଇବୁ, ମାତ୍ର ଗୋଟାଏ ପେଟପୂରା ହସ — ଉପହାସ ।"

"ହଉ ପଛେ, ମୋର ଏକମାତ୍ର ଅନୁରୋଧ, ଥରେ ଭଲ ହେବାକୁ ଚେଷ୍ଟାଟାଏ କର ।"

"ନିଶ୍ଚୟ, ନିଶ୍ଚୟ, ମୁଁ ଜବାବ୍ ଦେଉଛି, ଏଥାନ୍ ! କିନ୍ତୁ ମୋ'ର ବିଶ୍ୱାସ, ମୁଁ ତୋତେ ଏହା ପରିଷ୍କାର କହିସାରିଛି, ମାତାଲ୍‌ର ପ୍ରତିଜ୍ଞାରେ ମୂଲ୍ୟ କେତେ । ହଁ, ଟଙ୍କାଟା ଆଣ । ବର୍ତ୍ତମାନ, ତୋର ଯେତେବେଳେ ଇଚ୍ଛା ସେତେବେଳେ ତୁ ଏଠାରେ ରହିପାରୁ । ମୋ ଘର ତୋ ନିଜର ବୋଲି ବିଚାର କର । ମୁଁ ଯାଉଛି; ବିଦାୟ ଏଥି, ପୁଣି ବୁଧବାର ଦିନ ଦେଖା ହେବ ।" ସେ ତା' ସେମିକ ଖଟିଆରୁ ଉଠି ସଳଖି ହୋଇ ଠିଆ ହେଲା, ଗରମ ପାଷାକଟା କାଢ଼ି ଖଟ ଆର ପାଖକୁ ଫୋପାଡ଼ି ଦେଲା ଓ ଗୋଡ ଘୋଷାରି ଘୋଷାରି ବାହାରିଗଲା ; ପ୍ୟାଣ୍ଟ୍ ଅଣ୍ଟାରେ ଭିଡ଼ ହୋଇ ନରହି ଓହଳି ପଡ଼ୁଥାଏ ।

ମୁଁ କିଛି ସମୟ ସେଠାରେ ବସିଲି, ମହମବତୀକୁ ଚାହିଁ; ତାହା ଜଳି ଜଳି ଥାଳିଆରେ ବୋହି ପଡ଼ିଥିବା ଚର୍ବିରେ ଜଳିଲା । ସେ ଯାହା କହିଲା ସବୁ ସତ , କିନ୍ତୁ ଗୋଟିଏ କଥାରେ ମୋର ତଥାପି ଆସ୍ଥା ଥାଏ । ମୁଁ ଦେଖିଥାଏ ଯେ ତା' ପ୍ରକୃତି ଯେତେ ବଦଳି ଯାଇଛି ବୋଲି ସେ କହୁଛି, ସେତେ ବଦଳି ନଥାଏ । ବର୍ତ୍ତମାନର ବିପର୍ଯ୍ୟୟ ଭିତରେ ପର୍ବ ଜୀବ

ଟେଲରର୍ ସତ୍ତ୍ୱ ଅଦ୍ୟାପି ଲୁଚି ରହିଛି । ପୂର୍ବର ଡାକ ଟେଲରକୁ,ଆଜିର ଏ ଡାକ ଏକାବେଳକେ କାଟି ଫୋପାଡ଼ି ଦେଇ ପାରୁନାହିଁ । ମୋ'ର ସେଇ ପୂର୍ବର ଡାକଠାରେ ସ୍ନେହ ଶ୍ରଦ୍ଧା ; ତା'ର ପାଇଁ ମୁଁ ସବୁ କରି-ବାକୁ—ସେ ଯାହା ଗୃହସ୍ଥ ଭ୍ରଷ୍ଟ ତ ହା ଦେବାକୁ ତିଆର ଅଛି ! ସେ ବିଷୟରେ ମୋ ମନରେ କଣିକାଏ ମାତ୍ର ଦ୍ୱିଧା ନାହିଁ । ମୁଁ ଏଇପରି ଭାବୁଛି, ଦୂରରୁ ଶୁଭିଲା, ସେ ଫଟା ଗଳାରେ, ଉଚ୍ଚ ଅଥଚ କୃତ୍ରିମ ସ୍ୱରରେ ଗାଉଛି—

ନାବିକ ଡାକେ, ସୁନାର ତରୀ, ଗୁଲ୍, ଗୁଲ୍, ଗୁଲ୍
ଦରିଆ ଚିରି ଆକାଶପଥେ ବିହଙ୍ଗ-ଗତିରେ, ଗୁଲ୍ ।
ରାଜାର ଭାଗ୍ୟ ଧରି ଏ ପୁଅ ଜନ୍ମ ନେଇଛି ପରା
ବକ୍ଷରେ ଧରି ଯାଆକୁ ତୁ ତରୀ ଡେଣା ମେଲାଇ ପଳା ।

ନିର୍ଜନରେ କିଛି ସମୟ ବସି, ମୁଁ ମହାମକଷରର ଆଲୁଅଟି ଫୁଙ୍କି ନିଭାଇ ଦେଲି ଓ ହାଇଷ୍ଟ୍ରୀଟ୍ ବାଟେ ଘରକୁ ଫେରିଲି । ଓଇଲ ସ୍ମିଲଡ୍-ଭ୍ୟାନ୍‌ରେ ଶେଷ ପର୍ଯ୍ୟନ୍ତ ଶୋଇ ନଥାନ୍ତି ।

ସେ କହିଲେ, "କି, ଏଥ୍ ! ଆଜିକାଲି ତ ଖୁବ୍ ଚକ୍‌କର ମାରୁଛ ?
"ମନର କଥା ତ ତୁମେ ଜାଣୁଥିବ !"

"ନିଶ୍ଚୟ ! ନିଶ୍ଚୟ ! ବସନ୍ତ କାଳରେ ଟୋକାଙ୍କ ମନରେ ଡେଣା ଲାଗିଯିବାର କଥା ।"

ମୁଁ ଘରେ ଯାଇ ପହଞ୍ଚିଲା ବେଳକୁ ମେରୀଙ୍କ ନିଘୋଡ଼ ନିଦ, ମୁହଁରେ ସ୍ୱାଭାବିକ ମୃଦୁହାସ୍ୟର ରେଖା; କିନ୍ତୁ ମୁଁ ଯେତେବେଳେ ଧୀରେ ଧୀରେ ଯାଇ ତାଙ୍କ ପାଖରେ ଶୋଇ ପଡ଼ିଲି, ତାଙ୍କର ନିଦ ଅଧା ଭାଙ୍ଗି ଗଲା । ମୋ ପେଟ ଭିତରେ ଗୋଟାଏ କମିତି ଯନ୍ତ୍ରଣା ହେଉଥାଏ—ପେଟ କାଟିକାଟି ହେଉଥାଏ ଓ ହେମା ଲାଗୁଥାଏ । ମେରୀ କଡ଼ ଲେଉଟାଇଲେ ଓ ହାତବଢ଼ାଇ ମୋତେ ତାଙ୍କ ଦେହ ଆଡ଼କୁ ଟାଣି ନେଲେ—ତାଙ୍କ ଉଷୁମ ତୃଣ-ଗନ୍ଧା ଦେହକୁ ଲାଗିଗଲି । ତାଙ୍କ ସଙ୍ଗର ପ୍ରୟୋଜନ ହେଉ-ଥାଏ । ଜାଣୁଥିଲି, ଟିକକ ପରେ ମୋ ଯନ୍ତ୍ରଣା କମିବ, ମୋ ଅସ୍ୱସ୍ତି ଦୂର ହେବ, କିନ୍ତୁ ସେ ପର୍ଯ୍ୟନ୍ତ ଅପେକ୍ଷା କରି ହେଲା ନାହିଁ—ତାଙ୍କର ସଙ୍ଗ-ସୁଖ ସାଙ୍ଗେ ସାଙ୍ଗେ ଦରକାର । ତାଙ୍କର ନିଦ ଭାଙ୍ଗି ଥିଲା କି ନାହିଁ ମୁଁ ଜାଣେ ନାହିଁ । ନିଦରେ ମଧ୍ୟ ସେ ମୋର ପ୍ରୟୋଜନ ବୁଝିନେଲେ ।

ପରେ କନ୍ତୁ ତାଙ୍କ ନଦ ଘୁଞ୍ଚଲା ; ସେ କହିଲେ, "ତୁମକୁ ଭୋକ ହେଉଥିବ ବୋଧହୁଏ ?"

"ହଁ, ମେଗ୍ସ !"

"କ'ଣ ଖାଇବାକୁ ଆଣିବ ?"

"ପିଆଜଦିଆ ସ୍ୟାଣ୍ଡ୍‌ଉଇଚ୍ ଗୋଟିଏ—ନା ଦୁଇଟା ପିଆଜଦିଆ ସ୍ୟାଣ୍ଡ୍‌ଉଇଚ୍ ରାଇ-ଅଟାର ରୋଟିରେ ।"

"ତୁମ ସାଙ୍ଗେ ମୁଁ ଗୋଟାଏ ଖାଇବି ପରା ?"

"ତୁମର କ'ଣ ଭୋକ ନାହିଁ ?"

"ହଁ, ନାହିଁ କାହିଁକି ?"

ସେ ଶୋଇବା ଘରୁ ଚଟି ଖସ୍‌ଖସ୍ କରି ସିଡ଼ି ଓହ୍ଲାଇଲେ ଏବଂ ସ୍ୟାଣ୍ଡ୍‌ଉଇଚ ସାଙ୍ଗେ ଗୋଟାଏ ଡବା ଦୁଧ ଧରି ଆସିଲେ—ଦୁଇଟା ଗ୍ଲାସ ବି ଆଣିଥାନ୍ତି ।

ସ୍ୟାଣ୍ଡ୍‌ଉଇଚ୍ ଭିତରେ ପିଆଜଟାର ଭାରି ବାଗ । ମୁଁ ଆରମ୍ଭ କଲି, "ବଢ଼ିଆ ଜିନିଷ ମେଗ୍ସ !"

"ଆଗ ଖାଅ, ପଛେ ମନ୍ତବ୍ୟ ଦେବ ।"

"କିଛି ନ କହି ଖାଅ ବୋଲି ଯାହା କହିଲ, ତା'ର ମାନେ କ'ଣ ବୁଝିବି ଯେ, ବେପାର କଥା ତୁମେ ଶୁଣିବାକୁ ଚାହଁନାହିଁ ?"

"ଚାହାନ୍ତି ନାହିଁ କାହିଁକି ? କହ ।"

"ଦେଖ ଯେ, ଟଙ୍କା ଖଟାଇବାର ଗୋଟାଏ ବାଟ ମିଳିଛି । ପାଞ୍ଚ ହଜାର ଦରକାର ।"

"ଏ ଉପାୟ କଥା କ'ଣ ମିଷ୍ଟର୍ ବେକର୍ କହିଲେ ?"

"ହଁ, ତାଙ୍କର ପରାମର୍ଶ ବୋଲି କହିଲେ ଚଳେ ; ତଥାପି ଗୁପ୍ତ ରଖିବାକୁ ହେବ ।"

"ହେଉ, ଚେକ୍ ଖଣ୍ଡେ ଲେଖି ଦେଇ ଟଙ୍କାଟା ନେଇ ଆସ ।"

"ନାହିଁ ପ୍ରିୟେ ! ତୁମେ ନିଜେ ବ୍ୟାଙ୍କରୁ ଟଙ୍କାଟା ଆଣିବ । ବ୍ୟାଙ୍କରେ ବି କହିଦେବ ଯେ, ନୂଆ ଆସ୍‌ବାବ, ପରଦା ବା ସେହିପରି କିଛି ଘରସାର ଜିନିଷ ପାଇଁ ଟଙ୍କା ଉଠାଉଛ ।"

"କିନ୍ତୁ ସେ କଥା ତ ସତ ନୁହେଁ ।"

"ନହେଲେ ବ, କହିବ ଦରକାର ଅଛି ।"

"ଗୋଟାଏ କ'ଣ ଗୋପନୀୟ କଥା, ତା'ହେଲେ ?"

"ତୁମେ ତ କହୁଛ, ବେପାର ବଣିଜ କଥାରେ ମୁଣ୍ଡ ଭର୍ତ୍ତି କରି-ବାକୁ ତୁମେ ଗୃହ ନାହିଁ ।"

"ହଁ, ଠିକ୍—ମୋ'ର ଯେ ବିଷୟରେ କିଛି ଜାଣିବା ଦରକାର ନାହିଁ । ନ ଜାଣିଲେ ମୋତେ ଭଲ । ପିଆଜଟା କେଡେ ଘିଗୁଆ । ଆଚ୍ଛା, ମିଷ୍ଟର ବେକର୍ ଏ କାରବାର ପସନ୍ଦ କରିବେ ଟି ?"

"ତାଙ୍କ ନିଜ ଟଙ୍କା ଲଗାଣ ହୋଇଥିଲେ ବେଶ ପସନ୍ଦ କରନ୍ତେ ।"

"ଏ ଟଂକା ତୁମର କେବେ ଦରକାର ?"

"କାଲି ।"

"ଏ ପିଆଜଟା ମୁଁ ଖାଇ ପାରିବି ନାହିଁ ! ନଖାଇ ବି ମୋ ଦେହରୁ ପିଆଜିଆ ଗନ୍ଧ ବାହାରୁଥିବ, ମନେ କରୁଛି ।"

"ତୁମେ ତ ମୋର ରଜନୀଗନ୍ଧା ।"

"ମେରୁଲେଙ୍କ କଥା ମନରୁ ଯାଉନାହିଁ ।"

"କେଉଁ କଥା ?"

"ସେଇ ତାଙ୍କର ଆମ ଘରକୁ ଆସିବା ଓ ପିଲାଙ୍କ ପାଇଁ ମିଠେଇ ଆଣିବା ମ !"

"ଭଗବାନ୍ ବିଚିତ୍ରକର୍ମୀ, ବିଚିତ୍ରଲୀଳାରେ ତାଙ୍କ ଇଚ୍ଛା ପୂରଣ କରନ୍ତି ।"

"ଉଁଃ ! ଧର୍ମକୁ ଏମିତି ଟାପରା କରନାହିଁ ; ଇଷ୍ଟର୍ ଯାଇ ନାହିଁ ପରା !"

"କେତେ ବେଳ୍ ଯାଇସାରିଲଣି; ଜାଣ ତ ବର୍ତ୍ତମାନ, ଗୋଟାଏ ପରର !"

"ବାପ୍‌ରେ ! ଆମେ ଶୋଇବା ଦରକାର ।"

" 'ଆହା, ସେଇ ତ ଅଡୁଆ' :—ମୋର ନୁହେଁ, ସେକ୍‌ସ୍‌ପିଅରଙ୍କ କଥା ଉଦ୍ଧାର କରୁଛି ।"

"ପ୍ରତି କଥାରେ ତୁମର ଖାଲି ଥଟ୍ଟାତାମସା ।"

କିନ୍ତୁ ଶୋଇବା ସମ୍ଭବ ନହେବା ମୁଁ ଥଟ୍ଟାରେ କହି ନ ଥିଲି ।

ମୋ ପେଟଭିତରର ଅସ୍ୱସ୍ତି ଛାଡ଼ିଲା ନାହିଁ । ତା' ବିଷୟ ମୁଁ ଭାବୁ ନ ଥାଏ ସିନା, ସେ ତା'ର ଯନ୍ତ୍ରଣା ଦେଇ ଚାଲିଥାଏ । ବେଳେ ବେଳେ ସେ ବିଷୟରେ ଅବହିତ ହୋଇ ଭାବୁଥାଏ— ମୋର ଏ ଅସ୍ୱସ୍ତି କାହିଁକି ? ଏଭଳି କିଛି କାର୍ଯ୍ୟ ନାହିଁ ଯାହା ଦେହସୁହା ହୋଇ ନ ଯାଏ— ଅବଶ୍ୟ ଦେହରେ ଚଳି-ଯିବାକୁ ଟିକିଏ ସମୟ ଦରକାର । ବହୁତ ଦିନ ହୋଇଗଲାଣି, ମୁଁ ଥରେ ଗୋଟାଏ ଡାଇନାମାଇଟ୍ କାରଖାନାରେ କାମ କରୁଥିଲି - ମୋ'ର କାମ ଥିଲା, ଗୋଦାମରୁ ନାଇଟ୍ରୋ ଗ୍ଲିସରିନ୍ ଠେଲାଗାଡ଼ିରେ ଆଣି ମେସିନ୍ ପାଖରେ ପହଞ୍ଚାଇବା । କାମଟାରେ ବିପଦ ଥିବାରୁ ମୋତେ ଭଲ ଦରମା ମିଳୁଥାଏ । ପ୍ରଥମେ ପଦେପଦେ ମୋତେ ଡର ମାଡ଼ୁଥିଲା ; ହପ୍ତେ ଖଣ୍ଡେ ପରେ ଏଇଟା ହୋଇଗଲା ମାମୁଲି କାମ । ସେ କଥା କ'ଣ ? ଖାଦ୍ୟ-ସାମଗ୍ରୀ ଦୋକାନରେ ଗୁମାସ୍ତା, କାମଟା ତ ସ୍ୱାଭାବିକ ମନ ହେଲାଣି । ମଣିଷ ଯେଉଁଥିରେ ଅଭ୍ୟସ୍ତ ସେ କାମଟା ତାକୁ ସୁଖ ଲାଗିଯାଏ ; ଯେଉଁ-ଥିରେ ଅଭ୍ୟସ୍ତ ନୁହେଁ ତାହା ଅଡୁଆ ଅଡୁଆ ଲାଗେ ।

ଅନ୍ଧାରରେ ଖଟରେ ପଡ଼ିରହି ଆଖି ଆଗରେ ନାଲି ଦାଗ-ସବୁ ପହଁରିବାର ଦେଖି ଦେଖି ମୁଁ ମୋ କାର୍ଯ୍ୟର ନ୍ୟାୟାନ୍ୟାୟ ବିଚାରି-ବାକୁ ଲାଗିଲି—ଯୁକ୍ତି ଦେଇ କହନ୍ତି ବିବେକର ଆଘାତ ! ମୋ ମନରେ କୌଣସି ଦାଗ ଲାଗିବାର ମନେ ହେଲା ନାହିଁ । ମନକୁ ମନ ପଚାରିଲି, ମୋ'ର ଗନ୍ତବ୍ୟପଥ ଯାହା ଠିକଣା କରିଛି, ସେ ପଥ ଧରିବି ନା ଗତି ବଦ-ଳାଇବି—ଏକାଥରକେ ୯୦ ଡିଗ୍ରୀ ସମକୋଣରେ ଦିଗ ପରିବର୍ତ୍ତନ କରି-ଦେବି ? ଗନ୍ତବ୍ୟପଥ ପୂରା ବଦଳାଇବା ଯେ ମୋ ପକ୍ଷରେ ଅସମ୍ଭବ ତାହା ମନେ ହେଲା ନାହିଁ; କିନ୍ତୁ ବଦଳାଇବି କାହିଁକି ? ଯେଉଁ ରାସ୍ତା ଧରିଛି, ସେଥିରେ କୌଣସି ଦୋଷ ତ ଦେଖିଲି ନାହିଁ ।

ମୋର ବର୍ତ୍ତମାନର ଢଙ୍ଗରଙ୍ଗ ମୋତେ ବେଶ୍ ସୁଖ ଲାଗୁଥାଏ । ମୋତେ ଜଣା ପଡ଼ୁଥାଏ, ମୋ ଭିତରେ ଲୁଚିକରି ରହିଥିବା ଗୋଟାଏ ନୂଆ ଶକ୍ତି ମୁଁ ଆବିଷ୍କାର କରିଛି; ପିଲା ଦିନେ ମଣିଷ କଳ୍ପନା କରେ ଉଡ଼ି ପାରନ୍ତା ବୋଲି ; ମୋ କ୍ଷେତ୍ରରେ ସେ କଳ୍ପନା ଏବେ ସତ ହେଲା ପରି ଲାଗୁଥାଏ । ଅନେକ ସମୟରେ ମୁଁ ଘଟି ଯାଇଥିବା ଘଟଣା, ଦୃଶ୍ୟ ଓ କଥାବାର୍ତ୍ତାର ପୁନରାବୃତ୍ତି ମନେ ମନେ କରେ । ଏପରି କରିବା ଫଳରେ

ଏହି ଘଟଣା ଓ କଥାବାର୍ତ୍ତାର କେତେକ ବିଷୟ ନୂଆ କରି ବିଶେ, ଯାହା ଘଟଣା ଘଟିଲା ବେଳେ ଆଖିରେ ପଡ଼ି ନ ଥିଲା ।

ମ୍ୟାରୁଲେ ଆମ ଘରକୁ ଆସି ମିଠେଇ ଦେବା ମେଘିଙ୍କୁ ଆଶ୍ଚର୍ଯ୍ୟ ଲାଗୁଛି । ତାଙ୍କୁ ସେପରି ଲାଗିବା ବିଚିତ୍ର ନୁହେଁ । ମୁଁ କିନ୍ତୁ ବିଚାରିଥିଲି, ମୁଁ ତାଙ୍କୁ ଠକିଲି ନାହିଁ ବୋଲି ମୋତେ ସାବାସ୍ ଦେବା ନିମନ୍ତେ ସେ ଉପହାର ଦେଇଗଲେ । ମେଘି ସେ ବିଷୟ ଏବେ ଉତ୍‌ଥାପନ କରିବାରୁ ମୁଁ ଘଟଣାଟା ମନେ ମନେ ଆଉଡ଼ାଇଲି, ସେତେବେଳେ ମନକୁ ଆସି-ନଥିବା କୌଣସି କାରଣର ସନ୍ଧାନ ପାଇବା ସକାଶେ । ପୁନରାବୃତ୍ତି କରିବା ଫଳରେ ମନେ ହେଲା—ମ୍ୟାରୁଲେ ତ କୌଣସି ଅଜ୍ଞାତ କାର୍ଯ୍ୟ ପାଇଁ ପୁରସ୍କାର ଦେବା ଲୋକ ନୁହନ୍ତି—ଭବିଷ୍ୟତରେ ମୋ'ଠାରୁ କିଛି କାର୍ଯ୍ୟ ହାସଲ କରିବା ଉଦ୍ଦେଶ୍ୟରେ ସେ ଏ ମିଠେଇ ପୁଡ଼ିଆ ଲାଞ୍ଚ ଦେଇ-ପାରି ଥାନ୍ତି । ମୁଁ ତାଙ୍କ ସ୍ୱାର୍ଥସାଧନ କରିବାରେ ସହାୟ ହେବି, ସ୍ୱାବାଦ୍ ମୋ ସାଙ୍ଗେ ତାଙ୍କର ଅନ୍ୟ କୌଣସି ସଂପର୍କ ତ ରହିବାର କଥା ନୁହେଁ । ବେପାର ବିଷୟରେ ସେ ମୋତେ ଯେଉଁ ହିତୋପଦେଶ ଶୁଣାଇଥିଲେ, ତାଙ୍କର ସିସିଲି ଫେରିବା ବିଷୟରେ ଆମର ଯେଉଁ କଥାବାର୍ତ୍ତା ହୋଇ-ଥିଲା—ସେ ସବୁ ମନେ ପକାଇଲି । ମନେ ହେଲା, କୌଣସି କାରଣରୁ, କୌଣସି ବିଷୟରେ ମ୍ୟାରୁଲେଙ୍କର ମାନସିକ ଦ୍ୱନ୍ଦ୍ୱ ଆସିଛି । ମନେ ହେଲା, ବୋଧହୁଏ ସେ ମୋ'ଠାରୁ କିଛି ଗୁହାନ୍ତି, ବା କୌଣସି ବିଷୟରେ ମୋର ସାହାଯ୍ୟ ତାଙ୍କର ପ୍ରୟୋଜନ ହେଉଛି । ଏ ବିଷୟ ନିଶ୍ଚିତ ଭାବେ ଜାଣି-ବାର ଗୋଟାଏ ଉପାୟ ଅଛି । ସାଧାରଣତଃ ସେ ମୋର ଯେଉଁ ଅନୁରୋଧ ରକ୍ଷା ନ କରନ୍ତେ, ସେହିଭଳି ଗୋଟାଏ ଅନୁରୋଧ କରିବି ; ଯଦି ସେ ମୋର ଅନୁରୋଧ ରକ୍ଷା କରନ୍ତି, ତେବେ ପରିଷ୍କାର ଜଣା ପଡ଼ିବ ଯେ ତା-ଙ୍କର ମନ କୌଣସି କାରଣରୁ ଚହଲି ଯାଇଛି, ସେ ବିଶେଷଭାବେ ବିଚ-ଳିତ ହୋଇଛନ୍ତି । ଯେତୁ ତ ଗଲା ମ୍ୟାରୁଲେଙ୍କ କଥା ! ତା'ପରେ ମାର୍ଗି ! ଏ ପ୍ରାଣୀଟିକୁ ମାର୍ଗି ବୋଲି କହିବାରୁ ତା' ବିଷୟର ଗୋଟାଏ ଧାରଣା ହେଉଛି । ତା' ବିଷୟରେ ବିଚାରିଲି, 'ମାର୍ଗି ! ସ୍ୱପ୍ନରେ ସୁନ୍ଦରୀ ତୁ ମୋ ଆଗରେ ଆସି ହାଜର ହେଉଛୁ ! ମାର୍ଗି ! ତୋ'ର ସ୍ୱରୂପ ଜାଣିବା ସକାଶ ମୁଁ ମୋ ସଂସାରର ସବୁ — —।'

ସ୍ମୃତି ପଟଳେ ଭାସୁଥିବା ନାନା ଚିତ୍ରମାନଙ୍କୁ ଅନ୍ଧାରରେ ଗୁନ୍ଥି ଗୁନ୍ଥି ମାର୍ଗିଙ୍କ ସଙ୍ଗେ ମୋର ପରିଚୟର ପୁନରାବୃତ୍ତି କରିବାକୁ ଲାଗିଲି—ଠିକେ ଠିକେ ଯାହା ଘଟିଥିଲା, ଯାହା ଦେଖିଛି ଓ ଅନୁଭବ କରିଛି ତାକୁହିଁ ମନେ ପକାଇଲି, କଳ୍ପନାରୁ କିଛି ଯୋଡ଼ିଲି ନାହିଁ । ଅନେକ ଦିନ—ବୋଧହୁଏ ଦୁଇ ବର୍ଷ ହେବ—ମିସେସ୍ ୟୁଙ୍ଗ-ହାଣ୍ଟ ନାମିକା ଭଦ୍ର ମହିଳାଟି ମୋ ସ୍ତ୍ରୀଙ୍କ ସଙ୍ଗେ ସାଙ୍ଗ ହେବାର ମୁଁ ଦେଖିଲିଣି । ସେ ଦୁହେଁ ମୋ ଆଗରେ ଯାହା ମିଷ୍ଟାଳାପ କରୁଥିଲେ, ତାହା ଆମୂଳଚୂଳ ମୁଁ ଶୁଣିନାହିଁ । ଯେତିକି ଶୁଣିଥିଲି ସେତିକି ମନେ ପକାଇଲି । କାଳ କ୍ରମେ ମିସେସ୍ ୟୁଙ୍ଗ—ହାଣ୍ଟ ମୋ ମନରେ ମାର୍ଗି ୟୁଙ୍ଗ୍ ହାଣ୍ଟ ରୂପ ପାଇଲେ— ଆଉ କିଛି ଦିନ ପରେ ସେ ହୋଇଗଲେ ଖାଲି 'ମାର୍ଗି' । ଗତ ଗୁଡ୍ ଫ୍ରାଇଡ଼େ ପୂର୍ବରୁ ଏହି ମାର୍ଗି, ଦୋକାନକୁ ନିଶ୍ଚୟ ଆସିଥିବେ, କିନ୍ତୁ ସେ କଥା ମୋ'ର ମନେ ନାହିଁ । ଏଇ ଗୁଡ୍ ଫ୍ରାଇଡେ ଦିନ ସେ ମତେ ଯେପରି ଜଣାଇଦେଲେ, ମୁଁ ଆସିଲି ବୋଲି । ତା' ପୂର୍ବରୁ, ମୁଁ ଯେପରି ତାଙ୍କ ଉପରେ ନଜର ଦେଇ ନାହିଁ, ସେ ବୋଧହୁଏ ସେଇପରି ମୋ ଉପରେ ନଜର ପକାଇ ନ ଥିଲେ । ସେଇ ଦିନଠାରୁ ତାଙ୍କ ସତ୍ତା ମୋ ମନକୁ ଆବୋରି ରହିଛି—ସେ ମୋତେ ଚହଲାଇ ଦେଇଛନ୍ତି, ଚଞ୍ଚଳ କରି ପକାଉଛନ୍ତି । କିନ୍ତୁ ସେ ମୋ'ଠାରୁ ଚାହାନ୍ତି କ'ଣ ? ସେ ଜଣେ ଏକାକିନୀ ସ୍ତ୍ରୀଲୋକ, କାମଧନ୍ଦା ବିଶେଷ କିଛି ନାହିଁ—ନିଷ୍କର୍ମ ଜୀବନରେ ଅବସର ବହୁତ ଥିବାରୁ ଖାଲି ମଜା ଦେଖିବାକୁ ସେ ମୋତେ ଏଭଳି ଉସ୍କାଉଛନ୍ତି, ନା କୌଣସି ଗୋଟାଏ ଅଭିସନ୍ଧି ରଖି ଏପରି କରୁଛନ୍ତି ? ମୁଁ ତ ବେଶ୍ ଅନୁଭବ କରୁଛି, ସେ ଜାଣିଜାଣି ମୋତେ ତାଙ୍କ ପ୍ରତି ଆକୃଷ୍ଟ କରିଛନ୍ତି ଓ ତାଙ୍କର ପ୍ରଭାବ ମୋ ଉପରେ କିପରି ସ୍ଥାୟୀ ହୋଇ ରହିବ ସେ ଦିଗରେ ଧାରାବାହିକ ଉଦ୍ୟମ ଚଳାଇଛନ୍ତି । ଦ୍ୱିତୀୟ ଥର ଯେଉଁ ଭାଗ୍ୟ ଗଣନା, ତାହା ତ ସେ ପୂର୍ଣ୍ଣ ଆନ୍ତରିକତା ସହିତ ଆରମ୍ଭ କରିଥିଲେ — ବିଧିବଦ୍ଧ ଭାବରେ, ଯଥାରୀତି ଭାଗ୍ୟଗଣନା ପ୍ରକ୍ରିୟାଟା ଚାଲିବ ବୋଲି ତା'ଙ୍କର ଉଦ୍ଦେଶ୍ୟ ଥିଲା । ମଝିରେ ଗୋଟାଏ କ'ଣ ଘଟିଲା, ଯାହା ଫଳରେ ସେ ହଠାତ୍ ତା'ସ ଗୋଟାଇ ପକାଇଲେ । ତାଙ୍କୁ ବିଚଳିତ କଲା ପରି କିଛି ମେସ୍ତ କହିନାହାନ୍ତି କି ମୁଁ କହି ନାହିଁ । ତାଙ୍କର ଭାବାନ୍ତର ହେଲା କାହିଁକି ? ସତେ

କ'ଣ ସେ ମାପଟା ଏ ମନଶ୍ଚକ୍ଷୁରେ ଦେଖିଲେ ? ଯଦି ଦେଖିଥାନ୍ତି, ତେବେ ଭାଗ୍ୟଗଣନା ବନ୍ଦକରି ଦେବାର ତାହା ଯଥାର୍ଥ, ପ୍ରକୃତ କାରଣ ହେବାର କଥା । ମାପ ଦେଖିବାଟା ଆଳ ହୋଇପାରେ । ବାସ୍ତବରେ ତାଙ୍କର ହୁଏତ ମଣିଷର ମନ-କଥା ଜାଣିବାର କ୍ଷମତା ଅଛି ; ସେଇ କ୍ଷମତା ଫଳରେ ସେ ଅଜ୍ଞାତରେ ଅନ୍ୟର ଚିନ୍ତାରାଜ୍ୟରେ ଅନଧିକାର ପ୍ରବେଶ କରି ପାରୁଛନ୍ତି । ମୋ'ର ମାନସିକ ପରିବର୍ତ୍ତନ ହେଉଥିବା ସେ ଧରି ପାରିଥିବାରୁ ମୋର ଏଭଳି ସନ୍ଦେହ ହେଉଛି । ସତେ କ'ଣ ସେ ମୋର ମନର କଥା ଧରି ପାରିଛନ୍ତି, ନା କାକତାଳିକ ନ୍ୟାୟରେ ମୋ'ର ମନର ପରିବର୍ତ୍ତନ ବେଳେ ତାଙ୍କର ଭାବାନ୍ତର ଆସିଛି ? ସେ ଯାହାହେଉ, ଆଗରୁ ଯିବାକୁ ନ ବିଚାରି ସେ ମଣ୍ଟାକ୍ ପଳାଇଲେ କିଆଁ ? ପ୍ରଫେସରକ ବଗର୍ ସଙ୍ଗେ ଯାଇ ମିଶିଲେ କିଆଁ ? ତା'ଠାରୁ ମୋ' କଥା ଶୁଣି, ତାହା ମ୍ୟାରୁଲେଙ୍କ ଆଗେ ଫୋଡ଼ିଲେ ବା କିଆଁ ? ମୋର ତ ବିଶ୍ୱାସ ହେଉନାହିଁ ଯେ, ସେ ନ ବୁଝି ନ ବିଚାରି ମୋ କଥା ଅତର୍କିତରେ ମ୍ୟାରୁଲେଙ୍କୁ କହି ପକାଇଛନ୍ତି । ଆମ ଉପର ଘରର ବହିଥାକମାନଙ୍କରେ ଠାଏ କେଉଁଠି ବେରିଙ୍ଗ୍‌ଙ୍କ ଜୀବନୀ ଅଛି—ନା, ବେରିଙ୍ଗ୍ ନୁହେଁ, ବ୍ୟାରିନୋଭ୍, ଅଲେକଜାଣ୍ଡର୍ ବ୍ୟାରିନୋଭ୍ । ୧୮୦୦ ଖ୍ରୀଷ୍ଟାବ୍ଦ ପାଖାପାଖି ଏଇ ଋସିଆନ୍ ବ୍ୟାରିନୋଭ୍ ଆଲସ୍କାର ଗଭର୍ଣ୍ଣର ଥିଲେ । ଗୁଣିବିଦ୍ୟା କରୁଥିବା ମାଇକନଆଁଙ୍କୁ ଆଲସ୍କାରେ ବନ୍ଦୀ କରାଯାଉଥିଲା ବୋଲି ତାଙ୍କ ଜୀବନୀରେ ଉଲ୍ଲେଖ ଥାଇପାରେ । ମାର୍ଗିଟାଙ୍କ ଜେଜେମା କଥା ମନରୁ ଗଢ଼ି କହିଲା ପରି ବିଶ୍ୱାସ ହେଉନାହିଁ । ବ୍ୟାରିନୋଭଙ୍କ ଜୀବନୀଟା ଦରାଣ୍ଡିବାକୁ ହେବ । ମେରିଙ୍କୁ ନ ଉଠାଇ ଉପର ଟୁଙ୍ଗୀକୁ ଖସି ଯାଇ ବହିଟା ଖୋଜିଲେ ଭଲ ହୁଅନ୍ତା ବୋଲି ଠିକ୍ କଲି ।

ସେତିକିବେଳେ ଶୁଭିଲା, ଆମ ପୁରୁଣା ଓକ କାଠ ସିଡ଼ିର କଟ-କଟ ଶବ୍ଦ । କାନ ଡେରିଲି, ଆଉ ଥରେ ଶୁଭିଲା, ପୁଣି ଆଉ ଥରେ । ରାତିରେ ଥଣ୍ଡା ପଡ଼ିବାରୁ ସିଡ଼ିର କାଠ ସଂକୁଚିତ ହୋଇ କଟକଟ ହେଉଛି ବୋଲି ପ୍ରଥମେ ବିଚାରିଥିଲି । ତୃତୀୟବାର ଶବ୍ଦ ଶୁଣିବାରେ ଠଉରାଇଲି ଯେ ଏଲେନ୍‌ର ପଦଶବ୍ଦ—ଏଲେନ୍ ନିଦରେ ଚାଲେ ; ଆଜି ବି ବାହାରିଛି ।

ମୋ ଝିଅ ପ୍ରତି ମୋର ଘୋର ଶ୍ରଦ୍ଧା ; ବେଳେ ବେଳେ ତାଙ୍କୁ ମୁଁ ଡରେ ମଧ୍ୟ , କାରଣ, ସେ ଜନ୍ମରୁ ଯେପରି ଗୁଣକ ଓ ଶ୍ରଦ୍ଧାଳୁ, ସେହିପରି ଈର୍ଷାପରାୟଣା । ତା' ଘରକୁ ତ ସେ ସବୁବେଳେ ଈର୍ଷାକରେ ; ବେଳେ-ବେଳେ ମୁଁ ବିଚାରେ, ମୋ ପ୍ରତି ମଧ୍ୟ ତା'ର ଈର୍ଷା । ମୋ'ର ମନେ ହୁଏ, ପିଲାଦିନୁ ପୁରୁଷ ଓ ସ୍ତ୍ରୀର ଲିଙ୍ଗ-ଗତ ପାର୍ଥକ୍ୟ ବିଷୟରେ ଧାରଣା ତା'ର ହୋଇଯାଇଛି । ବୋଧହୁଏ ପିତାମାନଙ୍କ ଆଖିକୁ ଇ ଏ କଥାଟା ଦିଶେ । ଅତି ପିଲାଦିନେ, ମନା ନ ମାନି, ସେ ପୁରୁଷ ଲିଙ୍ଗରେ ହାତ ମାରିବାକୁ ଅତି ଶ୍ରଦ୍ଧାକରିବାରୁ ମୁଁ ବିବ୍ରତ ହୋଇ ପଡ଼ୁଥିଲି । ଟିକିଏ ବଡ଼ ହେବାରୁ ତା'ର ମନୋବୃତ୍ତିର ପରିବର୍ତ୍ତନ ହେଲା ; ସେ ମନର ଭାବ ଲୁଚାଇବାକୁ ଶିଖିଲା । ମାସିକ ପତ୍ରିକାମାନଙ୍କରେ ଝିଅପିଲାମାନଙ୍କର ଯେଉଁ ପବିତ୍ର ସରଳତାର ବର୍ଣ୍ଣନା କରାଯାଏ, ଏଲେନ୍‌ଠାରେ ତାହାର ଲେଶ ସୁଦ୍ଧା ଦେଖିବାକୁ ପାଇନାହିଁ । ତା' ଯୋଗୁଁ ମୋ ଘରର କାନ୍ଥବାଡ଼ ପର୍ଯ୍ୟନ୍ତ ଅଶାନ୍ତ ଓ ଉଦ୍‌ବେଗରେ ଦୋହଲି ଯାଉଥିଲେ । ମୁଁ ପଢ଼ିଛି, ମଧ୍ୟଯୁଗରେ ଲୋକେ ବିଶ୍ୱାସ କରୁଥିଲେ ଯେ ନୂଆ ହୋଇ ଜ୍ଞାନ ପାଇଥିବା ଝିଅଙ୍କୁ ଡାହାଣୀ ଲାଗେ; ସେ କଥା ମିଛ ବୋଲି ଅଦ୍ୟାପି କହି ପାରିବି ନାହିଁ । କିଛି ଦିନ ତଳେ ଆମ ଘରେ ଭୂତ ଲାଗିଛି ବୋଲି ଆମେ କହୁଥିଲୁ— ପୁରା ବିଶ୍ୱାସ କରି ନୁହେଁ, ଅଧିକମାତ୍ରା ଅବିଶ୍ୱାସ ଓ ଥଟ୍ଟାରେ । କାନ୍ଥରେ ଟଙ୍ଗା ହୋଇଥିବା ଚିତ୍ର କାନ୍ଥରୁ ଖସି ପଡ଼େ; ଥାଳଗିନା ଥାକରୁ ଧଡ଼ଧାଡ଼ ହୋଇ ତଳେ ପଡ଼ିଯାଏ ; ଓପର ଟୁଙ୍ଗାରେ ଧଡ଼ଧାଡ଼ ଶବ୍ଦ ଓ ତଳେ ଗୃହରେ ଦୁଆରି ବାଡ଼େଇବା ଶବ୍ଦ ଶୁଭେ । ଏଭଳି କାହିଁକି ହେଉଥିଲା ମୁଁ କହି ପାରିବି ନାହିଁ , ମାତ୍ର ମୁଁ ଏଲେନ୍ ଉପରେ ପୁରା ନଜର ରଖିଥାଏ ; ସେ ଲୁଚାକରି କୁଆଡ଼େ କେତେବେଳେ ଯିବାଆସିବା କରୁଛି ତୀକ୍ଷ୍ଣ ଦୃଷ୍ଟିରେ ଲକ୍ଷ୍ୟ କରୁଥାଏ । ଘରେ ବିରାଡ଼ି ଯେମିତି ଏଣେ ତେଣେ ବୁଲେ, ଏଲେନ୍ ସେହିପରି ବୁଲେ । ଏ ବିଷୟରେ ମୁଁ ନିର୍ଭର ଭାବେ କହି-ପାରେ ଯେ, ଘରେ ଯେ ଚିତ୍ର ପ୍ରଭୃତି ଖସୁଥିଲା, କଂସାବାସନ ପଡ଼ୁଥିଲା ବା ବାଡ଼ିଆ ବାଡ଼େଇ ଶବ୍ଦ ହେଉଥିଲା ତାହା ଏଲେନ୍‌ର କାର୍ଯ୍ୟ ନୁହେଁ; କିନ୍ତୁ ଏକଥା ମଧ୍ୟ ସ୍ୱୀକାର କରିବାକୁ ହେବ ଯେ ସେ ଘରେ ନ ଥିବାବେଳେ ଏ ଉପଦ୍ରବସବୁ ଘଟୁ ନ ଥିଲା । ଭୂତ ତା' କାମ କଲାବେଳେ, ଏଲେନ୍

ହୁଏତ ନିଷ୍କ୍ରିୟଭାବେ, ଉପରକୁ ଚାହିଁ ବସିଥାଏ; କିନ୍ତୁ ସେ ଭୂତ-ଉପଦ୍ରବ ବେଳେ ଘରେ ଥିବା ମୁକୁର ।

ମୋ ପିଲାଦିନେ ଶୁଣିଥିଲି ଆମ ପୁରାତନ ହ'ଲ ଭବନରେ ବହୁଦିନ ଆଗେ ଗୋଟେ ଯକ୍ଷ ବା ବ୍ରହ୍ମ-ରାକ୍ଷସ ରହୁଥିଲା । ସେ ଥିଲା ମୋ'ର ପ୍ରୋଟେଷ୍ଟାନ୍-ମତାବଲମ୍ବୀ ଜଳଦସ୍ୟୁ ପ୍ରପିତାମହଙ୍କ ଭିତରୁ ଜଣକର ପ୍ରେତ । ଏହି ଯକ୍ଷ ବିଷୟରେ ଯେଉଁ କିମ୍ବଦନ୍ତୀମାନ ଶୁଣିଥିଲି ସେଥିରୁ ଜଣାପଡ଼େ, ସେ ଥିଲା ଜଣେ ଭଦ୍ରଭୂତ – ସେ କି ଘର ଭିତରେ ଖାଲି ବୁଲାବୁଲି କରୁଥିଲା ଓ ବେଳେ ବେଳେ ଗଁ ଗଁ ଶବ୍ଦ କରୁଥିଲା— ଯକ୍ଷର ସୁଶୀଳତା ବିଷୟରେ ପ୍ରକୃଷ୍ଟ ପ୍ରମାଣ । ତା'ର ଅଦୃଶ୍ୟ ରୂପରେ ସିଡ଼ି କଟକଟ କରୁଥିଲା ; ବଂଶରେ କାହାର ମୃତ୍ୟୁ ସନ୍ନିକଟ ହେଲେ ସେ କାନ୍ଥରେ ବାଡ଼ାଉଥିଲା - ବେଶ ସଦାଚାରୀ ଓ ସୁରୁଚି-ସମ୍ପନ୍ନ ଥିଲା ଏ ଯକ୍ଷ । କିନ୍ତୁ ପ୍ରଥମେ ଯେଉଁ ଭୂତ କଥା କହିଲି, ସେ ଥିଲା ଏହାଠାରୁ ସମ୍ପୂର୍ଣ୍ଣ ଅଲଗା—ବଦ୍‌ମେଜାଜ୍, ଈର୍ଷାପରାୟଣ, ଅନିଷ୍ଟକାରୀ ଓ ଅତି ପ୍ରତିହିଂସାପ୍ରବଣ । ବହୁମୂଲ୍ୟ ଜିନିଷ ପାଇଲା ତ ଭାଙ୍ଗିଲା । କାଳକ୍ରମେ ସେ ବିଦାୟ ନେଲା । ମୁଁ ଭୂତର ଅସ୍ତିତ୍ୱ କେବେ ସ୍ୱୀକାର କରି ପାରି ନାହିଁ । ତାହାର ଅସ୍ତିତ୍ୱରେ କେହି ବିଶ୍ୱାସ କଲେ ମୁଁ ଥଟ୍ଟାକରେ—ଯଦିଓ ଭଙ୍ଗା ଚିନାଗୁଡ଼ାକ ଓ ଭଙ୍ଗା ବାସନକୁସନ ଭୂତର ସୁସ୍ପଷ୍ଟ ପ୍ରମାଣ ରୂପେ ମିଳୁଥାଏ ।

ଭୂତ ଆମ ଘରୁ ବିଦାୟ ନେବା ଦିନୁଁ, ଏଲେନ୍ ନିଦରେ ବୁଲା-ବୁଲି କରିବାର ଆରମ୍ଭ କରିଛି । ଆଜି ଶୁଣିଲି, ତା'ର ଧୀର ଅଥଚ ଦୃଢ଼ ପଦଶବ୍ଦ—ସେ ସିଡ଼ିରେ ତଳକୁ ଓହ୍ଲାଉଥାଏ । ଘରେ ଏପରି ଉପଦ୍ରବ ଘଟୁଥିବା ବେଳେ ମୋ ମେଗି, ଶେଯରେ ମୋ ପାଖେ ଶୋଇ ଗଭୀର ନିଃଶ୍ୱାସ ଛାଡ଼ୁଥାନ୍ତି ଓ ବାଡ଼ ବାଡ଼ କରି ବକବକୋଉଥାନ୍ତି । ହଠାତ୍ ଗୋଟାଏ ପବନ ବାହାରେ ଗଛ ତଳେ ପଡ଼ିଥିବା ଡାଳପତ୍ରର ଗୁଚ୍ଛକୁ ଆନ୍ଦୋଳିତ କରିଦେଲା ।

ମୁଁ ଶେଯରୁ ଆସ୍ତେ ଆସ୍ତେ ଖସିଲି, ଏବଂ ନିଃଶବ୍ଦରେ ମୋ'ର ଗାଧୁଆ ପୋଷାକ ପିନ୍ଧିଲି । ଲୋକେ ବିଶ୍ୱାସ କରନ୍ତୁ, ନିଦରେ ବୁଲୁଥିବା ମଣିଷକୁ ଚମକାଇ ଚେତା କରାଇଦେବା ଉଚିତ ନୁହେଁ । ମୋର ସେଇ

ବିଶ୍ୱାସ । ଏଲେନ୍ ଚମକି ନ ପଡ଼ିବ, ସେଥିପାଇଁ ମୁଁ ଖୁବ୍ ଚୁପ୍ ଚୁପ୍ ମୋ କାମ କରୁଥାଏ ।

ମୋ ଝିଅ ବିଷୟରେ ଉପରେ ଯାହା ସବୁ କହିଲି ସେଥିରୁ ମନେ ହେବ, ସତେ ଯେପରି ମୁଁ ମୋ ଝିଅକୁ ସୁଖ ପାଏ ନାହିଁ । ପ୍ରକୃତରେ ତା'ପ୍ରତି ମୋ'ର ଗଭୀର ବାତ୍ସଲ୍ୟ—କିନ୍ତୁ ତା'ର ଚଳଣି ଓ ଆଚରଣ ସମଝି ନପାରିବାକୁ ମୁଁ ତା'କୁ ଟିକିଏ ଭୟ ବି କରେ ବୋଲି ମାନୁଛି ।

ଆମ ସିଡ଼ିର ପାହାଚ ପଟାରେ ଗଲାବେଳେ ଯେବେ କାନ୍ଥର ପାଖ ଧରି ଯିବ ତେବେ କଟ୍‌କଟ ଶବ୍ଦ ହେବ ନାହିଁ । ମୋ ପିଲାଦିନେ, ସହରର ଚଗଲା ପିଲାଙ୍କ ମେଳରେ ବୁଲି ବୁଲି ରାତିରେ ଘରକୁ ଫେରିବା ବେଳେ ମୁଁ ଏ ତତ୍ତ୍ୱଟି ଆବିଷ୍କାର କରିଥିଲି । ଆଜିକାଲି ମଧ୍ୟ, ମେରୀଙ୍କ ନିଦରେ ବାଧା ଦେବି ନାହିଁ ବୋଲି ବିଚାରିଲା ବେଳେ, ମୁଁ ପିଲାଦିନର ଆବିଷ୍କୃତ ଜ୍ଞାନର ଉପଯୋଗ କରି ଯିବା ଆସିବା କରେ । ଆଜି ବି ସେଇ ଜ୍ଞାନ କାମରେ ଆସିଲା—ମୁଁ କାନ୍ଥରେ ହାତ ମାରି ମାରି ଆସ୍ତେ ଆସ୍ତେ ସିଡ଼ିକଡ଼ରେ ଓହ୍ଲାଇଲି । ରାସ୍ତାର ବତୀଖୁଣ୍ଟରୁ କ୍ଷୀଣ ସୂକ୍ଷ୍ମ ଆଲୋକ ଘରେ ପ୍ରବେଶ କରି ଝରକା ପାଖରୁ ମାତ୍ର କଅଁଳ କଅଁଳ ଅନ୍ଧକାର ଦୂର କରିଥାଏ । କିନ୍ତୁ ଅନ୍ଧାର ଘର ଭିତରେ ମଧ୍ୟ ଏଲେନ୍‌କୁ ମୁଁ ପରିଷ୍କାର ଦେଖି ପାରିଲି । ତା' ଦେହରୁ ଗୋଟାଏ କିପରି ଆଭା ବାହାରୁଥାଏ—ବୋଧହୁଏ ତା' ଧଳା ରାତିଗାଉନ୍ ଯୋଗୁଁ । ତା' ମୁହଁ ଅନ୍ଧାରରେ ଥାଏ, କିନ୍ତୁ ତା'ର ବାହୁ ଓ ହାତରେ ବେଶ୍ ଆଲୁଅ ପଡ଼ୁଥାଏ । ଯେଉଁ କାଚ ଆଲମାରୀରେ ପରିବାରର ନିଷ୍ପ୍ରୟୋଜନ ପୈତୃକ-ସମ୍ପତ୍ତି ସବୁ ରଖା ହୋଇଥାଏ, ସେ ତା'ରି ପାଖେ ଠିଆ ହୋଇଥାଏ । ନାଉରିଙ୍କର ତିମି-ହାଡ଼ରେ ଖୋଦିତ ଚିତ୍ର—ସ୍ପାର୍ମ-ତିମିର ଚିତ୍ର, ନାଉରି, ଆହୁଲା, ତିମି ମାରିବା ବର୍ଚ୍ଛା । ପ୍ରକୃତି ସଜ୍ଜିତ ସମଗ୍ର ଜାହାଜର ଚିତ୍ର; ଜାହାଜ ଫନ୍ଦରେ ତିମି ଶିକାରୀ ତିମି ମାରିବା ବର୍ଚ୍ଛା ଫୋପାଡ଼ିବାର ଚିତ୍ର—ଏ ସବୁ ତିମି ହାଡ଼ରେ, ଜଳଘୋଟକର ହାଡ଼ ଓ ଦାନ୍ତରେ ଖୋଦେଇ ହୋଇଥାଏ । ବୋତଲ୍-ଆଡ଼େପ୍ୟାର୍ ଜାହାଜର ଗୋଟିଏ ପ୍ରତିକୃତି ମଧ୍ୟ ଏହି ଆଲମାରୀରେ ଅଛି—ସେଥିରେ ଲଗାଯାଇଥିବା ବନକ ଅଦ୍ୟାପି ଉଜ୍ଜ୍ୱଳ ଅଛି, କିନ୍ତୁ ଟେକା ହୋଇଥିବା ପାଲ ଓ ଜାହାଜର ରସିସବୁ ମଇଳା ଓ ପୋଶହା

ହୋଇଗଲାଣି । ଚୀନ୍ ଦେଶର ଗୃହକଳାର ପ୍ରତୀକ କେତୋଟି ମଧ୍ୟ ଏଠି ଅଛି । ବଂଶର ପୁରୁଣା କପ୍ତାନ୍‌ମାନେ ଚୀନସାଗରରୁ ସ୍ଥାମି-ଚିମିଙ୍କ ବଂଶ ନଡ଼ାଇ କରସାର, ଚୀନ ଦେଶଭିତରୁ ଏଗୁଡ଼ିକ ସଂଗ୍ରହ କରି ଆଣିଥିଲେ । ଏହି ଚୀନ ଗୃହକଳାର ପ୍ରତୀକ ହୋଇ ଅଛନ୍ତି ଶିଶୁକାଠ ଓ ହାତିଦାନ୍ତର କେତୋଟି ଗ୍ରେଟ ଗ୍ରେଟ ମୂର୍ତ୍ତି ଓ ମୂର୍ତ୍ତିମାନଙ୍କର ଭଗ୍ନ ଅଂଶ ବିଶେଷ—ପ୍ରସନ୍ନବଦନ ଦେବମୂର୍ତ୍ତି ଅଛନ୍ତି, ଗମ୍ଭୀର ଦେବମୂର୍ତ୍ତି ବି ଅଛନ୍ତି, ଶାନ୍ତ ବୁଦ୍ଧମୂର୍ତ୍ତି ଗୁଡ଼ିଏ ଅଛନ୍ତି, ଯଦ୍ୟପି ସେମାନଙ୍କ ଦେହରେ କାଳକ୍ରମେ ମଳ ବସିଗଲାଣି । ଗୋଲାପି ରଙ୍ଗର ଜକମକ ପଥର, କୁଣ୍ଡାପଥର ଓ ନୀଳପଥରରେ ନାନା ପ୍ରକାର ଫୁଲର ଚିତ୍ର ଖୋଦିତ ହୋଇଅଛି—ଖୁବ୍ ସରୁ ସୂକ୍ଷ୍ମ ସୁନ୍ଦର ପିଆଲା ଓ ଗ୍ଲାସ ବି ଅଛି । ଏଥିରୁ କେତେକ ଜିନିଷ ଅଦ୍ୟାପି ମୂଲ୍ୟବାନ୍ ହୋଇପାରନ୍ତି ଯଥା: ଭଙ୍ଗି ଭଙ୍ଗି ଯାଇଥିବା ଘୋଡ଼ା ମୂର୍ତ୍ତିଗୁଡ଼ାକ, ଯାହା କି ଏ ଅବସ୍ଥାରେ ମଧ୍ୟ ଜୀଇଥିବା ପରି ଦିଶୁଛନ୍ତି—କିନ୍ତୁ ଯଦି ବା ଏଗୁଡ଼ିକ ମୂଲ୍ୟବାନ୍, ଚିମି-ମରୀ ନାବିକ-ମାନେ ଏଗୁଡ଼ିକର ମୂଲ୍ୟବୁଝି ଆଣିଥିଲେ ବୋଲି ମୋର ବିଶ୍ୱାସ ହେଉ-ନାହିଁ । ସେମାନେ ଯାହା ମିଳିଲା ସଂଗ୍ରହ କରୁକରୁ ଅକସ୍ମାତ୍ ମୂଲ୍ୟବାନ୍ ଗୃହକଳା ଉପରେ ହାତପକାଇ ଦେଇଛନ୍ତି । ଚିମିମରୀ ନାବିକା ଭିତରେ ସେମାନଙ୍କର ଗୃହକଳା ପାଇଁ ଆଖି ଥିଲା ବୋଲି ବିଶ୍ୱାସ କରି ହେଉ-ନାହିଁ—ଥିଲେ ଥିବ, କିଏ ଜାଣେ ?

ଏ ଆଲମାରିଟିକୁ ମୁଁ ପିତୃସ୍ମୃତିର ପବିତ୍ର ପୀଠ ବୋଲି ମନେ କରେ—ରୋମାନ୍‌ମାନେ ତାଙ୍କ ପିତୃପୁରୁଷଙ୍କ ମୁଖା, ଗୃହଦେବତାଙ୍କ ମୂର୍ତ୍ତି ଓ ଛବି ବାସ ଓ ଚନ୍ଦ୍ରରୁ ଖସିଛି ବୋଲି ବିଶ୍ୱାସରେ ଶିଳାଖଣ୍ଡମାନ ଯେପରି ଧର୍ମବିଶ୍ୱାସରେ ରଖନ୍ତି ଓ ପୂଜା କରନ୍ତି, ମୁଁ ସେଇ ଦୃଷ୍ଟିରେ ମୋର ପୈତୃକ ସମ୍ପତ୍ତିକୁ ସାଇତିଛି । ଆମର ଏ ସଂଗ୍ରହାଳୟରେ ଖଣ୍ଡେ ଚେର ଥିଲା—ଗୋଟାଏ ଗଛ ଗଛର ମୂଳ—ଆକୃତି ଠିକ୍ ଗୋଟିଏ ଗ୍ରେଟ ମଣିଷ ପରି—ଫାସି ପାଇଥିବା ମଣିଷର ମଲାବେଳେ ବାହାରିଥିବା ଚିତ୍କାରରୁ ଏହାର ଉତ୍ପତ୍ତି ବୋଲି ସେକାଳରେ ବିଶ୍ୱାସ କରାଯାଉଥିଲା । ଆଉ ଏଠାରେ ରଖା ହୋଇଥିଲା, ଯାହାକୁ ଗୋଟିଏ ଜଳ-ପକ୍ଷୀ-ଅଧେ ମାଛ ଓ ଅଧେ ମାଙ୍କଡ଼ । ଆଜିକୁ ତାହା ଛିଣ୍ଡିଗୁଣ୍ଡି ଗଲାଣି; କିନ୍ତୁ ମାଙ୍କଡ଼ର

ମୁଣ୍ଡପଟ ଓ ମାଛର ଲାଞ୍ଜ ପଟକୁ ବଡ଼ କୌଶଳରେ ଏକାଠି ମିଳେଇ କରି ଏ ମୂର୍ତ୍ତିଟି ତିଆରି ହୋଇଥିଲା । ବହୁକାଳପରେ ମୂର୍ତ୍ତିଟି ଘିପିସାପି ଗଲାଣି ଓ ମଝି ମିଳେଇ ବାହାରକୁ ଦିଶିଲାଣି – କିନ୍ତୁ ମାଙ୍କଡ଼ର ଛୋଟ ଛୋଟ ଦାନ୍ତର ବିକୃତ ହାସ୍ୟ ଅଦ୍ୟାପି ଅକ୍ଷୁଣ୍ଣ ରହିଛି ।

ମୋ'ର ଅନୁମାନ, ପ୍ରତ୍ୟେକ ବଂଶରେ ବଂଶାନୁକ୍ରମେ ଏପରି ଗୋଟିଏ କୁହୁକମନ୍ତ୍ରର ଜିନିସ ଥାଏ, ଯାହା କି ପୁରୁଷାନୁକ୍ରମେ ସେଇ ବଂଶର ଲୋକଙ୍କୁ ଉଦ୍ଭ୍ରାନ୍ତ କରେ, ତାଙ୍କ ସୁଖଶାନ୍ତି ବିଧାନ କରେ ଓ ତାଙ୍କୁ ପ୍ରତାରିତ କରେ । ଆମର ସେମିତି ଗୋଟିଏ ଜିନିସ ଅଛି – ତା'କୁ କ'ଣ ବୋଲି ବର୍ଣ୍ଣନା କରିବି ଜାଣି ପାରୁନାହିଁ । ତାହା ଈଷତ୍ ସ୍ୱଚ୍ଛ ପଥର ଖଣ୍ଡେ—ସ୍ଫଟିକ, ନା ମାଳପଥର କି ଖଡ଼ିପଥର ଠିକ୍ କହିପାରୁ ନାହିଁ । ଏହା ଆକୃତିରେ ଗୋଲ, ଚାରି ଇଞ୍ଚ ବ୍ୟାସ-ବିଶିଷ୍ଟ, ଓ ମଝିରେ ଏହା ଦେଢ଼ ଇଞ୍ଚ ବହଳ । ଏହାର ଉପରେ ଗୋଲକଧନ୍ଦା ପରି ଗାର ଗାର ହୋଇ ଚିହ୍ନ ହୋଇଛି ; ଚାହିଁଲେ, ଏ ଗାର-ଗୁଡ଼ିକ ଗତିକଲା ପରି ମନରେ ବିଭ୍ରାନ୍ତ ହୁଏ । ଚିହ୍ନଟିର ମୁଣ୍ଡ ନାହିଁ କି ଲାଙ୍ଗୁଡ଼ ନାହିଁ, ମୂଳ ନାହିଁ କି ଆଗ ନାହିଁ, କିନ୍ତୁ ଏହା ଭିତରର ରେଖାଗୁଡ଼ିକ ଗତିକଲା ପରି ଦିଶୁଥିବାରୁ ଚିହ୍ନଟି ଜୀଇଥିଲା ପରି ଲାଗେ । ଚିକ୍କଣ ପଥରଟି ହାତକୁ ମସୃଣ ବୋଧ ନ ହୋଇ, ଜୀଅନ୍ତା ମାଉଁସ ପରି ଆଙ୍ଗୁଠିକୁ ଟିକିଏ ଅଠାଳିଆ ଲାଗେ ଓ ସ୍ପର୍ଶକଲେ ଏଥିରୁ ଉଷୁମ ବାହାରିଲା ପରି ଜଣାପଡ଼େ । ଯା' ଭିତରକୁ ଆଖି ଯାଉଥିଲେ ବି ଯା'କୁ ଭେଦ କରି ଦେଖି ହୁଏ ନାହିଁ । ମୋର ବିଶ୍ୱାସ, ଆମ ବଂଶର କୌଣସି ପୂରଣ ନାବିକ ପିତୃପୁରୁଷ ଏ ପଥରଟି ଚୀନ୍ ଦେଶରୁ ଆଣିଥିଲେ । ଏଥିରେ ଯାଦୁ-ଶକ୍ତି ଅଛି ବୋଲି ଆମ ପୂର୍ବପୁରୁଷ ବିଶ୍ୱାସ କରି ଆସିଛନ୍ତି—ହେବେ, ଯାହା ହେଉ, ଏହା ଦେଖିବାକୁ ଯେପରି ସୁନ୍ଦର, ସ୍ପର୍ଶକୁ ସେହିପରି କମନୀୟ ; ଏହାକୁ ଗାଲରେ ଘଷିଲେ ବା ଏଥିରେ ଆଙ୍ଗୁଠି ମାଇଲେ ଭାରି ସୁଖଲାଗେ । ଏହି ବିଚିତ୍ର ଯାଦୁକର ଶିଳାଟି ବି କାଚ ଆଲମାରୀରେ ଥାଏ । ଶିଶୁବେଳେ, ପିଲାବେଳେ ଓ ବୟଃପ୍ରାପ୍ତ ହେଲା ପରେ ବି, ଏହାକୁ ସ୍ପର୍ଶ କରିବାକୁ ଓ ଧରିବାକୁ ମୋତେ ଅନୁମତି ମିଳୁଥିଲା, କିନ୍ତୁ ଘରୁ ବାହାରକୁ ନେବାପାଇଁ ନୁହେଁ । ଏ ପଦାର୍ଥଟିର ରଙ୍ଗ, ଆକୃତି ଓ

ଗତି ମୋର ମନର ଆକାଂକ୍ଷାକୁ ଗୁହାଁ ବଦଳୁଥିବାର ମୁଁ ଲକ୍ଷ୍ୟ କରୁଛି । ଆଗ ବସ୍ତୁରଥିଲି, ଏହା ନାଗ୍ପର ଉରଜ, ମୋ ଦୋକା ସମସ୍ତରେ ଏହା ଋଣିଲ କାମିନୀର ରକ୍ତମଣ୍ଡର ପରି । ପରେ ବୋଧହେଲା, ଏହା ମନୁଷ୍ୟର ମସ୍ତିସ୍କ; କେତେବେଳେ ପୁଣି ବସ୍ତୁରେ ଏହା ଗୋଟିଏ ପ୍ରହେଳିକା—ମୁଣ୍ଡ ନାହିଁ, ଗଣ୍ଡି ନାହିଁ, ଆଦି ନାହିଁ, ଅନ୍ତ ନାହିଁ—ଅନନ୍ତକାଳ ନିଜ ଭିତରେ ନିଜେ ଚଞ୍ଚଳ ହୋଇ ରହିଛି—ଚିରକାଳ ଏହା ଗୋଟିଏ ଅନନ୍ତ ପ୍ରଶ୍ନକୁ ଆବୋରି ରହିଛି—ସେ ପ୍ରଶ୍ନର ଉତ୍ତର ନାହିଁ—ଉତ୍ତର ଥିଲେ ସିନା ଏହାର ଅନ୍ତ ମିଳନ୍ତା!—ଏହାର ମୂଳ ଅଜ୍ଞାତ, ଓ ଶେଷ ଅନିର୍ଦ୍ଦିଷ୍ଟ ।

ଏ ପଦାର୍ଥଟି ଯେଉଁ କାଚ ଡବାରେ ଅଛି, ସେଥିରେ ଆମ ଦେଶ ଇଂରେଜ ଉପନିବେଶ ଥିଲା କାଳୁ ଗୋଟିଏ ପିତଳ ତାଲା ଲଗିଛି—ତାଲାରେ ପିତଳର ଗୋଟିଏ ଗୁରକୁଣିଆ ଗୁବ ସବୁବେଳେ ରହିଥାଏ—ତାକୁ ଟିକିଏ ମୋଡ଼ିଦେଲେ ତାଲା ଫିଟି ଡବାଟି ଫିଟିଯାଏ ।

ମୋ ନିଦ୍ରିତା କନ୍ୟା ଏହି କୁହୁକଶିଳାଟି ଡବାରୁ ବାହାର କରି ହାତରେ ଧରିଥାଏ—କେତେବେଳେ ଏହା ଉପରେ ଅଙ୍ଗୁଠି ବୁଲାଉ-ଥାଏ—ସତେ ଯେମିତି ଏହା ଗୋଟିଏ ଜୀଅନ୍ତା ପଦାର୍ଥ ବସ୍ତୁର ଯା'କୁ ଗେଲ କରୁଥାଏ । ତା' ପରେ ସେ ଯା'କୁ ନେଇ ତା'ର କୋରକିତ ସ୍ତନ ଉପରେ ଥୋଇଲା, ସେଠାରୁ ନେଇ ଗାଲରେ ଘଷିଲା—ଶେଷରେ ତା'କୁ କୁକୁର ପିଲା ମା ସ୍ତନକୁ ନେଇ ପାଟିରେ ଚୁଚୁମିଲା ପରି, ପାଟିରେ ପୂରାଇ ଚୁଚୁମିଲା ଓ ଆକାଂକ୍ଷାର ଆନନ୍ଦରେ ଗୁଣୁଗୁଣୁ କରି ଗୋଟିଏ ଗୀତର ସ୍ୱର ଧରିଲା । ତା' ମନ ଭିତରେ କିଛି ଗୋଟାଏ ଅନିଷ୍ଟ କରିବାର ମନୋବୃତ୍ତି ଥିଲା ପରି ମୋର ମନେ ହେଉଥାଏ । ପ୍ରଥମେ ମୋର ଭୟ ହୋଇଥିଲା ଯେ, ସେ ବୋଧହୁଏ ଶିଳାଖଣ୍ଡି ତଳେ କଚାଡ଼ି ଗୁଣ୍ଡଗୁଣ୍ଡା କରି ଦେଇ, ଭଗ୍ନାବଶେଷ କେଉଁଠି ଲୁଚାଇଦେବ । କିନ୍ତୁ ତା'ର ଡଙ୍ଗରଙ୍ଗ ଦେଖି ବୁଝିଲି, ସେ ଏ ଶିଳାଖଣ୍ଡିକୁ ନିଜର ମାଆ, ସ୍ୱାମୀ ବା ସନ୍ତାନ ପରି ମମତା ଦେଖାଉଛି ।

ଏଲେନ୍‌କୁ ଚମକାଇ ନ ଦେଇ କିପରି ତା'ର ନିଦ ଭାଙ୍ଗିବ ଭାବି ହେଉଥାଏ । କିନ୍ତୁ ସ୍ୱପ୍ନଗ୍ରସ୍ତଙ୍କୁ ଲୋକେ ଉଠାଇ ଦିଅନ୍ତି କାହିଁକି ? ନିଦ୍ରାବସ୍ଥାରେ ସେମାନେ ନିଜର କୌଣସି ଅନିଷ୍ଟ କରିବେ ଏଇ ଭୟରେ

ଚ ? ଏ ଅବସ୍ଥାରେ ସ୍ୱପ୍ନଭଙ୍ଗ ଜନିତ କୌଣସି ଅନିଷ୍ଟ କରିବାର ବା ଖଣ୍ଡିଆ ଖାବରା ହେବାର ମୁଁ କେବେଁ ଶୁଣି ନାହିଁ; କିନ୍ତୁ ଉଠାଇ ଦେଲେ ତାଙ୍କର ଅନିଷ୍ଟ ହେବାର ଶୁଣିଛି । ତେବେ ମୁଁ ସ୍ୱାକୁ ବାଧା ଦେବି କାହିଁକି ? ଭୟ ବା ଯନ୍ତ୍ରଣାର କୌଣସି ଲକ୍ଷଣ ତା’ଠାରେ ଦେଖିଲି ନାହିଁ, ବରଂ ଜଣା ଯାଉଥାଏ, ସେ ନିଦ୍ରିତାବସ୍ଥାରେ ଯେଉଁ ସଂଗସୁଖ ଓ ଶାନ୍ତି ଉପଭୋଗ କରୁଛି, ଉଠି ପଡ଼ିଲେ ସେଥିରୁ ବଞ୍ଚିତହେବ । ତା’ର ସୁଖରେ ମୁଁ ବାଧା ଦେବି କାହିଁକି ?—ଏହିପରି ବିଚାରି ମୁଁ ଧୀରେ ଧୀରେ ତା’ ପାଖରୁ ଅପସରି ଗଲି ଓ ମୋ ବଡ଼ ଚଉକିରେ ବସି ଅପେକ୍ଷା କଲି ।

ଅର୍ଦ୍ଧ-ଅନ୍ଧକାରଚ୍ଛନ୍ନ ପ୍ରକୋଷ୍ଠଟିରେ ଉଜ୍ଜ୍ୱଳ ଆଲୋକର ଅଣୁମାନ ଖେଳ ବୁଲୁଥାଏ—ମଶା ମାଛି ଭେଳା ଭେଳା ହୋଇ ଉଡ଼ିଲା ପରି । ବୋଧହୁଏ, ଏ ଆଲୋକ ଅଣୁ ବାସ୍ତବରେ ଉଡ଼ୁନଥିଲେ, ମୋର ଶ୍ରାନ୍ତ ଆଖିକୁ ସେଇପରି ଜଣା ଯାଉଥିଲା ମାତ୍ର—ଯାହାହେଉ, ଏଗୁଡ଼ିକ ବେଶ୍ ବାସ୍ତବ ପରି ଜଣାପଡ଼ୁଥାନ୍ତି । ପୁଣି, ମନେ ହେଉଥାଏ, ମୋ ଝିଅ ଏଲେନ୍ ଦେହରୁ ସବୁରେ ଏଟାଏଟା ଆଭା ବାହାରୁଥାଏ—ଖାଲି ଯେ ତା ଧଳା ଗାଉନ୍‌ରୁ ଏ ଆଭା ବାହାରୁଥାଏ ସେତିକି ନୁହେଁ, ତା ଦେହରୁ ବି ବାହାରୁଥାଏ । ମୁଁ ତା ମୁହଁକୁ ଦେଖି ପାରିଲି । ତା’ ମୁହଁରୁ ଆଭା ନ ବାହାରୁଥିଲେ, ଅନ୍ଧାର ଘରେ ତା’ ମୁହଁ ଦିଶି ନ ଥାନ୍ତା । ତା ମୁହଁ ଛୋଟ ବାଳିକାର ମୁହଁପରି ଦିଶୁ ନ ଥାଏ—ବୁଢ଼ୀ ମୁହଁ ପରି ବି ନୁହେଁ । ତା ମୁହଁ ଦିଶୁଥାଏ, ପ୍ରାପ୍ତବୟସ୍କା ନାରୀର ମୁହଁ ପରି—ପୂର୍ଣ୍ଣ, ସୁଗଠିତ ଓ ସୁନ୍ଦର । ତା’ ଓଠ ଦୁଇଟି ଚିପି ହୋଇଥାଏ—ସ୍ୱଭାବତଃ ଏଲେନ୍‌ର ଓଠ ଚିପି ହୋଇ ରହେ ନାହିଁ ।

କିଛି ସମୟ ପରେ ଏଲେନ୍, କୁହୁକଶିଳାଟି ତା’ ଥାନରେ ଠିକଣା କରି ଥୋଇଦେଲା, କାଚ ଡବାର ଢାଙ୍କୁଣି ଲଗାଇ ଦେଇ, ଗୁବ ମୋଡ଼ ତାଲା ବନ୍ଦ କରିଦେଲା । ତା’ ପରେ ସେ ବୁଲି ପଡ଼ି ମୋର ଚଉକି ପାଖେ ସିଡ଼ି ପାଖକୁ ଯାଇ ଉପର ମହଲାକୁ ଉଠିଲା । ଦୁଇଟି କଥା ମୁଁ ତାକୁ ଦେଖି ଅନୁମାନ କଲି—ପ୍ରଥମ, ସେ ବାଳିକା ପରି ନ ଚାଲି, ଚାଲୁଥିଲା କାମ-ପରିତୃପ୍ତା ନାରୀର ଅଳସ ଚାଲି ; ଦ୍ୱିତୀୟ,

ସେ ଫେରିଲା ବେଳେ ଆଉ ତା' ଦେହରୁ ଆଭା ବାହାରୁ ନଥାଏ, ତାହା ନିଃଶେଷ ହୋଇ ଯାଇଥାଏ । ଏହା ମୋର ଅଳୀକ ଧାରଣା ହୋଇ ପାରେ — ମୋ' କଳ୍ପନାର ସନ୍ତାନ, କିନ୍ତୁ ଦୃଷ୍ଟିପଥରେ ଯାହା ଲକ୍ଷ୍ୟ କଲି ତାହା ଅଳୀକ କଳ୍ପନା ବୋଲି କାଟି ଦେଇ ପାରିବ ନାହିଁ । ସେ ସିଡ଼ିରେ ଚଢ଼ିଲା ବେଳେ ସିଡ଼ି କାଠର କଟକଟ ଶବ୍ଦ ଶୁଣାଗଲା ନାହିଁ - ହୁଏତ ସେ କାନ୍ଥ କଡ଼େ କଡ଼େ ଉଠୁଥିଲା । ମୁଁ ଜାଣେ କାନ୍ଥକୁ ଲାଗି ଚଢ଼ିଲେ ବା ଓହ୍ଲାଇଲେ ଶବ୍ଦ ହୁଏ ନାହିଁ ।

କେତେ ମୁହୂର୍ତ୍ତ ପରେ ମୁଁ ତା' ପଛରେ ସିଡ଼ିରେ ଉଠିଲି — ଯାଇ ଦେଖିଲି ସେ ଠିକ୍ ଯୋଡ଼ଯାଡ଼ ହୋଇ ତା' ଶେଯରେ ନିଦରେ ଶୋଇଛି । ପାଟି ବାଟେ ସେ ନିଶ୍ୱାସ ପ୍ରଶ୍ୱାସ ନେଉଥାଏ ଓ ଗୁଙ୍ଗୁଡ଼ୁଥାଏ; । ତା' ମୁହଁ ଦିଶୁଥାଏ ଠିକ୍ ନିଦରେ ଶୋଇଥିବା ବାଳିକାର ମୁହଁ ପରି ।

ସତେ ମୋତେ କିଏ ଟାଣି ନେଲା ପରି ମୁଁ ପୁଣି ତଳଘରକୁ ଗଲି ଓ କାଚ ଆଲମାରି ଖୋଲି, କୁହୁକଶିଳାର କାଚଡ଼ବା ଖୋଲିଲି । ଶିଳାଟିକୁ ମୁଁ ହାତରେ ଧରିଲି । ଏଲେନ୍ ଦେହର ଉତ୍ତାପ ଏଥିରେ କେତେବେଳ ପର୍ଯ୍ୟନ୍ତ ଥାଏ । ପିଲାଦିନେ ଖେଳିଲା ପରି, ମୁଁ ମୋ ବଣି ଆଙ୍ଗୁଠିର ଟିପ ଗୋଲକଧନ୍ଦାର ଅସରନ୍ତି ଗାର ଉପରେ ଚଳାଇଲି । ପୂର୍ବପରି ଏଭଳି କରିବାରେ ମୋର ଭାରି ସୁଖ ହେଲା । ଏହି ସମ-ଅନୁଭୂତି ଯୋଗୁଁ ଏଲେନ୍ ସଙ୍ଗେ ମୋର ସମପ୍ରାଣତା ପ୍ରତିଷ୍ଠିତ ହେଲା ।

ସତେ କି'ଣ ଏହି ଶିଳାଖଣ୍ଡି ଯୋଗୁଁ ଏଲେନ୍ ସଙ୍ଗେ ମୋର ଘନିଷ୍ଠତା ବଢ଼ିଲା — ହ୍ୱ'ଲବର୍ଟ ସଙ୍ଗେ ତା'ର ସମ୍ପର୍କ ଅଧିକ ଘନିଷ୍ଠ ହେଲା ?

—*—

# ନବମ ପରିଚ୍ଛେଦ

ସୋମବାର ଦିନ ପ୍ରଚାରକ ବସନ୍ତ, ପ୍ରତାରଣା କରି ଶୀତଋତୁକୁ ଆଡୁଆଳକୁ ଫେରି ଯାଇ ଲୁଚିଲା । ଶୀତ ଦିନର ଥଣ୍ଡା ପାଗ—ପାଣି ଓ ପ୍ରଚଣ୍ଡ ପବନ ଆସି, ବସନ୍ତକୁ ବିଶ୍ୱାସ କରି ପଲ୍ଲବିତ ହୋଇଥିବା ବୃକ୍ଷମାନଙ୍କର କୋମଳ ପତ୍ରକୁ ଝାଡ଼ି ପକାଇଲା । ଘାସ ପଡ଼ିଆରେ କାମାସକ୍ତ ଅତି-ସାହସିକ ଘରଚଟିଆ, ପ୍ରଣୟିନୀକୁ ଭେଟିବାକୁ ବାହାରି, ପବନର ଆଘାତରେ ଛିନ୍ନଛନ୍ନ ହୋଇ ନିଜ ଗନ୍ତବ୍ୟପଥରୁ ଭ୍ରଷ୍ଟହେଲା ଓ ଛୁଞ୍ଚାକଣା ମରି ଆନ୍ଦୋଳିତ ହୋଇ ପ୍ରଣୟିନୀ ସଙ୍ଗଲାଭ ସୁଖରୁ ବଞ୍ଚିତ ହେଲା । ବିଫଳତାର କ୍ରୋଧରେ, ଅବ୍ୟବସ୍ଥିତ ପ୍ରକୃତି ବିରୁଦ୍ଧରେ ଚିତ୍କାର କରି ସେ ଓରମାନ ମେଣ୍ଟାଇଲା ।

ଲାଲ ବେକର୍‌କୁ ତା'ର ପ୍ରାତଃଭ୍ରମଣ ବେଳେ ଭେଟିଲି । ତା'ର ପୁଚ୍ଛ ରଣ-ପତାକା ଭଳି ଆଡ଼ବାଗରେ ଫର୍ଡ଼ ଫଡ଼ ହେଉଥାଏ । ସେ ମୋର ପୂର୍ବ ପରିଚିତ ବନ୍ଧୁ—ବର୍ଷା ପାଣିରେ ଆଖି ମିଟି ମିଟି କରି ଆଗେଇ ଆସୁ ଆସୁ ମୋତେ ଦେଖିଲା । ମୁଁ କହିଲି, "ବନ୍ଧୁବର ! ଏଥର ଏଣିକ ତୁମର ମୋର ବନ୍ଧୁତା ଲୋକ-ଦେଖାଣିଆ ହୋଇ ଉପରେ ଉପରେ ରହିବ । ପରିଷ୍କାର କହିଦେବାକୁ ଉଚିତ ମନେ କରୁଛି ଯେ, ଆମ ମୁହଁର ହସ ତଳେ, ମନରେ ପରସ୍ପର ପ୍ରତି ଦୁର୍ବାର ପ୍ରତିଦ୍ୱନ୍ଦୀ-ଭାବ ରହିବ ହିଁ ରହିବ—କାରଣ, ତୁମର ଆମର ଏଥର ସ୍ୱାର୍ଥସଂଘର୍ଷ ଆରମ୍ଭ ହୋଇଛି ।" ତା'କୁ ଆଉ ଦି'ପଦ ଶୁଣାଇଥାନ୍ତି, କିନ୍ତୁ ସେ ଶୀଘ୍ର ଶୀଘ୍ର ପ୍ରାତଃକୃତ୍ୟ ଶେଷ କରି ଘୁଚି ତଳକୁ ପଳାଇଯିବାକୁ ବ୍ୟସ୍ତ ହୋଇ-ପଡ଼ୁଥାଏ ।

ମର୍ଫି ଠିକ ସମୟରେ ଆତ୍ମପ୍ରକାଶ କଲେ । ହୁଏତ ସେ ମୋତେ ପ୍ରତୀକ୍ଷା କରି ରହିଥିବେ—ଖୁବ୍ ସମ୍ଭବ ସେଇଆ । ସେ କହିଲେ, "ଅଢ଼

ଖରାପ ପାଗ ଆଜ ।" ତାଙ୍କ ରେଶମ ଅଏଲ୍ କ୍ଲଥ୍‌ର ବର୍ଷାତି ଗୋଡ଼ ପାଖେ ଫଡ଼ଫଡ଼ ହେଉଥାଏ, କେତେବେଳେ ପୁଣି ପବନରେ ଫୁଲିଯାଇ ଯାଉଥାଏ ।

"ଶୁଣିଲ, ଆମ ମାଲିକଙ୍କ ସଙ୍ଗେ ତୁମର ବନ୍ଧୁ-ମିଳନଟା ହୋଇଗଲା ?"

"ହଁ, ତାଙ୍କ ସଙ୍ଗେ ଗୋଟାଏ ପରାମର୍ଶ କରିବାକୁ ଯାଇଥିଲି । ପରାମର୍ଶ ସଙ୍ଗେ ଗୁ ମୁଦ୍ରେ ବି ଦେଲେ ।"

"ସେ ବିଷୟରେ ତାଙ୍କର ହେଳା ହୁଏ ନାହିଁ ।"

"ପରାମର୍ଶ ତନ୍ତ୍ରଟା ତ ତୁମେ ଜାଣିଥିବ । ପରାମର୍ଶ ପାଇଁ ଯିବା ପୂର୍ବରୁ ଯାହା କରିବାକୁ ଭାବିଥିବ, ପରାମର୍ଶଦାତା ଯଦି ସେଥିକୁ ସାଇ ଦେଲେ ତେବେ ଯାଇ ପରାମର୍ଶ ଗୃହୀତ ହୁଏ ।"

"ବୋଧହୁଏ, କୌଣସି ବ୍ୟବସାୟରେ ଟଙ୍କା ଲଗାଣ କରିବା ବିଚାର ଚାଲିଛି ।"

"ମୋ' ମେଷ୍ଟଙ୍କର କିଛି ଆସବାବ୍ ମଜ ଦରକାର । ନାରୀ ମନରେ ଯେତେବେଳେ କୌଣସି ଜିନିଷ ପାଇଁ ଆକାଂକ୍ଷା ଜାଗ୍ରତ ହୁଏ, ସେତେବେଳେ ସେ ଦେଖାଇବାକୁ ଚାହେଁ ଯେ ସେ ଜିନିଷ ଖରିଦ କରିବାରେ ପଇସା ଖର୍ଚ୍ଚ କରିବା, ବେପାରରେ ଟଙ୍କା ଲଗାଣ କରିବା ସଙ୍ଗେ ସମାନ ।"

ମର୍ଫି କହିଲେ, "ଖାଲି ମାଇକିନିଆଁ ଏପରି କରନ୍ତି ବୋଲି କାହିଁକି କହୁଛ ? ମୋ' ନିଜର ତ ଏଇ ମନୋବୃତ୍ତି !"

"ସେ ଯାହାହେଉ, ଆମର ଯେଉଁ ଟଙ୍କା ବ୍ୟାଙ୍କ୍‌ରେ ଜମା ଅଛି, ତାହା ତାଙ୍କର ନିଜସ୍ୱ । ସେ କିଛି ଟଙ୍କା ନେଇ ଶସ୍ତାଜିନିଷ ସଂଧାନରେ ବଜାରରେ ବୁଲିବାକୁ ଚାହିଁଛନ୍ତି ।"

ହାଇ ଷ୍ଟ୍ରୀଟ୍ କୋଣରେ ଥିବା ରାପ୍‌ଙ୍କ ଖେଳନା ଦୋକାନ ଉପରୁ ଗୋଟାଏ ଟିଣ ସାଇନ୍‌ବୋର୍ଡ଼ ଖସି ଯାଇ, ସଣ୍ଢେ ରାସ୍ତା ଉପରେ ଝଣ୍ଡିଉଡ଼ା ଦେଇ ଚାଲିଲା - ଶବ୍ଦରୁ ଜଣାଯାଉଥାଏ, ରାସ୍ତା ଉପରେ ଗୋଟାଏ ଦୁର୍ଘଟଣା ଘଟାଇବା ମତଲବ୍‌ରେ ଯାଉଛି ।

ମର୍ଫି କହିଲେ, "ହଇଓ ! ଶୁଣୁଛି, ତୁମ ମାଲିକ ତାଙ୍କ ଜନ୍ମଭୂମି ସିସିଲି ଯାତ୍ରା କରିବାକୁ ବସିଛନ୍ତି !"

"ମୁଁ କହିପାରିବ ନାହିଁ । ସେ ଯେ ଆଜଯାଏଁ ଯାଇ ନାହାନ୍ତି ଏହା ମୋତେ ବିଚିତ୍ର ବୋଧ ହେଉଛି । ମୁଁ ଜାଣେ, ଇଟାଲୀୟ ଲୋକଙ୍କର ନିଜ ଜାତିକୁଟୁମ୍ବଙ୍କ ପ୍ରତି ଗଭୀର ଆକର୍ଷଣ ଥାଏ ।"

"କପେ କଫି ଖାଇବାକୁ ସମୟ ଅଛି ?"

"ମୋର ତ ଏତେବେଳେ ଦୋକାନ ଖୋଲାଖୋଲିଆ କରିବା କଥା । ଛୁଟି ପରେ ଆଜି ସକାଳେ ଖୁବ୍ ଭିଡ଼ ହେବାର ଆଶା ।"

"ଓଃ ; ଆସ ହେ କଫି ଖାଇବା । ଟିକିଏ ବଡ଼ଲୋକ କର । ମିଷ୍ଟର୍ ବେକର୍‌ଙ୍କର ବ୍ୟକ୍ତିଗତ ବନ୍ଧୁ ତୁମେ, କଫି କପେ ପାଇଁ ସମୟ ନାହିଁ ବୋଲି କୁଣ୍ଠିତ ହେଲେ ଚଳିବ ?" ଲେଖାରେ ଯେପରି ଦିଶୁଛି, ସେହିପରି ଈର୍ଷାରେ ସେ ଏକଥା କହି ନଥିଲେ । ମର୍ଫିଙ୍କର ଏଭଳି ସୌଜନ୍ୟ ଯେ, ଈର୍ଷାରେ କଥାଟାଏ କହିଲେ ବି, ତାହା ସହୃଦୟ ଓ ସଦୁଦ୍ଦେଶ୍ୟ-ସଂପନ୍ନ ବୋଲି ମନେ ହୁଏ ।

କେବେ ହେଲେ ମୁଁ ଫୋର୍‌ମାଷ୍ଟର୍ କଫି ହୋଟେଲରେ ସକାଳେ କଫି କପେ ଖାଇବାକୁ ପଶି ନାହିଁ । ସହରରେ ସେଠାକୁ ନ ଯାଇଥିବା ଲୋକ ବୋଧହୁଏ ମୋ ମୁଁ । ସମସ୍ତେ ସେଠାକୁ ଯିବାରେ ଅଭ୍ୟସ୍ତ, ଏହା ଗୋଟାଏ ଆଲୋଚ-ସ୍ଥାନ ଆମ ସହରରେ । ଆମେ ଯାଇ ହୋଟେଲ ବାଲୀଙ୍କ ଟେବୁଲ୍ ପାଖେ ଦୁଇଟା ଷ୍ଟୁଲ ଅଧିକାର କଲୁଁ ଓ ହୋଟେଲ-ବାଲୀ ମିସ୍ ଲିଞ୍ଚ —ମୋର ସ୍କୁଲ-ସାଥି—ଆମ ଦୁହିଁଙ୍କ ପାଇଁ ଦୁଇ କପ କଫି ତାଙ୍କ ଟେବୁଲରେ ସଟ୍‌କିନି ଦେଇ ଦେଲେ—ଟୋପେ କଫି ବି ପ୍ଲେଟରେ ଢଳି ଗଲା ନାହିଁ । କପ୍ ପାଖରେ ଗୋଟିଏ ଗ୍ଲେଟିଆ ସର ବୋତଲ ଥାଏ । ଦୁଇଟି ଚାମଚେଲା ସେ ଦୁଇଖଣ୍ଡି କାଗଜରେ ଗୁଡ଼ାଇ, ପଶା କାଠି ଗଡାଇଲା ପରି ଆମ ଆଡକୁ ଗଡ଼ାଇ ଦେଲେ । ତାକୁ ଦେଖି ମର୍ଫି କହିଲେ, "ଯେ ସାପର ଆଖି ।"

ମିସ୍ ଲିଞ୍ଚ୍—ମିସ୍‌ଟା ଏତେବେଳକୁ ତାଙ୍କ ନାମର ଅଂଶ ହୋଇ-ଗଲାଣି – ତାଙ୍କ ବ୍ୟକ୍ତିତ୍ୱର ଏ ଉପାଧିଟା ଗୋଟାଏ ଅଙ୍ଗ ମଧ୍ୟ । ମୁଁ ବୁଝୁଛି ସେ ନିଜ ନାମରୁ ମିସ୍ ଉଠାଇ ମିସେସ୍ ଯୋଗ କରିବାକୁ ଆଉ ସମର୍ଥ ହେବେ ନାହିଁ । ତାଙ୍କ ନାକ ବର୍ଷକୁ ବର୍ଷ ବେଶି ନାଲିଆ ଦିଶୁଛି—କାରଣ ଏହା ରୋଗ ଯୋଗୁଁ, ମଦ ଯୋଗୁଁ ନୁହେଁ ।

ମିସ୍ ଲିଞ୍ଚ୍ କହିଲେ, "ନମସ୍କାର, ଏଥାନ୍! ଆଜ ବୋଧହୁଏ କୌଣସି ଉତ୍ସବ ଉପଲକ୍ଷେ ଏଠିକି ଆସିଛ ?"

ମୁଁ କହିଲି, "ଯେ ମୋତେ ଟାଣି ଆଣିଲା ।" ତା' ପରେ ସନ୍ଧ୍ୟା ଦୟିତାର ଗୋଟାଏ ପରୀକ୍ଷା ସ୍ୱରୂପ ମୁଁ ଡାକିଲି, "ଆଜି !"

ପଛ ଆଡ଼ୁ ଗୋଟାଏ ଗୁଜ ବାଜିଲା ପରି ସେ ଚଟ୍‌କିନା ମୁହଁ ବୁଲାଇ ଦେଲେ ତା'ପରେ ତାଙ୍କର ତାତ୍ପର୍ଯ୍ୟଟା ଅନ୍ତରରେ ପ୍ରବିଷ୍ଟ ହେବାରୁ ସେ ମୁରୁକି ମୁରୁକି ହସିଲେ—ଓ, ତୁମେ ବିଶ୍ୱାସ କରିବ କି ନାହିଁ କେଜାଣି, ସେ ପଞ୍ଚମଶ୍ରେଣୀରେ ମୁଣ୍ଡରେ ନାଲି ଗୋଲାପ ଓ ଦେହରେ ଫ୍ରକ ପିନ୍ଧି ଠିକ୍ ଯେମିତି ଦିଶୁଥିଲେ, ଏ ମୁହୂର୍ତ୍ତରେ ତାଙ୍କ ରୂପ ସେଇମିତି ହୋଇ ଗଲା ।

"ତୁମକୁ ଦେଖି ବଡ ସୁଖ ଲାଗୁଛି, ଏଥାନ୍", ସେ କହିଲେ ଓ ଖଣ୍ଡେ କାଗଜ ରୁମାଲରେ ନିଜ ନାକକୁ ପୋଛି ବସିଲେ ।

ମର୍ଫି ଚିନାଚୋଲାର କାଗଜ କାଢ଼ି କାଢ଼ି କହିଲେ, "ମୁଁ ଯେତେବେଳେ ଏକଥା ଶୁଣିଲି, ମୋତେ ଆଶ୍ଚର୍ଯ୍ୟ ଲାଗିଲା ।" ମର୍ଫିଙ୍କର ନଖଗୁଡ଼ିକରେ ନଖରଙ୍ଗ ଲଗା ହୋଇଥାଏ । "ମନରେ ଗୋଟାଏ ଧାରଣା ହୋଇଗଲେ ତାହା ଦୃଢ଼ ଆସନ ଜମାଇ ବସେ ଓ ତାହା ନିର୍ଘାତ ସତ୍ୟବୋଲି ବିଶ୍ୱାସ ହୋଇଯାଏ, ସେ କଥା ସତ ନୁହେଁ ବୋଲି ପରେ ସଂଦେହ ହେଲେ ମନ ବଦଳି ଯାଏ ।"

"କେଉଁ କଥାକୁ ଲକ୍ଷ୍ୟ କରି ଏ ସବୁ କହୁଛ ମୁଁ ଧରି ପାରୁନାହିଁ ।"

"ମୁଁ ବି ଠିକ୍ ଠିକଣା ପାଉନାହିଁ । ଧେତ୍, ଏ କାଗଜ ଗୁଡ଼ାକ ! କାଗଜରେ ନ ଗୁଡ଼ାଇ ଗୋଟାଏ ପାତ୍ରରେ ଚିନା ଟିକିଏ ଦେଇ ଦେଲେ କ'ଣ ମାଡ଼ ହୋଇ ଯାନ୍ତା କେଜାଣି !"

"ବୋଧହୁଏ ଗ୍ରାହକ ବେଶୀ ଚିନା ଖାଇ ଦେବେ ବୋଲି ଡର ।"

"ହଁ, ସେଇଆ ନିଶ୍ଚୟ । ମୁଁ ଜଣକୁ ଜାଣେ, ସେ କିଛି ଦିନ ଖାଲି ଚିନା ଖାଇ ରହିଗଲା । ସେ ଅଟୋମାଟିକ୍ କଫି ମେସିନ୍ ପାଖରେ ଯାଇ ପହଞ୍ଚେ—ଗୋଟାଏ ଆଠଣି ମେସିନ୍‌ରେ ଗଳେଇ ଦେଲେ ଗୋଟିଏ ଛିଦ୍ରବାଟେ କପେ କଫି ବାହାରି ପଡ଼େ ; ଆଉ ଗୋଟିଏ ଛିଦ୍ରବାଟେ ଚିନା ବାହାରେ ।"

ସେ କଫି ଅଧେ ଖାଇ ଦେଇ କପ୍‌ଟା ତଳ ଛିଦ୍ରକୁ ଦେଖାଇ ଦିଏ । ତଳରେ କପ୍ ପୂର୍ଣ୍ଣ । ଶେଷରେ ତଳ ଚକ ଖାଇଦିଏ । ଦୁଃଖ ଲାଗୁ କି ନ ଲାଗୁ, ବଗିଚାର ଉପାସରେ ମରିବାରୁ ରକ୍ଷା ପାଇ ଗଲି ।"

ସବୁଦିନ ପରି ଆଜି ବି ମନେ ହେଲା ଏହା ମର୍ଫିଙ୍କ ଆତ୍ମଚରିତର ଏକ ଅଂଶ । ବିଚିତ୍ର ଏ ଲୋକ, ଜୀବନର ଝଡ଼ ଝଞ୍ଜା ସବୁ ବେଶ୍ ସହିଛି । ବୟସ କେତେ ଜାଣିବାର ଉପାୟ ନାହିଁ, ତଥାପି ନଖ ରଙ୍ଗାଇବାର ସଉକ ରହିଛି । ମୋ'ର ବିଶ୍ୱାସ ସେ ଜଣେ ଉଚ୍ଚଶିକ୍ଷିତ ଲୋକ—ତାଙ୍କର ଚିନ୍ତାର ପ୍ରଣାଳୀ ଦେଖି ଏ ଅନୁମାନ କରୁଛି । ତାଙ୍କ ପାଣ୍ଡିତ୍ୟ ନିମ୍ନସ୍ତର ଲୋକଙ୍କ କଥା ଢଙ୍ଗରେ ଲୁଚିରହି ଥାଏ । ଚଲାକ, କଷ୍ଟସହିଷ୍ଣୁ, ଅଭଦ୍ର, ଅଶିକ୍ଷିତ ଲୋକଙ୍କ ପରି ତାଙ୍କର କଥାଭାଷା । ମୁଁ ପଚାରିଲି, "ସେଇ ଯୋଗୁଁ କ'ଣ ତୁମେ ଏବେ ପୁଣି ଗୋଟିଏ ଟେଲା ତଳ କଫିରେ ପକାଉଛ ?"

ସେ ଧୀରେ ନାକଟି ହସିଲେ, କହିଲେ, "ପ୍ରତ୍ୟେକ ଲୋକର ବିଚାରଧାରା ଓ ମତବାଦ ସ୍ୱତନ୍ତ୍ର । ମଣିଷ ଜୀବନ-ସଂଗ୍ରାମରେ ଯେତେ ହାରି-ଯାଉ ପଛେ, କାହିଁକି ହାରିଲା ସେ ବିଷୟରେ ଗୋଟା ଏ ମତବାଦ ଆବିଷ୍କାର କରି ଆତ୍ମ-ସନ୍ତୋଷ ପାଇବ । ନିଜର ସ୍ୱତନ୍ତ୍ର ମତବାଦ ଥିଲେ ତୁମେ ଜୀବନର ଗଳିକନ୍ଦିରେ ଠିକ୍ ବାଟ ଦେଖି ଚାଲିଯିବ ; ରାସ୍ତା ଉପରେ ସାଇନ୍ ବୋର୍ଡ ଥାଉ ନ ଥାଉ । ତୁମ ମାଲିକଙ୍କ ବିଷୟରେ ମୋର ମତବାଦ ଓଲଟ ପାଲଟ ହୋଇଯିବାରୁ ମୁଁ ଅଡୁଆରେ ପଡ଼ିଛି ।"

ମୁଁ ଅନେକ ଦିନ ହେଲା ଘର ବ୍ୟତୀତ ଅନ୍ୟ କୌଣସି ଠାରେ କଫି ଖାଇ ନ ଥିଲି । ଏହା ଖୁବ୍ ଭଲ କଫି ବୋଲି କହି ପାରୁନାହିଁ । କଫି ପରି ତ ଆଦୌ ଲାଗିଲାନାହିଁ, ତେବେ ଖୁବ୍ ଗରମ ଥିଲା । ମୋ' କାମିଜରେ ଟୋପେ ଇଡ଼ିଗଲା, ମାଟିଆ ଦାଗ ଲାଗିବାରୁ ଜାଣୁଛି ଏଥିରେ କଫି ପରି କିଛି ପଡ଼ିଥିଲା ।

ମର୍ଫିଙ୍କୁ କହିଲି, "ତୁମେ କ'ଣ କହୁଛ, ମୁଁ କିଛି ଜାଣି ପାରୁ-ନାହିଁ ।"

"ମୋର ଏ ଧାରଣାଟା କେମିତି ହେଲା ଖୋଲି ହେଉଛି । ସେ ଏଠାରେ ପଚାଶ ବର୍ଷ ହେଲା ରହିଲେଣି ବୋଲି କହିବାର ଶୁଣି ବୋଧ-

ହୁଏ ମୋର ଏ ଧାରଣା ହୋଇଛି । ୩୫ ବର୍ଷ ବା ୩୭ ବର୍ଷ ହେଲେ ଆମେରିକାକୁ ଆସିଥିଲେ କହିବାର କିଛି ନ ଥିଲା, କିନ୍ତୁ ୪୦ ବର୍ଷ ହେଲେ ତ ଅଡୁଆ !"

"ଏ କଥାର ମର୍ମ ବୁଝିଲା ଭଳି ବୁଦ୍ଧି ମୋର ନାହିଁ, ସ୍ୱୀକାର କରୁଛି ।"

"ଚାଳିଶ ବର୍ଷ ପୂର୍ବେ ଯଦି ଆସିଥାନ୍ତି, ତେବେ ଆସିବା ସାଲ ହେଲା ୧୯୨୦ । ତଥାପି କଥାଟା ତୁମେ ଧରିପାରୁନାହିଁ, ଦେଖୁଛି । ବୁଝିଲ, ବ୍ୟାଙ୍କରେ ଗ୍ରାହକଙ୍କର ଭଲମନ୍ଦ ଖୁବ୍ ଶୀଘ୍ର ଠଉରେଇ ନେବାକୁ ହୁଏ, ନ ହେଲେ ଠକାଠକି ହେବେ । ଏହିପରି ସତର୍କ ହେବେ ଚଳୁଚଳୁ ମନ ଭିତରେ ବିଚାରର ଗୋଟାଏ ପ୍ରଣାଳୀ ଗଢ଼ି ଉଠେ । ପ୍ରତିକ୍ଷେତ୍ରରେ ଅଲଗା ଅଲଗା କରି ଧଡ଼ିଣ୍ଡି ହେବାକୁ ପଡ଼େନାହିଁ । ମଣିଷଟେ ଆସି ପହଞ୍ଚିଲା ମାତ୍ରେ ତା' ବିଷୟରେ ସିଦ୍ଧାନ୍ତ ଠୁଙ୍ଗ୍ କରି ମନରେ ଝଲକିମାରେ । ଅବଶ୍ୟ କେବେ-କେବେ ଭୁଲ ହୁଏ, କିନ୍ତୁ ହାରାହାରି ଶହେକୁ ଥରେ ଅଧେ । ଏ କ୍ଷେତ୍ରରେ ବି ଭୁଲ ହୋଇପାରେ, କିନ୍ତୁ ମନେ ହୁଏ, ତୁମ ମାଲିକ ସମ୍ଭବତଃ ୧୯୨୦ରେ ଆମେରିକା ଆସିଥିଲେ ।"

ମୋ କପି ସରିଲା । ମୁଁ କହିଲି, "ମୋର ଘରଓଳିଆ ବେଳ ହୋଇଗଲା ।"

ମର୍ଫି କହିଲେ, "ତୁମେ ବି ମୋତେ ହଡ଼ବଡ଼େଇ ଦେଉଛ । ତୁମେ ଯଦି ପ୍ରଶ୍ନ ପରିର ମୋଠାରୁ କିଛି ଆଦାୟ କରିବାକୁ ଚାହାନ୍ତ, ତେବେ ମୋଠାରୁ କଥା ପାଇବା ସହଜ ହୁଅନ୍ତା ନାହିଁ । ତୁମେ ତ ପଚାରୁ ନାହିଁ । ତେଣୁ ବାଧ ହୋଇ ମୋତେ ସବୁ କଥା ଫିଟାଇ କହିବା ଦରକାର ପଡ଼ୁଛି । ୧୯୨୧ରେ ପ୍ରଥମ କରି ବୈଦେଶିକ-ପ୍ରବେଶ-ନିରୋଧ ଆଇନ୍ ପାଶ୍ ହେଲା ।"

"ମାନେ ?"

"ମାନେ, ୧୯୨୦ରେ ଯେ ଯଦି ଆସିଥାନ୍ତି, ନିର୍ବାଧରେ ଆସିଥିବେ । କିନ୍ତୁ ୧୯୨୧ ରେ ଯଦି ଆସିଥିବେ, ତେବେ ବିନା ଅନୁମତିରେ ତାଙ୍କର ଆସିବା ଅସମ୍ଭବ ।"

"ଅର୍ଥାତ୍ ?"

"ଅର୍ଥାତ୍—ମୋର ନେଉଳ-ବୁଦ୍ଧି କହୁଛି, ସେ ବେଆଇନ୍

ସ୍ୱବରେ ୧୯୨୧ ପରେ ଆସିଥିଲେ । ତେଣୁ ଘରକୁ ଯିବାକୁ ପାସ୍‌ପୋର୍ଟ୍ ପାଇବା ତାଙ୍କ ପକ୍ଷରେ ସମ୍ଭବ ହେବନାହିଁ ।"

"ଭଗବାନ୍, ମୁଁ ବ୍ୟାଙ୍କ୍‌ବାଲା ନୁହେଁ—ଭୁଲ ହୋଇଛି ।"

"ତୁମେ ବ୍ୟାଙ୍କ୍‌ରେ କାମ କରୁଥିଲେ ମୋ'ଠାରୁ ଆହୁରି ବିଚକ୍ଷଣ ହୋଇଥାନ୍ତ । ମୁଁ ଗୁଡ଼ାଏ ଗପେ । ସେ ଯାହାହେଉ, ତୁମ ମାଲିକ ଯଦି ସ୍ୱଦେଶକୁ ଫେରନ୍ତି, ତେବେ ମୋ'ର ମତବାଦ ଭୁଲ । ଟିକିଏ ଅପେକ୍ଷା କର—ମୁଁ ଆସୁଛି । କଫି ଦାମଟା ମୁଁ ଦେବି ।"

ମୁଁ କହିଲି, "ଧନ୍ୟବାଦ, ଆଜ୍ଞା !"

"ଆଉ କେବେ କେବେ ଆସୁଥିବ ଏଠି ! ତୁମେ ତ କେବେ ଆସ ନାହିଁ ?"

"ନିଶ୍ଚୟ ଆସିବି ।"

କଫି ହୋଟେଲରୁ ବାହାରି ଆମେ ଗଳି ପାର ହେଲା ହେଲେ ସର୍ଫି କହିଲେ, "ତୁମ ଇଟାଲୀୟ ମହାତ୍ମାଙ୍କୁ କେବେ କହିବ ନାହିଁଟି, ସେ ଆମେରିକାରେ ଅନଧିକାର ପ୍ରବେଶ କରିଥିବାରୁ ତାଙ୍କୁ ତଡ଼ା ଯାଇ ପାରେ ବୋଲି ମୁଁ ତାଙ୍କଠାରେ ମାର୍କା ମାରିଦେଲି ।"

"ମୋର କହିବା କି ଦରକାର ?"

"ମୋ'ର ତୁମକୁ କହିବା ବା କି ଦରକାର ଥିଲା ? ସେହି ଅଳଙ୍କାର ବାକ୍ସରେ କ'ଣ ଧରିଛ ?"

"ଏହା ଭିତରେ ମୋର ନାଇଟ୍-ଟେମ୍‌ପ୍ଲାର୍ ଟୋପି । ପର ଗୁଡ଼ାକ ମଇଳା ହୋଇଯାଇଛି । ସଫା ହୋଇ ପାରିବ କି ନାହିଁ ଦେଖାଇବାକୁ ଆଣିଛି ।"

"ତୁମେ କ'ଣ ଫ୍ରି-ମେସନ୍ ସଂଘରେ ମେମ୍ବର ?"

"ଆମେ ତ ବଂଶପରମ୍ପରାରେ ହୋଇ ଆସୁଛୁ । ଜର୍ଜ ୱାସିଂଟନ୍ ଏ ସଂଘର ସଭାପତି ହେବା ପୂର୍ବରୁ ମୋ'ର ପିତୃ-ପିତାମହ-ପ୍ରପିତାମହ ପ୍ରଭୃତି ଫ୍ରି-ମାସନ୍ ହୋଇ ଆସୁଥିଲେ ।"

"ଜର୍ଜ ୱାସିଂଟନ୍ ବି ଏଇ ସଂଘର ? ଆଚ୍ଛା, ମିଷ୍ଟର ବେକର୍ କ'ଣ ଏଥିରେ ଅଛନ୍ତି ।"

"ତାଙ୍କ ବଂଶରେ ମଧ୍ୟ ଏ ସଂଘର ମେମ୍ବର ପଦ ଅଛି ।"

ସେଦିନ ବେଳକୁ ଆମେ ଆମ ବାଡ଼ିଆଡ଼ ଗଳିରେ ପଶିଥାଉଁ । ମର୍ଫି ବ୍ୟାଙ୍କର ବାଡ଼ଦୁଆର ଗୁଡ଼ିକ ତାଙ୍କ ପକେଟରୁ ବାହାରି ବାହାର କରୁ କରୁ କହିଲେ, "ଓଃ, ବୋଧହୁଏ ସେଇ ଯୋଗୁଁ ଫ୍ରିମେସନ୍ ଘରର ସଭା ଆରମ୍ଭ କଲା ପରେ ଆମେ ଆମ ବ୍ୟାଙ୍କ୍‌ର ଟଙ୍କା ସିନ୍ଦୁକ ଫିଟାଉଁ । ବସ୍ତି ଧରି ଆଳତି କରୁଥିଲେ ବି ହେଉଥାନ୍ତା । ବ୍ୟାଙ୍କ୍ ସିନ୍ଦୁକଟା ଗୋଟାଏ ପବିତ୍ର ପଦାର୍ଥ ନା ?"

ମୁଁ କହିଲି, "ମର୍ଫି ! ଆଜି ସକାଳ ଯାକ ତୁମେ ଖାଲି ଧର୍ମ-ବିଦ୍ୱେଷୀ ହୋଇ ପଡ଼ୁଛ । ଇଷ୍ଟର୍ ପରି ପବିତ୍ର ଦିବସ ତୁମ ମନର ପାପକ୍ଷାଳନ କରି ପାରି ନାହିଁ, ଦେଖୁଛି ।"

ସେ କହିଲେ, "ଏ କଥାର ସତ୍ୟାସତ୍ୟ ଆଜିଠାରୁ ଆଠଦିନରେ ଜଣା ପଡ଼ିବ । ହଁ, ଠିକ୍ କହୁଛି । ଛାଡ଼ ସେ କଥା । ଘଣ୍ଟାରେ ଘଣ୍ଟାରେ ଦଶଟା ବାଜିଗଲେ ଆମେ ମୁଣ୍ଡରୁ ଟୋପି କାଢ଼ି ପରମ ପବିତ୍ର ପଦାର୍ଥ ଆଗରେ ମୁଣ୍ଡ ନୁଆଇଁ ଠିଆ ହେଉ । ଦଶଟାକୁ ଗୁଡ଼ିଏ ଆଉଥିବା ତାଲା ତା' ମନକୁ ଫିଟିଯାଏ । ଏ ଦେବତାଙ୍କର ଯାଜକ ଫାଦର୍ ବେକର ଭକ୍ତିରେ ଆଣ୍ଠୁମାଡ଼ି ଡ୍ରେଜେରୀ ଖୋଲନ୍ତି—ଆମେ ସମସ୍ତେ ପରମ-ଇଶ୍ୱର ଧନ-ଦେବତାଙ୍କୁ ନମସ୍କାର କରୁଁ ।"

"ମର୍ଫି, ତୁମେ କେତେ କଡ଼ାରେ କଡ଼େ !"

"ହୋଇପାରେ । ଗୁଳମାର ଏ ପୁରୁଣା ତାଲାଟାକୁ । ଏଇଟାକୁ ଗୋଟାଏ କୋଦାଳରେ ପିଟିଲେ ଫିଟିବ, ଏ ଗୁଡ଼ିକରେ ନୁହେଁ ।" ସେ ଗୁଡ଼ିକୁ ଖଡ଼ ଖଡ଼ କରି ଦୁଆରକୁ ଗୋଇଠା ମାରୁଥାନ୍ତି । କିଛି ସମୟ ପରେ ଦରଜା ଫିଟିଲା । ସେ କ୍ଲିନେକ୍ସ୍ କାଗଜ ଖଣ୍ଡେ ପକେଟରୁ କାଢ଼ି ଦୁଆରର ତାଲା ତଳେ ସେ ଖଣ୍ଡ ଖଣ୍ଡ କରି ଗେଞ୍ଜିଲେ ।

ମୁଁ ପଚାରିବାକୁ ବସିଥିଲି, ଅଟକିଗଲି । ପଚାରିବା ଲାଗଯୋଗ ନୁହେଁ ଯେ !

ମୋ'ର ବିନା ପ୍ରଶ୍ନରେ ସେ ଉତ୍ତର ଦେଲେ, "ଏ ଗଳିଆ ଦୁଆରଟା ମନକୁ ବନ୍ଦ ହୋଇ ଫିଟିବ ନାହିଁ । ଟଙ୍କା ସିନ୍ଦୁକ ଫିଟି ସାରିଲା ପରେ ବେକର୍ ଆସି ଏ ଦୁଆର ବନ୍ଦ ହୋଇଛି କି ନାହିଁ ଚେକ୍ କରନ୍ତି ଅବଶ୍ୟ । ହଁ, ମୋ ସନ୍ଦେହ କଥା ମ୍ୟାଲୁଲେଙ୍କୁ କହିବ ନାହିଁ ଟି ? ସେ ବେଶ୍ ପଇସାବାଲା ଲୋକ ।"

"ଆଚ୍ଛା, ଯାଉଛୁ ସର୍"' କହି ବାଡ଼ପଟ ଗଳିର ମୋ' ଦୋକାନ ଦୁଆରକୁ ମୁଁ ପାର ହେଲି ; ମଧୁସୂଦନ ଯେଉଁ ବରଡ଼ଟା ପଶିବାକୁ ଚେଷ୍ଟା କରେ ତା'କୁ ଆଖି ବୁଲାଇଲି । ଆଜ ତା'ର ଦେଖା ଦର୍ଶନ ନାହିଁ ।

ଭିତରେ ପଶି ଦେଖିଲି, ଦୋକାନଟା ଅଲଗା ଦିଶୁଛି, ତା'ର ଏ ନୂଆ ରୂପ ମୋତେ ବିସ୍ମିତ କଲା । ଏଭଳି କେତେକ ଜିନିଷ ଦିଶିଲା ଯାହା ପୂର୍ବେ ମୋ ଆଖିରେ ପଡ଼ି ନଥିଲା ; ପୁଣି, ଯେଉଁ ଜିନିଷଗୁଡ଼ାକ ଦେଖିଲେ ମୋତେ ଚିଡ଼ ମାଡ଼େ, ବିରକ୍ତ ଲାଗେ, ସେଗୁଡ଼ାକ ଆଦୌ ଆଖିରେ ପଡ଼ିଲା ନାହିଁ । ଏଭଳି କାହିଁକି ହେଲା ମୁଁ ଠଉରାଇ ପାରିଲି ନାହିଁ । ଅଦ୍ଭୁତ କଥା ! ମୁଁ କ'ଣ ନୂଆ ଆଖିରେ—ନା ନୂଆ ଚଷମାରେ ସଂସାରଟାକୁ ଦେଖୁଛି ! ଅଉ କ'ଣ ସଂସାରଟା ମୋ ସକାଶ ନୂଆ କଳେବର ଗ୍ରହଣ କରିଛି !

ପୁରୁଣା ଫ୍ଲାସ୍ ପାଇଖାନାର କ'ଣା ପାଇପ୍‌ଟା ଧୀରେ ଧୀରେ ଫସ୍ ଫସ୍ କରୁଥାଏ । ପାଣି ଖର୍ଚ୍ଚ ମାପିବାକୁ ଆମ ସହରରେ ମିଟର ବସି ନଥିବାରୁ ମେରୁଲେ କଣା ପାଇପ୍‌ଟା ବଦଳାଇବା ବିଷୟରେ ଧ୍ୟାନ ଦେଉନାହାନ୍ତି । ଯେତେ ପାଣି ବୃଥାରେ ବୋହିଯିବ ଯାଉ, ତାଙ୍କୁ କ ଲାଗେ ? ମୁଁ ଦୋକାନର ସାମନା ପଟକୁ ଗଲି ; ପୁରୁଣାକାଳିଆ ତଖଟ ତଳୁ, ମଝିରେ ଖାଇଥିବା ଦୁଇ ପାଉଣ୍ଡିଆ ଗୁଣ୍ଡଟା ଉଠାଇ ଆଣିଲି ; ଗାଧୁଆ ଘରକୁ ଯାଇ, ଫ୍ଲାସ୍ ପାଇଖାନାକୁ ଯେଉଁ ଶିକୁଳି ଟାଣି ପାଣି ଛଡ଼ାଯାଏ, ତା'ର ମୂଳରେ ଥିବା ଓକକାଠର ଛୁଟିକିଣି ଉପରେ ସେଇ ଦୁଇପାଉଣ୍ଡିଆ ଗୁଣ୍ଡଟା ଥୋଇଲି । ଶିକୁଳି ଟାଣିଲେ ଯାହା ହୁଅନ୍ତା ସେଇ ଫଳ ହେଲା, ଫ୍ଲାସ୍ ପାଇଖାନାରେ ଗଦ୍ ଗଦ୍ ହୋଇ ପାଣି ପଡ଼ିଲା, ଓ ଉପରେ ଗୁଣ୍ଡର ଚାପ ଯୋଗୁଁ ପାଣି ଅବିଶ୍ରାନ୍ତ ପଡ଼ିବାକୁ ଲାଗିଲା । ମୁଁ ଫେରିଗଲି ଦୋକାନର ସଦର ଦରଜା ପାଖକୁ; କାନ ଡେରି ଶୁଣିଲି, ପାଇଖାନା ଭିତରର ଗଦ୍ ଗଦ୍, ଭସ୍ ଭସ୍ ଶବ୍ଦ ସଦର ଦରଜାକୁ ବେଶ୍ ଶୁଣାଯାଉଥାଏ । ଏ ଶବ୍ଦ ଯେ ପାଇଖାନାରେ ପାଣି ପଡ଼ିବା ଶବ୍ଦ ସେଥିରେ କାହାର ଭୁଲ୍ ହେବାର ଉପାୟ ନାହିଁ । ତା' ପରେ ପାଇଖାନା ଘରକୁ ଫେରିଯାଇ ଗୁଣ୍ଡଟା କାଢ଼ି ଆଣିଲି ଓ ଝରକା ଉପରେ ତା'ର

ଯଥାସ୍ଥାନରେ ତା'କୁ ଥୋଇଲି । ତା'ପରେ ମୁଁ ଗଲି, କାଉଣ୍ଟର ଟେବୁଲ ପାଖ ମୋ ଆସ୍ଥାନକୁ । ସେଇ ସ୍ଥାନଟା ମୋ'ର ଧର୍ମପ୍ରଚାର-ବେଦିକା । ସେଇଠାରେ ଠିଆ ହୋଇ ଦେଖିଲି, ଦୋକାନର ଥାକମାନଙ୍କରେ ମୋ'ର ଭକ୍ତମାନେ ମୋ' ବାଣୀର ଅପେକ୍ଷାରେ ରହିଛନ୍ତି । ଆହା ବିଚରେ ! ଅପେକ୍ଷା ନ କରିବାକୁ ତାଙ୍କର ଉପାୟ ନାହିଁ ; ସେମାନେ ଯେ ଘୁଞ୍ଚି ଚାଲି-ଯିବାକୁ ଅସମର୍ଥ । ବିଶେଷକରି ମୋ'ର ଦୃଷ୍ଟି ଯାଇ ପଡ଼ିଲା ମିକି-ମୂଷାର ମୁଖା ଉପରେ—ସକାଳ ଜଳଖିଆ ସାମଗ୍ରୀର ଥାକ ତା'ର ପୀଠ; ସେଇଠାରେ ତା' ଡବାର ଢାଙ୍କୁଣୀ ଉପରେ ରହି, ଏ ମୁଖା ମୋତେ ଚାହିଁ ମୃଦୁକ ହାସ ଦେଉଥାଏ । ମୂଷା-ମୁଖାର ହସ ହସ ମୁହଁ ଦେଖି ମୋ'ର ମନେ ପଡ଼ିଲା, ଷ୍ଟାଲେନ୍‌କୁ ଦେଇଥିବା ପ୍ରତିଶ୍ରୁତି । ଉପର ଥାକମାନଙ୍କରୁ ଜିନିସ କାଢ଼ିବାକୁ ଥିବା ହତାଟାକୁ ଆଣି, ତା'କୁ ବଢ଼ାଇ ଗୋଟାଏ ମୂଷାମୁଖା ଥିବା ଡବା ତଳକୁ ଖସାଇଲି ଓ ଡବାଟା ନେଇ ଷ୍ଟୋର୍‌ଘରେ ମୋ' କୋଟ୍ ତଳେ ରଖିଲି । ସେଠାରୁ ଆସି ମୋ ଆସ୍ଥାନରେ ପହଞ୍ଚି ଦେଖିଲି, ମୁଁ ନେଇଥିବା ଡବା ପଛ ପଟକୁ ଥିବା ମିକି-ମୂଷା-ମୁଖାର ପାଳି ପଡ଼ିଛି, ମୋ ଆଡ଼କୁ ଚାହିଁ ହସ ହସ ମୁହଁ କରିବାକୁ ।

ଟିଣ ଡବାରେ ଥିବା ଖାଦ୍ୟସାମଗ୍ରୀର ପଛପଟକୁ ହାତ ବଢ଼ାଇ ରେଜା ପଇସା ଥିବା ଛଣପଟ ଥଳିଟା ପଇସା ବାକ୍ସରେ ଅଜାଡ଼ିବାକୁ ଆଣିଲି ; ସେତିକିବେଳେ ମନେ ପଡ଼ିଲା ଗୋଟାଏ କଥା—ଆଉ ଟିକିଏ ପଛକୁ ହାତ ବଢ଼ାଇବାରେ "ମା" ନଳିବାଲା ଚର୍ବିଚିକଟା ରିଭଲ୍‌ଭର୍‌ଟା ହାତରେ ପଡ଼ିଲା । କାହିଁ କେତେଦିନ ହେଲା, ଏଇଟା ପଡ଼ିରହିଛି, ମୋ'ର ଠିକ୍ ମନେ ପଡୁନାହିଁ । 'ଆଇଭର୍ ଜନ୍‌ସନ୍' ନାମା ରିଭଲ୍‌ଭର୍; ମୂଠାରେ ରୁପା ଝାଉଁଣି ହୋଇଥିଲା, କିନ୍ତୁ ଏଥିରୁ ରୁପା ପାତଯାକ ବାହାର କରି ନିଆ ହୋଇଯାଇଛି । ରିଭଲ୍‌ଭର୍‌କୁ ଖୋଲି ଦେଖିଲି, ଭିତର ଭଉଁରି ଘରପଟେ ଥିବା ଟୋଟାଗୁଡ଼ାକ ଉପରେ ଶାଗୁଆରଙ୍ଗର କଳଙ୍କି ଲାଗିଗଲାଣି । ପୁରୁଣା ଚର୍ବି ରହି ରହି ରିଭଲ୍‌ଭର୍ ଭିତରର ଭଉଁରି ଏମିତି ବାନ୍ଧି ହୋଇ ଯାଇଥାଏ ଯେ, ଖୁବ୍ କଷ୍ଟରେ ବୁଲୁଥାଏ । ଏହି ଅକାମୀ, ଓ ସମ୍ଭବତଃ ବିପଦ୍‌ଜନକ, ଜିନିଷଟା ପଇସା ବାକ୍ସରେ ତଳ

ଖୋପରେ ଲୁଗୁଇ ରଖିଦେଲ । ପଇସାବାକ୍ସ୍‌ର ଆଉ ଗୋଟାଏ ଖୋପରୁ ଖଣ୍ଡେ ସଫା ଝାଡ଼ଣ କାଢ଼ି ମୋ ଅଣ୍ଟାରେ ବାନ୍ଧଦେଲ ଓ ତା'ର ଓପର ଅଂଶଟାକୁ ତଳକୁ ଟେକିଦେଲ, ବନ୍ଧା ହୋଇଥିବା ଦଉଡ଼ିଟା ଲୁଗୁଇବା ପାଇଁ ।

ପୃଥିବୀର କ୍ଷମତାପନ୍ନ ଲୋକଙ୍କ ସିଦ୍ଧାନ୍ତ, କାର୍ଯ୍ୟ ଓ ଅଭିଯାନ ଦେଖି ବସ୍ମିତ ନ ହୋଇଛୁ ଏପରି ଲୋକ ବୋଧହୁଏ କେହି ନାହାଁନ୍ତି । ଏମାନଙ୍କ ସୃଷ୍ଟି ମୂଳରେ କ'ଣ କଣ୍ଟୁଷ୍ଟଯୁକ୍ତ ଅଛି, ନା ନ୍ୟାୟ ଅଛି, ନା କେବଳ ଅକସ୍ମାତ୍ ଏମାନଙ୍କର ଆବିର୍ଭାବ ହୁଏ ? ବୋଧହୁଏ ଦିବା-ସ୍ୱପ୍ନ ଦେଖୁ-ଦେଖୁ, ମନରେ କଳ୍ପନା କରୁକରୁ, ଅନ୍ୟ ଲୋକଙ୍କ ବଡ଼ ହେବାର ଯେଉଁ ଗଳ୍ପ ଶୁଣାଯାଏ ତାକୁ ଶୁଣି ଉଦ୍ଧ୍ୱାବ ପ୍ରଭାବିତ ହେଉ ହେଉ, ମଣିଷ ନିଜେ ବଡ଼ ହେବାର ବାଟ ଧରିନିଏ ।

ମୁଁ ଠିକ୍ କେତେଦିନ ହେଲା ଏଇଭଳି କଳ୍ପନାରେ ମାତିଛି ତାହା ମୋର ସ୍ପଷ୍ଟ ମନେ ଅଛି; ମୁଁ ଜାଣେ, ମର୍ଫି ଯେଉଁଦିନ ବ୍ୟାଙ୍କ୍‌ଲୁଟି କରିବାର ସଫଳ ଉପାୟ ବିଷୟରେ ମୋତେ ବତାଇଲେ, ସେଇ ଦିନଠାରୁ ବଡ଼ ହେବାର ନିଶା ମୋତେ ଘୋଟିଛି । ମର୍ଫିଙ୍କ ପ୍ରତି ଉପାୟକୁ ମୁଁ ମନେ-ମନେ କେତେ ବାଣ୍ଟିଛି, ପିଲାଙ୍କ ଭଳି ଉତ୍ସୁକ ହୋଇ । ବଡ଼ ମଣିଷଙ୍କ ମନରେ ସାଧାରଣତଃ ଏଭଳି ଉତ୍ସୁକତା ଆସେ ବୋଲି ସେମାନେ ମାନନ୍ତି ନାହିଁ । ମୋ'ର କଳ୍ପନାରେ ଏହି ବ୍ୟାଙ୍କ-ଲୁଟି-ଯୋଜନାଟାର ଅଭିନୟ, ଦୋକାନରେ ମୋର ଦୈନନ୍ଦିନ ଜୀବନ ସଙ୍ଗେ ସମାନ୍ତରାଳ ଭାବରେ ଚାଲିଥାଏ; ଦୋକାନରେ ପ୍ରତ୍ୟେକଟି କାର୍ଯ୍ୟ ଏ ଅଭିନୟ ସଙ୍ଗେ ଠିକ୍ ମିଳି ଯାଉଥାଏ । ଆମ ପାଇଖାନାର କଣାପାଇପ୍ ଓ ଥାକରେ ଥିବା ଶସ୍ୟଡବା ଉପରର ମୂଷାମୁଖା, ମୋ କଳ୍ପନାରେ ବେଶ୍ ଖାପ ଖାଇଥାନ୍ତି; ବ୍ୟାଙ୍କ୍‌ର ଟଙ୍କାସିନ୍ଦୁକ ଫିଟିବାର ଯେଉଁ ବିବରଣୀ ମର୍ଫି ଦେଇଥିଲେ ତାହା ମଧ୍ୟ । ମୋ କଳ୍ପନା-ସୌଧର ପ୍ରତି କନ୍ଦିକନ୍ଦର ମଧ୍ୟ ଠିକ୍ ଭାବରେ ସାଜସଜ୍ଜା ହୋଇଗଲା— ବ୍ୟାଙ୍କ୍‌ର ଗଳି ଦୁଆରର ତାଲାତଳେ ଗେଞ୍ଜା ହୋଇଥିବା କ୍ଲୀନେକ୍ସ୍ କାଗଜର ଟୁକୁରାଟି ପର୍ଯ୍ୟନ୍ତ ମୋ କଳ୍ପନାର ଯଥାସ୍ଥାନରେ ଯାଇ ରହିଗଲା । ମୋ ମନ ଭିତରେ ଏହି କଳ୍ପନାର ଅଭିନୟ ଟିକିଏ ଟିକିଏ ହୋଇ ବଢ଼ି ଚାଲିଥିଲା; ଆଜଯାଏଁ ମନରୁ ତାହାର ବହିଃପ୍ରକାଶ

ହୋଇ ନ ଥିଲି । ଆଜ ହେଲି । ମାଇଖାନା ଶିକୁଳର ମୁଣ୍ଡରେ ଆଜ ଯେ ଦୁଇ ପାଉଣ୍ଡିଆ ଗୁଣ୍ଡଟା ନେଇ ଥୋଇଲି, ତାହା ହେଲି ମୋ ମନୋମଧ୍ୟ ଅଭିନୟର, କାର୍ଯ୍ୟର ବହିଃ ପ୍ରକାଶ । ପୁରୁଣା ପିସ୍ତଲଟା ଯାହା ବାହାର କଲି, ତାହା ଏ ଅଭିନୟର ବିଶେଷ-କାର୍ଯ୍ୟ । ଏଥର ମୋ'ର ମନକୁ ଆସିଲି, ଅଭିନୟଟି ଠିକ୍ କେତେ ସମୟ ଲାଗିବ ତାହାର ନିର୍ଣ୍ଣୟ କରିବା । ମନର ଅଭିନୟ କାର୍ଯ୍ୟରେ ନିର୍ଦ୍ଦିଷ୍ଟ ରୂପ ନେବାକୁ ଆରମ୍ଭ କରିଥାଏ ।

ଆଜଯାଏଁ, ମୋ ବାପାଙ୍କ ପୁରୁଣା ହ୍ୟାମିଲ୍‌ଟନ୍ ରେଳବାଇ ଘଡ଼ିଟା ମୁଁ ବ୍ୟବହାର କରୁଛି । ଏହା ଆକାରରେ ବେଶ୍ ବଡ଼, ଖୋଳଟା ରୂପାର, ଘଣ୍ଟାକଣ୍ଟା ଓ ମିନଟ୍ କଣ୍ଟା ଦୁଇଟା ମୋଟ ମୋଟ, ଘଣ୍ଟାର ସଂଖ୍ୟାଗୁଡ଼ିକ କଳା ଓ ମୋଟାମୋଟା । ରୂପ ଯାହା ହେଉ ପଛେ, ଟାଇମ୍ ରଖିବା ବିଷୟରେ ଏ ଘଣ୍ଟାକୁ ଖୁଣିବାକୁ ନାହିଁ । ଆଜ ଦୋକାନ ଝାଡ଼ୁ କରିବାକୁ ଆରମ୍ଭ କରିବା ପୂର୍ବରୁ ମୁଁ ଏ ଘଡ଼ିଟି ମୋ କାମିଜ ପକେଟ୍‌ରେ ରଖିଲି । ରଖିଲି ବେଳେ ଟାଇମ୍ ଦେଖିଥିଲି । ନଅଟା ବାଜ-ବାକୁ ଠିକ୍ ପାଞ୍ଚମିନଟ୍ ଥାଇ ମୁଁ ଦୁଆର ମେଲିଇ ଦୋକାନ ସାମନାର କଡ଼ରାସ୍ତାରେ ଦୁଇ ତିନି ଥର ଝାଡ଼ୁ ମାରିଥିଲି । ସପ୍ତାଶେଷ ଛୁଟି ଦିନଟାରେ ଏତେ ମଇଳା ଆସି ଏଠାରେ ଜମି ଯିବାର ଦେଖି ଆଶ୍ଚର୍ଯ୍ୟ ଲାଗେ; ପୁଣି ମଇଳାଟାରେ ପାଣି ବାଜ କାଦୁଅ ହୋଇଥାଏ ।

ଆମ ବ୍ୟାଙ୍କ୍‌ଟା ଠିକଣା ସମୟ ରଖିବାର ଗୋଟାଏ ଅଦ୍‌ଭୁତ ଯନ୍ତ୍ର—ମୋ ବାପାଙ୍କ ରେଳବାଇ ଘଡ଼ି ପରି । ନଅଟା ବାଜବାକୁ ଠିକ୍ ପାଞ୍ଚମିନଟ୍ ଥାଇ ମିଷ୍ଟର୍ ବେକର୍ ଏଲମ୍ ଷ୍ଟ୍ରୀଟ୍‌ରେ ଆବିର୍ଭୂତ ହେଲେ । ହ୍ୟାରି ରବର୍ଟ୍ ଓ ଏଡ଼ଥ୍ ୟୁାଲ୍‌ଡେନ୍ ବୋଧହୁଏ ତାଙ୍କୁଁ ଚୁହିଁ ରହିଥିଲେ । ସେ ଦୁହେଁ ଫୋରମାଷ୍ଟର୍ କାଫି ହୋଟେଲରୁ ଫେରି ରାସ୍ତା ମଝିରେ ମିଷ୍ଟର୍ ବେକର୍‌ଙ୍କୁ ସାକ୍ଷାତ୍ କଲେ ।

ମୁଁ ସ୍ୱାଗତ ସଂଭାଷଣ କଲି, "ସୁପ୍ରଭାତ, ମିଷ୍ଟର୍ ବେକର୍ ! ସୁପ୍ରଭାତ, ଏଡ଼ଥ୍ ! ସୁପ୍ରଭାତ ହ୍ୟାରି !"

ମିଷ୍ଟର୍ ବେକର୍ ପ୍ରତିସଂଭାଷଣ କଲେ, "ସୁପ୍ରଭାତ, ଏଥାନ୍ ! ମୁଁ ଦେଖୁଛି, ଦୁଆରମୁହଁରୁ ଏ ମଇଳା କାଢ଼ିବାକୁ ତୁମର ଗୋଟାଏ ପାଣି-ଚୁଙ୍ଗା ଦରକାର ।" ତିନି ଜଣଯାକ ବ୍ୟାଙ୍କ୍ ଭିତରେ ପଶିଲେ ।

ମୁଁ ଦୋକାନ ଦୁଆର କଡ଼ରେ ଘୁଞ୍ଚୁଣି ଡେ଼ରି, ଭିତରକୁ ଗଲି, ଓ ତଳକୁ ଉପରୁ ଗୁଣ୍ଡିଟା ଧରି, ପଇସା-ବାକ୍ସ କଡ଼କୁ ଯାଇ, ତା' ଖୋପଟା ମେଲାଇଲି; ତାଉତରରେ କିନ୍ତୁ ସୁଚିନ୍ତିତ ପଦକ୍ଷେପରେ ସେଠାରୁ ଗଲି ଗୋଦାମ ଘରକୁ; ପାଇଖାନା ଦୁଆର ଫିଟାଇ ପାଇଖାନା ଝଂଜରର ମୁଣ୍ଡରେ ଥିବା କାଠ ଛୁଟ୍‌କଣି ଉପରେ ଗୁଣ୍ଡିଟା ରଖିଲି । ତା'ପରେ ମୋ ଅଣ୍ଟାରୁ ଓହଳିଥିବା ଝାଡ଼ଣର ତଳ ମୁଣ୍ଡ ଟେକି କମରବନ୍ଧରେ ଖୋସିଲି ଓ ମୋ ବର୍ଷାତି କୋଟଟା ଲଗାଇ ବାଡ଼ଦୁଆରକୁ ଯାଇ ବାଡ଼ଦୁଆର ଟିକିଏ ମେଲାଇଲି । ମୋ ଘଡ଼ିର କଳା ମିନିଟକଣ୍ଟାଟା '୧୨'-ସଂଖ୍ୟାକୁ ଠିକ୍ ଛୁଇଁଲା ବେଳକୁ ମୁଁ ଶୁଣିଲି ଅଫିସ ଘଣ୍ଟାର ଶବ୍ଦ ଶୁଣାଗଲା । ଆମ ଷ୍ଟୋର୍ ଓ ବ୍ୟାଙ୍କ୍ ଭିତରେ, ଗଳିର ଦୂରତ୍ୱ ଆଠ ପାହୁଣ୍ଡ ବୋଲି ମାପିଲି; ମନେ ମନେ ତା'ସାଙ୍ଗେ ଆଉ କୋଡ଼ିଏ ପାହୁଣ୍ଡ ମାପିଲି । ପାଟି ନ ଫିଟାଇ ହାତ ଆଙ୍ଗୁଠିରେ ଏ ଦୂରତ୍ୱ ଗଣିଲି—କଳନା କଲି ଯେ ଦଶ ସେକଣ୍ଡ ଲାଗିବ । ତା'ପରେ ଆଉ ଥରେ ହାତ ହଲାଇ ପାହୁଣ୍ଡ ଗଣିଲି । ହାତରେ ପାହୁଣ୍ଡର ଅବଲମ୍ବ କରୁଥାଏ ଓ କେତେ ସମୟ ଲାଗୁଛି, ମନେ ମନେ କହୁଥାଏ—ଆଗ ଦୃଢ଼ ପଦକ୍ଷେପ କରି, କ୍ଷିପ୍ର ଗତିରେ କୋଡ଼ିଏ ପାହୁଣ୍ଡ, ତା'ପରେ ଆଉ ଆଠ ପାହୁଣ୍ଡ । ଏହାର ସମୟ କଷି ମୁଁ କବାଟଦୁଆର ବନ୍ଦ କଲି; ତା'ପରେ ବର୍ଷାତି କୋଟଟା କାଢ଼ିଲି, ଝାଡ଼ଣଟା ଅଣ୍ଟାରୁ ଫିଟାଇଲି, ଝଂଜିର ଉପରୁ ଗୁଣ୍ଡିଟା କାଢ଼ି ପାଇଖାନାରେ ପଡ଼ିଥିବା ପାଣି ବନ୍ଦକଲି; କାରବାର-ଟେବୁଲ ପାଖକୁ ଯାଇ ଡ୍ରଅରଟା ମେଲାଇଲି; ମୋ ନାଇଟ୍ ଟେମ୍ପ୍ଲାର୍ ହ୍ୟାଟ ଥିବା ବାକ୍ସଟା ଫିଟାଇ, ବନ୍ଦକଲି ଓ ତା'ଉପର ଫିତାକୁ ବାନ୍ଧିଲି । ଏ ସବୁ କଲାପରେ ବାଣ୍ଡ ଦୁଆରକୁ ଯାଇ, ଘୁଞ୍ଚୁଣି ଧରି ଘଡ଼ି ଦେଖିଲି । ୯ଟା ବାଜି ଦୁଇମିନିଟ-୨୦ ସେକଣ୍ଡ ହୋଇଥାଏ । ବେଶ୍ ! ଠିକ୍ ଟାଇମ ମୁତାବକ କାମ । ଆଉ ଟିକିଏ ଅଭ୍ୟାସ ହୋଇ ଗଲେ ସମୁଦାୟ ବ୍ୟାପାରଟା ଦୁଇ ମିନିଟ୍‌ରୁ କିଛି କମ୍‌ରେ ବି ହୋଇ ପାରିବ ।

ସାମନା ପାଖର ରାସ୍ତାଟାର ସଫେଇ ଅଧେ ସରିଛି, ଆମର ମୁଖ୍ୟ ସୋଲସବାଲ, ଷ୍ଟୋନ, ରାସ୍ତାର ଆରପାଖ ଫୋର୍ମାଷ୍ଟର୍ କାଫି ହୋଟେଲରୁ ଆସି ପହଞ୍ଚିଲେ ।

"ସୁପ୍ରଭାତ, ଏଥ୍ ! ମୋତେ ଖୁବ୍ ଜଲ୍‌ଦି ଅଧା-ପାଉଣ୍ଡ ଲହୁଣି, ପାଉଣ୍ଡେ ଘୁଷୁରି ମାଉଁସ, ବୋତଲେ ଦୁଧ, ଓ ଡଜନେ ଅଣ୍ଡା ଦିଅ ତ । ମୋ ଘରପାଖରେ ଏକାଥରକେ ସବୁ ଶେଷ ହୋଇଯାଇଛି ।"

"ଦେଉଛି, ଦେଉଛି ମାଲିକେ ! ସହରର ହାଲଚାଲ ସବୁ ଭଲ ତ ?" ମୁଁ ତାଙ୍କର ଅର୍ଡ଼ର ମୁତାବକ ସବୁ ଜିନିଷ ଏକାଠି କରି ଗୋଟାଏ ଖାଲି ଡବା ପିଟାଇଲି ।

ସେ କହିଲେ, "ସବୁ ଆଚ୍ଛା ! ମୁଁ ମିନିଟ୍‌କ ପୂର୍ବେ ଆସିଥିଲି । ଶବ୍ଦ ଶୁଣି ବାରିଲି, ତୁମେ ଗୋସଲଖାନାରେ ।"

"ମୁଁ ଦେଖୁଛି, ଈଶ୍ବରଙ୍କ କଡ଼ା ଶିକ୍ଷା ଅଣ୍ଡାପାକ ଖଲାସ କରୁ କରୁ ମୋତେ ପୂରା ହପ୍ତେ ଲାଗିବ ।"

ଷ୍ଟୋନ କହିଲେ, "ସେ କଥା ସତ । ପ୍ରକୃତିର ଡାକରା ନ ଶୁଣିବାକୁ ମଣିଷର ଗୁମର ନାହିଁ ।"

ବେଶ୍ ମୋର ଯୋଜନାଟା ଠିକ୍ ଧରିଛି ।

ଦୋକାନରୁ ଠିକ୍ ବାହାରିଲା ବେଳକୁ ସେ କହିଲେ, "ଆଚ୍ଛା, ତୁମର ସାଙ୍ଗ ସେ ଯେ ଡାନ ଟେଲର୍, ତାଙ୍କର ହୋଇଛି କ'ଣ ?"

"କେଜାଣି, ମୁଁ ତ କିଛି ଜାଣିନାହିଁ—କ'ଣ ମାଲପାଣିରେ ଟେର୍ ହେବାର ଦେଖିଲ ?"

"ନାଇଁ ନ ; ଖାସା ପ୍ରକୃତିସ୍ଥ ତ ଦିଶୁଥିଲେ, ସଫାସୁତୁରା ବି । ମୁଁ ପୁଲିସ୍‌ଗାଡ଼ିରେ ବସିଛି, ସେ ଆସି ପହଞ୍ଚି ତାଙ୍କ ଦସ୍ତଖତରେ ସାକ୍ଷୀ ପଡ଼ିବାକୁ କହିଲେ ।"

"କୋଉ ଦଲିଲରେ ?"

"ମୁଁ ସେ କଥା ଜାଣେ ନାହିଁ । ଦି' ଖଣ୍ଡ କ'ଣ କାଗଜ ଧରିଥିଲେ; କିନ୍ତୁ ମୁଁ ଭିତରଟା ଦେଖି ପାରିବି ନାଇଁ ବୋଲି କାଗଜର ଉପରପଟ ଲେଉଟାଇ ଦେଇଥିଲେ ।"

"ଦି' ଖଣ୍ଡ କାଗଜ ?"

"ହଁ' ଦି' ଖଣ୍ଡ । ସେ ଦୁଇଟା ଦସ୍ତଖତ କଲେ, ମୁଁ ବି ଦି'ଥର ସାକ୍ଷୀ ପଡ଼ିଲି ।"

"ସେ କ'ଣ ପ୍ରକୃତରେ ପ୍ରକୃତିସ୍ଥ ଥିଲେ ?"

"ମୋତେ ସେଇପରି ବୋଧହେଲା । ବାଳ କାଟିଥିଲେ, ବେକରେ ନେକଟାଇ ବି ଥିଲା ।"

"ଭଗବାନ୍‌ଙ୍କ ଅନୁଗ୍ରହରୁ ସେଇ କଥା ହୁଅନ୍ତା କି, ହାକମେ !"

"ମୋର ବି ସେଇ ଆଶା । ଆହା, ବିଚରା ! ମୋର ବିଶ୍ୱାସ, ମାତାଲମାନେ ତାଙ୍କ ଦୁରଭ୍ୟାସଟା ଛାଡ଼ିବାକୁ ମଝିରେ ମଝିରେ ଚେଷ୍ଟା ଚଳାଇଥାନ୍ତି । ହଉ ଭାଇ, ମୋର ଶୀଘ୍ର ଘରକୁ ଫେରିବା ଦରକାର ।" ଏହା କହି ସେ ଘୋଡ଼ାରେ ଗଲାପରି ଝପଟ ମାଇଲେ । ଷ୍ଟୋନିଙ୍କ ଭାର୍ଯ୍ୟା ତାଙ୍କଠାରୁ କୋଡ଼ିଏ ବର୍ଷ ସାନ । ମୁଁ ମୋ ଅଧା ରହିଥିବା କାମକୁ ଫେରିଲି, ଓ ସାମନାରୁ ବଡ଼ ବଡ଼ ମଇଳା ଖଣ୍ଡମାନ ମାଝି ଚଳକୁ ଖସାଇଦେଲି ।

ମୋତେ ବଡ଼ ଖରାପ ଲାଗୁଥାଏ । ବୋଧହୁଏ, ମନ୍ଦ କଳ୍ପନାକୁ କାର୍ଯ୍ୟରେ ପରିଣତ କରିବାର ପ୍ରଥମ ଉଦ୍ୟମରେ ଖରାପ ଲାଗେ ।

ସକାଳେ ଦୋକାନରେ ଭିଡ଼ ହେବ ବୋଲି ଯଥାର୍ଥ ଆଶଙ୍କା କରିଥିଲି । ଦେଖିଲି, ସହରର ପ୍ରତ୍ୟେକ ଲୋକଙ୍କର ପ୍ରତ୍ୟେକ ଜିନିଷ ସରିଯାଇଛି । ଆମ ଦୋକାନକୁ ଫଳ ଓ ପରିବାପତ୍ର ଦି' ପହର ପୂର୍ବରୁ ଆସି ନ ପହଞ୍ଚିଥିବାରୁ, ଗରାଖମାନଙ୍କର ନିଜ ମନମୁତାବକ ଜିନିଷ ବଛା-ବଛି କରି ନେବାର ଉପାୟ ନ ଥିଲା । ଯାହାବା ଜିନିଷ ଥିଲା, ତା'ରି ଉପରେ ଗ୍ରହିବା ଏତେ ବଢ଼ିଲା ଯେ, ମୋତେ ଅଣନିଃଶ୍ୱାସୀ ହୋଇ ଧାଁଧପଡ଼ କରିବାକୁ ପଡ଼ିଲା ।

ପ୍ରାୟ ଦଶଟାବେଳେ ମ୍ୟାରୁଲୋ ଆସି ପହଞ୍ଚିଲେ । ଆଶ୍ଚର୍ଯ୍ୟ କଥା, ସେ ଆଜି ମୋତେ କାମରେ ସାହାଯ୍ୟ କରିବାକୁ ଲାଗିଲେ—ଓଜନ କରି ପକାଉଥାନ୍ତି, ଜିନିଷ ପୁଡ଼ାବାନ୍ଧି ଗରାଖଙ୍କୁ ଦେଉଥାନ୍ତି ଓ ଦାମ ରଖି ଟଙ୍କା ବଦଳାଇ ପଇସା ବାକ୍‌ସରେ ପକାଉଥାନ୍ତି । ଅନେକ ଦିନ ହେଲା ସେ ଦୋକାନ କାମରେ ମୋତେ ସାହାଯ୍ୟ କରିନଥିଲେ । ଅଧିକାଂଶ ସମୟରେ ସେ ଖାଲି ଆସି ଦୋକାନ ଭିତରେ ଟିକିଏ ପଇଁତରା ମାରି ଦିଅନ୍ତି, ଚାରିଆଡ଼େ ଟିକିଏ ଆଖି ବୁଲେଇ ଦେଇ ବାହାରି ଯାଆନ୍ତି—ପ୍ରବାସୀ ଜମିଦାର ନିଜ ଜମିଦାରୀ ତଦାରଖ କଲାପରି । କିନ୍ତୁ ଆଜି ସକାଳେ, ନୂଆ ଜିନିଷ ଆସି ପହଞ୍ଚିବାରେ, ସେ ତାବଲ ଫିଟାଇ ଡବା ସବୁ ବାହାର

କଲେ ଓ ତବା ଫିଟାଇ କନସଥାକରେ ସେ ସବୁ ରଖିବାରେ ସାହାଯ୍ୟ କଲେ । ମୋ'ର ମନେ ହେଉଥାଏ, ସେ ବଡ଼ ଚଞ୍ଚଳ ଅବସ୍ଥାରେ ଥାନ୍ତି ଓ ମୁଁ ତାଙ୍କ ଆଡ଼କୁ ନ ଚାହିଁଲା ବେଳେ, ସେ ମୋର ଗତିବିଧି ଲକ୍ଷ୍ୟ କରୁଥାନ୍ତି । କଥାବାର୍ତ୍ତା ହେବାକୁ ଆମ ଦୁହିଁଙ୍କର ସମ୍ଭାବନା ନଥାଏ, କିନ୍ତୁ ମୁଁ ଅନୁଭବ କରୁଥାଏ ତାଙ୍କ ଆଖି ମୋ'ଉପରେ ବରାବର ରହିଛି । ମୁଁ ସେ ପ୍ରଚୁରକର ଲାଞ୍ଚ ପ୍ରତ୍ୟାଖ୍ୟାନ କରିଥିବାର ଶୁଣି ସେ ମୋତେ ଚାହୁଁଛନ୍ତି ବୋଲି ମୁଁ ଠଉରାଉଥାଏ । ହୁଏତ ମର୍ଫି ଯାହା କହିଥିଲା, ସେ କଥା ସତ । ଗୋଟାଏ ପ୍ରକୃତିର ଲୋକ ଅଛନ୍ତି, ଯେଉଁମାନେ, ତୁମେ ସତ୍ ପଥରେ ଥିବାର ଶୁଣିଲେ, ଖୋଜି ବସନ୍ତି, କେଉଁ ଅସତ୍ ଉଦ୍ଦେଶ୍ୟ ସାଧନ କରିବାକୁ ତୁମେ ସତ୍ ପଥରେ ରହିବାର ଛଳନା କରୁଛ ! ଯେଉଁମାନେ ନିଜ ଜୀବନତମାମ ଜୁଆ ଖେଳିଲା ପରି ଅନ୍ୟକୁ ଠକାଇ ପଇସା କରିବାରେ ଲାଗିଥାନ୍ତି, ଏ ସନ୍ଦେହ ସେଇମାନଙ୍କର ବେଶି । ବିଶେଷକରି ସେଇମାନେ ସତ୍ ଲୋକର କାର୍ଯ୍ୟକୁ ସଂଶୟରେ ଦେଖି, ସତ୍‌ପଥ ଗ୍ରହଣ କରି ସେ କେଉଁ ଅଭିସନ୍ଧି ପୂରଣ କରିବାକୁ ବସିଛି ଧନ୍ଦିଡ଼ି ହୁଅନ୍ତି । ଏ ଭାବ ମନରେ ହେବାରୁ ମୋତେ ଭିତରେ ଭିତରେ ହସ ମାଡ଼ିଲା, କିନ୍ତୁ ଏତେ ଭିତରେ ଯେ, ବାହାରକୁ ସେ ହସର ଭୁଜୁକା ବି ବାହାରିଲା ନାହିଁ ।

ପ୍ରାୟ ଏଗାରଟାରେ ମୋ ମେମ୍ବ ଆସି ଦୋକାନରେ ପହଞ୍ଚିଲେ; ନୂଆ ଛିଟ କନାର ସେମିଜ୍‌ରେ ସେ ବଡ଼ ସୁନ୍ଦର ଦିଶୁଥାନ୍ତି । ତାଙ୍କର ବାହାରର ସୌନ୍ଦର୍ଯ୍ୟ ଭିତରୁ, ମନର ଆନନ୍ଦ ଫୁଟି ଦିଶୁଥାଏ । ସେ ଟିକିଏ ଅଣନିଃଶ୍ୱାସୀ ବି ହୋଇ ପଡ଼ିଥାନ୍ତି । ତାଙ୍କୁ ଦେଖିଲେ, ଜଣାଯାଉଥାଏ, ସେ ଗୋଟାଏ ଆନନ୍ଦଦାୟକ, ମାତ୍ର ବିପଦସଂକୁଳ କାର୍ଯ୍ୟ କରି ପକାଇଛନ୍ତି । ପ୍ରକୃତରେ ସେ କରିଥାନ୍ତି ବି ସେଇଆ—ଆସିଲା ମାତ୍ରେ ସେ ମୋତେ ମାଟିଆ ରଙ୍ଗର ଗୋଟାଏ ପୁଳନ୍ଦା ବଢ଼ାଇଦେଲେ ।

ସେ କହିଲେ, "ମୁଁ ବିଚାରିଲି, ତୁମର ବୋଧହୁଏ ଏଇଟା ଦରକାର ।" ସେ ମ୍ୟାରୁଲୋଙ୍କ ଆଡ଼କୁ ଚାହିଁ ହସିଲେ । ସରସ ଚାହାଣି, ପକ୍ଷୀର ଚାହାଣି ପରି । ଯାହାଙ୍କୁ ସେ ଅନ୍ତରରେ ସୁଖ ନ ପାନ୍ତି, ତାଙ୍କର ପାଇଁ ମେମ୍ବଙ୍କର ଏ ଚାହାଣି ମହଜୁତ୍ ଥାଏ । ମ୍ୟାରୁଲୋଙ୍କୁ ସେ ଆଦୌ

ସୁଖ ପା'ନ୍ତି ନାହିଁ କି ବିଶ୍ୱାସ କରନ୍ତି ନାହିଁ—ଆଜି ଲୁହେଁ କି କେବେଁ ଲୁହେଁ । ମୁଁ ଏହା ଲକ୍ଷ୍ୟକରି ସବୁବେଳେ ବିସ୍ମୁରେ, ସ୍ତ୍ରୀମାନେ, ନିଜ ସ୍ୱାମୀଙ୍କ ମାଲିକଙ୍କୁ ବା ସ୍ତ୍ରୀ-ସେକ୍ରେଟାରୀଙ୍କୁ କେବେଁ ସୁଖ ପା'ନ୍ତି ନାହିଁ କି ବିଶ୍ୱାସ କରନ୍ତି ନାହିଁ ।

ମୁଁ କହିଲି, "ଧନ୍ୟବାଦ, ପ୍ରିୟେ ! ତୁମେ ମୋର ମନର କଥା ଠିକ୍ ବାରିଛ । ଦୁଃଖର ବିଷୟ, ମୁଁ ଏତେବେଳେ ତୁମକୁ ନୀଳ ନଦୀରେ ନୌବିହାର ପାଇଁ ନେଇ ପାରିବି ନାହିଁ ।"

ସେ କହିଲେ, "ଦେଖୁଛି, ତୁମେ ବାସ୍ତବିକ୍ ଭାରି କାର୍ଯ୍ୟବ୍ୟସ୍ତ ।"

"ହଁ, ଏ ସମସ୍ତଙ୍କ ପରି ତୁମର ରେଷ୍ଟୋରୁ ସବୁ ସରି ଯାଇ ନାହିଁ ତ ?"

"ସରିଛି, ନିଶ୍ଚୟ । ହେଲେଣି ମୁଁ ବି ତାଲିକାଟିଏ ଆଣିଛି । ଯାହାକୁ ସବୁ ତୁମେ ଘରେ ଫେରିଲା ବେଳେ ନେଇପାରିବ ତ ? ମୁଁ ଦେଖୁଛି, ତୁମେ ବର୍ତ୍ତମାନ ଏତେ କାର୍ଯ୍ୟବ୍ୟସ୍ତ ଯେ ମୋ ଜିନିଷ ବାହାର କରି ସାଙ୍ଗେ ସାଙ୍ଗେ ଦେଇ ପାରିବ ନାହିଁ ।"

"କଡ଼ାସିଝା ଅଣ୍ଡା ତାଲିକାରେ ନାହିଁ ତ ?"

"ନାହିଁ, ପ୍ରିୟ, ଅଜଠାରୁ ପୁଣି ବର୍ଷେ ଯାଏଁ ତାହା ନିଷ୍ପ୍ରୟୋଜନ ।"

"ଇଷ୍ଟର୍‌ର ସେ ଯେଉଁ ପଦାର୍ଥ ତାଙ୍କର କାମ ପେଟଭିତରେ ଖୁବ୍ ଚାଲିଛି ।"

"ମାର୍ଟିଙ୍କର ଇଚ୍ଛା, ସେ ପୋର୍ଟମାଷ୍ଟର୍ ହୋଟେଲରେ ଆମକୁ ରବିଭୋଜନ ଦେବେ । ଆମକୁ ନିମନ୍ତ୍ରଣ କରିବାକୁ ସେ ଆଦୌ ସୁଯୋଗ ପାଉନାହାନ୍ତି ବୋଲି ତାଙ୍କ ମନରେ ଦୁଃଖ ।"

ମୁଁ କହିଲି, "ବେଶ୍ ଆନନ୍ଦର କଥା ।"

ସେ କହିଲେ,"ତାଙ୍କ ନିଜ ଘର ଖୁବ୍ ଛୋଟ, ତେଣୁ ହୋଟେଲକୁ ନିମନ୍ତ୍ରଣ କରିଛନ୍ତି ।"

"ଓଃ ।"

ମେରି କହିଲେ, "ମୁଁ କଥାବାର୍ତ୍ତା ହେବାରୁ ତୁମର କାମ ବନ୍ଦ ହେଉଛି ବୋଧହୁଏ ।"

ମ୍ୟାରୁଲେଙ୍କ ଆଖି ଥାଏ ମୋ ହାତରେ ଥିବା ମାଟିଆ ପୁଳିନ୍ଦା ଉପରେ । ମୁଁ ତା'ଙ୍କୁ ମୋ ଅଣ୍ଟାର ଝାଡ଼ଣ ତଳକୁ ନେଇ ପକେଟରେ ପୂରାଇଲି । ଏହା ବ୍ୟାଙ୍କ୍‌ର ପୁଳିନ୍ଦା ବୋଲି ମ୍ୟାରୁଲେଙ୍କୁ ବେଶ୍ ଜଣା । ମୁଁ ବି ବେଶ୍ ଜାଣୁଥାଏ, ଟେରିଅର୍ କୁକୁର ରାସ୍ତାକଡ଼ର ଅଳିଆଗଦାରେ ମୂଷା ଖୋଜିଲା ପରି, ମ୍ୟାରୁଲେଙ୍କ ମନ ଏ ପୁଳିନ୍ଦା ଭିତରଟା ଦରାଣ୍ଡି ପକାଉଥାଏ ।

ମେଷୀ କହିଲେ, "ମିଷ୍ଟର୍ ମ୍ୟାରୁଲେ ! ଆପଣ ଯେଉଁ ପିଠେଇ ଦେଇଥିଲେ ସେଥିପାଇଁ ଆପଣଙ୍କୁ ଧନ୍ୟବାଦ ଦେବାପାଇଁ ମୁଁ ଏପର୍ଯ୍ୟନ୍ତ ସୁଯୋଗ ପାଇପାରି ନ ଥିଲି । ପିଲେ ତା'ଙ୍କୁ ଭାରି ଆନନ୍ଦରେ ଖାଇଲେ ।"

ମ୍ୟାରୁଲେ କହିଲେ, "ଇଷ୍ଟର୍ ଉପଲକ୍ଷେ ଆପଣଙ୍କୁ ମୋର ସଦିଚ୍ଛା ଜଣାଇବାକୁ ମାତ୍ର ତାହା ଦେଇଥିଲି । ଦେଖୁଛି, ଆପଣଙ୍କ ପୋଷାକ ବସନ୍ତକାଳ ପରି ରମଣୀୟ ହୋଇଛି ।"

"ଧନ୍ୟବାଦ, ଆପଣଙ୍କୁ । ବସନ୍ତକାଳ ବୋଲି ଯାହାକୁ ପିନ୍ଧିଥିଲି ଯେ ବାଟରେ ଓଦା ହୋଇଗଲା । ବର୍ଷୁଥିଲା, ବର୍ଷାଦିନ ଗଲାଣି, କିନ୍ତୁ ତାହା ଲେଉଟିଛି ।"

ମୁଁ କହିଲି, "ମେଷୀ ! ମୋ ବର୍ଷାତି କୋଟଟା ନିଅ ।"

"ଆଦୌ ଦରକାର ନାହିଁ । ଅସରାଏ ବୋଲି ତ ବର୍ଷା, ସରିଗଲାଣି । ତୁମେ ତୁମ ଗରାଖଙ୍କ କଥା ବୁଝ ।"

ଗରାଖଙ୍କ କଥା ବୁଝିବାର ଗତି ଆହୁରି ମାନ୍ଦା ହୋଇଗଲା । ମିଷ୍ଟର୍ ବେକର୍ ବାହାରୁ ଗୃହଁ, ଗରାଖମାନେ ଧାଡ଼ି ଧରି ଠିଆ ହେବାର ଦେଖି ବାହାରିଗଲେ । ବାହାରୁ ଡାକି କହିଲେ—

"ମୁଁ ପଛେ ପୁଣି ଆସିବି ।"

ଗରାଖ ଆହୁରି ଆସିଲେ, ଠିକ୍ ଦୁ'ପହର ଯାଏଁ । ତା'ପରେ, ସବୁଦିନ ପରି, ବଣିବିଟା ଏକାବେଳେ ବନ୍ଦ ହୋଇଗଲା । ସମସ୍ତେ ଏତେବେଳେ ମଧ୍ୟାହ୍ନଭୋଜନ କରିବାରେ ବ୍ୟସ୍ତ । ରାସ୍ତାରେ ଲୋକ-ସମାଗମ ମଧ୍ୟ ବନ୍ଦ ହୋଇଗଲା । ସକାଳଠାରୁ ଏତେବେଳ କଟିଲା ପରେ ଯାଇ ଦେଖାଗଲା, ଆଉ କୌଣସି ଲୋକର କିଛି ଗୁହିବା ବାକି ନାହିଁ । ମୁଁ ନିଜ ପାଇଁ ଯେଉଁ ଦୁଧତିବାଟା ପିଟାଇଲି ସେଥିରୁ ଆଉ ମୁନ୍ଦେ

ପିଇଲି । ମୁଁ ଦୋକାନରୁ ନିଜ ପାଇଁ ଯାହା ଯାହା ନିଏ ତା'ଙ୍କୁ ଟିପି ରଖିଥାଏ ; ମାସ ଶେଷରେ ସେ ସବୁର ଦାମ ମୋ ଦରମାରୁ କାଟି ରଖେ । ମ୍ୟାରୁଲେ ମୋତେ ବେପାରୀ ଦରରେ ଜିନିଷପତ୍ର ଦିଅନ୍ତି । ଏଭଳି ଦେବାରୁ ମୋର ବହୁତ ପଇସା ରହେ । ବେପାରୀ ଦରରେ ଜିନିସ ନ ପାଉଥିଲେ, ଆମେ ମୋ' ଦରମାରେ ମାସକ ଚଳିପାରୁଥାନ୍ତୁ ବୋଲି ମନେ ହେଉନାହିଁ ।

ମ୍ୟାରୁଲେ କାରବାର-ଟେବୁଲ ଉପରେ ଭରା ଦେଇ ପଛକୁ ଆଉଜି ପଡ଼ିଲେ ଓ ହାତ ଦୁଇଟି ଗ୍ଲୁଣ୍ଡି ଉପରେ ଛନ୍ଦି ଦେଲେ; ସେପରି କରିବା ଫଳରେ ହାତର ଗଣ୍ଠି କାଟିବାରୁ ପୁଣି ଦୁଇ ହାତ ଲମ୍ବାଇ ସେ ଦୁଇପାଖର ପ୍ୟାଣ୍ଟପକେଟରେ ପୂରେଇଲେ । ସେପରି କରିବାରୁ ବି କଷ୍ଟ ହେଲା ।

ମୁଁ କହିଲି, "ଆପଣ ସାହାଯ୍ୟ କରିବାରୁ ମୁଁ ବାସ୍ତବିକ ବଡ଼ କୃତଜ୍ଞ । ଏତେ ଭିଡ଼ କେବେ ହୁଏ ନାହିଁ । କିନ୍ତୁ କରାଯାଏ କ'ଣ ? ଲୋକେ ତ ଆଉ ବାସି ଆଳୁଚଟଣିରେ ଦିନକ ଚଳି ପାରିବେ ନାହିଁ !"

'ତୁ ବେଶ୍ ଭଲ ବେପାର କରୁଛୁ ରେ, ଟୋକା !"

"ମୋ'ର କର୍ତ୍ତବ୍ୟ କରୁଛି ମାତ୍ର ।"

"ନା, ନା, ଖୁବ୍ କରୁଛୁ । ତୋ' ଗରାଖ ତ ଦିନେ ନେଲେ, ସବୁଦିନେ ଆସୁଛନ୍ତି । ତୋ'ଠାରେ ସେମାନେ ସନ୍ତୁଷ୍ଟ ।"

"ମୋ' ପାଖରୁ କିଣିବାରେ ଅଭ୍ୟସ୍ତ ହୋଇଗଲେଣି । ମୁଁ ଯେ ସୃଷ୍ଟି ଆରମ୍ଭରୁ ଏଠାରେ ପଡ଼ିଛି !" ତା'ପରେ ମୁଁ ତାଙ୍କ ଭିତରର ଭାବ ଜାଣିବାକୁ ଟିକିଏ ଉଦ୍ୟମ କଲି । "ମୋ'ର ବିଶ୍ୱାସ, ତୁମେ ସିସିଲିର ଉଷ୍ଣ ସୂର୍ଯ୍ୟ କିରଣକୁ ଲୋଭେଇଲଣି । ସିସିଲିର ଜଳବାୟୁ ରମଣୀୟ । ମୁଁ ଯୁଦ୍ଧବେଳେ ସେଠାରେ ଥିଲି ।"

ମ୍ୟାରୁଲେ ମୋ ଆଡ଼କୁ ମୁହଁ ବୁଲାଇ କହିଲେ, "ଏପର୍ଯ୍ୟନ୍ତ କିଛି ଠିକ୍ କରି ନାହିଁ ।"

"କାହିଁକି ?"

"ବୁଝିଲୁ ନା, ବହୁତ ଦିନ ହେଲା ଦେଶ ଛାଡ଼ିଲଣି—ଖୁଲାଣି ବର୍ଷ । ଆଉ ସେଠାରେ ମୋର ଚିହ୍ନା ପରିଚୟ କେହି ନାହାନ୍ତି ।"

"କିନ୍ତୁ ତୁମର ତ ଆତ୍ମୀୟ ଅଛନ୍ତି ।"

"ସେମାନେ ବି ମୋତେ ଚହ୍ନି ନାହାନ୍ତି ।"

"ମୋର ତ ଭାରି ମନ ହେଉଛି, ମୁଁ ଛୁଟି ନେଇ ସିସିଲି ଚାଲିଯାନ୍ତି – ଏଥର ଆଉ ସାଙ୍ଗରେ ରାଇଫଲ୍ ନ ଥାନ୍ତା କି ସମରସାଜ ନ ଥାନ୍ତା । ଅବଶ୍ୟ ଚାଳିଶବର୍ଷ ଲମ୍ବା ସମୟ– ଏତେ ଦିନର ଘୂଡ଼ବାଡ଼-ପରେ ମନ ଯିବାକୁ ନ ଡାକିବାର କଥା । ତମେ କେଉଁ ବର୍ଷ ଆମେରିକା ଆସିଥିଲ ଟି ?"

"୧୯୨୦—ବହୁତ ଦିନର କଥା ।"

ମର୍ଫି ର ଲକ୍ଷ ଠିକ୍ ନାକମୁଣ୍ଡରେ ବାଜୁଛି । ବୋଧହୁଏ, ବ୍ୟାଙ୍କ୍-ବାଲା, ପୁଲିସ୍‌ବାଲା ଓ ଶୁଳ୍କବିଭାଗ କର୍ମଚାରୀଙ୍କର ଗୋଟାଏ କିଛି ସହଜାତ ବୁଦ୍ଧି ଅଛି । ଏତିକ ପାଇସାରିଲା ପରେ, ଆଉ ଟିକିଏ ପରୀକ୍ଷା, ଆହୁରି ଗଭୀର, ପରୀକ୍ଷା କରିବାକୁ ମୋର ମନ ହେଲା । ମୁଁ କ୍ୟାମ୍‌ବାକ୍‌ସର ଉପରଟା ଖୋଲି ପୁରୁଣା ପିସ୍ତଲଟା ବାହାର କଲି ଓ ତାକୁ କାଉଣ୍ଟର ଟେବୁଲ୍ ଉପରେ ଥୋଇଲି । ମ୍ୟାରୁଲୋ ଆପଣା ହାତ ଦୁଇଟି ପିଠି ଆଡ଼କୁ ନେଲେ । "ସେ ଜିନିସଟା କ'ଣ ରେ ଟୋକା ?"

"ମୁଁ ଭାବୁଛି, ସ୍ୱା ପାଇଁ ଯଦି ଲାଇସେନ୍‌ସ୍ ନ କରି ଥାଅ, ତେବେ ଶୀଘ୍ର ସ୍ୱାର ଗୋଟାଏ ଲାଇସେନ୍‌ସ କରି ନେଇଯିବା ଉଚିତ । ସଲିଭାନ୍ ଆଇନ୍‌ଟା ଭାରି କଡ଼ା ଆଇନ୍ ।"

"ଏଇଟା ଆସିଲା କୁଆଡ଼ୁ ?"

"ମୂଳରୁ ତ ଏହା ଏଇ ଦୋକାନରେ ଅଛି ।"

"କିନ୍ତୁ ମୁଁ ତ ସ୍ୱା'କୁ କେବେ ଦେଖି ନାହିଁ ! ଏଇଟା ମୋ'ର ନୁହେଁ, ବୋଧହୁଏ ଏହା ତୋ'ର ।"

"ମୋ'ର ନୁହେଁ କଦାପି । ମୁଁ ବି ସ୍ୱା'କୁ ଆଗରୁ ଦେଖିନାହିଁ । ଏହା ତ ଶୂନ୍ୟରୁ ଆସିନାହିଁ । ସ୍ୱାର କେହି ଜଣେ ମାଲିକ ଥିବାର ଦରକାର । ଆପଣଙ୍କ ଦୋକାନରେ ଥିବା ସ୍ଥଳେ, ଆପଣ ସ୍ୱା'ପାଇଁ ଲାଇସେନ୍‌ସ୍ ନେଲେ ଠିକ୍ ହୁଅନ୍ତା ନାହିଁ କି ? ଏଇଟା ଆପଣଙ୍କର ନୁହେଁ ବୋଲି ଠିକ୍ ମନେ ଅଛି ତ ?"

"କହୁଛି ପରା, ସ୍ୱାକୁ ଆଗରୁ କେଭେଁ ଦେଖି ନାହିଁ । ମୋତେ ବନ୍ଧୁକ ସୁଖ ଲାଗେ ନାହିଁ ।"

"ବଡ଼ ଅଦ୍‌ଭୁତ କଥା ତ ! ମୁଁ ବିଚାରିଥିଲି, ପ୍ରତ୍ୟେକ ସିସିଲିର ମାଫିଆ ଲୋକର ବନ୍ଧୁକରେ ଭରସା ।"

"କ'ଣ କହିଲୁ ? ତୁ କ'ଣ କହିବାକୁ ଚାହୁଁ ଯେ, ମୁଁ ସିସିଲିର ବିଦ୍ରୋହୀ ମାଫିଆ ଦଳର ଲୋକ !"

ମୁଁ ଏକଥାଟାକୁ ଗୋଟିଏ ଉଦ୍ଦେଶ୍ୟହୀନ ଅଳ୍ପ କଥା ବୋଲି ଚଳାଇ ନେଲି ; "ମୁଁ ଯାହା ଶୁଣି ଥିଲି, ସେଥିରୁ ଧାରଣା କରିଥିଲି ଯେ ପ୍ରତ୍ୟେକ ସିସିଲି-ବାସୀ ମାଫିଆ ଦଳର ଲୋକ ।"

" ଅଜବ କଥା । ମୁଁ ତ ମାଫିଆ ଦଳର ନାମ ବି ଜାଣି ନ ଥିଲି ।"

ମୁଁ କ୍ୟାସ୍ ବାକ୍‌ସ୍‌ର ଖୋପ ଭିତରକୁ ପିସ୍ତଲଟା ପକାଇ ଦେଇ କହିଲି, "ମଣିଷ କାଳକ୍ରମେ କେତେ କଥା ଶିଖେ । ଯାହାହେଉ, ମୋର ବି ସେ ପିସ୍ତଲଟା ଲୋଡ଼ା ନାହିଁ । ବୋଧହୁଏ ଏଇଟା ପୋଲିସ୍ ଜମା କରି ଦେଲେ ଭଲ ହେବ । ତା'କୁ କହିବି, ଏ ପିସ୍ତଲଟା ଗୋଟାଏ ଜନିଷର ପଛ ଆଡ଼େ ଥିବାର ଦେଖିଲି । ପ୍ରକୃତରେ ତ ସେଇଆ ।"

ମ୍ୟାରୁଲୋ କହିଲେ, "ହଁ, ସେଇଆ କର । ମୁଁ ଏ ଜନିଷଟା ମୋ ଜୀବନରେ କେବେ ଦେଖି ନାହିଁ । ମୋ'ର ସେଥି ଲୋଡ଼ା ନାହିଁ, ମୋର ସେଥି ଲୁହେଁ ।"

"ଭଲ କଥା", ମୁଁ କହିଲି, "ଯାଉ ଏଇଟା ।"

ସଲଭନ୍ ଆଇନ୍ ଅନୁସାରେ ବନ୍ଧୁକ ପାଇଁ ଲାଇସେନ୍‌ସ୍ ପାଇବାକୁ ଗୁଡ଼ାଏ କାଗଜପତ୍ର ଦରକାର ହୁଏ— ବିଦେଶ ଯିବା ସକାଶ ଅନୁମତି-ପତ୍ର ପାଇଁ ଯେତିକ, ପ୍ରାୟ ସେତିକ ।"

ମୋ ମାଲିକଙ୍କ ମୁଣ୍ଡକୁ ଜିନ୍ଦୁଳିଆ ବଗ୍ଗ କାମୁଡ଼ ଥାଏ । ମନେ-ହୁଏ, ବହୁତ ଗୁଡ଼ାଏ ଛୋଟ ଛୋଟ ଘଟଣା, ଗୋଟାକ ଉପରେ ଗୋଟାଏ ଘୋଟି ତାଙ୍କୁ ଘାବରେଇ ଦେଲା । ବୁଢ଼ୀ ମିସ୍ ଏଲ୍‌ଗାର, ଆମ ସହରର ରାଜକୁମାରୀ, ଅନ୍ଧାରେ ଟାଣି ହୋଇ ଆସିଲା ପରି ଆସି ପହଞ୍ଚିଗଲେ । ମିସ୍ ଏଲ୍‌ଗାର ଓ ସଂସାର, ସ୍ୱା ମଝିରେ ଦୁଇ ଖଣ୍ଡ ଅଭଙ୍ଗା କାଚ; ଦୁଇ କାଚ ଭିତରେ ବି ଫାଙ୍କ— ତେଣୁ କାଚ ଭିତରେ ଅତି ଅସ୍ପଷ୍ଟ ଭାବେ ତାଙ୍କୁ ସଂସାରଟା ଦିଶେ । ଉଜନେ ଅଣ୍ଡା ନେବେ ବୋଲି ସେ ଭାଉ-

ଘଟେଇବା ଆରମ୍ଭ କଲେ । ମୋତେ ପିଲାଦିନୁଁ ସେ ଜାଣନ୍ତି, ସୁଣ୍ଠ ଉପରେ ମୁଁ ମଣିଷ ହେଲେଣି ସେ କଥା ତାଙ୍କ ମୁଣ୍ଡକୁ ଯାଉ ନାହିଁ; ସେଇ ପିଲା-ଦିନର ମୁଁ, ଚିରକାଳ ତାଙ୍କ ମନରେ ସେଇପରି ଅଛି । ମୁଁ ତାଙ୍କଠାରୁ ନୋଟ ନେଇ, ଦାମ କାଟି ରେଜା ତାଙ୍କୁ ଦେଇ ପାରିଲି ଏତିକ ଦେଖି ସେ ବିସ୍ମିତ ହେବା ସଙ୍ଗେ ସଙ୍ଗେ, ମୋ ବୁଦ୍ଧିମତ୍ତାରେ ଖୁସି ହେବା ପରି ମୋତେ ଜଣାଗଲା ।

ସେ କହିଲେ, "ଏଥାନ୍ ! ତୋତେ ମୁଁ ସାବାସ୍ ଦେଉଛି ।" ତାଙ୍କ ଦୃଷ୍ଟି ପଡ଼ିଲା କଫି-ଢୋରଣା ଉପରେ ଓ ସଙ୍ଗେ ସଙ୍ଗେ ମ୍ୟାରୁ-ଲୋଙ୍କ ଉପରେ ; ଉଭୟଙ୍କୁ ସେ ସମାନ ଦୃଷ୍ଟିରେ ଦେଖିଲେ, ମୋତେ ପଚାରିଲେ, "ଏଥାନ୍ ! ତୋ' ବାପା କେମିତି ଅଛନ୍ତି ?"

ମୁଁ କହିଲି, "ଭଲ ଅଛନ୍ତି । ମିସ୍ ଏଲ୍‌ଗାର !"

"ମୋ'ର ନମସ୍କାର ତାଙ୍କୁ ଜଣାଇ ଦେବୁ । ଏଁ ? ସୁନା ପିଲାଟି ପରା !"

"ହଁ,ମହାଶୟା ! ନିଶ୍ଚୟ ତାଙ୍କୁ କହିବି, ମହାଶୟା !" କାଳର ଗତି ବିଷୟରେ ତାଙ୍କର ଧାରଣା ବଦଳାଇବାକୁ ମୋ'ର ଇଚ୍ଛା ନ ଥିଲା । ଶୁଣିଛି, ତାଙ୍କ ଘରର ପୁରୁଣା ଘଡ଼ିରେ ସେ ଏବେ ବି ପ୍ରତି ରବିବାର ରାତିରେ ଚାବି ଦିଅନ୍ତି, ଯଦିଓ ସେ ଘଣ୍ଟାଟି ବହୁ ବର୍ଷ ହେଲା ଇଲେକ୍-ଟ୍ରିକ୍‌ରେ ଚାଲିଲାଣି । ଏଭଳି ମନୋବୃତ୍ତି ଧରି କାଳ-ସ୍ରୋତରେ ସ୍ଥିର ନିଶ୍ଚଳ ହୋଇ ରହିବା ମନ୍ଦ ନୁହେ ; ବର୍ତ୍ତମାନଟା ଚିରକାଳ ଗୋଟିଏ ଅସ୍ୱରନ୍ତ ଅପରାହ୍ଣ ହୋଇ ରହିଥିବ । ଯିବା ପୂର୍ବରୁ ସେ ଗମ୍ଭୀର ଭାବରେ କଫି-ଢୋରଣାକୁ ମୁଣ୍ଡ ଟେକାଇ ଅଭିବାଦନ ଜଣାଇ ବିଦାହେଲେ ।

ମ୍ୟାରୁଲୋ କହିଲେ, "ମୁଣ୍ଡ ଖରାପ" ; ଏହା କହି ତାଙ୍କ ବଣି ଆଙ୍ଗୁଠିକୁ ବଙ୍କା କରି ନିଜ କପାଳରେ ମାଇଲେ ।

"ସଂସାରରେ କାହାର କୌଣସି ପରିବର୍ତ୍ତନ ହେଉ ନାହିଁ ; କେହି ମାରି ଯାଉ ନାହାନ୍ତି ।"

"ତୁମ ବାପା ତ ମଲେଣି । ତାଙ୍କୁ ସେ କଥା ନ କହିଲ କିଆଁ ?"

"ଯଦି ବା ମୋ କଥା ବିଶ୍ୱାସ କରିଥାନ୍ତେ, ତଥାପି ତାହା ପୁଣି ପାସୋରି ହୋଇଯାନ୍ତା । ସେ ସବୁବେଳେ ମୋ ବାପାଙ୍କ କଥା

ପଗ୍ଭରନ୍ତ । ଏବେ ଅଳ୍ପ ଦିନ ହେଲା ମୋ ଗୋପିଁ ବାପାଙ୍କ କୁଶଳ ଜିଜ୍ଞାସା କରିବା ଗ୍ଭଡ଼ିଛନ୍ତି । ଲୋକେ କହନ୍ତି, ମୋ ଗୋପିଁ ବାପାଙ୍କର ପରି ଯେ ବାନ୍ଧବୀ ଥିଲେ—ବୁଢ଼ା ଛେଳି-ବୋଦା କାହାଁକା ?"

ମ୍ୟାରୁଲେ ପୁଣି ମନ୍ତବ୍ୟ ଦେଲେ, "ମୁଣ୍ଡ ଖରାପ ।" କିନ୍ତୁ କୌଣସି ଅଜ୍ଞାତ ମାନସିକ ପ୍ରକ୍ରିୟା ଫଳରେ, ମିସ୍ ଏଲ୍‌ଗାର୍ ସମୟର ଗତି ଠଉରେଇ ନପାରିବା କଥା ବିଗ୍ଭରି, ସେ ନିଜ ମନକୁ ଠିକ୍ କରି ନେଲେ । ମଣିଷ ବୋଲି ଯେଉଁ ଯନ୍ତ୍ର ତାହା କେତେ ଜଟିଳ ନିର୍ଣ୍ଣୟ କରିବା ସହଜ ନୁହେଁ । ଯେତେବେଳେ ତୁମେ କୌଣସି ବିଷୟରେ ଖୁବ୍ ଦୃଢ଼-ନିଶ୍ଚୟ ବୋଲି ମନେ ମନେ ଭାବିବ, ସେତିକବେଳେ ପ୍ରାୟଶଃ ତୁମର ଭୁଲ ହୋଇଥିବାର ପରେ ଜଣାପଡ଼େ । ମୁଁ ବିଗ୍ଭରୁଛି, ନିଜର ସ୍ୱଭାବ ଓ ଅଭ୍ୟାସ ଫଳରେ ମିଷ୍ଟର୍ ମ୍ୟାରୁଲେ ଲୋକଙ୍କ ସମ୍ପର୍କକୁ ତିନୋଟି ପର୍ଯାୟରେ ବିଭକ୍ତ କରି ଦେଇଛନ୍ତି—ହୁକୁମ ଦେବା, ଖୁସାମତ କରିବା ଓ ଲାଞ୍ଚ-ଦେବା । ଏହି ତିନି ଉପାୟରେ ବହୁକାଳ ସବୁ ଲୋକଙ୍କୁ ଅକ୍ତିଆର କରି ପାରିଥିବାରୁ ଏ ଉପାୟ ଗୁଡ଼ିକ ଅବ୍ୟର୍ଥ ବୋଲି ତାଙ୍କର ଧାରଣା ହୋଇ ଯାଇଛି । ମୋ ସଙ୍ଗେ ବ୍ୟବହାରରେ ସେ କେଜାଣି କେମିତି, ପ୍ରଥମ ଉପାୟଟା କାମ ନ କରିବାର ଧରି ସାରିଥାନ୍ତି ।

ଅନ୍ୟ ଦୁଇ ଉପାୟକୁ ପରୀକ୍ଷା କରିବା ଉଦ୍ଦେଶ୍ୟରେ ସେ ଆରମ୍ଭ କଲେ, "ତୁ ଗୋଟିଏ ଭଲ ଟୋକା । ତୁ ଜଣେ ସହୃଦୟ ବନ୍ଧୁ ମଧ୍ୟ ।"

"ମୋର ଗୋପିଁ ବାପା, ବୃଦ୍ଧ କପ୍ତାନ୍, ସବୁବେଳେ କହୁଥିଲେ, 'ବନ୍ଧୁକୁ ଯଦି ବନ୍ଧୁ କରି ରଖିବାକୁ ଗ୍ଭହଁ, ତେବେ ତା' ବନ୍ଧୁତାକୁ ପରୀକ୍ଷା କରନାହିଁ ।"

"ବଡ଼ ବିଚକ୍ଷଣ କଥା ଯେ ।"

"ବୃଦ୍ଧ କପ୍ତାନ୍ ବାସ୍ତବିକ୍ ବିଚକ୍ଷଣ ଲୋକ ଥିଲେ ।"

"ଆରେ ଟୋକା, କାଲି ରବିବାର ଦିନଟା ତମାମ ମୁଁ ଏଇ ଗୋଟାକ କଥା ବିଗ୍ଭରୁଛି—ଗିର୍ଜାରେ ବସି ମଧ୍ୟ ସେଇଆ ବିଗ୍ଭରୁଥିଲି ।"

ମୁଁ ଜାଣେ ମୁଁ ଲାଞ୍ଚ ଫେରାଇ ଦେବା କଥା ଶୁଣି ସେ ବିଚଳିତ ହୋଇଛନ୍ତି ; ଅନ୍ତତଃ, ସେ ବିଚଳିତ ହୋଇଛନ୍ତି ବୋଲି ମୋର ଅନୁ-

ମାନ । ତେଣୁ ବୃଥାରେ ସମୟ ନଷ୍ଟ ନ କରି ମୁଁ ସେ କଥାଟା ମୋ ଆଡ଼ୁ ପ୍ରକାଶ କରିଦେଲି ।

"ଓହୋ ! ମୋତେ ସେ ଲୋକ ଯେଉଁ ସୁନ୍ଦର ପୁରସ୍କାରଟି ଦେଇଥିଲେ, ସେଇ କଥା ନା ?"

"ହଁ, ହଁ ।" ସେ ମୋତେ ପ୍ରଶଂସା କଲା ପରି ଚାହିଁଲେ । "ତୋର ତ ବିଚକ୍ଷଣ ବୁଦ୍ଧି ମଧ୍ୟ ।"

"ଯେତେ ବିଚକ୍ଷଣ ହେଲେ କ'ଣ ହେବ, ନିଜେ ବେପାର କରି ନ ପାରି ଚାକିରି ତ କରୁଛି !"

"ତୁ ମୋ' ପାଖେ ରହିଲୁଣି, କେତେ ବର୍ଷଟି ?—ବା'ର ବର୍ଷ ।"

"ହଁ, ଠିକ୍—ବହୁତ ଦିନ । ଏଥର ପରିବର୍ତ୍ତନ ହେଲେ ଭଲ-ହୁଅନ୍ତା—ନାହିଁ ?"

"ଆଜି ଏତେ ଦିନ ଭିତରେ ତୁ ଦିନେ ବି ରେଜା କେତେ ଅଣା ପକେଟରେ ନେଇ ଯାଇନାହୁଁ ! ନ ଲେଖି ଜିନିଷ ଗୋଟାଏ ବି ଘରକୁ ନେଇ ଯାଇନାହୁଁ ।"

"ସାଧୁତା ମୋ'ର ଗୋଟାଏ ଛଳନା ।"

"ସେମିତି ଥଟ୍ଟା ତାମସା ଗୁଡ଼େ କରନା । ମୁଁ ଯାହା କହୁଛି ସେ କଥା ଠିକ୍ । ମୁଁ ଖାତା ତନଖି କରୁଛି ; ଠିକ୍ କଥା ବୁଝିଛି ।"

"ମୋ' କୋଟର ବାଂପଟ କଲର୍‌ରେ ମେଡ଼ାଲଟାଏ ମାରିଦିଅ ।"

"ସମସ୍ତେ ଚୋରି କରନ୍ତି—କିଏ ବେଶି, କିଏ କମ୍—କିନ୍ତୁ ମୁ ଜାଣେ ତୁ ଆଦୌ ଚୋରି କରୁ ନାହିଁ ।"

"ହୁଏତ ମୁଁ ଅପେକ୍ଷା କରି ରହିଛି, ଦିନେ ସମଗ୍ର ଦୋକାନଟା-ମାରି ନେବାକୁ ।"

"ଥଟ୍ଟା କରନା । ମୁଁ ଯାହା କହୁଛି, ତାହା ଯଥାର୍ଥ କଥା ।"

"ଆଲଫିଓ ! ତୁମେ ଗୋଟାଏ ମଣି ହାତରେ ପାଇଛ । ଯୁଆକୁ ବେଶି ଘଷା ମଜା କର ନାହିଁ । ଉପରେ ରହିଥିବା ଜକଟା ଘଷି ହୋଇ ଗଲେ ଭିତର ପଦାରେ ପଡ଼ିଯିବ ।"

"ଆଚ୍ଛା, ତୁ ମୋ ସଙ୍ଗେ ଏ ଦୋକାନରେ ଭାଗୁଆଳୀ ନ ହେଉଛୁ କିଆଁ ?"

"କ'ଣ ମୂଳଧନ ଦେଇ ଭାଗୁଆଳୀ ହେବି—ମୋ ଦରମା ?"

"ସେଥିକୁ ଗୋଟାଏ କ'ଣ ବାଟ ବାହାର କରିବା ।"

"ଓଃ, ତାହାହେଲେ ନିଜ ସଂପତ୍ତିକୁ ଲୁଚି ନକରି ମୁଁ ତୁମ ସଂପତ୍ତି ସ୍ୱୀକାର କରି ପାରିବ ନାହିଁ—ନା ?"

ମୋ' କଥାକୁ ପସନ୍ଦ କଲା ପରି ସେ ହସିଲେ ; "ଟୋକା, ତୋ'ର ବିଚକ୍ଷଣ ବୁଦ୍ଧି । କିନ୍ତୁ ତୁ ସ୍ୱୀକାର କରିବାବାଲା ନୁହଁ ।"

"ମୋ କଥା ଶୁଣିଲ ନାହିଁ ପରି ! ତୁଏତ ସମଗ୍ର ଦୋକାନଟା ମୁଁ ମାରିନେବା ଉଦ୍ଦେଶ୍ୟରେ ସାଧୁତାର ଛଳନା କରୁଛି ।"

"ନାଇଁରେ ଟୋକା ! ତୁ ପ୍ରକୃତରେ ସଚ୍ଚା ଲୋକ ।"

"ସେଇ କଥା ତ ତୁମକୁ ମୁଁ କହୁଛି । ମୁଁ ଖୁବ୍ ସଚ୍ଚାଭାବରେ ଯାହା କହୁଛି, ତା'କୁ କେହି ବିଶ୍ୱାସ କରୁ ନାହାନ୍ତି । ମୁଁ କହି ରଖୁଛି, ଆଲ୍‌ଫିଓ ! ନିଜର ଅଭିସନ୍ଧି ଯଦି ଲୁଚାଇବାକୁ ଚାହଁ, ତେବେ ସତ କହ ।"

"ଏସୁ ସବୁ ତୋ'ର କୋଉ ରାଜ୍ୟ କଥା ?"

ମୁଁ ଲାଟିନ୍ ଭାଷାରେ କହିଲି, "କଳାକୁ ଗୁଡ଼ କରି ରଖିବାରେ ହିଁ ଶ୍ରେଷ୍ଠ କଳାକାରର ପରିଚୟ ।"

ସେ ଏ କଥାକୁ ଅସ୍ପଷ୍ଟ ଭାବରେ ଆବୃତ୍ତି କଲେ । ତା'ପରେ ହଠାତ୍ ହସି ଉଠି କହିଲେ,

"ବେଶ୍, ବେଶ୍, ଯାହା ଲୁଚାଇବାକୁ ବସିଥିଲୁ ତାହା ଏଇ କଥା ପଦକରେ ପ୍ରମାଣିତ ହୋଇ ଗଲା ।"

"ଗୋଟାଏ ଥଣ୍ଡା ପାନୀୟ—କୋକ୍ ଦେବି ।"

"ନା, ଏଥର ଚଳିବ ନାହିଁ ।" କହି ସେ ଦୁଇ ହାତ ଯାକ ନିଜ ପେଟ ଉପରେ ପକାଇଲେ ।

"ପେଟ ଖରାପ ହେଲା ଭଳି ବୟସ ତ ତୁମର ହୋଇନାହିଁ । ପଚିଶରୁ ବେଶି ହୋଇ ନ ଥିବ ।"

"ବା'ବନ୍ । ହେଲେ ବି ପେଟ ଭଲ ରହୁନାହିଁ ।"

"ବେଶ୍ । ୧୯୨୦ରେ ଯଦି ତୁମେ ଏ ଦେଶକୁ ଆସିଲ, ତେବେ ତ ସେତେବେଳକୁ ତୁମକୁ ମାତ୍ର ବା'ର ବର୍ଷ ହୋଇଥିଲା । ତା' ହେଲେ ତ ସିସିଲିରେ ଖୁବ୍ ପିଲାଙ୍କୁ ଲାଟିନ୍ ପଢ଼ାନ୍ତି, ଦେଖୁଛି ।"

ସେ କହିଲେ, "ମୁଁ ଶୀଘ୍ର ଲାଟିନ୍ ଜାଣିବାର କାରଣ, ମୁଁ ପିଲା-ଦିନେ ଗିର୍ଜାରେ ଲାଟିନ୍‌ରେ ଧର୍ମସଂଗୀତ ଗାଉଥିଲି ।"

"ମୁଁ ବ ଗିର୍ଜାରେ ଶିଶୁ-ସଂଗୀତଗାୟକ ଦଳର ନେତା ହୋଇ ତତ୍ତ୍ୱାବଧାରଣ କରୁଥିଲି । ଆଲ୍‌ଫିଓ, ମୁଁ ଗୋଟିଏ କୋକ୍ ପିଇବ ।" ତା'ପରେ କହିଲି "ଦୋକାନରେ ମୁଁ କେମିତି ଅଂଶିଦାର ହୋଇ ପାରିବି ତା'ର ବାଟ ବାହାର କରିବ ବୋଲି କହୁଛ ,ପର, କର । ମୁଁ ତୁମ ପ୍ରସ୍ତାବ ବିଚାର କରିବି । କିନ୍ତୁ ଆଗରୁ ସତର୍କ କରି ରଖୁଛି, ମୋ ପାଖେ ପଇସାପତ୍ର କିଛି ନାହିଁ ।"

"ଆଚ୍ଛା, ସେ ବାଟ ବିଚାରି ଠିକ୍ କରିବା ।"

"ମୋ'ର କିନ୍ତୁ ନିକଟରେ ଧନ ପାଇବାର ଅଛି ।"

ମୋ ମୁହଁ ଉପରେ ତାଙ୍କ ଆଖି ଲାଖି ରହିଥାଏ ; ତାହା ସେ ଅନ୍ୟ ଆଡ଼କୁ ନେଇ ପାରୁ ନଥାନ୍ତି । ମୃଦୁ ସ୍ୱରରେ ସେ ମୋତେ କହିଲେ, "ମୋର ଏକଥାରେ ବିଶ୍ୱାସ ହେଉଛି ।"

ଆତ୍ମବିଶ୍ୱାସ, କିନ୍ତୁ ଆତ୍ମସମ୍ମାନ ନୁହେଁ, ମୋ' ଧମନୀରେ ଖେଳିଗଲା । ମୁଁ ଗୋଟାଏ କୋକ୍‌ବୋତଲର ଠିପି ଖୋଲି, ବୋତଲଟା ମୋ ମୁହରେ ଉଗୁଡ଼େଇ ଦେଲି । ବୋତଲର ମାଟିଆ ଗଣ୍ଡି ଭିତର ଦେଇ ମୁଁ ମ୍ୟାରୁଲେଙ୍କ ଆଖିକୁ ଚାହିଁ ରହିଲି ।

"ତୁ ଗୋଟିଏ ଭଲ ଟୋକା", ବୋଲି ସେ ମୋତେ କହି ମୋ କରମର୍ଦ୍ଦନ କଲେ ଓ ଦୋକାନରୁ ବାହାରି ଚାଲିଗଲେ ।

ମନର ଗୋଟାଏ ଅତର୍କିତ ପ୍ରେରଣାରେ ମୁଁ ପଛରୁ ଡାକି କହିଲି,—

"ତୁମ ହାତ କେମିତି ଅଛି ?"

"ସେ ଆଶ୍ଚର୍ଯ୍ୟ ହୋଇ ଫେରି ଚାହିଁଲେ, କହିଲେ, "ଏଇଲେ ଆଉ କିଛି ଯନ୍ତ୍ରଣା ନାହିଁ ।" ଖଣ୍ଡେବାଟ ଆଗେଇ ଯାଉ ଯାଉ ସେ ପୁଣି ନିଜ ମନକୁ ମନ କହିଲେ, "ଏଇଲେ ଆଉ କୌଣସି ଯନ୍ତ୍ରଣା ନାହିଁ ।"

ଟିକିଏ ପରେ ଉତ୍ତେଜିତ ଭାବରେ ସେ ଫେରି ଆସି କହିଲେ, "ସେ ଲୋକଟ: ଯାହା ଯାଚୁଥିଲା ତା'କୁ ତୁ ନେବାକୁ ହେବ ।"

"କ'ଣ ?"

"ସେ ଯେଉଁ ଶତକଡ଼ା ପାଞ୍ଚ, ଅର୍ଡର୍ ଉପରେ ।"

"କାହିଁକି ନେବ ?"

'ନେବାକୁ ତ ହେବ ; କାହିଁକି କାହିଁକି ? ସେଇ ଟଙ୍କାରେ ତୁ' ଅଳ୍ପ ଅଳ୍ପ କରି ଦୋକାନର ଅଂଶ ଖରିଦ କରିବୁ । ତେବେ ଶତକଡ଼ା ପାଞ୍ଚ ଜାଗାରେ ଛ' ପାଇଁ ଜିଦ୍ କରିବୁ ।"

"ନା, ସେପରି କିଛି ମୁଁ କରିବି ନାହିଁ ।"

"ମୁଁ ତ ହିଁ କହୁଛି, ତୋ'ର ନାହିଁ କାହିଁକି ?"

"ମୋ'ର ସେ ଟଙ୍କା ଦରକାର ନାହିଁ, ଆଲ୍‌ଫିଓ ! ଦରକାର ଥିଲେ ତ ମୁଁ ମୂଳରୁ ନେଇ ଥାଆନ୍ତି । ମୋ'ର ସେ ଟଙ୍କା ଦରକାର ନାହିଁ ।"

ସେ ଗଭୀର ଦୀର୍ଘନିଃଶ୍ୱାସ ପକାଇଲେ ।

ସକାଳ ପରି ଓପରଓଳି ସେତେ ଭିଡ଼ ହେଲା ନାହିଁ, କିନ୍ତୁ ଏକାବେଳକେ ଯେ ଭିଡ଼ ନହେଲା, ତା'ନୁହେଁ । ତିନିଟା ଠାରୁ ଚାରିଟା ଭିତରେ ସବୁଦିନେ ଟିକିଏ ବେପାର ମାନ୍ଦା ହୁଏ—୨୦ ମିନିଟ୍‌ରୁ ଅଧ ଘଣ୍ଟାକ ଯାଏଁ ; କାହିଁକି ହୁଏ, ତା'ର କାରଣ ମୁଁ ଜାଣିପାରି ନାହିଁ । ସେଇ ମାନ୍ଦା ସମୟ ଟିକିକ ପରେ ପୁଣି ବେପାର ତେଜିଯାଏ ;—କାରଣ ସେତେବେଳେ ଲୋକେ ଅଫିସରୁ ଘରକୁ ଫେରିବାକୁ ଆରମ୍ଭ କରନ୍ତି, ଓ ଗୃହକର୍ତ୍ତ୍ରୀମାନେ ରାତିଭୋଜନ ·ଇଁ ଶେଷ ଉପକରଣ ସଂଗ୍ରହ କରିବାରେ ଲାଗିପଡ଼ନ୍ତି ।

ମାନ୍ଦା ବେଳେ ମିଷ୍ଟର୍ ବେକର୍ ଆସି ପହଞ୍ଚିଲେ । ଦୋକାନରେ ମୋଟେ ଦୁ'ଜଣ ଗରାଖ ଥାଆନ୍ତି—ଦୁ'ଜଣଯାକ ଦରପନ୍ତରିଆ ଖରିଦଦାର । ସେମାନେ ଗୋଟାଏ ଜିନିସ ଧରି ଟିକିଏ ଚାହିଁ ଥୋଇ ଦିଅନ୍ତି । ଏଭଳି କରୁ କରୁ ସେମାନେ ବାଛୁରନ୍ତି ଯେ ତାଙ୍କର ଦରକାରୀ ଅସଲ ଜିନିସଟା ଥାକରୁ ତାଙ୍କ ହାତକୁ ଡେଇଁ ପଡ଼ିବ ଓ ମୋତେ କିଣ ବୋଲି ଅଡ଼ି-ବସିବ । ଏ ଦୁଇଜଣ ଅବଶେଷରେ ତାଙ୍କ ଜିନିସପାତି ନେଇ ଯିବା-ପର୍ଯ୍ୟନ୍ତ, ମିଷ୍ଟର୍ ବେକର ଥଣ୍ଡା କାମରାରେ ଥିବା ଖିରସା ଓ ମାଂସ କବାଟ୍‌କୁ ଚାହିଁ ରହିଥାଆନ୍ତି ।

ସେମାନେ ଯିବା ପରେ ମିଷ୍ଟର୍ ବେକର୍ କହିଲେ, "ମେରି, ଆଜି ବ୍ୟାଙ୍କରୁ ପାଞ୍ଚହଜାର ଉଠାଇବା କଥା ତୁମେ ଜାଣିଛ ତ ?

"ହଁ, ଅଜ୍ଞା, ସେ ମୋତେ କହିଥିଲେ, ଟଙ୍କା ଉଠାଇବେ ବୋଲି ।"

"କ'ଣ ପାଇଁ ସେ ଟଙ୍କା ନେଲେ ସେ କଥା ଜାଣ ?"

"ହଇ, ଆଜ୍ଞା ! ସେ ଗତ କେତେ ମାସ ହେଲା ସେଇକଥା ରଟୁଥିଲେ । ମାଇକିନିଆଁ ଢଙ୍ଗ ତ ଆପଣ ଜାଣୁଥିବେ । ଘରର ଆସବାବ୍ ଅବଶ୍ୟ ପୁରୁଣା ହେଉଛି, କିନ୍ତୁ ଯେଉଁ ମୁହୂର୍ତ୍ତରେ ସେମାନେ ନୂଆ ଆସ୍‌ବାବ୍ କିଣିବେ ବୋଲି ସଂକଳ୍ପ କରି ବସନ୍ତି, ସେ ମୁହୂର୍ତ୍ତରେ ପୁରୁଣା ଆସବାବ୍ ରଖି ଘର କରିବା ସେମାନଙ୍କୁ ଏକାବେଳକେ ଅସମ୍ଭବ ମାଲୁମ୍ ହୁଏ ।

"ବର୍ତ୍ତମାନ ସମୟରେ ଏଇ ଆସ୍‌ବାବ୍ ଫାସ୍‌ବାବରେ ଧନ ଖର୍ଚ୍ଚ କରିବା ନିର୍ବୋଧର କାର୍ଯ୍ୟ ବୋଲି ତୁମେ କ'ଣ ବୁଝିପାରୁ ନାହଁ । ମୁଁ ତୁମକୁ ପରା କାଲି କହିଲି, ଟଙ୍କା ଲଗାଇବାର ବାଟ ଫିଟିବା ଉପରେ ।"

"ଆଜ୍ଞା, ସେ ଟଙ୍କା ତ ତା'ର ; ମୋର ଗୁରା କ'ଣ ?"

"ଏଥାନ, ମୁଁ କାଲି କିଛି ଜୁଆ ଖେଳ କଥା କହୁ ନ ଥିଲି । ମୁଁ ଯାହା କହୁଥିଲି, ସେଥିରେ ଟଙ୍କା ଖଟାଇଲେ ଲାଭ ଘରେ ଥୁଆ ହେଲା ପରି । ମୋ'ର ତ ବିଶ୍ୱାସ, ଏଇ ପାଞ୍ଚ ହଜାରଟା ସେ ବେପାରରେ ଲଗାଇ ଥିଲେ, ବର୍ଷକ ଭିତରେ ଘରକୁ ଆସବାବ୍ ପରି ଆସିଥାନ୍ତା । କିନ୍ତୁ ମୂଳ ଟଙ୍କାରେ ହାତ ବାଜି ନଥାନ୍ତା ।"

"ମିଷ୍ଟର୍ ବେକର୍, ତା'ଙ୍କ ଟଙ୍କା ତ ସେ ଖର୍ଚ୍ଚ କରିବାକୁ ଚାହୁଁଛନ୍ତି ; ମୁଁ ମନାକରିବି କେମିତି ?"

"ତୁମେ ତାଙ୍କୁ ପ୍ରବର୍ତ୍ତାଇଥିଲେ ହୋଇ ନ ଥାନ୍ତା ? ତାଙ୍କୁ ସବୁ କଥା ବୁଝାଇ ଥିଲେ ହୋଇ ନଥାନ୍ତା ?"

"ତାହା ମୋ ମନକୁ ଆସିଲା ନାହିଁ ।"

"ଏକଥା ତୁମ ବାପାଙ୍କ କଥା ପରି ମୋତେ ଲାଗୁଛି । ଏଥାନ୍ ! ଏସବୁ ପୋଲଫାଙ୍କିଆ କଥା । ତୁମକୁ ସାହାଯ୍ୟ କରି ନିଜ ଗୋଡ଼ରେ ତୁମକୁ ଠିଆ କରାଇବାକୁ ମୋର ମନ, କିନ୍ତୁ ତୁମେ ପୋଲଫାଙ୍କିଆ ଢଙ୍ଗ ଧରିଲେ ଚଳିବ ନାହିଁ ।"

"ଆଜ୍ଞା, ଗଲା କଥା ତ ଗଲାଣି ।"

"ହଁ, ପୁଣି ମୋ'ର ଧାରଣା ଯେ ସେ ଏ ଟଙ୍କାକୁ ଆମ ଏଠାରେ ବି ଖର୍ଚ୍ଚ କରିବାକୁ ଚାହୁଁ ନାହାନ୍ତି । ସେ ବାହାରକୁ ଯାଇ ଦାମରୁ କିଛି ଅଂଶ ରିହାତି ଦେଉଥିବା ବଡ଼ ଗୋଦାମରୁ ଜିନିଷ ଆଣି ନଗଦ ଟଙ୍କା ଗଣିଦେବାକୁ ଚାହାନ୍ତି । ଆସ୍‌ବାବ୍ ବୋଲି ସେ କ'ଣ ଗୁଡ଼ାଏ ଆଣି ଜମା-ଇବେ କେଜାଣି ? ଆମ ସ୍ଥାନୀୟ କାରିଗର ହୁଏତ ଟିକିଏ ଦାମ ଚଢ଼ା ନେଇଥାନ୍ତେ, କିନ୍ତୁ ଖରାପ ଜିନିଷ ଦେଲେ କାରଖାନା ଉପରକୁ ଯାଇ ଅଭିଯୋଗ କରି ହୁଅନ୍ତା, ଜିନିଷ ବଦଳେଇ ହୁଅନ୍ତା । ଏଥାନ୍ ! ଏ ବିଷୟରେ ତୁମେ ମେଷିଙ୍କୁ ତାଗିଦ୍ କର । ପାରିବ ଯଦି, ସେ ଟଙ୍କାଟା ସେ ଯେପରି ବ୍ୟାଙ୍କ୍‌ରେ ପୁଣି ଜମା ଦେବେ ତା'ର ବ୍ୟବସ୍ଥା କର । ତାଙ୍କୁ କହ ଟଙ୍କାଟା ଆଣି ମୋ ହାତରେ ଦିଅନ୍ତୁ । ମୋ ହାତରେ ଦେଲେ ପସ୍ତାଇବାର କୌଣସି କାରଣ ଘଟିବ ନାହିଁ ।"

"ଆଜ୍ଞା, ସେ ଟଙ୍କାଟା ପରା ତାଙ୍କ ଭାଇ ତାଙ୍କୁ ଦେଇ ଯାଇଛନ୍ତି !"

"ମୁଁ ସେ କଥା ଜାଣେ । ସେ ଟଙ୍କା ଉଠାଇଲା ବେଳେ ମୁଁ ତାଙ୍କୁ ବୁଝାଇବାକୁ ବହୁତ ଚେଷ୍ଟା କଲି । ସେ ଏଣୁ ତେଣୁ ଗୁଡ଼ାଏ କହି ମୋତେ ନେଳି ଆଖିରେ ଚାହିଁଲେ । କହିଲେ, 'ସେ ନିଜେ ବୁଲିବୁଲି କରି ଜିନିଷ ବାଛି କଣିବେ । ମାକିଟରେ ପାଞ୍ଚହଜାର ନ ଧରି ସେ କ'ଣ ବୁଲିବୁଲି କରି ଜିନିଷ ବାଛି ପାରି ନ ଥାନ୍ତେ ? ସେ ସିନା କିଛି ଜାଣି ପାରୁନାହାନ୍ତି, ତୁମେ ତ ଜାଣିବା ଉଚିତ ।"

"ମୁଁ ତ ବସିରହିଛି, ଏସବୁ ବିଷୟରେ ମୋ'ର ଅଭ୍ୟାସ ଛାଡ଼ିଗଲାଣି, ମିଷ୍ଟର୍ ବେକର୍ ! ଆମେ ବିଭା ହେବା ଦିନୁଁ ଆମ ହାତରେ କେବେ ଫାଲ୍‌ତୁ ପଇସାଟିଏ ବି ମଡ଼ ନ ଥିଲା ।"

"ହଉ, ଯାହା ତ ହେବାର ହେଲାଣି । ପଇସାକୁ କିପରି ଖର୍ଚ୍ଚ କରାଯାଏ ସେ କଥା ଶିଖ । ହଁ, ଶୀଘ୍ର ଶିଖ । ବିଳମ୍ବ କଲେ ଦେଖିବ, ସବୁ ପଇସା ପାଣିପରି ବୋହି ଯାଇଥିବ । କେତେକ ସ୍ତ୍ରୀ ଲୋକଙ୍କର ପଇସା ଖର୍ଚ୍ଚ କରିବା ଗୋଟାଏ ନିଶା ପରି ।"

"ଆଜ୍ଞା, ପଇସା ଖର୍ଚ୍ଚ କରିବା ଅଭ୍ୟାସ ହେଲା ପରି ସୁଯୋଗ ମେଷିଙ୍କ ଭାଗ୍ୟରେ କେବେ ଘଟି ନାହିଁ ।"

"ନ ଘଟିଲେ କ'ଣ ହେଲା ? ସେ ଅଭ୍ୟାସ ତାଙ୍କର ହୋଇଯିବ ବୋଲି ମୋର ଆଶଙ୍କା । ଥରେ ରକ୍ତମୁହାଁ ହୋଇଗଲେ ସେ ଏକାବେଳକେ ମଣିଷଖିଆ ହୋଇଯିବେ ।"

"ମିଷ୍ଟର୍ ବେକର୍, ଆପଣ ଯାହା କହୁଛନ୍ତି, ସତରେ ସେ କଥା ଘଟିବ ବୋଲି ଆପଣ ବୋଧହୁଏ ଡରୁନାହାନ୍ତି ।"

"ହଁ ଠିକ୍ ସେଇଆ ଡରୁଛି ।"

"ମୋ ମେଷ୍ଟ ହର ଟଙ୍କା ପଇସା ବିଷୟରେ ଅତି ସାବଧାନ ଭଦ୍ରଂଶ୍ୟା ଆଉ ନ ଥିବେ । ତାଙ୍କୁଇତ ଏ ବିଷୟରେ ସାବଧାନ ହେବା ବ୍ୟତୀତ, ଅନ୍ୟ ଗତି ନାହିଁ ।"

କେଜାଣି କାହିଁକି ମିଷ୍ଟର୍ ବେକର୍ଙ୍କ ମନ ଭିତରେ ଝଡ଼ ସୃଷ୍ଟି ହୋଇ ସାରିଥାଏ । ସେ ମୋ' ଉପରେ ଆକ୍ରମଣ କଲେ ।

"ମେଷ୍ଟଙ୍କ କାର୍ଯ୍ୟରେ ନୁହେଁ, ଏଥାନ୍, ତୁମ କଥା ଶୁଣି ମୁଁ ବେଶୀ ନିରାଶ ହେଉଛି । ଯଦି ସମାଜରେ ତୁମେ ପ୍ରତିଷ୍ଠା ଅର୍ଜିବାକୁ ଚାହଁ, ତେବେ ନିଜ ଘରେ ମାଲିକ ହେବାକୁ ପଡ଼ିବ । ତୁମେ ଇଚ୍ଛା କରିଥିଲେ, ଆଉ କିଛି ଦିନ ନିଆ ଆମ୍ବ୍ୟାବ୍ କିଣିବା ପ୍ରସ୍ତାବ ଗଡ଼ାଇ ଦେଇ ପାରିଥାନ୍ତ ।"

"ମୁଁ ପାରିଥାନ୍ତି ଯେ, ସେ ତ ପାରିଲେ ନାହିଁ ।" ଏତିକିବେଳେ ଡରୁଥିଲି, ହୁଏତ ବ୍ୟାଙ୍କର୍ ମାନଙ୍କର ଆଖିରେ ଟଙ୍କା ଦେଖିବା ପ୍ରକାଶ ରଞ୍ଜନରଶ୍ମି-କ୍ଷମତା ଆସି ଯାଉଥିବ; ହୁଏତ ମୋ ପୋଷାକ ଭିତରେ ସେ ବ୍ୟାଙ୍କ୍‌ପୁଲିନ୍ଦାଟା ଦେଖି ପାରୁଥିବେ । ଏହା ଡରରେ ମୁଁ ବାଟ ରଖି କହିଲି, "ମିଷ୍ଟର୍ ବେକର୍, ମୁଁ ତାଙ୍କୁ ବୁଝାଇବାକୁ ଚେଷ୍ଟା କରିବ ।"

"ଯଦି ଏ ପର୍ଯ୍ୟନ୍ତ ସେ ଟଙ୍କାତକ ଚେଷ୍ଟ ନ କରି ସାରିଥିବେ ସିନା ! ସେ କ'ଣ ବର୍ତ୍ତମାନ ଘରେ ଅଛନ୍ତି ?"

"ସେ କହୁଥିଲେ, ବସ୍‌ରେ ରକ୍‌ହ୍ୟାମ୍ ଟନ୍ ଯିବାକୁ ।"

"ଭଗବାନ୍ ଭରସା ! ଏତେବେଳକୁ ପାଞ୍ଚଟି ହଜାର ଉଡ଼ି ଯିବା ଉପରେ ।"

"ଯାହା ତ ହେବାର ହେଲାଣି । ତାଙ୍କ ପାଖେ ଆଉ ତ କିଛି ଟଙ୍କା ଅଛି ।"

"ସେ କଥା କହୁନାହିଁ ମ ! ତୁମକୁ ଏତିକ ବୁଝାଇବାକୁ ବସିଛି ଯେ, ଟଙ୍କା ହିଁ ତୁମର ପ୍ରତିଷ୍ଠା ବଢ଼ାଇବାର ଏକମାତ୍ର ସାଧନ ।"

ମୁଁ ନମ୍ର ଭାବରେ କହିଲି, "ହିଁ, ଟଙ୍କା ଥିଲେ ଟଙ୍କା ଆସେ ।"

"ସାବାସ୍; ସେଇ କଥା । ସେଇ କଥାଟି ପାସୋରିଲ ତ ହାତରୁ ଚଢ଼େଇ ଉଡ଼ିଯିବ । ଜୀବନର ଆଉ ଯେଉଁତକ ବାକି ଅଛି ସେତକ ଗୁମାସ୍ତା ହୋଇ କଟାଇବ ।"

"ମେହେର୍ବାନୀ କଲେ, ସେଥିପାଇଁ ମୁଁ ବଡ଼ ଅନୁତପ୍ତ ।"

"ହଉ; ଯାଉ, ଏଥର ଏଣିକି ଲଗାମ ନିଜ ହାତରେ ରଖ ।"

"ଆଜ୍ଞା, ମାଇକନିଆଁଙ୍କ ଘଟି ବଡ଼ ବିଚିତ୍ର । ହୁଏତ, କାଲି ଆପଣ ଟଙ୍କା କରିବା ବିଷୟରେ ଯାହା କହିଲେ ସେତକ ଶୁଣି ସେ ବିଚାରି ଦେଲେ ଯେ ଟଙ୍କା ପାଇବାଟା ବଡ଼ ସହଜ ।"

"ଯାହା ହେଉ, ତାଙ୍କ ଧାରଣାଟା ଯେ ଭୁଲ ସେ କଥା ଏଥର ତାଙ୍କୁ ବୁଝାଅ । ଟଙ୍କା ଥରେ ହାତରୁ ଗଲେ ତୁମେ ଆଉ ଟଙ୍କା କରିବା ଅସମ୍ଭବ ।"

"ଆଜ୍ଞା, ଗୋଟାଏ କୋକ୍ ଦେବି କି ? ଥଣ୍ଡା କାମେରାରେ ଅଛି ।"

"ହିଁ, ଦେଲେ ହୁଅନ୍ତା ।"

ବୋତଲରୁ ସେ ପିଇ ପାରିଲେ ନାହିଁ । ତେଣୁ କାଗଜ-ତିଆରି ବର୍ଣ୍ଣବୋଧକ-କପ୍ ବଡ଼ାଟିଏ ଫିଟାଇ ଗୋଟାଏ କପ୍ ଦେଲି । ଯାହାହେଉ, କୋକ୍‌ଟା ପେଟକୁ ଯିବାରେ ସେ କଥଞ୍ଚିତ୍ ଥଣ୍ଡା ପଡ଼ିଲେ । ଦୁଇ-ବଜ୍ର ନିନାଦ ପରି ସେ ଗଡ଼ ଗଡ଼ ହେଉଥାନ୍ତି ।

ଛକ ଉପରୁ ଦୁଇଜଣ ନିଗ୍ରୋ ମହିଳା ଆସି ପହଞ୍ଚିଲେ । ମିଷ୍ଟର୍ ବେକର୍‌ଙ୍କୁ କୋକ୍ ଉଦରସ୍ଥ କରିବା ସଙ୍ଗେ ସଙ୍ଗେ କ୍ରୋଧକୁ ମଧ୍ୟ ଉଦରସ୍ଥ କରିବାକୁ ପଡ଼ିଲା । ହିଂସ୍ର ସ୍ୱରରେ ସେ ମୋତେ କହିଲେ, ତାଙ୍କୁ ବୁଝା-ଇଦେବ ।" ଏତକ କହି ସେ ଦୃଢ଼ ପଦକ୍ଷେପରେ ବାହାରକୁ ଗଲେ ଓ ଗୃହ ଅଭିମୁଖରେ ଚଳଚ୍ଚିତ୍ର ପାଇ ହେଲେ । ମୋତେ ସନ୍ଦେହ କରିବାରୁ ସେ ଏଭଳି ଉନ୍ମତ୍ତ ହେଲେ କି ବୋଲି ଆଗ ଭୟ କରୁଥିଲି । ପରେ ବିଚାରିଲି, ସେ କଥା ନୁହଁ । ବିଚାର ସ୍ଥିର କଲି, ନିଜର ବ୍ୟକ୍ତିତ୍ୱରେ ଅନ୍ୟକୁ ପ୍ରଭାବିତ

କରିବାର ତାଙ୍କର ଯେଉଁ ଆଦର୍, ତାହା ଏ କ୍ଷେତ୍ରରେ ଖଟିଲା ନାହିଁ ଦେଖି ସେ ଉନ୍ମତ୍ତ ହୋଇପଡ଼ିଲେ । ତୁମ ଉପଦେଶ ଯେ ଗ୍ରହଣ ନକଲା ତା'ଉପରେ ତ ତୁମେ ରଚି ଉଠିବାର କଥା ।

ନିଗ୍ରୋ ମହିଳା ଦୁହିଁଙ୍କର ବଡ଼ ପ୍ରୀତିକର ବ୍ୟବହାର । ଛକ ଉପରେ ନିଗ୍ରୋ ଗୋଷ୍ଠୀଟିଏ ଅଛନ୍ତି । ଖାସା ଲୋକ ଏମାନେ ଗୁଡ଼ାଏ । ତାଙ୍କର ନିଜ ଦୋକାନ ଅଛି, ତେଣୁ ଆମ ସଙ୍ଗେ କାରବାର କରିବାକୁ ସେମାନେ ବେଶୀ ଆସନ୍ତି ନାହିଁ । ବେଳେ ବେଳେ ଆମ ଦର ସଙ୍ଗେ ତାଙ୍କ ଦୋକାନର ଦର କଷିବାକୁ ସେମାନେ ଆମ ଦୋକାନକୁ ଆସନ୍ତି । ଉଦ୍ଦେଶ୍ୟ, ନିଜ ଜାତିର ଦୋକାନରେ ପକ୍ଷପାତି ହେବାରୁ ଗୁଡ଼ାଏ କ୍ଷତି ସହିବାକୁ ପଡ଼ୁଛି କି ନାହିଁ, ତାହା ବାରିବେ । କିଣିବା ଅପେକ୍ଷା ସେମାନେ ବେଶି ଦରଦାମ ବୁଝାବୁଝି କଲେ । କାରଣ ତ ମୁଁ ଜାଣିଥାଏ, ତେଣୁ ଧୈର୍ଯ୍ୟ ହରାଇଲି ନାହିଁ । ପୁଣି ସ୍ତ୍ରୀଲୋକ ଦୁଇଟି ଦେଖିବାକୁ ବି ବେଶ୍ ସୁନ୍ଦର—ଗୋଡ଼ଟିମାନ କେତେ ଲମ୍ବା, ସଳଖ; ଯଦିଓ ଭାରି ସରୁ । ପିଲା-ଦିନେ ସୁଷମ ଖାଦ୍ୟ ନପାଇଲେ ମଣିଷର ଶରୀର ବଡ଼ ହେଲେ କିଭଳି ବିକୃତ ହୋଇଯାଏ ଭାବିଲେ ଦୁଃଖ ଲାଗେ । ମଣିଷର ମନ ବି ସେଇ କାରଣରେ ବିକୃତ ହୋଇଯାଏ ।

ଠିକ୍ ଦୋକାନ ବନ୍ଦ କରିବା ପୂର୍ବରୁ ମୁଁ ମେରୀଙ୍କୁ ଟେଲିଫୋନ୍ କଲି, "ଚକୋଲେଟ୍ ! ମୋର ଫେରୁ ଫେରୁ ଟିକିଏ ଡେରି ହେବ ।"

"ଫୋର୍ମାଷ୍ଟର୍ ଭୋଜନାଳୟରେ ମାର୍ଗିଙ୍କ ସଙ୍ଗେ ରାତ୍ରିଭୋଜନ କରିବା, ଏକଥା ଯେମିତି ପାସୋର୍ ନହୁଅ ।

"ବେଶ୍ ମନେ ଅଛି ।"

"କେତେ ଡେରି ହେବ ତୁମର ?"

"ଦଶ କି ପନ୍ଦର ମିନିଟ୍ । ସମୁଦ୍ର କୂଳକୁ ଯାଇ ବନ୍ଦରକୁ ଗହିରିଆ କରୁଥିବା ଡ୍ରେଜର୍ ଯନ୍ତ୍ରଟା ଟିକିଏ ଦେଖି ଆସିବି ।"

"ଉଦ୍ଦେଶ୍ୟ ?"

"ସେଇଟା କିଣିବି ବୋଲି ଭାବୁଛି ।"

"ଓଃ !"

"ସମୁଦ୍ର କୂଳରୁ କଞ୍ଚା ମାଛ କିଣି ନେବି ବୋଲି ଭାବୁଛ ?"

"ଭଲ ଗୃହମାଛ ଯଦି ପାଇବ, ଆଣିବ । ଏ ଦିନେ ତ ମିଳିଲେ ସେଇ ମାଛ ମିଳିବ ।"

"ହଉ, ମୁଁ ଧାଉଁଲି ତା ହେଲେ ।"

"ହିଁ, ବୃଥା କାଳକ୍ଷେପ କରିବ ନାହିଁଟି ! ଆସିଲେ ଗାଧୋଇବ, ପୋଷାକ ବଦଳିବ । ଫୋର୍‌ମାଷ୍ଟର୍‌, ମନେ ରହିଲଟି ?"

"ଆଦୌ ବିଳମ୍ବ କରିବ ନାହିଁ ପ୍ରିୟେ ! ସୁନ୍ଦରୀ ମଣି ! ପାଞ୍ଚହଜାର ଟଙ୍କା ତୁମକୁ ଖର୍ଚ୍ଚ କରିବାକୁ ଦେଲି ବୋଲି ମିଷ୍ଟର୍‌ ବେକର୍‌ ଆଜ ମୋତେ ଧି'କ୍କାର କରିଦେଲେ ।"

"ତାଙ୍କର ସେଥିରେ କ'ଣ ଅଛି ? ବୁଢା ଗାରଡ଼ କାହିଁକା !"

"ମେରୀ—ମେରୀ ! ସାବଧାନ ! କାନ୍ଥ ବାଡ଼ର ବି କାନ ଅଛି ଟି !"

"ତାଙ୍କୁ କହିଦେବ, ତାଙ୍କ ହାତରେ କ'ଣ ହେବ କରନ୍ତୁ ।"

"ସେ କରିବେ କ'ଣଟା ? ଆଉ ସେ ତୁମକୁ କହିଲେ, ବୁଦ୍ଧିହୀନା ବୋଲି ।"

"କ'ଣ କହିଲେ ?"

"ଆଉ ମୋତେ କହିଲେ ଫାଙ୍ଗ୍‌ଲା, ପୋଲ୍‌ଫାଙ୍କିଆ—ମୋ'ର ଏ ସ୍ୱରୂପ ତ ତୁମକୁ ଜଣା !"

ତାଙ୍କର ସବୁଠାରୁ ମନୋମୁଗ୍‌ଧକର କରିକରି ହସ ସେ ହସୁଥାନ୍ତି । ଏ ହସ ଶୁଣିଲେ ମୋ ଆତ୍ମା ଆନନ୍ଦରେ ପୂରିଯାଏ ।

ସେ କହିଲେ, "ଶୀଘ୍ର ଘରକୁ ଆସ, ପ୍ରିୟତମ ! ଶୀଘ୍ର ଆସ ।" ଏମିତି ସ୍ତ୍ରୀ ଲୋକଟିଏ ନିଜର କରି ପାଇଲେ କେମିତି ଲାଗୁଥିବ, କ'ଣ କହିବି ? ଟେଲିଫୋନ୍‌ ଥୋଇ ଦେଇ ତା'ରି ପାଖରେ ଠିଆ ହୋଇ ରହିଲି । ଦେହ ଦ୍ରବିଯାଉଥାଏ, ଗୋଡ଼ ଚଳିବାକୁ ଅକ୍ଷମ ହୋଇଥାଏ, କିନ୍ତୁ ମନ ଭିତର ପୁଲକିତ ! ମନ ଓ ଦେହର ଏ ଅବସ୍ଥା ଯୁଗପତ୍‌ ହେବା ଯେବେ ସମ୍ଭବ, ତେବେ ତାହାହିଁ ମୋର ହୋଇଥିଲା । ମେରୀଙ୍କୁ ମୁଁ ପାଇବା ପୂର୍ବରୁ ମୋର କି ଦଶା ହୋଇଥିଲା ମନେ ପଡ଼ିଲା ନାହିଁ ; ତାଙ୍କ ଅନ୍ତେ ମୋର କି ଦଶା ହେବ ତାହା ବି କଳ୍ପନା କରି ପାରିଲି ନାହିଁ । ଖାଲି ଏତିକି କଳ୍ପନା କଲି, ତାଙ୍କ ଅନ୍ତେ ମୋ'ର ଯେଉଁ ଅବସ୍ଥା

ହେବ ତା' ସ୍ୱରପଟେ ମୋଟାକଳାଦାଗ ବୁଲିଯାଇଥିବ । ମୋ'ର ମନେହୁଏ, ପ୍ରତ୍ୟେକ ଲୋକ ଜୀବନର କୌଣସି ନା କୌଣସି ଅବସ୍ଥାରେ, ନିଜ ସମାଧି ଉପରେ କ'ଣ ଲେଖା ହେବ ବିଗ୍ଭରନ୍ତି । ମୋ ସମାଧି ଉପରେ ଲେଖା ହେବ, "ବିଦାୟ, ଗ୍ଭର୍ଲି !"

ସୂର୍ଯ୍ୟ ପଶ୍ଚିମଦିଗର ପର୍ବତମାଳାର ଆର ପାଖକୁ ଗ୍ଭଲି ଯାଇଥାନ୍ତି । କିନ୍ତୁ ଆକାଶରେ ଖଣ୍ଡେ ବିରାଟ ପାଣ୍ଡୁର ମେଘ ସୂର୍ଯ୍ୟଙ୍କ କିରଣ ଗ୍ଭଣିଆଣି, ପୂର୍ବଦିଗର ବନ୍ଦର, ତରଙ୍ଗରୋଧୀ ବନ୍ଧ ଓ ସମୁଦ୍ର ଉପରେ ବିଛାଇ ଦେଇଥାଏ । ସେହି କିରଣରେ ଧଉଳଗୁଣ୍ଡି ପକ୍ଷୀଙ୍କ ମୁଣ୍ଡିମାନ ଗୋଲାପର ରକ୍ତାଭ ରଙ୍ଗରେ ରଞ୍ଜିତ ହେଲା ପରି ଦିଶୁଥାଏ । ସମୁଦ୍ର କୂଳେ କୂଳେ ଯାଇଥିବା ପଥରବନ୍ଧ ତଳକୁ ସମୁଦ୍ରଭିତରେ ଯେଉଁ ଖୁଣ୍ଟି ସବୁ ରହିଛି, ସେଗୁଡ଼ିକ ପ୍ରତ୍ୟେକେ ତିନି ତିନୋଟି କାଠ-ଖମ୍ବରେ ଗଢ଼ା, ପ୍ରତ୍ୟେକ କାଠ ଖୁଣ୍ଟି ଉପରେ ଲୁହାର ବଳା ବସିଛି; ଖୁଣ୍ଟିଗୁଡ଼ିକ ଟେଙ୍କା ହୋଇ ରହିଛନ୍ତି, ଶୀତ ଦିନର ବରଫ ତା' ଉପରେ ଜମା ନ ହୋଇ ତଳକୁ ଖସଡ଼ି ଯିବ ବୋଲି । ପ୍ରତ୍ୟେକ ଖୁଣ୍ଟି ଉପରେ ଗୋଟିଏ ଗୋଟିଏ ଶଙ୍ଖଚିଲ ନିଶ୍ଚଳ ହୋଇ ବସିଥାନ୍ତି । ପ୍ରାୟଶଃ ଏ ସମସ୍ତେ ଅଣ୍ଡିରା, ସମସ୍ତଙ୍କର ଗ୍ଭତି ପରିଷ୍କାର ଧଳା ଓ ପକ୍ଷଗୁଡ଼ିକ ପରିଷ୍କାର, କିନ୍ତୁ ଧୂସର ବର୍ଣ୍ଣ । ସେମାନେ ଯେପରି ବସିଥାନ୍ତି, ତାହା ଦେଖି ମୁଁ ଭାବୁଥାଏ, ଏ ଖୁଣ୍ଟିଗୁଡ଼ିକ ବୋଧହୁଏ ଏମାନଙ୍କର ନିଜ ନିଜ ସମ୍ପତ୍ତି—ନିଜ ଇଚ୍ଛାରେ ଏମାନେ ନିଜ ନିଜ ଖୁଣ୍ଟିକୁ ଭଡ଼ା ଲଗାଇ ପାରିବେ ବା ବିକିଦେଇ ପାରିବେ ।

କେତେଗୁଡ଼ିଏ ମାଛୁଆ ଡଙ୍ଗା-କୂଳରେ ଲାଗିଥାନ୍ତି । ଏଠାରେ ସବୁ କେଉଟଙ୍କୁ ମୁଁ ଜାଣେ, ପିଲାଦିନୁ ଜାଣି ଆସିଛି । ନେଷ୍ ଠିକ୍ କହିଥିଲେ; ଏମାନଙ୍କ ପାଖରେ ଯୁଦ୍ଧ ବ୍ୟତୀତ ଆଉ କିଛି ନଥାଏ । ମୁଁ ଜୋ ଲୋଗାନ୍ କେଉଟଠାରୁ ବଡ ବଡ଼ କରି ଗ୍ଭରୋଟି କିଣିଲି । ସେ ମାଛଗୁଡ଼ିକର ମଳି କଣ୍ଟା ବାହାର କରିବାବେଳେ ମୁଁ ତା'ପାଖେ ଠିଆ ହୋଇ ଦେଖିଲି—ତା' ଦାଢ଼ୁଆ ଛୁରି ପାଣି ପରି ମାଛର ମଳି ଚିରି ଦେଉଥାଏ । ବସନ୍ତ ଆସିଲେ ସମସ୍ତଙ୍କ ମୁହଁରେ ଏକ କଥା—ବାଇସାଳ ମରିବେ କେବେ ? ଆମ ସମାଜରେ ଗୋଟାଏ ପଦ୍ଧତି ଅଛି, 'ଲିଲ୍କ

ଫୁଟିଲେ ବାଇସାଳ ମରେ' । କିନ୍ତୁ କିଲିକଫୁଲ ଫୁଟିବାର ଦେଖି ବାଇସାଳ ମିଳିବେ ବୋଲି ନିର୍ଭର କରି ହେବ ନାହିଁ । ମୋ ଜୀବନ ତମାମ ମୁଁ ଦେଖିଛି, ମୁଁ ଯେତେବେଳେ ଏ ମାଛ ଖୋଜେ, ସେତେବେଳେ ହୁଏତ ସ୍ୱାଙ୍କର ବେଳ ଆସି ନଥାଏ, ନୋହେତ ସ୍ୱାଙ୍କ ବେଳ ଗଡ଼ି ଯାଇଥାଏ । ଏ ମାଛରୁ ଗୋଟାଏ ମିଳିଲେ କି ମଜ୍ଜା—ଟ୍ରାଉଟ୍ ମାଛ ପରି ଏଗୁଡ଼ିକ ସରୁ, ସଫା ଓ ରୂପା ପରି ଧୋ'ବ । ସ୍ୱାର ସ୍ୱାଦୁଟା ବି ବଢ଼ିଆ । ଗୁଡ଼ି ସେ ସ୍ୱାଦୁ, ଆଜି ସେ ମାଛର ଦେଖାନାହିଁ । ଜୋ ଲେଗାନ୍ ସେ ମାଛରୁ ଗୋଟିଏ ବି ମାରି ନଥାଏ ।

ଜୋ କହିଲା, "ମୋତେ ଯଦି ପଚାରୁଛ, ମୋ ମତରେ ଭୁଡ଼ୁକା-ମାଛ ସବୁଠାରୁ ଭଲ । ବିଚିତ୍ର କଥା, ଏ ମାଛକୁ ଭୁଡ଼ୁକା ବୋଲି କହିଲେ କେହି ଛୁଅଁନ୍ତି ନାହିଁ, କିନ୍ତୁ ସ୍ୱାକୁ ସମୁଦ୍ର-କୁଲୁଡ଼ା ବୋଲି କହିବ ତ, ଗରାଖ ବାଡ଼ିଆ ବାଡ଼େଇ ହୋଇ କିଣିବେ ।"

ମୁଁ ପଚାରିଲି, "ଜୋ, ତୁମ ଝିଅ ଏବେ କେମିତି ?"

"ଓଃ, ମଝିରେ ମଝିରେ କେଡ଼େ ସୁନ୍ଦର ନିରୋଗ ହୋଇ ଯାଉଛି, ତା'ପରେ ତ ପୁଣି ରୋଗ ଲେଉଟୁଛି । ତା' ପାଇଁ ମୁଁ ଘାଣ୍ଟି ହୋଇ ମଲିଣି ।"

"ବଡ଼ ଦୁଃଖର କଥା; ମୁ ତୁମପାଇଁ ବଡ଼ ଦୁଃଖିତ ।"

"କ'ଣ ଗୋଟାଏ ଔଷୁଧ କଲେ ଭଲ ହୋଇଯାନ୍ତା ବୋଲି ଜାଣନ୍ତ କି—"

"ତୁମ ବ୍ୟସ୍ତତା ବୁଝି ପାରୁଛି । ଆହା ବିଚରା ! ହେଇଟି, ଏଇ ବ୍ୟାଗଟାରେ ମାଛଗୁଡ଼ାକ ରଖିଦିଅ । ଜୋ, ମୋ'ର ଶୁଭେଚ୍ଛା ତୁମ ଝିଅକୁ ଜଣାଇଦେବ ।"

ସେ ଅନେକକ୍ଷଣ ମୋତେ ଚାହିଁ ରହିଲା, ଯେତେ ଯେମିତି ମୋଠାରୁ ଗୋଟାଏ କିଛି—ଔଷଧ ପାଇବାକୁ ଆଶା କରୁଥାଏ । ଶେଷରେ କହିଲା, "ନିଶ୍ଚୟ କହିବ, ଏଥି, ତୁମେ ପଚାରୁଥିଲ ବୋଲି ଅବଶ୍ୟ କହିବ ।"

ସମୁଦ୍ର ଭିତରକୁ ଗଡ଼ା ଯାଇଥିବା ବନ୍ଦର ଆରପାଖେ ଆମ ଟଙ୍କାସ୍ୱତର ଡ୍ରେଜର୍ କଳ କାମରେ ଲାଗିଥାଏ ; ଏହାର ପ୍ରକାଣ୍ଡ ଭଅଁର ସମୁଦ୍ର ଶଯ୍ୟାରୁ ପଙ୍କ ଓ ଶାମୁକା କୋରି ବାହାର କରୁଥାଏ ; ଡ୍ରେଜର୍-

ସଂଲଗ୍ନ ଚର୍ମ୍‌ ଟଙ୍କ ପ୍ରଭୃତିକୁ ଟାଣି ଟଣ୍ଣୁନ୍ ଉପରେ ରଖା ଯାଇଥିବା ପାଇପ୍ ବାଟେ କୂଳକୁ ଫିଙ୍ଗୁଥାଏ । କୂଳରେ ଆଲକାତରା ବୋଳା ହୋଇଥିବା ପଟାର ଗୋଟାଏ ବାଡ଼ ହୋଇଥାଏ; ପାଇପ୍ ମୁହଁରୁ ପଙ୍କ ସେଇ ବାଡ଼ର ପଛପଟେ ପଡ଼ୁଥାଏ ।

ଡ୍ରେଜର୍‌ର ଇଞ୍ଜିନ୍ ଉପର ଲାଇଟ୍ ଜଳୁଥାଏ ; ତା' ସାମନାର ଲାଇଟ୍ ଦୁଇଟା ମଧ୍ୟ । ଡ୍ରେଜର୍ ଚାଲୁଛି, ଏହା ଦୂରରେ ଜାହାଜ ଓ ଡଙ୍ଗା-ମାନଙ୍କୁ ଜଣାଇବାକୁ, ଡ୍ରେଜର୍ ଉପରେ ଦୁଇଟା ଗୋଲ ଲାଲ ଆଲୁଅ ମଧ୍ୟ ଆକାଶବଣ୍ଟି ପରି ଉଚ୍ଚରେ ଦିଶୁଥାଏ । ଧଳାଟୋପି ପିନ୍ଧି ଓ ପୋଷାକ ଉପରେ ଗୋଟାଏ ଧଳା ଆଚ୍ଛାଦନୀ ବାନ୍ଧି ପାଣ୍ଡୁର ବର୍ଣ୍ଣର ବେଙ୍ଗେଇଆ ଜଣେ ଡ୍ରେଜର୍‌ର ବାଡ଼ାରେ ଉଲଗ୍ନ ହାତ ଦୁଇଟା ଥାପି ଦେଇ, ଠିଆ ହୋଇ ତଳର ଅନ୍ଦୋଳିତ ପାଣିକୁ ଚାହିଁଥାଏ ଓ ମଝିରେ ମଝିରେ ଏଇ ଗୋଳିଆ ପାଣିରେ ଛେପ ପକାଉଥାଏ । ପବନ ସମୁଦ୍ର ଆଡ଼ୁ ଉପକୂଳକୁ ବହୁଥାଏ ।

ଡ୍ରେଜର୍ ପାଖରୁ ପବନ ଆଣୁଥାଏ, ପଙ୍କ ଓ ମଲା ଶାମୁକାର ଓ ପଚି ଯାଇଥିବା ସମୁଦ୍ର ଦଳର ସଢ଼ା ଗନ୍ଧ ; ତା' ସାଙ୍ଗେ ଡ୍ରେଜର୍‌ର ରୋଷାଇ-ଶାଳରୁ ଚୁଲି ଉପରେ ବସିଥିବା ଆପେଲ୍ ପିଠାରେ ଡାଲଚିନି ମସଲାର ବାସ୍ନା ବି ଆସୁଥାଏ । ଡ୍ରେଜର୍‌ର ପ୍ରକାଣ୍ଡ ଭଅଁର ବୀର ଦର୍ପରେ ସମୁଦ୍ର ବକ୍ଷକୁ ଭେଦ କରି, ଜାହାଜ ବନ୍ଦରକୁ ପଶିବାର ରାସ୍ତା ଗଭୀର କରୁଥାଏ ।

ହଠାତ୍ ନାଲି ଆଲୁଅର ଚମକ ଦେଖାଇ ଗୋଟିଏ ଶ୍ରେଷ୍ଠ ଜଳ-କେଳି-ପୋତ ଶେଷ ସୂର୍ଯ୍ୟର ହସ ହସ କିରଣରେ ଝଟକି ଦିଶିଲା ଏବଂ ଉପକୂଳ ଆଡ଼କୁ ପଶି ଆସି, ସେ କିରଣ ହରାଇ, ଅନ୍ଧାରରେ ଅସ୍ପଷ୍ଟ ହୋଇଗଲା । ମୁଁ ଫେରିଲି ଓ ନୂଆଡିଆରି ହୋଇଥିବା ମେରିଆନା ଉଦ୍ୟାନକୁ ପରିକ୍ରମା କରି, ବାଁ'ପଟ ରାସ୍ତାରେ ପୁରୁଣା ଜଳକେଳି-ପୋତ କ୍ଲବ୍ ଓ ଆମେରିକାନ୍ ଲିଜିଅନ୍ ହଲ୍ କଡ଼ରେ ଘରମୁହାଁ ରାସ୍ତା ଧରିଲି । ଲିଜିଅନ୍ ହଲ୍‌ର ପାହାଚ ଦୁଇପାଖେ ମାଟିଆ ରଙ୍ଗରେ ରଞ୍ଜିତ କମାଣ ସଜ୍ଜିତ ହୋଇ ରହିଥାଏ ।

ଜାହାଜ ତିଆରି କାରଖାନା ହତାରେ କାରିଗରି ଓଭର୍‌ଟାଇମ୍ କାମ କରୁଥାନ୍ତି ; ସେଠାରେ ଜମା ହୋଇଥିବା ଡଙ୍ଗାମାନଙ୍କୁ ସେମାନେ ରଙ୍ଗ କରିବାରେ ବ୍ୟସ୍ତ । ଥାନ୍ତି ଖରାଦିନ ଆସିଲେ ଡଙ୍ଗାଗୁଡ଼ିକ ସମୁଦ୍ରକୁ ଯିବାକୁ ପ୍ରସ୍ତୁତ ହୋଇ ରହିବା ଦରକାର । ପ୍ରଥମ ବସନ୍ତର ଅସ୍ୱାଭାବିକ ଥଣ୍ଡା ଯୋଗୁଁ ସେଗୁଡ଼ିକ ପାଣିରୁ ଆସି ରଙ୍ଗ ଓ ବାର୍ଣ୍ଣିସ୍ ଢଆ ହେବା ପାଇଁ ଏଠାରେ ରହିଛନ୍ତି ।

ମୁଁ ଜାହାଜ ତିଆରି କାରଖାନାର ଖଣ୍ଡେ ଦୂରରେ ବାଟକାଟି ଗଲି ଓ ବନ୍ଦର ଅଫିସ କଡ଼ରେ ଥିବା ଜଙ୍ଗଲିଆ ପଡ଼ିଆ ପାର ହୋଇ ତାନରି ନୂଆଣିଆ କୁଡ଼ିଆ ଆଡ଼କୁ ମୁହାଁଇଲି । ସେ ମୋ ସ୍ୱର ଶୁଣି ମୋତେ ଅଭିବାଦନ କରିବ ବୋଲି ଆଶା କରି ମୁଁ ପିଲାଦିନର ଗୋଟାଏ ଗୀତସୁର ଧରିଲି ।

ମୋତେ ଜଣାଗଲା ସେ ମୋର ସ୍ୱର ଶୁଣି ଅଭିବାଦନ କଲା । କିନ୍ତୁ ତା' କୁଡ଼ିଆରେ ପଶିଲାବେଳକୁ କୁଡ଼ିଆ ନିର୍ଜନ । ତା'କୁ ପ୍ରତ୍ୟକ୍ଷ ନ ଦେଖିଲେ ବି ମୁଁ ନିଶ୍ଚିତ ଜାଣୁଥାଏ ଯେ ସେ ଗୃହପଟକୁ ଘେରି ରହିଥିବା ଘାସ ଦେଉଁଆ ଭିତରେ ଇତସ୍ତତଃ ହୋଇ ପଡ଼ିଥିବା ପ୍ରକାଣ୍ଡ ଚଡ଼ଖୁଣ୍ଟିଆ କାଠଗଡ଼ମାନଙ୍କ ସନ୍ଧିରେ ଛପି କରି ରହିଛି । ମୁଁ ଫେରିବା ସାଙ୍ଗେ ସାଙ୍ଗେ ସେ କୁଡ଼ିଆକୁ ନିଶ୍ଚୟ ଆସିବ ବୋଲି ନିର୍ଭର ଧରିବ ଜାଣିଥିବାରୁ ମୁଁ ମୋ ପକେଟରୁ ମାଛିଆ ପୁଳାଦାଟି ବାହାର କଲି ଓ ତା'କୁ ତାନରି ମଶିଆ ଶେଯଉପରେ ଥୋଇ ଫେରି ଆସିଲି । ମୋର ଅବଶ୍ରାନ୍ତ ଗୃହଳଥିବା ସଙ୍ଗୀତ-ସ୍ୱର ମୁହୂର୍ତ୍ତେ ପାଇଁ ବନ୍ଦ କରି ମୁଁ ଶୁଣାଇ ଦେଲି, "ବିଦାୟ ତାନ୍ନି ! ତୋ'ର ଭାଗ୍ୟ ଫେରୁ ବୋଲି ମୋର କାମନା ।" ମୁଁ ଧରିଥିବା ସୁରଟି ପାଟିର ଶିଶିଳରେ ବଜାଇ ବଜାଇ ମୁଁ ଗଳି ରାସ୍ତା ଉପରକୁ ଗଲି । ସେ ଗଳିରେ ଯାଇ ପର୍‌ଲକ୍ ଷ୍ଟ୍ରୀଟ୍ ଧରିଲି । ପର୍‌ଲକ୍ ଷ୍ଟ୍ରୀଟ୍‌ର ପୁରୁଣା ପ୍ରାସାଦ ସବୁ ପାର ହୋଇ ଏଲ୍‌ମ୍ ଷ୍ଟ୍ରୀଟ୍‌ରେ ପଶିଲି ଓ ସେଥିରେ ଯାଇ ପହଞ୍ଚିଲି ମୋ ଘରେ—ହ'ଲି ଭବନରେ ।

ଘରେ ଯାଇ ଦେଖିଲି ମୋ ମେଣ୍ଟ—ମୋ ତଣ୍ଟି ଝିଅ ମୁହଁରେ ପଢ଼ୁଛନ୍ତି—ଧୀର ଓ ଶାନ୍ତ ଭାବରେ ନିଜର ଆଳମାଳ ଧରି ଏପାଖ

ସେପାଖ ହେଉଛନ୍ତି । ମନର ଗୃହପାଖେ କ୍ରୋଧର ବାତ୍ୟା ବହୁଛି । ନାଇଲନ୍ ଆଲ୍‌ଖାଲ୍ଲ ଓ ଚଟି ପିନ୍ଧି ସେ ଝଡ଼ ମୁହଁରେ ନିଜର ଡଙ୍ଗାକୁ ସଂଭାଳୁଛନ୍ତି; ତାଙ୍କ ସଦ୍ୟସ୍ନାତ କେଶରାଶି ଗୁଚ୍ଛ ଗୁଚ୍ଛ ହୋଇଛି । ପ୍ରତ୍ୟେକ ଗୁଚ୍ଛରେ ଲାଗିଛି ଗୋଟିଏ ଗୋଟିଏ କେଶକୁଞ୍ଚନ-ପ୍ରସାଧନୀ । ଗୁଡ଼ାଏ ମାଂସ କବାବ ତାଙ୍କ ମୁଣ୍ଡରୁ ଓହଳାଇଲା ପରି ସେ ଗୁଡ଼ିକ ଦିଶୁଥାନ୍ତି । ଆଜି କେବେ କୌଣସି ଭୋଜନାଳୟକୁ ଆମେ ରବିଭୋଜନ ପାଇଁ ଯାଇଥିବାର ମୋର ମନେ ନାହିଁ । ଏ ବିଳାସ ପାଇଁ ଆମର ପଇସା ନାହିଁ, ତେଣୁ ଏ ଅଭ୍ୟାସ ଗଢ଼ି ଉଠିବାକୁ ଅବସର ହୋଇନାହିଁ । ନୂତନ ଅନୁଭୂତିର ଆକାଂକ୍ଷାରେ ସେ ଚଞ୍ଚଳ ହୋଇ ପଡ଼ୁଥାନ୍ତି ଓ ତାଙ୍କ ମନରେ ଯେଉଁ ବାତ୍ୟାର ଆନ୍ଦୋଳନ ହେଉଥାଏ, ତାହାର ଧାସରେ ପିଲା ଦୁଇଟାଯାକ ବି ଫଡ଼ଫଡ଼ ହୋଇ ଉଦ୍‌ଭ୍ରାନ୍ତ ହେଉଥାନ୍ତି । ସେ ପିଲା ଦୁହିଁଙ୍କୁ ଖୁଆଇଥାନ୍ତି, ଧୁଆଧୋଇ କରି ସଫାସୁତୁରା କରିଥାନ୍ତି, ଯୁ୍ା କରିବ, ତା କରିବ ବୋଲି ଆଦେଶ ଦେଉଥାନ୍ତି, ଓ ଦେଇ ସାରି ସେ ଆଦେଶ ପୁଣି ପ୍ରତ୍ୟାହାର କରୁଥାନ୍ତି । ଇସ୍ତ୍ରୀ ଯନ୍ତ୍ରଟା ରୋଷେଇ ଘରର ଟେବୁଲ ଉପରେ ଥୁଆ ହୋଇଥାଏ—ମୋର ପ୍ରିୟ, ବହୁମୂଲ୍ୟ ପୋଷାକ ସବୁ ଇସ୍ତ୍ରୀର ସେକ ପାଇ ଚଉକି ପିଠି ମାନଙ୍କରେ ଓହଳି ଆଶ୍ରୟ ନେଇଥାନ୍ତି । ମେରି ଏଣେ ତେଣେ ଧାଁ ଧପଡ଼ କରିବା ଭିତରେ ଇସ୍ତ୍ରୀଟେବୁଲ ଉପରେ ପଡ଼ିଥିବା ଗୋଟାଏ ପୋଷାକ ଉପରେ ଇସ୍ତ୍ରୀଟାକୁ ଦୁ'ଗୁଣଥର ଚଲାଇ ଦେଉଥାନ୍ତି । ପିଲା ଦିଇଟା ଏଭଳି ଉଦ୍‌ବେଳିତ ହୋଇ ପଡ଼ୁଥାନ୍ତି ଯେ ପେଟପୂରା ଖାଇ ପାରି ନଥାନ୍ତି—କେବଳ ଅର୍ଦ୍ଧର ହୋଇଥିବାରୁ ଉଦ୍‌ବେଳନରେ ବି ଖାଇ ବସି, ଉଠିଥାନ୍ତି ମାତ୍ର ।

ମୋର ପାଞ୍ଚଟା ପୋଷାକ ଅଛି, ଯାହାକୁ ମୁଁ ସର୍ବୋତ୍କୃଷ୍ଟ ଆଖ୍ୟା ଦେଇଛି । ଖାଦ୍ୟ-ସାମଗ୍ରୀ ଦୋକାନର ଜଣେ ଗୁମାସ୍ତା ପକ୍ଷରେ ଏତେ ଗୁଡ଼ାଏ ଭଲ ପୋଷାକ ଯଥେଷ୍ଟ ବୋଲି ମାନିବାକୁ ହେବ । ଚଉକି ପିଠିମାନଙ୍କରେ ସେ ସବୁ ଓହଳିବା ଅବସ୍ଥାରେ ମୁଁ ସେମାନଙ୍କ ଦେହରେ ଟିକିଏ ଟିକିଏ ହାତ ଆପୁଡ଼ାଇ ଆଉଁସି ଦେଲି । ସେମାନଙ୍କର ନାମ, ଯଥା: ପୁରୁଣା ନୀଳ,ମନୋହର ଜର୍ଜ୍ ପିଙ୍ଗଳ, ଡୋରିଆନ୍ ଧୂସର, କବର କୃଷ୍ଣ ଓ ଡବିନ୍ (ଗାଡ଼ିଟଣା ଘୋଡ଼ା) ।

ମୁଁ ପଚାରିଲି, "ଦଣ୍ଡବଡ଼ା ! ଆଜ ମୁଁ କେଉଁ ପୋଷାକ ପିନ୍ଧିବ ?"

"ଏଁ, ଦଣ୍ଡବଡ଼ା ! ଓଃ, ଥାଉ ସେ କଥା । ଆଜ ତ ସେମିତି କିଛି ପର୍ବ ଦିନ ନୁହେଁ, ସୋମବାର ସନ୍ଧ୍ୟା । ମୋ ମତରେ ମନୋହର ଜର୍ଜ ବା ଡୋରିଆନ୍ ପିନ୍ଧ ; ଡୋରିଆନ୍ ପିନ୍ଧିଲେ ଭଲ, ଏହା କୌଣସି ନିର୍ଦ୍ଦିଷ୍ଟ ପାର୍ବଣ ପୋଷାକ ନ ହେଲେ ବି, ପାର୍ବଣ ପୋଷାକ ପରି ଆଖିକୁ ଦିଶେ ।"

"ଆଉ ମୋର ଛିପି ଛିପି ବୋ-ଟାଇଟା ପିନ୍ଧିବ ।"

"ହିଁ, ନିଶ୍ଚୟ ।"

ଏଲେନ୍ ବାଧା ଦେଲା, "ବାପା ! ତୁମେ ପିଲାଙ୍କ ପରି ବୋ-ଟାଇଟେ ପିନ୍ଧିବା ଭଲ ହେବ ନାହିଁ । ତୁମେ ବୁଢ଼ା ହୋଇଗଲଣି ।"

"ବୁଢ଼ା ହେଲି କେବେ ? ମୁଁ ଟୋକା ଓ ଚପଳ ।"

"ତୁମ ବେକରେ ବୋ-ଟାଇ ଦେଖି ସମସ୍ତେ ଉପହାସ କରିବେ । ଭଲ ହୋଇଛି, ମୁଁ ଯାଉନାହିଁ । ତମ ଦଶା ଦେଖି ମୋତେ ଭାରି ଖରାପ ଲାଗନ୍ତା ।"

"ତୁ ନ ଯାଉଛୁ ବୋଲି ମୁଁ ବି ଖୁସୀ । ମୁଁ ବୁଢ଼ା ହୋଇଗଲଣି ବୋଲି ତୋ'ର ଧାରଣା ହେଲା କିମିତି ?"

"ତୁମେ ବୁଢ଼ା ହୋଇ ନାହଁ ଯେ, ବୋ-ଟାଇ ପିନ୍ଧିବା ବୟସ ତୁମର ପାରି ହୋଇଗଲାଣି ।"

"ତୁ ଗୋଟାଏ ଭୟାନକ ଝିଅ ; ଏଇ ବୟସରୁ ଅଶାନ୍ତ ସଂସ୍କାରକୁ ଜାବୁଡ଼ି ଧରୁଛୁ ।"

"ପିନ୍ଧ, ମୋ'ର କ'ଣ ଅଛି ? ତୁମକୁ ସମସ୍ତେ ଟାପରା କରିବେ ।"

"ମୋତେ ଟାପରା କରନ୍ତୁ, ମୁଁ ଚାହେଁ । ଆଚ୍ଛା, ମେଗ୍, ମୋତେ ସମସ୍ତେ ଟାପରା କରନ୍ତୁ ବୋଲି ଭଲା ତୁମେ ଚାହୁଁନାହଁ ?"

"ମେଗ୍ କହିଲେ, "ବାପାଙ୍କ ସଙ୍ଗେ କାହିଁକି ଲାଗିଛୁ କି ଲୋ ? ସେ ଶୀଘ୍ର ଗାଧୋଇବା ଦରକାର । ଶେଯ ଉପରେ ଗୋଟାଏ ସଫା କାମିଜ ମୁଁ ସଜାଡ଼ି ରଖିଛି ।"

ୟାଲେନ୍ କହିଲା, " 'ମୁଁ ଆମେରିକାକୁ ସୁଖ ପାଏ' ପ୍ରବନ୍ଧର ଅଧେ ହେବ ଲେଖି ସାରିଲଣି ।"

"ବେଶ୍ ଭଲ, ଶୀଘ୍ର ସାରଦେ । କାରଣ, ଆସନ୍ତା ଗ୍ରୀଷ୍ମ ଋତୁରେ ମୁଁ ତୋତେ କାମରେ ଲଗାଇବି, ଭାବୁଛି ।"

"କାମ ? କି କାମ ?"

"ଆମ ଷ୍ଟୋର୍‌ରେ ମୋତେ ସାହାଯ୍ୟ କରିବା କାମ ।"

"ଓଃ !" ଷ୍ଟାଲେନ୍‌ର ସ୍ୱରରୁ ବାରିଲି, ଏ କାମରେ ତା'ର ବିଶେଷ ଆଗ୍ରହ ନାହିଁ ।

ଷ୍ଟାଲେନ୍‌ର ମୋର କଥାବାର୍ତ୍ତା ଆରମ୍ଭ ବେଳେ, ଏଲେନ୍ ଓଃ ବୋଲି ନିଃଶ୍ୱାସଟାଏ ମାରିଲା, କିନ୍ତୁ ତା' ଆଡ଼କୁ ଆମର ନଜର ପଡ଼ିବାରେ ସେ ତୁନୀ ହୋଇ ରହିଗଲା । ଆମର ଅନୁପସ୍ଥିତିରେ ପିଲାମାନେ ଯେଉଁ ପଞ୍ଚାଅଶୀ ପ୍ରକାର କାମକୁ କରିବେ ଓ ନ କରିବେ ବୋଲି ମେଗ୍ ନିର୍ଦ୍ଦେଶ ଦେଇଥିଲେ, ସେ ତାହାର ପୁନରାବୃତ୍ତି କରିବାକୁ ଆରମ୍ଭ କଲେ ଓ ମୁଁ ଗାଧୋଇବାକୁ ଉପର ମହଲାକୁ ଗଲି ।

ମୋର ପ୍ରିୟ ଟିପିଟିପି ବୋ-ଟାଇ, ଏକୋ-ମାଙ୍ଗଃ-ହିଣ୍ଟସ୍ଲୋ-ନାପ୍ତି ବୋ-ଟାଇଟିକୁ ବେକରେ ବାନ୍ଧୁଛି, ଏଲେନ୍ ଆସି ଗାଧୁଆ ଘର ଦୁଆରେ ଆଉଜି କହିଲା, "ତୁମର ବୟସ ଯଦି ଆଉ ଟିକିଏ କମ୍ ହୋଇଥାନ୍ତା, ତେବେ ବୋ-ଟାଇଟା ପିନ୍ଧିଲେ ସେପରି କିଛି ବିଶେଷ ଖରାପ ହୁଅନ୍ତା ନାହିଁ ।"

"ଆଲେ ଝିଅ, ମୁଁ ଜାଣୁଛି, ତୋତେ ପାଇ ଖୁସୀ ହୋଇଥିବା ତୋ ସ୍ୱାମୀକୁ ତୁ କେଳେଇ କୁଟେଇ ପକାଇବୁ ।"

"ହାଇସ୍କୁଲର ଉପରକ୍ଲାସ ପିଲାମାନେ ବି ବୋ-ଟାଇ ପିନ୍ଧିବାକୁ ପସନ୍ଦ କରିବେ ନାହିଁ ।"

"କିନ୍ତୁ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ମ୍ୟାକ୍‌ମିଲାନ୍ ତ ବୋ-ଟାଇ ପିନ୍ଧନ୍ତି !"

"ତାଙ୍କ କଥା ଅଲଗା । ଆଛା, ବାପା, ଗୋଟାଏ ବହିରୁ କିଛି ନକଲ କରିବା ଠକାମି, ନା ନୁହେଁ ?"

"କଥାଟା ପରିଷ୍କାର କରି କହ ।"

"ଧର, ଜଣେ ଲୋକ—ନା, ମୁଁ ମୋ ପ୍ରବନ୍ଧଟା ଲେଖୁଛି, ଅନ୍ୟ ବହିରୁ ଆଣି ସେଥିରେ କିଛି ପୂରାଇବି । ତେବେ ?"

"କି ଶବ୍ଦରେ ପୂରାଇବୁ, ତା'ର ଉପରେ ସିଦ୍ଧାନ୍ତ ନିର୍ଭର କରିବ ।"

"ତୁମେ, ଏଇଲେ କହିଲମେତେ କଥାଟା ପରିଷ୍କାର କରି କହ ।"

"ମୁଁ କହିଲି ପରି, ନା ?"

"ହଁ ।"

"ବେଶ, ଶୁଣ୍, ଯଦି ଅନ୍ୟ ବହିରୁ ଆଣିବା ଅଂଶର, ଆରମ୍ଭ ଓ ଶେଷରେ ଉଦ୍ଧୃତଚିହ୍ନ ଦେବ ଓ ତୁମ ପ୍ରବଂଧର ତଳେ ଯାହାଙ୍କ ଲେଖାରୁ ଉଦ୍ଧୃତ କଲ, ତା'ଙ୍କ ନାମ ଲେଖିବ, ତା' ହେଲେ ଅନ୍ୟର ଲେଖା ନିଜ ଲେଖାରେ ପୂରାଇଲେ କିଛି ଦୋଷ ନାହିଁ ; ବରଂ ଏହା-ଦ୍ୱାରା ତୁମ ଲେଖାର ମାନ ଓ ମହତ୍ତ୍ୱ ବଢ଼ିବ । ପୁରୁଣା କବି ଓ ଲେଖକ-ମାନଙ୍କର କବିତା ଓ ପ୍ରବଂଧାଦିର ଯେଉଁ ସଙ୍କଳନ ସବୁ ବାହାରୁଛି, ତା କଥା ଛାଡ଼ । ମୌଳିକ ଲେଖା ବୋଲି ଆମେରିକାରେ ଆଜିକାଲି ଯାହା ପ୍ରକାଶିତ ହେଉଛି, ସେଥିରୁ ଆଠପଣ ପୁରୁଣା ଲେଖକଙ୍କ ଲେଖାର ଉଦ୍ଧୃତ । ଆଚ୍ଛା, ବର୍ତ୍ତମାନ ମୋ' ଠାଇ ତୋ ମନକୁ ପାଉଛି ନା ନାହିଁ ?

"ମନେକର, ଅନ୍ୟର ଲେଖାରୁ ବିଷୟ ନିଜ ଲେଖାରେ ପୂରାଇ ଯଦି ଉଦ୍ଧୃତ ଚିହ୍ନ ନ ଦିଅ ?"

"ତେବେ ସେ ହବ ଚୋରି ; ଜିନିଷ ପତ୍ର, ଟଙ୍କା ପଇସାର ଚୋରି ସଙ୍ଗେ ସମାନ । ତୁ କ'ଣ ଏମିତି କରିଛୁ, ଝିଅ ? କରି ନାହୁଁ ତ ?"

"ନା !"

"ତେବେ ଏତେ ଚିନ୍ତା କେଉଁଥିପାଇଁ ?"

"ଆଚ୍ଛା, ଏଭଳି ଯଦି କଲ, ତେବେ କ'ଣ ତୁମକୁ ଜେଲ୍‌ରେ ପୂରାଇବେ ।"

"ହଁ, ଯଦି ଏଭଳି ପରସ୍ୱ-ଅପହରଣ କରି ତମେ ଟଙ୍କା ପାଇ-ଥାଅ ! ଝିଅ, ଏମିତି କେବେ କରିବୁ ନାହିଁ, ମା ! ହଉ, ମୋ' ଠାଇ ବିଷୟରେ ତୋ'ର ମତ ବଦଳିଛି କି ନାଇଁ, କହ ।"

ସେ କହିଲେ, "ମୁଁ ଦେଖୁଛି, ତମକୁ ଆଦୌ ପାରି ହେବ ନାହିଁ, ବାପା !"

"ହଁ, ଝିଅ ! ଆମ ଅନୁପସ୍ଥିତିରେ ଯଦି ଅନ୍ୟମାନଙ୍କ ସଙ୍ଗେ ତୋ'ର ହୈବାତ୍ ଦେଖାସାକ୍ଷାତ୍ ହୁଏ, ତେବେ ତୋ'ର ମେଇ ଆଖି ମିଟିମିଟି କରିବାବାଲା ଭାଇକୁ କହିବୁ, ମୁଁ ତା'ର ସେ କଦର୍ଯ୍ୟ ମିକ-ମୁଷା ମୁଖା ଆଣିଛି—ଏହା ଶୁଣିବା ଯୋଗୁଁ ତା'ର ଲଜ୍ଜିତ ହେବାର କଥା ।"

"ବାପା, ତୁମେ କୌଣସି କଥାକୁ କାନ ଦେଉ ନାହିଁ, ମନଦେଇ କିଛି ଶୁଣୁ ନାହିଁ ।"

"ଶୁଣୁଛି ତ ବେଶ୍ !"

"ନା, ଆଦୌ ଶୁଣୁନାହିଁ ; ଦିନେ ଏଥିପାଇଁ ଅନୁତାପ କରିବ ଯେ ।"

"ବହୁତାଚ୍ଛା, ଝିଅ ! ମନ ଖୁସି କରି ରହ ।"

ସେ ଧୀର ଗତିରେ ଚାଲିଗଲା । ପିଲାଦିନୁଁ ଏଇଠାରୁ ମନ ଚଗଲା । ଝିଅପିଲା ମୋତେ କଣ୍ଠାଗତ କରି ପକାନ୍ତି । ତାଙ୍କ ପ୍ରକୃତିଟାମାନ ଠିକ୍ ମାଇକନିଆଁଙ୍କ ପ୍ରକୃତି ।

ମୋ ମେଗି ଯଥାର୍ଥ ସୁନ୍ଦରୀ; ପରମ ସୁନ୍ଦର ରୂପ ଝଲସାଇ ଦେଇ ସେ ବାହାରି ପଡ଼ିଲେ । ତାଙ୍କ ଭିତରୁ ଗୋଟାଏ ପ୍ରକାର ତେଜ ତାଙ୍କ ଲୋମ-କୂପ କାଟି ବାହାରି ପଡ଼ୁଥାଏ । ସେ ମୋ'ର ହାତ ଧଇଲେ; ଆମେ ଏଲମ୍ ଷ୍ଟ୍ରୀଟ୍‌ରେ ହାତ ଧରାଧରି ହୋଇ ବାହାରିଲୁଁ ; ମୁଣ୍ଡ ଉପରେ ଦୁଇ ପାଖର ଝଙ୍କାଳିଆ ଏଲମ୍ ଗଛମାନଙ୍କର ଡାଳ ଛନ୍ଦି ହୋଇ ତୋରଣପରି ହୋଇଥାଏ । ରାସ୍ତାର ଆଲୋକ ଆମ ସନ୍ଧ୍ୟା-ଇସ୍ତୀକରା ପୋଷାକ ଉପରେ ଖେଳୁଥାଏ । ଘୋଡ଼ାଦୌଡ଼ର ପ୍ରାକ୍‌କାଳରେ ଜାତିଆ ଘୋଡ଼ାମାନେ ଯେପରି ଗର୍ବରେ ସ୍ଫୀତ ଫୁଲାଇ ଉଶ୍ୱାସ ପାହୁଣ୍ଡ ପକାଇ ଅଡ଼ା ପାଖକୁ ଯା'ନ୍ତି ଆମେ ସେମିତି ଅଗ୍ରସର ହେବାକୁ ଲାଗିଲୁ ।

ମୁଁ କହିଲି, "ସଖୀ ! ତୁମର ରୋମ୍‌କୁ ଯିବା ଉଚିତ । ମିଶର ତୁମ ଭଳି ନାରୀଙ୍କ ପାଇଁ ଯଥେଷ୍ଟ ନୁହେଁ । ସମଗ୍ର ସଂସାର ତୁମକୁ ଚାହିଁ ରହିଛି ।"

ସେ ଖିଲଖିଲ ହସିଲେ । ମୁଁ ଶପଥ କରି କହିପାରେ, ତାଙ୍କର ଏ ଖିଲଖିଲ ହସ ଆମ ଝିଅ ମୁହଁରେ ସୁନ୍ଦର ଦିଶିଥାନ୍ତା ।

"ପ୍ରିୟେ ! ଏଥର ଏଣିକ ଆମେ ଅଧିକରୁ ଅଧିକ ବାହାରେ ଆମୋଦ କରିବା ?"

"କେବେ ?"

"ଯେବେ ଆମେ ଧନୀ ହେବା ।"

"ସେ ପୁଣି କେବେ ?"

"ଖୁବ୍ ଶୀଘ୍ର । ଏବେ ଛ ଜୋଡା ପିନ୍ଧିବାକୁ ମୁଁ ତୁମକୁ ଶିଖାଇବ ବିଚାରିଛି ।"

"ତୁମେ ତେବେ କ'ଣ ପଚିଶଟଙ୍କିଆ ନୋଟ୍ ଜାଲ ତୁମ ପିକାରେ ନିଆଁ ଧରାଇବ ?"

"ନାଁ, ଶହେ ଟଙ୍କିଆ ନୋଟ୍‌ରେ ।"

"ତୁମକୁ ମୁଁ ସୁଖ ପାଏ ।"

"ଛି, ଛି, ମହାଶୟା ! ଆପଣ ଏହା କହିବା ଉଚିତ ନୁହେଁ । ମୁଁ ଆପଣଙ୍କ କଥା ଶୁଣି ଖିତହସ୍ତ ହୋଇ ଯାଉଛି ।"

ଅଳ୍ପଦିନ ତଳେ ଫୋର୍‌ମାଷ୍ଟର୍ ଭୋଜନାଳୟର ମାଲିକମାନେ ରାସ୍ତା ଉପରକୁ ଖିଲ୍‌ଣଦିଆ ଝରକାମାନ ଖୋଲିଛନ୍ତି—ଝରକାରେ ମୋଟା ବୋତଲ-କାଚର ସାନସାନ ଚଉଖୁଣିଆ କାଚ ଦିଆ ହୋଇଛି । ହୋଟେଲଟି ପୁରୁଣା ଓ ବିଶ୍ୱାସଯୋଗ୍ୟ ଦିଶିବ ବୋଲି ଏପରି ହୋଇଛି । ଉଦ୍ଦେଶ୍ୟ ସଫଳ ହୋଇଛି ଅବଶ୍ୟ, କିନ୍ତୁ ଘର ଭିତରେ ଟେବୁଲରେ ଖାଇ ବସିଥିବା ଲୋକଙ୍କ ମୁହଁ ବାଣ୍ଡିରୁ ଦେଖିଲେ, ଝରକାର ବଙ୍କଡ଼ା ବୋତଲ-ଗ୍ଲାସ ବାଟେ ବିକୃତ ଦିଶୁଛି । ଜଣକର ମୁହଁ ଯଦି ଖାଲି ପାଟିଟେ ପରି ଦିଶୁଛି ତ, ଆଉ ଗୋଟାକର ମୁହଁ ଦିଶୁଛି ଗୋଟା ଏ ପ୍ରକାଣ୍ଡ ଲକ୍ଷହୀନ ଆଖି ପରି—କିନ୍ତୁ ଏ ସ୍ଥାପତ୍ୟ ଓ ଏ ଦୃଶ୍ୟ ସମସ୍ତେ ମିଶି ପୁରାତନ ଫୋର୍‌ମାଷ୍ଟର୍ ଭୋଜନାଳୟର ସ୍ଥାୟିତ୍ୱ ଓ ବିଶ୍ୱାସ-ଭାଜନ-ତାର ପ୍ରମାଣ ଦେଉଛନ୍ତି—ଝରକା ଦାଢ଼ରେ ଥୁଆ ହୋଇଥିବା ଜେରା-ନିଅମ୍ ଓ ଲେବେଲିଆ ଫୁଲ କୁଣ୍ଡିମାନ ମଧ୍ୟ ।

ମାର୍ଟି ଆମକୁ ଗୃହିଁ ରହିଥାନ୍ତି—ତାଙ୍କରୁ ଚଳଣା ପର୍ଯ୍ୟନ୍ତ ଅତିଥି-ସେବକାର ନିଖୁଣ ମୂର୍ତ୍ତି । ସେ ତାଙ୍କର ସଙ୍ଗୀ ନ୍ୟୁୟର୍କ୍‌ବାସୀ ମିଷ୍ଟର୍ ହାର୍‌ଟୋର୍‌ଙ୍କ ସଙ୍ଗେ ଆମର ପରିଚୟ କରାଇଦେଲେ । ଲୋକଟିର ରୂପ

ସୂର୍ଯ୍ୟକିରଣ ବାଜି ଈଷତ୍ ରଙ୍ଗୀନ୍‌ଆ ଓ ଗ୍ଲାସ୍‌ମୁଦାନଗୁଡ଼ିକ 'ମଫସଲ ଭଦ୍ର-ଲୋକ'ଙ୍କ କାନ ପରି ଦିଶୁଥାଏ । ମିଷ୍ଟର୍ ହାରଚଟ୍ କାଗଜ ପୁଡ଼ିଆରେ ଜଉ ମୁଦ ଦିଆ ହୋଇଥିବା ଜିନିଷ ପରି, ମୌନତାର ଖୋଳ ଭିତରେ ନିଜର ମତାମତ ଗୋପନୀୟ କରି ରଖିବା ବାଲା—କିନ୍ତୁ ତାହାଙ୍କୁ ଯାହା ପଦେ ପଚାରିଲେ, ତା'ର ଉତ୍ତରସ୍ୱରୂପ ସମ୍ମତିସୂଚକ ହସଟିଏ ହସିବାକୁ ଅଭ୍ୟାସ କରିଥାନ୍ତି । ଆମ ଆଳାପକୁ ତାଙ୍କର ଦାନ ଏଇ ହସଟି—ମନ୍ଦ ସାମଗ୍ରୀ ନୁହେଁ ।"

ମେଗି ତାଙ୍କୁ ପଚାରିଲେ, "ଆପଣଙ୍କର ସବୁ କୁଶଳ ତ ?"

ଉତ୍ତରରେ ମିଷ୍ଟର୍ ହାର୍‌ଚଟ୍ କେବଳ ହସିଲେ ।

ମୁଁ କହିଲି, "ଆପଣ ବୋଧହୁଏ ଜାଣନ୍ତି, ଆପଣଙ୍କ ସଙ୍ଗିନୀଙ୍କୁ ଗୁଣିଗାରେଡ଼ି ଜଣା ।"

ମିଷ୍ଟର୍ ହାରଚଟ୍ ପୁଣି ହସିଲେ । ଆମ ସମସ୍ତଙ୍କର ବେଶ ଉପଭୋଗ୍ୟ ହେଲା ।

ମାର୍ଗି କହିଲେ, "ଝରକାପାଖରେ ଗୋଟିଏ ଟେବୁଲ୍ ମୁଁ ବରାଦ କରି ରଖାଇଛି; ହେଇ, ସେଇଟା ।"

ମେଗି ଉତ୍ତର ଦେଲେ, "ଆଉ ମାଗ, ବିଶେଷ ଧରଣର ଫୁଲ ଆଣି ଟେବୁଲ ସଜାଇବାକୁ ବି ବରାଦ କରିଛ ।"

"ମେଗି ! ତୁମେ ମୋ ପାଇଁ ଯାହା ସବୁ କରିଛ, ତା'ର ପ୍ରତିଦାନରେ ମୋତେ ତ ପୁଣି କିଛି କରିବାକୁ ହେବ ?"

ମାର୍ଗି ଆମମାନଙ୍କୁ ନେଇ ଟେବୁଲ୍ ପାଖେ ଯେଝା ଆସନରେ ବସାଇଲା ବେଳେ ଓ ତା'ପରେ ବି, ତାଙ୍କର ଓ ମେଗିଙ୍କର ଏଇପରି ଆଳାପ ଲାଗିରହିଲା । ପ୍ରତି ପୂର୍ଣ୍ଣଚ୍ଛେଦ ପରେ ମିଷ୍ଟର୍ ହାରଚଟ୍ ଥରେ ହସୁଥାନ୍ତି—ଖୁବ୍ ବୁଦ୍ଧିମାନ ଲୋକ ଜଣେ ଏକା ! ତାଙ୍କଠାରୁ ପଦେ କଥା ବାହାର କରିବାକୁ ମୁଁ ଗୋଟାଏ ଫନ୍ଦି ଭାବିଥାଏ—କିନ୍ତୁ ତା ବେଳ ପର୍ଯ୍ୟନ୍ତ ଆସିବ ।

ସଜ୍ଜିତ ଟେବୁଲ୍‌ଟି ବେଶ୍ ସୁନ୍ଦର ଦିଶୁଥାଏ ; ଖୁବ୍ ଧୋବ ବି ଦିଶୁଥାଏ । ରୁପାର ଖାଦ୍ୟ ପାତ୍ରଗୁଡ଼ିକ ନକଲି ରୁପା ହୋଇଥିଲେହେଁ, ଅସଲ ରୁପାଠାରୁ ଅଧିକ ରୁପା ପରି ଝଲକୁଥାନ୍ତି ।

ମାର୍ଗି କହିଲେ, "ମୁଁ ଅଭ୍ୟାସେବକା; ତା'ର ଅର୍ଥ, ମୁଁ ଏଠାରେ ମାଲିକ; ମୋର ବରାବରରେ ସବୁ ହେବ । ମୁଁ କହୁଛି, ମଦ୍ୟ ଆସୁ, ଆପଣମାନେ ଗ୍ରହଣ କରନ୍ତୁ ବା ନ ଗ୍ରହଣ କରନ୍ତୁ ।" ମିଷ୍ଟର ହାର୍‌ଟଗ୍ ହସିଲେ ।

ମଦ ଆସିଲା ଯେ, ଛୋଟ ଛୋଟ ଗ୍ଲାସରେ ନୁହେଁ; ପକ୍ଷୀ-ଗାଧୁଆ କୁଣ୍ଡିପରି କୁଣ୍ଡିରେ । ମଝିରେ ଫାଳେ ଫାଳେ ଲେମ୍ବୁ ଭାସୁଥାଏ । ପ୍ରଥମ ଚୁମୁକକ ନେଲାବେଳେ ବଡ଼ ଝାମ୍ପୁଡ଼ିଲା ପରି ଲାଗିଲା ; ପ୍ରଥମେ ଜିଭର ସ୍ୱାଦଶକ୍ତି ଟିକଏ ମରିଗଲା—କିନ୍ତୁ ଟିକକ ପରେ, ମଦ୍ୟର ଉଗ୍ର ପ୍ରଭାବ ଟିକଏ ମୁଲାଏମ ହୋଇଗଲା ଓ ଶେଷକୁ ଭାରି ସୁଖ ଲାଗିଲା ।

ମାର୍ଗି ନିର୍ଦ୍ଦେଶ ଦେଲେ, "ଆମକୁ ଆଜି ଗୋଟିଏ ଗୋଟିଏ ଗ୍ଲାସ୍ ପିଇବାକୁ ହେବ । ଏଠାର ଖାଦ୍ୟସାମଗ୍ରୀ ବେଶ୍ ଭଲ, କିନ୍ତୁ ତୁମ ଘରପରି ସେତେ ଭଲ ହୋଇ ନ ପାରେ ।"

ତା'ପରେ ମୁଁ କହିଲି, "ମୁଁ ବମ୍ବେରୁ ଫେରି ଆସୁଛି, ଗୋଟିଏ ପାନାଳୟ ଖୋଲିବ । ସେଥିରେ କେବଳ ହ୍ୱିସ୍କିର ମଦ ପିଇବାକୁ ମିଳିବ । ଏ ଦୋକାନରୁ ମୋର ବହୁତ ଲାଭ ହେବ ବୋଲି ଆଶା ।"

ମିଷ୍ଟର ହାର୍‌ଟଗ୍ ହସିଲେ । ଆଉଥରେ ପକ୍ଷୀଗାଧୁଆ କୁଣ୍ଡି ପରି ସୁନ୍ଦର କୁଣ୍ଡିରେ ମଦ ଆସି ଥୁଆ ହେଲା ; ସେତେବେଳକୁ ପ୍ରଥମ କୁଣ୍ଡିଟି ସାରି ମୁଁ ତା' ଭିତରେ ଥିବା ଲେମ୍ବୁ ଖଣ୍ଡକ ଚୋବାଉଛି ।

ହ୍ୱିସ୍କି ପାନରୁ ପ୍ରଥମ ଚଷକ ପାନ କଲା ପରେ ମିଷ୍ଟର୍ ହାର୍‌ଟଗ୍‌ଙ୍କର ବାକ୍‌ଶକ୍ତି ଆସିଲା । ତାଙ୍କର ସ୍ୱର କ୍ଷୀଣ, ଗଣଗଣିଆ—ଅଭିନେତା, ଗାୟିକା ବା ଲୋକେ ଶୁଣୁ ନ ଥିବା ଜନସର ପ୍ରଚାରକଙ୍କ ସ୍ୱର ଏଇମିତି ହୁଏ । ସ୍ତ୍ରୀଲୋକ ରୋଗଶଯ୍ୟା ପାର୍ଶ୍ୱରେ ଅନୁକୂଳ ସ୍ୱର ଶୁଣା ଯାଇପାରେ ।

ମିଷ୍ଟର୍ ହାର୍‌ଟଗ୍ କହିଲେ, "ମିସେସ୍ ୟାଙ୍ଗ୍-ହାଣ୍ଡ୍‌ଙ୍କଠାରୁ ଶୁଣିଲି, ଆପଣ ଏ ସହରରେ ବେପାର କରନ୍ତି । ବଡ଼ ରମଣୀୟ ସହରଟିଏ—ଏ ପର୍ଯ୍ୟନ୍ତ ଏଠାରେ ଦୁର୍ନୀତି ପଶିନାହିଁ ।"

ମୋ'ର ବ୍ୟବସାୟର ପ୍ରକୃତ ସ୍ୱରୂପଟା କ'ଣ ତାହା ମୁଁ ମିଷ୍ଟର ହାର୍‌ଟଗ୍‌ଙ୍କୁ ବୁଝାଇ ଦେବାକୁ ଯାଉଛି, ଏଇ ସମୟରେ ମାର୍ଗ ମୋତେ ବାଧା ଦେଇ କହିବାକୁ ଆରମ୍ଭ କଲେ :--

"ମିଷ୍ଟର୍ ହ'ଲ ଏ ପଞ୍ଚାୟତ ଅଞ୍ଚଳର ସର୍ବୋପରି ଉପାସ୍ୟମାନ ଶକ୍ତି ।"

"ଓଃ, ସତେ ନା କ'ଣ ? ଆଚ୍ଛା, ମିଷ୍ଟର୍ ହ'ଲ, ଆପଣ କେଉଁ ଲାଇନ୍‌ର ବେପାରରେ ଅଛନ୍ତି ?"

ମାର୍ଗି ଉତ୍ତର ଦେଲେ, "ସବୁଥିରେ ତାଙ୍କର ହାତ । ପ୍ରାୟପ୍ରାୟ ସବୁ ବେପାରରେ । କିନ୍ତୁ ସେ ପ୍ରକାଶ୍ୟରେ କିଛି କରନ୍ତି ନାହିଁ । ବୁଝିଲେ ନା ?"

ମାର୍ଗଙ୍କ ଆଖିରୁ ମଦର ତେଜ ବାହାରୁଥାଏ । ମୁଁ ମେଣ୍ଟଙ୍କ ଆଖିକୁ ଚାହିଁଲି, ତାଙ୍କ ଆଖିରେ ମଧ୍ୟ ମଦ୍ୟ ଆତ୍ମପ୍ରକାଶ କରିବାକୁ ସଦ୍ୟ ଆରମ୍ଭ କରୁଥାଏ । ଏଇଥିରୁ ମୁଁ ଠଉରାଇଲି, ଆମର ସହଭୋଜୀଦ୍ୱୟ, ଆମେ ଆସିବା ପୂର୍ବରୁ, ବୋଧହୁଏ ଦୁଇ ଦୁଇ ପେଗ୍ ପକାଇ ଦେଇଥିଲେ । ମିଷ୍ଟର୍ ହାର୍‌ଟଗ୍ ନ ପିଇ ପାରିଥାନ୍ତି ହୁଏତ, କିନ୍ତୁ ମାର୍ଗି ନିଶ୍ଚୟ ପିଇଥିଲେ ।

ମୁଁ କହିଲି, "ମିସେସ୍ ୟଙ୍ଗ୍ ହାଣ୍ଟ୍ ମୋ ବିଷୟରେ ଯାହା କହିଲେ, ତା' ଶୁଣି ମୁଁ ପ୍ରତିବାଦ କରିବା କ୍ଲେଶରୁ ରକ୍ଷା ପାଇଲି ।"

ମିଷ୍ଟର୍ ହାର୍‌ଟଗ୍‌ଙ୍କୁ ପୁଣି ହସ-ରୋଗ ଧରିଲା । ହସି ହସି ସେ କହିଲେ, "ଆପଣ ଖୁବ୍ ସୁନ୍ଦରୀ ଭାର୍ଯ୍ୟାଟିଏ ପାଇଛନ୍ତି । ଏତିକରେ ତ ଜୀବନ ସଂଗ୍ରାମରେ ଆପଣଙ୍କର ଆଠପଣ ଜିତ୍ !"

ମୁଁ କହିଲି, "ନା, ସେତିକି ତ ମୋ'ର ଷୋ'ଳ ପଣ ।"

ମେଣ୍ଟ କହିଲେ, "ଏଥାନ୍ ! ତୁମ କଥା ଶୁଣି ସେ ଭାବିବେ, ସତରେ ଆମ ଭିତରେ ଲଢ଼େଇ ହୁଏ ।"

"ହଁ, ବାସ୍ତବିକ୍ ହୁଏ ତ ।"—ଏତକ କହି ମୁଁ ମୋ ଗ୍ଲାସ୍‌ରୁ ଅଧେ ଗିଳି ଦେଲି ; ଅନୁଭବ କଲି, ମୋ ଆଖିର ପଛପଟକୁ ଉଷ୍ମା ଉଠି ଆସିଲା । ମୁଁ ଗୋଟିଏ କ୍ଷୁଦ୍ର ଝରକା କାଚର ଶେଷଭାଗରେ ଥିବା ବୋତଲ ପିଣ୍ଡିକୁ ଚାହିଁଥାଏ । ଯାହାର ଉପରେ ବର୍ଣ୍ଣର ଆଲୁଅ ପଡ଼ିଲା ; ବୋତଲ ପିଣ୍ଡିଟି ଆସ୍ତେ ଘୂରିବାକୁ ଲାଗିଲା । ହୁଏତ ମୋର ଆତ୍ମ-ସମ୍ମୋହନ ଅବସ୍ଥା ଆସିଥାଏ ; ସେଇ ଅବସ୍ଥାରେ ବି ମୁଁ ମୋର ନିଜ ସ୍ୱର ଶୁଣି ପାରୁଥାଏ—ଏ ସ୍ୱରକୁ ମୁଁ ମୋ ଭିତରେ ନ ଥାଇ ବାହାରେ

କୌଣସିଠାରେ ଥାଇ ଶୁଣିଲି ପରି ଜଣା ଯାଉଥାଏ । ମୁଁ କହିବାର ଶୁଣୁଥାଏ, "ମିସେସ୍ ମାର୍ଗି ପ୍ରାଚୀ ଦେଶର ଯାଦୁକରୀ; ଆମେ ଯେଉଁ ମାର୍ଟିନି ମଦ ପିଇଲେ ତାହା ପ୍ରକୃତରେ ମଦ ନୁହେଁ, ତାହା ସେହି ଯାଦୁକରୀର ମନ୍ତ୍ରିତ ପାନୀୟ ।" ଝରକାର ଚକ୍‌ଚକ୍ କରୁଥିବା ବୋତଲ ପିଣ୍ଡିଟା ମୋ ଆଖିକୁ ବନ୍ଧୀ କରି ରଖିଥାଏ ।

"ଆଲେ ମା ! ମୁଁ ତ ନିଜକୁ ଓଜ୍‌ମା ବୋଲି ଏଯାଏଁ ଭାବିଥିଲି । ଆପଣ କହୁଛନ୍ତି, ପ୍ରାଚ୍ୟଦେଶର ଯାଦୁକରୀ ବୋଲି । ସେ ତ ଅନିଷ୍ଟକାରିଣୀ ବୋଲି ମୁଁ ଶୁଣିଛୁ ।"

"ସତରେ ତ ସେ ସେଇଆ ।"

"ଆଚ୍ଛା, ସେ ପରା ତରଳ ପାଣି ହୋଇ ଯାଇଥିଲା ?"

ଝରକାର ସେ ବଙ୍କା ଗ୍ଲାସ୍ ଭିତରେ ମୁଁ ଦେଖିଲି, ରାସ୍ତା ଉପରେ ଜଣେ ମଣିଷ ଦୋକାନ ସାମନାରେ ପାର ହୋଇ ଯାଉଛି । ଝରକା କାଚର ବକ୍ରତରେ ସେ ବଡ଼ କଦାକାର ଦିଶୁଥାଏ । କିନ୍ତୁ ମୁଁ ଲକ୍ଷ୍ୟକଲି, ସେ ତା'ମୁଣ୍ଡକୁ ଟିକଏ ବାଁ ପଟକୁ ଢାଳିଥାଏ, ଓ ଠେଙ୍ଗିରେ ନ ଚାଲି ତା' ପାଦର ବାହାର ପଟକୁ ଭରା ଦେଇ ଚାଲୁଥାଏ । ଡାନି ଏଇମିତି ଚାଲେ । ମୁଁ ସେଇଠି ବସି ସେଇ ବୋତଲ ପିଣ୍ଡି ଭିତରେ ଦେଖିଲି, ମୁଁ ଡେଇଁ ପଡ଼ି ସେ ଲୋକ ପଛରେ ଧାଉଁଛି । ଦେଖିଲି, ମୁଁ ଧାଇଁ ଧାଇଁ ଏଲ୍‌ମ୍ ଷ୍ଟ୍ରୀଟ୍‌ର କୁଣ୍ଠମୁଣ୍ଡରେ ଯାଇ ପହଞ୍ଚିଲି; କିନ୍ତୁ ମୁଁ ପହଞ୍ଚିଲା ବେଳକୁ ସେ ଅନ୍ତର୍ଦ୍ଧାନ ହୋଇ ଯାଇଥାଏ—ବୋଧହୁଏ ହିଣ୍ଟସ୍ଙ୍କର ବାଡ଼ପଟ ବଗିଚାରେ ସେ ଉଭେଇ ଗଲା । ମୁଁ ଡାକିଲି, "ଡାନି, ଡାନି, ମୋ ଟଙ୍କା ମୋତେ ଦେଇ ପକା । ଡାନି ଅନୁଗ୍ରହ କରି ମୋ ଟଙ୍କା ଦେଇ ଦେ । ତା'କୁ ଭୁ ନେ ନା ; ସେଥିରେ ବିଷ ମିଶିଛି । ମୁଁ ସେଥିରେ ବିଷ ମିଶାଇ ଦେଇଛି ।"

ଏତିକବେଳେ ମୁଁ ଗୋଟାଏ ହସ ଶୁଣିଲି—ମିଷ୍ଟର୍ ହାର୍ଟଙ୍କ ହସ । ମାର୍ଗି କହିଲେ, "ମୋର ଯଦି ଯାଦୁକରୀ ହେବା ମୁକର, ତେବେ ମୋର ଓଜ୍‌ମା ହେବାକୁ ମନ ।"

ମୁଁ ଗାମୁଛାରେ ମୋ ଆଖିରୁ ଲୁହ ପୋଛି କେଫିସୁଲ୍ ଦେଲି, "ଯାହାକୁ ମୋର ପିଇବାର କଥା, ଏଥିରେ ଆଖି ଧୋଇବାର କଥା ନୁହେଁ । ଆଖି ଧୋଇଲେ ପୋଡ଼ୁଛି ।"

ମେଷ୍ଟ କହିଲେ, "ତୁମର ଆଖି ଯୋଡ଼ିକ ପୁରା ନାଲି ପଡ଼ିଗଲାଣି ।"

ମୁଁ ମୋର ମନକୁ ମୋ'ର ସନ୍ଧ-ଭୋଜୀଙ୍କ ଭିତରେ ନେଇ ରଖି ପାରିଲି ନାହିଁ । କିନ୍ତୁ ମୁଁ ଶୁଣିଲି, ମୁଁ ଗପୁଛି, ଗପ କହୁଛି । ତାହା ଶୁଣି ମୋ ମେଷ୍ଟ ଆନନ୍ଦରେ ଭରପୂର ହୋଇ ହସୁଥିବାର ଶୁଣୁଥାଏ । ତାଙ୍କ ହସ ଶୁଣି ମୁଁ ମନେ କରୁଥାଏ, ବୋଧହୁଏ ମୁଁ ରହସ୍ୟ କଥା କ'ଣ କହୁଛି ଓ ମୋ କଥା ମୋ ଶ୍ରୋତାମାନଙ୍କ ଆନନ୍ଦ-ଦାୟକ ହେଉଛି । କିନ୍ତୁ ଏ ସବୁ ସତ୍ତ୍ୱେ, ମୋ ମନକୁ ଆଣି ମୁଁ ଟେବୁଲ ପାଖେ ପହଞ୍ଚାଇ ପାରୁ ନ ଥାଏ । ମୋ'ର ବିଶ୍ୱାସ, ମାର୍ଗି ମୋ ଅବସ୍ଥା ଜାଣୁଥାଏ । ତା' ମନର ସଂଶୟକୁ ଲୁଚାଇ ରଖି ସେ ଅନବରତ ମୋର ଉପରେ ଆଖି ରଖିଥାଏ । ବଦ୍‌ମାସ୍ ମାଇକିନିଆଁ । ସେ ନିଶ୍ଚୟ ଗୋଟେ ଡାହାଣୀ ।

ଆମକୁ କ'ଣ ଖାଇବାକୁ ଦିଆଗଲା ମୋତେ ଜଣା ନାହିଁ । ମୋ'ର ଗୋଟାଏ ପ୍ରକାର ଧଳାମଦ ଖାଇବାର ମନେ ପଡ଼ୁଛି । ବୋଧହୁଏ ତା ମାଛ ! ଭଙ୍ଗୁର ଗ୍ଲାସ୍‌ଟା ଇଞ୍ଜିନ୍‌ର ପ୍ରୋପେଲର୍ ପରି ଘୂରୁଥିଲା । ବ୍ରାଣ୍ଡି ଖାଇଲା ପରି ମନେ ପଡ଼ୁଛି—ବୋଧହୁଏ କଫି ହୋଇଥିବ । ସେତିକରେ ଭୋଜର ସ୍ମୃତି ଶେଷ ।

ବାହାରକୁ ବାହାରିଲା ବେଳେ—ମେଷ୍ଟ ଓ ମି: ହାର୍‌ଟଗ୍ ଟିକିଏ ଆଗକୁ ଚାଲି ଯାଇଥାନ୍ତି—ମାର୍ଗି ପଚାରିଲେ, "ଆପଣ ଯାଇଥିଲେ କୁଆଡ଼େ ?"

"ତୁମେ କ'ଣ କହୁଛ, ମୁଁ ବୁଝି ପାରୁନାହିଁ ।"

"ମୁଁ କହୁଛି, ତୁମେ କୁଆଡ଼େ ଯାଇଥିଲ ? ତୁମର ଗୋଟିଏ ଅଂଶ ମାତ୍ର ଏ ଟେବୁଲରେ ଥିଲା ।"

"ତୁମେ କ'ଣ ଯାଦୁକରୀ, ଡାହାଣୀ ନୁହେଁ ?"

"ସାବାସ୍, ସଗିରତ୍ତ" ମାର୍ଗି ଉପସଂହାର କଲା ।

ଘରକୁ ଫେରିବା ବାଟରେ ମୁଁ ବଗିଚାମାନଙ୍କର ଗଛ ଗୁଡ଼ିକ ସବୁ ଚଳନ୍ତି ଦେଖିଲି । ମେଷ୍ଟ ମୋ ହାତରେ ଲାଗି ଥା'ନ୍ତି, ତାଙ୍କ ପଦକ୍ଷେପ ଟିକିଏ ଅସ୍ଥିର ଜଣାପାଉଥାଏ । ସେ କହିଲେ, "କେଡ଼େ ମଉଜରେ ସମୟ କଟିଲା ! ଏତେ ମଉଜ ମୋ ଜୀବନରେ ଆଉ କେବେ ହୋଇ ନ ଥିଲା ।"

ମୁଁ କହିଲି, "ହଁ, ଖୁବ୍ ଖୁସିବାସି ହେଲି ।"

"ମାର୍ଗି ଖାଇବାକୁ ଦେବା ବିଷୟରେ ନିଖୁଣ । ଏ ଭୋଜନର ସମକକ୍ଷ ଭୋଜନ ମୁଁ କେମିତି ଦେବି ଜାଣି ପାରୁନାହିଁ ।"

"ଖୁବ୍ ଚାଲିବାର ମହିଳା ମାର୍ଗି ।"

"ଆଉ ତମେ ଯାହା କଲ, ଏଥାନ୍ ! ମୁଁ ଜାଣେ ତମର ରହସିଆ ପ୍ରକୃତି । କିନ୍ତୁ ଆଜି ତ ତୁମେ ମାତ୍ କରି ଦେଲ । ମୂଳରୁ ଶେଷ ଯାଏଁ ତୁମେ ସମସ୍ତଙ୍କୁ ହସାଇ ହସାଇ මାଇଲ ! ମିଷ୍ଟର୍ ହାରଟଗ୍ କହିଲେ, ମିଷ୍ଟର୍ ଲିଲ୍ ବେକର୍‌ଙ୍କ କଥା ଶୁଣି ହସି ହସି ସେ ହାଲିଆ ହୋଇପଡ଼ିଲେ ।"

ଲିଲ ବେକର୍ କଥା ତେବେ ମୁଁ କହିଛି ! କିନ୍ତୁ କୋଉ କଥାଟା ? ଅସଲ କଥାଟା କହି ଦେଇଥିବ ନିଶ୍ଚୟ—"ଓ, ଡାନି, ମୋ ଟଙ୍କାଟା ଦେଇଦେ ଭାଇ ! ଅନୁଗ୍ରହ କରି ଭଲ !"

ମୋ ମେରି କହିଲେ, "ଅଭିନେତାଙ୍କ ଅଭିନୟଠାରୁ ଆଜି ତମ କଥା ହେଲା ବଢ଼ିଆ ।" ଆମ ନିଜ ଦୁଆର ମୁହଁରେ ମୁଁ ତାଙ୍କୁ ଏଡ଼େ ଟାଣରେ କୁଣ୍ଢାଇ ପକାଇଲି ଯେ ସେ କରୁଣ ସ୍ୱରରେ ଚିତ୍କାର କରି ପକାଇଲେ, "ପ୍ରିୟତମ ! ତୁମକୁ ନିଶା ଧରି ଦେଇଛି । ତୁମେ ମତେ କୁଣ୍ଢେଇ ପକେଇଲ ଯେ ଭାରି କାଟିଲା । ପିଲାମାନଙ୍କ ନିଦ ନ ଭାଙ୍ଗୁ ।"

ମୋର ଇଚ୍ଛା ଥିଲା, ମେରିଙ୍କୁ ନିଦ ହେବା ପର୍ଯ୍ୟନ୍ତ ଚକେଇବି । ତା'ପରେ ଚସି ଚାଲିଯିବି ଡାନିର କୁଡ଼ିଆକୁ ; ତା'କୁ ଖୋଜିବି, ତା' ପିଛା ପୁଲିସ୍ ବି ଲଗେଇବି । କିନ୍ତୁ ବିଚାର ଠିକଣା କଲି, ସେସବୁ ବୃଥା । ଡାନି ଚମ୍ପଟ ଦେଇଛି । ମୋତେ ଠିକ୍ ଜଣା ପଡ଼ୁଥାଏ, ସେ ଆଉ ସେ କୁଡ଼ିଆରେ ନାହିଁ । ମୁଁ ଶୋଇବା ଘରର ଅନ୍ଧାରରେ ପଡ଼ିରହି, ମୋ ଜଳଜଳ ଆଖିରେ ଟ୍ରେଟ ଟ୍ରେଟ ନାଲି ଓ ହଳଦିଆ ଦାଗ ସବୁ ପହଁରିବାର ଦେଖିବାରେ ଲାଗିଲି । ମୁଁ ଡାନି ପ୍ରତି କ'ଣ କଲି ବେଶ୍ ଜାଣୁଥାଏ । ମୋ'ର ବିଶ୍ୱାସ, ଡାନି ବି ମୋ କାର୍ଯ୍ୟର ଉଦ୍ଦେଶ୍ୟ ଜାଣିଥିବ । ମୁଁ ଟ୍ରେଟିଆ ଶଶା ଯୋଡ଼ାଙ୍କୁ ବନ୍ଧୁକରେ ଉଡ଼ାଇ ଦେବା କଥା ଭାବିଲି । ହୁଏତ ପ୍ରଥମ ଥରଟା ନୃଶଂସ କାମ କଲେ ମଣିଷର ମନରେ ଆଘାତ

ଲାଗେ । ନିଜର କର୍ମର ଫଳ ଭୋଗିବା ପାଇଁ ତିଆରି ହେବାକୁ ହେବ । ରାଜମାର୍ଗରେ ଯେପରି ବେପାରରେ ସେପରି, ମଣିଷ ନିଜର ସଙ୍ଗୀଙ୍କ ଭିତରେ ପଶି ତାଙ୍କୁ ହାଣିମାରି ଖଣ୍ଡିଆ ଖାବରା କରି ଆଗେଇବ । ନ ହେଲେ, ପର୍ବତ ଉପରେ ରଜା ହୋଇ ବସିବ କିପରି ? ସେଠାରେ ଯାଇ ପହଞ୍ଚି ସାରିବା ପରେ, ସେ ମହତ୍ ହେବ, ଦୟାଳୁ ହେବ ।— କିନ୍ତୁ ପ୍ରଥମେ ଯେନକେନ ପ୍ରକାରେଣ ଲକ୍ଷ୍ୟ ସ୍ଥଳରେ ଯାଇ ପହଞ୍ଚିବା ଦରକାର ।

———

## ଦଶମ ପରିଚ୍ଛେଦ

ହେମିଲ୍‌ଟନ ଉଡ଼ାଜାହାଜ ପଡ଼ିଆ ନିଉ ବେ-ଟାଉନ୍ ସହରଠାରୁ ମୋଟେ ପ୍ରାୟ ୪୦ ମାଇଲ ଦୂର—ଏତକ ବାଟ ଜେଟ୍‌ପ୍ଲେନ୍ ଉଡ଼ି ଆସି-ବାକୁ ମାତ୍ର ପାଞ୍ଚମିନିଟ୍ ଲଗେ । ବେଳକୁ ବେଳ, ଏହି ଭୟାନକ ଜେଟ-ପ୍ଲେନ୍ ଗୁଡ଼ାକ, ଅଧିକରୁ ଅଧିକ ନିୟମିତ ଭାବରେ, ଭେଲା ଭେଲା ହୋଇ ଆମର ମୁଣ୍ଡ ଉପରେ ଉଡ଼ି ଯାଉଛନ୍ତି । ମନ ହେଉଛି, ଏଗୁଡ଼ାକୁ କେମିତି ହେଲେ ଭଲ ବୋଲି ବିଚାରନ୍ତି; ମୋ ପୁଅ ଯ୍ୟାଲେନ୍ ଯାଙ୍କୁ ଯେମିତି ଶ୍ରଦ୍ଧା କରୁଛି, ସେମିତି ହେଲେ ଶ୍ରଦ୍ଧା କରି ପାରନ୍ତି । ହୁଏତ ପାରନ୍ତି, ଯଦି ଏମାନ-ଙ୍କର ଗୋଟିଏ ମାତ୍ର ଉଦ୍ଦେଶ୍ୟ ବ୍ୟତୀତ ଆଉ କିଛି ଉଦ୍ଦେଶ୍ୟ ବା ଆଦର୍ଶ ଥାନ୍ତା । କିନ୍ତୁ ଯାଙ୍କର ଯେ ଏକମାତ୍ର ଉଦ୍ଦେଶ୍ୟ ମଣିଷ ମାରିବା । ମଣିଷମାରି ମୋ'ର ପେଟ ପୂରି ଯାଇଛି । ଆଉ ସେଥିପାଇଁ ସ୍ପୃହା ନାହିଁ । ଏମାନେ ଆସିଲାବେଳେ ଯେଉଁ ଶବ୍ଦ କରୁଛନ୍ତି, ସେ ଶବ୍ଦର ଆଗରୁ ଚାହିଁ, ଯ୍ୟାଲେନ୍ ଏମାନଙ୍କୁ ଆକାଶରେ ଥୟ କରି ଦେଖି ପାରୁଛି; ସେ ବିଦ୍ୟା ମୋ ଦେହାନ୍ତ ହୋଇ ପାରିଲା ନାହିଁ । ସେମାନେ ବୁଁ କରି ଗଜନ ଛାଡ଼ି ଶବ୍ଦର ସୀମା ଅତିକ୍ରମି ଚାଲି ଯାଉଛନ୍ତି – ସେ ଶବ୍ଦ ଶୁଣିଲେ ମୁଁ ତ୍ରସ୍ତ ହୋଇ ବିଚାରେ, ସତେ ଯେପରି ଲୁହା କାରଖାନାର ଅଗ୍ନିଶାଳଟା ଫାଟିଗଲା । ରାତିରେ ସେମାନେ ମୁଣ୍ଡ ଉପରେ ଚାଲିଗଲେ ମୋ ସ୍ୱପ୍ନରେ ସେମାନେ ପଶିଯାନ୍ତି—ମୁଁ ବ୍ୟତିବ୍ୟସ୍ତ ହୋଇ ଉଠିପଡ଼େ । ମୋତେ ଲାଗେ, ସତେ ଯେମିତି ମୋ ଆତ୍ମାରେ ଗୋଟାଏ ଘା ହୋଇ କଟକଟ କରୁଛି ।

ପାହାନ୍ତିଆଟାରେ ସେଥିରୁ ପଂକ୍ତେ ଭଁ ଭଁ କରି ମୁଣ୍ଡ ଉପରେ ଚାଲିଗଲେ ; ମୁଁ ସାମାନ୍ୟ ହୃତ୍‌କମ୍ପ ଅନୁଭବ କରି ଖଟ ଉପରୁ ତଳକୁ ଡେଇଁ ପଡ଼ିଲି । ଏମାନଙ୍କ ଶବ୍ଦରେ ମୁଁ ହୁଏତ ଜର୍ମାନୀର ସର୍ବ-ଉଦ୍ଦେଶ୍ୟ-ସାଧକ ୮୮-ମିଲିମିଟର ରାଇଫଲ୍‌କୁ ସ୍ୱପ୍ନ ଦେଖିଲି । ଏ ରାଇଫଲ୍‌କୁ

ଆମେ ଯୁଦ୍ଧ ବେଳେ ଯେତିକି ତାଚ୍ଛଲ୍ୟ କରିଥିଲୁ ସେତିକି ପ୍ରାଣରେ ଡରୁ-ଥିଲୁଁ ମଧ୍ୟ ।

ଆସନ୍ନ ପ୍ରଭାତ ବେଳାର କ୍ରମବର୍ଦ୍ଧମାନ ଆଲୋକରେ ଖଟରେ ପଡ଼ି ରହି, ଅନିଷ୍ଟସାଧକ କ୍ଷିପ୍ର ସରୁ କଣ୍ଠାକୃତି ଯନ୍ତ୍ରଗୁଡ଼ାକ ଦୂରରେ କ୍ଷୀଣ ଅଥଚ କର୍କଶ ଶବ୍ଦ କରି ଯାଉ ଥିବାର ଶୁଣି, ଭୟରେ ମୋ'ର ରୋମ-ଟାଙ୍କୁର ଉଠୁଥାଏ ଓ ମୋ' ଦେହରୁ ଝାଳ ବୋହି ଯାଉଥାଏ । ମୁଁ ଭାବୁଥାଏ ମୋ'ର ଯେପରି କମ୍ପ ହେଉଛି, ଆଜି ପୃଥିବୀର ସମସ୍ତଙ୍କର ସେହିପରି କମ୍ପ ହେଉଥିବ ।—ଖାଲି ହୃଦୟରେ ନୁହେଁ, ଚମଡ଼ା ତଳେ ଶରୀରର ପ୍ରତି ଅଂଶର ଗଭୀରତମ ପ୍ରଦେଶରେ । ଜେଟ୍‌ର ଶବ୍ଦ ଶୁଣି ନୁହେଁ, ସେମାନଙ୍କ ସୃଷ୍ଟିର ଉଦ୍ଦେଶ୍ୟ କଥା ଚିନ୍ତା କରି ଏ କମ୍ପନ—ଏ ଭୟବିହ୍ୱଳତା ।

ଗୋଟାଏ ସମସ୍ୟା ବା ଅବସ୍ଥା ଯେତେବେଳେ ଅତି ସାଂଘାତିକ ହୋଇଯାଏ, ମଣିଷ ସେଥିରୁ ତ୍ରାହି ପାଏ, ସେ ବିଷୟରେ ଚିନ୍ତା ପରି-ତ୍ୟାଗ କରି । ଆପାତତଃ ଚିନ୍ତା ସିନା ଛାଡ଼ି ଦିଏ, କିନ୍ତୁ ବାସ୍ତବରେ ସେ ଚିନ୍ତା ଅବଚେତନ ମନ ଭିତରେ ପଶି, ଆଗରୁ ସେଠାରେ ଛପି କରି ରହିଥିବା ଅନ୍ୟ ନାନାପ୍ରକାର ଚିନ୍ତା ସାଙ୍ଗେ ଗୋଳେଇ ପୋଳେଇ ହୋଇଯାଏ । ଏ ସମସ୍ତର ମିଶ୍ରଣରୁ ବାହାରେ ଗୋଟାଏ ଅସନ୍ତୋଷ, ସ୍ଥାୟୀ ଅଶାନ୍ତି, ପାପଚିନ୍ତା ; ଓ ସର୍ବନାଶ ହେବା ପୂର୍ବରୁ, କୁଟାଖିଏ ପରି ଗୋଟାଏ କିଛି ଧରି ବଞ୍ଚିଯିବାକୁ ଅବଶ୍ୟଂଭାବୀ ପ୍ରବୃତ୍ତି । ହୁଏତ,ମଣିଷ-ମନର ଜଟିଳ ବୃତ୍ତିଗୁଡ଼ିକର ଅନୁସଂଧାନ କରି ମନକୁ ସ୍ୱଚ୍ଛନ୍ଦ ଗତିରେ ଚଳାଇବା ସକାଶ ଯେଉଁ ମନସ୍ତାତ୍ତ୍ୱିକମାନେ ଲାଗିଛନ୍ତି, ସେମାନେ ବାସ୍ତବରେ କୌଣସି ମାନସିକ ଜଟିଳ ବୃତ୍ତିର ଆବିଷ୍କାର କରୁ ନାହାନ୍ତି ; ବରଂ ଯେଉଁ ଆଣବିକ ଅସ୍ତ୍ର ଫୁଟି ଛତୁ ଆକାରର ମେଘ ସୃଷ୍ଟି କରିବ, ତାହାର ସନ୍ତ୍ରାସ ଓ ଆଶଂକା ଯୋଗୁଁ ମଣିଷର ମନରେ ଯେଉଁ ବିକାର ଜାତ ହୋଇଛି ତାକୁଇ ଦୂର କରିବାକୁ ଏହି ମନସ୍ତାତ୍ତ୍ୱିକମାନେ ଉଦ୍ୟମ କରୁଛନ୍ତି ମାତ୍ର । ମୋତେ ଜଣାପଡ଼ୁଛି, ମୁଁ ଯେତେ ଲୋକଙ୍କୁ ଦେଖୁଛି ସେ ସମସ୍ତେ, ଏହି ସନ୍ତ୍ରାସରେ ବିଚଳିତ ଓ ଅସ୍ଥିର ହୋଇ ପଡ଼ିଛନ୍ତି, ଓ ନୂଆ-ବର୍ଷର ପୂର୍ବ ରାତିରେ ଲୋକେ ମଦ ଖାଇ ମାତାଲ ହେଲା ପରି, ଭବି-ଷ୍ୟତ ଚିନ୍ତା ହରାଇ, ପାଗଳମନର ଆନନ୍ଦରେ ଡେଇଁଛନ୍ତି ବା ଭୁଲି

କଥାରେ ବାଗୃଳ ହୋଇ ପଡ଼ନ୍ତନ୍ତ । ଏହ୍ଵ ଅବସ୍ଥା ଲଗି ରହ୍ଵଲେ, ସମାଜ-ବନ୍ଧନ ଶିଥିଳ ହୋଇଯିବ ଓ ମଣିଷ ପଡ଼ୋଶୀର ସ୍ତ୍ରୀକୁ ଧର୍ଷଣ କର-ବାକୁ ବାହାରବ ।

ମୁଁ ମୋ ସ୍ତ୍ରୀ ଆଡ଼କୁ ମୁହଁ ବୁଲାଇଲି । ସେ ଆଜ୍ଞ ନାଦରେ ହସୁ ନ ଥାନ୍ତ । ତାଙ୍କ ଥୋଡ଼ ତଳକୁ ଓହଳ ପଡ଼ଥାଏ ଓ ଟାଣି ହୋଇ ବନ୍ଦ ହୋଇଥିବା ତାଙ୍କ ଆଖି ଦୁଇଟିର ଗୃର ପଟେ କ୍ଲାନ୍ତର ରେଖା ଦଶୁ-ଥାଏ । ମୁଁ ନର୍ଣ୍ଣୟ କଲ, ସେ ଅସୁସ୍ଥ , କାରଣ, ଅସୁସ୍ଥ ହେଲେହିଁ ତାଙ୍କର ଚେହେରା ଏଇପର ହୁଏ । ଅସୁସ୍ଥ ନ ହେବା ପର୍ଯ୍ୟନ୍ତ ମୋ ଭାର୍ଯ୍ୟା ସଂସା-ରରେ ସମସ୍ତଙ୍କଠାରୁ ଅଧିକ ପ୍ରଫୁଲ୍ଲ । ତାଙ୍କର ଅସ୍ୱାସ୍ଥ୍ୟ ସହଜେ ହୁଏ-ନାହିଁ ; କନ୍ତୁ ହେଲେ ସଂସାରରେ ସମସ୍ତଙ୍କଠାରୁ ସେ ଅଧିକ ମ୍ରିୟମାଣ ଦେଖାଯାନ୍ତ ।

ଶବ୍ଦର ପ୍ରତିବନ୍ଧକ ଭେଦ କର ଆଉ ଯନ୍ତ୍ରଏ ଜେଟ୍‌ବମାନ ଆକାଶ ପଥରେ ଦୌଡ଼ିଲେ । ନଆଁରେ ଅଭ୍ୟସ୍ତ ହେବାକୁ ଆମେ ସମ୍ଭ-ବତଃ ପାଞ୍ଚ ଲକ୍ଷ ବର୍ଷ ପାଇଥାଇଁ ; କନ୍ତୁ ନଆଁଠାରୁ ଆହୁର ଉଦ୍ଦଣ୍ଡ, ଆହୁର ଭୀଷଣ ଏହ ନୂତନ ଆଣବକ ଶକ୍ତିରେ ଅଭ୍ୟସ୍ତ ହେବାକୁ ଏ ପର୍ଯ୍ୟନ୍ତ ମୋଟେ ପନ୍ଦରଟି ବର୍ଷ ମିଳନ୍ତି । ଏହ୍ଵ ଶକ୍ତିକୁ ମାନବସଭ୍ୟତାର ବକାଶରେ ସାଧନରୂପେ ବ୍ୟବହାର କରିବାକୁ ସତେ କ'ଣ ଆମେ ସୁଯୋଗ ପାଇବା ? ଚିନ୍ତାର ନିୟମ ଯଦ୍ଦ କାର୍ଯ୍ୟର ନିୟାମକ ହୋଇଥାଏ, ତେବେ କ'ଣ ଆତ୍ମା ଭିତରେ ବଭାଜନ ପ୍ରକ୍ରିୟା ଗୃଲିଲଣି ? ଆମ ସମସ୍ତଙ୍କ ଭିତରେ, ମୋ ନିଜ ଭିତରେ କ'ଣ ସେଇ ପ୍ରକ୍ରିୟା ଏବେ ଗୃଲିଛି ?

ବହୁ ବର୍ଷ ପୂର୍ବେ ମୋ ଜେଜେନାନ ଡେବୋରା ମୋତେ କହ୍ଵଥିବା ଗୋଟିଏ ଗପ ମନେ ପଡ଼ୁଛି । ବଗତ ଶତାବ୍ଦୀର ଆରମ୍ଭରେ ଆମ ପୂର୍ବ-ପୁରୁଷଙ୍କ ଭିତରୁ କେହ୍ଵ କେହ୍ଵ କ୍ୟାମ୍ପେଲଙ୍କ ମତବାଦ ଗ୍ରହଣ କରିଥିଲେ । ଡେବୋରା ସେତେବେଳେ ପିଲା, କନ୍ତୁ ତାଙ୍କର ମନେଥାଏ, କପର ଏହ୍ଵ କ୍ୟାମ୍ପେଲାଇଟ୍‌ମାନେ ବିଶ୍ୱାସ କର ବସିଲେ ଯେ, ଗୋଟିଏ ନିର୍ଦ୍ଦିଷ୍ଟ ଦନର ନିର୍ଦ୍ଦିଷ୍ଟ ସମୟରେ ସମଗ୍ର ସଂସାରରେ ପ୍ରଳୟ ହେବ । ତାଙ୍କ ପିତାମାତା ଏହ୍ଵ ବିଶ୍ୱାସରେ, ନିର୍ଦ୍ଦିଷ୍ଟ ଦନ ପୂର୍ବରୁ-ନିଜର ସମସ୍ତ ସମ୍ପତ୍ତି ଓ ଜନଷ ପତ୍ର ଦାନ କର ଦେଇ କେବଳ ବଛଣା ଗୃଦର କେତେ ଖଣ୍ଡି ମାତ୍ର

ରଖିଲେ । ନିର୍ଦ୍ଦିଷ୍ଟ ସମୟ ଆସିବା ବେଳକୁ ସେମାନେ ସେଇ ବିଛଣା-ଚାଦର ଖଣ୍ଡେ ଖଣ୍ଡେ ଘୋଡ଼େଇ ହୋଇ ପର୍ବତ ଉପରକୁ ଗଲେ, ପ୍ରଳୟକୁ ସ୍ୱାଗତ କରିବାପାଇଁ । ତାଙ୍କର ପରି ଶହ ଶହ ନରନାରୀ ଆସି ସେଠାରେ ସମବେତ ହୋଇ ଈଶ୍ୱରଙ୍କୁ ଉପାସନା କରୁଥାନ୍ତି ଓ ଧର୍ମସଙ୍ଗୀତ ଗାଉଥାନ୍ତି । ନିର୍ଦ୍ଦିଷ୍ଟ ରାତି ଆସିଲା, ଉପାସନାର ସ୍ୱର ବଢ଼ିଲା, ନୃତ୍ୟ ବି ଚାଲିଲା । ନିର୍ଦ୍ଦିଷ୍ଟ ମୁହୂର୍ତ୍ତ ଆସିଲା ବେଳକୁ ଗୋଟାଏ ଉଲ୍‌କା ପଡ଼ିଲା । ସମସ୍ତେ ଚିତ୍କାର କରି ଉଠିଲେ । ସେ ଚିତ୍କାର ମୋ ଜେଜେମାମାଙ୍କର ମନରେ ଆଜି ହୋଇ ରହିଥାଏ । ସେ କହୁଥିଲେ, ଲୋକେ ଗଧିଆ ପରି, ହେଟା ବାଘପରି ଚିତ୍କାର କଲେ—ଅବଶ୍ୟ ମୋ ପିଉସୀ ଡ଼େବୋଉ ହେଟାବାଘ ତାଙ୍କ ଜୀବନରେ ଦେଖି ନ ଥାନ୍ତି—ତା'ପରେ ଆସିଲା ନିର୍ଦ୍ଦିଷ୍ଟ ମୁହୂର୍ତ୍ତ । ଧଳା ବିଛଣା ଚାଦର ଘୋଡ଼ାଇ ହୋଇଥିବା ପୁରୁଷ, ସ୍ତ୍ରୀ, ବାଳକ ବାଳିକା ନିଃଶ୍ୱାସ ରୋକି ଉତ୍କଣ୍ଠାରେ ଚାହିଁ ରହିଲେ । ମୁହୂର୍ତ୍ତ ଗଡ଼ି ଚାଲିଲା, ପିଲାମାନଙ୍କ ମୁହଁ ଶୀତରେ ନେଳି ପଡ଼ି ଯାଇଥାଏ । ଶେଷରେ ମୁହୂର୍ତ୍ତ ପୂରା ଗଡ଼ିଗଲା ବୋଲି ସମସ୍ତଙ୍କର ପ୍ରତ୍ୟୟ ହେଲା । ତାଙ୍କ ଧ୍ୱଂସର ମୁହୂର୍ତ୍ତ ତାଙ୍କୁ ପ୍ରତାରିତ କରି ଚାଲିଗଲା ବୋଲି ସମସ୍ତେ ଜାଣିଲେ । ଭୋରରେ ସମସ୍ତେ ପର୍ବତରୁ ଓହ୍ଲାଇ ଘରକୁ ଫେରିଲେ, ଓ ଦାନ କରିଦେଇଥିବା ଲୁଗାପଟା, ହାଣ୍ଡି କୁଣ୍ଡେଇ, ବଳଦ ଓ ଗଧ ଫେରି ପାଇବାକୁ ସାଧ୍ୟସାଧନା ଆରମ୍ଭ କଲେ । ମୋର ମନେ ପଡ଼ୁଛି, ସେତେବେଳେ ବସ୍ତୁରିଥିଲି, ଆହା ଶତରେ ଠିକଣା ସମୟରେ ପ୍ରଳୟ ନ ଆସିଲା ବୋଲି କେତେ ନିରାଶ ନ ହୋଇଥିବେ !

ଏ ଜେଟ୍‌ବିମାନ କଥା ଭାବୁ ଭାବୁ ଏ ଗପଟା ମନେ ପଡ଼ିଲା ପୁଣି—କେତେ ଉଦ୍ୟମ ନ ହେଉଛି, କେତେ ସମୟ, କେତେ ଉଦ୍ୟମ ଖର୍ଚ୍ଚ ନହେଉଛି, ଧ୍ୱଂସର ଏହି ଅସ୍ତ୍ରଗୁଡ଼ିକ ଜମାଇ ରଖିବାକୁ ? ଏଗୁଡ଼ିକର କେବେ ଯଦି ବ୍ୟବହାର ନ ହୁଏ ତେବେ ଆମେ, ସେଇ କ୍ୟାମ୍ପେଲାଇଟ୍‌ଙ୍କ ପରି, ପ୍ରତାରିତ ହେଲେ ବୋଲି ମନେ କରିବା କି ? ମହାଶୂନ୍ୟକୁ ରକେଟ ପଠାଇ ପାରିବା, କିନ୍ତୁ ମନ ଭିତରୁ କ୍ରୋଧ ଓ ଅସନ୍ତୋଷ ତ ଦୂର କରି ପାରିବା ନାହିଁ !

ମୋ ମେଷ୍ଟ ଆଖି ମେଲାଇଲେ । ସେ କହିଲେ, "ଏଥାନ୍ ! ତୁମେ ମନକୁ ମନ କଥାବାର୍ତ୍ତା ହେଉଛ ! କେଉଁ ବିଷୟରେ ମୁଁ ଜାଣେ ନାହିଁ ; କିନ୍ତୁ ତୁମ କଥାବାର୍ତ୍ତାର ଶବ୍ଦ ଶୁଣାଯାଉଛି । ଏଥାନ୍ ! ଏଭଳି ଗୁଡ଼ାଏ ଚିନ୍ତା କରିବା ବନ୍ଦ କର ।"

ମୁଁ ବିଗ୍ଭରୁଥିଲି କହିବି, ତୁମେ ମଦ ଖାଇବା ଛାଡ଼ । କିନ୍ତୁ ସେ ଖୁବ୍ ଯନ୍ତ୍ରଣା ଅନୁଭବ କଲା ପରି ଦିଶୁଥାନ୍ତି । କେତେବେଳେ ଥଟ୍ଟା କରିବି, କେତେବେଳେ ନ କରିବି ସେ ସମ୍ପର୍କରେ ଜ୍ଞାନ ମୋ'ର ସବୁବେଳେ ରହେନାହିଁ । ଯାହାହେଉ, ଆଜ ପଗ୍ଭରିଲି, "କ'ଣ ମୁଣ୍ଡରେ ଯନ୍ତ୍ରଣା ହେଉଛି ?"

"ହଁ ।"

"ପେଟରେ ?"

"ହଁ ।"

"ଶରୀର ତମାମ ?"

"ହଁ, ଶରୀର ତମାମ ।"

"ତମ ପାଇଁ କ'ଣ ଆଣିବି ?"

"ମୋ ପାଇଁ ଗୋଟାଏ କବର ଆଣ !"

"ତୁମେ ହଲଚଲ ନ ହୋଇ ଶୁଅ ।"

"ପାରିବି ନାହିଁ । ପିଲମାନଙ୍କୁ ତ ସ୍କୁଲକୁ ପଠାଇବାକୁ ହେବ ।

"ମୁଁ ସେ କଥା ବୁଝିବି ।"

"ତୁମେ ତ ପୁଣି ତୁମ କାମକୁ ଯିବ !"

"ତଥାପି ପିଲଙ୍କ କଥା ମୁଁ ବୁଝି ପାରିବି । ଜବାବ୍ ଦେଉଛି ।"

ମୁହୂର୍ତ୍ତିକ ପରେ ସେ କହିଲେ, "ଏଥାନ୍ ! ମୋତେ ଲାଗୁଛି, ମୁଁ ଉଠି ପାରିବି ନାହିଁ । ଭାରି ଖରାପ ଲାଗୁଛି ।"

"ଡାକ୍ତର ?"

"ନା ।"

"ତୁମକୁ ଏକୁଟିଆ ଛାଡ଼ି ଯାଇ ପାରିବି ନାହିଁ । ଏଲେନ୍ ତୁମ ପାଖରେ ରହିଲେ ହୁଅନ୍ତା ନାଇଁ ?"

"ନା, ତା'ର ପରୀକ୍ଷା ଅଛି ।"

"ଆଚ୍ଛା, ମାର୍ଗି ୟଙ୍ଗ୍-ହାଣ୍ଟ୍‌କୁ ଡ଼ାକିବି କି, ତୁମ ପାଖେ ରହିବାକୁ ?"

"ତାଙ୍କ ଫୋନ୍ ଖରାପ ହୋଇଛି । ସେ ଆଜି ଗୋଟାଏ ନୂଆ ଫୋନ୍ ଆଣିବେ ।"

"ମୁଁ ନିଜେ ଯାଇ ତାଙ୍କୁ ଡାକି ଆଣିବି ?"

"ଏତେ ସକାଳୁ ତାଙ୍କୁ ଯେ ଉଠାଇବ, ତାଙ୍କୁ ସେ ଜୀଅନ୍ତା ଗିଳିଦେବେ ।"

"ତାଙ୍କ ଦୁଆର ସନ୍ଧିରେ ଚିଠି ଖଣ୍ଡେ ଗେଞ୍ଜି ଦେଇ ଆସିବି ?"

"ନା, ତୁମେ ସେଠାକୁ ଯିବା ମୋର ଇଚ୍ଛା ନୁହେଁ ।"

"ତେବେ କ'ଣ କିଛି କରିବା ନାହିଁ ?

"ନା,ନା, ତୁମର କିଛି କରିବା ଦରକାର ନାହିଁ । ତୁମର କିଛି କରିବା ମୋର ଲୋଡ଼ା ନାହିଁ ।"

"କିନ୍ତୁ ମୁଁ ତୁମକୁ ଏକୁଟିଆ ଛାଡ଼ି ଯାଇ ନ ପାରେ ।"

"ସ୍ୱେ କ'ଣ ମ ? ବଡ଼ ବିଚିତ୍ର କଥା, ମୋତେ ଯେ ସୁଖ ଲାଗିଲାଣି । ବୋଧହୁଏ ତୁମକୁ ଗୁଡ଼ାଏ ବକ୍ ବକ୍ ହୋଇ କହିବାରୁ ମୋର ରୋଗ ଛାଡ଼ିଗଲା । ସତେ ମ !" ଏହା କହି, ସତେ ରୋଗ ଛାଡ଼ିଗଲା ବୋଲି ପ୍ରମାଣ କରିବାକୁ ସେ ଶେଯ ଛାଡ଼ିଲେ ଓ ତାଙ୍କ ଗାଉନ୍ ଦେହରେ ଗଳେଇଲେ । ବାସ୍ତବିକ୍ ସେ ଭଲ ହେଲା ପରି ଦିଶୁଥାନ୍ତି ।

"ପ୍ରିୟତମେ ! ତୁମେ ଅଦ୍ଭୁତ ମଣିଷ ।"

ଖିଅର ହେଉ ହେଉ ମୋ ମୁହଁରେ ଖୁର ଲାଗିଗଲା । ରକ୍ତ ସର-ସର ମୁହଁରେ ପାଇଖାନାଘର କାଗଜ ଖଣ୍ଡେ ମାରି ଜଳଖିଆ ଖାଇବାକୁ ଗଲି ।

ଆଜି ମୁଁ ଦୋକାନକୁ ଯିବାବାଟରେ ମର୍ଫି ତାଙ୍କ ଅଳିନ୍ଦରେ ଦାନ୍ତ ଖୁଣ୍ଟି ଖୁଣ୍ଟି ଠିଆ ହୋଇ ନ ଥାନ୍ତି । ଖୁସୀଲାଗିଲା । ଆଜି ତାଙ୍କ ସଙ୍ଗେ ଦେଖା ହେବାକୁ ମୋର ମନ ନ ଥାଏ । ସେ ହୁଏତ ଘରୁ ବାହାରି ମୋ ସଙ୍ଗେ ମିଶିଯାଇ ପାରନ୍ତି ଏହି ଭୟରେ ମୁଁ ଚଞ୍ଚଳ ଚଞ୍ଚଳ ଗୋଡ଼ ଚଳାଇଲି ।

ମୁଁ ଯେତେବେଳେ କବାଟ ଦୁଆର ଫିଟାଇଲି, ଦେଖିଲି, କାଲିର ବ୍ୟାଙ୍କ୍ ପୁଳିନ୍ଦାଟା ଦୁଆର ସନ୍ଧିରେ ଭିତରକୁ ଗେଞ୍ଜା ହୋଇଛି । ତା ମୁହଁରେ ଜଉମୁଦ ଦିଆ ହୋଇଥାଏ । ବ୍ୟାଙ୍କ୍ ପୁଳିନ୍ଦାଗୁଡ଼ାକ ଚେମେଟା । ପକେଟରୁ ଛୁରି ବାହାର କରି ପୁଳିନ୍ଦାଟା ଚିରିବାକୁ ପଡ଼ିଲା ।

ସ୍କୁଲପିଲଙ୍କ ଗୃହଅଣିଆ ଏକ୍‌ସର୍‌ସାଇଜ୍ ଖାତାରୁ ତିନି ଖଣ୍ଡ କାଗଜ ତା' ଭିତରୁ ବାହାରିଲା । ଗୋଟାଏ ଉଇଲ୍ : "ମୁଁ ସୁସ୍ଥିରଚିତ୍ତରେ··· ଏବଂ ଏଇ ସବୁ କାରଣରୁ ମୁଁ······ ।" ଦ୍ୱିତୀୟଟା, ହ୍ୟାଣ୍ଡ୍‌ନୋଟ୍ : ମୁଁ ଜବାବ୍ କରୁଛି ଯେ ମୁଁ ପରିଶୋଧ କରିବି ଏବଂ ମୋ···ବନ୍ଧକ ସୂତ୍ରେ··· । "ଦୁଇଖଣ୍ଡିଯାକ କାଗଜରେ ଦସ୍ତଖତ, ଲେଖା ପରିଷ୍କାର ଓ ଠିକଣା । ତୃତୀୟ ଖଣ୍ଡରେ ! "ପ୍ରିୟ ଏଥ୍ ! ଏଇଆଡୋ'ର ଦରକାର ।"

ମୋ ମୁହଁର ଚମଡ଼ା କଙ୍କଡ଼ା ପିଠିର ଖୋଲ ପରି ଟାଣ ଲାଗିଲା । ଭୂଇଁତଳ ଭଣ୍ଡାର ଘରର ଦୁଆର ବନ୍ଦ କଲା ପରି, ଆସ୍ତେ ଆସ୍ତେ କାନ୍ଥ ଦୁଆରଟି ବନ୍ଦ କଲି । ପ୍ରଥମ କାଗଜ ଦୁଇ ଖଣ୍ଡି ସଯତ୍ନେ ଚଉତି ମୋ ପଇସାମୁଣିରେ ରଖିଲି । ଆଉ ଖଣ୍ଡକ—ମୋଡ଼ି ମୋଚି କରି ଫ୍ଲସ୍ ପାଇଖାନାରେ ପକାଇ ଦେଇ, ଝିଞ୍ଜିର ଟାଣି ଦେଲି । ଆମ ଫ୍ଲସ୍ ପାଇଖାନାଟା ଗୋଟାଏ ଉଚା କମୋଡ଼ ପରି । ଭିତରେ ଗୋଟାଏ ପାହାଞ୍ଚ ପରି ଖଣ୍ଡେ ବାହାରିଛି । କାଗଜଟା ତା'କୁ ପାରି ହୋଇ ସହଜେ ନଳାକୁ ଗଲା ନାହିଁ । ଯାହାହେଉ, ଶେଷରେ ଗଲା ।

ମୁଁ ପାଇଖାନା ଘରୁ ବାହାରିଲା ବେଳକୁ କାନ୍ଥ ଦୁଆର ଟିକିଏ ମେଲା ହୋଇଥାଏ । ମୋର ମନେ ପଡ଼ିଲା, ମୁଁ ତାକୁ ବନ୍ଦ କରିଥିଲି । ଦୁଆର ପାଖକୁ ଯାଉ ଯାଉ ଶୁଣିଲି ଗୋଟାଏ ଗ୍ଲୋଟ ଶବ୍ଦ; ଉପରକୁ ଚାହିଁଲି ବେଳକୁ, ସେଇ ବଦମାସ୍ ବିରାଡ଼ିଟା ଥାକରୁ ଓହ୍ଲାଇଥିବା ଖଣ୍ଡେ ଘୁଷୁରିମାଂସକୁ ତା' ପଂଝାରେ ଟାଣୁଛି । ଲମ୍ବାହାତବାଲା ଗୋଟାଏ ଘୁଞ୍ଚୁଣି ଧରି ମିଶିଯିବାରୁ ସେ କାନ୍ଥକୁ ପଳାଇଲା । ମୋ ପାଖ ଦେଇ ସେ ଖସିଗଲା ବେଳକୁ, ମୁଁ ଘୁଞ୍ଚୁଣି ବେଣ୍ଟରେ ତାକୁ ପାହାରେ କଷିଲି । ଲକ୍ଷ୍ୟ ଭ୍ରଷ୍ଟ ହେଲା, ଓ ଦୁଆରର କଳଣିରେ ଘୁଞ୍ଚୁଣି ବେଣ୍ଟ ବାଜି ଦଗଡ଼ ହୋଇଗଲା ।

ସେ ଦିନ ସକାଳେ ଆଉ ଉବାରେ ଥିବା ଜନ୍ମସାରଙ୍କୁ ଧର୍ମ-ଉପଦେଶ ଦିଆହେବା ହେଲା ନାହିଁ । ଉପଦେଶ ପାଇଁ ମୁଁ ବିଷୟବସ୍ତୁ ଠିକଣା କରି ପାରିଲି ନାହିଁ । କିନ୍ତୁ ଗୋଟାଏ ହୋସ୍ ପାଇପ୍ ବାହାର କରି ଦାଣ୍ଡ ଦୁଆରେ ରାସ୍ତା ଓ ନର୍ଦ୍ଦମା ବି ଭଲ କରି ଧୋଇ ଦେଲି । ପରେ ସମସ୍ତ ଷ୍ଟୋଭ୍‌କୁ ଭଲ କରି ଓଳିଆ ପୋଛିଆ କଲି; ଅନେକ ଦିନ

ହେଲା ଗ୍ରୁଅଣ୍ଟି ନ ବାଜଥିବା ଅନ୍ଧକାର ବି ସହ୍ୟ ସୁନ୍ଦର ହେଲା । ଗୀତ ମଧ୍ୟ ଗାଇଲା—

"ସ୍ୱର୍କର ଅର୍କ କରେ ଦୁର୍ଗନ୍ଧ ଦୁର୍ଦ୍ଦିନ
ହୋଇଅଛି ଦୂର ଆଜ
ଉଜ୍ଜ୍ୱଳ ସୂର୍ଯ୍ୟକରଣ-ଅର୍ଘ୍ୟ ଧର
ଆସିଛି ବସନ୍ତ ଜୀବନେ ମୋହର ।"

ଏହା ସଂଗୀତ ନହେଲେ ବି, ସଂଗୀତ ପରି ଗାଇଲା ।

— — —

# ଦ୍ୱିତୀୟ ଭାଗ

## ଏକାଦଶ ପରିଚ୍ଛେଦ

ନାଉ-ବେ'ଟାଉନ୍ ବଡ଼ ସୁନ୍ଦର ଜାଗା । ଏହାର ବନ୍ଦର ଦିନେ ଖୁବ୍ ପ୍ରସିଦ୍ଧି ଲାଭ କରିଥିଲା । ଉପକୂଳରୁ ଅଳ୍ପ ଦୂରରେ ସମୁଦ୍ର ଭିତରେ ଥିବା ଗୋଟିଏ ଦ୍ୱୀପ ଆଡ଼ ହୋଇ ରହିଥିବାରୁ ଉତ୍ତର-ପୂର୍ବର ପ୍ରବଳ ତୋଫାନରୁ ଏ ଦ୍ୱୀପ, ବନ୍ଦରଟିକୁ ରକ୍ଷା କରେ । କ୍ଷୁଦ୍ର ସହରଟି ଭିତରେ ସମୁଦ୍ରରୁ ଗୁଡ଼ିଏ ପାଣିନାଳ ପଶିଛି; ସମୁଦ୍ର ଜୁଆର ଏଇ ନାଳଗୁଡ଼ିକୁ ଜଳ ଯୋଗାଇ ଶ୍ରେଷ୍ଠ ଶ୍ରେଷ୍ଠ ତଣ୍ଡି ପାଇଁ ଏଗୁଡ଼ିକ ସୁନାବ୍ୟ କରେ । ଜୁଆର ବେଳେ ଖୁବ୍ ଜୋରରେ ଏ ନାଳଗୁଡ଼ିକ ଭିତରେ ପାଣି ପଶେ ଓ ଭଟ୍ଟାବେଳେ ସେହିପରି ଜୋରରେ ପାଣି ଖଲାସ ହୁଏ; ତେଣୁ ଜୁଆର-ବେଳେ ତଣ୍ଡିମାନ ସହର ଭିତରେ ପଶିବାକୁ ଯେପରି ସହଜ ହୁଏ, ଭଟ୍ଟାବେଳେ ସେଗୁଡ଼ିକ ସହର ଭିତରୁ ବାହାରି ସମୁଦ୍ରରେ ପଶିବାକୁ ସେହିପରି ସହଜ ହୁଏ । ଏ ସହରରେ ସହରର ଦୁର୍ଗନ୍ଧ ପଶିନାହିଁ କି ବିଶେଷ ଜନ ଗହଳ ମଧ୍ୟ ନାହିଁ । ଅଣ୍ଟାଦଶ ଶତାବ୍ଦୀ-ଶିକାରୀ ଜାହାଜ-ମାଲିକଙ୍କର କେତୋଟା ପୁରୁଣା ବଡ଼ କୋଠା ଛାଡ଼ି ଦେଲେ, ବାକି ଘରଗୁଡ଼ିକ ସୁନ୍ଦର ଓ ଶ୍ରେଷ୍ଠ ଶ୍ରେଷ୍ଠ । ବହୁକାଳର ପ୍ରକାଣ୍ଡ ବୃକ୍ଷମାନଙ୍କ ଭିତରେ ଏ ଘରଗୁଡ଼ିକ ବଞ୍ଚିତ ହୋଇ ରହିଛି । ଗଛ ଭିତରେ କେତେକ ମ୍ୟାପଲ୍, ଏଲ୍ମ୍, ବିକର ଓ ସାଇପ୍ରେସ୍ ଗଛ ଥିଲେହେଁ, ବେଶୀ ଭାଗ ଓକ୍ ଗଛ—ବିଭିନ୍ନ ପ୍ରକାରର ବହୁତ ଓକ୍ ଗଛ ଏ ସହର ତମାମ ରହିଛି । ପ୍ରଥମରୁ ଯେଉଁ ରାସ୍ତାଗୁଡ଼ିକ ଅଛି ତା'ର ଦୁଇ ଧାରରେ ଏଲ୍ମ୍ ଗଛ ଅଣାଯାଇ ପୋତା ହୋଇଥିଲା । ଏ ସ୍ଥାନର ସହଜାତ ଗଛ, ପ୍ରଧାନତଃ ଓକ୍ । ପୂର୍ବେ ଏ ସହରର ପାଖଆଖରେ ଏତେ ପ୍ରକାଣ୍ଡ

ଓକ୍ ଗଛ ପୂର୍ଣ ରହିଥିଲା ଯେ, ତାକୁଇ କାଟି ଜାହାଜର ପଟା, ତଳ ଓ ତା'ଉପରର ଖଣ୍ଡ ପାଇଁ ଆମ ପୂର୍ବପୁରୁଷଙ୍କୁ ଦୂରକୁ ଯିବାକୁ ଭାବ ଦେବାକୁ ପଡୁ ନଥିଲା ।

ବ୍ୟକ୍ତିର ଜୀବନରେ ଯେପରି, ଗୋଷ୍ଠୀର ଜୀବନରେ ସେହିପରି ଉତ୍ଥାନ ପତନ ଚାଲିଥାଏ—ଗୋଷ୍ଠୀ ଜୀବନରେ ପୂର୍ଣ୍ଣସ୍ୱାସ୍ଥ୍ୟର ସମୟ ଥାଏ, ରୋଗ ବୈରାଗ୍ୟର ବି ସମୟ ଥାଏ; ବ୍ୟକ୍ତି ଜୀବନ ପରି ଗୋଷ୍ଠୀ ଜୀବନର ଯୌବନ ଥାଏ, ବାର୍ଦ୍ଧକ୍ୟ ଥାଏ—କେଉଁ ବେଳରେ ଗୋଷ୍ଠୀ ବା ସମାଜ ଆଶାରେ ଉତ୍ଫୁଲ୍ଲ ହୁଏ ତ, ଆଉ କେଉଁ ସମୟରେ ନୈରାଶ୍ୟରେ ଦଗ୍ଧ ହୋଇଯାଏ । ସମୟ ଥିଲା, ଯେତେବେଳେ ନିଉ-ବେ'ଟାଉନ୍ ପରି ମୁଷ୍ଟିମେୟ ବନ୍ଦର କେତୋଟି ସମଗ୍ର ପଶ୍ଚାତ୍ୟ ଭୂଖଣ୍ଡକୁ ଆଲୋକିତ କରିବା ପାଇଁ ତିମିତେଲ ଯୋଗାଉଥିଲେ । ସୁଦୂର ଆମେରିକାର ଏହି ବନ୍ଦରମାନଙ୍କରୁ ତିମି-ତେଲ ଯାଇ, ଅକ୍ସ୍‌ଫୋର୍ଡ୍ ଓ କ୍ୟାମ୍ବ୍ରିଜର ଶିକ୍ଷାର୍ଥୀମାନଙ୍କର ଶିକ୍ଷା-ପ୍ରଦୀପ ଜଳୁଥିଲା । କାଳକ୍ରମେ ପେନ୍‌ସିଲ୍-ଭାନିଆର ଭୂଗର୍ଭରୁ ମାଟିର ତେଲ, ପେଟ୍ରୋଲିଅମ୍ ଓ ଶସ୍ତା କିରାସିନି ବାହାରି ତିମି-ତେଲର ଅଧିକାର ବାଜ୍ୟାପ୍ତ କରି ଦେଲା ; ସମୁଦ୍ରର ଶିକାରୀମାନେ ବୃତ୍ତି ହରାଇ ଘରେ ବସିଲେ । ନିଉ-ବେ-ଟାଉନ୍ ସହରର ଦୁଃଖର ଦିନ, ନୈରାଶ୍ୟର ଦିନ, ରୋଗର ଦିନ ଆସି ପହଞ୍ଚିଲା । ଅଳ୍ପ ଦୂରରେ ଅନ୍ୟ ସହରମାନେ ନୂଆ ନୂଆ ଫନ୍ଦା ଓ ସାମଗ୍ରୀର କାର-ବାରରେ, ନୂଆ ଉତ୍ସାହରେ, ମାତି ବଢ଼ିବାରେ ଲାଗିଲେ ; ସମ୍ପତ୍ତି ଅର୍ଜିଲେ । କିନ୍ତୁ ବେ-ଟାଉନ୍ ନୈରାଶ୍ୟର ଜଡ଼ତାରେ ଅବଶ ହୋଇ ପଡ଼ିଲା । ଏହାର ଆଶା ଆକାଂକ୍ଷାର ଉତ୍ସ, ଏକମାତ୍ର ଜୀବନୀ ଶକ୍ତି ଥିଲା, ଚଉଖୁଣ୍ଟିଆ ପାଲଟଣା ଜାହାଜ ଓ ତିମି-ତେଲରେ । ନିଉପୂର୍ବରୁ ନୂତନ ଆଶା, ଆକାଂକ୍ଷା ଧରି ସଗର୍ବରୂପ ପରି ସୁରୁ ସୁରୁ ହୋଇ ବାହାରି ଆସୁଥିବା ଜନତା, ନିଉ-ବେ'ଟାଉନଠାରେ ନ ଅଟକି ବାଟ ଭାଙ୍ଗି ପଶ୍ଚିମ ଅଭିମୁଖରେ ଚାଲିଲେ; ନିଉ-ବେ'ଟାଉନ୍‌ର ଅତୀତକୁ ଧୋଇ ଶୁଖେଇ ଭୋଗ କରିବାକୁ ଏକୁଟିଆ ହୋଇ ପଡ଼ି ରହିଲେ, ଏ ସହରର ପୁରୁଣା ଅଧିବାସୀ । ଏପରି ସ୍ଥଳେ ସାଧାରଣତଃ ଯାହା ହୁଏ ସେଇଆ ହେଲା । ସେମାନେ ମନକୁ ପ୍ରବୋଧ ଦେଇ ବସିଲେ ଯେ, ଯାହା ହୋଇଛି, ଠିକ୍

ହୋଇଛି ; ନୂଆଯୁଗର ନୂଆ ଶକ୍ତିର ବାହାରେ ରହିବା ତାଙ୍କ ପକ୍ଷରେ ମଙ୍ଗଳକର ହୋଇଛି ; ଶଗଡ଼ିରେ ଗୁଡ଼ାଏ ପର୍ଯ୍ୟଟକଙ୍କ ଗହଳ ଓ ଗୁଗୋଳରୁ ସେମାନେ ରକ୍ଷା ପାଇଛନ୍ତି; ଆଖିକୁ ଝାପ୍‌ସା କରି ପକାଉଥିବା ନିଅନ୍ ଲାଇଟ୍‌ରୁ ସେମାନେ ଉଦ୍ଧାର ପାଇଛନ୍ତି ; ଖଗଡ଼ିରେ ପର୍ଯ୍ୟଟକ ଆସିଥାନ୍ତେ, ସେମାନଙ୍କଠାରୁ ଟଙ୍କା ମିଳିଥାନ୍ତା, ସେମାନଙ୍କଠାରୁ ଗୁଡ଼ାଏ ଟଙ୍କା ମିଳିଥିଲେ ତା'କୁ ନାନା ପ୍ରକାର ବିଳାସରେ ଖର୍ଚ୍ଚ କରିବାକୁ ପଡ଼ିଥାନ୍ତା, ସେ ଜଞ୍ଜାଳରୁ ରକ୍ଷା ମିଳିଛି ; ସେମାନଙ୍କ ହଟ୍ଟଗୋଳରୁ ବି ରକ୍ଷା ମିଳିଛି ; ସହର ଭିତରର ରମଣୀୟ ନାଳମାନଙ୍କ କୂଳରେ ଖୁବ୍ ଅଳ୍ପ ଘର ହେବାରୁ ପ୍ରାକୃତିକ ସୌନ୍ଦର୍ଯ୍ୟ ଅକ୍ଷୁଣ୍ଣ ରହିଛି । ଏଇଭଳି ବିଚ୍ଚାର ନିଉ-ବେ'ଟାଉନ୍‌ର ଲୋକେ ମନକୁ ଆଶ୍ୱାସନା ଦିଅନ୍ତି । ତାଙ୍କ ଦ୍ୱାରପଟେ ଜନତା ସାପ ପରି ଡେଇଁ ମାରୁଥାଏ; ସମସ୍ତେ ଜାଣୁଥାନ୍ତି ଦିନେ ନା' ଦିନେ, ଜନ-ସର୍ପର କୁଣ୍ଡଳ ଭିତରେ ନିଉ-ବେ'ଟାଉନ୍ ବି ଚାପି ହୋଇଯିବ । ଏହା ହେଉ ବୋଲି ଆମ ସହରର ଲୋକଙ୍କ ମନ ଭିତରେ ଆକାଂକ୍ଷା ଲୁକ୍‌କାୟିତ ହୋଇ ରହିଥିବା ସତ୍ତ୍ୱେ, କାଳେ ଏପରି ହୋଇଯିବ ବୋଲି ଡରୁଥିବା ପରି ମନେ ଜଣାପଡ଼ୁଥାଏ । ଘରପାଖେ ଯେଉଁ ନୂଆ ସହର ସବୁ ଗଢ଼ି ଉଠୁଥାଏ ସେମାନଙ୍କର ସମୃଦ୍ଧି ବଢ଼ୁଥାଏ, ପର୍ଯ୍ୟଟକଙ୍କ ଟଙ୍କା ସେ ସବୁରେ ଉଚ୍ଛୁଳି ପଡ଼ୁଥାଏ; ନୂଆ କରି ଧନ ଅର୍ଜୁଥିବା ଲୋକଙ୍କର ନୂଆ ନୂଆ ପ୍ରାସାଦରେ ସେ ସହର ସବୁ ଝଲସି ଉଠୁଥାଏ । କିନ୍ତୁ ପୁରୁଣା ନିଉ-ବେ'ଟାଉନ୍ ସହର ପୂର୍ବ ସଂସ୍କୃତିରେ ବୁଡ଼ି ରହି, ପୂର୍ବର କଳାକୌଶଳ ସୃଷ୍ଟି କରିବାରେ ଲାଗିଥାଏ । ନିଜର ମାଟି ବାସନ, କୁସନ ତିଆରି, ପ୍ୟାନ୍‌ସି ଫୁଲର ଉତ୍ପାଦନରେ ମାତିଥାଏ; ଏହାର ଅବଶିଷ୍ଟ ପୁରୁଣା କଳାକାରମାନେ ହାତବୁଣା ଲୁଗା ଓ ଶ୍ରେଷ୍ଠ ଶ୍ରେଷ୍ଠ ଘରକରଣା ଜିନିଷର ତିଆରିରେ ଲାଗିଥାନ୍ତି । ନିଉ-ବେ'ଟାଉନ୍‌ର ଅଧିବାସୀ ନିଜର ପୂର୍ବ ଗୌରବ ବିଷୟରେ କଥାବାର୍ତ୍ତାରେ ସନ୍ତୋଷ ଅନୁଭବ କରୁଥାନ୍ତି ; ଫ୍ଲାଉଣ୍ଡର୍ ମାଛ କଥା ପକାଇଥାନ୍ତି ଓ କୁଣ୍ଡଳୀମାଛ କେବେ ଜାଲରେ ପଡ଼ିବ କଳ୍ପନା କରିବାରେ ଲାଗିଥାନ୍ତି ।

ସହର ଭିତର ନାଳକୂଳର ନଳବଣମାନଙ୍କରେ ପୂର୍ବପରି ହଂସବଗ ବସା ବାନ୍ଧନ୍ତି ଓ ଯଥାସମୟରେ ସେମାନଙ୍କ ଛୁଆ ଡିମ୍ବ ଫୁଟାଇ

ନାଳ ପାଣିରେ, ଗ୍ଲେଟ ଗ୍ଲେଟ ଭେଳା ମେଳ ବାନ୍ଧ ଭାସିଲାପରି ଭାସନ୍ତି; ନାଳକୂଳରେ ଗାତ ଖୋଳି ଜଳୁଆ ମୂଷା ବଂଶବୃଦ୍ଧି କରୁଥାନ୍ତି; ବଡ଼ସକାଳୁ ସେମାନେ ସର୍ବକ୍ଷଣ ଅବଲୀଳାକ୍ରମେ ପାଣିରେ ପହଁରି ଖେଳୁଥିବାର ଦେଖିଯାଉଥାଏ । ମାଛରଙ୍କା ପାଣି ଉପରେ ଉଡ଼ି ଉଡ଼ି, ମାଛଙ୍କୁ ଲକ୍ଷ କରି ଝାମ୍ପ ମାରୁଥାନ୍ତି । ପାଣି-ଚଢ଼େଇ ନାଳ ଓ ସମୁଦ୍ରକୂଳରୁ କଙ୍କଡ଼ା ଓ ଶାମୁକା ଧରି ଉପରକୁ ଉଡ଼ିଯାଇ, ସେ ସବୁ ଉପରୁ ତଳକୁ ଗୁଡ଼ ଦେଉଥାନ୍ତି—ତଳେ ପଡ଼ି ଶାମୁକା ପ୍ରଭୃତିର ଖୋଳ ଭାଙ୍ଗିଗଲେ, ପୁଣି ତଳକୁ ଆସି ତା'କୁ ଖାଉଥାନ୍ତି । ଅଦ୍ୟାପି ଓଧଗୁଡ଼ାଏ ବି ଅଛନ୍ତି; ସେମାନଙ୍କ ଲୋମାବୃତ ଶରୀର ଅଦ୍ୟାପି ଟୁବ୍ ଟୁବ୍ ହୋଇ ପାଣିରେ ବୁଡ଼ି, ପାଣି ସଙ୍ଗେ ଗୁପ୍ତ ଆଳାପ କଲା ପରି ଦିଶୁଥାଏ । ଅଦ୍ୟାପି ଶଶା ବାଡ଼ି, ବଗିଚାରେ ପଶି ଶାକସବ୍‌ଜି ଲୁଟି କରୁଥାନ୍ତି ଓ ଗୁଣ୍ଡୁଚିମୂଷା ଦଳ-ଦଳ ହୋଇ ଅଦ୍ୟାପି ରାସ୍ତା ଦଖଲ କରି ରହିଥାନ୍ତି । ବଣ-କୁକୁଡ଼ାଙ୍କ ଫଡ଼ ଫଡ଼ ଶବ୍ଦ ଓ କାସିଲା ପରି ଡାକ ଅଦ୍ୟାପି ଲୋପ ପାଇନାହିଁ; କଳା ଗେଣ୍ଡାଳିଆ ଅଗଧୀର ଜଳରେ ତାଙ୍କ ଡେଙ୍ଗା ଡେଙ୍ଗା ଗୋଡ଼ରେ ବୁଲି, ଖଣ୍ଡାପରି ତାଙ୍କ ଥଣ୍ଟରେ ଜଳଜନ୍ତୁଙ୍କ ବଂଶ ନାଶ କରିବାରେ ଲାଗିଛନ୍ତି; ରାତିରେ ଝିଙ୍କାରୀ ସାଙ୍ଗଛଡ଼ା ଭୂତ ପରି ଅଦ୍ୟାପି ବିଳାପ କରୁଛନ୍ତି ।

ନିଉ-ବେ'ଟାଉନ୍‌ରେ ବସନ୍ତଋତୁ ବିଳମ୍ବରେ ହୁଏ, ଗ୍ରୀଷ୍ମ ବି ବିଳମ୍ବରେ ଆସେ । କିନ୍ତୁ ଶେଷରେ ଯେତେବେଳେ ଆସେ, ସେତେ-ବେଳେ ତା'ର ମୃଦୁ ସ୍ପର୍ଶ, ସୁଗନ୍ଧ ଓ ରମଣୀୟ ଅନୁଭୂତି ବେଶ୍ ବାରି-ହୁଏ; ତା'ର ସ୍ୱତନ୍ତ୍ର ଅଭିନବ ଶବ୍ଦ ସ୍ପଷ୍ଟ କାନରେ ବାଜେ । ଜୁନ୍ ମାସ ଆରମ୍ଭ ହେବା ମାତ୍ରେ ନୂଆଁ ପତ୍ର, ଫୁଲକଢ଼ି ଓ ଫୁଲର ସମ୍ଭାର ଭରିଯାଏ। ପ୍ରତି ଗୋଧୂଳି ସମୟ, ନୂଆ ନୂଆ ରୂପରେ ରଞ୍ଜିତ ହୋଇ ଉଠେ । ସନ୍ଧ୍ୟା ହେଲାମାତ୍ରେ ବବ୍-ହ୍ୱାଇଟ୍ ପକ୍ଷୀ କୋମଳ ସ୍ୱରରେ ନିଜର ପରିଚୟ ଶୁଣାଇ ଦିଅନ୍ତି, ଓ ରାତିରେ ହୁଁ-ହାଁ ପକ୍ଷୀଙ୍କର ହୁଁ-କାର ଶୁଭେ । ଓକ୍ ଗଛ ପତ୍ରଭାରରେ ଭାରାକ୍ରାନ୍ତ ହୋଇ ପଡ଼ନ୍ତି ଓ ସେମାନଙ୍କ ଲମ୍ବ-ଡେମ୍ଫବାଲା ଫୁଲରେ ଭୂମିକୁ ଆଚ୍ଛାଦିତ କରି ପକାନ୍ତି । ଖରାଦିନ ହେଲେ ବିଭିନ୍ନ ଘରର କୁକୁରମାନେ ଏକାଠି ହୋଇ ମେଳା ମଉଚ୍ଛବରେ ବାହାରି ପଡ଼ନ୍ତି ଓ ଅଟବୀରେ ବଣରେ ବୁଲିବାକୁ ବାହାରନ୍ତି; ବେଳେ

ବେଳେ କେତେ ଧନ ଲଗାଏନ୍ତି ଘରବାଡ଼ି ଫେରିବାକୁ ବି ପାସୋରି ଦିଅନ୍ତି ।

ଜୁନ୍ ମାସ ହେଲେ, ମଣିଷ ଶରୀରରୁ ପ୍ରବୃତ୍ତିର ତାଡ଼ନାରେ ଘାସକାଟି ଭୂଇଁ ସଫାକରେ ଓ ମଞ୍ଜି ପୋତି ଭୂଇଁକୁ ଲୁଟି କରିବାକୁ ବସେ । ଚୁଚୁନ୍ଦ୍ରା, ଠେକୁଆ, ପିମ୍ପୁଡ଼ି, ପୋକ, ପକ୍ଷୀ ପ୍ରଭୃତି ଯେଉଁ ତସ୍କରମାନେ ତା' ବଗିଚାରୁ ତା'ର ସ୍ୱତ୍ୱ ଛଡ଼ାଇ ନେବାକୁ ବସନ୍ତି, ସେମାନଙ୍କ ସଙ୍ଗେ ମଣିଷର ଆରମ୍ଭ ହୋଇଯାଏ ହାତାହାତି ଲଢ଼େଇ । ମାଇପେ ଗୋଲାପ ଫୁଲର ମୋଡ଼ ମୋଡ଼ ହୋଇଥିବା ପାଖୁଡ଼ାକୁ ଶୁଙ୍ଘି ଟିକିଏ ତରଳିଯାଇ ନିଃଶ୍ୱାସ ମାରନ୍ତି; ତାଙ୍କ ଶରୀରକୁ ଗୋଲାପ ପାଖୁଡ଼ାରୁ ଅଂଶ ଭାସିଆସେ ଓ ଆଖିରେ ଗୋଲାପ-କେଶରର ପରାଗ ବୋଳି ହୋଇଯାଏ ।

ଜୁନ୍ ମାସଟା ଆମୋଦର ସମୟ—ଦିନଟିମାନ ବେଶ୍ ଶୀତଳ, ସୁଖକର । ସୁନ୍ଦର ଓ କୁତ୍ସିତ, ଗଠନକାରୀ ଓ ଧ୍ୱଂସକାରୀ ଉଭୟଙ୍କର ବଂଶ-ବୃଦ୍ଧି ଓ ଅଭିବୃଦ୍ଧିରେ ଏ ସମୟଟା ମୁଖର ହୋଇଉଠେ । ନବଯୁବତୀମାନେ ଏ ସମୟରେ ଦେହରେ ଚପି ହୋଇ ରହିଥିବା କୁରୁତା ପିନ୍ଧି ହାତ ଧରା-ଧରି ହୋଇ ହାଇଷ୍ଟ୍ରୀଟ୍‌ରେ ପଇଁତରା ମାରନ୍ତି; ତାଙ୍କ କାନ୍ଧରେ ଟ୍ରାନ୍‌ଜିଷ୍ଟର୍ ରେଡ଼ିଓ ଯନ୍ତ୍ରମାନେ ବସି, କାନରେ ପ୍ରେମସଙ୍ଗୀତ ଗୁଣୁଗୁଣୁକରି ଶୁଣାଇ-ବାରେ ଲାଗିଥାନ୍ତି । ମଦନ-ମସ୍ତ ନବ-ଯୁବକମାନେ ଟ୍ୟାଗଂର୍‌ଙ୍କ ଔଷଧ-ଦୋକାନର ବାରଣ୍ଡାରେ ପଡ଼ିଥିବା ଟୁଲ୍‌ମାନଙ୍କରେ ବସି, ମୁହଁରେ ବ୍ରଣ ଉଠିବ ବୋଲି ସଲ ସଲ ହେଉଥିବା ଜାଗାକୁ ନଡ଼ାଖଣ୍ଡେ ଖଣ୍ଡେ ଧରି ଘାଣ୍ଟୁ ଘାଣ୍ଟୁ, ଗାରଡ଼ ପରି ଗମ୍ଭୀର ନବଯୁବତୀଙ୍କୁ ଶୁଙ୍ଘୁଥାନ୍ତି ଓ ସେମାନଙ୍କୁ କୁହା କରି ପରସ୍ପରରେ କଥାବାର୍ତ୍ତା ହେଉଥାନ୍ତି—ମନ ଭିତର ଆକାଂକ୍ଷାରେ ସକ ସକ ହେଉଥାଏ ।

ଏଇ ଜୁନ୍ ମାସରେ ବ୍ୟବସାୟୀମାନେ, ବିଅର୍ ଟିକିଏ ପିଇବେ ବୋଲି, ଯୁଲ୍-ଏନ୍-ସ୍ୟୁ ବା ଫୋର୍‌ମାଷ୍ଟର୍ ପାନାଳୟରେ ପଶି, ବିଅର୍ ପଛକୁ ହୁଇସ୍କି ଟିକିଏ ପାଇଁ ବସିଯାନ୍ତି ଓ ଘୁଇଗଡ଼ାଲବେଳକୁ ହୋଇ ପଡ଼ନ୍ତି ପୂରା ମାତାଲ । ମିଲ୍‌ଷ୍ଟ୍ରୀଟ୍ ମୋଡ଼ରେ ଅଣଆଡ଼ୁଆ ହୋଇ, ରଙ୍ଗ ଛାଡ଼ି ଯାଇଥିବା ଯେଉଁ ଅସୁନ୍ଦର ଘରଟା, ଦିନ ବେଳେ ବି ଯାହାକୁ

ଝରକା ପର୍ଦ୍ଦାସବୁ ପୂରା ଟଣାହୋଇ ଥାଏ, ସେ ଘରଟା ସହରର ବେଶ୍ୟା ଆଳୟର; ଅନ୍ଧାରକୁ ଅପେକ୍ଷା ନ କରି, ସେଇ ସ୍ଥାଇ ଲେଉଟା ବେଳେ, ଧୂଳି ଧୂଷର ମଟର ସବୁ ତା'ର ଦୁଆରେ ଆସି ଲାଗେ । ଜୁନ୍-ମଉସୁମୀ ଲୋକଙ୍କ ଆକାଂକ୍ଷା ପୂରଣ କରିବାରେ ଆଳସ୍ୟ କାଳବିଳମ୍ବ କରେ ନାହିଁ । ଏଣେ ଦିନ ତମାମ, ବନ୍ଦର ବାହାରେ ସମୁଦ୍ର ଭିତରକୁ, ମାଛୁଆ-ଡଙ୍ଗା ସବୁ ନଙ୍ଗର ପକାଇ ରହିଥାନ୍ତି ଓ ମନଫୁଲିଣିଆ ନାବିକମାନେ ସମୁଦ୍ରରୁ ରାତିଭୋଜନ ପାଇଁ ସାମଗ୍ରୀ ସଂଗ୍ରହ କରିବାରେ ଲାଗିଯାନ୍ତି ।

ଜୁନ୍ ମାସଟା ହେଉଛି ଆମ ସହରରେ ଘର ରଙ୍ଗେଇବା, ବାଡ଼-ବଗିଚା ସଜେଇବା, ଘର ମରାମତିର କଳ୍ପନା ଜଳ୍ପନା କରିବାର ସମୟ । ଏପରି ଜଣେ କେହି ନାହିଁ, ଯେ କି ଏତେବେଳେ ସିମେଣ୍ଟ ଓ ଘରତିଆରି ଉପକରଣ ଘରକୁ ନ ଆଣେ, ଓ ଘରେ ବସି ପୁରୁଣା ଲଫାଫାର ପଛ-ପଟେ ତାଜ-ମହଲର ଚିତ୍ର ଅଙ୍କନ କରିବାରେ ନ ଲାଗେ । ଶହ ଶହ ଛୋଟ ଡଙ୍ଗା ଏତେବେଳେ ସମୁଦ୍ରକୂଳରେ ଓଗୁଡ଼େଇ ହୋଇ ପଡ଼ିଥିବାର ଦେଖିବ; ଡଙ୍ଗା ତଳରେ ତମ୍ବାବର୍ଣ୍ଣର ରଙ୍ଗ ବୋଳା ହେଉଥିବ ; ମାଲିକମାନେ ଅଣ୍ଟାସଳଖି, ଡଙ୍ଗା ତଳରୁ, ବାହାରିବାକୁ ଭିଡ଼ କରୁଥିବା ବୋଳକୁ ଚାହିଁ ମୁଣ୍ଡ ମୁଣ୍ଡକୁ ହସୁଥିବେ । ସ୍କୁଲକୁ ଯିବାକୁ ପରାଙ୍ମୁଖ ପିଲାମାନେ କାନ୍ଦକୁନ୍ଦେଇ ଏମାସ ଶେଷ ପର୍ଯ୍ୟନ୍ତ କୌଣସିମତେ ସ୍କୁଲକୁ ଯିବା ଆସିବା କରୁଥାନ୍ତି ; ମାସ ଶେଷ ଆଡ଼କୁ ପରୀକ୍ଷା ବେଳ ଆସି-ଗଲେ, ସେମାନଙ୍କର ବିଦ୍ରୋହ ଆରମ୍ଭ ହୋଇଯାଏ; ସବୁପିଲାଙ୍କୁ ସର୍ଦ୍ଦି ସଂକ୍ରାମକ ହୋଇ ଧରିପକାଏ, କିନ୍ତୁ ସ୍କୁଲ ଛୁଟି ହେବା ଦିନ ଏ ସର୍ଦ୍ଦି ଏକାଥରକେ ସମସ୍ତଙ୍କର ଛାଡ଼ିଯାଏ ।

ଏଇ ଜୁନ ମାସରେ ସମସ୍ତଙ୍କ ମନରେ ମଉଜ କରିବାର ଅଙ୍କୁର ଜାଗି ଉଠେ । ସମସ୍ତଙ୍କ ମୁହଁରେ ଏକ ପ୍ରଶ୍ନ—"ଜୁଲାଇ ଚ୍ଚରି ତାରିଖର ଆମୋଦ ଦିନ କଟାଇବାକୁ ଯିବା କେଉଁଠିକି ?···ଜୁଲାଇ ଚ୍ଚରିତାରିଖ ଆସି ମୁଣ୍ଡ ଉପରେ, ଛୁଟିଟା କେଉଁଠି କଟାଇବା, ତା'ର ଯୋଜନା କରି-ବାରେ ଆଉ ବିଳମ୍ବ ଚଳିବ ନାହିଁ ।"

ଭବିଷ୍ୟତ ଅନିଶ୍ଚିତତାର ଜନ୍ମ ଏଇ ଜୁନ୍ ମାସରେ । ଏଇ-ମାସରେ ହଂସରାଜ ଶାବକଗୁଡ଼ିକ କେଡ଼େ ନିର୍ଭୟରେ ପାଣିରେ ପହଁରୁ-

ଥାନ୍ତି ! କିନ୍ତୁ ସାହସର ପରିଣାମ ହୁଏ କ'ଣ ? ହୁଏତ, ବୁଡ଼ା ଜାହାଜ-ପରି ପାଣିରେ ବୁଡ଼ି ରହି, ଏମାନଙ୍କୁ ଚାକୁକିନି ଗିଳି ଦେବାକୁ ଟାକିରହି-ଥିବା ସମୁଦ୍ର କଇଁଛର ପାଟିଭିତରେ ପଶିବାହିଁ ସାର ହୁଏ । ଶାକ ସବଜ ଏମାସରେ ଏତେ ସହରରେ ବଢି ବଢ଼ି ଭବିଷ୍ୟତରେ ପାଣି ବିନା ପୋଡ଼ି ଯିବାକୁ ଆଗୋଇ ଥାନ୍ତି ; ବଳିଷ୍ଠ ବାଇଗଣ ଗଛ ଗୁଡ଼ାକ ବେପରୁଆ ହୋଇ ବଢ଼ୁଥାନ୍ତି କାଣ୍ଡ-ବିନ୍ଧା ପୋକଙ୍କର ଶିକାର ହେବା ପାଇଁ ; ଆଉ, ଆମ ପରିବାରମାନେ ସମୁଦ୍ର ଉପକୂଳର ଆରାମ ଓ ସୂର୍ଯ୍ୟକିରଣର ସୁଖ ଅନୁଭବ କରି, ନିକଟ ଭବିଷ୍ୟତରେ ମଶାଙ୍କ କଳରବ ଭିତରେ ପର୍ବତର ଜଙ୍ଗଲିଆ ରାସ୍ତାର ତିକ୍ତତା ଆଡ଼କୁ ଆଗେଇ ଯାଉଥାନ୍ତି । ଜଣେ ଜଣେ ଅତୀତର ତିକ୍ତ ଅନୁଭୂତି ମନେ ପକାଇ ଚିନ୍ତା ହୁଅନ୍ତି, "ଏ ବର୍ଷ ମୁଁ ଘରେ ବସି ବିଶ୍ରାମ କରିବି ; ବାହାରକୁ ଯାଇ ଅଧିକ କ୍ଲାନ୍ତ ହେବାର ପ୍ରୟୋଜନ ନାହିଁ । ଦୁଇ ହପ୍ତା ମାତ୍ର ଛୁଟି ; ପିଲାମାନେ ଲଗାଇବେ, ଏତକ ସମୟ ମଟର ଚଳାଇ ନରକ ଭୋଗ କରିବାକୁ । ଏବର୍ଷ ସେମାନଙ୍କ କଥା ଶୁଣିବି ନାହିଁ । ବର୍ଷତମାମ ମୁହୂର୍ତ୍ତେ ଅବସର ନାହିଁ, ଏଇ ଟିକକ ମାତ୍ର ରିହାତି । ତାକୁ ଏଥର ମୁଁ ପୂରା ଉପଭୋଗ କରିବି ।" ଏସବୁ କଥା ପବନରେ ଉଡ଼ିଯାଏ ; ଛୁଟି ପାଇଁ ଯୋଜନା ଆଗରେ, ପୂର୍ବ ସ୍ମୃତି ଓ ପୂର୍ବ ଅନୁଭୂତି ପାସଙ୍ଗରେ ପଡ଼ନ୍ତି ନାହିଁ । ଭବିଷ୍ୟତର କ୍ଲେଶ ଓ ନିର୍ଯ୍ୟାତନାକୁ ଖାତିର ନ କରି ସଂସାର ଗତାନୁଗତିକ ଭାବେ ଆଗେଇ ଚାଲେ ।

ନିଉ-ବେ'ଟାଉନ୍ ବହୁତ କାଳ ହେଲା ନିଦ୍ଘୋଡ଼ ନିଦରେ ପଡ଼ି ରହିଛି । ଯେଉଁମାନଙ୍କ ହାତରେ ସହରର ପରିଚାଳନା ଦାୟିତ୍ୱ—ରାଜନୀତି , ସମାଜନୀତି ଓ ଅର୍ଥନୀତି, ପ୍ରତିକ୍ଷେତ୍ରରେ—ସେମାନେ ନିଜ ନିଜ ଗଦି ଏତେ କାଳ ହେଲା ମାଡ଼ି ବସି ରହିଲେଣି ଯେ, ସେମାନଙ୍କ ବ୍ୟକ୍ତି-ଗତ ଢଙ୍ଗ ରଙ୍ଗ ନିଜ ନିଜ ପଦବୀର କର୍ତ୍ତବ୍ୟାକର୍ତ୍ତବ୍ୟକୁ ପ୍ରଭାବିତ କରି ପକାଇଲଣି । ସହରର ପରିଚାଳକ, ମ୍ୟୁନିସିପାଲ୍ କାଉନ୍ସିଲ୍, ବିଚାରକ ଓ ପୁଲିସ୍, ଇସ୍ତମରାରି ପଟ୍ଟା ପାଇଲା ପରି ଚିରସ୍ଥାୟୀ ହୋଇ ରହିଛନ୍ତି । ପରିଚାଳକ ମ୍ୟୁନିସିପାଲଟିକୁ ଯାବତୀୟ ଜିନିସ ବେନାମିରେ ବିକୁନ୍ତନ୍ତି ; ଜଜମାନେ ମଟର ଲାଇସେନ୍ସ ଦେବାରେ ଏତେ କାଳ ପ୍ରିୟାପ୍ରୀତି-ତୋଷଣ କଲେଣି ଯେ, ଏପରି କରିବା ବେଆଇନ୍ ବୋଲି ସେମାନେ

ଏକାବେଳକେ ଭୁଲି ଗଲେଣି — ଆଇନ୍‌, ଆଇନ୍‌ବହିରେ ପୋଥି ବାଇଗଣ ହୋଇ ରହିଛି ମାତ୍ର । ସେମାନେ ବି ତ ସମସ୍ତଙ୍କ ପରି ମଣିଷ ; ସାଧାରଣ ମଣିଷଙ୍କ ବିଶୃଙ୍ଖଳ ଧାରା ଧରି ସେମାନେ ନିଜ କାର୍ଯ୍ୟରେ ଅନୈତିକତା କରୁଛନ୍ତି ବୋଲି ବିଚାରୁ ନାହାନ୍ତି । ପ୍ରତ୍ୟେକ ଲୋକ ନିଜ ମାନଦଣ୍ଡରେ ମତିବାନ । ମଣିଷ ତ ନିଜେ କରୁ ଦୁର୍ନୀତି କରେ ନାହିଁ ; ଯେତେ ଦୁର୍ନୀତି ସବୁଥିପାଇଁ ଦାୟୀ, ପଡ଼ଶା ଘର, ଅପର ଲୋକେ ।

ଅପରାହ୍ଣର ହରଦ୍ରାଭ ସୂର୍ଯ୍ୟ କିରଣରେ ଗ୍ରୀଷ୍ମଋତୁର ଆରାମଦାୟକ ଅନୁଭୂତି ମିଶିକରି ରହିଥାଏ । ଏ ଋତୁରେ ଆଗ କରି ଛୁଟିରେ ବାହାରି ପଡ଼ିବା ଲୋକ କେଇଜଣ—ଯେଉଁମାନଙ୍କୁ, ସ୍କୁଲ ଗ୍ରୀଷ୍ମାବକାଶ ପାଇଁ ଛୁଟି ହେବାଯାଏ, ଘରେ ବାନ୍ଧି ରଖିବାକୁ, ପିଲାପିଲି ନାହାନ୍ତି — ରାସ୍ତାରେ ଯାତାୟତ କରୁଥାନ୍ତି । ଏମାନେ ସମସ୍ତେ ବାହାରର ଲୋକ । ରାସ୍ତାରେ କେତେ ଗୁଡ଼ାଏ ମଟର, ପଛରେ ଛୋଟ ଛୋଟ ଡଙ୍ଗା ଓ ପ୍ରବାସରେ ଘର ପରି ବ୍ୟବହାର କରିବାଭଳି ଯାନ, ଟ୍ରେଲରେ ଟାଣି ଟାଣି ରାସ୍ତାରେ ଯାଉଥିବାର ଦେଖା ଯାଉଥାଏ । ସେମାନେ ଖାଦ୍ୟସାମଗ୍ରୀ ଦୋକାନରୁ ଯେଉଁ ସଉଦା କିଣୁଥାନ୍ତି—ରେଫ୍ରିଜରେଟରରେ ଥିବା ମାଂସ ଖଣ୍ଡ, ସାଙ୍ଗେ ସାଙ୍ଗେ ଖାଇବାକୁ ପ୍ରସ୍ତୁତ ହୋଇ ରହିଥିବା ଖିରସା ବିସ୍କୁଟ୍‌, ରନ୍ଧା ହୋଇ ଟିଣରେ ପ୍ୟାକ୍‌ ହୋଇଥିବା କୋକଳା ମାଛ— ସେଇଥିରୁ ଏଥାନ୍‌ ଆଖିମୁଜି କହି ପାରନ୍ତେ ଯେ, ଏମାନେ ଗ୍ରୀଷ୍ମାବକାଶରେ ବାହାରକୁ ବାହାରି ଥିବା ଲୋକ ।

ପାଗ ଟିକିଏ ଉଷ୍ମ ହେବାରୁ ଏବେ କେତେ ଦିନ ହେଲା ଜର୍ଜି ମର୍ଫି ଏଥାନ୍‌ଙ୍କ ଦୋକାନକୁ ଓପରଓଳି ଜଳଖିଆ ଖାଇବାକୁ ଆସୁଥାନ୍ତି । ଆଜି ବି ଆସିଲେ । ଥଣ୍ଡା ପାଣିଯନ୍ତ୍ର ଆଲମାରିରେ ଥିବା ବୋତଲ ଆଡ଼କୁ ହାତ ବଢ଼ାଇ ସେ କହିଲେ, "ତୁମେ ଏଠାରେ ଗୋଟାଏ ସୋଡ଼ା ଫାଉଣ୍ଟେନ ରଖିବା ଦରକାର ।"

ଏଥାନ୍‌ ଉତ୍ତର ଦେଲେ, "ହଁ, ଆଉ ଗୁଡ଼ାଏ ନୂଆ ହାତ ହେଲେ ହୁଅନ୍ତା ; କିମ୍ବା, ଗିଲି ଖୋଲି ଫାଟି ଦୁଇଟା ହେଲ ପରି, ମୁଁ ଫାଟି ଦୁଇଟା ଗୁମାସ୍ତା ହୋଇ ପାରିଲେ ଏ କାମକୁ ପାରନ୍ତି । ପ୍ରତିବେଶୀ ଜର୍ଜି !

ବୋଧହୁଏ ତୁମର ପାସୋର ହୋଇ ଗଲଣି ଯେ ଏ ଦୋକାନଟା ମୋ ନିଜ ସମ୍ପତ୍ତି ନୁହେଁ ।"

"ନୁହେଁ ଅବଶ୍ୟ, କିନ୍ତୁ ହେବା ଉଚିତ ।"

"ମୋ'ର ପୂର୍ବ ଇତିହାସ ବିଷୟରେ ବିଷୟ ତୁମକୁ ପୁଣି ଥରେ କହିବା ବୋଧହୁଏ ନିଷ୍ପ୍ରୟୋଜନ ।"

"ସେ ଇତିହାସ ମୁଁ ଜାଣେ । ତୁମେ ଖାଦ୍ୟ ସାମଗ୍ରୀ ଚିହ୍ନି ପାରୁ ନ ଥିଲ କି ହିସାବ ରଖିବା ଜାଣୁ ନ ଥିଲ । ଠିକ ଠିକ ଶିଖିବାକୁ ହୋଇଛୁ । ଅଜ୍ଞାତରେ ଯାହା ହୋଇଥାଉ ପଛେ, ଏତେବେଳକୁ ତୁମେ ଏ କାମରେ ପୋଖତ ହୋଇଗଲଣି ।"

"ଆଉ ପୋଖତ ହେଲେ ଲଭ କ'ଣ ? ହାତରୁ ତ ସବୁ ଖସି ଯାଇଛୁ ।"

"ଯଦି ଏ ଦୋକାନର ମାଲିକ ତୁମେ ହୁଅନ୍ତ, ତେବେ ଖୁବ୍ ପଇସା କରନ୍ତ ।"

"କିନ୍ତୁ ଦୋକାନର ମାଲିକ ତ ମୁଁ ନୁହେଁ, ସେ କଥା କାହିଁକି ପଡ଼ୁଛ ?"

"ଏ ଦୋକାନ ଛାଡ଼ି ତୁମେ ଯଦି ଏଇ ପାଖ ଘରେ ଗୋଟିଏ ନୂଆ ଦୋକାନ କର ତେବେ ସବୁ ଗରାଖ ତୁମ ପଛରେ ଗୋଡ଼େଇ ଯିବେ ।"

"ଏ ଆଶା କରିବାର କାରଣ କ'ଣ ?"

"କାରଣ, ଗରାଖ ଚିହ୍ନା ଦୋକାନୀଠାରୁ ସଉଦା କିଣନ୍ତି । ସ୍ବାକୁଇ କହନ୍ତି ଦୋକାନୀର ସୁନାମ ; ଏଇ ସୁନାମ ଫଳ ଦିଏ ।"

"ପୂର୍ବେ କିନ୍ତୁ ଏ ସୁନାମ ଫଳ ଦେଇ ନାହିଁ । ସହରର ସମସ୍ତେ ମୋତେ ଭଲ ଲୋକ ବୋଲି ସେତେବେଳେ ବି ଜାଣିଥିଲେ । ତଥାପି ବେପାର ବୁଡ଼ିଲା ।"

"ତା'ର କାରଣ ସ୍ବତନ୍ତ୍ର; ସେପରି ହେଲା ବେପାରରେ ତୁମର ଅଭିଜ୍ଞତା ନ ଥିବାରୁ । କପରି ଜିନିଷ କାହାଠାରୁ କିଣି ଦୋକାନରେ ରଖିବାକୁ ହୁଏ, ସେ କଥା ତୁମକୁ ଜଣା ନ ଥିଲା ।"

"ଆଜି ବି ହୁଏତ ସେ କଥା ଜଣା ନାହିଁ ।"

"ଏବେ ତୁମେ ସବୁ ବେଶ୍ ଜାଣିଲଣି । ଜାଣିଲ ବୋଲି, ନିଜେ ବୁଝି

ପାରିନାହିଁ, ସେତିକ ମାତ୍ର ଦୋଷ । ତୁମ ମନଟା ଦବ ଯାଇଛି । ମନର ଦୁର୍ବଳତା ଦୂର କର, ମିଷ୍ଟର୍ ହ'ଲ ! ମନର ଦୁର୍ବଳତା ଦୂର କର ।"

"ଧନ୍ୟବାଦ ।"

"ତୁମଠାରେ ମୋର ଭରି ଶ୍ରଦ୍ଧା ବୋଲି ଏ ସବୁ କହୁଛି । ଆଚ୍ଛା ! ମ୍ୟାରୁଲେ ଇଟାଲି ରମାନା ହେଉଛନ୍ତି କେବେ ?"

"ସେ ବିଷୟରେ କିଛି ସେ ମୋତେ କହି ନାହାନ୍ତି । ଅଚ୍ଛା, ଜର୍ଜି ! ତାଙ୍କର କେତେ ଧନ ଗଚ୍ଛିତ ଅଛି, କହି ପାରିବ ? ନା, ଥାଉ, କହ ନାହିଁ । ତୁମ ଗରାଖର ଧନ ବିଷୟ ବାହାରେ କହିବା ତୁମ ପକ୍ଷରେ ଉଚିତ ହେବ ନାହିଁ ।"

"ନିଜ ବନ୍ଧୁପାଇଁ ହେଲେ ମଧ୍ୟ, ମୁଁ ବ୍ୟାଙ୍କ୍‌ର ନିୟମ ଭଙ୍ଗ କରି ପାରିବି ନାହିଁ, ଏଥାନ୍ ! ମ୍ୟାରୁଲେଙ୍କ ସମସ୍ତ ସମ୍ପତ୍ତିର ବିବରଣ ମୋତେ ଜଣାନାହିଁ । ତେବେ, ଆମ ବ୍ୟାଙ୍କ୍‌ର ହିସାବରୁ ଯଦି ତାଙ୍କ ଧନର ପରିମାପ ହୁଏ, ତେବେ ସେ ଖାସା ଧନୀ ଲୋକ ବୋଲି ମାନିବାକୁ ହେବ । ସବୁ ପ୍ରକାର କାରବାରରେ ସେ ହାତ ପୁରାଇଛନ୍ତି—ଏଠେଇ ଖଣ୍ଡେ ଭୂସମ୍ପତ୍ତି ତ, ସେଠେଇ ଖଣ୍ଡେ ଘରଡ଼ିହ, ସମୁଦ୍ରକୂଳରେ କେତେ-ଗୁଡ଼ାଏ ବଡ଼ିଆ ଘର ସାଙ୍ଗକୁ, ତୁମ ଅଣ୍ଡା ପରି ମୋଟା ବିଡ଼ାଏ ବନ୍ଧକୀ ଦଲିଲ ।"

"ଏ ସବୁ ତୁମେ ଜାଣିଲ କେମିତି ?"

"ବ୍ୟାଙ୍କ୍‌ର ସେଫ୍-ଡିପୋଜିଟ୍ ବାକ୍ସ୍‌ରୁ । ଆମ ବ୍ୟାଙ୍କ୍‌ର ଖାସା ବଡ଼ ବାକ୍ସ୍‌ଟିଏ ସେ ଭଡ଼ା ନେଇଛନ୍ତି । ତାଙ୍କ ପାଖରେ ଗୋଟିଏ ଚାବି, ମୋ ପାଖରେ ଆଉ ଗୋଟିଏ । ସେ ବାକ୍ସ୍ ଫିଟାଇବାକୁ ଆସିଲା ବେଳେ ମୁଁ ଉଣ୍ଡିଛି ବୋଲି ମାନିବାକୁ ହେଉଛି । ବୋଧହୁଏ ପରସମ୍ପତ୍ତି ଉଣ୍ଡିବା ପ୍ରବୃତ୍ତିଟା ମୁଁ ଛାଡ଼ି ପାରିନାହିଁ ।"

"ବୋଧହୁଏ, ତାଙ୍କର ସବୁ ବେପାର ସିଧାସଳଖ ! ନା, ନୁହେଁ ? ମୋର କହିବାର କଥା—ସବୁବେଳେ କାଗଜରେ ବାହାରୁଛି, ପଢ଼ିଥିବ—ଲୋକଙ୍କୁ ନିଶାପିଶା ଖୁଆଇ ଦସ୍ତଖତ କରାଇ ନେବା, ଠକାଠକି କରି ସମ୍ପତ୍ତି ମାରିନେବା—ଏଇଭଳି ଦଗଲବାଜି ସେ କରନ୍ତି ନାହିଁ, ବୋଧହୁଏ ?"

"କରନ୍ତି କି ନାହିଁ, ମୁଁ ଜାଣିବି କିମିତି ? ସେ ତ ବୁଲି ବୁଲି ତାଙ୍କ ବେପାର ବଣିଜର ଗୁମାଆଣ୍ଡ କହି ବୁଲନ୍ତି ନାହାନ୍ତି । ବ୍ୟାଙ୍କ୍‌କୁ ଆସି ତାଙ୍କ ବାକ୍‌ସ୍‌ରେ କିଛି ନୂଆ ଦଲିଲ ରଖନ୍ତି, ରଖିଥିବା ଦଲିଲରୁ କେତେଖଣ୍ଡ କାଢ଼ି ନିଅନ୍ତି—ବେଶ୍ ଏତିକି ମୋତେ ଜଣା । ଆଉ କେଉଁ ବ୍ୟାଙ୍କ୍‌ରେ କାରବାର ଅଛି କି ନାହିଁ, ତା' ବି ମୋତେ ଜଣା ନାହିଁ । ଦେଖିଲି, ଏତେ କଥା କହିଲି ସିନା, ତାଙ୍କ ଆକାଉଣ୍ଟ୍‌ରେ ଠିକ୍ କେତେ ଅଛି କ'ଣ କହିଲି ?"

"ମୁଁ ବି ସେ କଥା କହ ବୋଲି ପଚାରି ନାହିଁ ସେ !"

"ଆଚ୍ଛା, ଗୋଟାଏ ବିଅର୍ ଦେଇ ପାରିବ ?"

"ହଁ, କିନ୍ତୁ ବାହାରେ ନେଇ ଖାଇବାକୁ ହେବ । ମୁଁ ଗୋଟାଏ କାଗଜ ଗ୍ଲାସ୍‌ରେ ଢାଳି ଦେଇପାରେ ।"

"ହଁ, ତୁମ ଦୋକାନର ନିୟମ ଭାଙ୍ଗିବାକୁ ମୁଁ କହିବି କାହିଁକି ?"

"ବେଶ୍, ତୁମର ଆମର ସମାନ ହୋଇଗଲା । ତୁମକୁ ତୁମ ନିୟମ ଭାଙ୍ଗିବାକୁ କହୁନାହିଁ, କି ତୁମେ ମୋତେ ମୋ' ନିୟମ ଭାଙ୍ଗିବାକୁ କହୁ ନାହଁ ।" ଏଥାନ୍ ଗୋଟାଏ ବିଅର୍ ଟିଣରେ ଗୋଟାଏ କଣା ଫିଟାଇଲେ; କହିଲେ, "ହଁ, ହଠାତ୍ ଯଦି କେହି ଆସି ପହଞ୍ଚେ, ବିଅର୍ ଗ୍ଲାସଟା ଟିକିଏ କଡ଼ରେ ଲୁଚାଇ ଦେବ ।"

"ଧନ୍ୟବାଦ, ଏଥାନ୍ ! ତୁମର ଭଲ ହେଉ ବୋଲି ମୁଁ ବହୁତ ଆଶା କରେ ।"

"ଏହାର କାରଣ ?"

"କାରଣ, ହୁଏତ ଅନ୍ୟ ଲୋକର ଭଲ ମନ୍ଦରେ ମୁଣ୍ଡ ପୂରାଇବା ଖୋଇ ମୋ'ର ଆଛି । ବ୍ୟବସାୟରେ ସଫଳତା ମନର ଗୋଟାଏ ବିକାର ବୋଲି କହିଲେ ଚଳେ । ବଳ୍‌କାପଡ଼ା ପିମ୍ପୁଡ଼ି ଗାତ ଖୋଳି କେମିତି ବାଲି ମାଟି ଗଦା ଗଦା କରି ଜମାଏ ଦେଖିଥିବ । ସେ ବାଲି-ଗଦା-ପାହାଡ଼ରେ ନିଜେ ପୋତି ନ ହୋଇ, ପଛକୁ ପଛକୁ ଉହୁଥିବାକୁ ହୁଏ; ଶେଷରେ ସେ ବାଲିଗଦା ପାରି ହେବାକୁ ବଡ଼ କରି ଡିଆଁଟେ ମାରିବା ଦରକାର ପଡ଼େ । ଏଥି, ତୁମ ସଫଳତାର ବାଲିଗଦାକୁ ମସ୍ତ ବଡ଼ ଏକ ଲମ୍ଫରେ ପାରି ହୋଇଯାଅ । ଥରେ ସେ ପ୍ରତିବନ୍ଧକ ପାରି ହେଲେ

ଦେଖିବ, ଜୀବନରେ ସଫଳ ହେବା ବ ମନର ଗୋଟାଏ ସଂସ୍କାର । ମନୋମୂଳମିଦଂ ଜଗତ୍ !"

"ବିଫଳତା ଯେପରି ଗୋଟାଏ ଯନ୍ତ୍ରା, କୃତିତ୍ୱ ସେହିପରି ଗୋଟାଏ ଯନ୍ତ୍ରା ନୁହେଁ ତ ?"

"କୃତିତ୍ୱ ଯଦି ବା ଯନ୍ତ୍ରା ବୋଲି ମନେ କରୁଛ, ତେବେ ଏହା ବିଫଳତାର ଯନ୍ତ୍ରାଠାରୁ ଅଧିକ ସ୍ପୃହଣୀୟ ?"

"ଧର, ଜଣେ ତା ପ୍ରତିଦ୍ୱନ୍ଦ୍ୱୀକୁ ଡେଇଁଲା ବେଳେ ଯଦି ଆଉ ଜଣକ ଉପରେ ପଡ଼ି ତାକୁ ଚାପିଦେଲା ?"

"ସେଥିକୁ କିଏ କ'ଣ କରିବ ? ଘରଚଟିଆ ଉଡ଼ୁ ଉଡ଼ୁ ପ୍ରତି-ଦ୍ୱନ୍ଦ୍ୱୀକରେ ବାଜି ଯାଇ ତଳେ ପଡ଼ିଯାଏ ; ଈଶ୍ୱର ଦେଖନ୍ତି ନିଶ୍ଚୟ । କିନ୍ତୁ କ'ଣ, ହାତ ବଢ଼ାଇ ତା'କୁ ପଡ଼ିବାରୁ ଉଦ୍ଧାର କରନ୍ତି ? ଯାହା ଭାଗ୍ୟ ସେ ଭୋଗିବ ।"

"ତୁମେ ମୋତେ ଠିକ୍ କ'ଣ କରିବାକୁ କହୁଛ, ପରିଷ୍କାର କରି କହନ୍ତ କି, ଜାଣନ୍ତି ।"

"ମୋ'ର ତ ସେଇଆ ମନ । ମୁଁ କ'ଣ କହୁଛି, ନିଜେ ପରିଷ୍କାର କରି ଜାଣି ପାରିଲେ, ନିଜେ କରନ୍ତି । ବ୍ୟାଙ୍କରେ ଖଜାଞ୍ଚିରୁ ପ୍ରମୋସନ୍ ପାଇ କେହି ବ୍ୟାଙ୍କ ପ୍ରେସିଡେଣ୍ଟ ହୁଏ ନାହିଁ । ହାତରେ ଧନ ଥିଲେ, ଯାଇ ସେ ପଦ ମିଳିବାର ସମ୍ଭାବନା ରହେ । ମୋ'ର ବି ଜୀବନରେ କୃତିତ୍ୱ ଅର୍ଜିବାକୁ ଧନର ପ୍ରୟୋଜନ । ତେଣୁ ଧନୀ ହେବାକୁ ମୋର ପ୍ରବଳ ଆକାଂକ୍ଷା ହେବା ତ ସ୍ୱାଭାବିକ । ମୋ'ର ମନେ ହୁଏ, ମୁଁ ଏତିକିମାତ୍ର କହିବାକୁ ଚାହୁଁଛି, ହାତ ପାହାନ୍ତାରେ ଯେଉଁ ସୁବିଧା ସୁଯୋଗ ମିଳୁଛି, ତା'କୁ ଜାବୁଡ଼ି ଧରି, ହାତଛଡ଼ା କର ନାହିଁ । ହରାଇବା ସୁଯୋଗ ଆଉ ଥରେ ଫେରି ପାଇବାର ସଂଭାବନା କମ୍ ।"

"ଦେଖୁଛି,' ତୁମେ ଜଣେ ଦାର୍ଶନିକ, ଜସି !—ଅର୍ଥନୀତିର ଦାର୍ଶ-ନିକ ।"

"ମୋ'ର ଯୋଗ୍ୟତା ବିଷୟରେ ଗୁଡ଼ାଏ କହ ନାହିଁ । ତାହା ଅପ୍ରାସଙ୍ଗିକ । ଯଦି ସୁବିଧା ସୁଯୋଗ ଆସି ନ ପହଞ୍ଚୁଛି, ତେବେ ସେ ବିଷୟରେ ଧ୍ୟାନ କର । ମଣିଷ ଏକୁଟିଆ ହେଲେ ନାନା ବିଷୟରେ ଧ୍ୟାନ

କରିବାକୁ ସୁଯୋଗ ପାଏ । ତୁମେ ତ ଜାଣ, ଅଧିକାଂଶ ଲୋକ ନିଜ ଭାବନାର ଶତକଡ଼ା ନବେ ଭାଗ ଅତୀତରେ ଆବଦ୍ଧ ରଖନ୍ତି, ଶତକଡ଼ା ପାଞ୍ଚ ଭାଗ ମାତ୍ର ଭାବନ୍ତି ବର୍ତ୍ତମାନର ଚଳନ୍ତି ବିଷୟ । ଭବିଷ୍ୟତ ଚିନ୍ତା ପାଇଁ ବାକି ରହେ ମାତ୍ର ତିନିଭାଗ । ପୁରୁଣା ଦାର୍ଶନିକ ସ୍ୟାଟେଲ ପେଇଜ୍ ଏ ସଂପର୍କରେ ଯାହା କହିଛନ୍ତି, ତା'ଠାରୁ ବଳିଷ୍ଠତର କଥା ଆଉ କେଉଁଠି ମୁଁ ଶୁଣି ନାହିଁ । ସେ କହିଛନ୍ତି, 'ପଛକୁ ଚାହିଁ ନାହିଁ । ତୁମ ନଜର ପଛ ଆଡ଼େ ପଡ଼ିଥିଲା ବେଳେ, ଆଗପଟୁ ତୁମର ଶତ୍ରୁ ତୁମ ଆଡ଼କୁ ଆଗେଇ ଆସିପାରେ । ଥାଉ ଏ କଥା, ଏତିକିରେ । ମୋତେ ବ୍ୟାଙ୍କ୍‌କୁ ଫେରିବାକୁ ହେବ । ମିଷ୍ଟର ବେକର୍ କାଲି ନିୟୁୟର୍କ ଯାଇ ସେଠାରେ କେଇଦିନ ରହିବେ । ସେ ତ ବର୍ତ୍ତମାନ ଗୋବରଗୋଳ ପରି କାର୍ଯ୍ୟବ୍ୟସ୍ତ !"

"କେଉଁ କାର୍ଯ୍ୟରେ ବ୍ୟସ୍ତ ?"

"ତା' ମୁଁ ଜାଣିବି କେମିତି ? କିନ୍ତୁ ଡାକରୁ ଆସିଥିବା ଚିଠି ଦେଖି ତ ମୁଁ କାରବାରୀ ଓ ବ୍ୟକ୍ତିଗତ ଚିଠି ବାଛିଜ୍ ବାଛିଜ୍ କରେ । ଦେଖୁଛି, ତାଙ୍କର ସ୍କୁଲବାମିରୁ ବହୁତ ବ୍ୟକ୍ତିଗତ ଚିଠି ଆସୁଛି ?"

"ରାଜନୀତି ବୋଧହୁଏ ।"

"ମୁଁ ଚିଠିର ଠିକଣା ଦେଖି ବାଛିଜ୍ କରେ ସିନା, ଭିତର ତ ଦେଖେ ନାହିଁ । ଆଚ୍ଛା ତୁମର ଏତେ ବେଳେ କ'ଣ ବେପାର ଏଡ଼କ ମାନ୍ଦା ସବୁଦିନ ?"

"ହଁ, ଓପରଚଳ ଏଇ ଘଣ୍ଟା ପାଖେ ଆଖେ ଏଇ ପରି ମାନ୍ଦା । ଆଉ ୧୦ ମିନିଟ୍ ଖଣ୍ଡେକେ ପୁଣି ଗହଳି ଲାଗିଯିବ ।"

"ଦେଖିଲ ? ତୁମର ଅଭିଜ୍ଞତା ହୋଇ ଗଲାଣି ! ମୋର ଦୃଢ଼ ବିଶ୍ୱାସ, ତୁମେ ପୂର୍ବେ ବେପାରରେ ଫେଲ୍ ହୋଇଥିବେଲେ ଏ କଥାଟି ଜାଣି ନ ଥିଲ । ଦିନ ବଢାଯାଉ, ପରେ ଦେଖାହେବ । ବିନା ଖର୍ଚ୍ଚରେ ଆଗେଇ ଯିବାକୁ ମନ୍ତ୍ରସିଦ୍ଧ ସୁନାମୁଦିଟା ଧରି ପକାଅ ।"

ପାଞ୍ଚଟାଠାରୁ ଛ'ଟା ଭିତରେ ଦୋକାନରେ ଯେଉଁ ଟିକିଏ ଭିଡ଼ ହୁଏ, ତାହା ସବୁ ଦିନ ପରି ଆଜି ବି ହେଲା । ସୂର୍ଯ୍ୟାଲୋକର ଅଧିକ ଉପଯୋଗ କରିବା ପାଇଁ ଘଣ୍ଟାକୁ ଆଗେଇ ଦିଆ ଯାଇଥିବାରୁ, ଛ'ଟାରେ ଦୋକାନ ବନ୍ଦ କଲାବେଳକୁ ଅଧିକ ଉଜ୍ଜ୍ୱଳ ଦିନ ଥିଲା ପରି ରାସ୍ତା ଉପରେ

ଆଳୁଅରୁ ଜଣାପଡ଼ୁଥାଏ । ଏଥାନ୍ ଫଳ ଡବାଗୁଡ଼ାକ ଦୋକାନ ସାମନାରୁ ଭିତରେ ରଖିଲେ ଓ ସଦର ଦରଜା ବନ୍ଦ କରି ଝରକା ଉପରେ ସବୁଜ ପରଦା ସମାନ କରି ଟାଣି ଦେଲେ । ତା'ପରେ ଗୋଟାଏ ତାଲିକା ପଢ଼ି ସେଥିରେ ଲେଖା ହୋଇଥିବା ଅନୁସାରେ ଘରଖର୍ଚ୍ଚ ପାଇଁ ଖାଦ୍ୟସାମଗ୍ରୀ ବାହାର କରି ସେ ସବୁ ଗୋଟିଏ ବଡ଼ ବ୍ୟାଗ୍‌ରେ ପୂରାଇଲେ । ପୋଷାକ ଉପରେ ବନ୍ଧାହୋଇ ଥିବା ଆଚ୍ଛାଦନୀଟା କାଢ଼ି, ସେ ଦେହରେ କୋଟ୍ ଓ ମୁଣ୍ଡରେ ଟୋପି ଭରିଲେ । ତା'ପରେ ଟିକଏ ଉହୁଙ୍କି ଯାଇ ସେ କାରବାରି ଟେବୁଲ୍ ଉପରେ ବସିଲେ ଓ ଥାକ ଉପରେ ଥୁଆ ହୋଇଥିବା ସଦ୍‌ଗ୍ରନ୍ଥମାନଙ୍କ ଆଡ଼କୁ ଚାହିଁ କହିଲେ, "ଆଜି ତୁମ ପାଇଁ ବିଶେଷ କିଛି ଉପଦେଶ ବାଣୀ ନାହିଁ । ଖାଲି ଏତିକି କହୁଛି, ସାଚେଲ୍ ପେଇଜ୍‌ଙ୍କ ଉପଦେଶ ସ୍ମରଣ ରଖ । ମୋର ମନେ ହୁଏ, ପଛକୁ ଚାହଁ ନାହିଁ ବୋଲି ତାଙ୍କର ଉପଦେଶ ଅନୁସାରେ ମୋତେ ବି କାର୍ଯ୍ୟକାରୀ ହେବାକୁ ପଡ଼ିବ ।"

ତା'ଙ୍କ ପଇସା ମୁଣିରୁ ସେ ଚଉଡ଼ା ହୋଇଥିବା ଗାରପକା କାଗଜ ଦି'ଖଣ୍ଡ ବାହାର କଲେ, ଓ ତା'କୁ ରଖିବାକୁ ମହମ-ଦିଆ କାଗଜର ଗୋଟିଏ ପୁଳିନ୍ଦା ତିଆରି କଲେ । ପୁଳିନ୍ଦା ଭିତରେ ସେ କାଗଜ ଦି'ଖଣ୍ଡ ରଖି, ଶୀତଳ ଭଣ୍ଡାରର ଏନାମେଲ ଦିଆ ଦୁଆରଟା ଖୋଲି କମ୍ପ୍ରେସର୍ ପଛପଟେ ପୁଳିନ୍ଦା ରଖି, ଦୁଆରଟା ବନ୍ଦ କରିଦେଲେ ।

ଟଙ୍କା ବାକ୍ସର ତଳେ ଗୋଟିଏ ଥାକରୁ ସେ ମ୍ୟାନ୍‌ହାଟାନ୍‌ର ଟେଲିଫୋନ୍ ଗାଇଡ୍ ବହିଟା ବାହାର କଲେ । ବ୍ୟବହାର ନ ହେଉଥିବାରୁ ତା'ଉପରେ ଧୂଳି ଜମି ଯାଇଥାଏ । ବହୁଦିନର ପୁରୁଣାବହି ହୋଇ ଥିବାରୁ ପୃଷ୍ଠାର କଣ ସବୁ ଲେଉଟି କୁଞ୍ଚି ହୋଇଥାଏ । ମ୍ୟାନ୍‌ହାଟାନ୍‌ର ଖାଦ୍ୟ ସାମଗ୍ରୀ ଗୋଦାମରୁ ଜରୁରି ଅର୍ଡ଼ରରେ ଜିନିଷ ମଗାଇବାକୁ କଦବା କେମିତି, ଏ ବହିଟା ଦରକାର ପଡ଼େ ମାତ୍ର । ବହି ଫିଟାଇ, ଯୁ-ତଳେ ଯୁକ୍ତରାଷ୍ଟ୍ର ବାହାର କରି, ତା' ତଳେ ବିଚାର ବିଭାଗର ନମ୍ବର ପାଇ……ତା'ତଳକୁ, ତା'ତଳକୁ ଦେଖି, ଯୁକ୍ତରାଷ୍ଟ୍ର ବିଚାର ବିଭାଗର ଶୁଳ୍କଶାଖା, ନଜରବନ୍ଦୀ ମହକୁମା, ରାଷ୍ଟ୍ରୀୟ ଅନୁସନ୍ଧାନ ସଂସ୍ଥା ତଳେ ପାଇଲେ, "ବିଦେଶୀ ଲୋକଙ୍କୁ ଯୁକ୍ତରାଷ୍ଟ୍ରର ନାଗରିକ ହେବାର ଅନୁମତି

ଦେବା ଅଫିସ୍, ୨° ନମ୍ବର, ପ—ଗ୍ରହ୍ୱେ ବ.ଏ. ୭—୦୩୦୦ନମ୍ବର ଟେଲିଫୋନ୍‌ର ଠାବ କଲେ—ତା'ତଳକୁ ଲେଖାଥାଏ, ଶନିବାର, ରବିବାର ଛୁଟି ଦିନ ଓ ଅଫିସ୍ ସମୟ ବାଦ୍ ଘଣ୍ଟରେ ଡାକିବାକୁ—ନମ୍ବର ଓଏଲ୍. ୭—୫୮୮୮ ।'

ବଡ ପାଟିରେ ସେ କହିଲେ, "ଡେରି ହୋଇ ଯାଇଥିବାରୁ ଏଇ ଓଏଲ୍. ୭—୫୮୮୮ ନମ୍ବରକୁ ଡାକିବାକୁ ହେବ । ଥାକରେ ଡବା-ମାନଙ୍କରେ ଥିବା ଖାଦ୍ୟ-ସାମଗ୍ରୀମାନଙ୍କ ଆଡ଼କୁ ନ ଚାହିଁ, ତାଙ୍କର ଉଦ୍ଦେ-ଶ୍ୟରେ ଏଥାନ୍ କହିଲେ, "ଯଦି ସମସ୍ତେ ସିଧାସଳଖ ରାସ୍ତାରେ ଥାନ୍ତି, ତେବେ ଯାହା କଲେ ବି, କାହାର କୌଣସି କ୍ଷତି ହେବାର ଆଶଂକା ନାହିଁ ଜାଣିବ ।"

ଏଥାନ୍ ଗଳି ରାସ୍ତା ବାଟେ ବାହାରକୁ ବାହାରି ଗଳି ଦୁଆର ବନ୍ଦ କରି ଦେଲେ । ତା'ପରେ ସେ ନିଜ ଖାଦ୍ୟ-ସାମଗ୍ରୀ ବ୍ୟାଗ୍‌ଟି ଧରି ରାସ୍ତା ପାରି ହୋଇ ଫୋର୍‌ମାଷ୍ଟର ଭୋଜନାଳୟ ଓ କବାବ୍ ଦୋକାନକୁ ଗଲେ । କବାବ୍ ଦୋକାନରେ ଓପରଓଳିଆ ମଦପିଆଳୀ ଗରାଖଙ୍କର ଗହଳି ଲାଗିଥାଏ । କିନ୍ତୁ ତାକୁ ଲାଗି ସରୁ ବାରଣ୍ଡାରେ, ଯେଉଁଠି ସର୍ବ-ସାଧାରଣଙ୍କ ପାଇଁ ଟେଲିଫୋନ୍-ବୁଥ୍ ଥାଏ, ସେଠାରେ କେହି ନଥାନ୍ତି, ଏପରି କି ସେ ଜାଗାର ସ୍ପର୍ଶରେ ଥିବା କିରାଣୀ ବି ନଥାଏ । ଏଥାନ୍ ଟେଲିଫୋନ୍-ବୁଥ୍ ଭିତରେ ପଶି କାଚ ଦୁଆରଟା ବନ୍ଦ କରି ଦେଲେ ; ନିଜର ବ୍ୟାଗ୍‌ଟି ସେଇ ଟୁଙ୍ଗିଘରର ମେଜଆ ଉପରେ ଥୋଇ ଟେଲି-ଫୋନ୍‌ର ଥାକ ଉପରେ ନିଜ ପକେଟରୁ ରେଜା କାଢ଼ି ବଛାଇ ଗୋଟିଏ ଦଶ-ପଇସି ବାହାର କରି କଣାରେ ଗଳାଇ ଦେଇ ଡାକିଲେ, ୦-ନମ୍ବ-ରକୁ, ଟେଲିଫୋନ୍ ଅପରେଟର୍ ଉଦ୍ଦେଶ୍ୟରେ ।

"ଓଃ, ଅପରେଟର୍ ! ମୁଁ ନିୟୁସ୍ଦର୍କକୁ ଡାକିବାକୁ ଚାହେଁ ।"

"ଆପଣ ଯେଉଁ ନମ୍ବର ଡାକିବାକୁ ଚାହାନ୍ତି, ତା'କୁ ଡାଏଲ କରନ୍ତୁ ।"

ଏଥାନ୍ ଓଏଲ୍. ୭—୫୮୮୮ ନମ୍ବରକୁ ଡାକିଲେ ।

ଖାଦ୍ୟସାମଗ୍ରୀ ବ୍ୟାଗ୍‌ଟି ଧରି ଏଥାନ୍ କାମରୁ ଫେରିଲେ ଘରକୁ । ଘଣ୍ଟା ଆଗେଇ ଦିଆ ହୋଇଥିବାରୁ ଅପରାହ୍ଣଟା କେଡ଼େ ଲମ୍ବା ଓ

ରମଣୀୟ ମନେ ହେଉଥାଏ । ଘର ସାମନା ପଡ଼ିଆରେ ଘାସ ଏତେ ବଡ଼ ଓ ବହଳ ହୋଇଥାଏ ଯେ, ତାଙ୍କ ପାଦଚିହ୍ନ ଘାସରେ ରହି ରହି ଯାଉଥାଏ । ମେଘ ତାଙ୍କୁ ସ୍ୱାଗତ କରିବାକୁ ଆସିବାରେ ସେ ତାଙ୍କୁ ଆର୍ଦ୍ର-ଚୁମ୍ବନଟିଏ ଦେଲେ ।

ଏଥାନ କହିଲେ, "ବେଙ୍ଗୁଲି ରାଣି ! ଦେଖୁଛ, ଘର ଆଗ ଘାସ ପଡ଼ିଆଟା ବଡ଼ ଅରଣା ହୋଇଗଲାଣି । ସ୍ୱାଲେନ୍‌କୁ କହିବ ବୋଲି ଭାବୁଛି, ଘାସ ଉପରେ କଟାକଳ ଚଲାଇ ଦେବାକୁ ।"

"କହିବ ଯଦି କହ । କିନ୍ତୁ ଏତେବେଳେ ତ ତା'ର ପରୀକ୍ଷା-ବେଳ ; ସ୍କୁଲ ଛୁଟିହେବା ପୂର୍ବରୁ ଅଭିନୟ ଆଦିର ଯେଉଁ ଜଞ୍ଜାଳ ତାହା ତ ଜାଣ । ତା'କୁ ବେଳ ହେବ କି ନାହିଁ କେଜାଣି ?"

"ସେ ଘରେ ବିରକ୍ତିକାଳିଆ ଁ ଁ ଶବ୍ଦଟାଏ କ'ଣ ଶୁଭୁଛି ?"

"ସ୍ୱାଲେନ୍ ତା' ବନ୍ଧୁ-ସ୍ୱସ୍ତି ଯନ୍ତ୍ରଟାରେ ସ୍ୱରସାଧନା କରୁଛି । ସ୍କୁଲ ଛୁଟି ହେବା ଦିନ ପରି ସେ ତା'ର ସ୍ୱର ଅନୁକରଣ ବାହାଦୁରି ଦେଖାଇବ ।"

"ଭଲ କଥା ! ଯେପରି ଜଣା ଯାଉଛି, ମୋତେ ହିଁ ଘାସ କାଟି-ବାରେ ଲାଗିବାକୁ ହେବ ।"

"କାମରୁ ଫେରୁ ଫେରୁ ତୁମକୁ ଏ ଦଣ୍ଡ ! ମୁଁ ବଡ଼ ଦୁଃଖିତ, ପ୍ରିୟତମ ! କିନ୍ତୁ ପିଲା ଯେଉଁ ଢଙ୍ଗ ଧରିଛନ୍ତି ତା' ତ ଜାଣ, ମୁଁ କ'ଣ-କରିବ ?"

"ହଁ, ହଁ, ତାଙ୍କ ଗତିବିଧି ଜାଣିବାକୁ ମୁଁ ସଦ୍ୟ ଆରମ୍ଭ-କରୁଛି ।"

"ତମେ ତ ଆଜି ଥକିଲା ପରି ଜଣା ପଡ଼ୁଛି । ଅଜି ଦୋକାନରେ ଖୁବ୍ ଭିଡ଼ ହୋଇଥିଲା, ବୋଧହୁଏ !"

"ଆଚ୍ଛା, ତାଙ୍କୁ ଦେଖିବ । ନାଇଁ, ମୁଁ ତ ଆଦୌ ଥକିନାହିଁ । ତେବେ ଆଜି ଦିନ ତମାମ ଠିଆ ହେବାକୁ ପଡ଼ିଛି । ଘାସକଟା କଳଟାକୁ ପୁଣି ଏତେବେଳେ ପଡ଼ିଆ ତମାମ ଠେଲିବାକୁ ହେବ । ଏ କଥା ଭାବିଲେ ଆନନ୍ଦରେ ନାଚିବାକୁ ମନ ନ ହେଉଛି ବୋଲି କ'ଣ ଥକିଛି ବୋଲି କହୁଛ ?"

"ଆମେ ଗୋଟେ ମୋଟରର ଲଗିଥିବା ଘାସକଟା କଳ ଆଣିବା । ଜନ୍‌ସନ୍ ପରିବାରର ଏଇ ପରି କଳ ଗୋଟାଏ ଅଛି ଯେ, ଭିତରେ ବସି କଳ ମୋଡ଼ିଲେ ଅନାୟାସରେ ଘାସ କାଟି ହୋଇ ଯାଉଛି ।"

"ଖାଲି ସେତିକ କାହିଁକି ? ଗୋଟାଏ ମାଳୀ ରଖିବା, ଓ ତା'କୁ ସାହାଯ୍ୟ କରିବାକୁ ଟୋକାଟାଏ ବି ରଖିବା । ମୋ ଗୋସିଁ ବାପାଙ୍କ ବେଳେ ଏମିତି ଦି' ଜଣ ଥିଲେ । କଳ ଉପରେ ବସି ମଟର ସାହାଯ୍ୟରେ ଘାସ କଟା ! ବେଶ୍ ! କଳ ଉପରେ ବସି ଚକମୋଡ଼ିବା ସୌଭାଗ୍ୟ ମିଳିଲେ ପୁଅ ଆମର ଘାସ କାଟିବାକୁ ଅନୁଗ୍ରହ କରନ୍ତା ବୋଲି ମୋ'ର ମନେ ହେଉଛି ।"

"ପୁଅ ଉପରେ ଏତେ କଠୋର ହୁଅ ନାହିଁ । ମୋଟେ ତ ଚଉଦଟା ବର୍ଷ ହୋଇଛି । ଆଜିକାଲି ସବୁ ପିଲା ଏଇମିତି ଫୋଲାଫାଙ୍କିଆ ହୋଇଛନ୍ତି ।"

"ପୁଅ ମୁହଁକୁ ଦେଖିଲେ ଗୁହିଁ, ପାଣି ପରି ଦୁଃଖ ଯାଉଛି ବୋଲି— ଏ ମିଥ୍ୟା କଥାଟା କିଏ ଆରମ୍ଭ କଲା ; ମନେ ଅଛି ?"

"ସତରେ, ଆଜି ତୁମ ମିଜାଜ ଖଦ୍ ବିଗିଡ଼ି ଯାଇଛି ।"

"କେମନ୍ତ ! ହଁ, ସତ ତ, ମୋତେ ସେଇମିତି ଜଣା ପଡ଼ୁଛି । ବାସ୍ତବିକ ଏଇ ଟଁ ଟଁ ଚିତ୍କାରଟା ମୋ ମୁଣ୍ଡକୁ ଏକାବେଳକେ ବିଗାଡ଼ି ଦେବାକୁ ବସିଲାଣି ।"

"ସେ ପରା ସ୍ୱର ସାଧୁଛି !"

"ହଁ, ଆଗରୁ କହିଛ, ଶୁଣିଛି ।"

"ଏବେ ନିଜ ମିଜାଜ ବିଗିଡ଼ିଛି ବୋଲି, ପିଲାଟା ଉପରେ ଦାଉ ସାଧ ନାହିଁ ।"

"ହଉ, ଥାଉ । କିନ୍ତୁ ତା' ଉପରେ ଏଇ ମୁହୂର୍ତ୍ତରେ କିଛି ହେଲେ ତା'ର ମଙ୍ଗଳ ହୁଅନ୍ତା ।" ଏଥାନ୍ ବୈଠକଖାନା ପାରହୋଇ ଘର ଭିତରେ ପଶି ସେଇ କୋଠରୀକୁ ଗଲେ, ଯେଉଁଠି ଫ୍ରାଙ୍କଲେନ୍ ଗୋଟାଏ ସ୍ପନ୍ଦିତ ହେଉଥିବା ପେଟହେଁକାଳି ଜିଭ ଉପରେ ରଖି ଟଁ ଟଁ ସ୍ୱରରେ ଅସ୍ପଷ୍ଟ ଶବ୍ଦ ଉଚ୍ଚାରଣ କରୁଥାଏ । "ଏ ସଂସାରବାହାର କାରଖାନାଟା କ'ଣ ବୁଲିଛି ?"

ସ୍ୱାଲେନ୍ ଯେଉଁ କାଳଟା ପାଟିରୁ ବାହାରକରି ପାପୁଲିରେ ଧରି କହିଲା, "ସେଇ ଯେଉଁ ଶସ୍ୟଡବା ଉପର ମୂଷାମୁଖା, ତା'କୁଇ ପଠାଇ ସ୍ୱାକୁ ଆଣିଛି । ସ୍ୱା ସାହାଯ୍ୟରେ ଜନ୍ତୁଜନ୍ତାଙ୍କ ସ୍ୱରର ଅନୁକରଣ କରିହେବ ।"

"ଆଚ୍ଛା, ସେ ଡବାରେ ଯେଉଁ ଖାଦ୍ୟ ଶସ୍ୟ ଥିଲା ତା'କୁ ଖାଇଲୁଟି ?"

"ନାଁ, ସେଗୁଡ଼ାକ ସୁଖ ଲଗିଲା ନାହିଁ । ବାପା, ମୋ'ର ଏବେ-ବେଳେ ଆଦୌ ବେଳ ନାହିଁ । ମୋତେ ବର୍ତ୍ତମାନ ସ୍ୱରସାଧନା କରିବାକୁ ପଡ଼ିବ ।"

"କିଛି ସମୟ ତୋ ସ୍ୱରସାଧନା ବନ୍ଦ ରଖ ।" ଏଥାନ୍ ପୁଅପାଖେ ବସି ପଚାରିଲେ,"ଆଚ୍ଛା, ଜୀବନରେ ତୁ' କ'ଣ କରିବୁ ବୋଲି ଚିନ୍ତିଛୁ?"

"ଉଁ ?"

"ମାନେ, ନିଜ ଭବିଷ୍ୟତ ବିଷୟରେ କିଛି ଚିନ୍ତା କରୁଛୁ ? ସ୍କୁଲରେ ଶିକ୍ଷକମାନେ ଏବିଷୟରେ କିଛି କହି ନାହାନ୍ତି ? ତୋ' ଭବିଷ୍ୟତ ତୋ ନିଜ ହାତରେ । ଏଇ ସମୟରୁ ଯେପରି ସାଧନା କରିବୁ, ଭବି-ଷ୍ୟତରେ ସେହିପରି ଫଳ ପାଇବୁ ।"

ଏଲେନ୍ ଏତିକବେଳେ ଅତର୍କିତ ଭାବରେ ସେ ଘରେ ଆସି ପହଞ୍ଚି ଗଲା, ଓ ଗ୍ଲେଟି ବିରାଡ଼ି ପରି ସୋଫାଉପରେ ଜାକି ଜୁକି ହୋଇ ବସିପଡ଼ି, କ୍ଷୁରଧାର ପରି ବିଦ୍ରୂପଭରା ହସଟାଏ ହସି ଦେଇ କହିଲା, "ତା'ର ମନ ସେ ଟେଲିଭିଜନ୍‌ରେ ବାହାରିବ ।"

ସ୍ୱାଲେନ୍ ଆତ୍ମପକ୍ଷ ସମର୍ଥନ କରି କହିଲା, "ଏବେ ଗୋଟାଏ ତେରବର୍ଷର ପିଲା ଟେଲିଭିଜନ୍‌ର ପ୍ରଶ୍ନୋତ୍ତର ବିଭାଗରେ ବାହାରି ନ'-ଲକ୍ଷ ପଚିଶ ହଜାର ଟଙ୍କା ପୁରସ୍କାର ପାଇଛି ।"

ଏଲେନ୍ କହିଲା, "ପଛରେ କିନ୍ତୁ ଜଣାପଡ଼ିଗଲା ଯେ, ଟେଲି-ଭିଜନ୍‌ରେ ଯାହା ଯାହା କହିଲା ସେ ସବୁ ଠକେଇ କଥା ।"

ସ୍ୱାଲେନ୍ ପ୍ରତିବାଦ କଲା, "ହେଲେ କ'ଣ ହୋଇଗଲା ? ତା'କୁ ମିଳିଥିବା ଟଙ୍କାଟା ତ ତା'ଠାରୁ କେହି ଛଡ଼ାଇ ନେଲେ ନାହିଁ ।"

ଏଥାନ ନରମ ଗଳାରେ କହିଲେ, "ପିଲାଟା ନ୍ୟାୟ୍ୟ କଲା କି ଅନ୍ୟାୟ କଲା ସେ ବିଷୟ ତୋ'ମୁଣ୍ଡରେ ଢୁକୁ ନାହିଁ ।"

"ନ୍ୟାୟ ହେଉ ବା ଅନ୍ୟାୟ ହେଉ, ଟଙ୍କାର ପରିମାଣଟା କେତେ ତା'ତ ବିଚାରିବାକୁ ହେବ ।"

"ଅସାଧୁ ଉପାୟରେ ଟଙ୍କା ଅର୍ଜିବା ଅନ୍ୟାୟ ବୋଲି ସ୍ୱୀକାର କରୁଛୁ, ନାଁ ନାହିଁ ?"

"ଓଃ, ସାଧୁ ଅସାଧୁ ବିଚାର ବୃଥା କଥା ! ଆଜିକାଲି ସମସ୍ତେ ଯେ କୌଣସି ଉପାୟରେ ଟଙ୍କା କରିବାକୁ ଠିକ୍ ବୋଲି ବୁଝୁଛନ୍ତି ।"

"ଆଉ, ଯେଉଁମାନେ ଆଚରଣ ଶୁଦ୍ଧ ରଖି ଜୀବନପଥରେ ବାହାରିଛନ୍ତି, ସେମାନଙ୍କୁ ଆଦର ମିଳୁ ନାହିଁ କି ଟଙ୍କା ମିଳୁନାହିଁ ବୋଲି, ତାଙ୍କ ସାଧୁତାର ମୂଲ୍ୟ କଣୁ ନାହିଁ ; ନା ?"

"ତମେ ସେଇଥିରୁ ଜଣେ ? ଆଜିକାଲି ସେ ବାଟ ଯେ ଧରୁଛନ୍ତି ତାଙ୍କ ହାତରେ ଖଣ୍ଡା ଶିଝୁନାହିଁ, ତାଙ୍କର ଜୀବନ ଧୂଳିସାତ୍ ହୋଇ ଯାଉଛି ।"

ଏଥାନ୍ କହିଲେ, "ହଁ, ଧୂଳିସାତ ହୋଇ ଯାଉଛି, ନା ? ଦେଖୁଛି, ତୋ'ର ଆଚରଣ ବି ଧୂଳିସାତ୍ ହୋଇଗଲାଣି । ହଇରେ ଟୋକା, ବସିବୁଟି ! ତୋ ତୁଣ୍ଡରୁ ଆଜ୍ଞା ଶବ୍ଦଟା କ'ଣ ବିଦାୟ ନେଇ ସାରିଲାଣି ?"

ୟ୍ୱାଲେନ୍ ଚମକି ପଡ଼ିଲା ; ବାପାଙ୍କ ଆଡ଼କୁ ଚାହିଁ ଦେଖିଲା ସେ ଏକଥା ପ୍ରକୃତରେ ରାଗି କରି କହିଲେ କି ନାହିଁ । ତା'ପରେ ପେଟଭିତରେ ବିଦ୍ରୋହ ଭରି ସିଧା ହୋଇ ବସି କହିଲା, "ନାଇଁ, ଆଜ୍ଞା !"

"ସ୍କୁଲରେ ପାଠପଢ଼ା କେମିତି ହେଉଛି ?"

"ଭଲ ହେଉଛି ବୋଲି ମୋର ବିଶ୍ୱାସ ।"

"ଆମେରିକାକୁ ତୁ କପରି ଭଲ ପାଉ ବୋଲି ଗୋଟାଏ ପ୍ରବନ୍ଧ ଲେଖିବାକୁ ବସିଥିଲୁ ପରା ? ଆମେରିକାକୁ ଧ୍ୱଂସ କରିବାର ଦୃଢ଼ ସଂକଳ୍ପ ହେବାରୁ ସେ କଳ୍ପନା ପରିତ୍ୟାଗ କଲୁଣି ବୋଧହୁଏ ?"

"ଧ୍ୱଂସ କରିବା କଥା କାହିଁକି କହିଲେ, ଆଜ୍ଞା ?"

"ଯେଉଁ ଦେଶଟା ଅସାଧୁତାରେ ଭରି, ସେ ଦେଶକୁ କ'ଣ ଯଥାର୍ଥରେ ଭଲ ପାଇ ହେବ ?"

"ବାପା ! ପ୍ରତ୍ୟେକେ ଯେ ଏହା କରୁଛନ୍ତି ।"

"ସେପରି କରିବା କ'ଣ ଭଲ ହେଉଛି ?"

"ଭଲ ହେଉଛି କି ମନ୍ଦ ହେଉଛି ସେ ବିଷୟରେ କେତେଜଣ ବୁଦ୍ଧିଜୀବୀଙ୍କ ବ୍ୟକ୍ତିଗତ ଆଉ କାହାରି ମୁଣ୍ଡ ବଥାଉନାହିଁ। ମୋ ପ୍ରବନ୍ଧ ମୁଁ ଶେଷ କରି ସାରିଲିଣି।"

"ବେଶ୍, ଭଲ, ମୋର ଟିକିଏ ତାହା ଦେଖିବାକୁ ମନ।"

"ମୁଁ ସେ ତା'କୁ ପଠାଇ ଦେଇ ସାରିଲିଣି।"

"ନକଲ ତ ରଖିଥିବୁ ?"

"ରଖିନାହିଁ, ଆଜ୍ଞା !"

"ତୋ' ପ୍ରବନ୍ଧ ଯଦି ଡାକରେ ହେବାରୁ ହଜିଯାଏ ?"

"ମୁଁ ସେ କଥା ଭାବି ପାରିଲି ନାହିଁ। ବାପା ! ସବୁ ପିଲେ ଯେମିତି ଛୁଟିରେ ବୁଲି ଯାଉଛନ୍ତି, ମୁଁ ସେମିତି ଯିବି ?"

"ସେତେ ଖର୍ଚ୍ଚ କରିବାକୁ ଆମର ସମ୍ବଳ ନାହିଁ। ସବୁ ପିଲେ ତ ଯାଉ ନ ଥିବେ, ମାତ୍ର କେତେଜଣ ଯାଉଥିବେ।"

ସ୍ଲାଲେନ୍ କହିଲା, "ଆମର କିଛି ଧନ ହୁଅନ୍ତା ହେଲେ !" ସେ ନିଜର ହାତ ପାପୁଲିକୁ ଚାହିଁଲା ଓ ଓଠ ଚୁଟି ପକାଇଲା।

ଏଲେନ୍ ଏକାଗ୍ର ଦୃଷ୍ଟିରେ ଭାଇ ଆଡ଼କୁ ଚାହିଁଥାଏ।

ଏଥାନ୍ ପୁଅ ଆଡ଼କୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ କହିଲେ, "ଆମର କେମିତି କିଛି ପଇସା ହେବ ତା'ର ବ୍ୟବସ୍ଥା ମୁଁ କରୁଛି।"

"କରୁଛ, ବାପା ?" ସ୍ଲାଲେନ୍ ଉତ୍କଣ୍ଠାରେ ପଚାରିଲା।

ଏଥାନ୍ କହିଲେ, "ଏଇ ଖରା ଛୁଟିରେ ତୁ' ମୋ ସଙ୍ଗେ ଦୋକାନରେ ଗୋଟାଏ କାମ କରିବୁ ଯେବେ ମୁଁ ଯୋଗାଡ଼ କରି ଦେବି।"

"କାମ ? ମୁଁ କରିବି କାମ ? କେମିତି ?"

"କି କାମ ବୋଲି ଜାଣିବାକୁ ଚାହୁଁଚୁ, ବୋଧହୁଏ। ତୁ' ଜିନିଷପତ୍ର ନେଇ ଥାକରେ ଥୋଇବୁ। ଦୋକାନର ଭିତର ଓ ବାହାର ସଫା କରିବୁ। ଆଉ ଯଦି ପାରିବୁ, ଗରାଖମାନଙ୍କ ଅର୍ଡ଼ର୍ ଅନୁସାରେ ଖାଦ୍ୟସାମଗ୍ରୀ ଯୋଗାଇବୁ।"

"ନା, ମୁଁ ପିଲାଙ୍କ ସାଙ୍ଗେ ବୁଲିବାକୁ ଯିବି।"

"ଆଉ ଏକାସାଙ୍ଗେ ପାଞ୍ଚ ଲକ୍ଷ ଟଙ୍କା ପାଇବାକୁ ବି ତୋ'ର ମନ !"

"ମୋର ଆଶା, ପ୍ରବନ୍ଧ ପ୍ରତିଯୋଗିତାରେ ମୁଁ ଜିତିବି । ତାହା-ହେଲେ ତ ଅନ୍ତତଃ, ଓ୍ୱାସିଂଟନ୍ ବୁଲି ଆସିବାର ସୁଯୋଗ ମିଳିବ । ବର୍ଷ ତମାମ ସ୍କୁଲରେ ଖାଟି ଖାଟି ଟିକିଏ ବାହାରେ ଘୂରିକରି ଆସିବାକୁ ସୁବିଧା ପାଇବି ।"

"ସ୍ମାଲେନ୍! ଆଚରଣ, ଶିଷ୍ଟାଗ୍ରହ, ସାଧୁତା ଏପରିକି ଉଦ୍ୟମ ଓ ଉତ୍ସାହର ଧରାବନ୍ଧା ନିୟମ କାଳକାଳ ହେଲା ରହି ଆସିଛି । ଯୁଗର ପରିବର୍ତ୍ତନ ହେଉଛି, କିନ୍ତୁ ଏ ଶାଶ୍ୱତ ନିୟମମାନଙ୍କର ପରିବର୍ତ୍ତନ ଅସଂଭବ । ତୋ'ର ବୟସ ହେଲାଣି, କାର୍ଯ୍ୟରେ କରି ନପାରେ ପଛେ, ଏ ନିୟମ ସବୁକୁ ଭିତରେ ମାନିବାକୁ ପଡ଼ିବ । ଏହା ଏଥର ତୋତେ ମୁଁ ଶିଖାଇବି । ଖବରକୁଟିରେ ତୁ କାମ କରିବାକୁ ପଡ଼ିବ ।"

"ମୋତେ ଆପଣ କାମରେ ଲଗାଇ ପାରିବେ ନାହିଁ ।"

"ମାନେ !"

"ପିଲାଙ୍କୁ କାମରେ ଲଗାଇବା ବିରୁଦ୍ଧରେ ଆଇନ୍ ଅଛି ଯେ ! ମୋତେ ଷୋ'ଳ ନ ପୂରିଲା ଯାଏଁ କାମ କରିବାକୁ ଅନୁମତି-ପତ୍ର ମୁଁ ପାଇ ନପାରେ । ଆପଣ କ'ଣ ଆଇନ୍ ଭଙ୍ଗ କରିବାକୁ ଚାହାନ୍ତି ?"

"ତୁ' କଣ ମନେ କରୁ, ଯେଉଁ ପୁଅ ଝିଅମାନେ ତାଙ୍କ ବାପ ମା'ଙ୍କ କାମରେ ସାହାଯ୍ୟ କରୁଛନ୍ତି, ସେମାନେ ଅଧେ ଦାସ ଓ ଆଇନ-ଭଙ୍ଗକାରୀ ଅପରାଧୀ !" ଏଥାନ୍‌ଙ୍କ ମୁହଁରେ ପୁତ୍ର ବାତ୍ସଲ୍ୟ ସଙ୍ଗେ କ୍ରୋଧ ସମାନଭାବରେ—ଭୀଷଣ ଭାବରେ ପରିସ୍ଫୁଟ ହୋଇଗଲା । ସ୍ମାଲେନ୍ ତାଙ୍କ ଆଡ଼କୁ ଚାହିଁ ନପାରି, ମୁହଁ ବୁଲାଇଦେଲା ।

ସେ କହିଲା, "ନାଇଁ, ଆଜ୍ଞା, ମୁଁ ସେ ଅର୍ଥରେ କହିନାହିଁ ।"

ଏଥାନ୍ କହିଲେ, "ମୋ'ର ଦୃଢ଼ ବିଶ୍ୱାସ, ସେ ଅର୍ଥରେ ତୁ କହିନାହୁଁ, ଏବଂ ଭବିଷ୍ୟତରେ କେବେ ବି କହିବୁ ନାଇଁ । କୋଡ଼ିଏ ପୁରୁଷ ହ'ଲା ଓ ଏଲିନ୍ ପୂର୍ବ ପୁରୁଷଙ୍କୁ ତୁ ନାକ ଛିଆଡ଼ ଦେଉଛୁ । ସେମାନେ ସମସ୍ତେ ଥିଲେ ସମ୍ଭ୍ରାନ୍ତଲୋକ । ତେଣେ ତୁ ବି ତାଙ୍କରି ପରି ସମ୍ଭ୍ରାନ୍ତ ହୋଇ ପାରିବୁ ବୋଲି ମୁଁ ଆଶା କରି ରହିଛି ।"

"ହଁ, ଆଜ୍ଞା ! ମୁଁ ଯଥାସାଧ୍ୟ ଚେଷ୍ଟା କରିବି । ବର୍ତ୍ତମାନ ମୁଁ ଯାଇପାରେ, ଆଜ୍ଞା !"

"ହଉ, ଯା ।"

ସ୍ୱାଲେନ୍ ଧୀରେ ଧୀରେ ସିଢ଼ି ଚଢ଼ି ଉପରକୁ ଗଲା ।

ସ୍ୱାଲେନ୍ ଅଦୃଶ୍ୟ ହେବାପରେ ଏଲେନ୍ ଜାହାଜର ଗୃଳନ-ଚକ୍ର ପରି ନିଜର ଗୋଡ଼ ଦୁଇଟା ବୁଲାଇ ନେଇ ସିଧା ହୋଇ ବସିଲା ଓ ଲଜ୍ଜାଶୀଳା ଯୁବତୀପରି ନିଜ ସେମିଜ୍‌ର କାନି ସଜାଡ଼ି ନେଲା; କହିଲା, "ମୁଁ ନେହେନ୍‌ସ୍ରି କ୍ଲେର୍କ୍‌ଙ୍କ ବକ୍ତୃତାମାଳା ପଢ଼ୁଥିଲି । ସେ ଜଣେ ଖୁବ୍ ବଡ଼ ଲୋକ ଥିଲେ, ନିଶ୍ଚୟ ?"

"ହଁ, ଖୁବ୍ ବଡ଼ଲୋକ ସେ ।"

"ତାଙ୍କ ବକ୍ତୃତା ତେମେ ମନେ ରଖିଛ ?"

"ନା, ବୋଧହୁଏ ନୁହେଁ । ବହୁତ ଦିନ ଆଗେ ପଢ଼ିଥିଲି ।"

"ଖୁବ୍ ବଢ଼ିଆ ଲେଖିଛନ୍ତି ।"

"କିନ୍ତୁ ତାଙ୍କ ଲେଖା ତ ସ୍କୁଲରେ ପଢ଼ୁଥିବା ବାଳକାମାନଙ୍କର ପାଠ୍ୟ ନୁହେଁ ।"

"ବାସ୍ତବିକ ମସ୍ତବଡ଼ ଲେଖକ ଓ ବକ୍ତା ସେ ।"

ଏଥାନ୍ ଚଉକିରୁ ଉଠିଲେ । ଦୀର୍ଘ ଦିନର କ୍ଲାନ୍ତ ଓ ମାନସିକ ଦୁଶ୍ଚିନ୍ତା ତାଙ୍କୁ ଚଉକିକୁ ପୁଣି ପେଲି ଦେଲା ପରି ଜଣାଯାଉଥାଏ ।

ଶୋଇବା ଘରକୁ ଯାଇ ସେ ଦେଖିଲେ, ମେରିଙ୍କ ଆଖି ଲାଲେ-ଲାଲ ; ସେ ରାଗରେ ପାଚପୁଡ଼ି ଥାନ୍ତି ।

ସେ କହିଲେ, "ତୁମ କଥା ସବୁ ମୁଁ ଶୁଣିଛି । କ'ଣ ଦଶବର୍ଷର ପିଲାଟାକୁ ଏମିତି ଗୁଡ଼ାଏ କହିଲ, ତୁମେ ଜାଣୁଥିବ ! ସେ ଗ୍ରୋଟିଆ ପିଲାଟିଏ, ଯା ବୋଧହୁଏ ତୁମର ଖିଆଲରେ ନାହିଁ ।"

"ପ୍ରିୟତମେ ! ଏଇ କଞ୍ଚା ବୟସରୁ ତା'କୁ ଶିଖାଇବାକୁ ହେବ ଯେ !"

"ମୋ' ସାଙ୍ଗେ ସେମିତି ଗୁଡ଼ାଏ ଗେଲେଇ ହେବା ଦରକାର ନାହିଁ । ପିଲାଙ୍କ ଉପରେ ବଳ ଖଟେଇବା ଦୁର୍ବୃତ୍ତିକୁ ମୁଁ ସୁଖ ପାଏ-ନାହିଁ ।"

"ଦୁର୍ବୃତ୍ତି ? ହା, ଭଗବାନ୍ !"

"ସାମାନ୍ୟ ପିଲାଟାଏ ସେ ! ତା'ଉପରେ ଯାଇ ବଳ ଖଟାଇ ବସିଲ ?"

"ମୁଁ ତ ମନେ କରୁଛି,ବର୍ତ୍ତମାନ ସେ ତା'ର ଭୁଲ ବୁଝି ପାରୁଛି ।"

"ତୁମେ କ'ଣ ଭାବୁଛ, ମୁଁ ଜାଣି ପାରୁନାହିଁ । ମୁଁ ଜାଣୁଛି, ତୁମେ ତାକୁ ପୋକମାଛି ପରି ଦଳି ଦେଲ ।"

"ନାଇଁ, ପ୍ରିୟେ ! ମୁଁ ଅଳ୍ପ କଥାରେ ବାସ୍ତବ ଜଗତ ସଙ୍ଗେ ତା'ର ପରିଚୟ କରାଇ ଦେଲି । ସେ ଅବାସ୍ତବ କଳ୍ପନାରେ ମାତିଥିଲା ।"

"ସଂସାରଟା ବାସ୍ତବରେ କ'ଣ, ସେ ବିଷୟ ଜାଣିବାକୁ ତୁମେ କିଏ ?"

ଏଥାନ୍ କିଛି ନକହି ମେଘାଙ୍କୁ ପାର ହୋଇ ବାଡ଼ବାଟେ ବାହାରକୁ ବାହାରିଗଲେ ।"

ମେଘା ପଚାରିଲେ, "ଯାଉଛ କୁଆଡ଼େ ?"

"ଯାଉଛି, ଘାସ କାଟିବ ।"

"ତୁମେ ତ କ୍ଳାନ୍ତ ହୋଇଥିଲ ପରି ଲାଗୁଥିଲ ।"

"ହଁ, କ୍ଳାନ୍ତ ହୋଇଛି—ନାଁ, ହୋଇଥିଲି । ଏତେବେଳକୁ କ୍ଳାନ୍ତି ଦୂର ହୋଇଗଲାଣି ।" ସେ କାନ୍ଧଉପରେ ମୁହଁ ବୁଲାଇ ମେଘାଙ୍କ ଆଡ଼କୁ ଚାହିଁଲେ; ମେଘା ବାଡ଼ଦୁଆରର ପରଦା ଆରପଟେ ରୋଷେଇ-ଘର ଭିତରେ ଠିଆ ହୋଇଥାନ୍ତି । ଏଥାନ୍ କହିଲେ, "ପୁରୁଷର ସାଙ୍ଗ ସାଥି ବୋଲି ସଂସାରରେ କେହି ନାହାନ୍ତି—ସେ ନିଃସଙ୍ଗ, ଏକାକୀ ।" ଘାସକଟା ଯନ୍ତ୍ରଟା ବାହାର କରିବାର ପୂର୍ବ ମୁହୂର୍ତ୍ତରେ ସେ ମେଘାଙ୍କ ଆଡ଼କୁ ଚାହିଁ ଟିକିଏ ହସିଲେ ।

କଅଁଳ ଓ ନରମ ଘାସ ଉପରେ ଘାସକଟା ଯନ୍ତ୍ରର ଦାନ୍ତୁଆ ଛୁରୀ ସାଇଁ ସାଇଁ ବୁଲୁଥିବାର ଶବ୍ଦ ମେଘା ଶୁଣୁଥାନ୍ତି ।

ଘାସକଟା ଯନ୍ତ୍ର ଆସି ରୋଷେଇଘର ବାଡ଼ଦୁଆର ପାହାଚ ପାଖେ ପହଞ୍ଚିଲା । ଏଥାନ୍ ଠିଆ ହୋଇ ଡାକିଲେ, "ମେଘା, ମେଘା, ପ୍ରିୟତମେ ! ମୁଁ ତୁମକୁ ସୁଖ ଦିଏ ।" ତା'ପରେ ଅରଣା ହୋଇ ବଢ଼ିଥିବା ଘାସ ଉପରେ ସାଇଁ ସାଇଁ ଘୂରୁଥିବା ଛୁରୀ ମାଡ଼ ଚାଲିଲା ।

---

# ଦ୍ୱାଦଶ ପରିଚ୍ଛେଦ

ମାର୍ଗି ସୃଙ୍ଗ୍-ହାଣ୍ଟ୍ ମନକୁ ଆକର୍ଷଣ କଲା ଭଳି ମହିଳା; ସୁନ୍ଦର ଯେମିତ, ସେହିପରି ଜାଣିବାର ଓ ଚଲାକ; ଏତେ ଚଲାକ ଯେ ନିଜର ସ୍ୱଳ୍ପକଳୁ, କେତେବେଳେ କମିନ୍ତ ଛପାଇ ରଖିବାକୁ ହେବ ସେ ବିଷୟରେ ସେ ବି ବେଶ୍ ନିପୁଣା । ତାଙ୍କର ଦୁଇଟିଯାକ ବିବାହ ବିଫଳ ହୋଇଛି—ସେ ଯାହାଙ୍କୁ ବାଛିଥିଲେ, ସେମାନେ ତାଙ୍କର ମନ ନେଇ ପାରିଲେ ନାହିଁ । ପ୍ରଥମ ଜଣକ ଦୁର୍ବଳମନା ହେବାରୁ ମାର୍ଗିଙ୍କର ତାଙ୍କଠାରୁ ମନ ଛୁଟିଗଲା । ଦ୍ୱିତୀୟ ଜଣକ ଅଧିକ ଦୁର୍ବଳମନା ପ୍ରମାଣିତ ହୋଇ ଶେଷରେ ଇହଲୀଳା ସାଙ୍ଗ କଲେ । ମାର୍ଗିଙ୍କ ସଙ୍ଗେ ପ୍ରଣୟଭିକ୍ଷା କରିବାକୁ ସ୍ୱତଃ କୌଣସି ପୁରୁଷ ଆସନ୍ତିନାହିଁ । ନାନା କଳକୌଶଳ କରି ପ୍ରେମିକଙ୍କୁ ମାର୍ଗି ଆକର୍ଷଣ କରନ୍ତି; ଥରକୁ ଥର ଟେଲିଫୋନ୍‌ରେ ଡାକି ସେ ତାଙ୍କ ଜାଲରେ ପୁରୁଷମାନଙ୍କୁ ପକାନ୍ତି । ଚିଠିପତ୍ର ଲେଖି, ଶୁଭକାମନା-ପତ୍ର ପଠାଇ, ଦେଖାସାକ୍ଷାତ୍ ହେବାର ଫନ୍ଦି ଉଦ୍‌ଭାବନ କରି, ସେ ଅନବରତ ନିଜ ଜାଲକୁ ମରାମତି କରି ଦୃଢ଼ କରୁଥାନ୍ତି । ଈପ୍‌ସିତ ଲୋକେ ବେମାର ପଡ଼ିଲେ, ନିଜ ଘରେ ସୁରୁଆ ତିଆରିକରି ଡାକ୍ତର-ଖାନା ଖଟିଆ ପାଖେ ନେଇ ଦେଇ ଆସନ୍ତି; ବନ୍ଧୁମାନଙ୍କର ଜନ୍ମଦିନ ମନେ ରଖି ଯଥାସମୟରେ ପ୍ରୀତି ଉପହାର ପଠାନ୍ତି ।

ନିଜ ପେଟ କପର ନ ବଢ଼ି ସମାନ ରହିବ, ଚମ ସଫା ଓ ସତେଜ ରହିବ, ଦାନ୍ତ ଧୋବ ଦିଶିବ, ଓ ଓଠ ଦୁଇଟି ଫିକୁଶିଆ ନ ହେବ—ଏ ବିଷୟରେ ମାର୍ଗି ଯେତେ ଉଦ୍ୟମ ଲଗିପଡ଼ି କରୁଥାନ୍ତି, ନିଉ-ବେ'ଟାଉନ୍‌ର ଅନ୍ୟ କୌଣସି ମହିଳା ସେତେ ଉଦ୍ୟମ କରିବାର ଜଣା ନାହିଁ । ତାଙ୍କ ଆୟର ଗୋଟାଏ ବଡ଼ ଭାଗ, ନିଜର କେଶ-

ପ୍ରସାଧନରେ, ନଖ ରଙ୍ଗେଇବାରେ, ଦେହ ପରିମାଣ ମସୃଣ କରିବାରେ, ଅଙ୍ଗରାଗ ଲଗାଇବାରେ ଓ ମଇଳା ବୋଳିବାରେ ଖର୍ଚ୍ଚ ହୋଇଯାଏ । ଅନ୍ୟ ମହିଳାମାନେ ତାଙ୍କୁ ଦେଖି କୁହାକୋହି ହୁଅନ୍ତି, "ସ୍ତ୍ରୀ'ର ଚେହେରାରୁ ସ୍ତ୍ରୀ' ବୟସ ଯେତିକି ବୋଲି ଜଣାଯାଉଛି ପ୍ରକୃତରେ ତା'ଠାରୁ ବୟସ ନିଶ୍ଚୟ ବେଶୀ ।"

ଅଙ୍ଗରାଗ ପ୍ରଲେପ, ଅଭ୍ୟଙ୍ଗମର୍ଦ୍ଦନ ଓ ବ୍ୟାୟାମ, ସ୍ତନ ଦୁଇଟିକୁ ଟେକି ରଖିଥିବା ମାଂସପେଶୀଗୁଡ଼ିକୁ ଶକ୍ତିଶାଳୀ କରିବାରେ ବ୍ୟର୍ଥ ହେବାରୁ, ସେ ରବର୍ ପ୍ୟାଡ୍ ଭିତରେ ସ୍ତନଦ୍ୱୟକୁ ଏପରି ସଜାଇ ରଖିଲେ ଯେ, ବାହାରକୁ ସେ ଦୁଇଟି ଉତ୍ତୁଙ୍ଗ ଓ ଉଲ୍ଲସିତ ଜଣାଗଲେ । କ୍ରମେ ପ୍ରସାଧନରେ ତାଙ୍କର ଅଧିକରୁ ଅଧିକ ସମୟ କଟିବାକୁ ଲାଗିଲା । ଟେଲିଭିଜନ୍‌ରେ ପ୍ରସାଧନ ସାମଗ୍ରୀର ପ୍ରଚାର କରି ଯାହା କୁହାଯାଇଥାଏ, ମାର୍ଗିଙ୍କ କେଶରେ ସେ କଥା ଅକ୍ଷରେ ଅକ୍ଷରେ ଫଳିବାର ଦେଖାଯାଏ— ଠିକ୍ ଯେପରି ପ୍ରଚାରିତ ହୋଇଥାଏ, ମାର୍ଗିଙ୍କ କେଶ ସେହିପରି ମସୃଣ, ଚିକ୍କଣ ଓ ତରଙ୍ଗାୟିତ ହଣେ । ପ୍ରଣୟୀ ଜଣେ ହାବୁଡ଼େ ପଡ଼ିଲେ, ସେ ଯେପରି ଖୁଆନ୍ତି, ନାଚନ୍ତି, ହସନ୍ତି, ଆମୋଦିତ କରନ୍ତି ଓ ଏବଂବିଧ ଆଉ ନାନା ପ୍ରକାର ଶ୍ରେଷ୍ଠ ଶ୍ରେଷ୍ଠ ଚମ୍ପକରେ ପ୍ରଣୟୀମନକୁ ଯେପରି ଆକର୍ଷଣ କରନ୍ତି, ତାହା ଦେଖି କେହି ସନ୍ଦେହ କରି ପାରିବେ ନାହିଁ ଯେ, ଏସବୁର ବ୍ୟବସାୟବୃତ୍ତିରେ ବାଂରବାର ପୁନରାବୃତ୍ତି ହୁଏ । କିଛି ଦିନ ପ୍ରଣୟୀ ସାଙ୍ଗେ ଏହିପରି ଲୀଳା କରି, ଗୁଡ଼ିଏ ପଇସା ବି ତାଙ୍କ ପିଛା ଖର୍ଚ୍ଚ କରି, ସୁବିଧା ଜୁଟିଲେ, ଅନତିଶୀଘ୍ର ସେ ତାଙ୍କୁ ଶଯ୍ୟାସଙ୍ଗୀ କରନ୍ତି । ତା'ପରେ ଚାଲେ ଅନ୍ୟ ଶିକାର ପାଇଁ ଜାଲ ସଜାଡ଼ ପାତିବା ଉଦ୍ୟମ । ଶୀଘ୍ର ହେଉ ବା ବିଳମ୍ବରେ ହେଉ, ଶଯ୍ୟାସଙ୍ଗୀ ପ୍ରଣୟୀଠାରୁ ନିଜ ଭବିଷ୍ୟତର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ସମ୍ବଳ ସଂଗ୍ରହ କରିବାର ପ୍ରଚେଷ୍ଟା ବି ଚାଲେ । ଅଧିକାଂଶ ସମୟରେ ପ୍ରତ୍ୟାଶିତ ଶିକାର, ମାର୍ଗିଙ୍କ ମସୃଣ ଶଯ୍ୟା-ଆଚ୍ଛାଦିତ କବଳରୁ, ଶରମାରି ଖସିଯାନ୍ତି । ଏବେ ତ କେବଳ ବିବାହିତ ପୁରୁଷ, ଅସମର୍ଥ ଓ ଅତି-ସାବଧାନ ପୁରୁଷମାନେ, ମାର୍ଗିଙ୍କ ସଙ୍ଗେ କେତେ ଘଣ୍ଟାମାତ୍ର ପ୍ରେମାଳାପରେ କଟାଇବାକୁ ମାତ୍ର ଇଚ୍ଛୁକ ହେଉଛନ୍ତି । ଅନ୍ୟମାନଙ୍କ ଅପେକ୍ଷା ନିଜେ ମାର୍ଗି ଖୁବ୍ ଅଧିକମାତ୍ରାରେ

ବୁଝିଲେଣି ଯେ ତାଙ୍କ ବେଳକାଳ ଏକାବେଳକେ ଯିବା ଉପରେ । ତାଙ୍କ ଯାଦୁବିଦ୍ୟା ଓ ଭାଗ୍ୟଗଣନା-ତାସ ତାଙ୍କ ନିଜ ଭାଗ୍ୟଗଣନା ବେଳକୁ ଅନୁକୂଳ ହେଉନାହିଁ ।

ମାର୍ଗି ଅନେକ ଲୋକଙ୍କ ସଙ୍ଗେ ଘନିଷ୍ଠ ସଂପର୍କ ରଖିଛନ୍ତି—କିନ୍ତୁ ଏମାନଙ୍କ ମଧ୍ୟରୁ ଅଧିକାଂଶ ଅଗତ୍ୟା ସ୍ମାଙ୍କ କବଳରେ ପଡ଼ିଥାନ୍ତି—କେହି ଆଇନ୍ ଭାଙ୍ଗି ଅପରାଧୀ ହୋଇ, ଦ୍ୱିତୀୟ ଶ୍ରେଣୀ ନିଜ ଆତ୍ମସମ୍ମାନରେ ଆଘାତ ପାଇ ଓ କେହି କେହି ଜୀବନରେ ଆଶା ହରାଇ ସ୍ମାଙ୍କ ଫାନ୍ଦରେ ଆସି ପଡ଼ିଥାନ୍ତି । ମଶା ମାଛି ଧରିବା ବୃତ୍ତି ଅବଲମ୍ବନ କରିଥିବା ଲୋକଙ୍କର ନିଜ ଶିକାରଙ୍କ ପ୍ରତି ଯେପରି ସ୍ୱାଭାବିକ ଘୃଣା ଥାଏ, ସେହିପରି ମାର୍ଗିଙ୍କର ଏହି ଅସହାୟ ଲୋକଙ୍କ ପ୍ରତି ସ୍ୱାଭାବିକ ଘୃଣା ଓ ଅବଜ୍ଞା ରହିଥାଏ । ସେମାନେ ସ୍ମାଙ୍କ ଫାନ୍ଦରେ ଚଢ଼ିବାକୁ ଏତେ ଆଗ୍ରହରେ ଆସନ୍ତି ଯେ ସ୍ମାଙ୍କୁ ପାଇ ମାର୍ଗିଙ୍କର ବିଜୟ-ଉଲ୍ଲାସ ଆସେ ନାହିଁ । ଆସେ ଗୋଟାଏ ପ୍ରକାର ବିରକ୍ତି ଓ ଅବଜ୍ଞାଭରା ଅନୁକଂପା । ଏଇ ବିଚରା ତାଙ୍କର ବନ୍ଧୁ ଓ ସହକର୍ମୀ—ଏଇପରି ବିଶ୍ୱସ୍ତ ଯେ ଏମାନଙ୍କୁ ସବୁବେଳେ ସହାୟ ହୁଅନ୍ତି, ଏପରି କି ଏମାନଙ୍କର ତାଙ୍କ ସଙ୍ଗେ ଆନ୍ତରିକତା ଅଛି ଏକଥା ମଧ୍ୟ ମାର୍ଗି ଘୃଣାକ୍ଷରରେ ଜଣାଇ ଦିଅନ୍ତି ନାହିଁ । ସେମାନଙ୍କର ମାର୍ଗିଙ୍କଠାରୁ ପ୍ରେମ ଦାବି କରିବାର ଅଧିକାର ନଥିବାରୁ, ମାର୍ଗି ଅଯାଚିତ ଭାବେ ନିଜକୁ ଏଇ ମାନଙ୍କଠାରେ ଅର୍ପଣ କରି ଦେଇଥାନ୍ତି । ଏ ଆନ୍ତରିକତାକୁ ଗୁପ୍ତ ରଖିବାର ଆଉ ବି ଗୋଟିଏ କାରଣ ଅଛି । ଏମାନଙ୍କ ସଙ୍ଗେ ଆନ୍ତରିକତା ଅଛି ବୋଲି ମାର୍ଗି ନିଜର ଅନ୍ତର ଭିତରେ, ଗୌରବ ଅନୁଭବ ନକରି, ଲଜ୍ଜିତ ହୋଇଥାନ୍ତି । ମାର୍ଗିଙ୍କର ଏଇ ଅନ୍ତରଙ୍ଗଙ୍କ ଭିତରେ ଡାକ୍ତର ଟେଲର ପ୍ରଥମ, ମ୍ୟାରୁଲେ ଦ୍ୱିତୀୟ, ଓ ପୁଲିସ ହାକିମ ଷ୍ଟୋନ୍‌ହ୍ୱାଲ୍ ଜ୍ୟାକ୍‌ସନ୍ ତୃତୀୟ—ସ୍ମାଙ୍କ ବାଦ୍ ଆଉ କେତେଜଣ ବି ଅଛନ୍ତି । ସେମାନେ ମାର୍ଗିଙ୍କୁ ଯେପରି ବିଶ୍ୱାସ କରନ୍ତି, ମାର୍ଗି ମଧ୍ୟ ସେମାନଙ୍କ ବିଶ୍ୱାସ ସେପରି ରଖନ୍ତି । ଏହି ବନ୍ଧୁମାନଙ୍କ ବିଶ୍ୱାସ ଭଙ୍ଗ ନକରି ନିଜ ସହିତ ସେମାନଙ୍କ ସଂପର୍କକୁ ଗୁପ୍ତ ରଖିବା ମାର୍ଗିଙ୍କ ଚରିତ୍ରରେ ଏକମାତ୍ର ସାତ୍ତ୍ୱିକ ଲକ୍ଷଣ । ଜୀବନ ପ୍ରତି ବୀତସ୍ପୃହ ହେଲେ ମାର୍ଗି ଏଇ ସାତ୍ତ୍ୱିକତାର ଆଶ୍ରା ତଳେ ପୁଣି ନିଜକୁ ଉଜ୍ଜୀବିତ କରି ଉଠନ୍ତି । ଏହି

ବନ୍ଧୁମାନେ ମାର୍ଗିଙ୍କୁ ନିଜର ଗୋପନୀୟ କଥା ସବୁ, ବିନା ଭୟ ଓ ବିନା ସଂକୋଚରେ କହନ୍ତି; କାରଣ, ସେମାନେ ଜାଣନ୍ତି, ମାର୍ଗି, ସ୍ୱାଣ୍ଡରସନ୍‌ଙ୍କ କୂଅ ପରି ବିଶ୍ୱାସ ଗ୍ରହଣ କରିବେ, ସେଥିରେ ଦୋଷାଦୋଷ ବାଛି ବସିବେ ନାହିଁ, ଓ ସବୁ ଶୁଣି ନ ଶୁଣିଲା ପରି ରହିବେ । ଅନେକ ଲୋକଙ୍କର ଯେପରି ଗୋପ୍ୟ ଦୋଷ ଅଛି, ସେହିପରି ମାର୍ଗି ତାଙ୍କର ଏହି ଗୁଣଟିକୁ ଗୋପନୀୟ ରଖିଛନ୍ତି । ଏହି ଗୁଣଟି ଯୋଗୁଁ ଅନୁମାନ ହୁଏ, ଖାଲି ନିଉ-ବେ'ଟାଉନ୍ କାହିଁକି, ସମଗ୍ର ଓ୍ୱେସେକ୍‌ସ୍ ଅଞ୍ଚଳର ଯେତେ ଭିତରି କଥା ମାର୍ଗିଙ୍କୁ ଜଣା, ଆଉ କାହାକୁ ସେତେ ଜଣା ନ ଥିବ । ତାଙ୍କର ଏ ଜ୍ଞାନ ଅଭିସନ୍ଧି-ଦୂଷିତ ନୁହେଁ ; କାରଣ, କୌଣସି ପ୍ରକାର ପ୍ରତିକୂଳ ପରିସ୍ଥିତିରେ ପଡ଼ି ମଧ୍ୟ ଏ ଜ୍ଞାନକୁ ନିଜର ସ୍ୱାର୍ଥସିଦ୍ଧିରେ ଖଟାଇବାକୁ ସେ ଯିବେ ନାହିଁ—ଯିବା ବି ତାଙ୍କ ପ୍ରକୃତି ପକ୍ଷରେ ସଂଭବ ନୁହେଁ । ଏଇତକ ଛାଡ଼ିଦେଲେ, ଆଉ ସବୁ କ୍ଷେତ୍ରରେ, ମାର୍ଗିଙ୍କ ହାବୁଡ଼େ ଯେତେ ଖବରାଖବର ଆସି ପହଞ୍ଚେ, ତାହା ସେ ନିଜ ସ୍ୱାର୍ଥସିଦ୍ଧି ପାଇଁ ବ୍ୟବହାର କରିବାକୁ କସ୍ମିନ୍‌କାଳେ କୁଣ୍ଠିତ ନୁହନ୍ତି ।

ଏଥାନ୍ ସ୍ୱାଲେନ୍ ହ'ଲଙ୍କ ବିଷୟରେ ତାଙ୍କ ଫନ୍ଦି, କୌଣସି ଅଭିସନ୍ଧି ନଥାଇଁ, ହୁଏତ ତାଙ୍କ ଅଳସ ମନର ଖିଆଲରେ, ଆରମ୍ଭ ହୋଇ ଗଲା । ତେବେ କେତେକାଂଶରେ ଏଥାନ୍‌ଙ୍କ ଆଶଂକା ଯଥାର୍ଥ ହୋଇ-ପାରେ ଯେ, ମାର୍ଗି ନିଜ କ୍ଷମତାର ପ୍ରମାଣ ଏଥାନ୍‌ଙ୍କ ଉପରେ ପରୀକ୍ଷା କରିବେ ବୋଲି ଦୁଷ୍ଟାମିରେ, ତାଙ୍କ ଉପରେ ନଜର ପକାଇଥିଲେ । ଯେଉଁ ଅବଶ ଓ ନିରାଶ ଲୋକେ ମାର୍ଗିଙ୍କ ପାଖରୁ ସୁଖ ଓ ସାହସ ପାଇବେ ବୋଲି ଆସୁଥିଲେ, ସେମାନେ ଥିଲେ ପୁରୁଷତ୍ୱହୀନ । ଏହି ପୁରୁଷତ୍ୱହୀନତାର ପ୍ରତିକ୍ରିୟାରେ ତାଙ୍କ ଜୀବନର ଆଉ ସବୁ ଉଦ୍ୟମ ଓ ପ୍ରଚେଷ୍ଟା ଅଥର୍ବ ହୋଇ ପଡ଼ିଥିଲା । ଏଇମାନଙ୍କୁ ନାନା ପ୍ରକାର ପ୍ରବୋଧନା ଓ ଆଶ୍ୱାସନା ଦେଇ ସେମାନଙ୍କଠାରେ କଥଞ୍ଚିତ ଆତ୍ମବିଶ୍ୱାସ ଅନୁପ୍ରବିଷ୍ଟ କରି, ମାର୍ଗି ଏମାନଙ୍କୁ ନିଜ ନିଜ ଘରକୁ ପଠାଇ ଦେଉଥିଲେ, ଘରେ ନିଜ ନିଜ ଭାର୍ଯ୍ୟାମାନଙ୍କର ଛାଞ୍ଚୁଣିର ସମ୍ମୁଖୀନ ହେବାକୁ ।

ଏଥାନ୍‌ଙ୍କ କ୍ଷେତ୍ରରେ ମାର୍ଗିଙ୍କର ପ୍ରବେଶ ହେଲା ଓଲଟ ଢଗରୁ । ସେ ଯଥାର୍ଥରେ ଥିଲେ ମେରି ହ'ଲଙ୍କର ଘନିଷ୍ଠ ସଖୀ । ତାଙ୍କରି ଜରିଆରେ

ମାର୍ଗି କ୍ରମେ କ୍ରମେ ଏଥାନ୍‌ଙ୍କୁ ଶକ୍ତି ବାକୁ ଆରମ୍ଭ କଲେ । ସେ ଦେଖିଲେ, ଏଥାନ୍‌ଙ୍କଠାରେ ଆଜି ଗୋଟିଏ ପ୍ରକାର ପୁଂରୁଷତ୍ୱହୀନତାର ଲକ୍ଷଣ । ଏ ପୁରୁଷତ୍ୱହୀନତାର ପ୍ରକାଶ ହୋଇଥିଲା, ଏଥାନ୍‌ଙ୍କ ସାମାଜିକ ଓ ଅର୍ଥ-ନୈତିକ ଅଥର୍ବତାରେ । ଏହି ଅଥର୍ବତା ଫଳରେ, ଏଥାନ୍‌ଙ୍କ ମନର ବଳ ଦୂର ହୋଇଥିଲା ଓ ସେ ଜୀବନ ପ୍ରତି ଉଦାସୀନ ହୋଇ ପଡ଼ିଥିଲେ । ମାର୍ଗିଙ୍କର ନିଜର କାମ ତ କିଛି ନ ଥାଏ; ପ୍ରଣୟୀର ପାତ୍ର କେହି ନ ଥାନ୍ତି; ବାତ୍ସଲ୍ୟ ଦେଖାଇବାକୁ ପିଲା କବିଲା ବି ନ ଥାନ୍ତି । ସମସ୍ତ ପ୍ରକାର ବନ୍ଧନରୁ ମୁକ୍ତ ଥିବାରୁ ସେ ଆଳସ୍ୟର ଖିଆଲରେ ବସୁଥିଲେ, ଏହି ଅଥର୍ବଲୋକ-ଟିର ମନରେ ଆଶା ଓ ଆକାଂକ୍ଷାର ଅଙ୍କୁର ଜାତ କରାଇ, ଏହାର ସୁପ୍ତ ଶକ୍ତିକୁ ଗୋଟାଏ ନୂଆ ଲକ୍ଷ୍ୟ ଆଡ଼କୁ ବାଗେଇ ଦେବେ । ଏ ଖେଳରେ, ନିଜ ଶକ୍ତିର ଏ ପରୀକ୍ଷାରେ, ଦୟା ଓ ଅନୁଗ୍ରହର ଆଭାସ ବିଶେଷ ନ ଥିଲା; ପୂରାମାତ୍ରାରେ ଥିଲା କୌତୂହଳ ଓ ଅଳସ ମନର ବିଳାସ, ଗୋଟାଏ ଖିଆଲ । ମାର୍ଗି ଯେଉଁ ଧରଣର ଲୋକଙ୍କ ସଙ୍ଗେ ଅଭ୍ୟସ୍ତ, ତାଙ୍କଠାରୁ ଏ ଏଥାନ୍ ଲୋକଟି ଥିଲେ ଭିନ୍ନଧରଣର ମଣିଷ । ଏ ଭଳି ଜଣଙ୍କୁ ନିଜ ଇଙ୍ଗିତରେ ଚଳାଇ ପାରିଲେ, ମାର୍ଗିଙ୍କ ଶକ୍ତିର ପରାକାଷ୍ଠା ପ୍ରକାଶ ପାଇବ । ଶରୀରର ଆକର୍ଷଣ କମି ଯାଉଥିବା ବେଳେ, ମାନସିକ ପ୍ରଭାବର ଏହି ଉତ୍କର୍ଷ ପ୍ରମାଣିତ କରିବାକୁ ମାର୍ଗି ଖୁବ୍ ଚାହୁଁଥିଲେ—ନିଜର ଆତ୍ମ-ପ୍ରତ୍ୟୟକୁ ପୁନଃପ୍ରତିଷ୍ଠିତ କରିବା ଉଦ୍ଦେଶ୍ୟରେ ।

ସମ୍ପ୍ରତି ଏଥାନ୍‌ଙ୍କର ଯେଉଁ ପରିବର୍ତ୍ତନ ହୋଇଛି ତାହାର ଗଭୀରତା ବୋଧହୁଏ ଏକମାତ୍ର ମାର୍ଗି ହିଁ ଲକ୍ଷ୍ୟ କରିଥିଲେ; ତାଙ୍କ ନିଜ ଯୋଗୁଁ ଏ ଗଭୀର ପରିବର୍ତ୍ତନ ହୋଇଛି ବୋଲି ଅନୁଭବ କରୁଥିବାରୁ ସେ ବିଶେଷ ଚଞ୍ଚଳ ହୋଇ ପଡ଼ିଥିଲେ । ମୂଷାର ଗଣ୍ଡସ୍ଥଳରେ ଏ ଯେ ସିଂହର କେଶର ଅଙ୍କୁରି ଉଠିଛି ! ଏଥାନ୍‌ଙ୍କ ପୋଷାକ ତଳେ ତାଙ୍କର ସୁଦୃଢ଼ ମାଂସପେଶୀକୁ ମାର୍ଗି ଲକ୍ଷ୍ୟ କରୁଥାନ୍ତି; ଓ ତାଙ୍କ ଆଖି କୋଣରେ ନିର୍ମମ ସଂକଳ୍ପ ସେ ବାରିପାରୁଥାନ୍ତି । କୋମଳ-ମତି ଆଇନ୍‌ଷ୍ଟାଇନ୍, ଜଡ଼ ପ୍ରକୃତିର ଯେଉଁ ଶକ୍ତିକୁ କଳ୍ପନାରେ ଅବଧାରଣ କରିଥିଲେ, ତାହା କାର୍ଯ୍ୟରେ ହିରୋଶିମା ଉପରେ ବିସ୍ତୃତ ହେବା ବେଳେ, ତାଙ୍କର ମନ

ଯାହା ହେଉଥିବ, ଏଥାନ୍‌ଙ୍କର ଭାବାନ୍ତର ଦେଖି ମାର୍ଗିଙ୍କ ମନ ସେଥିପାଇଁ ଆତଙ୍କିତ ହେଉଥାଏ ।

ମା'ଗ ମେଗ୍ରି ହ'ଲଙ୍କୁ ଖୁବ୍ ସୁଖ ପାଉଥିଲେ ସତ, କିନ୍ତୁ ମେଗ୍ରିଙ୍କ ପ୍ରତି ତାଙ୍କର ବିଶେଷ ସହାନୁଭୂତି ନଥିଲା; ଆଦୌ ଅନୁକଂପା ବି ନ ଥିଲା । ଦୁର୍ଭାଗ୍ୟ, ପ୍ରକୃତିର ସ୍ୱାଭାବିକ ଗତିରେ ଆସି ପଡ଼ନ୍ତି; ସ୍ତ୍ରୀଲୋକ-ମାନେ ବିଶେଷ ବିଚଳିତ ନହୋଇ ଦୁର୍ଭାଗ୍ୟକୁ ସହିଯାନ୍ତି । ସେ ଦୁର୍ଭାଗ୍ୟ ପୁଣି ନିଜ ଉପରେ ନ ପଡ଼ି ଅନ୍ୟ ସ୍ତ୍ରୀଲୋକ ଉପରେ ପଡ଼ିବାକୁ ଥିଲେ, ତାଙ୍କର ତ ଆଦୌ ବିଚଳିତ ନ ହେବା ସ୍ୱାଭାବିକ ।

ଗୋଟିଏ ବଡ଼ ବଗିଚ୍ଚରେ ଅରଣ୍ୟ ହୋଇ ବଢ଼ିଥିବା ଗଛ ଲତା ଭିତରେ ମାର୍ଗିଙ୍କର କ୍ଷୁଦ୍ର, ପରିଷ୍କାର ପରିଚ୍ଛନ୍ନ ଘରଟି । ତା'ର ଭିତରେ ବସି ତାଙ୍କ ପ୍ରସାଧନ-ଦର୍ପଣ ଆଡ଼କୁ ଝୁଙ୍କିପଡ଼ି ସେ ନିଜର ଅସ୍ତ୍ରଶସ୍ତ୍ରକୁ ନିରୀକ୍ଷଣ କରୁଥାନ୍ତି । ମୁହଁର ଅଙ୍ଗରାଗ, ପାଉଡର୍, ଆଖି ଚାରିପାଖେ ଲଗା ହୋଇଥିବା ମଇଲମ, ଓ କଳାରଙ୍ଗରେ ରଞ୍ଜିତ ଭ୍ରୂଲତାକୁ ଦେଖି ସେ ଲକ୍ଷ୍ୟ କଲେ, ତାଙ୍କ ମୁହଁର ଲୁକ୍କାୟିତ ଲୋଳିତ ଚର୍ମ ଓ ଦାଗ ସବୁ । ହଠାତ୍ ପ୍ରଶାନ୍ତ ସାଗରରେ ଜୁଆର ଉଠି ସମୁଦ୍ର ଗର୍ଭର ଶିଳାଖଣ୍ଡକୁ ବୁଡ଼ାଇ ଦେବାକୁ ବସିଲା ପରି, ବୟସ ବଢ଼ି ତାଙ୍କ କମନୀୟ ରୂପକୁ ବୁଡ଼ାଇ ଦେଉଥିବାର ତାଙ୍କୁ ଦିଶିଲା । ପରିଣତ ବୟସର, ପ୍ରୌଢ଼ା-ବସ୍ଥାର ସ୍ୱତନ୍ତ୍ର ଅସ୍ତ୍ରଶସ୍ତ୍ର ଅଛି; ତାହାର ବ୍ୟବହାର ପାଇଁ ସ୍ୱତନ୍ତ୍ର ଭାବେ ତାଲିମ ପାଇ ସେ ଅସ୍ତ୍ରଶସ୍ତ୍ରର ସ୍ୱତନ୍ତ୍ର ପ୍ରୟୋଗ-ବିଧିରେ ଅଭ୍ୟସ୍ତ ହେବାକୁ ପଡ଼ିବ—ମାର୍ଗିଙ୍କର ଏ ପର୍ଯ୍ୟନ୍ତ ସେ ସବୁ ଶିଖିବାର ପ୍ରୟୋଜନ ହୋଇ ନ ଥିଲା । ନିଜ ଯୌବନର ସୌଧ ଭାଙ୍ଗି ପଡ଼ିବା ପୂର୍ବରୁ, ଯୌବନର ଲାବଣ୍ୟ ମଉଳି ଯାଇ, ତାଙ୍କର ଶ୍ରୀହୀନ, ପର୍ଯ୍ୟୁଷିତ, ହାସ୍ୟାସ୍ପଦ, କୁତ୍ସିତ ରୂପ ଆତ୍ମପ୍ରକାଶ କରିବା ପୂର୍ବରୁ, ପ୍ରୌଢ଼ାବସ୍ଥାର ଅସ୍ତ୍ର ଶସ୍ତ୍ର ପ୍ରୟୋଗରେ ତାଙ୍କୁ ତାଲିମ ହେବାକୁ ପଡ଼ିବ । ସେ କେବେବେଳେ ନିଜକୁ ବା ଅପର କାହାକୁ ଅସହାୟ ଅବସ୍ଥାରେ ଛାଡ଼ି ଦିଅନ୍ତି ନାହିଁ—ଜୀବନ-ସଂଗ୍ରାମରେ ଯେ ସେ ଏପର୍ଯ୍ୟନ୍ତ ଜୟୀ ହୋଇ ଆସିଛନ୍ତି, ତାହା ତାଙ୍କର ଏଇ ଗୋଟିକ ଗୁଣ ଯୋଗୁଁ । ଭବିଷ୍ୟତର ପ୍ରସ୍ତୁତି ପାଇଁ ପରୀକ୍ଷା ସ୍ୱରୂପ ସେ ତାଙ୍କର ଅଧର ଦୁଇଟିକୁ ସ୍ୱାଭାବିକ ଭାବେ ଉହାଳିବାକୁ ଦେଲେ, ଆଖି ପତାକୁ

ଅଧା ବୁଢ଼ା ହେବାକୁ ଦେଲେ; ଚେଷ୍ଟାକରି ଏପର୍ଯ୍ୟନ୍ତ ଠେକି ରଖିଥିବା ଓଠକୁ ସେ ତା'ଇଚ୍ଛାରେ ଓହଳିବାକୁ ଦେଲେ—ସାଙ୍ଗେ ସାଙ୍ଗେ ବୋଳା ହୋଇଥିବା ଦଉଡ଼ି ପରି ଗୋଟାଏ ରେଖା ଓଠ ତଳେ ଦେଖା ଦେଲା। ଦର୍ପଣରେ ମାର୍ଗି ଦେଖିଲେ, ତାଙ୍କ ମୁହଁର ଅଙ୍ଗ ପ୍ରତ୍ୟଙ୍ଗକୁ ତାଙ୍କ ନିଜ ଇଚ୍ଛାରେ ରହିବାକୁ ଦେବା ଫଳରେ, ହଠାତ୍ ଅଧିକ କୋଡ଼ିଏ ବର୍ଷ ତାଙ୍କ ରୂପ ଉପରେ ଗୃପି ହୋଇଗଲା। ଭବିଷ୍ୟତରେ ତାଙ୍କ ପାଇଁ କି ଭାଗ୍ୟ ସାଇତା ହୋଇ ରହିଲାଣି, ତାହାର ବିବରଣ ସତେ ଯିମିତି କିଏ ତାଙ୍କ କାନରେ ଫୁସ୍‌ଫୁସ୍ କରି କହିଦେଲା—ମାର୍ଗିଙ୍କ ଦେହ ଶୀତେଇ ଗଲା। ବାସ୍ତବିକ୍ ଭବିଷ୍ୟତ ପାଇଁ ପ୍ରସ୍ତୁତ ହେବାରେ ସେ ଅଯଥା କାଳବିଳମ୍ବ କରିଛନ୍ତି। ନାରୀ, ନିଜର ବୃଦ୍ଧାବସ୍ଥା କି ରୂପ ଧରି, କି ପ୍ରକାର କଟାଇବ, ତାହାର ନିର୍ଦ୍ଦିଷ୍ଟ ରୂପରେଖ ଆଗରୁ ପ୍ରସ୍ତୁତ କରି ରଖିବା ଦରକାର— କ୍ଷୀଣଶକ୍ତି ଚକ୍ଷୁପାଇଁ ଅଧିକ ଆଲୋକର ବ୍ୟବସ୍ଥା ଦରକାର ; ଭରା ଦେଇ ଚାଲିବାକୁ ଅବଲମ୍ବନ ଦରକାର; ପିନ୍ଧିବାକୁ କଳା ମଲମଲ ଦରକାର; ଚିତ୍ତ-ବିନୋଦ-ପାଇଁ ନିଜର ପିଲାପିଲି, ନାତି ନାତୁଣୀ ଥିବା ଗୃହ। ବୟସ ବଢ଼ିଲେ ବାଳ ପାଚିବ, ଶରୀରର ମେଦ ବୃଦ୍ଧି ହେବ, ଜିହ୍ୱାଲାଳସା ବଢ଼ିବ—ତାହା ଚରିତାର୍ଥ କରିବା ପାଇଁ ଲାଜ ଲାଜ ହୋଇ ପିଲାଙ୍କଠାରୁ ଖାଦ୍ୟ ଜିନିସ ଛଡ଼ାଇ ଖାଇବାକୁ ପ୍ରବୃତ୍ତି ଆସିବ। ମନରେ ଆକାଂକ୍ଷା ହେବ, ସ୍ନେହ ସହାନୁଭୂତି ପାଇବାକୁ, ମନ ଲୋଡ଼ିବ ନିରାପତ୍ତା ଓ ସୁରକ୍ଷାର ବ୍ୟବସ୍ଥା। ଏତେବେଳେ ପାଖରେ କିଛି ପଇସା ଥିବା ଦରକାର। ସାଙ୍ଗକୁ ହେମନ୍ତ ଦେବାକୁ ଥିବା ଦରକାର, ଶାନ୍ତପ୍ରକୃତି, ପ୍ରତିଦାନର ପ୍ରତ୍ୟାଶା ରଖୁ ନଥିବା ସ୍ୱାମୀ; ତାଙ୍କ ଅଭାବରେ, ତାଙ୍କଠାରୁ ଅଧିକ ଶାନ୍ତଶିଷ୍ଟ ଓ ପ୍ରତିଦାନର ଆଦୌ ପ୍ରତ୍ୟାଶା ରଖୁନଥିବା ତାଙ୍କ ଉଇଲ୍-ଦଲିଲ ଓ ତାଙ୍କ ପାଇଁ ରଖି ଯାଇଥିବା ପାଣ୍ଠି। ଧନ ନଥାଇ, ଜନ ନ ଥାଇ, ସମ୍ବଳହୀନ, ସଙ୍ଗହୀନ ନାରୀ ବୃଦ୍ଧାବସ୍ଥାରେ ଅତି ନିଷ୍ପ୍ରୟୋଜନ ପଦାର୍ଥ, ଅଳିଆ ଗଦାରେ ଫୋପାଡ଼ ଦେବା ଯୋଗ୍ୟ ଭୁଚ୍ଛ ଜିନିଷ— ଶ୍ଲଥଚର୍ମ ଓ ଲୋଳିତକେଶ ଧରିଥିବା ଅସଭ୍ୟତାର ପ୍ରତୀକ। ପଛରେ ଗୋଡ଼ାଇବାକୁ ପରିଜନ ନ ଥିଲେ ଯେ, ଦୁଃଖ ଯନ୍ତ୍ରଣାରେ ଘାଣ୍ଟି ହେଲା ବେଳେ ଟିକିଏ ଆହା ବୋଲି କହିବେ କି ବନ୍ଧୁଥିବା ଆଣ୍ଠୁଗଣ୍ଠିରେ ଟିକିଏ ହାତ ମାରିଦେବେ, ଏପରି କେହି ତ ନିତାନ୍ତ ଦରକାର।

ମାର୍ଗଙ୍କ ପେଟ ଭିତରେ ଠାଏ ଭୟରେ ଚାଉଗଲା ପରି ଲାଗିଲା । ଯାହାହେଉ ତାଙ୍କ ପ୍ରଥମ-ପକ୍ଷ ସ୍ୱାମୀଙ୍କ ଯୋଗୁଁ ସେ ଗୋଟାଏ ଦିଗରେ ଭାଗ୍ୟବତୀ । ସେ ଅବଶ୍ୟ ଅତି ଦୁର୍ବଳମନା ଲୋକ ; ଏ ଦୁର୍ବଳତାର ମୂଳ କେଉଁଠି ତାହା ମାର୍ଗି ବେଶ୍ ଠଉରାଇ ପାରୁଥିଲେ । ସେ ତାଙ୍କ ପ୍ରତି ପ୍ରେମରେ ଅନ୍ଧ ହୋଇଥିଲେ—ଏଇ ଥିଲା ତାଙ୍କର ପ୍ରଧାନ ଦୁର୍ବଳତା । ସେ ପ୍ରେମରେ ଏତେ ଅନ୍ଧ ହୋଇଥିଲେ ଯେ, ମାର୍ଗି ଛାଡ଼ପତ୍ର ଦେବାକୁ ରାଜିହେବାରେ, ସେ ମୁକ୍ତ-ହସ୍ତରେ 'ଖୋରାକ ପୋଷାକ ଦେବାକୁ ଚୁକ୍ତି ସ୍ୱାକ୍ଷର କରିଦେଲେ ; ପୁନର୍ବିବାହ କଲେ ଖୋରାକ ପୋଷାକ ଭତ୍ତା ବନ୍ଦ ହେବ ବୋଲି ସର୍ତ୍ତ, ଚୁକ୍ତିପତ୍ରରେ ଲେଖାଇବାକୁ ପାସୋରି ଦେଲେ ।

ଦ୍ୱିତୀୟ ସ୍ୱାମୀ ରୂପେ ମାର୍ଗି ଯାହାଙ୍କୁ ବରଣ କଲେ, ସେ ସବୁବେଳେ ନିଶ୍ଚିନ୍ତ ଥିଲେ ଯେ, ତାଙ୍କ ଉପରେ ନିର୍ଭର ନକରି ସ୍ୱାଧୀନ ଭାବରେ ଚଳି ପାରିବା ଭଳି ମାର୍ଗିଙ୍କର ସ୍ୱତନ୍ତ୍ର ସଂପତ୍ତି ଅଛି । ପ୍ରକୃତରେ ତ ଥିଲା ଓ ଅଛି । ଦ୍ୱିତୀୟ ସ୍ୱାମୀ ମଲାବେଳେ ତାଙ୍କ ପାଇଁ ବିଶେଷ କିଛି ରଖି ଯାଇ ନଥିଲେ, କିନ୍ତୁ ଏଇ ସ୍ୱତନ୍ତ୍ର ସଂପତ୍ତି ଯୋଗୁଁ—ପ୍ରଥମ ସ୍ୱାମୀଙ୍କଠାରୁ ମିଳୁଥିବା ଖୋରାକପୋଷାକ ଭତ୍ତାରେ, ମାର୍ଗିଙ୍କର ସୁଖ-ସ୍ୱାଚ୍ଛନ୍ଦ୍ୟରେ ଚଳିବାକୁ ଅଭାବ ହୁଏ ନାହିଁ—ଭଲ ଖାଇବା ବାଦ୍, ଭଲ ପୋଷାକ ପିନ୍ଧିବାକୁ ଓ ଅବସରକ୍ରମେ ଫୁର୍ତ୍ତି କରି ବୁଲିବାକୁ ଏ ପଇସା ବେଶ୍ ଅଣ୍ଟି ଯାଉଛି । କିନ୍ତୁ ? ହଠାତ୍ ଯଦି ଏଇ ପ୍ରଥମ ସ୍ୱାମୀ ପୁରୁଷଟି ଆଖି ମୁଜିଦିଏ, ତେବେ ? ପେଟଭିତରର ଭୟର କାରଣ ଏଇ ଆଶଂକା । ଏଇ ତାଙ୍କର ଦିବା ଓ ରାତିର ଦୁଃସ୍ୱପ୍ନର ଉପାଦାନ—ମାସକୁ ମାସ ମିଳୁଥିବା ଚେକ୍ ବନ୍ଦ ହୋଇଯିବାର କୋକୁଆ ଭୟ !

ଗତ ଜାନୁଆରୀ ମାସରେ ମ୍ୟାଡ଼ିସନ୍ ଏଭିନ୍ୟୁ ଓ ୫୭ ନମ୍ବର ସଡ଼କର ପ୍ରକାଣ୍ଡ ଓସାରିଆ ଛକ ପାଖେ ସେ ଏଇ ପ୍ରଥମ ସ୍ୱାମୀ ଜନ୍ତୁଟିକୁ ଦେଖିଥିଲେ । ଲୋକଟା ଖୁବ୍ ବୁଢ଼ା ଓ କ୍ଷୀଣ ଜଣାପଡୁଥିଲା । ତା'କୁ ଦେଖି ତାହାର ମୃତ୍ୟୁର ଆଶଂକାରେ ମାର୍ଗି ବିବ୍ରତ ହୋଇ ପଡ଼ିଥିଲେ । ଯଦି ଏ ଅଲକ୍ଷଣା ବୁଢ଼ାଟା ହଠାତ୍ ମରିଯାଏ, ତେବେ ତ ସାଙ୍ଗେ ସାଙ୍ଗେ ଖୋରାକ ପୋଷାକ ଭତ୍ତା ବନ୍ଦ ହୋଇଯିବ ! ମାର୍ଗି ମନେ ମନେ

ସେ ବାଲ୍ୟବନ୍ଧୁ । ବେଶି ଅନୁସନ୍ଧାନ୍ତୁ ହୋଇ ମୁଁ ଭୁଲ କରିଛି । ଅଚ୍ଛା, ଆଜ କାହାଠାରୁ ଟଙ୍କା ନେଇଛି କି ?”

“ମୋର ଅନୁମାନ, ନେଇଛି ।”

“କେତେ ନେଇଛି, ତୁମେ ଖବର ରଖିନାହଁ ?”

“ନାଇଁ ଆଜ୍ଞା, ମୋ’ର ଏକମାତ୍ର ଧାରଣା ହୋଇଥିଲା ଯେ, ତା’ ପାଖେ ଆଜ ଟଙ୍କା ଥିଲା ।”

“ସେ କେଉଁଠି ଅଛି ଯଦି ଜାଣ, ତେବେ ଅନୁଗ୍ରହ କରି ମୋତେ କହ ।”

“ମିଷ୍ଟର୍ ବେକର ! ମୁଁ ଜାଣିଥିଲେ ଏତେବେଳକୁ କହି ସାରନ୍ତିଣି । ହୁଏତ, ସେ ଯେଉଁ ଯେଉଁ ଚିକିତ୍ସାଳୟକୁ ଯାଇଥିବାର ସମ୍ଭାବନା, ତା’ର ଗୋଟାଏ ତାଲିକା କରି ଆପଣ ଟେଲିଫୋନ୍ କଲେ ଭଲ ହୁଅନ୍ତା ।”

“ସେ କ’ଣ ନଗଦ ଟଙ୍କା କରଜ ନେଇଛି ”?

“ହଁ ।”.

“ତେବେ ଟେଲିଫୋନ୍ କରିବା ନିରର୍ଥକ । ସେ ନିଶ୍ଚୟ ନାମ ବଦଳାଇ ଦେଇଥିବ ।”

“କାହିଁକି ?”

“ସମ୍ଭ୍ରାନ୍ତ ପରିବାରର ଲୋକେ ଏ ଭଳି ଚିକିତ୍ସାଳୟକୁ ଗଲେ ନାମ ବଦଳାଇ ଦିଅନ୍ତି । ଏଥାନ୍, ତୁମେ କ’ଣ ମେରିଙ୍କଠାରୁ ଟଙ୍କା ନେଇ ତା’କୁ ଦେଇଛ ?”

“ହଇ, ଆଜ୍ଞା !”

“ମେରି ଆପତ୍ତି କଲେ ନାହିଁ ?”

“ତାଙ୍କ ଅଜଣାରେ ଦେଇଛି ।”

“ତା’ ହେଲେ ତ ମରଦପିଲା ପରି ପାରିବାର କାମ କରିଛ !”

“ଆଜ୍ଞା, ଆପଣଙ୍କଠାରୁ ଶିଖିଲି ପରା ! ଏହା ଆପଣଙ୍କ ଉପଦେଶ-ଯୋଗୁଁ ।”

“ହଁ, ସେ ଉପଦେଶ ପାସୋର ନାହିଁ ।”

‘ଆପଣଙ୍କ ଉପଦେଶ ମୁଁ ହୃଦୟଙ୍ଗମ କରୁଛି ଯେ, ଖୁବ୍ ଆସ୍ତେ

ଆସ୍ତେ, ଅଳ୍ପ ଅଳ୍ପ କରି । ମୁଁ କେତେଡ଼େ ଅଜ୍ଞ ସେଇ କଥାଟା ପ୍ରଥମେ ହୃଦୟଙ୍ଗମ କରିବାକୁ ଚେଷ୍ଟା କରୁଛି ।"

"ବେଶ୍, ବେଶ୍, ଜ୍ଞାନ ଅର୍ଜନ କରିବାର ଏଇ ପ୍ରକୃଷ୍ଟ ପନ୍ଥା । ଆଚ୍ଛା, ମେଷ୍ଟି ଭଲ ଅଛନ୍ତି ତ ?"

"ହଁ, ଆଜ୍ଞା, ବେଶ୍ ସୁସ୍ଥ ସବଳ ଅଛନ୍ତି । ମନେ ହେଉଛି, ଛୁଟିରେ ତାଙ୍କୁ ଟିକିଏ ବାହାରକୁ ନିଅନ୍ତି । ବର୍ଷ ବର୍ଷ ହେଲା ଆମେ ଏ ସହରର ସୀମା ପାରି ହୋଇନାହୁ ।"

"ଏଥାନ୍, ଅବସର ବିନୋଦନ ପାଇଁ ବାହାରକୁ ଯିବାର ବେଳ ଯଥାସମୟରେ ଆସିବ । ମୁଁ ତ ବିଚାରୁଛି, ଜୁଲାଇ ୪ ତାରିଖ ଛୁଟିରେ ମୁଁ ମେଇନ୍ ଯିବି । ଏଠାରୁ ଗୋଳମାଳ ଓ ଗହଳ ଆଉ ସହ୍ୟ ହେଉନାହିଁ ।"

"ମୁଁ ଦେଖୁଛି, ବ୍ୟାଙ୍କର୍‌ମାନେ ଭାଗ୍ୟବାନ୍ ! ଯେତେବେଳେ ଇଚ୍ଛା ସେତେବେଳେ କୁଆଡ଼େ ଗଲେ କିଛି କ୍ଷତି ନାହିଁ । ନିକଟରେ ଆପଣ ସ୍ୱାଲ୍‌ବାନ୍ନ ଯାଇଥିଲେ ପରା ?"

"ଏ ଖବର ତୁମକୁ ଦେଲା କିଏ ?"

"କେଜାଣି ? ଠିକ୍ ମନେ ନାହିଁ—କୋଉଠି ଗୋଟାଏ ଶୁଣିଲା ପରି ଲାଗୁଛି । ହୁଏ ତ ମିସେସ୍ ବେକର୍‌ଙ୍କଠାରୁ ଶୁଣି ମେଷ୍ଟି ମୋତେ କହିଛନ୍ତି ।"

"ମିସେସ୍ ବେକର୍ କଦାପି କହି ନ ଥିବେ । ସେ ତ ନିଜେ ଜାଣନ୍ତି ନାହିଁ । କେଉଁଠାରୁ ଏକଥା ଶୁଣିଲ ମନେ ପକାଇବାକୁ ଚେଷ୍ଟା କର ।"

"ହୁଏତ ସୁଦ୍ଧୁ ଅନୁମାନ କରି ଏ କଥାଟା କହି ଦେଇଚି ।"

"ଏଥାନ୍, ଏକଥାଟା ଶୁଣି ମୁଁ ବଡ଼ ବିବ୍ରତ ହୋଇପଡ଼ିଲି । କେଉଁଠାରୁ ଯା ଶୁଣିଲ, ଖୁବ୍ ଭାବି ବାହାର କର ।"

"ଆଦୌ ମନେ ପଡୁନାହିଁ, ଆଜ୍ଞା ! କଥାଟା ଯଦି ମିଛ, ତେବେ ସେ ବିଷୟରେ ଭାବି ହେବାରେ ଲାଭ କ'ଣ ?"

"ମୁଁ କାହିଁକି ବିବ୍ରତ ହେଉଛି, ବିଶ୍ୱାସରେ କହୁଛି, ଶୁଣ । ମୁଁ ଯିବା କଥା ସତ ବୋଲି ବିବ୍ରତ ହେଉଛି । ମୋତେ ଆମ ଗଭର୍ଣ୍ଣର୍ ଡକାଇଥିଲେ । ଖୁବ୍ ଗୁରୁତର କଥାରେ । କଥାଟା କେଉଁ ବାଟରେ ଫିଟିଗଲା ଜାଣି ନ ପାରି ବିସ୍ମିତ ହେଉଛି ।"

"ସେଠାରେ କ'ଣ ଆମ ଏଠାର କଏ ଆପଣଙ୍କୁ ଦେଖିଲା ?"

"ମୁଁ ତ ସେ କଥା ଜାଣି ପାରୁନାହିଁ । ମୁଁ ଉଡ଼ି କରି ଗଲି, ଉଡ଼ିକରି ଆସିଲି । ବଡ଼ ଗୁରୁତର କଥା । ଆଜି ତୁମକୁ ଗୋଟିଏ ଗୁପ୍ତକଥା କହୁଛି । ଏକଥା ଯଦି ଫିଟିଯାଏ, ତେବେ ଜାଣିବ କାହାଯୋଗୁଁ ଫିଟିଲା ।'

"ତେବେ ମୋର ସେ କଥା ଜାଣିବା ଦରକାର ନାହିଁ, ଆଜ୍ଞା !"

"ମୋର ଆଲ୍‌ବାମା ଯିବା କଥା ଯେତେବେଳେ ଜାଣିଲଣି, ସବୁ କଥା ତୁମେ ଜାଣିବା ଉଚିତ । ରାଜ୍ୟସରକାର, ଆମ ଅଞ୍ଚଳ ଓ ସହରର ପରିଚାଳନା ସମ୍ବନ୍ଧରେ ଅନୁସନ୍ଧାନ ଚଳାଇଛନ୍ତି ।"

"କାହିଁକି ?"

"ବୋଧହୁଏ ଆମ ଏଠାରେ ବଭ୍ରାଟ ଓ ଦୁର୍ନୀତି ହେବାର ଗନ୍ଧ ଆଲ୍‌ବାମାରେ ଯାଇ ବାଜିଲଣି ।"

"କୌଣସି ରାଜନୀତିକ ଅଭିସନ୍ଧି ଯଦି ମୂଳରେ ଅଛି ବୋଧ-ହୁଏ ।"

"ଗଭର୍ଣ୍ଣର ଯାହା କରୁଛନ୍ତି ଓ କରାଉଛନ୍ତି, ତା' ମୂଳରେ ରାଜନୀତି ନିଶ୍ଚୟ ଅଛି ବୋଲି ଅନୁମାନ କରିବା ଅଯଥାର୍ଥ ନୁହେଁ ।"

"ମିଷ୍ଟର୍ ବେକର୍ ! ଯେଉଁ ଅନୁସନ୍ଧାନ ଚାଲିଛି ତାହା ଖୋଲା-ଖୋଲି ନ ହୋଇ ଏପରି ଲୁଚିଛପାରେ ହେବାର କାରଣ କ'ଣ ?"

"କାରଣ କ'ଣ, କହୁଛି । ଏଠାର ଖବର ଯାଇ ରାଜ୍ୟର ସଦର ମହକୁମାରେ ପହଞ୍ଚି ଇନ୍‌ସ୍‌ପେକ୍ଟରମାନେ ଆସି ଅନୁସନ୍ଧାନ କରିବାକୁ ଆରମ୍ଭ କଲାବେଳକୁ, ଆମ ଏଠାର ଫାଇଲ୍ ପତ୍ର ସବୁ ଅନ୍ତର୍ଦ୍ଧାନ ହୋଇ ସାରିବେଣି ।"

"ଗୋପନୀୟତାର ଯଥାର୍ଥତା ବୁଝିଲି । କିନ୍ତୁ ଏ ସବୁ ଆପଣ ମୋତେ ନ କହିଥିଲେ ଭଲ ହୋଇଥାନ୍ତା ବୋଲି ବିଚାରୁଛି । ମୋ'ଠାରୁ କଥା ଫିଟିଯିବ ବୋଲି ଯେ ଡରୁଛି, ତା ନୁହେଁ । ଆମର ନେତାମାନେ ଏତେ ଦୁର୍ନୀତିରେ ମାତିଛନ୍ତି ବୋଲି ନ ଜାଣିଥିଲେ ମୋର ମାନସିକ ଶାନ୍ତି ଅବ୍ୟାହତ ରହିଥାନ୍ତା ।"

"ସେ କଥା ଯାହା କହୁଛ ତା' ଯଥାର୍ଥ । ମୁଁ ନିଜେ ବି ସେହିପରି ବିଗୁଡୁଛି, ଏଥାନ୍ !"

"ଜୁଲାଇ ୭ ତାରିଖରେ ନିର୍ବାଚନ ; ନିର୍ବାଚନ ପୂର୍ବରୁ କ'ଣ ଏ ସବୁ କଥା ଦାଣ୍ଡକୁ ବାହାରି ପଡ଼ିବ ?"

"ଠିକ୍ କହି ପାରୁ ନାହିଁ । ରାଜ୍ୟ ସରକାର ଯେମିତି ଉଚିତ ମନେ କରିବେ, ସେମିତି କରିବେ ।"

"ଆପଣ କ'ଣ ମନେ କରୁଛନ୍ତି, ଏ ଗଣ୍ଡଗୋଳ ଭିତରେ ମ୍ୟାରୁଲେ ଅଛନ୍ତି ? ମୋ' ଗୃହକର୍ତ୍ତୀଖଣ୍ଡ ଯଦି ହାତଛଡ଼ା ହୋଇଯାଏ, ତେବେ ତ ମୋର ସର୍ବନାଶ ।"

"ମ୍ୟାରୁଲେ ଏଥିରେ ସଂପୃକ୍ତ ବୋଲି ମନେ କରୁନାହିଁ । ତାଙ୍କ ବିଷୟରେ ଯେ ଅନୁସନ୍ଧାନ କରୁଥିଲେ, ସେ ତ ରାଜ୍ୟ ସରକାରର କର୍ମଚାରୀ ନୁହନ୍ତି—ସେ କେନ୍ଦ୍ର ସରକାର, ଫେଡ଼େରାଲ୍ ଗଭର୍ଣ୍ଣମେଣ୍ଟ୍ ପକ୍ଷରୁ, ଜଷ୍ଟିସ୍ ଡିପାର୍ଟମେଣ୍ଟରୁ ଆସିଥିଲେ । ତାଙ୍କ ପରିଚୟ ପତ୍ର ଦେଖିବାକୁ ଚାହିଁଲ ନାହିଁ କାହିଁକି ?"

"ସେତେବେଳେ ମୁଁ ପ୍ରୟୋଜନ ମନେ କରି ନ ଥିଲି । ସେ ତାଙ୍କ ପରିଚୟ ପତ୍ର ମୋ ଆଗରେ ମେଲାଇଲେ ଯେ ମୁଁ ଦେଖିଲି ନାହିଁ ।"

"ଉହୁଁ, ନ ଦେଖିଲ କାହିଁକି ? ଏସବୁ ସ୍ଥଳେ ଅନୁସନ୍ଧାନକାରୀର ପରିଚୟ ପତ୍ର ପ୍ରଥମେ ଦେଖିବା ଦରକାର ।"

"ବର୍ତ୍ତମାନ ଯେଉଁ ପରିସ୍ଥିତି, ସେଥିରେ ଆପଣ ସହର ଛାଡ଼ି ଯିବା ବୋଧହୁଏ ଉଚିତ ହେବ ନାହିଁ ।"

"ଓଃ, ସେଥିରେ କିଛି କ୍ଷତି ନାହିଁ । ଜୁଲାଇ ୪ ତାରିଖ ମୁଣ୍ଡରେ ହଲିଡ଼େ ଛୁଟିରେ ବିଶେଷ କିଛି ଘଟଣା ଘଟିବାର ସମ୍ଭାବନା ନାହିଁ । ଜାଣ ତ, ଜାପାନୀମାନେ ହଲିଡ଼େ ଛୁଟିରେ ହିଁ ପର୍ଲ ହାର୍‌ବର୍ ଉପରେ ଆକ୍ରମଣ କରିଥିଲେ । ସେମାନେ ଜାଣିଥିଲେ, ଛୁଟି ବେଳେ କେହି କର୍ମକ୍ଷେତ୍ରରେ ରହିବେ ନାହିଁ ।"

"ମୋର ମନେ ହେଉଛି, ଛୁଟିରେ ମେଘଙ୍କୁ ବାହାରକୁ ଯିବାକୁ ଆଡ଼େ ବୁଲାଇ ନିଅନ୍ତି ।"

"ହୁଏତ ପରେ ତୁମକୁ ସେ ସୁଯୋଗ ମିଳିବ । ମୁଁ ଚାହେଁ, ତୁମେ ତୁମ ମସ୍ତିଷ୍କ ଖଟାଇ, ଡାକ୍ତର ଟେଲର୍ କେଉଁଠି ଅଛି ବାହାର କରିବାକୁ ଚେଷ୍ଟା କର ।"

"କାହିଁକି ? ତାକୁ ବାହାର କରିବା କ'ଣ ଏତେ ପ୍ରୟୋଜନ ?"

"ଖୁବ୍ ପ୍ରୟୋଜନ । କିନ୍ତୁ କାହିଁକି ପ୍ରୟୋଜନ ସେ କଥା ମୁଁ ଆଜି ଖୋଲି ପାରିବିନାହିଁ ।"

"ମୋର ଖୁବ୍ ମନ ହେଉଛି, ତା'କୁ ଖୋଜି ବାହାର କରିବାକୁ ।"

"ଶୁଣ, ଯଦି ଡାକ୍ତରକୁ ତୁମେ ଖୋଜି ବାହାର କର, ତେବେ ହୁଏତ, ତୁମର ଏ ଶୃଙ୍ଖଳରେ ବାନ୍ଧି ହୋଇ ରହିବା ଆଉ ପ୍ରୟୋଜନ ହେବ ନାହିଁ ।"

"ଏପରି ଯେବେ କଥା, ତେବେ ମୁଁ ନିଶ୍ଚୟ ଚେଷ୍ଟା କରିବି, ଆଜ୍ଞା !"

"ହିଁ, ଏଇ ହେଉଛି ମଣିଷପଣିଆ, ଏଥାନ୍ ! ମୋର ପୂର୍ଣ୍ଣ ବିଶ୍ୱାସ, ତୁମେ ତା'କୁ ପାଇବ । ଆଉ, ପାଇବା ମାତ୍ରେ ମୋତେ ଖବର ଦେବ—ଦିନରେ ହେଉ ବା ରାତିରେ ହେଉ—ସମୟ ଅସମୟର ବିଚାର କରିବ ନାହିଁ ।"

—*—

## ତ୍ରୟୋଦଶ ପରିଚ୍ଛେଦ

ବିଶ୍ବରବାକୁ ବେଳ ମିଳୁନାହିଁ ବୋଲି ଯେଉଁମାନେ କହନ୍ତି ତାଙ୍କ କଥା ଶୁଣି ମୁଁ ବିସ୍ମିତ ହୁଏ । ମୁଁ ନିଜେ ଏକା ସମୟରେ ଦୁଇଟା ଚିନ୍ତା କରିପାରେ, ଗୋଟାକ ଉପରେ ଆଉ ଗୋଟେ । ପରିବାପବ ଓଜନ କଲାବେଳେ, ଧନବେଲେ ଗରାଖଙ୍କ ସଂଗେ ଆଳାପ ଓ କାରବାର କରି କଟାଇଲାବେଳେ, ରାତିରେ ମେଗିଙ୍କ ସଙ୍ଗେ ପ୍ରେମ କଲାବେଳେ, ବା କଳ ଲଗାଇଲା ବେଳେ, ପିଲାଙ୍କୁ ସମ୍ଭାଳିବାବେଳେ—ମୁଁ ଦେଖେଁ, ଏ ସବୁ କାମ କଲାବେଳେ, ଏ ସବୁବିଷୟରେ ଚିନ୍ତା ଓ ବିଶ୍ବର ଚାଲିଥିଲାବେଳେ, ସ୍ବା ଉପରେ ଗୋଟାଏ ଦ୍ୱିତୀୟ ଚିନ୍ତାଧାରା ମୋ ମସ୍ତିଷ୍କରେ ଅନବରତ ଚାଲିଥାଏ—ଏ ସବୁ କାର୍ଯ୍ୟରେ, ମୋର ଦ୍ୱିତୀୟ ଚିନ୍ତାସ୍ରୋତ ବା ଚିନ୍ତା-ସ୍ତରର କଳ୍ପନାଜଳ୍ପନା ଅବ୍ୟାହତ ରହିଥାଏ । ମୋର ବିଶ୍ବାସ, ସମସ୍ତଙ୍କର ଏପରି ହେଉଥିବ, ଅନ୍ତତଃ ସମସ୍ତଙ୍କର ଏପରି ହେବା ସମ୍ପୂର୍ଣ୍ଣ ସମ୍ଭବ । ହୁଏତ, ଯେଉଁମାନେ ବିଶ୍ବରବାକୁ ବା ଚିନ୍ତାକରିବାକୁ ସମୟ ନାହିଁ ବୋଲି କହନ୍ତି, ସେମାନଙ୍କର ପ୍ରକୃତରେ ଚିନ୍ତା କରିବାକୁ ମନ ନ ଥାଏ ।

ମୁଁ ଯେଉଁ ଅପରିଚିତ, ମାପଚୁପ୍ ନ ହୋଇଥିବା ରାଜ୍ୟ ଭିତରେ ଏବେ ପଶିଛି, ସେଥିରେ ଚିନ୍ତା ନ କରିବାକୁ ମୋର ଉପାୟ ନାହିଁ । କେଉଁ ପ୍ରଶ୍ନ ମନ ଭିତରେ ଭୁଲୁକା ମାରି ଉଠୁଛି, ସେଥିପ୍ରତି ଧ୍ୟାନ ନ ଦେଲେ ନଚଳେ । ମୋ ପକ୍ଷରେ ଏ ରାଜ୍ୟ ଅତି ନୂଆ ହୋଇଥିବାରୁ, ଏଭଳି କେତେ ସମସ୍ୟା ମୋ ମୁଣ୍ଡକୁ ଘାରି ଦେଉଛି, ଯାହାକୁ କି ଏ ରାଜ୍ୟର ପୁରୁଣା ଅଧିବାସୀମାନେ ତାଙ୍କ ପିଲାଦିନେ ସମାଧାନ କରିସାରି, ଅଧିକ ଚିନ୍ତାର ଅଯୋଗ୍ୟ ବୋଲି ଆଡ଼େଇ ଫୋପାଡ଼ି ଦେଇଛନ୍ତି ।

ମୁଁ ବିଚାରିଥିଲି, ଏପରି ଗୋଟାଏ କର୍ମ-ପ୍ରକ୍ରିୟା ଆରମ୍ଭ କରିବି, ଯାହାକୁ କି ପ୍ରତି ପଦରେ ମୁଁ ନିୟନ୍ତ୍ରଣ କରି ପାରିବି —ଯେତେବେଳେ ମନ ହେବ, ଏ ପ୍ରକ୍ରିୟାକୁ ଏକାବେଳକେ ରୋକିଦେଇ ବି ପାରିବି । ଏବେ କିନ୍ତୁ ଭଲଭାବେ ହୃଦୟଙ୍ଗମ କଲିଣି, ଓ ହୃଦୟଙ୍ଗମ କରି ତ୍ରସ୍ତ ହେଲିଣି ଯେ, ପ୍ରକ୍ରିୟାଟା ଆରମ୍ଭ କରି ଦେଲା ପରେ ତାହା ସ୍ୱୟଂକ୍ରିୟ ହୋଇ-ପଡ଼ୁଛି, ତାହାର ସତେ ଯେପରି ଗୋଟାଏ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ସ୍ୱତଃ ଅଙ୍କୁରି ଉଠିଛି । ପ୍ରକ୍ରିୟାର ସୃଷ୍ଟି ଯେ କରିଥିଲା, ତାହାର ଇଚ୍ଛା ଅନିଚ୍ଛାକୁ ଭ୍ରୂକ୍ଷେପ ନକରି ନିଜର ପନ୍ଥାରେ ଆଗେଇ ଚାଲିଛି ନିର୍ଦ୍ଦିଷ୍ଟ ଲକ୍ଷ୍ୟର ଅଭିମୁଖରେ । ଏବେ ଆଉ ଗୋଟାଏ ଚିନ୍ତା ଆସି ମୁଣ୍ଡକୁ ବିବ୍ରତ କଲାଣି । ଏ ଯେଉଁ ପ୍ରକ୍ରିୟା ସୃଷ୍ଟି କରିବା କଥା କହିଲି, ସତେ କ'ଣ ତାକୁ ମୁଁ ସୃଷ୍ଟି କରିଛି, ନା ତାହା ସ୍ୱତଃ ସୃଷ୍ଟ ହେଲା ? ସେତେବେଳେ ମୁଁ ହୁଏତ ତାକୁ ରୋକି ପାରିଥାନ୍ତି, ନ ରୋକି ତା'ର ଗତିପଥରେ ତା'କୁ ଯିବାକୁ ଦେଇଛି ମାତ୍ର, କିନ୍ତୁ ପ୍ରକୃତରେ ମୁଁ ଏ ପ୍ରକ୍ରିୟାକୁ—ଏକାର୍ଯ୍ୟକ୍ରମକୁ ସୃଷ୍ଟିକରି ନାହିଁ; ଏହା ସୃଷ୍ଟି ହୋଇ ନିଜ ପଥରେ ଆଗେଇ ଗଲା ବେଳେ ମୁଁ ଯେ ତାକୁ ରୋକିନାହିଁ ମୋର ଦାୟିତ୍ୱ ସେତିକି ମାତ୍ର ; ହୁଏତ ଦୋଷ ସେଇଠି । ଏଇ ଦୋଷ କରିବାରେ ହିଁ ମୋର କର୍ତ୍ତୃତ୍ୱ । ପ୍ରଥମେ ହୁଏତ ମୁଁ ଏ ପ୍ରକ୍ରିୟାକୁ ଚଳାଇ ଦେଇଥିଲି, ଏବେ ତା' ଗତିରେ ସେ ମୋତେ ଘୋଷାରି ନେଉଛି—ଚାଳକ ହୋଇ ଯାଇଛି ଚାଳିତ । ପ୍ରକ୍ରିୟାଟା ଲମ୍ବା ରାସ୍ତା ଧରି ଆଗେଇ ଚାଲିଛି—ଆଗରେ ଦୋବାଟି ନାହିଁ କି ଚଉମୁହାଣି ନାହିଁ, ତା'ର ଗତିକୁ ରୋକି-ବାକୁ—ଇଚ୍ଛା ଅନିଚ୍ଛା, ପସନ୍ଦ ଅପସନ୍ଦର ପ୍ରଶ୍ନ ଆଉ ଉଠୁନାହିଁ ।

ସେ ପ୍ରଶ୍ନର ବେଳ ଥିଲା, ଏ ପ୍ରକ୍ରିୟାର ସର୍ବପ୍ରଥମ ମୂଲ୍ୟ-ନିରୂ-ପଣ ବେଳେ, ଏ ପ୍ରକ୍ରିୟାକୁ ପ୍ରଥମେ ଗତି କରିବାକୁ ଦେବା ବେଳେ । ସେତିକି ବେଳେ ଏହା ମାତିସମ୍ମତ କି ନୁହେଁ ବିଚାର କରାହୋଇଥାନ୍ତା । ନୈତିକ ଆଚାର-ବିଚାରର ପ୍ରକୃତ ସ୍ୱରୂପ କ'ଣ ? ଏ ସବୁ ଖାଲି ଗୁଡ଼ାଏ ଫମ୍ପା ଶବ୍ଦସମୁଚ୍ଚୟ ନା ଆଉ କିଛି ? ମୋ ପିତାଙ୍କର ଦୁର୍ବଳତା ବୋଲି ମୁଁ ଯାହା ନିର୍ଣ୍ଣୟ କଲି, ତାହା କ'ଣ ମୋ ପକ୍ଷରେ ଠିକ୍ ହୋଇଛି ? ତାଙ୍କର ଥିଲା ଉଦାର ହୃଦୟ—ସେ ବିଚାରି ଥିଲେ, ଅନ୍ୟମାନଙ୍କର ବି ତାଙ୍କରି ପରି ଉଦାର ହୃଦୟ । ଏଭଳି ବିଚାରିବାରେ ଯେଉଁ ଭୁଲ ହୋଇ

ଗଲା, ସେଇ କ'ଣ ତାଙ୍କର ଦୁର୍ବଳତା ? ସେ ଯେଉଁମାନଙ୍କ ଉଦାରତାରେ ନିର୍ଭର କରୁଥିଲେ, ସେମାନଙ୍କର ବିଚାରଧାରା ସ୍ୱତନ୍ତ୍ର । ସେମାନେ ଭାବିଲେ, ମୋ ପିତାଙ୍କ ରାସ୍ତାରେ ଗାତ ଖୋଳିଦେବା ସେମାନଙ୍କର ବ୍ୟବସାୟ-ବୁଦ୍ଧିର ପରିଚାୟକ । ସେମାନେ ନିଜ ବିବେକକୁ ଆଶ୍ୱାସନା ଦେଲେ ଯେ, ସେମାନେ ନିଜେ ମୋ ପିତାଙ୍କୁ ଗାତକୁ ଠେଲି ନାହାନ୍ତି । ସେ ଯାଉ ଯାଉ ଆପେ ଗାତରେ ପଡ଼ିଲେ । ପଡ଼ିସାରିବା ପରେ ତାଙ୍କୁ ଲଙ୍ଗଳାମୁକୁଳା କରି ତାଙ୍କ ଲୁଗାପଟା ଲୁଟି କରି ନେଇଯିବା କ'ଣ ନୀତି-ଗର୍ହିତ ? ଆପାତତଃ ନୁହେଁ ; କାରଣ, ଗାତରେ ପଡ଼ିବା ଲୋକର ଲୁଗାପଟାରେ ଆଉ କି ପ୍ରୟୋଜନ ?

ସେ ତ ପୁରୁଣା କଥା । ଏବେ ନଉ-ବେ'ଠାଉନ ଚାରିପଟେ ଆସ୍ତେ ଆସ୍ତେ, ବୁଝିବିଚାରି, ଗୋଟାଏ ଜାଲ ଘେରିଆ ହେଉଛି । ଆଉ, ଏକାମ ଆରମ୍ଭ କରିଛନ୍ତି ସମାଜରେ ସମ୍ଭ୍ରାନ୍ତ ବୋଲି ପ୍ରତିଷ୍ଠା ଅର୍ଜିଥିଲା ଲୋକେ । ଯଦି ତାଙ୍କ ଫନ୍ଦି ସଫଳ ହୁଏ, ତେବେ ତାଙ୍କୁ କେହି ଅସାଧୁ ବୋଲି ନିନ୍ଦା ନ କରି, ଚଳାକ ଚତୁର ବୋଲି ବହୁମାନ ଦେବେ । ପୁଣି, ଏହି କାର୍ଯ୍ୟକ୍ରମରେ, ପୂର୍ବରୁ ଜଣା ପଡ଼ି ନ ଥିବା କୌଣସି ଜଟିଳତା ବା କୁଟିଳତା ଯଦି ପଶିଯାଏ, ତେବେ କ'ଣ ଏ କାର୍ଯ୍ୟକ୍ରମର ପ୍ରବର୍ତ୍ତକମାନେ ଅସତ୍ ଓ ଦୁର୍ନୀତିପରାୟଣ ବୋଲି ନିନ୍ଦା ପାଇବେ ? ମୁଁ ମନେ କରୁଛି, ମୋଟ କାର୍ଯ୍ୟକ୍ରମ, ଶେଷରେ ସଫଳ ହେଲା କି ବିଫଳ ହେଲା, ତା'ରି ଉପରେ ନିନ୍ଦା ବା ପ୍ରଶଂସା ନିର୍ଭର କରିବ । ସଂସାରର ଅଧିକାଂଶ ବିଚାରରେ, ଅଭୀଷ୍ଟ ସିଦ୍ଧି ହେଲେ ହେଲା—ସେଥିରେ ଦୋଷ ଦୁର୍ଗୁଣ ପ୍ରବର୍ତ୍ତିବ ନାହିଁ । ମୋର ମନେ ଅଛି, ମହାଯୁଦ୍ଧର ପ୍ରଥମାବସ୍ଥାରେ, ଯେତେବେଳେ ହିଟଲର୍‌ଙ୍କ ଅଭିଯାନ ଅପ୍ରତିହତ ଭାବେ ବିଜୟ-ଉଲ୍ଲାସରେ ଆଗେଇ ଥାଏ, ସେତେବେଳେ ଅନେକ ସମ୍ଭ୍ରାନ୍ତ ଓ ନୀତିବାନ୍ ଲୋକ ହିଟଲର୍‌ଙ୍କ କଥା ଓ କାର୍ଯ୍ୟରେ ଗୁଣ ଆବିଷ୍କାର କରିବାରେ ଲାଗିଥାନ୍ତି । ମୁସୋଲିନୀଙ୍କ ଅମଳରେ ରେଲଗାଡ଼ି ସବୁ ଯଥାସମୟରେ ଚାଲିଲା ବୋଲି ମୁସୋଲିନୀ ପ୍ରଶଂସିତ ହେଉଥାନ୍ତି ; ଭିଚି (ଫ୍ରାନ୍‌ସ)ର ପେତେଁ-ପରିଚାଳିତ ସରକାର ଫ୍ରାନ୍‌ସର ହିତଦୃଷ୍ଟିରେ ହିଟ୍‌ଲର୍‌ଙ୍କ ପକ୍ଷ ଧରିବା କଥା କୁହା ଯାଉଥାଏ । ସେହିପରି ଷ୍ଟାଲିନ୍‌ଙ୍କର ପ୍ରଭାବ ଓ କ୍ଷମତାର ଝଲକରେ ତାଙ୍କ ଦୋଷ ଦୁର୍ଗୁଣ

ଛପି ଯାଇଥିଲି । କାର୍ଯ୍ୟରେ ସଫଳତା, ବଳ ଓ କ୍ଷମତା—ଯୁଦ୍ଧ ଆଗରେ ନୈତିକ ଆଗ୍ରହ ବିଷୟର ନିଷ୍ପ୍ରଭ ହୋଇଯାଏ, ସମାଲୋଚନାର ଦାନ୍ତ ମରିଯାଏ । ତୁମେ କ'ଣ କରୁଛ ସେଥିରେ ବିଶେଷ କିଛି ଯାଏ ଆସେନାହିଁ ବୋଲି ମୋର ମନେହୁଏ—ଅସଲ କଥା, ଯାହା କରୁଛ ତା'କୁ କେମିତି କରୁଛ, ସେଥିରେ ଜିଣୁଛ ନା ହାରୁଛ—ତା'ରି ଉପରେ ନିନ୍ଦା ଓ ପ୍ରଶଂସା ନିର୍ଭର କରେ । କୌଣସି ମନୁଷ୍ୟଗୋଷ୍ଠୀର ଏଭଳି ନିରପେକ୍ଷ ଶୁଦ୍ଧ ମାନ୍ତ-ବିଗ୍ରହ ଥିଲି ପରି ମନେ ହୁଏ ନାହିଁ, ଯାହାକି ଜୟ ପରାଜୟ, ଓ ସଫଳତା ବିଫଳତା ନିର୍ବିଶେଷରେ, ଦୋଷ ଗୁଣ ନିର୍ଣ୍ଣୟ କରୁଛି । ଯେ ହାରୁଛି; ଦଣ୍ଡବ୍ୟବସ୍ଥା କେବଳ ତା'ରି ପାଇଁ । ବାସ୍ତବ କ୍ଷେତ୍ରରେ,ଦୋଷୀ ଯଦି ଧରା ନ ପଡ଼ିଲା, ତେବେ ଦୋଷ ହୋଇଛି ବୋଲି ସ୍ୱୀକାର ବି କରା ଯାଉନାହିଁ । ବର୍ତ୍ତମାନ ନିଉ-ବେ'ଟାଉନ୍‌ରେ ଯେଉଁ କାର୍ଯ୍ୟ-ପ୍ରକ୍ରିୟାର ସୂତ୍ରପାତ ହୋଇଛି, ତା'ଫଳରେ ଅବଶ୍ୟ କେତେକଙ୍କ ଦେହରେ ଘାଉଜ଼ ହେବ, ଆଉ କେତେକଙ୍କର ସର୍ବନାଶ ହୋଇପାରେ ; କିନ୍ତୁ ମାନ୍ତ ଅମାନ୍ତ, ନିନ୍ଦା ପ୍ରଶଂସାର ଯେଉଁ ପରଂପରା ସର୍ବତ୍ର ଚାଲିଛି ତାହାର ଯୁଦ୍ଧ ଦ୍ୱାରା କୌଣସି କ୍ଷତିବୃଦ୍ଧି ହେବନାହିଁ ।

ଏସବୁ ବିଷୟ ମୋ ବିବେକରେ ଯେ ଦ୍ୱନ୍ଦ୍ୱ ଚାଲିଛି ତା' ନୁହେଁ । ସଂସାର-ଚକ୍ରର ଗତି ଓ ପ୍ରକ୍ରିୟା ନିରୂପଣ କରି ତାହା ଠିକ୍ ବୋଲି ଗ୍ରହଣ କରି ସାରିଲି ପରେ, ନିଜର ଗତିପଥ ପରିଷ୍କାର ଦିଶି ଯାଉଛି ; କି ଅବସ୍ଥାରେ କୋଉ ଆଡ଼ୁ ବିପଦ ଆସିପାରେ ଆଗରୁ ଜଣା ପଡ଼ିବାରୁ ସେ ଦିଗରେ ସାବଧାନ ରହିବାକୁ ଅବସର ବି ମିଳୁଛି । ସବୁଠାରୁ ବିଚିତ୍ର କଥା, କର୍ମପ୍ରକ୍ରିୟା ସ୍ୱୟଂ-କ୍ରିୟ ଭାବେ, ଏସବୁ ବିଷୟ ଓ ସାବଧାନତା ଅବଲମ୍ବନ କରି କରି ଆଗେଇ ଚାଲିଛି ; ଗୋଟିଏ କାର୍ଯ୍ୟକ୍ରମରୁ ଆଉ ଗୋଟିଏ ଆପେ ଆପେ ବାହାରୁଛି, ଓ ସମସ୍ତେ ମିଶି ଏକଲକ୍ଷ୍ୟରେ ଧାଇଁ-ଛନ୍ତି । ମୁଁ ଏ ପ୍ରକ୍ରିୟାର ଗତିକୁ ଲକ୍ଷ୍ୟ ମାତ୍ର କରି ରହିଛି ଓ ନିତାନ୍ତ ଦରକାର ବେଳେ, ଟିକିଏ ହାତ ମାରି ପ୍ରକ୍ରିୟାଟାକୁ ଆଗେଇ ଦେଉଛି ।

ମୁଁ ଯାହା କଲିଣି ଓ ଆଗରେ କରିବି ବୋଲି କଳ୍ପନା କରିଛି, ତାହା ମୋ' ପ୍ରକୃତିର ପ୍ରତିକୂଳ ବୋଲି ମୂଳରୁ ଜାଣି ଶୁଣି କରିଛି ଓ କରୁଛି । ତେବେ କରୁଛି କାହିଁକି ? ମୁଁ ବୁଝିଛି, ତେଜା ଘୋଡ଼ାରେ

ଚଢ଼ିବାକୁ ହେଲେ ପା-ଦାନ ଯେପରି ଦରକାର, ସଂସାରରେ ସ୍ଥିତି ରକ୍ଷିବାକୁ ହେଲେ, ମୁଁ ଯାହା କରୁଛି ତାହା ସେହିପରି ପ୍ରୟୋଜନ । ଘୋଡ଼ା ଉପରକୁ ଉଠି ସାରିଲା ପରେ ପା-ଦାନର ଆଉ ପ୍ରୟୋଜନ ପଡ଼ିବ ନାହିଁ; ସଂସାରରେ ନିଜର ଆସ୍ଥାନ ଜମାଇ ସାରିଲା ପରେ, ଏବେ ଯେଉଁ କାର୍ଯ୍ୟ-ପ୍ରକ୍ରିୟା ଧରିଛି, ସେଭଳି ପ୍ରକ୍ରିୟା ନିଷ୍ପ୍ରୟୋଜନ ହୋଇଯିବ । ହୁଏତ ଯେଉଁ ପ୍ରକ୍ରିୟା ଏବେ ଚାଲିଛି, ତାକୁ ମଝିରେ ରୋକିବା ସମ୍ଭବ ନ ହୋଇପାରେ; କିନ୍ତୁ ଏଭଳି ନୂଆ ପ୍ରକ୍ରିୟା ଯେ ଆଉ ଆରମ୍ଭ କରିବିନାହିଁ ସେଥିରେ ମୋର କୌଣସି ସନ୍ଦେହ ନାହିଁ । ଏହି ନିରାନନ୍ଦ, ଭୟାନକ ଭୂମିରେ ନାଗରିକ ଭାବେ ପ୍ରତିଷ୍ଠା ଅର୍ଜିବା ମୋର ଲୋଡ଼ା ନାହିଁ କି ଇଚ୍ଛା ବି ନାହିଁ । ଆସନ୍ତା ଜୁଲାଇ ୭ ତାରିଖରେ ଯେଉଁ ଦୁର୍ଦ୍ଦଶା ଘଟିବାକୁ ଯାଉଛି ସେଥିରେ ମୋର ହାତ ନାହିଁ । ଏହା ମୋ ପ୍ରକ୍ରିୟାର ପରିଣତି ନୁହେଁ । ତେବେ ଏହାର ଭବିଷ୍ୟତ ଫଳାଫଳ କଳନା କରି ତଦନୁସାରେ ମୋତେ ବାଟ କାଟିବାକୁ ପଡ଼ିବ ।

ମଣିଷର ମନର ଚିନ୍ତା ମୁହଁର ରେଖାରେ ପ୍ରକଟିତ ହୁଏ ଓ ଆଖିବାଟେ ଆତ୍ମାର ସ୍ୱରୂପ ଦିଶେ, ଏହା ଗୋଟାଏ ପୁରୁଣା ବିଶ୍ୱାସ । କିନ୍ତୁ ଏଥିରେ ଯେ ସତ୍ୟତା ନାହିଁ ତାହା ଅନେକ କ୍ଷେତ୍ରରେ ପ୍ରମାଣିତ ହୋଇ ଯାଇଛି । କେବଳ ରୋଗର ଆଭାସ ମୁହଁରେ ଦିଶେ; ନୈରାଶ୍ୟ ଓ ବ୍ୟର୍ଥତା ମଧ୍ୟ ମୁହଁରେ ପ୍ରକଟିତ ହୁଏ, କିନ୍ତୁ ଏ ଦୁଇଟା ତ ଗୋଟିଏ ଭିନ୍ନ ପର୍ଯ୍ୟାୟର ରୋଗ ମାତ୍ର । ଅଳ୍ପ କେତେ ଜଣ ଅଛନ୍ତି, ଯେଉଁମାନେ ଅନ୍ୟର ଅନ୍ତରର କଥା ନିଜ ମନରେ ଅନୁଭବ କରି ପାରନ୍ତି; ଅନ୍ୟର ମନରେ ଭାବାନ୍ତର ବାରି ପାରନ୍ତି, ଅବା ଅନ୍ୟର ମନର ଗୁପ୍ତ ସଙ୍କେତ ଠଉରାଇ ପାରନ୍ତି । ମୋର ମନେହୁଏ, ମୋ ମେଷ୍ଟ୍ରୀ ମୋ ମନର ଭାବାନ୍ତର ଅନୁଭବ କରିଥିଲେ, କିନ୍ତୁ କାରଣ ନିର୍ଣ୍ଣୟ କରିବାରେ ତାଙ୍କର ଭୁଲ ହୋଇଗଲା । ମୋର ବିଶ୍ୱାସ, ମାଗି ୟୁଙ୍ଗ୍-ହାଣ୍ଟ୍ ମୋ ମନର କଥା ଠିକ୍ ଠଉରାଇଛି—କିନ୍ତୁ ସେ ତ ଯାଦୁକରୀ । ଯାଦୁକରୀର ମାୟା ମଣିଷକୁ ବିବ୍ରତ କରି ପକାଏ । ମୋର ମନେହୁଏ, ଯାଦୁବିଦ୍ୟା ସାଙ୍ଗକୁ ତା'ର ବୁଦ୍ଧି ବିଚକ୍ଷଣତା ବି ଅଛି—ସେ ତ ଆହୁରି ଉଦ୍‌ବେଗର କାରଣ ।

ମୁଁ ଆଗରୁ ଠିକ୍ ଠଉରାଇଛି, ମିଷ୍ଟର୍ ବେକର୍ ନିଶ୍ଚୟ ଛୁଟିରେ ସ୍ଥାନାନ୍ତର ଯିବେ; ସମ୍ଭବତଃ ଜୁଲାଇ ୪ ପୂର୍ବର ସପ୍ତାହାନ୍ତ ଛୁଟି ଆଗରୁ, ଶୁକ୍ରବାର ଓପରଓଳି । ଆମ ସହରରେ ଘଟିବାକୁ ଯେଉଁ ରାଜମାତିକ ଝଡ଼ର ସୂତ୍ରପାତ ହୋଇଛି, ତା'ର ପ୍ରଭାବ ଆସନ୍ତା ନିର୍ବାଚନ ଉପରେ ପଡ଼ିବାକୁ ହେଲେ, ଝଡ଼ଟା ଶୁକ୍ରବାର ବା ଶନିବାରରେ ଘଟିବା ଦରକାର । ଝଡ଼ର ଚୋଡ଼ ସହରକୁ ଝାଙ୍କି ଦେଲାବେଳେ ମିଷ୍ଟର୍ ବେକର୍ ଯେ ଉକ୍ତସ୍ଥାନରେ ଅନୁପସ୍ଥିତ ରହିବେ, ଏକଥା ଯୁକ୍ତିଯୁକ୍ତ ବୋଧ ହେଉଛି । ଅତୀତ ଭବିଷ୍ୟତର କଳ୍ପନା କରି ମୁଁ ଏ ଅନୁମାନ କରୁଛି; ଠିକ୍ ହୋଇପାରେ ବା ନ ହୋଇ ପାରେ । କିନ୍ତୁ ମିଷ୍ଟର୍ ବେକର୍ ଯଦି ଶୁକ୍ରବାର ବା ତା ପୂର୍ବରୁ ଗୁରୁବାର ରାତିରେ ବାହାରି-ଯାଆନ୍ତି, ତେବେ ତ ଗୁରୁବାରରେ କେତେଗୁଡ଼ାଏ କାମ କରିବା ଦରକାର ପଡ଼ିବ । ଶନିବାର ପାଇଁ ମୁ ଯେଉଁ ପରିକଳ୍ପନା କରିଛି ତାହା ଏତେ ସହଜସାଧ୍ୟ ଯେ ମୁଁ ସ୍ୱପ୍ନରେ ସୁଦ୍ଧା ଏହାର ପୂର୍ବାଭିନୟ କରି ପାରୁଛି । ଏ ବିଷୟରେ ମୋର ଯେଉଁ ଭୟ ଟିକିଏ ହେଉଛି ତାହା ବିଶେଷ କିଛି ନୁହେଁ । ଅଭିନୟ-ମଞ୍ଚକୁ ଗଲାବେଳେ ଅଭିନେତାଙ୍କ ଚିତ୍ତ ଯେଉଁଭଳି ଦୁରୁଦୁରୁ ହୁଏ, ଏହା ଠିକ୍ ସେହିପରି ସାମାନ୍ୟ ଦୁରୁଦୁରୁ ମାତ୍ର ।

ଜୁନ୍ ୨୭ ତାରିଖ ସୋମବାର ଦିନ, ମୁଁ ଦୋକାନ ଖୋଲିବା ପରେ ପରେ ମ୍ୟାରୁଲେ ଆସି ପହଞ୍ଚିଲେ । ସେ ଦୋକାନ ଭିତର ଯାକ ବୁଲିଗଲେ ; ଅପରିଚିତ ଲୋକ ଭଳି ବିଜୟରେ ଥାକମାନଙ୍କୁ, ଟଙ୍କା ବାକ୍ସକୁ ଥଣ୍ଡା-କାମରାକୁ ଚାହୁଁଥାନ୍ତି । ଦୋକାନରେ ବୁଲି ସେ ଗୋଦାମ ଘରକୁ ଗଲେ ଓ ସେହିପରି ଆଖି ବୁଲାଇଲେ । ତାଙ୍କ ଚେହେରାରୁ ଜଣା-ଯାଉଥିଲା, ସତେ ଯେପରି ସେ ଏ ସ୍ଥାନ ଆଜି ସର୍ବପ୍ରଥମେ ଦେଖୁଛନ୍ତି ।

ମୁଁ ପଚାରିଲି, " ଜୁଲାଇ ୪ ତାରିଖ ବେଳକୁ କ'ଣ କୁଆଡ଼େ ବୁଲି ଯାଉଛନ୍ତି ?"

"ଯୁ। ପଚାରିଲି କାହିଁକି ?"

"ଏଥିରେ ଆଉ କାହିଁକି କ'ଣ ? ଯାହାଙ୍କର ସମ୍ବଳ ଅଛି ସେମାନେ ପ୍ରତ୍ୟେକେ ତ ଯାଉଛନ୍ତି ।"

"ଓଃ ! କିନ୍ତୁ ମୁଁ ଯିବି କୁଆଡ଼େ ?"

"ଅନ୍ୟମାନେ ଯୁଆଡ଼େ ଯାଉଛନ୍ତି । କ୍ୟାଟ୍‌ସ୍‌କିଲ୍ ପର୍ବତମାଳାକୁ ଯାଇ ପାରନ୍ତି; ମଣ୍ଟାକ୍‌ରେ ଯାଇ ବନ୍‌ଶୀ ଖେଳି ପାରନ୍ତି । ଶୁଣୁଛି, ଟୁ୍ୟନା ମାଛର ଦଳ ଚଗ୍ କରୁଛନ୍ତି ।"

୩୦-ପାଉଣ୍ଡିଆ ଟୁ୍ୟନା ମାଛଟାଏ ବନ୍‌ଶୀ ଥୋପ ଗିଳି ଛଟଛଟ ହେଉଥିବ, ଉପରେ ବନ୍‌ଶୀ ଧରି ତା'କୁ ଖେଳେଇ ଖେଳେଇ ପାଣିରୁ ଆଣିବାର ଯେଉଁ ପରିଶ୍ରମ, ସେ କଥା ବୋଧହୁଏ କଳ୍ପନା କରିଦେବାମାତ୍ରେ ତାଙ୍କ କହୁଣିରେ ଗଣ୍ଠିବାତର ଯନ୍ତ୍ରଣା ଆରମ୍ଭ ହୋଇଗଲା । ସେ ହାତକୁ ସିଧାକରି ହଠାତ୍ ସୁଙ୍ଗାଡ଼ି ଦେଲେ ।

କେବେ ଇଟାଲି ଯାଉଛ ପଚାରିଦେବାକୁ ମୋ ତୁଣ୍ଡକୁ ଆସି ଯାଇଥିଲା; ଏ ପ୍ରଶ୍ନ କରିଦେଲେ, ମାତ୍ରା ବଢ଼ିଯିବ ବୋଲି କଥା ରୋକିଦେଲି । ତା' ପରିବର୍ତ୍ତେ ମୁଁ ତାଙ୍କର ନିକଟକୁ ଯାଇ, ଆସ୍ତେ ତାଙ୍କ ଡାହାଣ ହାତର କହୁଣିରେ ହାତ ଦେଇ କହିଲି, "ଆଲ୍‌ଫିଓ, ଆପଣ ଦେହକୁ ଏପରି ହେଳା କାହିଁକି କରୁଛନ୍ତି ? ନିୟୁୟର୍କ ଯାଇ ସେଠାରେ କୌଣସି ଖ୍ୟାତନାମା ବିଶେଷଜ୍ଞଙ୍କ ସଙ୍ଗେ ପରାମର୍ଶ ନ କରୁଛନ୍ତି କିଆଁ ? ଏ ଯନ୍ତ୍ରଣାର ପ୍ରତିକାର ପାଇଁ ଔଷଧ ନିଶ୍ଚୟ ଥିବ !"

"ଔଷଧ ଅଛି ବୋଲି ମୋ'ର ବିଶ୍ୱାସ ନାହିଁ ।"

"କିନ୍ତୁ ଗଲେ କ୍ଷତି କ'ଣ ? ଯା'ନ୍ତୁ; ଚେଷ୍ଟା କରନ୍ତୁ ।"

"ତୋ'ର ମୋ ପାଇଁ ଏତେ ଚିନ୍ତା କାହିଁକି ?"

"ମୁଁ କାହିଁକି ଚିନ୍ତା କରନ୍ତି ମ ? କିନ୍ତୁ ମୁଁ ଏଠାରେ ଗୋଟାଏ ନିର୍ବୋଧ ହଳଦିଆ ଇଟାଲୀୟ ପାଖେ ଏତେ ଗୁଡ଼ାଏ ଦିନ ଚାକିରି କଲେଣି । ଗୋଟାଏ ଇଟାଲୀୟ କୁକୁର ବି ଯଦି ଏତିକି କଷ୍ଟ ପାଉଥାନ୍ତା, ତେବେ ମୋତେ କାଟନ୍ତା । ତୁମେ ଆସି ଏଠାରେ ଏପରି ହାତ ସଳଖିବାର ଥରେ ଦେଖିଲେ, ମୋତେ ଆଶ୍ୱସ୍ତ ହେବାକୁ ଅଧଘଣ୍ଟାଏ ଲାଗୁଛି ।"

"ତୁ ତେବେ ମୋତେ ଶ୍ରଦ୍ଧାକରୁ ?"

"ଲୁଚ୍ଛା କଥା, ମୁଁ ଶ୍ରଦ୍ଧାକରିବା ଗୋଟାଏ ଛଳନା । ଦରମା କିଛି ବଢ଼ିବା ପାଇଁ ଖୁସାମତ କରୁଛି ମାତ୍ର ।"

ସେ ବଳଆ କୁକୁର ପରି ଆଖି କରି ମୋ ଆଡ଼କୁ ଚାହିଁଲେ; ଆଖି ଚାରିପଟେ ନାଲିଆ ଧଡ଼ି, ଆଖିର ପୁଅ ଦୁଇଟିର ଗାଢ଼ ପିଙ୍ଗଳବର୍ଣ୍ଣ— ସବୁ ଏକ ସଙ୍ଗେ ମୋତେ ବାନ୍ଧି ଦେଉଥାଏ । କ'ଣ ଗୋଟାଏ କହିବାକୁ ଯାଉଥିଲେ; କିନ୍ତୁ ହଠାତ୍ ଭାବାନ୍ତର ଆସିବାରୁ ସେ କଥା ରୋକି କହିଲେ, "ତୁ ଗୋଟାଏ ଭଲ ଟୋକା ।"

"ମୋ ଭଲପଣିଆରେ ବିଶ୍ୱାସ ରଖ ନାହିଁ ।"

ସେ ବିହ୍ୱଳିତ ହୋଇ କହିଲେ, "ଭଲ ଟୋକା ପଟେ ।" ସାଙ୍ଗେ ସାଙ୍ଗେ ନିଜ ଭାବ ପ୍ରବଣତାରେ ବିବ୍ରତ ହୋଇ ସେ ଦୋକାନରୁ ବାହାରି ଚାଲିଗଲେ ।

ମୁଁ ଥୋଇ ଥୋଇ ହୋଇ ତଳେ ରଖା ହୋଇଥିବା ଶିମ୍ବ ଦୁଇ ପାଉଣ୍ଡ ମିସେସ୍ ଡାଭିଡ୍‌ସନ୍‌ଙ୍କ ପାଇଁ ତୁଳୁଛି, ମ୍ୟାରୁଲେ ପୁଣି ଦୁମୁଦୁମୁ ହୋଇ ଆସି ପହଞ୍ଚିଲେ; ଦୁଆର ମୁହଁରେ ଠିଆହୋଇ ବଡ଼ ପାଟିରେ ମୋତେ କହିଲେ, "ଆରେ ! ମୋ ପଣ୍ଡିଆକ୍‌ଟା ନେବୁ ।"

"ଏଁ ?"

"ରବିବାର ଓ ସୋମବାର ଦୁଇଦିନ ଗୋଟାଏ କୁଆଡ଼େ ବୁଲିଟିରେ ଯିବୁ ।"

"ମୋ'ର ସେ ସମ୍ବଳ କାହିଁ ?"

"ପିଲାଙ୍କୁ ସାଙ୍ଗରେ ନେବୁ । ମୁଁ ଗ୍ୟାରେଜ୍‌ରେ କହି ଆସିଛି, ଗାଡ଼ିଟା ତୋତେ ଦେବାକୁ ; ଟ୍ୟାଙ୍କ୍‌ରେ ପେଟ୍ରୋଲ୍ ପୂରା ଭରେଇ ହୋଇଛି ।"

"ମିନିଟିଏ ରହନ୍ତୁ, ଶୁଣନ୍ତୁ ।"

"ରଖ୍ ତୋ ଆପତ୍ତି ! ପିଲାଙ୍କୁ ନେବୁ ନିଶ୍ଚେ ।" ଲେଣ୍ଡାଏ ଛେପ ପରି ସେ ଗୋଟାଏ କ'ଣ ମୋ ଆଡ଼କୁ ଫୋପାଡ଼ ଦେଲେ ; ସେ ଆସି ପଡ଼ିଲା ଶିମ୍ବଗଦା ଭିତରେ । ସେ, ରାସ୍ତାରେ ପୁଣି ଦୁମୁ ଦୁମୁ ହୋଇ ବାହାରି ଯିବାର ମିସେସ୍ ଡାଭିଡ୍‌ସନ୍ କାବା ହୋଇ ଚାହିଁଥାନ୍ତି । ମୁଁ ଶିମ୍ବଗଦାରୁ ସାବୁଜା କାଗଜ ଗୋଟାଳିଟା ଗୋଟାଇ ଦେଖିଲି—ତିନିଟା ଶହେଟଙ୍କିଆ ନୋଟ ମୋଡ଼ି ଟାଣ ବିଣ୍ଡାଟେ ହୋଇଛି ।

"ଏ ଲେକର ହୋଇଛି କ'ଣ ?"

"ଇଟାଲୀୟ ଲୋକ, ଠିକକେ ଉତ୍ତେଜିତ ହୋଇଯାନ୍ତି ।"

"ଚଟିଯାଇ ନ ଥିଲେ, ଟଙ୍କା ଏମିତି ଫୋପାଡ଼ନ୍ତା ?"

ବାକି ସପ୍ତାହ ଯାକ ତାଙ୍କର ଦେଖାଦର୍ଶନ ନାହିଁ । ବସ୍ତୁତଃ, ମୋତେ ମଟର ଦେବା ପ୍ରସ୍ତାବଟା ଠିକ୍ ଅଛି । ପୂର୍ବେ ମୋତେ ନ କହି ସେ ସ୍ଥାନାନ୍ତର ହୁଅନ୍ତି ନାହିଁ । ଦାଣ୍ଡରେ ଠିଆ ହୋଇ ଗୋଟାଏ ଶୋଭା-ଯାତ୍ରା ଦେଖିଲା ପରି ମୋତେ ଲାଗୁଥାଏ ; ଯା' ପରେ ପୁଣି କେଉଁ ମେଢ଼ ଯିବ ଆଗରୁ ଜଣାଥାଏ ; ତଥାପି ତା'କୁ ଦେଖିବାକୁ ଉତ୍କଣ୍ଠାରେ ଅପେକ୍ଷା କଲାପରି ମୁଁ ରହିଁ ରହିଥାଏ ।

ମୁଁ ପଣ୍ଡିଆକ୍‌ଟା ପାଇବ ବୋଲି ଆଶା କରି ନ ଥିଲି । ପୂର୍ବେ ସେ କେବେ ତାଙ୍କ ଗାଡ଼ି କାହାକୁ ଦେଇନାହାନ୍ତି । ବଡ଼ିଆ ଏ କାଳର ଗତି ! କୌଣସି ଅଜ୍ଞାତ ଶକ୍ତି ଘଟଣାଚକ୍ରକୁ ଏପରି ନିୟନ୍ତ୍ରିତ କରିବାକୁ ଆରମ୍ଭ କରିଛି ଯେ, ରେଳଡବାରେ ଗାଈଙ୍କୁ ପୂରାଇଲା ବେଳେ,ସେ ଡବା ମୁହଁରେ ଥିବା ଅଡ଼ାରେ ଗାଈଗୁଡ଼ାକ ଯେପରି ଗୋଟାକ ଉପରେ ଗୋଟାଏ ମାଡ଼ି ପଡ଼ନ୍ତି ସେହିପରି ଘଟଣା ଗୁଡ଼ାକ ଉପରକୁ ଉପର ମାଡ଼ି ଆସୁଛନ୍ତି । ଏହାର ବିପରୀତ ଅବସ୍ଥା ବି ଘଟିବା ସମ୍ଭବ । ବେଳେବେଳେ ଏଇ ଅଜ୍ଞାତ ଶକ୍ତି ନିଜ କଳକୁ ଏପରି ଓଲଟା ମୋଡ଼ି ଦିଏ ଯେ, ଯେତେ ଯତ୍ନରେ ଯୋଜନା କଲେ ବି, ଯେତେ ଗଭୀର ଅଧ୍ୟବସାୟ କଲେ ବି, ଫଳ ଫଳେ ନାହିଁ; ଯେଉଁ ଥିରେ ହାତ ଦେବ ତାହା ଜଳିପୋଡ଼ି ଯାଏ । ସେଇଥିପାଇଁ ବୋଧହୁଏ ଲୋକେ ପୁରୁଷକାର ଉପରେ ଆସ୍ଥା ହରାଇ; ସୌଭାଗ୍ୟରେ ଆଶା ରଖନ୍ତି ଓ ଦୁର୍ଭାଗ୍ୟକୁ ଡରନ୍ତି ।

ଗୁରୁବାର, ଜୁନ୍ ୩୦ ତାରିଖରେ ମୁଁ ସବୁଦିନ ପରି ଭୋରରେ ଉଠିଲି । କଳା ମୁକ୍ତାର ତେଜ ପରି ଆଲୁଅ ଦିଶୁଥାଏ ; ଗ୍ରୀଷ୍ମ ଋତୁର ମଝି ମଝି, ଏ ସମୟଟାରେ ଖୁବ୍ ସଅଳ ଉଠିଲି ବୋଲି କହିବାକୁହେବ । ଚଉକି ଓ ଟେବୁଲ କଳାକଳା ପିଣ୍ଡ ପରି ଦିଶୁଥାନ୍ତି, କାନ୍ଥର ଚିତ୍ର ଝାପ୍‌ସା ଫିକେଇ ମାତ୍ର ଦିଶୁଥାଏ । ଝରକାର ଧଳା ପରଦା ଗୁଡ଼ାକ ଶୋଇଥିବା ଲୋକର ନିଃଶ୍ୱାସ ପ୍ରଶ୍ୱାସ ଆଗକୁ ପଛକୁ ହେଲା ପରି, ଆଗକୁ ପଛକୁ ପାଦପକାଇ ଚାଲୁ ଥିବା ପରି ଜଣାଯାଉଥାଏ ; କାରଣ, ପ୍ରାୟ ପ୍ରତି ସକାଳେ ମୃଦୁପବନ ଉପକୂଳ ଉପରେ ପ୍ରବାହିତହେବା ସ୍ୱାଭାବିକ ।

ଏ ସମୟରେ ନିଦରୁ ଉଠି ମୁଁ ଏକସାଙ୍ଗେ ଦୁଇଟା ସଂସାରରେ ଆସି ପହଞ୍ଚିଲି ପରି ଅନୁଭବ କଲି । ସ୍ୱପ୍ନ ରାଜ୍ୟର ସ୍ତୂପୀକୃତ ମେଘମାଳା-ମୟ ଆକାଶ ସମ୍ପୂର୍ଣ୍ଣ ଲୀନ ହୋଇନଥାଏ । ପୁଣି ଜାଗ୍ରତ ମନରେ ବାସ୍ତବ ଜଗତର ଆଗ୍ରହ ଆସି ତା'ର ଆସନ ପାତୁଥାଏ । ଆରାମରେ ମୁଁ ମୋଡ଼ ଭଡ଼ ହେଲି—ଦେହରେ ଜୀବନର ସଂଚାର ହୋଇ ବେଶ୍ ସୁଖ ଲାଗୁଥାଏ । ରାତି ଅନ୍ଧାରରେ ସତେ ଯେମିତି ଚର୍ମ ସଂକୁଚିତ ହୋଇ ଯାଇଥିଲା; ମାଂସ-ପେଶୀ ଗୁଡ଼ାକ ଫୁଲାଇ, ଦିନବେଳର ଆକାରକୁ ଚର୍ମକୁ ଆଣିବାକୁ ପଡ଼େ—ଯାହା କରିବାରେ ମନ ଭିତରେ ଆନନ୍ଦର ଗୋଟିଏ ସ୍ପନ୍ଦନ ଅନୁଭୂତ ହେଉଥାଏ ।

ସର୍ବପ୍ରଥମେ ରାତିର ଯେଉଁ ସ୍ୱପ୍ନଗୁଡ଼ିକ ମନେ ପଡ଼ୁଥିଲା, ତା'-ଉପରେ ମନକୁ ଚଳାଇ ନେଲି —ଯେପରି ମଣିଷ ଖବର କାଗଜରେ ଆଖି ବୁଲାଇ ନିଅନ୍ତି ; କୌଣସି କୌତୂହଳୋଦ୍ଦୀପକ ବା ଗୁରୁତ୍ୱପୂର୍ଣ୍ଣ ସମ୍ବାଦ ଅନ୍ୱେଷଣରେ । ତା'ପରେ ଆଗାମୀ ଦିନରେ ଘଟିବାକୁ ଥିବା ଘଟଣାମାନଙ୍କ ବିଷୟ ଟିକିଏ ଭାବିନେଲି । ଏ ସବୁ ସରିଲାପରେ, ମୋର ସେନାବିଭାଗର ସର୍ବୋତ୍କୃଷ୍ଟ ଅଫିସର୍‌ଙ୍କଠାରୁ ଶିଖିଥିବା ଗୋଟିଏ ଦୈନ-ନ୍ଦିନ ଅଭ୍ୟାସର ଆବୃତ୍ତି କଲି । ତାଙ୍କ ନାଁ ଟ୍ରୁଲ୍ ଏଡ଼ୱାର୍ଡସ୍ , ମେଜର ପାହ୍ୱାଆକୁ ଉଠିଥିଲେ; ମଝାଲିଆ ବୟସର ଲୋକ, ଯୁଦ୍ଧକ୍ଷେତ୍ରରେ ଉତ୍କର୍ଷ ଦେଖାଇବା ବୟସ ଗଡ଼ି ଯାଇଥିଲେ ବି, ବେଶ୍ କୃତିତ୍ୱ ଦେଖାଉଥିଲେ । ଘରେ ତାଙ୍କର ବେଶ୍ ବଡ଼ ପରିବାର—ସୁନ୍ଦରୀ ସ୍ତ୍ରୀ, ଓ ବଡ଼ ସାନ ହୋଇ ଋବୋଟି ପିଲା ।

ସେମାନଙ୍କୁ ସ୍ମରଣ କରିବାକୁ ମନକୁ ଲଗାମ ଛାଡ଼ିଦେଲେ, ସେମାନଙ୍କ ପ୍ରେମମୟ ସ୍ମୃତି ଓ ସେମାନଙ୍କ ସଙ୍ଗସୁଖ ପାଇବାର ଉତ୍କଣ୍ଠାରେ ତାଙ୍କର ମନ ବିବ୍ରତ ହୁଅନ୍ତା । ତାଙ୍କର ମାନସିକ ଅବସ୍ଥା କଥା ସେ ମୋତେ କହିଛନ୍ତି । ସେ ଯେଉଁ ଭୀଷଣ କାର୍ଯ୍ୟରେ ରତ ଥାନ୍ତି,ସେଥିରେ ତାଙ୍କର ମନ ସ୍ତ୍ରୀପିଲାଙ୍କ ସ୍ମୃତି ଓ ପ୍ରେମରେ ଆବଦ୍ଧ ଓ ବିକ୍ଷିପ୍ତ ହେଲେ, କର୍ତ୍ତବ୍ୟରେ ହେଳା ହେବାର ଆଶଂକା ଅଛି । ସେଥିରୁ ମନକୁ ଉଦ୍ଧାର କରିବାକୁ ସେ ଗୋଟିଏ ଉପାୟ ଉଦ୍‌ଭାବନ କରିଥାନ୍ତି । ପ୍ରତିଦିନ ସକାଳେ, ଅବଶ୍ୟ ଆଗରୁ କର୍ତ୍ତବ୍ୟର ଆହ୍ୱାନରେ ନିଦରୁ ଉଠି କାର୍ଯ୍ୟକ୍ଷେତ୍ରକୁ ନ ଯାଇଥିବା

ଦିନର ସକାଳେ, ସେ ନିଜର ହୃଦୟ ଓ ମନ ନିଜ ପରିବାର ପାଇଁ ଉନ୍ମୁକ୍ତ ରଖି ଦିଅନ୍ତି । ଗୋଟି ଗୋଟି କରି ପ୍ରତ୍ୟେକଙ୍କ କଥା ଭାବି ନିଅନ୍ତି—ସେମାନେ କେମିତି ଦିଶୁଥିବେ, ସେମାନଙ୍କ ଭିତରୁ ପ୍ରତ୍ୟେକଙ୍କର ଆଗ୍ରର ବ୍ୟବହାର ଉପରେ, ଗୋଟି ଗୋଟି କରି ଭାବି, ସେ ପ୍ରତ୍ୟେକଙ୍କୁ ଗେଲ କରନ୍ତି ଓ ନିଜର ପ୍ରେମ ଓ ବାତ୍ସଲ୍ୟ ଜଣାଇ ଦିଅନ୍ତି—ସତେ ଯେମିତି ଗୋଟିଏ ଆଲମାରିରୁ ବହୁମୂଲ୍ୟ ଜିନିଷ ଗୋଟି ଗୋଟି କରି କାଢ଼ି, ପ୍ରତ୍ୟେକକୁ ସ୍ପର୍ଶ କରି, ଚୁମ୍ବନ ଦେଇ, ପୁଣି ଆଲମାରିରେ ଯଥା-ସ୍ଥାନରେ ଥୋଇ ଦେଉଥାନ୍ତି । ସମସ୍ତଙ୍କ ପାଳି ସରିଗଲା ପରେ ସେମାନଙ୍କୁ ବିଦାୟ ଦେଇ ଆଲମାରିର ଦୁଆର ବନ୍ଦ କରିଦିଅନ୍ତି । ପରା ସମସ୍ତ ପାଇଲେ, ଏ କାର୍ଯ୍ୟ ଅଧଘଣ୍ଟାଏ ମାତ୍ର ଲାଗେ । ଯା ପରେ ଦିନ ତମାମ ଆଉ ସ୍ତ୍ରୀପିଲା ତାଙ୍କର ମନେ ପଡ଼ନ୍ତି ନାହିଁ, କି ମନର କୌଣସି ପ୍ରକାର ବିକ୍ଷେପ ହୁଏ ନାହିଁ । ଏକାଗ୍ର ମନରେ, ନିଜର ସମସ୍ତ ଶକ୍ତି ନିଜର କର୍ତ୍ତ-ବ୍ୟରେ, ଅର୍ଥାତ୍ ମଣିଷ ମାରିବାରେ, ଖଟାଇବାକୁ ପୂର୍ଣ୍ଣ ଅବସର ମିଳେ । ମୁଁ ଯେତେ ଅଫିସର୍‌ଙ୍କ ସଂପର୍କରେ ଆସିଛି ସେ ସମସ୍ତଙ୍କ ଭିତରେ, ମୁଁ ଯାଙ୍କୁ ସର୍ବଶ୍ରେଷ୍ଠ ବୋଲି ମନେ କରେ । ତାଙ୍କ ଉପାୟ ମୁଁ ମୋ ସକାଶ ପ୍ରୟୋଗ କରିବାକୁ ତାଙ୍କ ଅନୁମତି ମାଗିଥିଲି । ସେ ମୋତେ ଅନୁମତି ଦେଇଛନ୍ତି । ସେ ଯେତେବେଳେ ଯୁଦ୍ଧରେ ପ୍ରାଣ ହରାଇଲେ, ମୁଁ ସେତେ-ବେଳେ ତାଙ୍କ ବିଷୟରେ ଏତିକି ମାତ୍ର ଚିନ୍ତା କରିଥିଲି ଯେ, ସେ ତାଙ୍କ ଜୀବନ ନିଷ୍କଳଙ୍କ ଭାବେ କଟାଇ ଜନ୍ମସାର୍ଥକ କରିଛନ୍ତି । ସେ ଆନନ୍ଦ ଉପଭୋଗ କରିଛନ୍ତି, ପ୍ରେମର ଆସ୍ୱାଦ ପାଇଛନ୍ତି ଏବଂ ଦେଶ ପ୍ରତି ତାଙ୍କର କର୍ତ୍ତବ୍ୟ ସମାପନ କରିଛନ୍ତି—ସବୁ ଯଥାଯଥ ଭାବେ ଉପଭୋଗ ଓ ସମ୍ପନ୍ନ କରିଛନ୍ତି । ଏଭଳି ଆଉ କେତେଜଣ ଅଛନ୍ତି, ଯେଉଁମାନେ ତାଙ୍କର ଶତାଂଶରୁ ଅଂଶେ ବି ଏ ସବୁ କରି ପାରିଛନ୍ତି ?

ମୁଁ ମେଜର୍ ଗ୍ରାର୍ଲିଙ୍କ ପଦ୍ଧତି ସବୁଦିନ ଅବଲମ୍ବନ କରେ ନାହିଁ । କିନ୍ତୁ ଆଜିର ଏ ଗୁରୁବାରରେ, ମୁଁ ଜାଣେ, ମୋତେ ଗୁଡ଼ାଏ କାର୍ଯ୍ୟରେ ଏକାନ୍ତ ମନୋଯୋଗ ଦେବାକୁ ପଡ଼ିବ, ସେତେବେଳେ ଘରକଥା ମନେ ପକାଇଲେ କାମ ଖରାପ ହେବ । ତେଣୁ ନୂଆ ଦିନ ତା' କବାଟ ଟିକିଏ ମେଲେଇବା ସାଙ୍ଗେ ସାଙ୍ଗେ, ମୁଁ ମେଜର୍ ଗ୍ରାର୍ଲିଙ୍କ ପରି, ମୋ ପରିବାର ସଙ୍ଗେ ସମ୍ଭାଷଣ ଆରମ୍ଭ କରିଦେଲି ।

ମୁଁ ଜ୍ୟେଷ୍ଠ-କନିଷ୍ଠ କ୍ରମରେ ମୋ ପରିବାରର ଲୋକଙ୍କୁ ଭେଟିବାକୁ ଆରମ୍ଭ କଲି । ଆଗ ମୋର ଜେଜେନାମା ଡେବୋରାଙ୍କୁ ନମସ୍କାର କଲି । ପ୍ରାଚୀନ ଇସ୍‌ରାଏଲ୍‌ର ନ୍ୟାୟପତି ଡେବୋରାଙ୍କ ନାମ ଅନୁସାରେ ସ୍ୱାଙ୍କର ନାମକରଣ ହୋଇଥିଲା । ଇତିହାସରୁ ପଢ଼ିଛି, ସେକାଳରେ ଯେ ସେନା-ନାୟକ, ସେଇ ଥିଲେ ନ୍ୟାୟପତି । ମୋ ଜେଜେନାମା ଏ ନାମକୁ ସାର୍ଥକ କରିଛନ୍ତି । ସେ ସୁଯୋଗ ପାଇଥିଲେ ସେନା-ଚାଳନ କରି ପାରିଥାନ୍ତେ । ଚନ୍ଦାର ସେନାଙ୍କ ଅଧିକ୍ଷତା ତ ସେ ବେଶ୍ କରିଥିଲେ । ସଦ୍ୟ ଫଳଲାଭର ଆଶା ନ ଥାଇ ସୁଦ୍ଧା, ମୁଁ ଯେ ଗୁଡ଼ାଏ ପଢ଼ିବାରେ ଆଗ୍ରହ ରଖି ପାରିଛି, ଏହା ସେଇ ଜେଜେନାମାଙ୍କ ଯୋଗୁଁ । ଖୁବ୍ କଡ଼ା ଲୋକ ସେ, ତଥାପି ଜ୍ଞାନପିପାସା ଓ ଅନୁସଂଧିତ୍ସା ତାଙ୍କର ପୂରା ମାତ୍ରାରେ ଥାଏ; ଯାହାଠାରେ ଏ ଗୁଣର ଅଭାବ ତା'କୁ ସେ ପାଖରେ ପୂରାଉ ନ ଥିଲେ । ମୁଁ ପ୍ରଥମେ ତାଙ୍କୁ ମୋ'ର ସମ୍ମାନ ନିବେଦନ କଲି । ତା'ପରେ ପ୍ରେତାଞ୍ଜଳି ଦେଲି ବୃଦ୍ଧ କପ୍ତାନ୍‌ଙ୍କୁ । ତା'ପରେ ମୋ' ପିତାଙ୍କ ଆଗରେ ମସ୍ତକ ଅବନତ କଲି । ଅଜ୍ଞାତର ଶୂନ୍ୟଗର୍ତ୍ତକୁ ମଧ୍ୟ ମୋର ସମ୍ମାନ ଦେଖାଇଲି, ସେ ଗର୍ତ୍ତଟି ମୋ ମା'ଙ୍କ ପାଇଁ ଉଦ୍ଦିଷ୍ଟ । ତାଙ୍କୁ ମୁଁ ଚହ୍ନି ନାହିଁ; ମୋର ଚହ୍ନିବା ଶକ୍ତି ଆସିବା ପୂର୍ବରୁ ତାଙ୍କର ଇହଲୀଳା ସାଙ୍ଗ ହୋଇଯାଇଛି; ତାଙ୍କ ପାଇଁ ଅଜ୍ଞାତରେ ଗୋଟିଏ ଶୂନ୍ୟ ଗର୍ତ୍ତମାତ୍ର ସେ ମୋ ପାଇଁ ରଖି ଯାଇଛନ୍ତି ।

ଗୋଟିଏ କଥା ଆଜି ମୋତେ ବିବ୍ରତ କଲା । ଜେଜେନାମା ଡେବୋରା, ବୃଦ୍ଧ କପ୍ତାନ୍ ଓ ମୋ ବାପା ଆଜି ମୋ ମାନସପଟରେ ସ୍ପଷ୍ଟ ଦିଶିଲେ ନାହିଁ । ଫଟୋଗ୍ରାଫ୍ ପରି ତାଙ୍କର ଯେଉଁ ରୂପ ପ୍ରାଞ୍ଜଳ ଭାବରେ ଦିଶିବାର କଥା, ତାହା ଅସ୍ପଷ୍ଟ ଓ ଜାଲଜାଲୁଆ ଜଣାଗଲା । ବୋଧହୁଏ ଏହା ହେବାର କଥା; ଛାପାଖାନାର ଶିଶାଟାଇପ୍ ଯେପରି କାଳକ୍ରମେ ମୁଣ୍ଡା ହୋଇଯାଏ, ସେହିପରି ମନର ସ୍ମୃତି କାଳକ୍ରମେ ଘଷି ହୋଇ ଅସ୍ପଷ୍ଟ ହୋଇ ଯାଉଥିବ ଓ ପୃଷ୍ଠଭୂମି ଗାଢ଼ତର ହୋଇ ଚିତ୍ରକୁ ଅସ୍ପଷ୍ଟ କରିଦେଉଥିବ । ସ୍ମୃତିରେ ଚିରକାଳ ଏମାନଙ୍କୁ ଧରି ରଖି ପାରିବି ନାହିଁ ବୋଲି ଆଜି ବୁଝିଲି ।

ସ୍ୱାବାଦ୍ ମେଷ୍ଟିଙ୍କ ପାଳ ପଡ଼ିବାର କଥା କିନ୍ତୁ ତାଙ୍କୁ ପଛକୁ ଆଡ଼େଇ ରଖିଲା ।

ତା'ପରେ ଧରିଲି ସ୍ୱାଲେନ୍‌କୁ । ତା' ପିଲାଦିନର ମୁହଁ ଭଣିଲି ନାହିଁ । ସେଇ ମୁହଁର ଆନନ୍ଦୋଜ୍ଜ୍ୱଳ ଆଭା ଓ ଉଦ୍ଦାମ-ଉଚ୍ଛ୍ୱାସ ଦେଖି ମନୁଷ୍ୟ, କର୍ତ୍ତାଙ୍କ ସର୍ବଶ୍ରେଷ୍ଠ କୃତି ବୋଲି ମୋର ବିଶ୍ୱାସ ହେଉଥିଲା । ସେ ମୁହଁ ପରିବର୍ତ୍ତେ ସ୍ୱାଲେନ୍‌ର ଦେଖିଲି, ଏବେ ଯେମିତି ମୁହଁ ହୋଇଛି ତା'କୁ — ଅପ୍ରସନ୍ନ, ଅଭିମାନୀ, ରୁଦ୍ଧକ୍ରୋଧଯୁକ୍ତ, ଦୁରିଚ୍ଛିଡ଼ା ଓ, ପ୍ରଥମ ଯୌବନର ଆଘାତ ଓ ଚିତ୍ତବିଭ୍ରମ ଯୋଗୁଁ, ମନର କଥା ଗୋପନ-ରଖିବାକୁ ବ୍ୟାକୁଳ । ପ୍ରଥମ ଯୌବନଟା ବାସ୍ତବିକ୍ ସାଂଘାତିକ ସମୟ— ଗାତରେ ପଡ଼ିଥିବା କୁକୁର ପରି । ଏତେବେଳେ ମନହୁଏ, ପାଖରେ ଯାହାକୁ ପାଇବ ତା'କୁ କାମୁଡ଼ି ଦେବାକୁ, ଏପରିକି ନିଜକୁ ମଧ୍ୟ । ମୋ'ର ମନରେ ମୋ ପୁଅ ମୁହଁର ଯେଉଁ ଚିତ୍ର ଉଙ୍କିଥିଲି, ତାହା ମଧ୍ୟ ତା'ର ମନକୁ ଘାଣ୍ଟୁଥିବା ଅସନ୍ତୋଷରୁ ମୁକ୍ତ ହୋଇ ନ ଥିଲା । ତା'କୁ ମନରୁ ଆଡ଼େଇ ଥୋଇଦେଲା ବେଳେ ଏତିକି ମାତ୍ର କହିଲି, "ତୋ'ର ମନର ଅବସ୍ଥା ମୁଁ ବେଶ୍ ଜାଣିପାରୁଛି । ଏ ବେଳଟା କିପରି ଯନ୍ତ୍ରଣା ଦିଏ ମୋ'ର ବେଶ୍ ମନେ ଅଛି । ତୋତେ ଆଶ୍ୱସ୍ତ କରିବାକୁ ମୁଁ କିଛି କରି ପାରିବି ନାହିଁ ; କେହି ବି କିଛି ପାରିବେ ନାହିଁ । କେବଳ ଏତିକି କହିପାରେ ଯେ, ତୋ'ର ଏ ଅବସ୍ଥା ସବୁଦିନେ ରହିବ ନାହିଁ । କିନ୍ତୁ ତୋ'ର ବର୍ତ୍ତମାନର ମାନସିକ ଅବସ୍ଥାରେ ମୋ କଥାକୁ ପସନ୍ଦ କରିବୁ ନାହିଁ । ହଉ ଯା, ଶାନ୍ତି ପାଆ ; ମୋ'ର ବାତ୍ସଲ୍ୟ ନେଇ ଯା', ଯଦିଓ ତୋ'ର ଏ ସମୟରେ, ମୁଁ ତୋତେ ସହି ପାରୁନାହିଁ କି ତୁ' ମୋତେ ସହି ପାରୁନାହୁଁ ।"

ଏଲେନ୍‌କୁ ଧରିବାରେ ମୋ ମନରେ ଆନନ୍ଦର ଉଚ୍ଛ୍ୱାସ ଖେଳି-ଗଲା । ବଡ଼ ହେଲେ ସେ ସୁନ୍ଦର ହେବ, ତା' ମା'ଠାରୁ ବି ସୁନ୍ଦର ; କାରଣ, ତା ଛୋଟ ମୁହଁଟି ଯେତେବେଳେ ପୂର୍ଣ୍ଣତା ପାଇବ ସେତେବେଳେ ସେଥିରେ ଫୁଟି ଉଠିବ ଜେଜେମାମାଁ ଡେବୋରାଙ୍କ ମୁହଁର ଅସାଧାରଣ ପ୍ରତିଭା । ତା' ଅସ୍ଥିର ଜିଜ୍ଞାସା, ତା' ତ୍ୱରିତା ଓ ତା'ର ଖିଲୁତା— ଏଇ ସବୁ ଉପାଦାନ ମିଶିଲେ ନାରୀ ହୁଏ ସୁନ୍ଦରୀ ଓ ପ୍ରେମଶୀଳା । ମୁଁ

ଜାଣୁଛି, ଏଲେନ୍ ଭବିଷ୍ୟତରେ ସୁନ୍ଦରୀ ଓ ପ୍ରେମଶୀଳା ହେବ ; କାରଣ, ସେଦିନ ମୁଁ ଏହାର ଆଭାସ ଦେଖିଛି, ଯେତେବେଳେ ସେ ରକ୍ତାଭ ଯାଦୁ -ଶିଳାଟି ତା' କ୍ଷୁଦ୍ର ବକ୍ଷରେ ଚାପିଧରି ନିଦ୍ରିତାବସ୍ଥାରେ ଠିଆ ହୋଇଥିଲା । ସେତେବେଳେ ସେ ଦିଶୁଥିଲା ପୂର୍ଣ୍ଣନାରୀତ୍ୱପ୍ରାପ୍ତା, ଇଡାନ୍ତ ନାରୀପରି । ସେ ଯାଦୁଶିଳାଟି ମୋ ପିଲା ଦିନେ କାହିଁକି, ଏବେ ବି ମୋ ଦୃଷ୍ଟିରେ ଗୁରୁତ୍ୱପୂର୍ଣ୍ଣ ; ଏଲେନ୍ ଦୃଷ୍ଟିରେ ମଧ୍ୟ ତାହା ମୂଲ୍ୟବାନ୍ । ମୋର ବିଶ୍ୱାସ, ମୋ'ଠାରେ ଯାହା ବି ବିଶିଷ୍ଟ ଗୁଣ ଓ ଅମରତ୍ୱ ଅଛି, ତାହା ଏଲେନ୍ ପାଇବ ଓ ଉତ୍ତରାଧିକାରୀ ସୂତ୍ରରେ ତା' ବଂଶଧରମାନଙ୍କୁ ଦେଇଯିବ । ତା'କୁ ମୋର ବାତ୍ସଲ୍ୟ ଜଣାଇବାକୁ ମୁଁ ତା'କୁ କୁଣ୍ଢାଇ ପକାଇଲି ଓ ସେ ତା'ର ସ୍ୱାଭାବିକ ଶୈଳୀରେ ମୋ' କାନମୂଳକୁ କୁତୁ-କୁତୁ କରି, କୁରୁ କୁରୁ ହୋଇ ହସିଲା —ମୋ ଏଲେନ୍, ମୋ ଝିଅ !

ଏହା ପରେ ମୁଁ ମୁହଁ ବୁଲାଇ ମୋ ମେରୀଙ୍କ ବାସ୍ତବ ରୂପକୁ ଚାହିଁଲି—ମୋ ଡାହାଣ ପାଖେ ଶୋଇ ସେ ନିଦରେ ହସ ହସ ହୋଇ-ଥାନ୍ତି । ଏଇ ଡାହାଣ ପାଖ ହେଉଛି ତାଙ୍କର ସବୁଦିନିଆ ଜାଗା । ଯଥା-ସମୟରେ, ମୁଁ ତାଙ୍କୁ ଗ୍ରହଣ କରିବାକୁ ପ୍ରସ୍ତୁତ ହୋଇ ରହିଥିବା ବେଳେ, ସେ ଧୀରେ କିନି ତାଙ୍କ ମୁଣ୍ଡଟି ଆଣି ମୋ ଡାହାଣ ଡେଣାରେ ଥୋଇ-ଦିଅନ୍ତି—ମୋ ବାଁ ହାତଟି ମୁକ୍ତ ରହେ ତାଙ୍କୁ ଗେଲ କରିବାକୁ ।

କିଛିଦିନ ଆଗେ, କଦଳୀଫେଣା-କଣ୍ଟା ବାଙ୍କିଆ ଛୁରୀରେ ମୋ ବାଁ ଆଙ୍ଗୁଠି କଟି ଯାଇଥିଲା, ଘା' ଶୁଖିବାପରେ ଆଙ୍ଗୁଠି ଟିପରେ ଗୋଟାଏ ଟାଆଁସା ଦାଗ ରହି ଯାଇଛି । ତେଣୁ ପ୍ରିୟାଙ୍କ କାନଠାରୁ ଖୁଆ-ମୁଣ୍ଡ ପର୍ଯ୍ୟନ୍ତ, ମୁଁ ମୋ' ମଝି ଆଙ୍ଗୁଠି ଟିପ ଚଳାଇଲି — ଅତି ଟାଣରେ ନୁହେଁ କି ଅତି ଆସ୍ତେ ଆସ୍ତେ ନୁହେଁ— ଟାଣ ହେଲେ ଚମକି ପଡ଼ନ୍ତେ, ଆସ୍ତେ ହେଲେ କୁତୁ କୁତୁ ଲାଗନ୍ତା । ସବୁଦିନ ପରି ସେ ଦୀର୍ଘ ନିଃଶ୍ୱାସ ପକାଇଲେ । ନିଃଶ୍ୱାସ ଟିକିଏ ବେଳ ରୋକି ସବୁଥର ଯେମିତି ଉଶ୍ୱାସରେ ଛାଡ଼ନ୍ତି ସେମିତି । ଉଠେଇ ଦେଲେ ଜଣେ ଜଣେ ଚିଡ଼ିଯାନ୍ତି ; ମୋ' ମେରୀ ସେମିତି ନୁହନ୍ତି । ଆଗାମୀ ଦିନଟି ଶୁଭଙ୍କର ହେବ ବୋଲି ଆଶା ଧରି ସେ ଉଠନ୍ତି । ଏକଥା ଜାଣିଥିବାରୁ, ତାଙ୍କ ଆଶା ଯଥାର୍ଥ କରିବା ପାଇଁ, ମୁଁ ବେଳେ ବେଳେ, ସେ ଉଠିଲେ ତାଙ୍କୁ କ୍ଷୁଦ୍ର ଉପହାର ଗୋଟିଏ ଗୋଟିଏ

ଦିଏ । ଭଲ ଉପହାର ମୁଁ ବିଶେଷ ଦିନମାନଙ୍କ ପାଇଁ ଅଟକ ରଖିଥାଏ । ଆଜି ସେଇପରି ଗୋଟିଏ ବିଶେଷ ଦିନ ହୋଇଥିବାରୁ, ଆଜି ବାହାର କଲି ଗୋଟିଏ ଭଲ ଉପହାର, ମୋ ମନର ଥଳୀରୁ ।

ନିଦଗୁରୁଗୁରୁ ଆଖି ମେଲାଇ ସେ ମୋତେ ପଚାରିଲେ, "ଏତେ ସଅଳ ଉଠି ପଡ଼ିଲ ?" ତା'ପରେ, ଦିନ ହେବାକୁ ଆଉ କେତେ ଅଛି ଦେଖିବାକୁ ଝରକା ଆଡ଼କୁ ଚାହିଁଲେ । ଟେବୁଲ ଉପରକୁ କାନ୍ଥରେ ଆମ ଶୋଇବା ଘର ଛବିଟା ଟଙ୍ଗା ହୋଇଥାଏ -- ଗୋଟିଏ ହ୍ରଦ ପାଖେ ଗୁଡ଼ିଏ ଗଛ, ଗୋଟିଏ ଛୋଟ ଗାଈ, ହ୍ରଦର ପାଣି ଭିତରେ ଠିଆ ହୋଇଛି । ମୁଁ ଶେଯରୁ ଚାହିଁ ଗାଈର ଲାଙ୍ଗୁଡ଼ ଦେଖି ପାରିବାରୁ ଜାଣିଲି, ଦିନ-ହେଲାଣି ।

ମୁଁ କହିଲି, "ଉଡ଼ନ୍ତା ମୂଷା ! ତମ ପାଇଁ ମହା-ଆନନ୍ଦର ଉଦନ୍ତ ଆଣିଛି ।"

"ପାଗଳ୍ ।"

"ଆଚ୍ଛା, ମୁଁ ତୁମକୁ କେବେ ମିଛ କହିଛି ନା ?"

"କହିଥିବ ।"

"ଆଚ୍ଛା, ଏ ମହାଆନନ୍ଦର ଖବରଟା ଶୁଣିବାକୁ ତୁମ ନିଦ ଭଲ ହୋଇ ଭାଜିଲାଣି ନା ?"

"ନା ।"

"ତେବେ ସେ ଖବର ପଛକୁ ରହିଲା ।"

ସେ ବାଁକଡ଼ ଲେଉଟାଇ ମୋ ଆଡ଼କୁ ଚାହିଁଲେ ; ତାଙ୍କ କୋମଳ ଶରୀରରେ କଟା ଚନ୍ଦ୍ର ପରି ଭାଙ୍ଗଟେ ଦିଶିଲା ; ମୋତେ କହିଲେ, "ତୁମେ କେତେ ଯେ ରହସ୍ୟ କର ! ଖବରଟା କଣ, ଘାସ ପଡ଼ିଆଟାକୁ ସିମେଣ୍ଟ କରି ଦେବା କଥା ?"

"ନା, ନା ।"

"ତେବେ କ'ଣ, ଝିଙ୍କାରି ପୋକଙ୍କର ଗୋଟାଏ ଫାର୍ମ୍ କରି ବେପାର କରିବା କଥା ?"

"ନା, ତା'ବି ନୁହେଁ —ଯାହାହେଉ, ମୋର ପରିତ୍ୟକ୍ତ ଯୋଜନା ଗୁଡ଼ାକ ଖୁବ୍ ତ ମନେରଖିଛ !"

"ତେବେ ଏ ନୂଆ ରହସ୍ୟଟା କ'ଣ ?"

"ଶୁଣ, ଯାହା କହିବାକୁ ଯାଉଛି ତାହା ଏଡ଼େ ଅସାଧାରଣ ଓ ମନ୍ତ୍ରବଳର କଥା ଯେ ତୁମ ବିଶ୍ୱାସ ମୂଳରେ ଠେସ ଦେଲେ ଯାଇ ଏକଥା ଧରି ପାରିବ ।"

ଏତେବେଳକୁ ତାଙ୍କ ନିଦ ପୂରା ଭାଙ୍ଗିଥାଏ ଓ ଆଖି ପରିଷ୍କାର ହୋଇଥାଏ ; ତାଙ୍କ ଓଠ ପାଖ ଯେପରି ଆସ୍ତେ ଆସ୍ତେ ଥରିବାକୁ ଆରମ୍ଭ କରୁଥାଏ, ସେଥିରୁ ମୁଁ ଜାଣୁଥାଏ ହସିବାର ଉପକ୍ରମ ହେଉଛି ।

"ହଉ, ତୁମ ଖବରଟା କ'ଣ କହ ।"

"ଇଟାଲୀୟ ଜାତିର ମ୍ୟାରୁଲେ ବୋଲି ଗୋଟିଏ ଲୋକକୁ ଜାଣ କି ?"

"ପାଗଳାମି—ପୁଣି ତ ସେଇ କାବଡ଼ା କଥା ଆରମ୍ଭ ହେଲା !"

"ତୁମକୁ ସମଗ୍ର ଖବରଟା ପାଗଳର ପ୍ରଳାପ ପରି ଲାଗିବଇ ତ ! ସେଇ ମ୍ୟାରୁଲେ ଲୋକଟି କିଛି ଦିନ ପାଇଁ ସ୍ଥାନାନ୍ତର ଯାଇଛି ।"

"କେଉଁଠିକି ?"

"ମୋତେ କହି ଯାଇନାହିଁ ।"

"ଆସିବେ କେବେ ?"

"ଏମିତି ଗୁଡ଼ାଏ ପ୍ରଶ୍ନ ପଚାରି ମୋ ମୁଣ୍ଡ ଗୋଳମାଳ କରି ଦିଅ ନାହିଁ । କେବେ ଆସିବେ, ତା'ବି ମୋତେ କହି ଯାଇ ନାହାନ୍ତି । ସେ କହିଲେ, ଓ ମୁଁ ପ୍ରତିବାଦ କରିବାରୁ ହୁକୁମ ଦେଲେ ଯେ, ଆମେ ତାଙ୍କ ଗାଡ଼ି ନେଇ ଛୁଟିରେ ମଉଜ କରିବାକୁ କୁଆଡ଼େ ଯିବାକୁ ହେବ ।"

"ଥଟ୍ଟା କରୁଛ ?"

"ମୁଁ ଭଲ ଥଟ୍ଟାରେ ଏମିତି ମିଛ କହିପାରେ, ଯାହାର ପରିଣାମରେ ତୁମର ଦୁଃଖ ହେବ ।"

"କିନ୍ତୁ ସେ ଆମକୁ ତାଙ୍କ ଗାଡ଼ି ବାହିଁକି ଦେବେ ?"

"ସେ କଥା ମୁଁ ଜାଣିବି କେମିତି ? ବାଲଚରଙ୍କ ଶପଥଠାରୁ ଆରମ୍ଭ କରି, ପୋପ୍ ଗାଦିନସୀନ୍ ହେଲାବେଳେ ଆଚରୁଥିବା ଶପଥ ପର୍ଯ୍ୟନ୍ତ କରି, ମୁଁ ଏତିକି ମାତ୍ର ଜଣାଇ ଦେଇ ପାରେ ଯେ, ମ୍ୟାରୁଲେଙ୍କ ରୁପେଲି ପଣ୍ଟିଆକ୍ ଗାଡ଼ି, ପୂରାଟାକି ନିର୍ମଳ ପେଟ୍ରୋଲ ସହିତ, ଶ୍ରୀମଣିମାଙ୍କ ହୁକୁମ ତାମିଲ୍ କରିବାକୁ ହାଜର ଅଛି ।"

"କିନ୍ତୁ ଆମେ ଯିବା କୁଆଡ଼େ ?"

"ସେ କଥାଟା, ମୋ ଗୋବର-ଗୋଳ ପ୍ରିୟତମା ! ତୁମକୁ ହିଁ ସ୍ଥିର କରିବାକୁ ପଡ଼ିବ । ଆଜି ଶୁକ୍ର ଦିନ, କାଲି ଓ ପଅରଦିନ ଶନିବାର, ରବିବାର କାର୍ଯ୍ୟକ୍ରମ ଠିକଣା କର ।"

"କିନ୍ତୁ ସୋମବାର ପରା ଛୁଟି ! ତା' ହେଲେ ପୂରା ଦୁଇଦିନ ଆମ ହାତରେ ।"

"ଉଚିତ ।"

"ହଇଏ ! ଦି'ଦିନ କାଳ ବାହାରେ ରହିବାକୁ ଆମେ ସକିବା କି ? ହୁଏତ, ମୋଟେଲ ଫୋଟେଲରେ ରହିବାକୁ ପଡ଼ିପାରେ ।"

"ସଖ୍ୟ ପାଉ ବା ନପାଉ, ଆଦେଶ ପାଳନ କରିବାକୁ ହେବ । ପୁଣି ମୋର ବି କିଛି ଗୁପ୍ତଧନ ଅଛି ।"

"ପାଗଳା କଥା । ତମ ଧନ କଥା ମୋତେ ଖୁବ୍ ଜଣା । କିନ୍ତୁ ସେ ଆମ ଯିବାକୁ ତାଙ୍କ ଗାଡ଼ି ଦେଲେ, ସ୍ୟାର କୁଳ କିନାରା ମୁଁ ପାଉ-ନାହିଁ ।"

"ମୁଁ ବି ନୁହେଁ । କିନ୍ତୁ ଦେଲେ ତ ।"

"ପୁଣି, ପାସୋରି ତ ନାହିଁ, ସେ ଦିନ ସେ ମିଠେଇ ଆଣି ଦେଇ-ଗଲେ !"

"ବୋଧହୁଏ ବାର୍ଦ୍ଧକ୍ୟର ବିକାର ।"

"ତାଙ୍କର ଅସଲ ମତଲବ କ'ଣ କେଜାଣି ?"

"ଅନ୍ୟର କାର୍ଯ୍ୟରେ ଅଭିସନ୍ଧି ଆରୋପ କରିବା ମୋ ସ୍ତ୍ରୀଙ୍କୁ ଶୋଭା ପାଉନାହିଁ । ହୁଏ ତ ତାଙ୍କ ପ୍ରତି ଆମର ଶ୍ରଦ୍ଧା ରହୁ ବୋଲି ସେ-ଗୁଡ଼ାକ ।"

"ଯିବା ଆଗରୁ ଯେ ମୋତେ ହଜାର କାମ କରିବାକୁ ପଡ଼ିବ ;"

"ତା'ତ ନିଶ୍ଚୟ ।" ମୁଁ ଦେଖିଲି, ତାଙ୍କ ମନ ବୁଲଡୋଜର୍ ପରି ଭବିଷ୍ୟତ ସମ୍ଭାବନା ତାଡ଼ିବାରେ ଲାଗିଛି । ମୁଁ ପୁଣି ଦେଖିଲି, ତାଙ୍କ ମନ ଆଉ ମୋଠାରେ ନାହିଁ ; ଯିବା ପୂର୍ବରୁ ମୋ ଆଡ଼କୁ ଚାହିଁବାକୁ ବି ତାଙ୍କୁ ବେଳ ମିଳିବନାହିଁ । ବେଶ୍ ଭଲ କଥା । ବେପରୁଆ ଭାବେ ମୋ କାମ କରିବାକୁ ମୋତେ ସୁଯୋଗ ମିଳିଲା ।

ସକାଳ ଜଳଖିଆ ବେଳେ, ମୋର ଦ୍ୱିତୀୟ କପ୍ କଫି ଆରମ୍ଭ ହେବା ପୂର୍ବରୁ, ସେ ପୂର୍ବ-ଆମେରିକାର ଅଧେ ଅବସର-ବିନୋଦନ ଜାଗାର ନାମ କରି ନାମଞ୍ଜୁରି କରି ସାରିଥାନ୍ତି । ଆହା ବିଚାରୀ ପ୍ରିୟତମା ମୋର ! ଗତ କେତେ ବର୍ଷ ହେଲା, ଟିକିଏ ଆମୋଦ କରିବାକୁ ମିନିଟିଏ ବି ଫୁର୍‌ସତ ପାଇ ନାହାନ୍ତି ।

ମୁଁ କହିଲି, "ଧର୍ମପତ୍ନୀ, ମୁଁ ଜାଣି ପାରୁଛି, ମୋ କଥାକୁ କାନ ଦେବାକୁ ତୁମକୁ ଏଇଲେ ଫୁର୍‌ସତ ନାହିଁ । ଗୋଟାଏ ବଡ଼ ପରି-କଳ୍ପନାରେ ଟଙ୍କା ଖଟାଇବାକୁ ପ୍ରସ୍ତାବ ଆସିଛି, ତମ ଟଙ୍କାରୁ ଆଉ ଥୋଡ଼େ ମୋର ଦରକାର । ଆଗ ଯାହା ନେଇଥିଲି, ତାହା ବେଶ୍ କାମ ଦେଖାଉଛି ।"

"ଏ ନଆ ଲଗାଣ କଥା ମିଷ୍ଟର୍ ବେକର୍ ଜାଣନ୍ତି ତ ?"

"ସେଇ ତ ତାଙ୍କର ପ୍ରସ୍ତାବ ।"

"ତେବେ ଆଉ କ'ଣ ? ଟଙ୍କା ନିଅ । ନିଜେ ଖଣ୍ଡେ ଚେକ୍ କାଟି-ଦିଅ ।"

"କେତେ ଟଙ୍କା ତୁମେ ଜାଣିବ ନାହିଁ ।"

"କି ଦରକାର ?"

"କେଉଁ ଯୋଜନାରେ ଟଙ୍କା ଲଗାଣ ହେବ ତା'ବି ଜାଣିବ ନାହିଁ ? ବେପାରରେ କେତେ ଟଙ୍କା ଖଟିବ, ବେପାର କେମିତି ଆଗେଇବ, କି ଗତିରେ ଉନ୍ନତି କରିବ, ଲାଭ କେତେ ମିଳିବାର ଆଶା, ରାଷ୍ଟ୍ରର ଆର୍ଥିକ ଦୃଷ୍ଟିରୁ ଏ ବେପାରର ଉପଯୋଗିତା ଅଛି କି ନାହିଁ—ଇତ୍ୟାଦି ବିଷୟ ଶୁଣିବ ନାହିଁ ?"

"ଶୁଣିଲେ ବୁଝି ପାରିବି ନାହିଁ ।"

"ନିଶ୍ଚୟ ବୁଝିବ, ବୁଝିବାକୁ ପଡ଼ିବ ।"

"ଥାଉ, ଥାଉ, ଏ ସବୁ ବୁଝିବାକୁ ମୋର ଦରକାର ନାହିଁ ।"

"ଲୁଚ୍ଚାକୁ କ'ଣ ତୁମକୁ ଆର୍ଥିକ ଗୋଷ୍ଠୀର ଉଗ୍ରଚଣ୍ଡୀ ବୋଲି କହନ୍ତି ! ବିରଫ ପରି ଥଣ୍ଡା ଓ ହୀରା ପରି ଦାଉଆ ବ୍ୟବସାୟ ବୁଦ୍ଧି ତୁମର—ଭୟାବହ ତୁମ ବୁଦ୍ଧି ।"

ଟମେଖି ଉତ୍ତର ଦେଲେ—

"ଆମେ ତେବେ ଅବସର-ବିନୋଦନ ପାଇଁ ଯିବା ସତେ ! ପୂର୍ବ ଦୁଇଦିନ ପାଇଁ ଯାହା କରିବା !"

ଏଭଳି ସ୍ତ୍ରୀକୁ ମଣିଷ ପ୍ରେମ ନ କରି, ପୂଜା ନ କରି ରହିବ କପରି ? 'କିଏ ସେ ମେଣ୍ଟ—କେମିତି ଲୋକ' ବୋଲି ଆବୃତ୍ତିକରି, ମୁଁ ଖାଲି-ଦୁଧ-ବୋତଲଟକ ଧରି ମୋ କାମକୁ ବାହାରିଲି ।

ଜଫ୍ରିଙ୍କ ମନର ଗତି କ'ଣ ଜାଣିବା ପାଇଁ ତାଙ୍କ ସଙ୍ଗେ ହାବୁଡ଼ିବାକୁ ଆବଶ୍ୟକ ମନେହେଲା ; କିନ୍ତୁ ବାଟରେ ଦେଖା ହେଲା ନାହିଁ । ବୋଧହୁଏ ମୋର ମୁହୂର୍ତ୍ତେ ଡେରି ହୋଇଛି, କିମ୍ବା ସେ ମୁହୂର୍ତ୍ତେ ଆଗୁଆ ଯାଇଛନ୍ତି । ମୁଁ ହାଇ ଷ୍ଟ୍ରୀଟ୍‌ରେ ପହଞ୍ଚିଲା ବେଳକୁ ସେ କଫି ହୋଟେଲ ଭିତରେ ପଶୁଥାନ୍ତି । ମୁଁ ତାଙ୍କ ପଛେ ପଛେ ଯାଇ ତାଙ୍କ ପାଖ ଟୁଲରେ ବସିଲି ; କହିଲି, "ଜଫ୍ରି, ତୁମେ ମୋର ଏ ଅଭ୍ୟାସ କରାଇ ଦେଲ ।"

"ଏଁ, ମିଷ୍ଟର୍ ହ'ଲ ! ଏଠା କଫିଟା ବଢ଼ିଆ ।"

ମୋ'ର ପୁରୁଣା ସ୍କୁଲ-ବାନ୍ଧବାକୁ ମୁଁ ଅଭିବାଦନ କଲି, "ସୁପ୍ରଭାତ, ଆନ୍ !"

"ତୁମେ ତ ଏଠାର ଲଗୁଆ ଗ୍ରାହକ ହେବାକୁ ବସିଲଣି, ଏଥ୍ !"

"ସେମିତି ତ ଜଣା ଯାଉଛି । ଗୋଟାଏ କପ୍, କିନ୍ତୁ ଏକାବେଳେ କଳା ।"

"ହେଇ ନିଅ, ଖାଲି କଳା ।"

"ନିରାଶ୍ୟର ଆଖି ପରି କଳା ।"

"କ'ଣ କହିଲ ?"

"କଳା ।"

"ଆଚ୍ଛା, ଯାହା ଦେଲ ସେଥିରେ ଦୁଧ ପଡ଼ିବାର କ'ଣ ଦେଖୁଛ, ଏଥ୍ ! ତା'ହେଲେ ଆଉ କପେ ଦେବି ।"

"ଆଚ୍ଛା, ମର୍ଫ୍, ସଂସାରର ହାଲଚାଲ କ'ଣ ?"

"ଯଥା ପୂର୍ବଂ ; ବରଂ ବର୍ତ୍ତମାନ ଅବସ୍ଥା ଆହୁରି ଖରାପ ।"

"ମୋ ସଙ୍ଗେ କାମ ବଦଳ କରିବ ?"

"ମୋ'ର ତ ସେଇ ଇଚ୍ଛା, ବିଶେଷ କରି, ଘାର୍ଯ୍ୟାଁହ୍ୱାପ୍ତାନ୍ତ ଛୁଟି ପୂର୍ବରୁ ।"

"ସେତେବେଳେ ଖାଲି ତୁମରି ଭିଡ଼ ହେବ ନାହିଁ ହେ ସାଙ୍ଗ ! ଲୋକେ ଛୁଟି ପାଇଁ ଘରେ ଖାଦ୍ୟସାମଗ୍ରୀ ସାଇତିବାକୁ ମଧ୍ୟ ଯିବେ ।"

"ହଁ, ସତେ ତ ! ଏ କଥାଟା ମୋର ଖିଆଲ ହୋଇ ନ ଥିଲା ।"

"ଖାଲି ସେତିକ ନୁହେଁ । ବଣଭୋଜି ସାମଗ୍ରୀ, ଅଙ୍ଗୁର, ମାଂସ, କବାବ୍,—ଆଜି ଭଗବାନ୍ ଆମ ଲୋକଙ୍କୁ ସୁବୁଦ୍ଧି ଦିଅନ୍ତୁ—ଲୁଣା ଶାଗର ଗୁଲ୍‌ଗୁଲି ! ଏଇଟା ତୁମ ମୁଣ୍ଡରେ ପଶୁ ନ ଥିବ ।"

"ସୋମବାର ଦିନ ଜୁଲାଇ-୪ ଛୁଟି ଓ ପାଗ ଭଲ ଥିବାରୁ ତୁମେ ଉତଲା ହୋଇଛ । ମୋ ଅବସ୍ଥା ଅଧିକ ଖରାପ ହେବା କାରଣ, ସର୍ବଶକ୍ତିମାନ୍ ପରମେଶ୍ୱର ଠିକଏ ବିଶ୍ରାମ ଓ ବିନୋଦନ ସକାଶ ପର୍ବତ ଆଡ଼କୁ ମୁହାଁଇଛନ୍ତି ।"

"ମିଷ୍ଟର୍ ବେକର୍ ?"

"ଆଉ କ'ଣ ଜେମସ୍ ଜି. ବ୍ଲେଇନ୍ ?"

"ମିଷ୍ଟର୍ ବେକର୍‌ଙ୍କ ସଙ୍ଗେ ଦେଖା କରିବାକୁ ଚାହେଁ ; ତାଙ୍କ ପାଖେ କାମ ଅଛି ।"

"ପାରିବ ଯଦି ଦେଖାକର । ଖଜଣି ଭିତରେ ପଇସା ପଡ଼ିଲେ ଯେମିତି ହୁଏ, ସେ ତ ଏବେ ସେମିତି ଖୁପ୍ ଖୁପ୍ ହେଉଛନ୍ତି ।"

"ଜଫ୍ରି ! ତୁମ ଯୁଦ୍ଧ-କ୍ଷେତ୍ରରେ ସ୍ୟାଣ୍ଡୱଇଚ୍ ପହଞ୍ଚାଇବ କି ?

"ଦରକାର ହେଲେ କହିବ ।"

"କଫି ଦାମଟା ଆଜି ମୋ'ଆଡୁ ।"

"ବହୁତ ଆଚ୍ଛା ।"

ଦୁହେଁ ଏକ ସଙ୍ଗେ ଷ୍ଟ୍ରୀଟ୍ ପାର ହେଲେ ଏବଂ ଗଳି ରାସ୍ତାରେ ପଶିଲେ । "ଆଜି ତମ ମନଟା କାହିଁକି ଦବିଛି, ଜଫ୍ରି ?"

"ହଁ, ସେ କଥା ସତ । ପରଧନ ଗଣନା କରି କରି ମୋତେ ବିରକ୍ତ ଲାଗିଲାଣି । ହ୍ୱାପ୍ତାନ୍ତକୁ ଗୋଟାଏ ବଢ଼ିଆ ସଙ୍ଗିନୀ ମିଳିଛି ସେ ଲାଭ କ'ଣ ? ସେତେବେଳକୁ ଏତେ ଲେଞ୍ଜେରିକୋଚରା ହୋଇ ଯାଇଥିବ

ଯେ ମଜା କରିବାକୁ ମନ ନ ଥିବ ।" ସେ ବ୍ୟାଙ୍କ୍ ବାଡ଼ ଦୁଆରର ଗ୍ରୀଲ କଣା ଭିତରେ ଖଣ୍ଡେ ଲଜେଞ୍ଜ ଗୁଡ଼ିଆ କାଗଜ ବଣ୍ଡା କରି ଗୁଞ୍ଜି ଦେଲେ ଓ ଭିତରକୁ ଯାଉ ଯାଉ କହିଲେ, "ହଉ, ପରେ ଦେଖାହେବ ।" ଯ୍ୟା କହି ସେ ଦୁଆର ବନ୍ଦ କଲାବେଳକୁ ମୁଁ ବାଡ଼ଦୁଆରଟା ଠେଲି, ମେଲାଇ ପଚାରିଲି, "ଜମ୍ମି ! ଆଜି ସ୍ୟାଣ୍ଡଉଇଚ୍ ଦରକାର ?"

ଚଟାଣରୁ ତେଲ ଚକଟା ଗନ୍ଧ ବାହାରୁଥିବା ଅନ୍ଧାରିଆ ଘର ଭିତରୁ ସେ କହିଲେ, "ନା, ଧନ୍ୟବାଦ । ଶୁକ୍ରବାରରେ ହଉ ନ ହଉ, ଶନିବାରରେ ନିଶ୍ଚୟ ଦରକାର ।"

"ହେ'ପରରେ ବ୍ୟାଙ୍କ୍ ବନ୍ଦ, ହେବ ନାହିଁ ?"

"କହୁଛି ପରା, ବ୍ୟାଙ୍କ୍ ବନ୍ଦ କିନ୍ତୁ ମର୍ଗ ବନ୍ଦ ନୁହେ ।"

"ବେଳ ହେଲେ ଆସିବ ।"

"ଅବଶ୍ୟ ମିଷ୍ଟର୍ ହଲି, ଧନ୍ୟବାଦ—ଧନ୍ୟବାଦ ।"

ଥାକ ଉପରେ ମୋର ସୈନ୍ୟମାନଙ୍କୁ ବିଶେଷ କିଛି କହିବାକୁ ନ ଥିଲା ; କେବଳ ଏତିକି କହିଲି, "ସୁପ୍ରଭାତ, ଭଦ୍ରମହୋଦୟଗଣ ! ଖୁସୀ କର ।" ନ'ଟା ବାଜିବାକୁ ଅଳ୍ପ କେତେ ମୁହୂର୍ତ୍ତ ଆଗରୁ, ଝାଡ଼ଣ ଆବୃତ ହୋଇ, ଗୁଞ୍ଜୁଣୀ ହସ୍ତରେ ମୁଁ ସମ୍ମୁଖ ସଡ଼କକୁ ବାହାରି ପଡ଼ିଲି, ଦୋକାନର ସାମନା ରାସ୍ତା ସଙ୍ଗେ ମୁକାବିଲା କରିବାକୁ ।

ମିଷ୍ଟର୍ ବେକର୍ ଘଣ୍ଟା ପରି ଏପରି ସମୟାନୁବର୍ତ୍ତୀ ଯେ ତାଙ୍କ ଭିତରେ ଟିକ୍ ଟିକ୍ ଶବ୍ଦ ହେଉଥିବାର ଶୁଣିପାରିବ । ମୋର ବିଶ୍ୱାସ, ଘଣ୍ଟାର ହେୟାରସ୍ପ୍ରିଂ ପରି ତାଙ୍କ ଛାତିରେ ଗୋଟାଏ ହେୟାର୍-ସ୍ପ୍ରିଂ ଅଛି । ଆଠଟା ଛପନ, ଆଠଟା ସତାବନ—ଦେଖିବ ସେ ଏଲ୍‌ମ୍‌ଷ୍ଟ୍ରୀଟ୍‌ରେ, ଆଠଟା ଅଠାବନରେ ହାଇଷ୍ଟ୍ରୀଟ୍, ଆଠଟା ଅଣଷଠିରେ ଆମ ଦୋକାନର କାଚ କବାଟ ସାମନା । ସେଠାରେ ବନ୍ଧୁକ ଧରି ସାଲ୍ୟୁଟ୍ କଲାପରି, ମୁଁ ଗୁଞ୍ଜୁଣୀ ଟେକି ଆଗେଇ ଗଲି, "ମିଷ୍ଟର୍ ବେକର୍ ! ଆପଣଙ୍କ ସଙ୍ଗେ କଥାବାର୍ତ୍ତା ଅଛି ।"

"ସୁପ୍ରଭାତ, ଏଥାନ୍ ! ମିନିଟିଏ ଅପେକ୍ଷା କରିବ ? ଆସ ବ୍ୟାଙ୍କକୁ ।"

ମୁଁ ତାଙ୍କ ପଛେ ପଛେ ଗଲି ; ତା'ପରେ ଯାହା ଘଟିଲା, ତାହା

ବାସ୍ତବକ୍, ଜପ୍ପି କହିଲା ପରି ଗୋଟାଏ ଧର୍ମ-ଅନୁଷ୍ଠାନ । ଘଣ୍ଟା କଣ୍ଟା 'ନଅ' ଅଙ୍କ ଭେଦ କରିବା ମାତ୍ରେ ସେମାନେ ସମସ୍ତେ ଆଟେନ୍‌ସନ୍ ମୁଦ୍ରାରେ ଠିଆ ହୋଇପଡ଼ିଲେ । ଟଙ୍କା ବାକ୍ସର ବଗିଚ ଇସ୍ପାତ ଦୁଆର ଆରପଟେ ଟୁଂ ଶବ୍ଦ ପରେ, କୁଡ଼ୁ କୁଡ଼ୁ ଶବ୍ଦ ଶୁଭିଲା ; ଜପ୍ପି, ଯାଦୁବିଦ୍ୟା ସାଧିଲା ପରି, କେତେକ ଅଜଣା ସଂଖ୍ୟା ଡାଏଲ୍ କରିଦେଲେ ଓ ଗୋଟାଏ ଚକ ଘୁରାଇ ଦେଲେ ; ଦୁଆରର ବୋଲ୍‌ଟଗୁଡ଼ାକ ଫିଟିଗଲା । ତା'ପରେ ଦୁଆରଟା ତା' ମନକୁ ଫିଟିଯାଇ ମହାପବିତ୍ର ଟଙ୍କା-ସମାଜ ଦୃଷ୍ଟି-ଗୋଚର ହେଲେ ; ମିଷ୍ଟର୍ ବେକର୍ ସେମାନଙ୍କର ଅଭିବାଦନ ଗ୍ରହଣ କଲେ । ମୁଁ ଜଣେ ସାମାନ୍ୟ ଭକ୍ତ ପରି ପ୍ରସାଦ ପାଇବା ସକାଶ ଲୁହା ବାଡ଼ାର ବାହାରେ ଠିଆ ହୋଇଥାଏ ।

ମିଷ୍ଟର୍ ବେକର୍ ଏଥର ମୋ ଆଡ଼କୁ ଘୂରି କହିଲେ, "ହଁ, ଏଥାନ୍, ତୁମ ପାଇଁ କ'ଣ କରିବି କହ ।"

ମୁଁ ନରମ ଗଳାରେ କହିଲି, "ଆପଣଙ୍କ ସଙ୍ଗେ ମୋ'ର ଏକାନ୍ତରେ କଥାବାର୍ତ୍ତା ଅଛି ; ଆଉ, ମୁଁ ଦୋକାନ ଛାଡ଼ି ଆସିବା ଅସମ୍ଭବ ।"

"ଏ କଥାର ସମୟ ଟିକିଏ ଗଡ଼ାଇ ଦେଲେ ଚଳିବ ନାହିଁ ?"

"ମୋର ଭୟ, ଗଡ଼ାଇ ଦେଲେ ଖରାପ ହେବ ।"

"ଦୋକାନରେ ତୁମ ପଛକୁ ଆଉ ଜଣେ ରହିବା ଦରକାର ।"

"ସେ ଅଭାବ ତ ମୁଁ ଅନୁଭବ କରୁଛି ।"

"ହଉ, ଟିକିଏ ଫୁରୁସତ୍ ମିଳିଲେ ମୁଁ ଯାଇ ଦେଖିବି । ଟେଲର୍‌ର କିଛି ଟେର୍ ପାଇଲ ?"

"ଏପର୍ଯ୍ୟନ୍ତ ପାଇନାହିଁ । କିନ୍ତୁ ମୁଁ ଗୋଟାଏ ବିଜ୍ଞାପନ ଦେଇ ଦେଇଛି ।"

"ଆଚ୍ଛା, ମୁଁ ଏଠା କାମ ସାରି ଯିବାକୁ ଚେଷ୍ଟା କରିବି ।"

"ଧନ୍ୟବାଦ, ଆଜ୍ଞା ।" ମୁଁ ଠିକ୍ ଜାଣିଥାଏ, ସେ ନିଶ୍ଚୟ ଆସିବେ । ଆସିଲେ ବି, ଘଣ୍ଟାକରୁ କମ୍ ସମୟରେ ; ସେତେବେଳେ ଦୋକାନରେ ଥିବା ଗ୍ରାହକମାନେ ବିଦା ହେବା ପର୍ଯ୍ୟନ୍ତ ଅପେକ୍ଷା କରି ଠିଆ ହେଲେ ମଧ୍ୟ ।

"ଆଚ୍ଛା, ଏଥାନ୍, ଏଥର କହ, କଥାଟା କ'ଣ ?"

"ମିଷ୍ଟର୍ ବେକର୍ ! ଡାକ୍ତର, ଓକିଲ ଓ ଧର୍ମଯାଜକଙ୍କର ନିୟମ ଅଛି, ତାଙ୍କ କର୍ମକ୍ଷେତ୍ରରେ ଯାହା ଶୁଣିବେ, ତା'କୁ ଗୁପ୍ତ ରଖିବେ । ବ୍ୟାଙ୍କର୍‌ଙ୍କର ସେପରି କିଛି ନିୟମ ଅଛି ତ ?"

ସେ ମୁରୁକି ହସିଲେ, "ଏଥାନ୍, କେବେ ଶୁଣିଛ, କୌଣସି ବ୍ୟାଙ୍କର୍ ତା ଗ୍ରାହକର ଟଙ୍କା କଉଡ଼ି ବିଷୟରେ ଆଉ କାହା ଆଗେ ପାଟି ଫିଟାଇବାର ?"

"ନାହିଁ ।"

"ହଉ, ଭବିଷ୍ୟତରେ ପରୀକ୍ଷା କରି ଦେଖିବ, କାହା ବିଷୟରେ କିଛି ବାହାର କରି ପାରୁଛ ନା ନାହିଁ । ସେ ନିୟମ ତ ଅଛି ; ଅଧିକନ୍ତୁ ତୁମେ ଯେ ମୋର ବନ୍ଧୁ ।"

"ସେ କଥା ଭଲ କରି ଜାଣେ, ଆଜ୍ଞା ! ମନେ ହେଉଛି, ମୁଁ ଠିକ୍ ଏ ତୁରୁତୁରିଆ ହୋଇ କଥା ପକାଉଛି । ଅନେକ ଦିନ ହୋଇଗଲାଣି, ମୁଁ ବେକାର ହେବାର ଦୁର୍ଗତିରୁ ରକ୍ଷାପାଇ ରହିଛି ।"

"ବେକାର ? ମାନେ ?"

"ସବୁକଥା ଖୋଲି ଖୋଲି କହି ଦେଉଛି, ମିଷ୍ଟର ବେକର୍ ! ମ୍ୟାରୁଲେ ଅଡୁଆରେ ପଡ଼ିଛନ୍ତି ।"

ସେ ମୋ ପାଖକୁ ଲାଗି ଆସିଲେ, "କି ପ୍ରକାର ଅଡୁଆ ?"

"ମୁଁ ଠିକ୍ କରି କିଛି ଜାଣି ନାହିଁ, ଆଜ୍ଞା ! ମୋ'ର ସନ୍ଦେହ ହେଉଛି, ବେଆଇନ୍ ଭାବେ ଆମେରିକାରେ ପ୍ରବେଶ କରିଥିବାରୁ ।"

"ତୁମେ କେମିତି ଜାଣିଲ ?"

"ସେ ମୋତେ କହିଲେ —ଅବଶ୍ୟ ସିଧାସଳଖ ଭାବେ ନୁହେଁ । ଆପଣ ତ ଜାଣନ୍ତି ତାଙ୍କ ଢଙ୍ଗ ।"

ମୁଁ ଏକରକମ ପ୍ରତ୍ୟକ୍ଷ ଦେଖୁଥାଏ, ତାଙ୍କ ମନ ଏଣେ ତେଣେ ଅଣ୍ଡାଳି ହେଉଥାଏ । ଏପଦ ସେପଦ ଯୋଡ଼ା ଯୋଡ଼ି କରି ସେ ଅର୍ଥ ବାହାର କରିବାରେ ଲାଗିଥାନ୍ତି । ସେ କହିଲେ, "ହଉ, ଆଉ କ'ଣ ଅଛି କହ । ତାଙ୍କୁ ତ ଦେଶାନ୍ତର କରି ଦିଆଯିବା ଭଳି ଲାଗୁଛି ।"

"ମୋର୍ ବି ସେଇ ଭୟ । ସେ ମୋ ପ୍ରତି ଖୁବ୍ ଭଲ ବ୍ୟବହାର

କରିଛନ୍ତି । ତାଙ୍କର ମନର କଷ୍ଟ ହେଲ୍‌ଭଳି ମୁଁ କିଛି କରିବାକୁ ଚାହେଁ ନାହିଁ ।”

“କିନ୍ତୁ, ତୁମେ ନିଜ ସ୍ୱାର୍ଥ ଁ ତ ଦେଖିବାକୁ ହେବ, ଏଥାନ୍ ! ତାଙ୍କର ପ୍ରସ୍ତାବଟା କ’ଣ ?”

“ତାଙ୍କର ପ୍ରସ୍ତାବ ହୋଇ ସଫା କିଛି ନାହିଁ । ଉତ୍ତେଜନାରେ ଲୁହା ହୋଇ ଥିବା ଏଣୁତେଣୁ ଅନେକ କଥା ଭିତରୁ ମୁଁ ସାର ଯାହା ବାହାରକରିଛି । ମୁଁ ଯେତେଦୂର ଜାଣୁଛି, ମୁଁ ଯଦି ସାଙ୍ଗେ ସାଙ୍ଗେ ନଗଦ ପଚିଶି ହଜାର ବାହାର କରି ପାରିବି, ତେବେ ଏ ଦୋକାନର ମୁଁ ସ୍ୱତ୍ୱାଧିକାରୀ ହୋଇ ପାରିବି ।”

“ତୁମ କଥାରୁ ତ ଜଣା ପଡ଼ୁଛି, ସେ ଟଙ୍କା ଧରି ଖସିଯିବା ମତଲବ୍‌ରେ ଅଛନ୍ତି—କିନ୍ତୁ ସେ କଥା ତୁମେ ଜାଣନାହିଁ ?”

“ମୁଁ ପ୍ରକୃତରେ କିଛି ଜାଣେ ନାହିଁ ।”

“ଯାହାହେଉ, ତା’ହେଲେ ତୁମେ ତାଙ୍କ ସଙ୍ଗେ ମିଶି ଷଡ଼୍‌ଯନ୍ତ୍ର କରୁଥିଲ ବୋଲି ଅଭିଯୋଗ ହେବାର ଆଶଙ୍କା ନାହିଁ । ସେ ତୁମକୁ ନିର୍ଦ୍ଦିଷ୍ଟ ଭାବେ କିଛି କହି ନାହାନ୍ତି ?

“ନାଇଁ, ଆଜ୍ଞା !”

“ତେବେ ଏତିକି ଟଙ୍କା ବୋଲି ତୁମେ ଜାଣିଲ କିପରି ?”

“ସେ ତ ସହଜ କଥା, ଆଜ୍ଞା ! ଆମ ହାତରେ ତ ସେତିକି ମାତ୍ର ଅଛି ।”

“କିନ୍ତୁ ଆଉ ଅଳ୍ପରେ ବି ତ ଦୋକାନଟା ମିଳିପାରିବା ସମ୍ଭବ ।”

“ହୋଇପାରେ ।”

ତାଙ୍କ ବିଚକ୍ଷଣ ଚକ୍ଷୁ ଦୋକାନର ସବୁଆଡ଼େ ବୁଲିଗଲା । ସେ ଆନୁମାନିକ ମୂଲ୍ୟଟା ଅଟକଳ କରିନେଲେ । “ତୁମେ ଯାହା କହୁଛ ସେ-କଥା ଯଦି ସତ, ତେବେ ତ ତୁମେ ତାଙ୍କ ସଙ୍ଗେ ଭାଉଭଟକା କରି ଦାମ କମାଇବା ସହଜ ହେବ ।”

“ମୋତେ କ’ଣ ସେପରି କରି ଆସିବ ?”

“ତୁମେ ତ ଜାଣ, ଛକାପଞ୍ଝା କାରବାର ମୋ ହାତେ ହୁଏନାହିଁ । ତେବେ, ତୁମେ ଯଦି କହିବ, ମୁଁ ତାଙ୍କ ସଙ୍ଗେ କଥାବାର୍ତ୍ତା କରିପାରେ ।”

"କିନ୍ତୁ ସେ ତ ଟାଉନ୍‌ରେ ନାହାନ୍ତି ।"

"ଫେରିବେ କେବେ ?"

"ମୁଁ ସେକଥା ଜାଣେ ନାହିଁ, ଆଜ୍ଞା ! ଦେଖନ୍ତୁ, ମୁଁ ଯାହା ସବୁ କହୁଛି, ତାହା ମୋ ମନର ଧାରଣା ମାତ୍ର । ମନେ କରୁଛି, ସେ ହଠାତ୍ ଆସି ପହଞ୍ଚିଯାଇ ପାରନ୍ତି । ସେ ଆସିଲା ବେଳକୁ ମୋ ହାତରେ ଟଂକା ଥିଲେ, ହୁଏତ ସେ କାରବାର ଖତମ୍ କରି ଦେଇ ପାରନ୍ତି । ଆପଣ ତ ଜାଣନ୍ତି, ତାଙ୍କର ମୋ ପ୍ରତି ଶ୍ରଦ୍ଧା ଅଛି ।"

"ତାଙ୍କର ଶ୍ରଦ୍ଧା ଅଛି ବୋଲି ମୁଁ ଜାଣେ ।"

"ମୁଁ ତାଙ୍କର ବିପଦ ବେଳେ ତାଙ୍କଠାରୁ ଫାଇଦା ଉଠାଇବାକୁ ବସିବା ମୋର ଆଦୌ ଇଚ୍ଛା ନୁହେଁ ।"

"ସେ ଆଉ କାହାକୁ ଦୋକାନଟା ବିକି ଦେଇ ପାରନ୍ତି ତ ! ସେ ତ ଅନ୍ୟ ଯେକୌଣସି ଲୋକଠାରୁ ସହଜେ ପଚିଶ ହଜାର ପାଇ-ପାରନ୍ତି ।"

"ତା' ହେଲେ ମୁଁ ବୃଥାରେ ଗୁଡ଼ାଏ ଆଶା କରି ବସିଛି ସିନା !"

"ଦେଖ, ମନ ଊଣା କର ନାହିଁ । ବେପାରରେ ଏହା ପ୍ରଥମ ନିୟମ ମନେ ରଖିଥିବ ।"

"ନିଶ୍ଚୟରେ, ଏ ଟଂକାଟା ମୋର ନୁହେଁ, ମେସିଙ୍କର ।"

"ହଁ, ତ । ଆଚ୍ଛା, ତୁମେ ଭଲ କ'ଣ ବିଚାରୁଛ ?"

"କ'ଣ କି, ମୁଁ ବିଚାରୁଛି, ଆପଣ ଗୋଟାଏ ଦଲିଲ ତିଆରି କରି ତାରିଖ ଓ ଟଂକା ଘରଟା ଖାଲି ରଖି ମୋତେ ଦିଅନ୍ତେ । ତା' ହେଲେ ମୁଁ ଟଂକାଟା ଶୁକ୍ରବାର ଦିନ ଉଠାଇ ପାଖରେ ରଖନ୍ତି ।"

"ଶୁକ୍ରବାର ଦିନ ଟଂକା ଉଠାଇବାର ମାନେ ?"

"ସେ ବି ଆଜ୍ଞା, ମୋ' ମନର କଳ୍ପନା ମାତ୍ର । ଛୁଟିବେଳକୁ ସମସ୍ତେ ସ୍ଥାନାନ୍ତର ଚାଲିଯା'ନ୍ତି ନା ଏପରି କିଛି ସେ କହିବାର ଶୁଣି, ଅନୁମାନ କରୁଛି, ବୋଧହୁଏ ସେ ସେତିକିବେଳକୁ ଆସି ହାଜରି ହେବେ । ଆପଣଙ୍କ ବ୍ୟାଙ୍କରେ କ'ଣ ତାଙ୍କର ଆକାଉଣ୍ଟ୍ ନାହିଁ ।"

"ଭଗବାନ୍‌ଙ୍କ କୃପାରୁ ସେ ଅଲଗା ଯାଇଛି । ଏବେ ଅଳ୍ପଦିନ ତଳେ ସେ ତାଙ୍କର ସବୁ ଟଂକା ଉଠାଇ ନେଇଛନ୍ତି । ପୂର୍ବେ ସେ ଏହିପରି

କେତେ ଥର କରିଛନ୍ତି; ଯେତିକ ନେଇଥାନ୍ତି ପରେ ତହିଁରୁ ବେଶି ଆଣି ଜମା କରନ୍ତି । ତେଣୁ ଏଥର ସବୁ ଟଙ୍କା ଉଠାଇଲା ବେଳେ ମୁଁ କିଛି ସନ୍ଦେହ କଲି ନାହିଁ ।" ଏତିକବେଳେ ଅତି-ବେଶଭୂଷା-ଶୋଭିତା ମିସ୍ ରେଇନ୍‌ଗୋଲ୍‌ଡ୍ ଆସି ଦୋକାନର ଥଣ୍ଡା-କାମରା ପାଖରେ ଠିଆ ହେଲେ; ମିଷ୍ଟର୍ ବେକର୍ ଏଡ଼େ ଏଡ଼େ ଆଖି କରି ତାଙ୍କ ଆଡ଼କୁ ଦଣ୍ଡେ ଖୁବ୍ ଚାହିଁଲେ, କିନ୍ତୁ ତାଙ୍କ ସହାସ୍ୟ ଅଭିବାଦନ ଗ୍ରହଣ ବି କଲେ ନାହିଁ । ତାଙ୍କ ଆଡ଼ୁ ମୁହଁ ଫେରାଇ ମିଷ୍ଟର୍ ବେକର୍ ମୋତେ କହିଲେ, "ଜାଣ ଯେ, ଏ କାରବାରରେ ତୁମେ ଏକାବେଳକେ ଖିଅରି ହୋଇ ଯିବାର ଆଶଂକା ବି ଅଛି ।"

"କିମିତି, ଆଜ୍ଞା ?"

"ପ୍ରଥମତଃ, ସେ ଅଲଗା ପାଞ୍ଚସାତ ଜଣଙ୍କୁ ଦୋକାନଟା ବିକି ଦେଇ ପାରନ୍ତି; ଦ୍ୱିତୀୟତଃ, ଏ ଦୋକାନ ବନ୍ଧକ ଦେଇ ଗୁଡ଼ାଏ ଟଙ୍କା ଆଗରୁ ଉଠାଇ ନେଇ ପାରିଥାନ୍ତି । ଆମେ ଯଦି ସେ ସବୁ ଅନୁସନ୍ଧାନ ନ କରି —।"

"ହୁଏତ ଅଞ୍ଚଳ ଅଫିସ୍‌ରେ ଯାଇ ଏ ବିଷୟରେ ଅନୁସନ୍ଧାନ କରି ପାରିବ । ମିଷ୍ଟର୍ ବେକର୍, ଆପଣ କେଡ଼େ କାର୍ଯ୍ୟବ୍ୟସ୍ତ ମୁଁ ଜାଣେ । ମୋ' ପରିବାର ସଙ୍ଗେ ଆପଣଙ୍କ ବନ୍ଧୁତାର ମୁଁ ଅଯଥା ସୁବିଧା ନେଉଛି । କିନ୍ତୁ ମୁଁ ଯେ ନିରୁପାୟ । ଏ ସବୁ ବିଷୟରେ ଅଭିଜ୍ଞ ବନ୍ଧୁ ଆପଣଙ୍କ ବ୍ୟତୀତ ମୋର ଆଉ କେହି ନାହିଁ ।"

"ଏ ଦୋକାନର ସ୍ୱତ୍ୱାସ୍ୱତ୍ୱ ବିଷୟରେ ମୁଁ ଯାଇ ଟମ୍ ଓ୍ୱାଟ୍‌ସନ୍ ସଙ୍ଗେ ଦେଖା କରିବ । ବଡ଼ ଦୁଃଖର ବିଷୟ, ଏଥାନ୍, ବଡ଼ ଭଲ ସମୟଟା ଏ ଆସି ପହଞ୍ଚିଛି । କାଲି ରାତିରେ ମୁଁ ଠାଏ ଯିବାକୁ ବାହାରିଛି । ଯଦି ପ୍ରକୃତରେ ଏ ମ୍ୟାକ୍ରୁଲେଟା ଠକ ହୋଇଥାଏ, ତେବେ ତୁମକୁ ବି ଧରିପାରନ୍ତି । ତୁମକୁ ଜଜ୍ ଆଗରେ ଠିଆ ହେବାକୁ ପଡ଼ିପାରେ ।"

"ତେବେ, ହୁଏତ, ମୁଁ ଏ ପରିକଳ୍ପନା ଛାଡ଼ି ଦେଲେ ଭଲ ହେବ । କିନ୍ତୁ, ଭଗବାନ୍‌ଙ୍କ ନାମ ଧରି କହୁଛି, ମିଷ୍ଟର୍ ବେକର୍, ଏ ଦୋକାନରେ ଗୁମାସ୍ତା ହୋଇ ରହିବାକୁ ଆଉ ମନ ହେଉ ନାହିଁ ।"

"ଛାଡ଼ ଦେବାକୁ ତ ମୁଁ କହୁନାହିଁ । ମୋ'ର କହିବାର କଥା, ଏଥିରେ ବିପଦର ସମ୍ଭାବନା ବି ଅଛି ।"

"ମୁଁ ଦୋକାନର ମାଲିକ ହେଲେ, ମେଣ୍ଟି କେଡ଼େ ଖୁସି ନ ହୁଅନ୍ତେ ! କିନ୍ତୁ ଆପଣ ଯାହା କହୁଛନ୍ତି ସେ କଥା ଠିକ୍ । ତାଙ୍କ ଧନରେ ମୁଁ ଜୁଆ ଖେଳିବ କାହିଁକି ? ମୁଁ ବିଚାରୁଛି, ଏତେବେଳେ ଯାଇ ଫେଡ଼େ-ରାଲ୍ ଗଭର୍ଣ୍ଣମେଣ୍ଟର 'ଅଫିସର୍‌ମାନଙ୍କୁ ଓ୍ୱାକିବ୍ କରିଦେବା ଉଚିତ ।"

"କିନ୍ତୁ ତୁମେ ଯେଉଁ ସୁବିଧାଟା ପାଇବାର ଆଶା କରୁଛ, ତାହା କଲେ ସେତିକ ଯିବ ।"

"କେମିତି ?"

"ଯଦି ମ୍ୟାରୁଲେ ବିତାଡ଼ିତ ହୁଅନ୍ତି, ତେବେ ଜଣେ ଏଜେଣ୍ଟ୍ ଦ୍ୱାରା ଆରେ ସେ ତାଙ୍କ ସମ୍ପତ୍ତି ହସ୍ତାନ୍ତର କରାଇବେ । ସେହିପରି ହେଲେ, ଏ ଦୋକାନଟା ତୁମ ସମ୍ବଳ ଅପେକ୍ଷା ବହୁତ ଅଧିକ ଦାମରେ ବିକ୍ରୀ ହୋଇ ପାରିବ । ତା' ପରେ ସେ ସରକାର ଆଖିରେ 'ଧୂଳି ପକାଇବାକୁ ଯାଉଛନ୍ତି ବୋଲି ତୁମେ ନିଧାର୍ଯ୍ୟ ଭାବେ ଜାଣ ନାହିଁ । ନ ଜାଣି, ସେ ଖସି ଯିବାକୁ ବସିଛନ୍ତି ବୋଲି ତୁମେ କହିବ ବା କିପରି ? ସେ ଧରା ପଡ଼ି-ଲେଣି କି ନାହିଁ, ସେ କଥା ବି ତୁମକୁ ଜଣା ନାହିଁ ।"

"ଯଥାର୍ଥ କଥା ।"

"ପ୍ରକୃତରେ କହିବାକୁ ଗଲେ, ତାଙ୍କ ବିଷୟରେ ତୁମେ କିଛି ଜାଣ ନାହିଁ—ଯାହାକୁ କହନ୍ତି ଜାଣିବା— ମୋତେ ଯାହା ସବୁ କହିଲ, ସେ ସବୁ ଅସ୍ପଷ୍ଟ ସନ୍ଦେହ ମାତ୍ର । ନା କ'ଣ ?"

"ଠିକ୍ ।"

"ଯାହା ସବୁ ସନ୍ଦେହ କରୁଛ, ସେ ସବୁ ପାସୋରି ଦେବା ଭଲ ।"

"କୌଣସି ରେକର୍ଡ ନ ରଖି ନଗଦ ଟଙ୍କା ଦେଇ ପକାଇଲେ ପରିଣାମ ଖରାପ ହେବ ନାହିଁ ? ମୋର ଉପରେ ସନ୍ଦେହ ହେବ ନାହିଁ ?"

"ଯେଉଁ ଚେକ୍ ଉପରେ ଟଙ୍କା ଉଠାଇବ, ତା' ପଛ ପଟେ ଏମିତି ଗୋଟାଏ କିଛି ଲେଖିପାର,—ଏ. ମ୍ୟାରୁଲେଙ୍କ ସଙ୍ଗେ ଖାଦ୍ୟ-ସାମଗ୍ରୀ ବେପାରରେ ଖଟାଇବାକୁ ନେବାର—ଯା କଲେ, ତୁମ ଉଦ୍ଦେଶ୍ୟ ସାଧୁ ବୋଲି ଗୋଟାଏ ପ୍ରମାଣ ରହିଯିବ ।"

"ଧରନ୍ତୁ, ଯଦି ଏ ପରିକଳ୍ପନା କାର୍ଯ୍ୟକାରୀ ନ ହେଲା ?"

"ନ ହେଲେ ନାହିଁ—ଟଙ୍କାଟା ନେଇ ପୁଣି ବ୍ୟାଙ୍କ୍‌ରେ ଜମା କରିଦେବ ।"

"ତେବେ କ'ଣ ଆପଣ କହୁଛନ୍ତି, ବିପଦର ଆଶଂକା ଥିଲେ ବି ଏଥିରେ ଆଗେଇବା ।"

"ବୁଝିଲ, ଏଥାନ୍ ! ସବୁ ବାଟରେ ବିପଦ । ବିପଦକୁ ଏକା-ବେଳକେ ଏଡ଼ାଇ ହେବ ନାହିଁ । ଏତେ ଗୁଡ଼ାଏ ଟଙ୍କା ବ୍ୟାଙ୍କ୍‌ରୁ ଆଣି ପାଖରେ ରଖିବା ତ କମ୍ ବିପଦ ନୁହେଁ ।"

"ସେ ବିଷୟରେ ମୁଁ ଖୁବ୍ ସାବଧାନ ହେବି ।"

"ବିଶ୍ବାସ କରୁଛି, ଏତେବେଳେ ମୁଁ ଟାଉନ୍ ଛାଡ଼ି ନ ଯାଇଥିଲେ ଭଲ ହୋଇଥାନ୍ତା ।"

ଦୋକାନର କାରବାର ଟାଇମ୍ ବିଷୟରେ ମୁଁ ଯାହା କହୁଛି ତାହା ଆଜି ବି ଠିକ୍ ହେଲା । ବେକରଙ୍କ ସଙ୍ଗେ ମୁଁ ଯେ ଏତେବେଳ କଥାବାର୍ତ୍ତା ହେଲି, ତା ଭିତରେ କେହି ଜଣେ ହେଲେ ଆସି ନ ଥିଲେ । ଏବେ ଆସି ପହଞ୍ଚିଲେ ଅଧଡଜନେ ଗ୍ରାହକ—ତିନିଜଣ ସ୍ତ୍ରୀ ଲୋକ, ଜଣେ ବୁଢ଼ା ଓ ଦୁଇଜଣ ପିଲା । ମିଷ୍ଟର୍ ବେକର୍ ମୋ ପାଖକୁ ଚାଲିଆସି ଚୁପି ଚୁପି କହିଲେ, "ଟଙ୍କାଟା ପାଞ୍ଚଶଟଙ୍କିଆ ନୋଟ୍‌ରେ ବାହାର କରି ଦେବ ଓ ନମ୍ବର ଟିପି ରଖିବ । ପରେ ଯଦି ସେ ଧରା ହୁଅନ୍ତି, ନମ୍ବର ଦେଖାଇ ତୁମେ ତୁମ ଟଙ୍କା ଫେରି ପାଇବ ।" ଗମ୍ଭୀର ଭାବେ ସେ ସ୍ତ୍ରୀଲୋକ ତିନିଙ୍କୁ ମୁଣ୍ଡ ଟିଙ୍ଗାରି ଅଭିବାଦନ କଲେ ; ବୁଢ଼ାଙ୍କୁ କହିଲେ, "ସୁପ୍ରଭାତ, ଜଜ୍" ଓ ପିଲା ଦୁହିଁଙ୍କ ଲୁଖୁରା ବାଳରେ ନିଜର ଆଙ୍ଗୁଠି ବୁଲାଇ ନେଲେ । ବେଶ୍ ବିଚକ୍ଷଣ ଲୋକ, ମିଷ୍ଟର ବେକର୍ ।

—+—

## — ଚତୁର୍ଦ୍ଦଶ ପରିଚ୍ଛେଦ —

ଜୁଲାଇ ଚାଲିଲା । ସୁନ୍ଦା ଭାଙ୍ଗି ମୁଣ୍ଡ ବାଳକୁ ଦୁଇ ଭାଗ କରି ଦେଲା ପରି ଏ ଘଟଣାଟା ବର୍ଷକୁ ଦୁଇଭାଗ କରି ଦିଏ । ମୋତେ ମଧ୍ୟ ଏହା ଦୁଇ ଭାଗ କରି ଦେବ ବୋଲି ଆଗରୁ ଭାବିଥିଲି । ଗତକାଲିର ମୁଁ ଠାରୁ ଆସନ୍ତା କାଲିର ମୁଁ, ସଂପୂର୍ଣ୍ଣ ଅଲଗା । କାଲିସୁଦ୍ଧା ମୁଁ ଯେଉଁ କର୍ମପ୍ରକ୍ରିୟା ସୁରୁ କରି ଚଳାଇ ଦେଇଛି ତାହାର ପ୍ରତ୍ୟାବର୍ତ୍ତନ ଅସମ୍ଭବ । ସମସ୍ତଙ୍କମେ ଘଟଣାଚକ୍ର ତା' ମନକୁ ଘୂରି ଗୁଲିଛି । ସମୟ ଓ ଅବସ୍ଥାଚକ୍ର ମୋର ଅନୁକୂଳରେ ଗୁଲିଛନ୍ତି । ମୁଁ ଯାହା କରିଛି ତା'ର ପ୍ରକୃତ ସ୍ୱରୂପ ଘୋଡ଼ାଇ-ବାକୁ ମୁଁ ତା' ଉପରେ ସାତ୍ତ୍ୱିକତାର ଆବରଣ ପକାଇ ନାହିଁ । ମୁଁ ଯାହା କରିଛି, ତାହା କରିବା ପାଇଁ କେହି ମୋ ବେକରେ ବାଉଁଶ ପକାଇ ନ-ଥିଲା । ସୁଖସ୍ୱାଚ୍ଛନ୍ଦ୍ୟ, ସମ୍ମାନ ଓ ସାମାଜିକ ନିରାପତ୍ତାର ଆକାଂକ୍ଷାରେ ମୁଁ ମୋ'ର ନିଜତ୍ୱ ହରାଇ ଗୋଟାଏ ସ୍ୱତନ୍ତ୍ର ଆଚରଣ-ବିଧି ଅବଲମ୍ବନ କରି ଦେଇଛି । ମୋ'ର ପରିବାର ପାଇଁ ମୁଁ ଏହା କରିଛି ବୋଲି ସହଜେ ମନକୁ ଆଶ୍ୱାସନା ଦେଇ ହେବ । ତେବେ, ସେମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ଓ ନିରାପତ୍ତାର ପୃଷ୍ଠଭୂମିରେ ମୋ' ନିଜ ଆତ୍ମସମ୍ମାନର ଆକାଂକ୍ଷା ଯେ ଲୁକ୍‌କାୟିତ ନଥିଲା, ତାହା କହି ହେଉନାହିଁ । ଅବଶ୍ୟ ମୁଁ ଯେଉଁ ଯେଉଁ ସ୍ୱତନ୍ତ୍ର ଆଚରଣ କରିଛି ତାହାର ଉଦ୍ଦେଶ୍ୟ ଅତି ସୀମିତ ; ସେଇ ସୀମିତ ଲକ୍ଷ୍ୟ ସାଧିତ ହେବା ସଙ୍ଗେ ସଙ୍ଗେ ମୁଁ ପୁଣି ମୋ'ର ପୂର୍ବ ଆଚରଣ-ବିଧିକୁ ଫେରିଯିବି । ଚିରଦିନ ଏହି ନୂଆ ଖୋଳରେ ମଜ୍ଜି ରହି ମୋର ପୂର୍ବ ଖୋଳକୁ ଫେରିପାରିବି ନାହିଁ ବୋଲି ମୋର ଭୟ ନାହିଁ । ମୋ'ର ଆତ୍ମବିଶ୍ୱାସ ଅଛି ଯେ, ଇଚ୍ଛା କଲା ମାତ୍ରେ ମୋ'ର ଏ ନୂତନ ଢଙ୍ଗ ଛାଡ଼ି ପାରିବି । ପୂର୍ବରେ ଏପରି ହୋଇଛି, ଏବେ ନ ହେବ କାହିଁ ? କଚ୍ଛଭଦନ ସ୍କନ୍ଧରେ ଯୋଗ ଦେଇ ମୁଁ ମଣିଷ ମାରିବାରେ ମାତିଲି ।

କିନ୍ତୁ ମଣିଷ ମାରିବା ବୃତ୍ତି ମୋ ମନରେ ସ୍ଥାନ ଅଧିକାର କରି ପାରିଲା ନାହିଁ । ଯେଉଁମାନଙ୍କୁ ପଠାଉଛି ତାଙ୍କ ଭିତରୁ କେତେକ ନିଶ୍ଚୟ ଶତ୍ରୁ ହାତୁଡ଼େ ପଡ଼ି ମରିବେ ବୋଲି ଜାଣି ସୁଦ୍ଧା, ମୁଁ ଶତ୍ରୁ ଅଞ୍ଚଳକୁ ଭେଦୁଆ ପଠାଉଥିଲି । କିନ୍ତୁ ଅନ୍ୟମାନେ ନିଜ ଲୋକଙ୍କୁ ଶତ୍ରୁ ମୁହଁକୁ ଏପରି ପଠାଇ ଯେଉଁ ତ୍ୟାଗର ଆନନ୍ଦ ଅନୁଭବ କରୁଥିଲେ ମୁଁ ସେପରି କରି ପାରୁ ନ ଥିଲି ; ଲୋକଙ୍କୁ ସେପରି ପଠାଇବା ଆବଶ୍ୟକ ବୋଲି ବିଚାରି ମୁଁ ନିଜ କାର୍ଯ୍ୟର ସମର୍ଥନ ବି କରି ପାରୁ ନ ଥିଲି । ପ୍ରଧାନ କଥା ହେଲା, କେଉଁ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ଆମେ ଅବାଟକୁ ଯାଉଥାଇଁ ସେକଥା ଆଗରୁ ଠିକଣା କରି ରଖିବା ଦରକାର । ତେବେ ଯାଇ ସେହି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ହାସଲ ହେବା ମାତ୍ରେ ବାଟକୁ ଫେରି ଆସି ହେବ । ଲକ୍ଷ୍ୟଟା ନିର୍ଦ୍ଦିଷ୍ଟ ନ ଥିଲେ, ସେହି ଲକ୍ଷ୍ୟ ହାସଲ ପାଇଁ ଆରମ୍ଭ ହୋଇଥିବା କାର୍ଯ୍ୟକ୍ରମକୁ ଯଥାସମୟରେ ରୋକି ହେବ ନାହିଁ । ମୋର ସମର-ଅଭିଜ୍ଞତାରୁ ମୁଁ ଜାଣେ, ଲକ୍ଷ୍ୟ ହାସଲ କରିବାର କାର୍ଯ୍ୟକ୍ରମରେ ଅପରର ଯେଉଁ ଅନିଷ୍ଟ ବା ପ୍ରାଣନାଶ ହୁଏ, ତା ମୂଳରେ କ୍ରୋଧ ବା ଅସୂୟା ନଥାଏ ; ଥାଏ-କେବଳ ଲକ୍ଷ୍ୟ ହାସଲ କରିବାର ପ୍ରବୃତ୍ତି । ମୋର ବିଶ୍ୱାସ, ଏହି କାର୍ଯ୍ୟ-କ୍ରମକୁ ଭୁଲି କରି ଅନ୍ୟ ବିରୁଦ୍ଧରେ ବାହାରିଲା ବେଳେ ଶତ୍ରୁ ମିତ୍ର, ଜେତା ଜିତ, ହନ୍ତା ଓ ହତ ଭିତରେ ଗୋଟାଏ ରକମ ପ୍ରେମ ଥାଏ—ଅସୂୟା ବା କ୍ରୋଧ ନୁହେଁ ।

ଏ ସବୁ ତତ୍ତ୍ୱ ବିଚାରି ସତ୍ତ୍ୱେ ଡାନ ମୋତେ ଦେଇ ଯାଇଥିବା କାଗଜ ଦୁଇଖଣ୍ଡ ଓ ମ୍ୟାରୁଲଙ୍କ ଶ୍ରଦ୍ଧାପୂର୍ଣ୍ଣ ଗୃହିଣୀର ସ୍ମୃତି ମୋତେ ଦୁଃଖର ଯନ୍ତ୍ରଣା ଦେଉଥାଏ ।

ଶୁଣିଛି, ଯୁଦ୍ଧର ଠିକ୍ ପୂର୍ବରୁ ଲୋକଙ୍କୁ ନିଦ ହୁଏ ନାହିଁ; ସେମାନେ ଉଦ୍‌ବେଗ ଓ ଉତ୍କଣ୍ଠାରେ ଚେଇଁ ରହି ଶଯ୍ୟାରେ ପଡ଼ିଥାନ୍ତି । ମୋର ସେପରି ହୋଇ ନ ଥିଲା । ଶେଯକୁ ଯିବା ସାଙ୍ଗେ ସାଙ୍ଗେ ନିଦ୍ରା ଆସିଲା, ଗାଢ଼ ନିରବଚ୍ଛିନ୍ନ ନିଦ୍ରା । ଠିକ୍ ଭୋର ପୂର୍ବରୁ ପାହାନ୍ତିଆରେ ନିଦ୍ରା ମୋତେ ମୁକ୍ତ କଲା, ପୂର୍ଣ୍ଣ ବିଶ୍ରାମ ଓ ସ୍ୱସ୍ତି ଦେଇ । ସବୁଦିନ ପରି ମୁଁ ପାହାନ୍ତିଆ ଅନ୍ଧାରରେ ଚେଇଁ ଶୋଇଲି ନାହିଁ; ଶେଯରୁ ଆସ୍ତେ ଆସ୍ତେ ଖସିଗଲି ଓ ଗାଧୁଆଘରେ ପୋଷାକ ପିନ୍ଧିଲି, ତା'ପରେ ସିଡ଼ିର କାନ୍ଥ-

କଡ଼େ କଡ଼େ ତଳକୁ ଓହ୍ଲାଇଲି । ସ୍ୱତଃ ଯାଇ ଗ୍ରେଟ ଆଲମାରି ପାଖେ ପହଞ୍ଚି, ଦ୍ୱାର ଖୋଲି, ହାତରେ ଦପଣ୍ଡି ଗୋଲାପି ରଙ୍ଗର ମନ୍ତ୍ରଶିଳାଟି ଧରିବାରେ ନିଜେ ବିସ୍ମିତ ହେଲି । ଯାହା ହେଉ, ଶିଳାଟି ପକେଟ୍‌ରେ ପୂରାଇ, ଆଲମାରିର କବାଟ ବନ୍ଦ କଲି । ଜୀବନରେ କେବେ ସେ ଶିଳାଟି ମୁଁ ଘର ବାହାରକୁ ନେଇ ନ ଥିଲି ; ଆଜି ଯେ ନେବି ଏକଥା ଆଗରୁ ବି ଭାବି ନ ଥିଲି । ପୂର୍ବସଂସ୍କାର ଦ୍ୱାରା ଚାଳିତ ହୋଇ ସେଇ ଅନ୍ଧାରରେ ମୁଁ ରୋଷେଇଘର ପାର ହୋଇ ବାଡ଼ି ଦୁଆର ବାଟେ ବାହାରକୁ ବାହାରିଲି; ରାତିର ଅନ୍ଧାର ପତଳା ହେଉଥାଏ । ରାସ୍ତାର ଦୁଇପାଖର ଘନ-ପଲ୍ଲବିତ ଏଲମ୍‌ଗଛ ମଝିରେ ଯୋଡ଼ି ହୋଇ ଯେଉଁ ତୋରଣ କରି ଥାନ୍ତି, ତା’ ଆଗଟା ଅନ୍ଧାରିଆ ଗୁମ୍ଫା ପରି ଦିଶୁଥାଏ । ଏତିକିବେଳେ ଯଦି ମ୍ୟାରୁଲେଙ୍କ ପଣ୍ଡିଆକ୍ ପାଖରେ ଥା’ନ୍ତା, ତେବେ ନିଉ-ବେଟାଉନ୍‌ରୁ ବାହାରି ମୋ ପୂର୍ବସ୍ମୃତିର ନବଜାଗ୍ରତ ସଂସାର ଆଡ଼େ ମଟର ହାଁକି ଦେଇଥାନ୍ତି । ଏହିପରି ବାହାରିଲା ବେଳେ, ମୋ’ର ହାତର ଆଙ୍ଗୁଠି, ଦେହଭିଜିଆ ଉଷୁମ ମନ୍ତ୍ରଶିଳାର ଭିତରର ଆଦିଅନ୍ତ-ହୀନ ଶିରାମାନଙ୍କ ଉପରେ ଚାଲୁଥାଏ ।

ଯେଉଁ ଡେବୋରା ମୋତେ ପିଲାଦିନେ ଗାଲ୍‌ଗୋଥାକୁ ପଠାଇଲେ, ସେ ଶବ୍ଦ ବ୍ୟବହାର କରିବା ବିଷୟରେ ଯଥେଷ୍ଟ ରୋକଠକ୍—ଟିକିଏ ଅସ୍ପଷ୍ଟତା ବା ଅନିର୍ଦ୍ଦିଷ୍ଟତା ସେ ବରଦାସ୍ତ କରି ପାରନ୍ତି ନାହିଁ । ଶବ୍ଦର ଉପଯୁକ୍ତ ବ୍ୟବହାରରେ ମୋର ସାମାନ୍ୟ ଭୁଲ ହେଲେ ସେ ମୋ ସାଙ୍ଗରେ ମିଶିଯାନ୍ତି । ଓଃ ! ସେ ବୁଢ଼ୀର କି ପ୍ରଭାବ ! ଅମର ହୋଇ ରହିବାକୁ ଯଦି ତାଙ୍କର ଆକାଂକ୍ଷା ଥିଲା, ତେବେ ତାହା ପୂରଣ ହୋଇଛି । ମୋ ମସ୍ତିଷ୍କରେ ସେ ଅମର ହୋଇ ରହିଛନ୍ତି । ଏହି ମନ୍ତ୍ର-ଶିଳାର ଭିତରର ଶିରାମାନଙ୍କ ଉପରେ ମୁଁ ଆଙ୍ଗୁଠି ଚଳାଇବାର ଦେଖି ସେ ମୋତେ କହିଥିଲେ, “ଏଥାନ୍ ! ଏ ବଡ଼ିଆ ଜିନିଷଟି ତୋ’ର କାମନା ପୂରଣ କରିବା ସକାଶେ ମନ୍ତ୍ରଶିଳାର କାମ ଦେବ ।”

“ମନ୍ତ୍ରଶିଳା କ’ଣ ?”

“ମୁଁ ଯଦି ତୋତେ କହିଦିଏ, ତେବେ ତୁ’ ଅଧେ ମନୋଯୋଗ ଦେଇ ଶୁଣିବାରୁ ଏହାର ଅର୍ଥ ଅଧେ ମାତ୍ର ବୁଝିବୁ । ଅଭିଧାନ ଦେଖି ଅର୍ଥ ବାହାର କର ।”

ଅନେକଗୁଡ଼ିଏ ଶବ୍ଦର ଅର୍ଥ ମୁଁ ପୂର୍ଣ୍ଣ ରୂପେ ହୃଦୟଙ୍ଗମ କରିଛି, ଏହି ଓଡ଼ିବୋଗଙ୍କ ଯୋଗୁଁ । ସେ ପ୍ରଥମେ ମୋ'ର ଅନୁସନ୍ଧିତ୍ସା ଜାଗ୍ରତ କରି ଦିଅନ୍ତି ଓ ନିଜ ଉଦ୍ୟମରେ ମୋର ଅନୁସନ୍ଧିତ୍ସା ପୂରଣ କରିବା ପାଇଁ ବାଧ୍ୟ କରନ୍ତି । ଅବଶ୍ୟ ସାଙ୍ଗେ ସାଙ୍ଗେ ମୁଁ ଜବାବ୍ ଦେଇଥିଲି, "ଯିବା ଅର୍ଥ ନ ଜାଣିଲେ କ'ଣ ହୋଇ ଯାଉଛି ?" କିନ୍ତୁ ସେ ଠିକ୍ ଜାଣି-ଥାନ୍ତି ଯେ, ମୁଁ ଏକୁଟିଆ ବେଳେ ଯାଇ ଅଭିଧାନ ଦେଖିବି, ତେଣୁ ସେ ବନାନଟା ମୋତେ ଶୁଣାଇ ଦେଲେ, ମ-ନ୍ତ-ଶି-ଳା । ଶବ୍ଦାର୍ଥ ବିଷୟରେ ସେ ଭାରି ସାବଧାନ ; ମୂଲ୍ୟବାନ୍ ଜିନିଷଟିଏ ବେଖାତିରରେ ଧଇଲେ ସେ ଯେପରି ଚିଡ଼ୁଥିଲେ ଶବ୍ଦର ଅପବ୍ୟବହାର କଲେ ବି ସେହିପରି ବିଗୁଡ଼ୁ-ଥିଲେ । ଆଜି ବହୁଦିନ ପରେ ମୋ ଅଭିଧାନର ସେହି ପୃଷ୍ଠାର ସେହି ମନ୍ତଶିଳା ଶବ୍ଦଟା ଦିଶୁଛି । ସଂସ୍କୃତ ଅଭିଧାନରୁ କିଛି ବୁଝି ପାରିଲି ନାହିଁ ଅନୁସ୍ୱାର ବିସର୍ଗର ବର୍ମ ଭେଦ କରି । ଓଡ଼ିଆ ଅଭିଧାନର ବିବରଣୀ ଏପର୍ଯ୍ୟନ୍ତ ମନେ ଅଛି—"ଶିଳା ବା କୌଣସି ଧାତୁ-ନିର୍ମିତ ବସ୍ତୁ ; କେତେକ ଅଙ୍କ ବା ଚିହ୍ନ ଖୋଦିତ ହୋଇଥାଏ ; ଏହି ପଦାର୍ଥର ଗ୍ରହ ଓ ନକ୍ଷତ୍ରମାନଙ୍କ ପ୍ରଭାବରୁ ଅଲୌକିକ ଶକ୍ତି ଥାଏ ; ଯେଉଁ ନକ୍ଷତ୍ର ବା ରାଶିଚକ୍ରରେ ଏହା ନିର୍ମିତ ହୋଇଥାଏ ତଦନୁସାରେ ଏହାର ଶକ୍ତି ହୁଏ । ଏହାକୁ ରକ୍ଷାକବଚ ସ୍ୱରୂପ ଯେ ଧାରଣ କରନ୍ତି, ତାଙ୍କର ଗ୍ରହଦୋଷ ଶାନ୍ତ ହୁଏ ଓ ସୌଭାଗ୍ୟ ପ୍ରାପ୍ତି ହୁଏ ।" ତା'ପରେ ଦେଖିଲି, ଗ୍ରହ, ନକ୍ଷତ୍ର, ଅଲୌକିକ ଓ ରାଶିଚକ୍ରର ଅର୍ଥ । ମୋ'ର ଶବ୍ଦଜ୍ଞାନ ଏହି ଭିତ୍ତିରେ ଲାଭ ହୋଇଛି । ଗୋଟିଏ ଶବ୍ଦ ଦେଖିଲି ବେଳକୁ ଆଉ ଗୋଟିଏ, ତାପରେ ଆଉ ଗୋଟିଏ—ଠିକ୍ ଗୋଟିକ ପରେ ଗୋଟିଏ ବାଣ ଫୁଟିଲା ପରି ।

ପରେ ଯେତେବେଳେ ତାଙ୍କୁ ପଚାରିଲି, "ତୁମର ଏ ମନ୍ତଶିଳାରେ ବିଶ୍ୱାସ ଅଛି ?"—ସେ ଉତ୍ତର ଦେଲେ, "ମୋ ବିଶ୍ୱାସ ଅବିଶ୍ୱାସରେ ଯିବାର ପ୍ରଭାବର ଯାଏ ଆସେ କେତେ ?"

ମନ୍ତଶିଳାଟି ତାଙ୍କ ହାତରେ ଦେଇ ପଚାରିଲି, "ଯିବା'ଭିତରେ ଗାର ଗାର ହୋଇ ଯେଉଁ ଲେଖା ବା ଚିହ୍ନ ଅଛି ତା'ର ଅର୍ଥ କ'ଣ ?"

ତ୍ସେ କହିଲେ, "ଏ ମନ୍ତଶିଳା ତୋ'ର, ମୋ'ର ନୁହେଁ ।

ତୋ'ର ଯେଉଁ ଅର୍ଥରେ ମନ, ସ୍ମୃ'ର ସେଇ ଅର୍ଥ ଅଛି । ଆଲମାରୀରେ ସ୍ମୃକୁ ରଖି ଦେ । ତୋ' ଦରକାର ବେଳକୁ ସେ ଥାଉ ।"

ବର୍ତ୍ତମାନ ଏଲ୍ମ୍‌ଗଛ ମନ୍ଦିର ଗୁମ୍ଫାରେ ପଶିଲି ବେଳେ, ସେ ମୋ ସଙ୍ଗେ ସଙ୍ଗେ ପୂର୍ବ ପରି ଯାଇକରି ଥିଲି ପରି ଅନୁଭବ କରୁଥାଏ । ଏଇ ତ ଯଥାର୍ଥ ଅମରତ୍ୱ ! ଶିଳାର ଓପରେ ଓ ତଳେ ବଙ୍କା ବଙ୍କା ଗାର ବସୁଥାଏ, ସାପପରି ଗୁଡ଼େଇ ହୋଇଥାଏ—ମତେ ଜଣା ପାଉ-ଥାଏ, ଯେମିତି ସତେ ଗୋଟିଏ ମୁଣ୍ଡ ଓ ଲାଞ୍ଜ ନ ଥିବା ସାପ, ଦେହ ବାନ୍ଧି ପଥର ଭିତରେ ରହିଛି । ଆଜ ପ୍ରଥମ ଥର ପାଇଁ ସ୍ମୃକୁ ମୁଁ ଘରୁ ଘେନି ଆସିଛି—ମୋର ଅନିଷ୍ଟ ନିବାରଣ କରିବାକୁ ? ନା, ମୋ'ର ଭାଗ୍ୟ ଉଦୟ କରିବାକୁ ? ଭାଗ୍ୟଗଣନାରେ ବି ମୋର ବିଶ୍ୱାସ ନାହିଁ ; ସାଧାରଣ ଲୋକଙ୍କୁ ଦୁର୍ବଳ ଆଶ୍ୱାସନା ଦେବାକୁ ଅମରତ୍ୱ କଥାଟା କୁହାଯାଏ ବୋଲି ମୋର ଧାରଣା ।

ପୂର୍ବ ଦିଗ୍‌ବଳୟରେ ଯେଉଁ ସିନ୍ଦୂର ଫାଟି ଆସୁଛି ସେଇ ଜୁଲାଇ ; କାଲି ରାତିର ଅନ୍ଧାରରେ ଜୁନ୍ ଲୀନ ହୋଇ ସାରିଛି । ଜୁନ ଯଦି ସୁନା, ତେବେ ଜୁଲାଇ ପିତଳ ; ଜୁନ୍ ଯଦି ରୂପା, ତେବେ ଜୁଲାଇ ଟିଣ । ଜୁଲାଇରେ ପତ୍ରଗୁଡ଼ାକ ମୋଟା ମୋଟା, ଓଜନିଆ ଓ ଗହଳିଆ ହୋଇ ଯା'ନ୍ତି । ଜୁଲାଇରେ ପକ୍ଷୀମାନେ ଗଗଣିଆ ସ୍ୱରରେ ଯେଉଁ ଚିତ୍କାର କରନ୍ତି, ସେଥିରେ ମାଧୁରୀ ନଥାଏ କି ଆବେଗ ନଥାଏ ; ମାଡ଼ଗୁଡ଼ାକ ଏତେବେଳେ ଖାଲି ; ଦୁମାଦୁମା ପକ୍ଷୀଛୁଆ ଗୁଡ଼ାକ କଦର୍ଯ୍ୟଭାବେ କିଚିରିମିଚିରି କରୁଥାନ୍ତି । ନାଃ, ଏ ଜୁଲାଇମାସରେ ମନରେ ଆଶା ଜାଗ୍ରତ ହୁଏ ନାହିଁ କି ଅଭୀଷ୍ଟ ସିଦ୍ଧିର ସନ୍ତୋଷ ଆସେ ନାହିଁ । ଗଛରେ ଫଳ ଧରେ, କିନ୍ତୁ ସେଥିରେ ସ୍ୱାଦ ନଥାଏ କି ସୌନ୍ଦର୍ଯ୍ୟ ନଥାଏ । ଗହମ ବୁଦା ବୁଦା ହୋଇ ବଢ଼ୁଥାଏ, କଦବା କେଉଁଠି ଗୋଟାଏ ଗୋଟାଏ କଣ୍ଟାଶିସା ମୁଣ୍ଡ ଅବା ଟେକୁଥାଏ । କଖାରୁ ଗଛର ତ ଅଙ୍କୁର ପତ୍ର ଉଠୁଥାଏ, ମୁଣ୍ଡରେ ଶୁଖିଲି ମଞ୍ଜିର ଟୋପି ଧରି ।

ମୁଁ ପର୍ଲକ୍ ଷ୍ଟ୍ରୀଟ୍‌କୁ ଗଲି—ପର୍ଲକ୍ ପୃଥୁଳ, ପରିତୃପ୍ତ ଲୋକଙ୍କ ଜାଗା । ଜୁଲାଇର ମୁକୁଳିତ ଆଲୋକରେ ପ୍ରାସାଦକଡ଼ର ବଗିଚ୍ଚମାନଙ୍କରେ ମଝିଁଲିଆ ବୟସର ଗୋଲାପବୁଦାରେ ଫୁଲ ଫୁଟିଥାଏ ; ଗୋଲାପ ବୁଦା-

ଗୁଡ଼ାକ ଦିଶୁଥାନ୍ତି, ମଧ୍ୟବୟସୀ ନାରୀଙ୍କ ପରି—ଯାହାଙ୍କର ବ୍ଲାଉଜ୍ ତଳୁ ଉଣ୍ଡିଲ ମଧ୍ୟଭାଗର କେତେକାଂଶ ବାହାରକୁ ଦିଶୁଥାଏ—ଅବଶ୍ୟ ସୌନ୍ଦର୍ଯ୍ୟ ତଳକୁ ଖସୁ ଖସୁ ଗୋଡ଼ରେ ଅଦ୍ୟାପି ଅଟକି ଯାଇଥାଏ ।

ଆସ୍ତେ ଆସ୍ତେ ଯାଉ ଯାଉ, ମୁଁ ଭୁଣ୍ଡରେ କିଛି ନ କହୁଥିଲେ ବି, ଅନୁଭବ କରୁଥାଏ, ସାମୟିକ ନୁହେଁ, ଚିର ବିଦାୟ ନେଲାପରି । ଚିର ବିଦାୟରେ ଅତୃପ୍ତିର ଗୋଟିଏ ମଧୁର ଆଭାସ ଥାଏ ; ସାମୟିକ ବିଦାୟରେ ସେ ମଧୁରିମାର ଅଭାବ—ସାମୟିକ ହୋଇଥିବାରୁ ଚଟ୍‌କିନି ଭୁଲି ହୋଇଯାଏ ; ସାମୟିକ ବିଦାୟ ସଂଭାଷଣ ( ଗୁଡ୍‌ବାଇ ) ଶବ୍ଦଟା ଏପରି ଅସ୍ପଷ୍ଟ ଭାବରେ ଦାନ୍ତଭିତରୁ ବାହାରେ ଯେ, ମନେହେବ ସତେ ଯେପରି ଅତୀତ ସଙ୍ଗେ ଭବିଷ୍ୟତର ସଂଯୋଗ ସୂତ୍ରଟାକୁ ଠକ୍‌କିନି ଛିଣ୍ଡାଇଦେବ ।

ଆସିଲି ପୁରୁଣା ବନ୍ଦରକୁ । ଏଠାରେ ବିଦାୟ ନେବି କାହା-ଠାରୁ, ଜାଣି ପାରୁ ନ ଥାଏ । କିଛି ମନେ ପଡ଼ୁ ନଥାଏ । ହୁଏତ, ମୋ ଆସ୍ଥାନକୁ ଯିବାକୁ ମନ ହେଉଥାଏ; କିନ୍ତୁ, ସମୁଦ୍ର ସଙ୍ଗେ ଚଳୁଥିବା ଲୋକ ମାନେ ଜାଣନ୍ତି, ଏତେବେଳେ ଜୁଆର ଯୋଗୁଁ ମୋ ଆସ୍ଥାନ ଘନକୃଷ୍ଣ ଜଳ ଭିତରେ ଲୁଚିଥିବ । କାଲି ରାତିରେ ଦେଖିଥିଲି, ମୋଟେ ଗୁରିଦିନର ଚନ୍ଦ୍ରକୁ ; ଡାକ୍ତରଙ୍କ ଦନ୍ତୁରା ବାଙ୍କିଆ ଛୁରୀ ପରି ଦିଶୁଥିଲା । ଅଳ୍ପ ଦିନର ଗେଣ୍ଟିଆ ଚନ୍ଦ୍ର ହେଲେ କ'ଣ ହେବ, ବଳ ଏତେ ଯେ ଜୁଆରକୁ ଆଣି ମୋ ଆସ୍ଥାନର ମୁହଁ ଭିତରେ ପୂରାଇଥାଏ ।

ସାକ୍ଷାତ୍‌ର ଆଶା କରି ଡାଳିର ଝୁପୁଡ଼ିଠାକୁ ଯିବା ନିଷ୍ପ୍ରୟୋଜନ । ଡାଳିର ପାଦାଘାତରେ ଯେଉଁ ଘାସଗୁଡ଼ାକ ମାଟିରେ ପଟା ପରି ମିଶି ଯାଇଥିଲା, ତା' ରାସ୍ତାର ସେଇ ଘାସଗୁଡ଼ାକ ବର୍ତ୍ତମାନ ସିଧା ହୋଇ ଠିଆ ହୋଇଛି ବୋଲି ଦିଶିବା ଭଳି, ଏତେବେଳକୁ ଆଲୁଅ ହୋଇଥାଏ ।

ପୁରୁଣା ବନ୍ଦରରେ ଖରିଦିନିଆ ଡଙ୍ଗାମାନ ବିଛୁରିତ ହୋଇ ରହିଥାଏ—ସରୁଆ ସରୁଆ ଡଙ୍ଗା, ପାଲଗୁଡ଼ାକ ଉପରେ କାନ୍‌ଭାସ୍ ଗୁଡ଼ିଆ ହୋଇଥାଏ । ଠାଏ ଠାଏ ବଡ଼ସକାଳୁ ଆସିଥିବା ଲୋକ ଡଙ୍ଗାର ପାଲ ଖୁଣ୍ଟି ସଫା କରି, ପାଲ ଗୁଡ଼ାଇ, ଅସ୍ତବ୍ୟସ୍ତ ହୋଇଥିବା ମାଡ଼ିକୁ ସଜାଡ଼ି ନେଲେ, ନିଜ ଡଙ୍ଗାକୁ ଦରିଆ ଭିତରକୁ ଯିବାକୁ ପ୍ରସ୍ତୁତ କରୁଥାଏ ।

ନଈଆ ବନ୍ଦରରେ ଗହଳ ବେଶି । ଭଡ଼ା ଡଙ୍ଗାସବୁ ଆରୋହୀଙ୍କ ସୁବିଧା ପାଇଁ ଡକ୍ ପାଖରେ ଲାଗିଥାଏ । ଖଗଦନିଆ କେଉଟମାନେ ବ୍ୟସ୍ତ-ସମସ୍ତ ହୋଇ ତଟରେ ପଶୁଥାନ୍ତି । ଏମାନେ ଭଡ଼ା ଦେଇ ବଡ଼ସକାଳୁ ଦରିଆକୁ ଯାଇ ସକାଳ ଓଳି ଗୁଡ଼ାଏ ମାଛ ଆଣି ଡକ୍‌ରେ ଗଦାଇ ଦିଅନ୍ତି, ଓ ଓପରଓଳି ଏତେ ମାଛ କିପରି କଟାଇବେ ବୋଲି ଭାବି ହେଉଥାନ୍ତି । ନାନା ପ୍ରକାର ଗ୍ରେଟ ବଡ଼ ମାଛ ଅଖାରେ, ବୋଝରେ, ବାଉଁଆଣିରେ, ଝୁଡ଼ିରେ ଜମା ହୋଇଥାଏ— ଯେଉଁ ମାଛଗୁଡ଼ାକ କେହି ନ ନିଅନ୍ତି ବା ପଚି ନଷ୍ଟ ହୋଇଯାଏ, ତାକୁ ଠାକ କରି ରହିଥିବା ସମୁଦ୍ର-ଚିଲଙ୍କ ଆଡ଼କୁ ଫୋପାଡ଼ି ଦିଅନ୍ତି । ପଞ୍ଝା ପଞ୍ଝା ହୋଇ ସମୁଦ୍ରଚିଲ୍ ଧୈର୍ଯ୍ୟ ଧରି ଅପେକ୍ଷା କରି ରହିଥାନ୍ତି ; ସେମାନେ ଜାଣନ୍ତି, ଖଗଦନିଆ କେଉଟ-ମାନେ ତାଙ୍କ ବହୁଳ ସଂପତ୍ତିରେ ଚିଡ଼ା ହୋଇ ଶେଷକୁ ସେମାନଙ୍କ କାମନା ପୂରଣ କରିବେ । ବହୁତାଏ ମାଛ ସଫା କରି, କାଟି ଛଡ଼େଇ ରଖିବାରେ କିଏ ଚିନ୍ତାଦାର ନ ହେବ ? ମାଛ ମାରିବାଠାରୁ ତାକୁ ବିକିବା ଭାରି କଷ୍ଟ ।

ସମୁଦ୍ର ଏତେବେଳକୁ ତେଲ ପଡ଼ିଲା ପରି ଥିର ହୋଇଥାଏ, ପିତଳ ରଙ୍ଗର ହଳଦିଆ ଆଲୁଅ ତା'ପରେ ସ୍ଥିର ହୋଇଥାଏ । ନାଳ ଦାଡ଼ରେ ଥିବା ବୟାଗୁଡ଼ାକ ନିଶ୍ଚଳ ହୋଇ ରହିଥାଏ ; ଦର୍ପଣ ପରି ସ୍ୱଚ୍ଛ ଜଳରେ ପ୍ରତ୍ୟେକର ଓଲଟ ପ୍ରତିବିମ୍ବ ପାଣି ଭିତରେ ଦିଶୁଥାଏ ।

ପତାକା ସ୍ତମ୍ଭଠାରେ ବୁଲି ସମର-ସ୍ମାରକୀ ପାଖକୁ ଗଲି । ଯୁଦ୍ଧ-ଫେରନ୍ତା ବୀରମାନଙ୍କ ଭିତରେ ମୋ ନାମ ଦେଖିଲି, ରୂପେଲି ଅକ୍ଷରରେ କ୍ୟାପ୍‌ଟେନ୍ ଇ. ଏ, ହ୍'ଲ—ତା' ତଳକୁ ସୁନେଲି ଅକ୍ଷରରେ ସେଇ ଅଠରଜଣ ନିଉ-ବେଟାଉନ୍‌ବାଲଙ୍କ ନାମ, ଯେଉଁମାନେ ଯୁଦ୍ଧରୁ ଫେରିଲେ ନାହିଁ । ଏମାନଙ୍କ ଭିତରୁ ଅଧିକାଂଶଙ୍କ ନାମ ମୋର ମନେ ଅଛି—ବଞ୍ଚିଥିଲା ବେଳେ ଏ ସମସ୍ତଙ୍କୁ ଚିହ୍ନିଥିଲି — ଅନ୍ୟ କାହାଠାରୁ କୌଣସି ଗୁଣରେ ପୃଥକ୍ ନୁହନ୍ତି, କିନ୍ତୁ ଏବେ ସୁନେଲି ଅକ୍ଷରରେ ନାମ ଖୋଦେଇ ହେବାରୁ ଏମାନଙ୍କ ବିଶିଷ୍ଟତା ଫୁଟି ଦିଶୁଛି । କ୍ଷଣକ ପାଇଁ ବିଚାରିଲି, ତଳର ସୁନେଲି ସ୍ତମ୍ଭରେ ଯାଙ୍କରି ଭିତରେ ମୁଁ ହେଲେ ଥାନ୍ତି !—ସୁନେଲି ଅକ୍ଷରରେ ମୋ ନାମ, କ୍ୟାପ୍‌ଟେନ୍ ଇ.ଏ, ହ୍'ଲ—

ଆପଣା ପୋଷାକ ସଫା ରଖିପାରୁ ନ ଥିବା ଅଳସୁଆ, ମିଛ ଆଳ ଦେଖାଇ କାମରୁ ଖସିବାକୁ ଚେଷ୍ଟା କରିବା ଠକ, କାପୁରୁଷ ଓ ବୀର ସମସ୍ତେ ସୁନେଲି ଅକ୍ଷରରେ ଏକା ମର୍ଯ୍ୟାଦା ପାଇଛନ୍ତି । ଖାଲି ସାହସୀ ବୀର ତ ମରନ୍ତି ନାହିଁ, ଯଦିଓ ସେମାନଙ୍କର ପ୍ରାଣ ଦେବାର ସଂଭାବନା ଟିକିଏ ବେଶି ।

ମୋଟା ଓଇଲ ମଟର ହାଙ୍କି ଆସି ସ୍ମାରକୀ ପାଖେ ପହଞ୍ଚିଗଲେ ଓ ଝୋଳ ସିଟ୍‌ରୁ ପତାକାଟା ବାହାର କଲେ ।

ସେ କହିଲେ, "କି ଏଥି ଯେ !" ପତାକାର ପିତଳ ମୁହଁଆ-ଗୁଡ଼ାକ ଲଗାଇ ସେ ଆସ୍ତେ ଆସ୍ତେ ପତାକାଟି ସ୍ତମ୍ଭର ମୁଣ୍ଡକୁ ଟେକିଲେ ; ପତାକା ଫାସି ପାଇଥିବା ମଣିଷ ପରି ନିର୍ଜୀବ ଭାବେ ତଳକୁ ଓହଳି ରହିଲା । ଓଇଲ ଟିକିଏ ଅଣନିଃଶ୍ୱାସୀ ହୋଇ କହିଲେ, "ଭଲ ଉଡ଼ିଲା ନାହିଁ । ଗୃହ ସ୍ୱ ତଙ୍ଗିକୁ । ଆଉ ଯୋଡ଼ିଏ ମାସ ଦିନ ସ୍ୱ ଆୟୁଷ । ତା'ପରେ ନୂଆ ପତାକା ଉଡ଼ିବ ।"

"କ'ଣ ପଶୁଗ-ତାର-ବାଲି ।"

"ହଁ, ନିଶ୍ଚୟ । ନାଇଲନ୍ କନାରେ ମସ୍ତବଡ଼ ପତାକା ତିଆର ହୋଇ ରହିଲାଣି । ସ୍ୱାର ଡବଲ ହେବ ଆକାରରେ, କିନ୍ତୁ ଓଜନରେ ଅଧାରୁ ବେଶି ନୁହେ ।"

"ଆଉ ସବୁ ଖବର କ'ଣ, ଓଇଲ ?"

"ମନ୍ଦ ବୋଲି କହିବାର ନୁହେଁ—କିନ୍ତୁ କହୁଛି । ଏ ଯେଉଁ ଗୌରବମୟ ଜୁଲାଇ ଚୈର, ଏଇଥିରେ ସବୁ ଗଣ୍ଡଗୋଳ । ସୋମବାରେ ପଡ଼ୁଛି ନା ! ଗୁଡ଼ାଏ ଅଧିକ ଦୁର୍ଘଟଣା ଘଟିବ, ଫୌଜଦାରି ହେବ, ଗୁଡ଼ାଏ ମାତାଲ ହେବେ—ବିଶେଷ କରି ବାହାରୁ ବୁଲି ଆସିଥିବା ଲୋକେ ଗୁଡ଼ାଏ ପିଇବେ । ଆସ ମଟରରେ ତୁମ ଷ୍ଟୋରରେ ଛାଡ଼ିଦେବି ।"

"ଧନ୍ୟବାଦ । ମୋ'ର ପୋଷ୍ଟ ଅଫିସରେ ଟିକିଏ ଅଟକିବାକୁ ଅଛି । ପୁଣି ବରିରୁଛି, ବାଟରେ କଫି କପେ ପିଇବି ।"

"ବହୁତ ଆଚ୍ଛା, ମୁଁ ନେଇ ଯିବି ; ମୋ ଖର୍ଚ୍ଚରେ କଫି କପେ ପିଇବ । ଜାଣିଲ, ସ୍ପେ ଷ୍ଟୋନିଟା ଏବେ ବଳଆ-କୁକୁର ପରି ଖାଲି ମିଶି ଆସୁଛି ।"

"ତାଙ୍କର ଏ ଅବସ୍ଥା କାହିଁକି ?"

"ଭଗବାନ୍ ଜାଣନ୍ତି । ଧନ ଦୁଇଟା ପାଇଁ କୁଆଡ଼େ ଗଲେ ; ଫେରିଲେ ଧନୁ ତ ଖାଲି ଫଣ ଫଣ, ଚଡ଼ ଚଡ଼ ହେଉଚି ।"

"ଯାଇଥିଲେ କୋଉଠିକି ?"

"ସେ କଥା କ'ଣ କହୁଛ ? ଖାଲି ତ ଘାଇ ଘାଇ ହେଉଚି । ଆସ, ତୁମେ ପୋଷ୍ଟାଫିସ୍‌ରୁ ଡାକ ଆଣିବାକୁ ମୁଁ ଅପେକ୍ଷା କରିବି ।"

"ଥାଉ, ତୁମେ କଷ୍ଟ କରିବ କାହିଁକି ଉଇଲ ? ମୋର ଚିଠି କେତୋଟା ଲେଖିବାକୁ ଅଛି, ବିଳମ୍ବ ହେବ ।"

"ତମ ଇଚ୍ଛା ।" ସେ ମଠରୁ ବ୍ୟାକ୍ କରି ହାଇ ଷ୍ଟ୍ରୀଟ୍‌ରେ ଆଗେଇ ଗଲେ ।

ପୋଷ୍ଟ ଅଫିସ୍ ସେତେବେଳକୁ ବି ଅନ୍ଧାରିଆ ଦିଶୁଥାଏ ; ଚଟାଣରେ ସଦ୍ୟ ତେଲ ଦିଆ ହୋଇଥିବାରୁ ନୋଟିସ୍ ମରା ହୋଇଥାଏ, "ଚଟାଣ ଚିକଣିଆ, ସାବଧାନ !"

ପୁରୁଣା ପୋଷ୍ଟ ଅଫିସ୍ ଖୋଲା ହେବା ଦିନୁଁ ୭ ନମ୍ବର ଖୋପଟା ଆମ ନାମରେ ଅଛି । ମୁଁ ଡାଏଲ୍ କରି, ୭ ନମ୍ବର ଖୋପ-ବାଲି ଠିକଣାରେ ଆସିଥିବା ଛାଡ଼ାଏ ବିଜ୍ଞାପନ ଓ ପ୍ରଶ୍ନପତ୍ର ମାତ୍ର ପାଇଲି – ଅଳିଆ ଟୋକେଇର ଖୁରାକ । ହାଇ ଷ୍ଟ୍ରୀଟ୍‌ରେ ଆଗେଇଲି, କଫି କପେ ପିଇବା ମତଲବ୍‌ରେ । କିନ୍ତୁ ଶେଷ ମୁହୂର୍ତ୍ତରେ କଫି ଖାଇବାକୁ ମନ ହେଲା ନାହିଁ – କାହା ସଙ୍ଗେ କଥାବାର୍ତ୍ତା ହେବାକୁ ଅନିଚ୍ଛା ଯୋଗୁଁ ନାଁ ଆଉ କ'ଣ ପାଇଁ, କେଜାଣି ? ମୋଟ ଉପରେ ଫୋର୍‌ମାଷ୍ଟର୍ କଫି-ହୋଟେଲ୍ ପାହାଚ ଉଠିବାକୁ ଗୋଡ଼ ଚଳିଲା ନାହିଁ । ବାସ୍ତବରେ ଦାରିମାଇକିନିଆଁଙ୍କ ମନ ପରି ମଣିଷର ଘଡ଼ିକେ ଘୋଡ଼ା ଛୁଟେ—ବୋଧ-ହୁଏ, ସବୁ ମାଇକିନିଆଁଙ୍କର ବି ଏଇ ପ୍ରକାର ।

ମୁଁ ଦୋକାନ ଦୁଆର ଓଳାଉଛି, ଘଡ଼-ରୂପୀ ମିଷ୍ଟର୍ ବେକର୍ ଏଲ୍‌ମ୍ ଷ୍ଟ୍ରୀଟ୍‌ରୁ ଠୁକ୍ ଠୁକ୍ କରି ବାହାରିଲେ ଓ ନଅଟା ବେଳେ ଫିଟି-ବାକୁ ସ୍ଥିର ଦିଆ ହୋଇଥିବା ଟଙ୍କାବକ୍‌ସର ଉଦ୍‌ଘାଟନ ଉତ୍ସବ ସକାଶ ବ୍ୟାଙ୍କ୍‌ରେ ପଶିଲେ । ମୁଁ ଉଦାସୀନ ଭାବେ ଖଜୁରି ଝାଡ଼ୁ ଦୁଆର ମୁହଁରେ ଥୋଉଛି, ଏତିକିବେଳେ ପୁରୁଣାକାଳିଆ ସାଞ୍ଜୁଆ ଗାଡ଼ିଟା

ଆସି ବ୍ୟାଙ୍କ୍ ଦୁଆର ମୁହଁରେ ଠିଆ ହେଲା । ସୈନ୍ୟଙ୍କ ପରି ଅସ୍ତ୍ରସଜ୍ଜିତ ଦୁଇଜଣ ପ୍ରହରୀ ଗାଡ଼ି ପଛ ଆଡ଼ୁ ବାହାର ଟଙ୍କା ଥିବା ଧଳା ଅଖା କେତୋଟା ବ୍ୟାଙ୍କ ଭିତରକୁ ନେଲେ । ପ୍ରାୟ ୧୦ ମିନିଟ୍ ଭିତରେ ସେମାନେ ବ୍ୟାଙ୍କ୍‌ରୁ ବାହାରି ସେ ଲୌହଦୁର୍ଗ ଭିତରେ ପଶି ତା'କୁ ଚଳାଇ ଚାଲିଗଲେ । ମୁଁ ବୁଝୁଥିଲି . ସେମାନେ ବନ୍ଧୁକ ଥୋଇ ବ୍ୟାଙ୍କ୍‌ରେ ଠିଆ ହୋଇ ରହିଥିଲେ – ମର୍ଫି ଟଙ୍କା ଗଣି, ମିଷ୍ଟର୍ ବେକର ଚେକ୍ କରି ରସିଦ୍ ଦେବା ପରେ, ସେମାନେ ବ୍ୟାଙ୍କ୍‌ରୁ ବାହାରିଲେ । ଟଙ୍କା ରଖିବା, ରଖି ହେଫାଜତ କରି ସାଇତିବା ଭାରି ନିଗିଧା କାମ । ମର୍ଫି କହିଲା ପରି, ଅନ୍ୟ ଲୋକଙ୍କ ଟଙ୍କାର କାରବାର କରିବାରେ ଖୁବ୍ ଚିନ୍ତା ଲାଗିବାର କଥା । ଟଙ୍କା ଅଖାର ଆକାର ଓଜନରୁ ଅନୁମାନ କଲି . ଛୁଟି ମୁଣ୍ଡରେ ବହୁତ ଟଙ୍କା ଡ଼ିପୋଜିଟର୍‌ମାନେ ଉଠାଇବେ ବୋଲି ବ୍ୟାଙ୍କ୍ ଅନୁମାନ କରୁଛି । ମୁଁ ଯଦି ପୋଖତ ବ୍ୟାଙ୍କ– ଡକେଇତ ହୋଇଥାନ୍ତି, ତେବେ ବ୍ୟାଙ୍କ୍‌ଡକେଇତି କରିବାକୁ ଠିକ୍ ଏଇ ସମୟଟା ବାଛନ୍ତି । କିନ୍ତୁ ମୁଁ ତ ପୋଖତ ବ୍ୟାଙ୍କ୍-ଡକେଇତ ନୁହେଁ । ମୋର ସାଥି ଜର୍ପିଠାରୁ ଯେତିକ ଶୁଣିଛି, ମୋର ଏ ବିଷୟରେ ସେତିକମାତ୍ର ଜ୍ଞାନ । ଇଚ୍ଛା କରିଥିଲେ, ସେ ପକ୍‌କା ବ୍ୟାଙ୍କ୍-ଡକାୟତ ହୋଇ ପାରିଥାନ୍ତା । ହେବାକୁ ନ ଚାହୁଁଛି କାହିଁକି, ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗୁଛି । ଏ ବିଷୟରେ ସେ ଯେଉଁ ତତ୍ତ୍ୱ ଆବିଷ୍କାର କରିଛି, ତାକୁଇ ଅନ୍ତତଃ ପରୀକ୍ଷା କରିବାକୁ ତ ସେ ବ୍ୟାଙ୍କ୍-ଡକାୟିତି କରିବାର କଥା ।

ସେ ଦିନ ସକାଳେ ଦୋକାନରେ ଭାରି କାରବାର ହେଲା । ଯେତେ ଭିଡ଼ ହେବ ବୋଲି ମୁଁ ଆଗରୁ ଆଶଂକା କରିଥିଲି, ତହିଁରୁ ଢେ଼ର ଅଧିକ ଭିଡ଼ ହେଲା । ସୂର୍ଯ୍ୟକିରଣ ଭାରି ଖୁବ୍ ଓ ପ୍ରଚଣ୍ଡ ହେଲା ; ପବନ ଆଦୌ ନଥାଏ କହିଲେ ଚଳେ । ଏପରି ପାଗରେ ଲୋକେ, ନ ଚାହୁଁଥିଲେ ବି, ଠେଲି ହୋଇ ଛୁଟିରେ ଚାଲିଯାନ୍ତି । ମୋ' ଆଗରେ ସବୁବେଳେ ଧାଡ଼ିଏ ଗ୍ରାହକ ସଉଦା ନେବାକୁ ଅପେକ୍ଷା କରି ରହିଥାନ୍ତି । ମୁଁ ଭଲ କରି ବୁଝୁଥାଏ ଯେ, ଯାହା ହେଉ ପଛେ, ମୋତେ ସାହାଯ୍ୟ କରିବାକୁ ଆଉ ଜଣକୁ ରଖିବାକୁ ହେବ । ଯଦି ଯୁଆଲେନ୍ କାମକୁ ନ ଯାଇବ, ତେବେ ତାକୁ ଛାଡ଼ି ଆଉ ଜଣେ କାହାକୁ ଆଣିବାକୁ ପଡ଼ିବ ।

ମିଷ୍ଟର୍ ବେକର୍ ମୋ ପାଖକୁ ଆସି ବେଳକୁ ଘରି ତରବର ହେଉଥାନ୍ତି । ମୋତେ କେତେଜଣ ଗ୍ରାହକଙ୍କୁ ଅଟକାଇ ରଖି ତାଙ୍କ ସଙ୍ଗେ ଗୋଦାମ ଘରକୁ ଯିବାକୁ ପଡ଼ିଲା ।

ସେ ମୋ'ହାତରେ ଦୁଇଟା ପୁଳନ୍ଦା ଦେଲେ ; ଗୋଟାଏ ବଡ଼, ଆରଟା ଛୋଟ । ସେ ଏଡ଼େ ତରତର ହେଉଥାନ୍ତି ଯେ, ଠାରରେ କହିଲା ପରି, ବଡ଼ ପାଟିରେ ମୋତେ କହିଲେ, "ଟମ୍ ଓ୍ୱାଟ୍‌ସନ୍ କହିଲେ ବାଲିଲ୍ ଠିକ୍ ଅଛି । ଏହା ଆବଦ୍ଧ ଥିବା କଥା ସେ ଜାଣନ୍ତି ନାହିଁ ; ତାଙ୍କର ବିଶ୍ୱାସ, ନାହିଁ । ହେଇଟି ହସ୍ତାନ୍ତର ପତ୍ର । ଯେଉଁଠି ଚିହ୍ନ ଦେଇଛି ସେଇଠି ଦସ୍ତଖତ କରିଦିବ । ନୋଟ୍‌ଗୁଡ଼ାକରେ ଚିହ୍ନ ଦେଇଛି । ନମ୍ବର ବି ଟିପି ଦେଇଛି । ଚେକ୍ ପୂରଣ କରି ଦେଇଛି । ଖାଲି ଦସ୍ତଖତ କରିଦିଅ । ମୁଁ ବଡ଼ ତରତର ହେଉଛି, କ୍ଷମା କରିବ, ଏଥାନ୍ ! ଏମିତି ତରବରରେ କାରବାର କରିବାକୁ ମୋତେ ସୁଖ ଲାଗେ ନାହିଁ ।"

"ମୁଁ ଏଥିରେ ଆଗେଇବି ବୋଲି, ଆପଣ କହୁଛନ୍ତି ତେବେ ?"

"ଭଲ ତ କହୁଛ, ଏଥାନ୍ ! ତୁମ୍ଭାରେ କ'ଣ ତେବେ ମୁଁ ଏତେ ପରିଶ୍ରମ କରିଛି—।"

"କ୍ଷମା କରିବେ, ଆଜ୍ଞା ! କ୍ଷମା କରିବେ । ମୁଁ ଜାଣେ ଆପଣ ସବୁ ବିଚାରିବୁଝି କରିଛନ୍ତି ।" ମୁଁ ଦୁଧଡବାର ଗୋଟାଏ କାଗଜପେଟି ଉପରେ ଚେକ୍‌ଟା ଥୋଇ ମୋ ଅଳିଆ ପେନ୍‌ସିଲ୍‌ରେ ଦସ୍ତଖତ କଲି ।

ମିଷ୍ଟର୍ ବେକର୍ ଯେତେ ତରତର ହେଉଥିଲେ ବି ଧୀରେ ସୁସ୍ଥେ ଚେକ୍‌ଟାକୁ ଦେଖିଲେ ; କହିଲେ, "ଆଗ ଦଶହଜାର ଡାକିବ, ତା'ପରେ ହଜାରେ ହଜାରେ କରି ବଢ଼ିବ । ବୁଝିଛ ତ, ଆଉ ତୁମର ବ୍ୟାଙ୍କ୍‌ରେ ରହିଲା ମୋଟେ ଦୁଇ ହଜାର ପାଞ୍ଚଶହ । ଏ ଟଙ୍କା ନଅଣ୍ଟ ପଡ଼ିଲେ ଈଶ୍ୱର ଭରସା ।"

"ହସ୍ତାନ୍ତରଟା ହୋଇଯିବା ପରେ, ଦରକାର ପଡ଼ିଲେ, ଷ୍ଟୋର୍ ଉପରେ କିଛି ଟଙ୍କା ବ୍ୟାଙ୍କ୍‌ରୁ ନେଇ ପାରିବି କି ?"

"ଅବଶ୍ୟ, ଅବଶ୍ୟ, ସୁଧ ତୁମକୁ ଗିଳିଦେବ ବୋଲି ଯଦି ଆପତ୍ତି ନଥାଏ ।"

"ଆପଣଙ୍କଠାରେ ମୁଁ କେତେ କୃତଜ୍ଞ, କଥାରେ କହି ପାରୁ-ନାହିଁ ।"

"ହାଁ, ଏଥାନ୍ ! କଥାରେ ଭୁଲିଯିବ ନାହିଁ । ତାଙ୍କ ଆଗେ,ମୁକ ପାଲଟି ଯିବ ନାହିଁ । ସେ ଲୋକ ତୁମକୁ କଥାରେ ଉଠେଇ ଦେଇପାରେ । ଇଟାଲୀୟ ଗୁଣ୍ଡାଙ୍କର ସେ କ୍ଷମତା ଅଛି । ବ୍ୟବସାୟର ପ୍ରଥମ ନମ୍ବର ତତ୍ତ୍ୱ ଯାହା ବତାଇଛି ମନେ ରଖିଥିବ ।"

"ମୁଁ ଆପଣଙ୍କ ଋଣ ଶୁଝି ପାରିବ ନାହିଁ, ଆଜ୍ଞା !"

"ହଉ, ମୁଁ ଯାଉଛି । ଦ'ପହରର ଭିଡ଼ ପୂର୍ବରୁ ମୁଁ ବଡ଼ ରାସ୍ତାରେ ପହଞ୍ଚିବା ଦରକାର ।" ଏହା କହି ସେ ଧଡ଼ପଡ଼ ହୋଇ ବାହାରିଗଲେ ; ଗଲାବେଳେ ସେ ମିସେସ୍ ଉଇଲୋଙ୍କ ଉପରେ ହାମୁଡ଼ି ପଡ଼ିଥାନ୍ତେ, ଟିକେକେ ରକ୍ଷା ହୋଇଗଲା । ସେତେବେଳକୁ ମିସେସ୍ ଉଇଲୋ ପ୍ରତି ଜିନିଷକୁ ଦ'ଦ' ଥର ବୁଲି ଦେଖି ସାରିଥାନ୍ତି ।

ସେ ଦିନ ଲୋକେ ଜିନିସ ନେବାକୁ ଘର ଆବୁଡ଼ା ପଡ଼ି, ଟଣା-ଓଟରା କରି ପକାଉଥାନ୍ତି । ମୋ'ର ମନେ ହେଉଥାଏ, ବାହାରେ ଯେଉଁ ଭୀଷଣ ଗରମ ହେଉଥାଏ, ତା'ର ଯୋଗୁଁ ଲୋକେ ଘରି ଉଗ୍ର ଓ ଚିଡ଼ଚିଡ଼ା ହୋଇ ଯାଇଥାନ୍ତି । ସଉଦା କରିବାରେ ତାଙ୍କ ବ୍ୟାକୁଳତା ଦେଖି ମୁଁ ମନେ କରୁଥାଏ, ଛୁଟି ପାଇଁ ନୁହେଁ, କୌଣସି ଗୋଟାଏ ବଡ଼ ବିପତ୍ତି ବା ଦୈବ ଦୁର୍ଘଟଣା ଆଶଂକାରେ ସେମାନେ ଗୁଡ଼ାଏ ଜିନିସ ନେଇ ଘରେ ସାଇତି ରଖିବାକୁ ବସିଥାନ୍ତି । ଚାହିଁଥିଲେ ବି, ଗୋଟାଏ ସ୍ୟାଣ୍ଡଉଇଚ୍ ନେଇ ମର୍ଫିଙ୍କୁ ଦେଇ ଆସିବାକୁ ମୁଁ ସମୟ ପାଇ ନ ଥାନ୍ତି ।

ଖାଲି ଯେ ଲୋକଙ୍କ ସଉଦା ଦେଉଥାଏ ତାହା ନୁହେଁ । ଲୋକଙ୍କ ଉପରେ ସବୁବେଳେ ଆଖି ରଖିବାକୁ ବି ପଡ଼ୁଥାଏ । ଗ୍ରୀଷ୍ମକାଳ ଯୋଗୁ ଗୁଡ଼ାଏ ଲୋକ ବାହାରୁ ଆମ ସହରକୁ ଆସିଥାନ୍ତି । ସେମାନଙ୍କ ଉପରେ ନଜର ନ ରଖିଲେ ସେମାନେ ଜିନିସ ଛୁଟି ନିଅନ୍ତି । ଇଚ୍ଛା କଲେ ବି, ସେମାନେ ହାତଲୁଙ୍ଗୁଡ଼ା ପଣ ଛାଡ଼ି ପାରନ୍ତି ନାହିଁ ବୋଲି ମୋର ଧାରଣା । ଖାଲି ଯେ ଖାଦ୍ୟ ସାମଗ୍ରୀ ଉପରେ ତାଙ୍କର ଲକ୍ଷ୍ୟ ତା' ବି ନୁହେଁ । ପାଟି ସୁଆଦ ଜିନିସର ଛୋଟ ଛୋଟ ଡବା ଉପରେ ହାତ-ଲୁଙ୍ଗୁଡ଼ାଙ୍କର ବେଶି ନିଂଘା—ଷ୍ଟୁର୍ଜନ୍ ମାଛର ଲୁଣହୁଆ ମଂଜ, ବାଲିଛତୁ ପରି ଅନ୍ୟ ସୌଖିନ ଜିନିସ ସବୁ । ତେଣୁ ଏ ସବୁ କାରବାରୀ

ଟେବୁଲ୍‌ର ପଡପଡକୁ ରଖିବା ପାଇଁ ମ୍ୟାଲ୍‌ଲୋନ୍ ମୋତେ ସତର୍କ କର-ଥାନ୍ତି । ସେଠାକୁ ଗରାଖମାନେ ସହଜେ ଯାଇ ପାରନ୍ତି ନାହିଁ । ସେ ମୋତେ ଶିଖାଇଛନ୍ତି, ହାତଲୁଙ୍ଗୁଡ଼ାଙ୍କୁ ଧରି ପକାଇବା ବ୍ୟବସାୟ ଦୃଷ୍ଟିରୁ ଭଲ ନୁହେଁ । ଏମିତି କଲେ ଅନ୍ୟ ଗ୍ରାହକମାନେ ଫଡ଼କିଯାନ୍ତି, କାରଣ—ମ୍ୟାଲୁଲୋନଙ୍କର ଧାରଣା—ସବୁତକ ଗ୍ରାହକ ଏକା ପରି ଲୁଙ୍ଗୁଡ଼ା । ଜଣେ କିନିଷ ଲୁଟିନେବାରେ ଦୋକାନର ଯାହା କ୍ଷତି ହେଲା ସେତକ ଆଉ କୌଣସି ଜଣେ ଗ୍ରାହକଠାରୁ ସୁଧରେ ଆଦାୟ କରନେବା ଏକ-ମାତ୍ର ପ୍ରତିକାର । କିନ୍ତୁ—ମୋତେ ସତର୍କ କରାଯାଇଛି—ଯଦି ଜଣେ କେହି ମନ୍ଦ ଉଦ୍ଦେଶ୍ୟ ଧରି କୌଣସି ଆଡ଼େ ଥାଇ ଆଡ଼କୁ ପାଖେଇବାର ମୋ ଆଖିରେ ପଡ଼ିବ, ତେବେ ସେ କିନିଷ ଲୁଟିବା ପୂର୍ବରୁ, ମୁଁ ଆଗଭୁରା କହି ଦେବି, "ସେ ଯେଉଁ କକ୍‌ଟେଲ୍ (ମଦ) ସଙ୍ଗେ ଖାଇବା ପିଆଜ ଅଛି ତା'କୁ ଖୁବ୍ ଶସ୍ତା ଦାମରେ ଦେଇ ଦେଇଛୁ ।" ଏମିତି କହି ମୁଁ ଦେଖିଛି, ଗ୍ରାହକଟା ଚମକି ପଡ଼େ ; ସେ ବଗ୍ରରେ, ସତେ ଯେମିତି ମୁଁ ତା' ମନର କଥା ଠଉରେଇ ନେଇଛି । ଏ କାର୍ଯ୍ୟରେ ଲୋକଙ୍କୁ ଏପରି ସନ୍ଦେହ କରିବାକୁ ମୋତେ ସବୁଠାରୁ ବେଶି ଖରାପ ଲାଗେ । ସବୁବେଳେ ମନରେ ଅନ୍ୟ ଉପରେ ସନ୍ଦେହ କରିବା ଭଲ କଥା ନୁହେଁ । ମୋତେ ଲାଗେ, ସତେ ଯେପରି ମୁଁ ଜଣେ, ସମସ୍ତଙ୍କୁ ସନ୍ଦେହ କରି ଅନ୍ୟାୟ କରୁଛି । ନିଜକୁ ନିଜେ ଦୋଷୀ ମନେକରେ ।

କ୍ରମେ କ୍ରମେ ସମୟ ଯେତିକି ଗଡ଼ିଲା ମୁଁ ସେତିକି ମାନସିକ ଅସ୍ୱସ୍ତି ଅନୁଭବ କଲି—ସମୟ ବି ଶୀଘ୍ର ଗତି ନ କରି ଧିମେଇଲା । ପାଞ୍ଚଟା ପରେ ପୁଲିସ୍ ହାକିମ ଷ୍ଟୋନ୍ ଆସି ପହଞ୍ଚିଲେ ; ଗମ୍ଭୀର ଭାବେ ଚାଲି ଚାଲି ଆସୁଥାନ୍ତି—ସତେ ଯେପରି ପେଟରେ ଘା' ହୋଇ ଯନ୍ତ୍ରଣା ଦେଉଛି । ଟେଲିଭିଜନ୍‌ରେ ବିଜ୍ଞାପିତ ରାତ୍ରିଭୋଜନ-ସାମଗ୍ରୀ ସେ କିଣିଲେ—ମଫସଲିଆ ମାଂସ-ଖଣ୍ଡ, ଗାଜର, ରନ୍ଧାହୋଇ ଗୋଟାଏ ଆଲ୍‌ମୁ୍ୟନିଅମ୍ ଆଧାରରେ ମେଞ୍ଚା ହୋଇ ରହିଥିବା ଆଳୁଚକଟା ।

ମୁଁ କହିଲି, "ମାଲିକେ, ତୁମକୁ ଦେଖିଲେ ଜଣାପଡ଼ୁଛି, କୁଆଡ଼େ ଗୁଡ଼ାଏ ଖରାରେ ବୁଲି ବୁଲି ଆସିଛ ।"

"ନାଇଁ ତ । ମୋ'ର କିଛି ହୋଇ ନାଇଁ, ବେଶ୍ ତାଜା ଅଛି ।" କହିଲେ ସିନା, ଭାରି ବିଷଣ୍ଣ ଦିଶୁଥାନ୍ତି ।

"ଏ ଯେଉଁ ସାମଗ୍ରୀ କହିଲେ; ଦୁଇଜଣଙ୍କ ମାଫିକ୍ ଦେବ।"

"ନାଇଁ, ଜଣକ ପାଇଁ। ମୋ ସ୍ତ୍ରୀ ନିମନ୍ତ୍ରଣ ଖାଇବାକୁ ଯିବେ। ପୁଲିସ୍‌ରେ ତ ଚାକିରି କରୁଛ, ମୋର ଯିବାକୁ ସୁବିଧା କାଇଁ?"

"ବଡ଼ ଦୁଃଖର କଥା।"

"ହଉ, ସବୁ ମୁଣ୍ଡେଇ ଯାଇ ସନ୍ତୁଷ୍ଟ ରହିବାକୁ ପଡ଼ିବ। ସହରରେ ଗୁଡ଼ାଏ ବାହାର ଲୋକ ଆସି ପଡ଼ିବାରୁ, ମୋତେ ବେଶୀ ସମୟ ଘରେ ରହିବାକୁ ବି ବେଳ ହେଉନାହିଁ।"

"ଶୁଣିଲି, କୁଆଡ଼େ ବାହାରକୁ ଯାଇଥିଲ!"

"ତୁମକୁ କହିଲା କିଏ?"

"ଉଇଲ।"

"ସେ ତା ପାଟିକି ପାଟିଟା ବନ୍ଦ ରଖିବାକୁ ଶିଖିବା ଉଚିତ।"

"ସେ ତ ତୁମ ପ୍ରତି କିଛି ଅଭିସନ୍ଧି ରଖି ନାହାନ୍ତି!"

"ଅଭିସନ୍ଧି ରଖିବା ଭଳି ମସଲା ତା' ମୁଣ୍ଡରେ ନାହିଁ। ବୋଧ-ହୁଏ, ଜେଲ୍‌ରୁ ରକ୍ଷା ପାଇବା ଭଳି ବୁଦ୍ଧିବୃତ୍ତି ବି ନାହିଁ।"

"କାହାର ଅଛି ଯେ?" ଉଦ୍ଦେଶ୍ୟ ରଖି କହିଲି। ଭାଗ୍ୟକୁ, ଯେତେ ମିଳିବ ବୋଲି ଆଶା କରିଥିଲି, ତହିଁରୁ ଅଧିକ ଆନ୍ତରିକତା ମିଳିଲା।

"ଏଥାନ୍! ଠିକ୍ କେଉଁ କଥାକୁ ଲକ୍ଷ୍ୟ କରି ଏକଥା କହିଲ ଯେ?"

"କେବଳ ଏତିକି କହିଲି, ଆଜକାଲି ଏତେ ଆଇନ୍ ପାସ୍ ହୋଇ ଗଲାଣି ଯେ, ନିଃଶ୍ୱାସ ମାଇଲେ ବି କୌଣସି ଆଇନ୍ ଗୋଟାଏ ଭାଙ୍ଗିଯାଉଛି।"

"ପ୍ରକୃତ କଥା। ଘଟଣା-ଚକ୍ର ଏମିତି ଘୂରୁଛି ଯେ କିଛି ଠିକ୍ ଠିକଣା କରି ହେଉନାହିଁ।"

"ତମକୁ ଗୋଟାଏ କଥା ପଚାରିବି ବୋଲି ଭାବୁଛି, ହାକମେ! —ଦୋକାନ ସଫା କରୁ କରୁ ଗୋଟାଏ ପୁରୁଣା ରିଭଲ୍‌ଭର ପାଇଛି, ଭାରି ପୁରୁଣା—କଳଙ୍କ ଲାଗିଗଲାଣି। ମ୍ୟାରୁନେ କହୁଛନ୍ତି, ସେ ତାଙ୍କର ନୁହେଁ; ମୋ'ର ତ ହେବା ଅସମ୍ଭବ। ଏଇଟାକୁ କରିବି କ'ଣ?"

"ଲାଇସେନ୍‌ସ୍ ନେବାକୁ ଯଦି ଇଚ୍ଛା ନାହିଁ, ତେବେ ମୋତେ ଦେଇଦେବ ।"

"କାଲି ଘରୁ ତା'କୁ ଆଣିବି । ତା'କୁ ଗୋଟାଏ କରସିନ ଟିଣରେ ପକାଇଛୁ । ଏଭଳି ଜିନିସ ନେଇ କ'ଣ କରି, ଷ୍ଟୋନ !"

"ସିଧା କଥା ; ଗ୍ରେହାମଙ୍କ ନୁହେଁ ଆଗ ଚେକ୍ କରିବୁ, ତା'ପରେ ସମୁଦ୍ରରେ ପ୍ରକ୍ଷେପ ।" କ୍ରମେ ତା'ଙ୍କୁ ଟିକିଏ ଭଲ ଲାଗୁଥାଏ । ଆଜି ଦିନଟା ତମାମ ଖାଇ ଯାଉଛି, ବାହାରୁ ଆସିବା ଲୋକ ଗରମରେ ବ୍ୟତିବ୍ୟସ୍ତ ହେବାର କଥା, ହୋଇଥିଲେ । କିନ୍ତୁ ତାଙ୍କୁ ଅସୁସ୍ଥ ହୋଇ ଆରାମ କରିବାକୁ ଦେଲି ନାହିଁ ।

ପର୍କର ଦେଲି, "ଆମ ରାଜ୍ୟ ଉପରକୁ ଠାଏ, କ'ଣ ଘଟିଥିଲି, ମନେ ଅଛି ନାଁ ? ଜବତ୍ କରିଥିବା ବନ୍ଧୁକ, ପୁଲିସ୍ ବିକୁଥିଲେ ବୋଲି ବାହାରିଥିଲି ।"

ଷ୍ଟୋନ କୁମ୍ଭୀର ପରି ମଧୁର ହସ ହସିଲେ ; ସେଇ କୁମ୍ଭୀର ପରି ନିଷ୍ପାପ ଭାବରେ କହିଲେ, "ଜାଣିଲି, ଏଥି, ଯେ ହସ୍ପିଟାଲରେ ମୁଁ ବଡ଼ ହୀନସ୍ତା ହୋଇଛି—ସମାନ ନରକଯନ୍ତ୍ରଣା ଭୋଗ କରିବାକୁ ପଡ଼ୁଛି । ମୋତେ ଏଣୁ ତେଣୁ ପ୍ରଶ୍ନ ପଗ୍ଚର ଆଦ୍ଧର ଘାଣ୍ଟିବାକୁ ମନ ଯେବେ, ଅନୁଗ୍ରହ କରି ନିବର୍ତ୍ତିଯାଅ । ଯେତିକ ସହିହେବାର କଥା, ତା' ସୀମା ଟପି ଯାଇ ସାରିଲାଣି ।"

"କ୍ଷମା କରିବ, ହାକମେ ! ଧୀର, ଶାନ୍ତ, ନାଗରିକ ଜଣେ ତୁମର ଦୁଃଖ ଦୂର କରିବା ପାଇଁ ଯେତେଦୂର କରିପାରେ, ତା' କରିବାକୁ ମୁଁ ତିଆରି । ତୁମ ସଙ୍ଗେ ମଦ ପିଇ ମାତାଲ ହେଲେ, କେମିତି ହୁଅନ୍ତା ?"

"ଭଗବାନ୍‌ଙ୍କ ହାତ ଦେଇ କହୁଛି, ମୋର ବି ସେଇ ଇଚ୍ଛା । ବର୍ତ୍ତମାନ ଅବସ୍ଥାରେ ଗୁଡ଼ାଏ ମଦ ପିଇ ମାତାଲ ହେବା ମୋତେ ସବୁଠାରୁ ଭଲ ପନ୍ଥା ପରି ଜଣା ପଡ଼ୁଛି ।"

"ତେଣେ ଆଜି ଆପତ୍ତି କ'ଣ ?

"ଜାଣ, ତୁମେ ? ନା, ତୁମେ ଜାଣିବ କେମିତି ? ଏ ଯେଉଁ ଘଟଣା ଏଇଲେ ଘଟୁଛି, କାହିଁକି ଘଟୁଛି, ଯା ମୂଳରେ କିଏ ଅଛି— ଜାଣନ୍ତି କି !"

"କ'ଣ ଗୁଡ଼ାଏ ଗପୁଛ ଯେ ? ମୁଁ ତ ସ୍ୱାର ମୁଣ୍ଡଗଣ୍ଡି ପାଉ ନାହିଁ ।"

"ପାଇବା ଦରକାର ନାହିଁ, ଏଥ୍–ଯାହା ଶୁଣିଲ ପୂରା ପାସୋର ପକାଅ–ନା, ପାସୋରବ କାହିଁକି ? ଆଚ୍ଛା, ତୁମେ ତ ମିଷ୍ଟର୍ ବେକର୍ଙ୍କର ବନ୍ଧୁ । ତାଙ୍କର ଏତେବେଳେ କୌଣସି ବେପାରବଣିଜର ନୂଆ ଯୋଜନା ଚାଲିଛି କି ?"

"ମିଷ୍ଟର୍ ବେକର୍ଙ୍କ ଏତେ ବିଶ୍ୱାସର ପାତ୍ର ମୁଁ ନୁହେଁ, ମାଲିକେ !"

"ଆଚ୍ଛା, ମ୍ୟାରୁଲେଙ୍କ ଖବର କ'ଣ ? ସେ ବର୍ତ୍ତମାନ କେଉଁଠି ?"

"ନ୍ୟୁୟର୍କ୍ ଯାଇଛନ୍ତି, ତାଙ୍କ ଗଣ୍ଠିବାଡର ତଦାରଖ କରାଇବାକୁ ।"

"ଭଗବାନ୍ ! ମୁଁ କିଛି ଠଉରେଇ ପାରୁନାହିଁ । ବଜାରସୋର କିଛି କନାଗ ମିଳୁନାହିଁ । ଠିକଏ କ'ଣ ଇସବ ମିଳନ୍ତା କି, କାହା ଉପରେ କୁଦାମାରିବାକୁ ହେବ, ଜାଣନ୍ତ ।"

"ଷ୍ଟୋନ ! ତୁମେ ତ ପ୍ରଳାପ କଲା ପରି ଲାଗୁଛ ।"

"ନା, ପ୍ରଳାପ ନୁହେ । ମୁଁ ଗୁଡ଼ାଏ କଥା ଫିଟାଇ ଦେଇ ସାରିଲିଣି ।"

"ମୁଁ ଏ ସବୁ ଧରି ପାରିବା ଲୋକ ନୁହେଁ ; କିନ୍ତୁ ବିଶ୍ୱାସ କଥା କିଛି କହିବାକୁ ଯେବେ ମନ—।"

"ନା, କିଛି କହିବନାହିଁ । ମୁଁ କିଛି କଥା ଫିଟାଇବାକୁ ଚାହେ ନାହିଁ । କାହା ଯୋଗୁଁ ଏ ସବୁ ଚାଲିଛି, ଜାଣିଥିଲେ ସୁଦ୍ଧା, ମୁଁ କହିବାବାଲା ନୁହେଁ । ମୋଠାରୁ କଥା ଫିଟିଛି ବୋଲି ଭବିଷ୍ୟତରେ କେହି ଅଭିଯୋଗ ନ କରୁ । ସବୁ ପାସୋରି ପକାଅ, ଏଥ୍ ! ମୁଁ ବଡ଼ ବ୍ୟସ୍ତବ୍ୟସ୍ତ ହୋଇ ପଡ଼ିଛି ।"

"ମୋତେ କହିଲେ କଥା ଫିଟିବ ନାହିଁ, ଷ୍ଟୋନ ! ମୋତେ ବି ସାମାନ୍ୟ କିଛି ଜଣା ପଡ଼ୁଛି । ଖବରଟା କ'ଣ—ବଡ଼ ଧରଣର ଅନୁସନ୍ଧାନ ଗୋଟାଏ ଚାଲିଛି ନା ?"

"ଓଃ, ତୁମେ ତ ତେବେ ଜାଣ ?"

"ସାମାନ୍ୟ ସୁବିଧା ପାଇଛୁ ମାତ୍ର ।"

"ଆଚ୍ଛା, ଏ ସବୁର ମୂଳରେ ଅଛୁ କ'ଣ ?"

"ସହରର ଉନ୍ନୟନ ଯୋଜନା ।"

ଷ୍ଟୋନ୍ ମୋ ପାଖକୁ ଲାଗି ଆସିଲେ ; ମୋର ଖୁଆ ମୂଳକୁ ତାଙ୍କ ଶକ୍ତ ମୁଠାରେ ଏମିତି ଧରି ପକେଇଲେ ଯେ ମୋତେ କାଟିଲା ; ଘୋର ଆବେଗରେ କହିଲେ, "ଏଥାନ୍, ମୁଁ ଜଣେ ଭଲ ପୁଲିସ୍‌ବାଲା ବୋଲି ତୁମେ ମନେକର ?"

"ସର୍ବୋତ୍କୃଷ୍ଟ ବୋଲି ଜାଣେ ।"

"ସେଇଆ ହେବାକୁ ମୋର ଆକାଂକ୍ଷା । ମୁଁ ଚାହେଁ ସେଇଆ ହେବାକୁ । ଏଥ୍ ! ତୁମେ କ'ଣ ବିଚାରୁଛ, ଜଣେ ଲୋକକୁ ଅକଡ଼ରେ ପକାଇ, ଧମକେଇ ଚମକେଇ, ନିଜ ବନ୍ଧୁମାନଙ୍କ ବିରୁଦ୍ଧରେ ଇଜାହାର ଦେବାକୁ ବାଧ୍ୟ କରିବା, ଭଲ କଥା ?"

"ଆଦୌ ନୁହେଁ ।"

"ମୁଁ ବି ସେଇଆ କହେ । ଯେଉଁ ସରକାର ଏପରି କରେ, ତାକୁ ମୁଁ ପସନ୍ଦ କରି ପାରୁନାହିଁ । ମୁଁ ଏଇଆ ଭାବି ବେଶି ଚିନ୍ତିତ ହେଉଛି ଯେ—ଯାହା ସବୁ କରି ସାରିଲିଣି, ତା'ପରେ ମୁଁ ଆଉ ସଚ୍ଚା ପୁଲିସବାଲା ହୋଇ ପାରିବ ନାହିଁ । ମୁଁ ଯାହା କରିଛି, ତାହା ଭଲ ହୋଇଛି ବୋଲି ମନକୁ ବୁଝାଇ ପାରୁନାହିଁ ।"

"ତୁମକୁ କ'ଣ ଗୋଟାଏ ଅକଡ଼ରେ ପକାଇ ଦେଲେ ?"

"ତୁମେ ପ୍ରଥମେ ଯାହା କହିଛ, ତାହାହିଁ ଯଥାର୍ଥ କଥା — ଏତେ ଆଇନ ହୋଇଗଲାଣି ଯେ, ଗୋଟାଏ ଆଇନ୍ ନ ଭାଙ୍ଗି ଟାଣ କରି ନିଃଶ୍ୱାସଟାଏ ନେଇ ପାରିବ ନାହିଁ । କିନ୍ତୁ ଭଗବାନ୍ ଜାଣନ୍ତି, ଯେଉଁ-ମାନଙ୍କ ନାମରେ ଇତଲା ଦେବାକୁ ପଡ଼ିଲା, ସେ ସବୁ ମୋ'ର ବ୍ୟକ୍ତିଗତ ବନ୍ଧୁଗୁଡ଼ାକ । ଏକଥା କାହା ଆଗେ କହିବ ନାଇଁଟି, ଏଥ୍ !"

"ନାଇଁ, ମୋଠାରୁ କଥା ଫିଟିବ ନାଇଁ । ହଁ, ହାକମେ ! ତୁମ ଟେଲିଭିଜନ୍ ଭୋଜନ-ସାମଗ୍ରୀ ଗୁଡ଼ ଯାଉଛି ଯେ "!

"ଆରେ, ହଁ, ହଁ । ଯାଉଛି, ଘରକୁ ଯାଇ ଖୋଜିବୁ ଜୋତା

କାଢ଼ି ଦେଇ ଆରାମରେ ବସି ଦେଖିବ, ଟେଲିଭିଜନ୍‌ରେ ପୋଲିସ୍‌ବାଲା ଏ ଜନସଭା କେମିତି ସତ୍କାର କରୁଛନ୍ତି । ଜାଣ ତ, ସମୟେ ସମୟେ, ଘରଟାରେ କେହି ନ ଥିଲେ ମଣିଷ ଖୁବ୍ ଆରାମରେ ରହେ । ହଉ, ପରେ ଦେଖା ହେବ, ଏଥି ।"

ମୁଁ ଷ୍ଟୋନଙ୍କୁ ଶ୍ରଦ୍ଧା କରେ । ମୋର ବିଶ୍ୱାସ, ସେ ଜଣେ ସଚ୍ଚା ଅଫିସର୍ । କାହା ଉପରେ କୋଉଁ ପଡ଼ିବ ମୁଁ ଭାବି ଭାବି କିଛି ଠିକ୍ କରି ପାରୁ ନ ଥାଏ ।

ମୁଁ ଦୋକାନ ବନ୍ଦ କରିବାକୁ ଫଳ ଝୁଡ଼ିଗୁଡ଼ାକ ଦୁଆର ପାଖୁ ଭିତରକୁ ନଉଛି, ମର୍ଫି ହଲି ହଲି ଦୋକାନ ଆଡ଼କୁ ଆସିଲେ ।

ମୁଁ କହିଲି, "ଜଲ୍‌ଦି, ଜଲ୍‌ଦି ।" ସେ ଭିତରେ ପଶିବା ମାତ୍ରେ ମୁଁ ସାମନାର କାଚ୍ଝିଲି କବାଟ ବନ୍ଦ କରିଦେଲି ଓ ଗାଢ଼ ସାବୁଜା ପରଦା-ଗୁଡ଼ାକ ଟାଣି ଦେଲି । କହିଲି, "ଚୁପ୍ ଚୁପ୍ କଥା କହ ।"

ସେ କହିଲେ, "ତୁମକୁ କ'ଣ ଭୂତ ଧରିଛି ।"

"ଆରେ, ନାଇଁ ମ ! ଭିତରେ ଆମେ ଅଛୁଁ ବୋଲି ଜାଣିଲେ, କିଏ ଆସି କ'ଣ କିଣିବାକୁ ଚାହିଁବ ।"

"ହୁଁ ! ତୁମ ମନର କଥା ବେଶ ସମଝିଲି । ଭଗବାନ ଜାଣନ୍ତି, ମୋର ବି ସେୟେ ଲମ୍ବା ଛୁଟିକୁ ଘୃଣା । ମଣିଷର ସମସ୍ତ ମନ୍ଦ ପ୍ରବୃତ୍ତି ବାହା-ରକୁ ବାହାରି ପଡ଼େ । ଲୋକେ ବ୍ୟସ୍ତସମସ୍ତ ହୋଇ ଛୁଟିରେ ଚାଲି ଯାନ୍ତି, ଆସିଲା ବେଳକୁ ପିଠିରେ ଲାତ ଖାଇ ଲେଞ୍ଜେରିକୋତରା ହୋଇ ପଡ଼ି-ଥାନ୍ତି ।"

"ମୋ ପ୍ରିୟ ହିତମାନଙ୍କୁ ଘୋଡ଼ାଘୋଡ଼ି କରିଲିଭିତରେ, ଥଣ୍ଡା ପାଣି-ଟାଏ ପିଇବ କି ?"

"ବହୁତ ଆଚ୍ଛା ! କିନ୍ତୁ ଥଣ୍ଡା ବିଅର୍ ମୁହେଁ ଦେଇ ପାରିବ ?"

"ହଁ ଯେ, ବାହାରେ ନେଇ ଖାଇବାକୁ ।"

"ଠିକ୍ ବାହାରକୁ ନେଇ ଚାଲି ଯିବ । ପିପାରେ କଣା କରି ଆଗ, ଦେଖିବ ।"

ଉବାରେ ଦୁଇଟା ଛୁଞ୍ଚିକଣିଆ କ'ଣା କଲି । ଉବାଟା ସେ ମୁହଁ ପାଖେ ଉଗୁଡ଼ାଇ ଦେଇ ପାଟି ଆ କରିଦେଲେ ଏବଂ ଶେଷ ବୁନ୍ଦା ପର୍ଯ୍ୟନ୍ତ

ପେଟରେ ନେଇ ରଖିଦେଲେ । ଓହୋ  ବୋଲି କହି, ଟେବୁଲ  ଉପରେ ଡବାଟା ଥୋଇଲେ ।

ମୁଁ କହିଲି, "ଆମେ ଗୋଟିଏ ସଫର୍‌ରରେ ଯାଉଛୁ ।"

"ଆହା, ବଚର୍‌—ଏତେବେଳେ ? କେଉଁଠିକୁ ?"

"କିଛି ଜଣା ନାହିଁ । କେଉଁଠିକି ଯିବୁ ତା' ଉପରେ ଆମ ଚଟିଆ ଯୁକ୍ତି ଏ ପର୍ଯ୍ୟନ୍ତ ହୋଇ ନାହିଁ ।"

"ଗୋଟାଏ କ'ଣ ହାଉଆ ଚାଲିଛି । ତମେ କିଛି ସୁରାକ ପାଇଛ ?"

"ପାଇଛ ଯଦି, ମତେ ସୁରାକ ଟିକିଏ ଦିଅ ।"

"ମୁଁ ଦେବା ଭଳିଆ କିଛି ପାଇ ନାହିଁ । ଖାଲି କମିତି କମିତି ଲାଗୁଛି ମାତ୍ର । ମୋ ବେକମୁଣ୍ଡାର ଲୋମକୂପ ଗୁଡ଼ାକ କୁଣ୍ଡାଇ ହେଉଛି । ଯେ୍ତ୍ର ଗୋଟାଏ ଅବ୍ୟର୍ଥ ଲକ୍ଷଣ । ପୁଣି ସମସ୍ତଙ୍କର ପ୍ରକୃତି ଗୁଡ଼ିଲ ପରି ଦିଶୁଛି ।"

"ଯେ୍ତ୍ର ତୁମର ମନର ବିକାର ।"

"ହୋଇପାରେ । କିନ୍ତୁ ମୋର ସମସ୍ତେ—ମାନେ, ମିଷ୍ଟର୍ ବେକର୍ ତ ଛୁଟିରେ କେବେ କୁଆଡ଼େ ଯିବାବାଲା ନୁହନ୍ତି—କିନ୍ତୁ, ଆଜି ସେ ସହରରୁ ବାହାରକୁ ପଳାଇ ଯିବା ସକାଶେ ଘର ତଡ଼ବଡ଼ କଲେ ।"

ମୁଁ ହସିଲି । "ବ୍ୟାଙ୍କ୍‌ର ଖାତାପତ୍ର ଚଉଚିଁ କରିଦେଲିଣି ବୋଧହୁଏ ।"

"ଠିକ୍ ଠଉରେଇଛ, ସତରେ, ମୁଁ ଖାତାପତ୍ର ଟିକିଏ ଗୁହାଁ ଦେଇଛି ।"

"ବାଜେ କଥା !"

"ଶୁଣ ! ଗୋଟିଏ ଷ୍ଟେଟ ସହରର ପୋଷ୍ଟମାଷ୍ଟରଙ୍କ କଥା ମୁଁ ଜାଣେ । ତାଙ୍କ ତଳେ ଗୋଟାଏ ଓଲି ଟୋକା ପୋଷ୍ଟ ଅଫିସରେ କାମ କରୁଥିଲି, ତା ନାମ ର୍‍ୟାଲ୍‌ଫ୍—ତା'ର ବାଳ କଅଁଳ, ଆଖିରେ ଚଷମା, ଓଠଟା ଷ୍ଟେଟ, କଣ୍ଠନାଳି ଉପରେ ଗଲଗଣ୍ଡ ପରି ଦୁଇଟା ଉମା ଥାଏ । ଡାକଟିକଟ ଷ୍ଟୋରରେ ର୍‍ୟାଲ୍‌ଫ୍ ଚାଲାନ ହେଲା । ଅଳ୍ପ ନୁହେ,

ପ୍ରାୟ ନଅ ହଜାର ଟଙ୍କାର ଡାକଟିକଟ । ଓଲଟାଏ, ଉଦ୍ଧାର ପାଇବାକୁ କିଛି କରି ପାରିଲି ନାହିଁ ।"

"ତୁମେ କଣ କହୁଛ, ସେ ପ୍ରକୃତରେ ଚୋରି କରି ନ ଥିଲି !"

"ନ କରିଥିଲେ କ'ଣ ହେଲା ; ନ କରିଥିଲେ ବି କଲାପରି ଫଳ ପାଇଲି । ମୁଁ ଛେଉଡ଼ିକା ଲୋକ । ସହଜରେ ମୋ ହାତରେ ଯେପରି ହାତକଡ଼ି ନ ପଡ଼ିବ ସେଥିପାଇଁ ଖୁବ୍ ସାବଧାନ ଥାଏ ।"

"ସେଥିପାଇଁ ବୋଧହୁଏ, ବାହା ହୋଇନାହଁ ।"

"କଥାଟାକୁ ଭଲ କରି ବିଚାରି ବସିଲେ, ବାସ୍ତବିକ୍, ସେ ଗୋଟାଏ କାରଣ ।"

ମୁଁ ମୋ ଝାଡ଼ଣଟା ଅଣ୍ଟାରୁ ଫିଟାଇ ଚଉତି, କ୍ୟାସ୍‌ବାକ୍‌ସ ଚଳ ଖୋପରେ ରଖିଲି ; କହିଲି, "ଜସ୍ମି ! ଅନ୍ୟକୁ ସବୁବେଳେ ସନ୍ଦେହ କରି ଚଳିବାକୁ ବସିଲେ ଗୁଡ଼ାଏ ଶକ୍ତି ଓ ସମୟ କ୍ଷୟ ହୁଏ । ମୋତେ ସେତେ ସମୟ ମିଳିବା ଅସଂଭବ ।"

"ବ୍ୟାଙ୍କ୍‌ରେ, ସଂଶୟୀ ନ ହେଲେ ନ ଚଳେ । ଟଙ୍କା ଯିବାକୁ ମୁହୂର୍ତ୍ତେ ; ଥରେ ଗଲି ତ ଗଲି । ଫୁସ୍‌କିନି ଟିକିଏ ଇସିବା ଦେଇଦେଲେ ଦଫା ରଫା ଶେଷ ।"

"ତୁମେ ସଂଦେହୀ ଲୋକ ବୋଲି ମୋର ବିଶ୍ୱାସ ହେଉ ନାହିଁ ।"

"ବରଂ ଏହା ମୋ ମନର ସ୍ୱାଭାବିକ ବୃତ୍ତି ! ସ୍ୱାଭାବିକ ଅବସ୍ଥାରୁ ସାମାନ୍ୟ ଟିକିଏ କ'ଣ ଏପାଖ ସେପାଖ ହୋଇଗଲେ, ମୋ ମନ ଭିତରର ସତର୍କଘଣ୍ଟି ବାଜିଯାଏ ।"

"ସତେ କ'ଣ ଏପରି ବାଳି ଅଗରେ ଠିଆ ହୋଇଥାଅ ସବୁ-ବେଳେ ? ଏମିତି ଜୀବନ କଟାଇବା ତ ଗୋଟାଏ ଦଣ୍ଡ । ଯାହା କହୁଛ ବୋଧହୁଏ ଉପର ମନରେ କହୁଛ ।"

"ହୋଇପାରେ । ତୁମେ କ'ଣ ଯେବେ ଶୁଣିଥିବ, ମୋତେ କହିବ ବୋଲି ବିଚାରି ଆସିଲ ଘର—ଅବଶ୍ୟ ସେ କଥାରେ ଯଦି ମୋର ଶୁଣିବା ଭଲ କିଛି ଥାଏ ।"

"ମୋ ପେଟରେ କିଛି କଥା ରହେ ନାହିଁ । କିଛି ଗୋଟାଏ ଯଦି

ଶୁଣିଲି, ଯାହାକୁ ବୋଲୁଛେ ତାକୁ କହି ପକାଏ—ବୋଧହୁଏ ସେଇଥି-ପାଇଁ କେହି ମୋତେ କୌଣସି ବିଶ୍ୱାସ କଥା କହନ୍ତି ନାହିଁ । କ'ଣ କାମ ସାରି ଘରକୁ ବାହାରିଛ ?"

"ନାଇଁ, ଘଣ୍ଟା ଆଉପଟେ, ଆଗ ଖାଇବା ଜଞ୍ଜାଳଟା ସାରି-ଦେବାକୁ ହେବ ।"

ମୁଁ ଦୋକାନ ସାମନା ଆଲୁଅଟା ଲିଭାଇ ଦେଲି । କହିଲି, "ବାଡ଼ିବାଟେ ବାହାରିବାକୁ ତୁମର ଅସୁବିଧା ହେବ ନାଇଁ, ବୋଧହୁଏ । ଶୁଣ, କାଲି ଦୋକାନରେ ଗହଳି ହେବା ପୂର୍ବରୁ ମୁଁ ତୁମ ପାଇଁ ସ୍ୟାଣ୍ଡଉଇଚ୍ ତିଆରି କରିଦେବି । ଗୋଟାକରେ ରହିବ ଘୁଷୁରି ମାଂସ, ଆଉଟାରେ ଖିରସା–ଉଭୟ ହେବ ରାଇରୋଟିରେ ଓ ଉଭୟରେ ଶାଗ ଓ ଚଟଣି ରହିବ । ଏଇ ନା ? ପୁଣି পାଏ ଦୁଧ ବି ନେବ ।"

ସେ କହିଲେ, "ତୁମ ପରି ସାବଧାନ ଲୋକ ବ୍ୟାଙ୍କ୍‌ରେ କାମ କରିବା ଉଚିତ ।"

ସେ ଅବିବାହିତ ବୋଲି ସେ ଅନ୍ୟ କାହାଠାରୁ ଅଧିକ ନିଃସଙ୍ଗ ହୋଇ ରହିଛନ୍ତି, ସେକଥା ମୋର ମନେ ହେଲି ନାହିଁ । ସେ ମୋତେ ଗୁଡ଼ ଫୋର୍‌ମାଷ୍ଟର୍ ହୋଟେଲ ପିଣ୍ଡାକୁ ଉଠିଲି ବେଳେ, ମୋ'ର ମୁହୂ-ର୍ତ୍ତକ ପାଇଁ ଇଚ୍ଛା ହେଲି ତାଙ୍କ ସଙ୍ଗେ ଯା'ନ୍ତି । ଘର ମୋ ପକ୍ଷରେ ହଇ-ରାଣର ସ୍ଥାନ ବୋଲି ମନେ ହେଉଥାଏ ।

ଯାଇ ଦେଖିଲି, ସତରେ ସେଇଆ । ମେଷ୍ଡା ଆମ ରହଣିର ବ୍ୟବସ୍ଥା କରି ସାରିଥାନ୍ତି । ସମୁଦ୍ରକୂଳବର୍ତ୍ତୀ ମଣ୍ଟାକ୍ ନିକଟରେ ଗୋଟିଏ ପଶୁପାଳନକେନ୍ଦ୍ର ଅଛି । ସେଠାରେ ଅବସରବିନୋଦନ ପାଇଁ ଘର ଭଡ଼ା ଦିଆଯାଏ । ପଶ୍ଚିମାଞ୍ଚଳର ଭଲ ହୋଟେଲମାନଙ୍କରେ ସୁଖସ୍ୱାଚ୍ଛ-ନ୍ଦ୍ୟର ଯେଉଁ ସବୁ ବ୍ୟବସ୍ଥା ଥାଏ, ଏଠାରେ ବି ସେ ସବୁ ଅଛି । ଆହୁରି କୌତୁକର କଥା, ଆମେରିକାର ସେ ସବୁଠାରୁ ପୁରୁଣା ପଶୁପାଳନ କେନ୍ଦ୍ର, ଅଦ୍ୟାପି ଚାଲୁ ଛି । ଏବେ ପଶୁପାଳନ ପାଇଁ ବିଖ୍ୟାତ ଟେକ୍-ସାସ୍ ଅଞ୍ଚଳ ଆବିଷ୍କୃତ ହେବା ପୂର୍ବରୁ ବି, ଏଠାରେ ପଶୁପାଳନ ଚାଲିଛି । ପ୍ରଥମ ସନନ୍ଦ ଇଂଲଣ୍ଡର ରାଜା ଦ୍ୱିତୀୟ ଚାର୍ଲସ୍‌ଙ୍କ ଠାରୁ ମିଳିଥିଲି । ପ୍ରଥମେ ନିପଣ୍ଟର ଅଲ୍ପକ ଯେଉଁ ଗୋରୁ ଚୁଲୁଥିଲେ ସେମାନଙ୍କର ଚାରଣଭୂମି

ଏଇ ଜାଗା । ଜୁରି ପାଇଁ ଲୋକ ବାଛୁଲା ପରି, ଗୁଳାପଢ଼ ଜଗୁଆଳୀ ବଛା ହେଉଥିଲେ, ଏବଂ ନିର୍ଦ୍ଦିଷ୍ଟ କେତେ ବର୍ଷ ପାଇଁ ମାତ୍ର ସେମାନଙ୍କୁ ଗୃହକର୍ମ ମିଳୁଥିଲା । ଏବେ ସେ କାଳର ଢଙ୍ଗ ଗଲାଣି । ଏବେ ବେଶି ଦରମାରେ ଘୋଡ଼ା-ଚଢ଼ାଳ ଜଗୁଆଳୀ ସ୍ଥାୟୀଭାବେ ନିଯୁକ୍ତ ପାଇଲେଣି — କିନ୍ତୁ ଗୋରୁ ସେଇ ପୂର୍ବର ନାଲଆ ଜାତି, ନିକଟବର୍ତ୍ତୀ ବିସ୍ତୀର୍ଣ୍ଣ ପ୍ରାନ୍ତରମାନଙ୍କରେ ପୂର୍ବପରି ଚରୁଛନ୍ତି । ମେଗ୍ଙ୍କ ବିଗୃହରେ, ରବିବାର ସନ୍ଧ୍ୟା ଏଇ କେନ୍ଦ୍ରର ଗୋଟିଏ ଅତିଥିଭବନରେ କଟାଇଲେ ଭାରି ଆମୋଦ ମିଳିବ ।

ଏଲେନ୍‌ର ମନ, ଆମେ ନିୟୁୟର୍କ ଯାଇ, ଗୋଟାଏ ହୋଟେଲରେ ରହିବେ । ଟାଇମ୍‌ସ୍ ଚଉକରେ ପୂର୍ବ ଦୁଇଟି ଯାକ ଦିନ କଟିବ । ଯ୍ୱାଲେନ୍‌ର ମନ ,ଏକାବେଳକେ ଘରୁ କୁଆଡେ ଯିବ ନାହିଁ । ସମସ୍ତଙ୍କ ଦୃଷ୍ଟି ତା' ଉପରେ ପଡ଼ିବ, ସମସ୍ତେ ତା' ଅସ୍ତିତ୍ୱ ବିଷୟରେ ସଚେତନ ହେବେ—ଏଇଥିପାଇଁ ତା'ର ସ୍ୱେ ଏକୁଟିଆବାଆଁ ସ୍ୱ ଶାନ୍ତି ।

ଘରଟା ଉତ୍ତେଜନାରେ ଟକମକ ହେଉଥାଏ । ଏଲେନ୍ ଆସ୍ତେ ଆସ୍ତେ ଆଖିରୁ ମକରନ୍ଦ ପରି ବିନ୍ଦୁ ବିନ୍ଦୁ ଲୋତକ ଝରାଉଥାଏ ; ମେଗ୍ ବିଫଳତାର ଗ୍ରାନ୍ତିରେ ବ୍ୟସ୍ତ ଓ ବିକ୍ଷୁବ୍ଧ ; ଯ୍ୱାଲେନ୍ ଏଡେ ମୁହଁ କରି ଆଡ଼େଇ ହୋଇ ବସିଥାଏ—ତା ଗ୍ଲୋଟ ରେଡ଼ିଓରେ କାନ ଦେଇ । ରେଡ଼ିଓରୁ କାନ ଅଟଡ଼ା ପଡ଼ିଲା ପରି ସ୍ୱରରେ ବାହାରୁଥାଏ, ପ୍ରେମ ଓ ବିରହର ସଂଗୀତ । ସଂଗୀତର ଘାର୍ଦ୍ଧ କରୁଣ ଝଙ୍କାର ଘୃଣ୍ଣିତରେ ଯାଇ ବିଧା ବସାଉଥାଏ । ଜଣାଯାଉଥିଲା , ଗାୟିକା ପ୍ରେମ ଓ ବିରହର ତାଡ଼ନାରେ ପାଗଳିନୀ । ସଂଗୀତଟାର ଗୋଟାଏ ପଦ କାନରେ ବାଜିଲା

—କେତେ ଆଶା ରୋପିଥିଲି ଅନ୍ତରେ
ଏବେ ଘୁଡ଼ିଗଲି ଖାମ କାନ୍ତାରେ
ମୋର ପ୍ରେମ-ପୁଲକିତ କୋମଳ ପ୍ରାଣକୁ
ପିଟିଦେଲି ବିରହର ପଥରେ ।

ମେଗ୍ କହିଲେ, "ମୁଁ ଛୁଟିରେ ଯିବା ପ୍ରସ୍ତାବ ଘୁଣ୍ଡିବାକୁ ବସିଛୁଛି ।"

"ପିଲେ ତୁମ ସଙ୍ଗେ ଖୁବ୍ ସହଯୋଗ କରୁଛନ୍ତି ବୋଧହୁଏ ?"

"ମୋର ସବୁ ପ୍ରସ୍ତାବକୁ ଚୁରମାର କରିବାକୁ ସେ ଦୁହେଁ ଖବ୍ ଲାଗିପଡ଼ିଛନ୍ତି ।"

ଏଲେନ୍ ସକେଇ ସକେଇ କହିଲା, "ମୋର ମନ ଅନୁସାରେ କିଛି ହେବ ନାହିଁ ।"

ବୈଠକଖାନାରେ ୟାଲେନ୍ ରେଡ଼ିଓର ସ୍ୱରକୁ ଆହୁରି ବଢ଼ାଇ ଦେଲା, 'ମୋର ପ୍ରେମପୁଲକିତ କୋମଳପ୍ରାଣକୁ' ପିଟି ଦେଲ ବରହର ପଥରରେ' ।

"ଏ ଦୁଇଜଣଙ୍କୁ ମାଟିତଳ ଗୁମ୍ଫିରେ ତାଲା ଠୁକି ଦେଇ ଆମେ ଏକୁଟିଆ ଗଲେ କେମିତି ହୁଅନ୍ତା, ପ୍ରିୟେ !"

"ମୋ ମନ କଥା ଅନୁମାନ କରି ପାରୁଥିବ । ସବୁ ଠିକ୍ ଠାକ୍ କରି ସାରି ଶେଷମୁହୂର୍ତ୍ତିରେ ଏମାନଙ୍କ ଏ ଢଙ୍ଗ ଦେଖି ମୋର ବି ସେଇଆ କରିବାକୁ ମନ ।"

'ପ୍ରେମପୁଲକିତ କୋମଳ ପ୍ରାଣ'ର ଧ୍ୱନି ଗର୍ଜନ ଭିତରେ ତାଙ୍କ କଥା ମୋତେ ଶୁଣାଇବାକୁ ସେ ଟିକଏ ବଡ଼ ପାଟିରେ କହିବାକୁ ବାଧ୍ୟ ହେଲେ ।

ଅତର୍କିତରେ ମୋ ମନରେ ରାଗ ଚଢ଼ିଗଲା । ମନ ହେଲା, ବୈଠକଖାନାକୁ ଯାଇ ପୁଅକୁ ଟିକେ ଟିକେ କରି ଦେବି ଓ ତା ପ୍ରେମ-ପୁଲକିତ କୋମଳ ମୁଦ୍‌ଦାରକୁ ଚଟାଣରେ, ପଥରରେ ପିଟିଦେଇ ଗୋଡ଼ରେ ଦଳି ଦେବି । ମୁଁ ଲମ୍ବ ପାହୁଣ୍ଡ ପକାଇ ମଝି ଦୁଆର ପାଖ ହେଲା ବେଳକୁ, ରେଡ଼ିଓ ସଂଗୀତ ବନ୍ଦ ହୋଇଗଲା—"ଗୋଟାଏ ବିଶେଷ ଖବର ଶୁଣାଇବାକୁ ଆମେ ସଂଗୀତ କାର୍ଯ୍ୟକ୍ରମରେ ଟିକଏ ବାଧା ଦେଉଛୁ । ନିଉ-ବେ'ଟାଉନ୍ ଓ ଓ୍ୱେସେକ୍ସ ପଞ୍ଚାୟତ ଅଞ୍ଚଳର କର୍ମଚାରୀମାନଙ୍କୁ ସମନ୍ କରି ହୋଇଛି । ଉଚ୍ଚସ୍ତରୀୟ ଅନୁସଂଧାନ-ବିଚାରାଳୟରେ ହାଜର ହୋଇ ତାଙ୍କ ବିରୁଦ୍ଧରେ ହୋଇଥିବା ଅଭିଯୋଗର ଜବାବ୍ ଦେବେ । ସହରରେ ମଟର ଚଳାଚଳ ଲାଇସେନ୍‌ସ ଦେବାରେ ଦୁର୍ନୀତି, କଣ୍ଟ୍ରାକ୍-ଟରଙ୍କଠାରୁ ଲାଞ୍ଚ ଖାଇବା ଇତ୍ୟାଦି ଅଭିଯୋଗମାନ ସେମାନଙ୍କ ବିରୁଦ୍ଧରେ ହୋଇଛି···।"

ଯେଉଁ ବିଷୟରେ ସଂଦେହ କରିଥିଲି, ସେଇଆ ଘଟିଲା—ସହରର ପରିଚାଳକ, ମ୍ୟୁନିସିପାଲ୍ କାଉନ୍‌ସିଲ୍, ମାଜିଷ୍ଟ୍ରେଟ୍, ଇଞ୍ଜିନିଅର୍—ସମସ୍ତଙ୍କ ଉପରେ ସମନ । ନ ଶୁଣିଲା ପରି କାନେଇ ଥାଏ—ମନରେ ଘୋର ଦୁଃଖ

ଓ ବିଷାଦ ଆସୁଥାଏ । ସେମାନଙ୍କ ବିରୁଦ୍ଧରେ ଯେଉଁ ଅଭିଯୋଗ ହୋଇଛି ସତରେ ହୁଏତ ସେମାନେ ସେଇଆ କରୁଥିଲେ । କିନ୍ତୁ ନିର୍ବାଧରେ ସେମାନେ ଏତେଦିନ ଏ ସବୁ କରି ଆସିଥିଲେ ଯେ, ଅପରାଧ କରୁଛନ୍ତି ବୋଲି ଖିଆଲ ବି ରହୁ ନ ଥିଲା । ଯଦିବା ସତରେ ଏମାନଙ୍କର ଦୋଷ କିଛି ନ ଥିବ, ତଥାପି ମ୍ୟୁନିସିପାଲିଟି ଓ ଅଞ୍ଚଳ ନିର୍ବାଚନ ପୂର୍ବରୁ ଏମାନେ ତ ଅଭିଯୋଗରୁ ମୁକ୍ତ ପାଇ ପାରିବେ ନାହିଁ । ଅଭିଯୋଗରୁ ମୁକ୍ତ ପାଇଲେ ବି ଜନସାଧାରଣଙ୍କ ମନରେ ଅଭିଯୋଗର ସ୍ମୃତି ରହିବ ହିଁ ରହିବ । ଭଲ ଯନ୍ତାରେ ଏମାନଙ୍କୁ ପକାଗଲା । ଆଗରୁ ତ ଏମାନେ ଇସାରା ପାଇ ଥିବେ । କେଉଁ ଉଦ୍ଦେଶ୍ୟରେ ଏମାନଙ୍କ ବିରୁଦ୍ଧରେ ଅଭିଯୋଗ ହୋଇଛି ତା' ତ ଜାଣୁଥିବେ । ଷ୍ଟୋନିଙ୍କ ନାମ ପଡ଼ିବ ବୋଲି କାନ ଡେରିଲି କିନ୍ତୁ ତାଙ୍କ ନାମ ଅଭିଯୁକ୍ତଙ୍କ ତାଲିକାରେ ନାହିଁ । ତାହାହେଲେ ବାସ୍ତବରେ ସେ ନିଜକୁ ଦୋଷମୁକ୍ତ କରିବା ପାଇଁ ଏମାନଙ୍କ ବିରୁଦ୍ଧରେ ପ୍ରମାଣ ଯୋଗାଇଛନ୍ତି । ଏଇଥିପାଇଁ ଆଜି ସେ ଏତେ ବିଷଣ୍ଣ ଓ ବିବ୍ରତ ହୋଇ ଥିଲେ ।

ଦୁଆର ପାଖେ ଠିଆ ହୋଇ ମେଷ୍ଟି ବି ଶୁଣୁଥିଲେ । ସେ କହିଲେ, "ଏଁ, ଅନେକ ଦିନ ହେଲା ଏଭଳି ଚାଞ୍ଚଲ୍ୟକର ଘଟଣା ତ ଆମ ଏଠାରେ ଶୁଣା ନ ଥିଲା ଏଥାନ୍ ! ଏ ଅଭିଯୋଗ ସବୁ କ'ଣ ସତ ?"

"ସେଥିରେ ଯାଏ କେତେ, ଆସେ କେତେ ? ଅଭିଯୋଗର ସତ୍ୟା-ସତ୍ୟ ଜାଣିବାକୁ ତ ଏ କାଣ୍ଡ ହୋଇନାହିଁ ।"

"ମିଷ୍ଟର୍ ବେକର୍ କ'ଣ ଭାବୁଥିବେ କେଜାଣି ?"

"ସେ ଛୁଟିରେ ଚାଲି ଯାଇଛନ୍ତି । ତାଙ୍କ ମନ କ'ଣ ହେଉଥିବ, ସେଇ କଥା ମୁଁ ବି ଚିନ୍ତୁଛି ।"

ସଂଗୀତ କାର୍ଯ୍ୟକ୍ରମଟା ବନ୍ଦ ହୋଇ ଯାଇଥିବାରୁ ସ୍ୱାଲେନ୍ ଛଟପଟ ହେଉଥାଏ ।

ଏ ସଂବାଦ, ସ୍ୱା ପଛକୁ ରାତି ଭୋଜନ, ତା' ପଛକୁ ବାସନ ବର୍ତ୍ତନ ଧୁଆ ଧୋଇ କରି ଥୋଇବା—ଏ ସବୁ ଯୋଗୁଁ ଆମ ମଟର-ଯାତ୍ରା ସମସ୍ୟାର ସମାଧାନ ପଛକୁ ଠେଲି ହୋଇଗଲା । ସମାଧାନ ବା ଆତୁର କ୍ରନ୍ଦନ ଓ କଳହ ପାଇଁ ଆଉ ସେ ଦିନ ଅବସର ମିଳିଲା ନାହିଁ ।

ରାତିରେ ମୋର ସାରା ଶରୀରରେ ଗୋଟାଏ କମ୍ପ ହେଲା । କର୍ମୀ-ବୃନ୍ଦମାନଙ୍କ ଉପରେ ଏହି ନିର୍ମମ, ନିଷ୍କରୁଣ ଆକ୍ରମଣର ବର୍ବରତା କଥା ଚିନ୍ତା କରି ଖରାଦିନର ଗରମ ରାତିରେ ବି ମୋ' ଦେହ ଶୀତରେ କମ୍ପୁ-ଥାଏ ।

ମେରି କହିଲେ, "ପ୍ରିୟ, ତୁମେ ଯେ ବରଡ଼ା ପତ୍ରପରି ଥରୁଛ ! ବୋଧହୁଏ ଜର ଆସୁଛି ।"

"ନାଇଁ ଲୋ ଧନ ! ଅଭିଯୁକ୍ତ ଲୋକମାନଙ୍କର ଏତେବେଳେ ଯେଉଁ କମ୍ପ ହେଉଥିବ, ତା'ର ଆଭାସମାତ୍ର ମୁଁ ଅନୁଭବ କରୁଛି । ବିଚ-ରାଙ୍କ ମନ ଏତେବେଳେ କେଡ଼େ ବିକଳ ନ ହେଉଥିବ ?"

"ଏ ଚିନ୍ତା ଛାଡ଼, ଏଥାନ୍ ! ଅନ୍ୟମାନଙ୍କ ଦୁଃଖକଷ୍ଟର ଭାର ତୁମେ ବହନ କରିବାକୁ ପାରିବ ?"

"ପାରୁଛି ବୋଲି ତ ବହନ କରୁଛି ।"

"ମୁଁ ଜାଣୁଛି, ତୁମେ ପକ୍କା ବ୍ୟବସାୟୀ କେବେହେଁ ହୋଇ ପାରିବ ନାହିଁ । ତୁମ ହୃଦୟ ଅତି ନରମ । ଏଥାନ୍, ଏ କଥା ତୁମେ କାହିଁକି ଦେହକୁ ନେଉଛ । ସେ ତ ତୁମର କଲା କାମ ନୁହେଁ । ଏଥିରେ ତୁମର ଦୋଷ କ'ଣ ?"

"ବିଚାରୁଛି, ବୋଧହୁଏ, ସେ ମୋର ବି ଦୋଷ— ସମସ୍ତଙ୍କର ଦୋଷ ।"

"ମୁଁ ଏକଥା ବୁଝି ପାରୁ ନାହିଁ ।"

"ମୁଁ ବି ବୁଝି ପାରୁ ନାହିଁ, ପ୍ରିୟେ ।"

"ମୁଁ ବିଚାରୁଛି, ଏମାନଙ୍କ ପାଖେ ରହିବାକୁ କିଏ ଜଣେ ମିଳନ୍ତା କି ?"

"କ'ଣ କହିଲ, ମହିଳାମଣି !"

"ତୁମ ସଙ୍ଗେ ଏକୁଟିଆରେ କୁଆଡ଼େ ଟିକିଏ ଯାନ୍ତି ବୋଲି ମନ ହେଉଛି । ଦିନେ କାଳେ ଏକୁଟିଆରେ ଟିକିଏ ମଉଜ କଲେ ନାଇଁ !"

"ବ୍ୟବସ୍ଥା ନାହିଁ—ପୁଣି ନିଜର ଜଞ୍ଜାଳ ନ ଥିବ, ଏପରି ବନ୍ଧୁ-ବାନ୍ଧବ ତ ଆମର ବିଶେଷ କେହି ନାହାନ୍ତି । ମନକୁ ବୁଝାଅ । ଏ ଦୁଇ-ଟାଙ୍କୁ କିଛିଦିନପାଇଁ ଗୋଟାଏ ଡବାରେ ପୂରାଇ, ଲୁଣ ଦେଇ ଆଗ୍ଭର

କରି ରଖନ୍ତେ । ବୁଝିଲ ମେରି, ଖ୍ରୀଷ୍ଟ-ମାତା ! ମନକୁ ଏଇଆ କରିବା ପାଇଁ ଟାଣ କର । ନୂଆ ଜାଗାରେ ତୁମକୁ ନିର୍ଜନରେ ପାଇ ରହିବାକୁ ମୋ ମନ ଉଡ଼ିବେଇ ଖଡ଼ିବେଇ ହେଉଛି । ଆମେ ବାଲିବନ୍ତରେ ହାତ ଧରା ଧରି ହୋଇ ଚାଲନ୍ତେ ; ରାତିରେ ଲୁଗା ପଟା ଫୋପାଡ଼ି ଦେଇ ସମୁଦ୍ରରେ ପହଁରନ୍ତେ ; ଏବଂ ଗୋଟାଏ କଣ୍ଟା ବୁଦାରେ ମୁଁ ତୁମକୁ ମାଡ଼ି ବସନ୍ତି ।"

"ତୁମ ମନର କଥା ଜାଣୁଛି, ପ୍ରିୟ ! ଖୁବ୍ ଜାଣୁଛି । ତୁମେ ଏଠେଇ କମିତି ଦହଗଞ୍ଜ ହେଉଛ, ତା' ମୁଁ ଅନୁମାନ କରି ପାରୁ ନାହିଁ ବୋଲି ବିଚାରୁଛ ପରା ?"

"ହଉ, ମୋତେ ଠିକଏ କୋଡ଼ରେ ପୂରାଇ ଜାକି ଧଇଲ, ମୁଁ ଗୋଟାଏ ଉପାୟ ବାହାର କରିବି ।"

"ତମେ ତ ପୁଣି ଥରୁଛ ? କ'ଣ ଶୀତ ହେଉଛି ।"

"ଶୀତ ହେଉଛି, ଗରମ ବି ହେଉଛି । ମନ ପୂରି ଯାଉଛି, ପୁଣି ଫାଙ୍କା ହୋଇ ଯାଉଛି—ଭାରି ଶ୍ରାନ୍ତ ଲାଗୁଛି ।"

"ମୁଁ ଗୋଟାଏ ଉପାୟ ଚିନ୍ତା କରିବାକୁ ଚେଷ୍ଟା କରିବି । ନିଶ୍ଚେ କରିବି । ମୁଁ ଏ ଦୁହିଙ୍କୁ ଖୁବ୍ ସୁଖ ପାଏ ଅବଶ୍ୟ, କିନ୍ତୁ— ।"

"ତୁମ କଥା ମୁଁ ଜାଣୁଛି । ଏକୁଟିଆ ହେଲେ, ମୋ ବୋ-ଟାଇଟା ନିଃସଙ୍କୋଚରେ ପିନ୍ଧନ୍ତି— ।"

"ଆଚ୍ଛା, ଯୁଆଙ୍କୁ କ'ଣ ଜେଲରେ ପୂରେଇବେ ?"

"ମୋ'ର ମନ, ଆମେ— ।"

"ମୁଁ ପଚାରୁଛି, ସେଇ ଅଭିଯୁକ୍ତ ଅଫିସରଙ୍କ କଥା ।"

"ନା, ଜେଲରେ ପୂରାଇବା ଦରକାର ନାହିଁ । ଆସନ୍ତା ମଙ୍ଗଳବାର ପୂର୍ବରୁ ସେମାନେ ବିଚାରାଳୟ 'ଆଗରେ ହାଜର ବି ହୋଇ ପାରିବେ ନାହିଁ ।"

"ମଝିରେ ଦିନେ ପରେ, ଗୁରୁବାର ଦିନ ନିର୍ବାଚନ । ନିର୍ବାଚନରେ ଏମାନେ ପ୍ରାର୍ଥୀ ହୋଇ ନ ପାରିବେ, ଏଇଥିପାଇଁ ତ ଏତେ କଥା ହୋଇଚି ।"

"ଏଥାନ୍ ! ତୁମେ ତ କାହିଁକି ସବୁ କଥାରେ ଦୋଷ ଦେଖୁଛ ! ଯେ ତ ତୁମର ସ୍ୱାଭାବିକ ପ୍ରକୃତି ନୁହେଁ । ଆମକୁ ଏଠାରୁ ଚାଲିଯିବାକୁ ହେବ ନୂ ଠିକେ—ତୁମେ ଯେ ନିନ୍ଦୁକ ହୋଇ ଯାଉଛ ! କାରଣ— ।

ତୁମେ ପିଲାଙ୍କ ବିଷୟରେ ଯାହା କହିଲ, ମୁଁ ଦେଖୁଛି ତାହା ତ ରହସ୍ୟ ନୁହେ । ତୁମ ଥଣ୍ଡା ପରିହାସର ଗୁଣ ମୋତେ ବେଶ୍ ଜଣା । ତୁମେ ତ ଏ ବିଷୟରେ ଯାହା କହିଲ, ତୁମର ପ୍ରକୃତ ମତ ସେଇଆ ।”

ମୋତେ ଭୟ ହେଲା । ମୋ'ର ପ୍ରକୃତ ଭିତର କଥା ତ ପ୍ରକାଶ ହୋଇ ପଡ଼ୁଚି ତା'ହେଲେ । ମୋ' ଅସଲ ସ୍ୱରୂପ ମେଣ୍ଟି ଜାଣିଲେ ତ ଚଳିବ ନାହିଁ । ମୁଁ କହିଲି, “କହ, କହ ମିସ୍ ମୁଷି, ତୁମେ ମୋତେ ବାହା ହବ ?”

ମେଣ୍ଟି କହିଲେ, “ଓହୋ !”

ମୋ'ର ଭିତର କଥା ଜଣା ପଡ଼ିଯାଇଛି ବୋଲି ଆଶଙ୍କା ହୋଇ ମୋତେ ଘୋର ଡର ମାଡ଼ିଗଲା । ଆଖି ଯେ ଭିତର ଆତ୍ମାର ଦର୍ପଣ ନୁହେଁ, ଏ ବିଷୟରେ ମୋ'ର ପୂର୍ଣ୍ଣ ବିଶ୍ୱାସ । ମୁଁ ଏପରି କେତୋଟି ଭୟାନକ ନାରୀମୂର୍ତ୍ତି ଦେଖିଛି, ଯେଉଁମାନଙ୍କର ମୁହଁ ଓ ଆଖି ସ୍ୱର୍ଗର ଅପ୍ସରା ପରି । ଅବଶ୍ୟ ତାଙ୍କଭିତରେ ଏପରି କେତେଜଣ ଅଛନ୍ତି, ଯେଉଁମାନେ ଚମ ଓ ହାଡ଼ ଭେଦ କରି ଏକାବେଳକେ ପେଟ ଭିତର ପର୍ଯ୍ୟନ୍ତ ଦେଖି ପାରନ୍ତି । କିନ୍ତୁ ସେମାନଙ୍କ ସଂଖ୍ୟା ଅତି କମ୍ । ଅଧିକାଂଶ ଲୋକଙ୍କର, ସମସ୍ତ ଚିନ୍ତା ନିଜଠାରେ ଆବଦ୍ଧ । ଅନ୍ୟ କାହା କଥା ଜାଣିବା ପାଇଁ ତାଙ୍କର ସ୍ପୃହା ନ ଥାଏ । ଥରେ ସ୍କଟଲଣ୍ଡ୍‌ରୁ ଆସି କ୍ୟାନାଡ଼ାରେ ବାସ କରୁଥିବା ଜଣେ ଯୁବତୀ ମୋତେ ଗୋଟାଏ କଥା କହିଥିଲେ । ଏକଥା ତାଙ୍କ ମନରେ ଘୋର ପ୍ରଭାବ ପକାଇଥିଲା ବୋଲି ସେ କହିଲେ ; ମୁଁ ବି ସେ କଥା ଶୁଣି ବିଶେଷ ପ୍ରଭାବିତ ହେଲି ।

ସେ କହିଥିଲେ—ତାଙ୍କର ବଢ଼ିବା ବୟସରେ, ସେ ମନେ କରୁଥାନ୍ତି ଯେ ସମସ୍ତେ ତାଙ୍କ ଆଡ଼କୁ ଚାହୁଁଛନ୍ତି, କିନ୍ତୁ ତାଙ୍କ ରୂପକୁ ପସନ୍ଦ କରୁନାହାନ୍ତି । ଏପରି ବିଚାରିବାରୁ ତାଙ୍କୁ ଲାଜ ମାଡ଼ୁଥାଏ, ଓ ଲାଜ ପରେ ପରେ କୋହ ଉଠୁଥାଏ—କୋହ ରୋକିଲା ବେଳକୁ ପୁଣି ଲାଜ ଫେରୁଥାଏ । ତାଙ୍କର ଏଭଳି ମନସ୍ତାପ ଦେଖି ତାଙ୍କ ଅଜା—ସ୍କଟଲଣ୍ଡ୍‌ର ଉତ୍ତରାଂଚଳର ଲୋକ—କହିଲେ, “ତୋତେ ଦେଖି ଲୋକାମାନେ କ'ଣ ଭାବୁଛନ୍ତି ବୋଲି ବିଚାରି ତୁ ଯାହା ବ୍ୟସ୍ତ ହେଉଛୁ, ତାହା ବୃଥା । ସେମାନେ ତାଙ୍କ ନିଜ ନିଜ କଥାରେ ଏତେ ବ୍ୟସ୍ତ ଯେ ତୋତେ

ଚାହିଁବାକୁ ତାଙ୍କର ବେଳ ନାହିଁ । ଏହି ନିରାଟ ସତ୍ୟଟା ଜାଣିଲେ ତୋତେ ଏତେ ବ୍ୟସ୍ତ ଲାଗନ୍ତା ନାହିଁ ।" ଅଜାଙ୍କର ଏ କଥାର ସତ୍ୟତା ବୁଝି ଯୁବତୀଙ୍କ ଚିତ୍ତର ବିକଳତା ଦୂର ହୋଇଥିଲା ! ମୁଁ ବି ଏକଥା ଶୁଣି ବୁଝିଲି ଯେ, କଥାଟା ନିରାଟ ସତ୍ୟ ; ଲୋକେ ତାଙ୍କ ନିଜ କଥା ଭାବି ଭାବି ଏତେ ବ୍ୟସ୍ତ ଯେ ତାଙ୍କର ଅନ୍ୟ କାହାରିକୁ ଚାହିଁବାକୁ ବେଳ ନାହିଁ—ଏହା ଉପଲବ୍ଧି କରିବା ଯୋଗୁଁ, ମୋ ଅନ୍ତର କଥା ଜାଣିବାକୁ କେହି ଉତ୍କଣ୍ଠିତ ନୁହନ୍ତି ବୋଲି ମୋର ଧାରଣା ହେବାରେ ମୁଁ ଆଶ୍ୱସ୍ତ ହୋଇଥିଲି ।

କିନ୍ତୁ ମେଘଙ୍କ କଥା ସ୍ୱତନ୍ତ୍ର । ସେ ନିଜ କଳ୍ପନାର ଗୋଟିଏ ଫୁଲଘର ସଜାଇ ତା'ର ଭିତରେ ଥାନ୍ତି । ହୁଏତ କଥାର ଢଙ୍ଗରୁ ସେ ଗୋଟାଏ କ'ଣ ବାରିଲେଣି , ପବନର ବେଗରୁ ସେ ପାଗ ଖରାପ ହେବ ବୋଲି ଠଉରାଇଲେଣି । ଏହି ଆଶଙ୍କା ମୋତେ ତ୍ରସ୍ତ କରି ପକାଇଲା । କାଲି ଦିନଟା ନିଃଶେଷ ନ ହେବା ଯାଏ, ମୋ'ର ଏ ଭୟ ଦୂର ହେବ ନାହିଁ ବୋଲି ଜାଣି ପାରିଲି ।

ମୋ'ର ପରିକଳ୍ପନାଟା ଏକାବେଳକେ ପୂର୍ଣ୍ଣ ଭୟଙ୍କର ରୂପ ଗ୍ରହଣ କରି ଯଦି ହଠାତ୍ ମୋ ମନରେ ଆବିର୍ଭୂତ ହୋଇଥାନ୍ତା, ତେବେ ତାକୁ ମୁଁ ଅବାସ୍ତବ କଳ୍ପନା ବୋଲି ସାଙ୍ଗେ ସାଙ୍ଗେ ମନରୁ ଦୂର କରି ଦେଇଥାନ୍ତି । ଲୋକେ ଏଭଳି ଅସମ୍ଭବ କଥା କାର୍ଯ୍ୟରେ କରନ୍ତି ନାହିଁ । ମନର ଗୁପ୍ତ ପ୍ରଦେଶରେ ହୁଏତ ଏଭଳି ଅଳୀକ କଳ୍ପନା କରି, ମନେ ମନେ ସ୍ୱର୍ଗର ପାରିଜାତ ତୋଳୁଥାନ୍ତି । ମୋ ମନରେ ଏ କଳ୍ପନା ଅଙ୍କୁରିତ ହେଲା, ବ୍ୟାଙ୍କ୍ ଲୁଟି କରିବାର ସୁଗମ ପନ୍ଥା ବୋଲି ଜଣେ ମୋତେ କହିଥିବା ନିୟମମାନଙ୍କରୁ । ମୋ ବୃତ୍ତିର କ୍ଳାନ୍ତି ଭିତରେ ମୁଁ ଏହି କଳ୍ପନାରେ ଆନନ୍ଦ ପାଇଲି । ଏଥିରେ ମୋର ଆନନ୍ଦ ଯେତିକି ବଢ଼ିଲା, ମୋ ବେଷ୍ଟମୀର କ୍ଷୁଦ୍ର କ୍ଷୁଦ୍ର ଅନୁଭୂତି ଓ ଅଭିଜ୍ଞତା ଏ କଳ୍ପନାକୁ ସେତିକି ରୂପାୟିତ କଲା—ଫ୍ଲାଲେନର ମୁଷାମୁଖା ଏ କଳ୍ପନାର ଅଙ୍ଗୀଭୂତ ହୋଇଗଲା ; ଦୋକାନ-ପାଇଖାନାର ଫଟା ପାଣିନଳ, କଳଙ୍କ ଲାଗିଥିବା ପୁରୁଣା ପିସ୍ତଲ, ଆସନ୍ନ ଛୁଟି, ଏପରି କି ବ୍ୟାଙ୍କ୍‌ର ବାଡ଼ଦୁଆର ଖୁବ-କଣାରେ ଗେଞ୍ଜିବା କାଗଜ ପର୍ଯ୍ୟନ୍ତ ସମସ୍ତେ, ଏ କଳ୍ପନାର ଅଙ୍ଗୀଭୂତ

ହୋଇ ଯାକୁ ରୂପ ଦେଲେ । ଏ କଳ୍ପନାକୁ କାର୍ଯ୍ୟରେ କରିବାକୁ କେତେ ସମୟ ଲାଗିବ ମୁଁ ନିର୍ଣ୍ଣୟ କଲି, ଏହାକୁ କାର୍ଯ୍ୟରେ କରିବାର ଅଭିନୟ କଲି, କାର୍ଯ୍ୟରେ ହୋଇପାରିବ କି ନାହିଁ ପରୀକ୍ଷା ବି କଲି— କିନ୍ତୁ ଏସବୁ କଲାବେଳେ ମୁଁ ଏହାକୁ ବାସ୍ତବ ବୋଲି ନ ବିଚାରି,କଳ୍ପନା-ବିଳାସମୟ ଏକ ଖେଳ ବୋଲି ବିଚାରିଥିଲି । କିନ୍ତୁ, ଶେଷରେ ଯେଉଁ ବନ୍ଧୁକଧାରୀ ଡକାୟତମାନେ ପୁଲିସଙ୍କ ସଙ୍ଗେ ଖଣ୍ଡଯୁଦ୍ଧ କରି ବସନ୍ତି ସେମାନେ କିଏ ? ପିଲାଦିନେ ଯେଉଁମାନେ ଖେଳନା-ପିସ୍ତଲ ଧରି ବନ୍ଧୁକମାରି ଖେଳ କରୁଥାନ୍ତି, ସେଇ ତ ? ଖେଳନା-ପିସ୍ତଲରେ ଅଭ୍ୟାସ କରୁ କରୁ ଯେତେବେଳେ ନିପୁଣତା ଆସିଯାଏ, ଲକ୍ଷ୍ୟ ଭେଦ କରିବାରେ ଯେତେବେଳେ ସେମାନେ ପାରଙ୍ଗମ ହୋଇଯାନ୍ତି, ସେତେବେଳେ ଏହି ନିପୁଣତାକୁ ବାସ୍ତବ କ୍ଷେତ୍ରରେ ପ୍ରୟୋଗ କରିବାକୁ ପ୍ରେରଣା ଆସେ । ଅବଶେଷରେ ସେମାନେ ସତ ବନ୍ଧୁକ ଧରି ଦାଣ୍ଡକୁ ବାହାରି ପଡ଼ନ୍ତି ।

ମୁଁ ମନେ ମନେ ଯେଉଁ ଖେଳ ଖେଳୁଥିଲି, ତାହା ଖେଳରୁ ବାସ୍ତବ ପରିକଳ୍ପନା ସ୍ତରକୁ କେତେବେଳେ ଉତ୍ତୀର୍ଣ୍ଣ ହେଲା ଠିକ୍ କହି ପାରିବି ନାହିଁ । ବୋଧହୁଏ ଯେଉଁ ଦିନ ମୁଁ ଦେଖିଲି ଯେ ମୁଁ ଷ୍ଟୋର୍‌ଟା କିଣି ପାରିବି, କିଣିବାରେ ପାଖରେ ଥିବା ସବୁତକ ଟଙ୍କା ସରିଯିବ, ଓ ଷ୍ଟୋର୍ ଚଳାଇବାକୁ ପଇସାର ଅଭାବ ହେବ, ସେଇ ଦିନ ଏ କଳ୍ପନା ପରିକଳ୍ପନାର ରୂପ ନେଲା । ପ୍ରଥମତଃ, କଳ୍ପନାରେ ପୂର୍ଣ୍ଣରୂପ ନେଇଥିବା ଗୋଟିଏ କାମକୁ କାର୍ଯ୍ୟରେ ପରୀକ୍ଷା ନ କରି ମନରୁ ପୋଛିଦେବା ବଡ଼ କଷ୍ଟକର ବ୍ୟାପର । ଏ କଳ୍ପନାକୁ କାର୍ଯ୍ୟରେ କରିବାରେ ଅସାଧୁତାର ପ୍ରଶ୍ନ, ଅପରାଧର ପ୍ରଶ୍ନ, ଉଠିପାରେ । କିନ୍ତୁ ଏ ଅପରାଧ ତ ମଣିଷ ବିରୁଦ୍ଧରେ ନୁହେଁ—ଟଙ୍କା ବିରୁଦ୍ଧରେ ମାତ୍ର । ଏ କଳ୍ପନା କାର୍ଯ୍ୟରେ କରିବାଦ୍ୱାରା କୌଣସି ଲୋକ ଘାଇଲ ହେବ ନାହିଁ କି କାହାର କିଛି କ୍ଷତି ହେବ ନାହିଁ । ଟଙ୍କାଟା ତ ଇନ୍‌ସିଓର୍‌ଡ୍ ହୋଇଛି; ଯାହା ଯିବ ସେତକ ଇନ୍‌ସ୍ୟୁରାନ୍‌ସ କଂପାନୀ ଭରଣା କରିଦେବ । ମଣିଷ ବିରୁଦ୍ଧରେ ଯାହା କଲି ତାହାହିଁ ଅପରାଧ । ସେମାନଙ୍କ ବିରୁଦ୍ଧରେ ଯାହା କରିଛି, ତା' ଯଦି କରିପାରିଲି, ସାମାନ୍ୟ ଟଙ୍କା କିଛି ଡକେଇତି କରି ନେଇ ଆସିବାକୁ ସଂକୋଚ କିଆଁ ? ସେ ଅପରାଧ ତୁଳନାରେ ଏ ତ କିଛି

ନୁହେଁ । ସତ୍ ବା ଅପରାଧ, ତଥାପି ସ୍ୱା ତ ମୁଁ ସବୁ ଦିନେ କରିବାକୁ ବସି ନାହିଁ । ଥରେ ମାତ୍ର । ଭବିଷ୍ୟତ୍‌ରେ ଆଉ ସେ ଅପରାଧ ବା ସେ ଅପରାଧ କରିବାକୁ ପଡ଼ିବ ନାହିଁ ।

ସେ ସବୁ ଯାହାହେଉ, ଏ ଖେଳ ବାସ୍ତବ ରୂପ ନେବା ପର୍ବରୁ, ଏ ବିଷୟରେ ମୋର କାର୍ଯ୍ୟକ୍ରମ, ଉପକରଣ ଓ ସମୟନିର୍ଘଣ୍ଟ ଯଥାସମ୍ଭବ ନିର୍ଦ୍ଦୋଷ ଓ ପରିପକ୍ୱ ହୋଇ ସାରିଥିଲା । ଖେଳଣା-ବନ୍ଧୁକ ଫୁଟାଉ-ଥିବା ପିଲା ହାତରେ ଅସଲ ପିସ୍ତଲ ଆସି ପଡ଼ି ଯାଇଥିଲା ।

ଅବଶ୍ୟ ଏ ପରିକଳ୍ପନା କାର୍ଯ୍ୟକାରୀ କରୁ କରୁ ଦୈବଦୁର୍ଘଟଣା ଘଟିଯାଇ ପାରେ । କିନ୍ତୁ ଏଭଳି ଦୁର୍ଘଟଣା ତ ରାସ୍ତାରେ ଚାଲୁ ଚାଲୁ ଘଟିପାରେ ; ଗଛମୂଳେ ଛାଇରେ ଠିଆ ହେଲେ ବି ଘଟିପାରେ । ଦୈବ-ଦୁର୍ଘଟଣାକୁ ଡରି କାର୍ଯ୍ୟରୁ ଓହରି ଯିବା କାପୁରୁଷତା । ମୋର ଏ ବିଷୟରେ କୌଣସି ଆଶଂକା ଥିଲା ପରି ମନେ ହେଉ ନାହିଁ । ଯାହା ବା ଆଶଂକା ବା ଭୟ ଥିଲା, ତାହା ଏ ପରିକଳ୍ପନାର ପୂର୍ବାଭିନୟରେ ଦୂର ହୋଇ ଯାଇଥିଲା । ମନରେ ଯାହା ଥିଲା ତାହା ଭୟ ନୁହେଁ, ଉଦ୍‌ବେଗ—ଉତ୍କଣ୍ଠା । ପ୍ରଥମ ଦିନର ଅଭିନୟ ପୂର୍ବରୁ, ରଙ୍ଗମଞ୍ଚର କଡ଼ରେ ଠିଆ ହୋଇଥିବା ଅଭିନେତାର ଯେଉଁ ଉଦ୍‌ବେଗ ଓ ଉତ୍କଣ୍ଠା ହୁଏ, ସେଇଆ । ଅଭିନୟ ପୂର୍ବରୁ, ପୂର୍ବାଭିନୟରେ ସବୁପ୍ରକାର ଆକସ୍ମିକ ଦୁର୍ଘଟଣାର ସମ୍ଭାବନା କଳ୍ପିତ ହୋଇ ପ୍ରତିକାର ବ୍ୟବସ୍ଥା ହୋଇ ସାରିଥାଏ । ମୋ ପରିକଳ୍ପନାର ବି ସେହିପରି ସମସ୍ତ ସଂଭାବିତ ଅଭାବ ଓ ଅସୁବିଧା, ପୂର୍ବାଭିନୟ ଫଳରେ ନିରାକୃତ ହୋଇଥିଲା । ଏସବୁ ସତ୍ତ୍ୱେ ଅଭିନେତାର ଯେଉଁ ଉଦ୍‌ବେଗ ହୁଏ, 'ମୋ'ର ସେଇ ଉଦ୍‌ବେଗ ହେଉଥିଲା ମାତ୍ର ।

ଏହି ଉଦ୍‌ବେଗ ଯୋଗୁଁ ରାତିରେ ନିଦ ହେବ ନାହିଁ ବୋଲି ଯେଉଁ ଆଶଂକା ଥିଲା, ତାହା ଅମୂଳକ ବୋଲି ପ୍ରମାଣିତ ହେଲା । ମୁଁ ଶୋଇଲି ; ଗାଢ଼ ନିଦ ହେଲା, ଯେତେଦୂର ମନେ ପଡ଼ୁଛି ଗୋଟାଏ ବି ସ୍ୱପ୍ନ ଦେଖି ନାହିଁ । ଶୋଉ ଶୋଉ କେଣି ଶୋଇ ପଡ଼ିଲି । ଭାବିଥିଲି, ବ୍ରାହ୍ମ ମୁହୂର୍ତ୍ତରେ ଉଠି ଧ୍ୟାନଦ୍ୱାରା ମନକୁ ଶାନ୍ତ କରିବି । ତା' ହୋଇ ପାରିଲା ନାହିଁ । ହଠାତ୍ ନିଦରୁ ଉଠି ଆଖି ଫିଟାଇ ଦେଲି ବେଳକୁ

ଜାଣିଲି ହ୍ରଦରେ ଠିଆ ହୋଇଥିବା ଗାଈର ଲାଞ୍ଜ ଅନ୍ତତଃ ଅଧଘଣ୍ଟା ହେଲା ହଲିବଣି । ବଡ଼ ବିସ୍ଫୋରକ ଦ୍ରବ୍ୟର ବିସ୍ଫୋରଣ ଫଳରେ ଠେଲି ହୋଇଯିବା ପବନର ଯେପରି ଆଘାତ ବାଜେ, ସେହିପରି ଆଘାତ ପାଇଲା ପରି ମୋର ନିଦ୍ରାବେଶ ଦୂର ହୋଇଗଲା । ହଠାତ୍ ଏଭଳି ନିଦ ଭାଙ୍ଗିଗଲେ, ମାଂସପେଶୀ କଂପିଉଠେ । ମୋ' ମାଂସପେଶୀର କଂପନରେ ଖଟ ହଲି ଗଲା ; ମେଘି ଉଠିପଡ଼ି କହିଲେ, "ହେଲା କ'ଣ ?"

"କିଛି ନାହିଁ ; ମୋ'ର ଉଠୁ ଉଠୁ ଡେରି ହୋଇଗଲା ।"

"ଭୁଚ୍ଛା କଥା । ଏଇଲେ ତ ବଡ଼ଭୋର ।"

"ନାଇଁ ଗୋ ସଖି ! ଆଜ ଦିନଟା ମତେ ଭୂତ ପରି ମାଡ଼ି ପଡ଼ୁଛି, ସଂସାର ଯାକ ଆଜ ଖାଦ୍ୟସାମଗ୍ରୀ କିଣିବାକୁ ଗୃହକ ପରି ଗୁହିଁ ରହିଛନ୍ତି । ତୁମେ ଉଠିବା ପ୍ରୟୋଜନ ନାହିଁ ।"

"ଆଜ ପର୍ବ ଭିଡ଼ ହେବ ବୋଲି କହୁଛ । ତେବେ ତ ଭଲ କରି ଜଳଖିଆ କରିଯିବା ଦରକାର ।"

"ଆଜ କ'ଣ କରିବ ଜାଣ ? ଫୋରମାଷ୍ଟର୍ କଫି ହୋଟେଲ୍‌ରୁ ଗୋଟାଏ ବୋତଲ କଫି ନେବ ଏବଂ ଗଧିଆ ପରି ମ୍ୟାରୁଲେଙ୍କ ଷ୍ଟୋର୍‌କୁ ପେଷି ପକାଇବ ।"

"ସତ କହୁଛ ?"

"ହଁ, ଆରମ୍ଭ କର, କୁନି ମୂଷା ! ଏବଂ ଆମ ଆଦରର ଧନମାଳୀ ଦୁଇଟିଙ୍କଠାରୁ ରକ୍ଷା ପାଇବାର ଗୋଟିଏ କିଛି ଉପାୟ ଉଦ୍‌ଭାବନ କର । ସତ କହୁଛି, ୟାଙ୍କଠାରୁ ଅନ୍ତତଃ ଦିନ ଦୁଇଟା ରକ୍ଷା ପାଇବା ବଡ଼ ଦରକାର ।"

"ସେ କଥା ସତ, ମୁଁ ବୁଝିଛି । ଗୋଟାଏ ଉପାୟ ଉଦ୍‌ଭାବନ କରିବାକୁ ଚେଷ୍ଟା କରିବ ନିଶ୍ଚେ ।"

ମୋର ନିରାପତ୍ତା ଓ ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ଏ ରାତ୍ରିର ଅନୁକୂଳ କିଛି ପରାମର୍ଶ ସେ ଦେବା ପୂର୍ବରୁ ମୁଁ ପୋଷାକ ପିନ୍ଧି ବାହାରି ପଡ଼ିଲି ।

ମୁଁ ଯାଇ ପହଞ୍ଚିଲା ବେଳକୁ ଜର୍ପୁ କଫି ହୋଟେଲରେ ପୂର୍ବରୁ ବିଦ୍ୟମାନ ; ସେ ପାଖରେ ଖାଲି ଥିବା ଟୁଲରେ ହାତ ମାରି ମୋତେ ନିମନ୍ତ୍ରଣ କଲେ ।

ମୁଁ କହିଲି, "ବସିବ ନାହିଁ, ମର୍ଫ୍ ! ମୋର ଡେରି ହୋଇ-ଗଲଣି । ଆନ୍ନ ! ଗୋଟାଏ କାଗଜ ବୋତଲ୍‌ରେ ମୋତେ ପାଏ-ଲିଟର୍ କଫି ଦେବ ?"

"ଏଥି ! ପାଏ-ଲିଟର୍ ବୋଇଲେ ଦୁଇ ପାଣ୍ଟି !"

"ଭଲ, ଭଲ-ତର ।"

ସେ କଫି ଭର୍ତ୍ତି କରି କାଗଜ-ବୋତଲ୍ ଦୁଇଟି ଉପରେ କାଗଜ ଠିପି ମାରିଦେଲେ ଏବଂ ତା'କୁ ଗୋଟିଏ ବ୍ୟାଗ୍‌ରେ ଭର୍ତ୍ତି କରି ଦେଲେ ।

ଜସ୍ପିଙ୍କର ସେତେବେଳକୁ କଫି ସରିଥାଏ । ସେ ମୋ ସଙ୍ଗେ ଷ୍ଟ୍ରୀଟ୍ ପାରିହେଲେ ।

"ଆଜି ତ ଧର୍ମ-ଯାଜକଙ୍କ ଅନୁପସ୍ଥିତି ଯୋଗୁଁ ତୁମକୁ ସ୍ତୋତ୍ର-ପାଠ କରିବାକୁ ହେବ ।"

"ସେଇପରି ଦିଶୁଛି । ଦେଶର ହାଲଚାଲ କ'ଣ, କହ ।"

"ମୁଁ ତୁମ କଥାର କୂଳକିନାରା ପାଉନାହିଁ ।"

"ମନେ ଅଛି ନା, ମୋ ନାକରେ ଗୋଟାଏ କେମିତି ଗନ୍ଧ ବାଜୁଛି ବୋଲି କହିଥିଲି ?"

"ସଂବାଦଟା ଶୁଣିଲା ବେଳେ ତୁମ କଥା ମନେ ପଡ଼ିଲା । ତୁମ ନାକଟା ଖୁବ୍ ଟାଣ ।"

"ନାକଟା ଟାଣ ହେବା ଆମ ବୃତ୍ତିର ଗୋଟାଏ ଅଙ୍ଗ । ଏଥର ବେକର୍ ସ୍ୱଚ୍ଛନ୍ଦରେ ଫେରି ପାରନ୍ତି । ଆସିବେ କି ନାହିଁ କେଜାଣି ?"

"ଫେରିବେ ମାନେ ?"

"ତୁମ ନାକକୁ କିଛି ଗନ୍ଧ ବାଜୁନାହିଁ ?

ମୁଁ କିଛି ବୁଝି ନପାରି ତାଙ୍କ ଆଡ଼କୁ ଚକୁଆପରି ଚାହିଁଲି । "ମୁଁ ଅନୁଭବ କରୁଛି, ଗୋଟାଏ କ'ଣ ମୁଁ ସମଜ ପାରୁନାହିଁ । କିନ୍ତୁ ତାହା କ'ଣ, ସେ ବିଷୟରେ ମୋର ଟିକେ ବି ଧାରଣା ହେଉ ନାହିଁ ।"

"ଭଗବାନ୍ ତୁମକୁ ରକ୍ଷା କରନ୍ତୁ ।"

"ମାନେ, ମୋ'ର କିଛି ଗୋଟାଏ ଜାଣିବା ଉଚିତ ବୋଲି କହୁଛ ?"

"ଠିକ୍ ସେଇଆ । କହନ ମାରିବାର ଆଇନ୍‌ଟା ରମାଦ ହୋଇ ନାହିଁ ।"

"ଭଗବାନ ! ବହୁତ ଗୁଡ଼ାଏ କଥା ମୋର ଅଜାଣତରେ ଘଟି ଯାଉଛି ବୋଧହୁଏ । ମୁଁ ଏସବୁ ବଡ଼ ବଡ଼ କଥାର କଳ୍ପନା ନ କରି ବସୁରୁ ଥିଲି, ଶାକସବଜ ଓ ଚଟଣୀ ଉଭୟ ତୁମ ସ୍ୟାଣ୍ଡ୍‌ଉଇଚରେ ଦିଆ-ଯିବ, ନା ଏଥିରୁ ଗୋଟାଏ କ'ଣ ?"

"ଉଭୟ । ପ୍ଲେ ଓ ସେ ।" ଏହା କହି ସେ ତାଙ୍କ 'କ୍ୟାମେଲ୍' ସିଗାରେଟ୍ ପେଡ଼ାରୁ ମହମଦିଆ କାଗଜ ଖଣ୍ଡେ ବାହାର କଲେ ଓ ତା'କୁ ସ୍ଵବଘର ଭିତରେ ଭର୍ତ୍ତି କରିବାକୁ ବଣ୍ଡା କଲେ ।

ମୁଁ କହିଲି, "ମୋତେ ଯିବାକୁ ପଡ଼ୁଛି । ଗୃ ବାକ୍‌ସ ବର୍ହୀଉପରେ ଆମେ ଗୋଟାଏ ବିଶେଷ ପୁରସ୍କାର ଦେଉଛୁ । ବାକ୍‌ସ୍‌ର ଓପର କାଗଜ ଖଣ୍ଡ ପଠାଇଲେ ଗୋଟାଏ ପିଲ୍ ମିଳିବ । କୌଣସି ମହିଳାଙ୍କ ସଙ୍ଗେ ପରିଚୟ ଅଛି ?"

"ଖୁବ୍ ତ ଅଛି । କିନ୍ତୁ ଏ ପୁରସ୍କାରକୁ ଆଧୁନିକ ମହିଳା ଆଦୌ ପସନ୍ଦ କରିବେ ନାହିଁ । ହଁ, ମୋ ପାଇଁ ସ୍ୟାଣ୍ଡ୍‌ଉଇଚ୍ ଆଣିବାକୁ କଷ୍ଟ କରିବ ନାହିଁ । ମୁଁ ନିଜେ ତୁମ ପାଖକୁ ଯାଇ ଆଣିବି ।"ସେ ତାଙ୍କ ଦୁଆର ମେଲାଇ ଘର ଭିତରକୁ ଗଲେ ; ମୁଁ ଲକ୍ଷ୍ୟ କଲି, ସ୍ପ୍ରିଂଲଗା ତାଲାର ଟୁଙ୍ଗ ଶବ୍ଦ ହେଲା ନାହିଁ । ମୋ'ର ସ୍ପଷ୍ଟ ଧାରଣା ହେଲା, ଜଗ୍ଗି ଯେ ମୋର ସବୁଠାରୁ ଉତ୍କୃଷ୍ଟ ଶିକ୍ଷକ ଏହା ସେ ନିଜେ ଜାଣି ପାରି ନାହାନ୍ତି । ସେ ମୋତେ ଯେ ଖାଲି ଉପଦେଶ ଦେଇଛନ୍ତି ସେତିକ ନୁହେଁ ; ଆଜି ସେ କାର୍ଯ୍ୟରେ ମାର୍ଗରି ଇସବି ଦେଇଦେଲେ ଓ ଅଜ୍ଞାତରେ ମୋ ପାଇଁ ପଥ ଉନ୍ମୁକ୍ତ ରଖିଲେ ।

ଏ ବିଷୟରେ ଯେଉଁମାନଙ୍କର ଅଭିଜ୍ଞତା ଅଛି—ଅର୍ଥନୀତି-ବିଶାରଦମାନେ, ସେମାନେ ସମସ୍ତେ ଏକସ୍ୱରରେ କହନ୍ତି ଯେ, ଟଙ୍କା ଥିଲେ ଟଙ୍କା ଆସେ । ଟଙ୍କା ଆସିବାର ସର୍ବୋତ୍କୃଷ୍ଟ ଉପାୟ ପ୍ରାୟଶଃ ଅତି ସରଳ । ମୁଁ ଯେଉଁ ଉପାୟଟା ପାଉଛି, ତାହାର ଭିଷଣ ସରଳତା ଯୋଗୁଁ ଏ ଉପାୟଟା ଉତ୍କୃଷ୍ଟ ବୋଲି ମୋତେ ଲାଗୁଛି । ମ୍ୟାରୁଲେ—ଅବଶ୍ୟ ତାଙ୍କ ନିଜ ଦୋଷରେ ନୁହେଁ—ଅନ୍ଧାରରେ ଯାଇ ପର୍ବତ ଶିଖରରୁ ରସାତଳକୁ ପଡ଼ିବା ପର୍ଯ୍ୟନ୍ତ, ମୁଁ ଏ ଉପାୟଟାକୁ ଗୋଟିଏ ସବିସ୍ତର ଦିବାସ୍ୱପ୍ନ ବୋଲି ମନେ କରୁଥିଲି । ଷ୍ଟୋର୍‌ଟା ମୋ'ର ହେବ ବୋଲି ମନରେ ଦୃଢ଼ଧାରଣା

ହେବା ପରେ ହିଁ ଶୂନ୍ୟରେ ଭାସୁଥିବା ସ୍ୱପ୍ନ, ଭୂଇଁ ଧରି ବାସ୍ତବ ରୂପ ଗ୍ରହଣ କଲା । ଅଜ୍ଞାନସମ୍ଭୂତ ହେଲେ ହେଁ ଗୋଟାଏ ଯଥାର୍ଥ ପ୍ରଶ୍ନ ଉଠିପାରେ—ଷ୍ଟୋର୍‌ଟା ଯଦି ମୋ ହାତକୁ ଆସୁଛି, ତେବେ ଆଉ ଟଙ୍କା କ'ଣ ପାଇଁ ଦରକାର ? ମିଷ୍ଟର୍ ବେକର୍ ଏହାର ଉତ୍ତର ଦେଇ ପାରିବେ, ଜସ୍ପି ମଧ୍ୟ ପାରିବେ, ମ୍ୟାରୁଲେ ମଧ୍ୟ ପାରିବେ — ବ୍ୟବସାୟରେ ଯେଉଁମାନଙ୍କର ଅଭିଜ୍ଞତା ଅଛି ସେମାନେ କରିପାରିବେ, ତଥାପି ଟଙ୍କା କାହିଁକି ଦରକାର ? ଚଳନ୍ତି କାରବାର ପାଇଁ ମୂଳଧନ ନ ଥିଲେ, ଷ୍ଟୋର୍ ଥାଇ ଯେତିକି ନଥାଇ ହୁଏତ ତହିଁରୁ ଭଲ । ଦେବାଳିଆ ଅବସ୍ଥାରେ ବଡ଼ଦାଣ୍ଡ ଦୁଇକଡ଼ରେ ମୂଳଧନ-ବିହୀନ କାରବାରର କବର, ଧାଡ଼ି ଧାଡ଼ି ହୋଇ ରହିଛି । ତା' ଭିତରେ ମୋ' ନିଜ ବ୍ୟବସାୟର କବରଟି ମଧ୍ୟ ଅଛି । ଅତି ନିର୍ବୋଧ ସୈନ୍ୟ ବି, ପଛରେ ଅସ୍ତ୍ରଶସ୍ତ୍ର, ରିଜର୍ଭ ସୈନ୍ୟ ଓ ନିଜର ସ୍ଥାନ ଅଧିକାର କରିବାକୁ ସୈନ୍ୟ ବ୍ୟବସ୍ଥା ନକରି, ଶତ୍ରୁ ଆଡ଼କୁ ଧସେଇ ପଶିବ ନାହିଁ ; କିନ୍ତୁ ବ୍ୟବସାୟ-କ୍ଷେତ୍ରରେ ଅନେକ ନୂଆ ବ୍ୟବସାୟୀ ଠିକ୍ ଏଇଆ କରନ୍ତି—ସମସ୍ତ ଧନ ମୂଳ-ବ୍ୟବସାୟରେ ନିଃଶେଷ କରି ଦିଅନ୍ତି ଓ ଚଳନ୍ତି କାରବାର ପାଇଁ କିଛି ପାଖରେ ରଖନ୍ତି ନାହିଁ । ମେସିଙ୍କ ସମ୍ବଳ, ଚିହ୍ନିତ ନୋଟ୍ ରୂପରେ ମୋ'ର ପ୍ୟାଣ୍ଟ୍ ପକେଟରେ ରହି ମୋ'ର ପୃଷ୍ଠଦେଶରେ ଆବୁ ପରି ଲାଗୁଥାଏ । ମ୍ୟାରୁଲେ ଏଥିରୁ ଯେତେ ପାରିବେ ସେତିକି ଦୋକାନର ଦାମ ବାବଦକୁ ନେଇଯିବେ । ତା'ପରେ ଆସିବ ମାସର ପହିଲି । ଅଚିହ୍ନା ଦୋକାନୀଙ୍କୁ ଗୋଦାମବାଲା ଧାରି ଦେବାକୁ ମୁକ୍ତହସ୍ତ ହେବେ ବୋଲି ଆଶା କରିଯାଇ ନ ପାରେ । ତେଣୁ ଦୋକାନର ମାଲିକ ହେଲେ ବି, ମାସମୁଣ୍ଡେ ଜିନିସ ଆଣି ସାଇତିବାକୁ ମୋର ଟଙ୍କା ଦରକାର ପଡ଼ିବଇ ପଡ଼ିବ । ସେ ଟଙ୍କା ବ୍ୟାଙ୍କ୍‌ର ଟିକ୍ ଟିକ୍ କରୁଥିବା ଇସ୍ପାତ ଦରଜା ଆରପଟେ ମୋତେ ଚାହିଁ ରହିଛି । ଏହାକୁ ସେଠାରୁ ଉଦ୍ଧାର କରି ଆଣିବାର ଉପାୟ, ପ୍ରଥମେ ଦିବାସ୍ୱପ୍ନ ପରି ଜନ୍ମ ହୋଇଥିଲେ ମଧ୍ୟ, ବର୍ତ୍ତମାନର ନିରୀକ୍ଷାରେ ସର୍ବାଙ୍ଗସୁନ୍ଦର ପରି ଜଣାପଡ଼ୁଛି । ଡକାୟତି କରିବା ଆଇନ୍-ଗର୍ହିତ ଅପରାଧ—ଏ ଚିନ୍ତା ମୋତେ ଆଦୌ ବ୍ୟସ୍ତ କରୁନାହିଁ । ମ୍ୟାରୁଲେ ଜାଣିଲେ କ'ଣ ଭାବିବେ, ତାହା ମୋ ମନରେ ରେଖାପାତ

କରୁନାହିଁ । ସେ ମୋ ଷଡ଼ଯନ୍ତ୍ରର ଶିକାର ନ ହୋଇଥିଲେ, ହୁଏତ ଏପରି କଳ୍ପନାକୁ କାର୍ଯ୍ୟକାରୀ କରିବାକୁ ବାହାରନ୍ତେ । ତାଙ୍କ କଥା ଭାବୁଥିଲେ ମନ କମିତି କମିତି ହେଉଛି ; ଯଦିଓ ଏକଥା ସତ ଯେ, ମୁଁ ତା'ର ସର୍ବନାଶ କରିବାକୁ ସମ୍ବଳ ଯୋଗାଇବା ପୂର୍ବରୁ ତା'ର ସର୍ବନାଶ ହୋଇ ସାରିଥିଲା । ମୁଁ ତାଙ୍କ ପ୍ରତି ଯାହା କଲି, ଠିକ୍ ସେଇଆ କରିବାକୁ ମିଷ୍ଟର୍ ବେକର୍, ବିଫଳକାମ ହେଲେ ମଧ୍ୟ, ଚେଷ୍ଟାକରିଥିବାର ଜାଣି ମୁଁ ମୋ କାର୍ଯ୍ୟର ଯେତେ ସମର୍ଥନ ପାଇଲି, ଏତେ ସମର୍ଥନ ଅଧିକାଂଶ ଲୋକ ନିଜର କାର୍ଯ୍ୟପାଇଁ ଲୋଡ଼ନ୍ତି ନାହିଁ । ଏ ସବୁ ସତ୍ତ୍ୱେ ତାଙ୍କର ସ୍ମୃତି ମୋର ଅନ୍ତରାତ୍ମାକୁ ବ୍ୟଥିତ କରୁଛି ; ଯୁଦ୍ଧ-ବିଜେତା ସେନାପତି ନିଜ ଦେହରେ ହୋଇଥିବା ଅସ୍ତ୍ରାଘାତକୁ ଯେପରି ଗୌରବ ବୋଲି ଗ୍ରହଣ କରେ, ତାଙ୍କ ଯୋଗୁଁ ହୋଇଥିବା ମୋ' ଅନ୍ତରର ବ୍ୟଥାକୁ ମୁଁ ସେଇ ରୂପେ ଗ୍ରହଣ କରୁଛି । ଏ ବ୍ୟଥାକୁ ବରଦାସ୍ତ କରି ମୋତେ ବଞ୍ଚି-ରହିବାକୁ ହେବ । ହୁଏତ ଏ ଘା' କାଳକ୍ରମେ ଶୁଖିଯିବ, କମ୍ବା ଘା ଉପରେ ବିସ୍ମୃତିର ପରଦା ପଡ଼ି ଉଠିବ, ଯେପରି ଦେହରେ ରହିଯାଇ-ଥିବା ଗୁଳିଟିକୁ ବି ଉପରେ କୋମଳ ଅସ୍ଥିର ଆବରଣ ଗଢ଼ି ଉଠେ ।

ବର୍ତ୍ତମାନ ଜରୁରି ପ୍ରୟୋଜନ ଧନ । ସେଇଥିପାଇଁ ଉପାୟ ଖୁବ୍ ଯତ୍ନ ସହିତ ନିର୍ଦ୍ଦେଷ ଭାବେ ତିଆରି ହୋଇଛି, ଯେପରି ଇଲେକ୍ଟ୍ରିକ୍ ପ୍ରବାହର ପରିପଥ ସାବଧାନତା ସହିତ ତିଆରି ହୋଇଥାଏ ।

ମର୍ଫିଙ୍କ ଅନୁଶାସନଗୁଡ଼ିକ ଠିକଣା ଭାବେ ପ୍ରମାଣିତ ହୋଇଛନ୍ତି ଓ ସେଗୁଡ଼ିକ ମୁଁ ପରିଷ୍କାର ମନେ ରଖିଛି ; ଅଧିକନ୍ତୁ ସେଥି ସଙ୍ଗେ ମୁଁ ମୋ ନିଜର ଗୋଟିଏ ଅନୁଶାସନ ଯୋଗ କରିଛି । ପ୍ରଥମ ଅନୁଶାସନ : ପୂର୍ବରୁ ଏଭଳି କାର୍ଯ୍ୟ କରିଥିବାର ରେକର୍ଡ୍ ନଥିବ : ମୋର ସେଭଳି ରେକର୍ଡ୍ ନାହିଁ । ଦ୍ୱିତୀୟ ; ଏଥିରେ ସାଙ୍ଗ ସାଥି କେହି ନଥିବେ ; ମୋର ସେଭଳି କେହି ନାହାନ୍ତି । ତୃତୀୟ ମାଇକଲିଆଙ୍କ ସଙ୍ଗେ ଲଟପଟ ହୋଇ ନଥିବ ; ମାର୍ଗି ସୁଙ୍ଗ-ହ ଏକମାତ୍ର ନାରୀ ଯାହାକୁ ଏ ପର୍ଯ୍ୟାୟରେ ନିଆଯାଇପାରେ, କିନ୍ତୁ ମୁଁ ତା' ସଙ୍ଗେ କୌଣସି ଭାବେ ଲଟପଟ ହୋଇନାହିଁ । ଚତୁର୍ଥ . ହଠାତ୍ ଲୁଟ୍‌ଧନ ଖର୍ଚ୍ଚ କରିବ ନାହିଁ ; ଏହା ତ ମୁଁ କଦାପି କରିବି ନାହିଁ । କ୍ରମେ କ୍ରମେ ଗୋଦାମବାଲଙ୍କୁ

ସଜ୍ଜିଦା ପାଇଁ ଦାମ ଦେବାରେ ଏ ଧନ ଖର୍ଚ୍ଚ କରିବ । ଏ ଟଙ୍କା ସାଙ୍ଗେ ସାଙ୍ଗେ ନେଇ ରଖିବାକୁ ମୋର ଉପଯୁକ୍ତ ସ୍ଥାନଟିଏ ଅଛି । ମୋ' ନାଇଟ୍-ଟେମ୍ପଲର୍ ହ୍ୟାଟ୍-ବାକ୍‌ସରେ ଭେଲ୍‌ଭେଟ୍ କନା ମଡ଼ଆ କାଗଜ ପଟାର ଗୋଟିଏ ଖୋପ ଅଛି—ଠିକ୍ ମୋ ମୁଣ୍ଡ ଆକୃତିର । ଏ ଖୋପଟା କଡ଼ା ହୋଇଛି ଓ ଏହାର ଫାନ୍ଦରେ ଅଠାମରା ହୋଇ ରହିଛି । ମୁହୂର୍ତ୍ତିକେ ଯୁ୍ୟା'କୁ ତା' ଥାନରେ ନେଇ ରଖି ଦେଲେ ଅଠାଲାଗି ଟାଣ ହୋଇ ରହିଯିବ ।

ଚହ୍ନିବାକୁ ବାହ୍ୟ ରୂପ—ଗୋଟାଏ ମୁଷା-ମୁଖା । ଅନ୍ୟ କିଛି କେହି ଦେଖି ପାରିବେ ନାହିଁ । ମ୍ୟାରୁଟେଲ୍‌ଙ୍କର ଗୋଟାଏ ପୁରୁଣା ସୁତୁଲି ବର୍ଷାତି-କୋଟ୍—ଏଗୁଡ଼ାକ ପ୍ରତ୍ୟେକେ ସମାନ ଦରକାରୀ—ଏବଂ ହଳେ ମହମକାଗଜର ହାତମୋଜା—ଯାହା ବଡ଼ା ବଡ଼ା ହୋଇ ଆସେ । ଯୁ୍ୟାକୁ ଛିଣ୍ଡାଇ ଫୋପାଡ଼ ଦେବା ଏକ ସେକଣ୍ଡର କାମ । ମୁଷା-ମୁଖା ଅନେକ ଦିନ ହେଲା କଡ଼ା ହୋଇ ରହିଛି ; ସେଉଁଥିରୁ କଡ଼ା ହୋଇଥିଲା ସେ ପେଟି ଓ ତା'ଭିତରର ଖାଦ୍ୟ-ଶଯ୍ୟ ପାଇଖାନା ନଳୀବାଟେ ଭୂଗର୍ଭକୁ ଯାଇଛି—କାମ ସରିଲେ ମୁଖା ଓ ହାତମୋଜା ସେଇ ପଥର ଯାତ୍ରୀ ହେବେ । ରୂପାଗୋବରମରା ପୁରୁଣା ଆଇଭର୍-ଜନସନ୍ ପିସ୍ତଲଟା ଲଶୁନ-କଳାରେ ରଞ୍ଜିତ ହୋଇଛି ଓ ପାଇଖାନା ଘରେ ମୋବିଲ୍ ଅଏଲ୍‌ର ଗୋଟିଏ ଟିଣ ମହଜୁଦ୍ ରହିଛି, ଯହିଁରେ ଯେ କାମ ସାରିଲା ମାତ୍ରେ ପଡ଼ିବ, ଓ ସେଇଠାରେ ଅପେକ୍ଷା କରି ରହିବ, ସୁଯୋଗ ଆସିବା ସାଙ୍ଗେ ସାଙ୍ଗେ ପୁଲିସ୍ ହାକିମ୍ ଷ୍ଟ୍ରୋନଙ୍କୁ ସମର୍ପିତ ହେବା ସକାଶ ।

ମର୍ଫିଙ୍କ ଅନୁଶାସନମାନଙ୍କ ପନ୍ତିକୁ ମୁଁ ମୋର ଗୋଟିଏ ଅନୁଶାସନ ଯୋଡ଼ ଦେଇଛି, ତାହା ଏହି—ଘୁଷୁରି ପରି ସର୍ବଗ୍ରାସୀ ହେବ ନାହିଁ । ଗୁଡ଼ାଏ ବେଶି ନେବ ନାହିଁ କି ବେଶିଟଙ୍କିଆ ନୋଟ୍ ଛୁଇଁବ ନାହିଁ; ଟଙ୍କା-ବାକ୍‌ସର କୌଣସି କୁଣରେ ଯଦି ଦଶଟଙ୍କିଆ କି ଶହେଟଙ୍କିଆ ନୋଟ୍ ମିଳେ, ତେବେ ସେଥିରୁ ପୁଳେ—ପ୍ରାୟ ଛଅଶରୁ ପନ୍ଦର ହଜାର ପର୍ଯ୍ୟନ୍ତ ହାତରେ ପଡ଼ିଲେ ଯଥେଷ୍ଟ । ସେତକ ନେବାକୁ ସୁବିଧା, ଲୁଚାଇ ରଖିବାକୁ ବି ସହଜ । ଥଣ୍ଡାକାମରାରେ ଥିବା ବୁଡ଼ା କାଗଜର ଗୋଟିଏ କେକ୍‌ଥିବା ଡବା ନେଇ ନୋଟ୍‌ତକ ସେଇଥିରେ ପୂରାଇ ଆଣିବାକୁ ହେବ । କିଛି

ସମସ୍ତ ପରେ ସେଇ ଡବାକୁ ଫିଟାଇଲା ବେଳକୁ ସେଥିରୁ ବାହାରିବ ଗୋଟାଏ ବଡ଼ କେକ୍ । କାଣ୍ଡଶରରେ ତିଆରି ସେଇ କୁଞ୍ଚିତ ବହୁସ୍ତରୀ ଯନ୍ତ୍ରଟାଏ ପାଟିରେ ପୂରାଇ ମୋ ସ୍ୱର ବଦଳାଇବାର ପରୀକ୍ଷା କରିଥିଲି । ପରୀକ୍ଷା ସନ୍ତୋଷଜନକ ନ ହେବାରୁ ସମ୍ପୂର୍ଣ୍ଣ ତୂନୀ ରହି ଠାରି ହାରି କାର୍ଯ୍ୟଉଦ୍ଧାର କରିବାକୁ ସ୍ଥିର କରିଛି । ମୋ ଉପାୟର ସବୁ ଅଙ୍ଗ ଓ ସବୁ ଉପକରଣ ଯଥାସ୍ଥାନରେ ପ୍ରସ୍ତୁତ ହୋଇ ରହିଛି ।

ମିଷ୍ଟର୍ ବେକର୍ ଟାଉନରେ ନ ଥିବାରୁ ମୁଁ ବାସ୍ତବିକ ଦୁଃଖିତ । କେବଳ ମର୍ଫି, ହ୍ୟାରି ରବର୍ଟ୍ ଓ ଏଡ୍‌ଉଥ୍ ସ୍ମାଲ୍‌ଉଡ଼ନ୍ ବ୍ୟାଙ୍କରେ ଥିବେ । ମୋର ପରିକଳ୍ପନାରି, ସେକଣ୍ଡ୍‌ର ଭଗ୍ନାଂଶ ଯାଏଁ ଟାଇମ୍ ବନ୍ଧା । ନଅଟା ବାଜିବାକୁ ପାଞ୍ଚ ମିନିଟ୍ ଥାଇ ମୁଁ ଗୁଞ୍ଜୁଣିଟା ସଦର ଦରଜାର ଦୁଆର-ବନ୍ଧରେ ଆଉଜାଇବି । ଏହାର ପୂର୍ବାଭିନୟ ଥରକୁ ଥର କରାହୋଇଛି । ମୋ' ପୋଷାକର ଆଚ୍ଛାଦନୀ ଚେକାହୋଇ ଅଣ୍ଟାରେ ଖୋସା ହୋଇଥିବ । ଦୁଇ ପାଉଣ୍ଡିଆ ଗୁଣ୍ଡିଟା ପାଇଖାନା ଶିକୁଳି ଉପରେ ରଖା ହୋଇ ଅନବରତ ଭସ୍ ଭସ୍ ପାଣି ଗଳୁଥିବ । ଯେ କୌଣସି ଲୋକ ଏତେବେଳେ ଦୋକାନକୁ ଆସିଲେ ପାଣିର ଶବ୍ଦରୁ ସ୍ୱାଭାବିକ ଉପସଂହାରରେ ପହଞ୍ଚିବାରେ ସଂଦେହ ନ ଥିବ । ଉପକରଣ—କୋଟ୍, ମୁଖା, କେକ୍‌ପେଟି, ପିସ୍ତଲ ଓ ହାତମୋଜା । ଠିକ୍ ନଅଟାରେ ଗଳି ପାର୍ ; ବ୍ୟାଙ୍କ୍‌ର ବାଡ଼-ଦୁଆରରେ ଏକ ଠେଲି ; ମୁଖା ପିନ୍ଧି ଟଙ୍କା ବାକ୍ସ୍‌ର ଘଣ୍ଟି ବାଜିଲା-ବେଳକୁ ବ୍ୟାଙ୍କ୍‌ରେ ପ୍ରବେଶ ; ସେତିକି ବେଳକୁ ଜର୍ଫି ଟଙ୍କା ବାକ୍ସ୍‌ର ଦୁଆର ଫିଟାଉଥିବେ । ବ୍ୟାଙ୍କ୍‌ର ତିନି ଜଣ ଯାକ କର୍ମଚାରୀଙ୍କୁ ତଳେ ଶୋଇ ରହିବାକୁ ପିସ୍ତଲରେ ନିର୍ଦ୍ଦେଶ । ସେମାନଙ୍କର ଉଁ ଚୁଁ କରିବାର ସଂଭାବନା ନାସ୍ତି । ଜର୍ଫି ଆଗରୁ ଯଥାର୍ଥ କହିଛନ୍ତି, ଟଙ୍କା ଇନ୍‌ସ୍ୟୁରଡ୍ ହୋଇଛି ସିନା, ସେ ତ ହୋଇନାହାନ୍ତି । ଟଙ୍କାକୁ ବାହାର କରି କେକ୍-ପେଟିରେ ପୂରଣ ; ଗଳି ପାର ହୋଇ ଷ୍ଟୋରକୁ ପ୍ରତ୍ୟାବର୍ତ୍ତନ ; ସଙ୍ଗେ-ସଙ୍ଗେ ମୁଖା ଓ ହାତମୋଜାକୁ ପାଇଖାନା ନଳରେ ଭୂଗର୍ଭପ୍ରେରଣ , ପିସ୍ତଲକୁ ତେଲକୁଣ୍ଡରେ ନିକ୍ଷେପ ଓ କୋଟ୍-ବସ୍ତ୍ରସ୍ଖଳଣ ; ତା' ପରେ ଆଚ୍ଛାଦନୀ ପ୍ରାନ୍ତକୁ କଟିଦେଶରୁ ମୁକ୍ତ ; ହ୍ୟାଟ୍-ବାକ୍ସରେ ଧନ-ସଂରକ୍ଷଣ ; କେକ୍-ପେଟିରେ କେକ୍‌ର ପୁନଃପ୍ରବେଶ । ତା' ପରେ ବ୍ୟାଙ୍କ୍‌ର ସତର୍କ-

ଘଣ୍ଟାଧ୍ୱନି ଶୁଣାଗଲା ବେଳକୁ ସମ୍ମାର୍ଜନୀ ହସ୍ତରେ ସମସ୍ତଙ୍କ ଚକ୍ଷୁ-ସମ୍ମୁଖରେ ଷ୍ଟୋର ବହିର୍ଦ୍ଵାରରେ ସମ୍ମାର୍ଜନା କାର୍ଯ୍ୟ । ଏ ସବୁ କାର୍ଯ୍ୟରେ ସର୍ବମୋଟ ଲାଗିବ, ଏକମିନିଟ୍ ତ୍ରିଶ ସେକେଣ୍ଡ । ସମସ୍ତ, ବାରଂବାର ଅଭ୍ୟାସ ଫଳରେ, ବାରଂବାର ପରୀକ୍ଷିତ ହୋଇ ନିରୂପଣ କରା ଯାଇଛି । ଅତି ଯତ୍ନରେ ପରିକଳ୍ପନାର ପ୍ରତ୍ୟେକ ଅଙ୍ଗ ଅଭ୍ୟାସିତ ହୋଇ ସମସ୍ତ ଧରାହୋଇ ଥିଲେ ମଧ୍ୟ, ଠିକ୍ କାର୍ଯ୍ୟ ବେଳକୁ ମୋତେ ଟିକିଏ ଉଦ୍‌ବେଗ ଲାଗିଲା ଏବଂ ସଦର ଦରଜା ମେଲାଇବା ପୂର୍ବରୁ ମୁଁ ଷ୍ଟୋରର ଭିତରଟା ଦେଖାଇ ଦେଲି । କାଳର ଅଚ୍ଛାଦନୀଟା ପୋଷାକ ଉପରେ ଗୁଡ଼ାଇଲି ; ପୁରୁଣା ଅଚ୍ଛାଦନୀ ବ୍ୟବହାର କରିବା ଯୋଗୁଁ ନୂଆ ଇସ୍ତ୍ରୀଦାଗ ଆଖିରେ ପଡ଼ିବ ନାହିଁ ।

ଏକଥା ସହଜରେ ବିଶ୍ୱାସ କରିବ ନାହିଁ, ସମସ୍ତ ନିଶ୍ଚଳ ହୋଇ ରହିଗଲା, ସତେ ଯେପରି ଜୋଶୁଆ ଅସ୍ତ ପେଶି, ସୂର୍ଯ୍ୟଙ୍କୁ ତାଙ୍କ ଗତିପଥରେ ନିଶ୍ଚଳକରି ରଖିଦେଲେ । ମୋ ବାପାଙ୍କ ବଡ଼ ପକେଟ-ଘଡ଼ିର ମିନିଟ୍-କଣ୍ଟା ଗୋଟିଏ ଆଣି ଦେଇ ସକାଳକୁ ଟାଣି କରି ଧରିଥାଏ ।

ଅନେକ ଦିନ ହେଲା ମୋର ଭକ୍ତମାନଙ୍କୁ ପାଟି ଫିଟାଇ ବକ୍ତୃତା ଦେଇ ନ ଥିଲି । ଆଜି ସକାଳେ, ବୋଧହୁଏ ମୋର ମାନସିକ ବିଶୃଙ୍ଖଳ୍ୟ ଯୋଗୁଁ ବକ୍ତୃତା ଦେବାକୁ ଲାଗିଲି ।

ମୁଁ କହିଲି, "ବନ୍ଧୁଗଣ ! ଆଜି ତୁମେମାନେ ଯାହା ଦେଖିବାକୁ ଯାଉଛ ତାହା ଗୋଟାଏ ପ୍ରହେଳିକା । ମୁଁ ଜାଣେ, ତୁମେମାନେ ତୁନି ହୋଇ ରହି ଏକଥା କାହାକୁ କହିବ ନାହିଁ ବୋଲି ମୁଁ ତୁମମାନଙ୍କ ଉପରେ ନିର୍ଭର କରିପାରିବି । ଏଘଟଣାରେ ସଂପୃକ୍ତ ନୈତିକ ମୂଲ୍ୟମାନ ବିଷୟରେ ଯଦି ତୁମ ଭିତରୁ କାହାରି-ମନରେ କୌଣସି ସଂଶୟ ଜାତ ହେଉଛି, ତେବେ ସେଭଳି ବ୍ୟକ୍ତିଙ୍କୁ ମୋର ଆଦେଶ, ସେ ଏସ୍ଥାନ ଛାଡ଼ି ଚାଲି ଯା'ନ୍ତୁ ।" ଏହା କହି ମୁଁ ଟିକିଏ ଅଟକିଲି । ଟିକିଏ ପରେ ପୁଣି କହିଲି, "ତାହାହେଲେ, କାହାରି ଏ ବିଷୟରେ କିଛି ଆପତ୍ତି ନାହିଁ । ବେଶ୍ କଥା । ପରେ ଯଦି କେବେ କୌଣସି ଶାମୁକା ବା ଦନ୍ଧାକୋବି, ବାହାର ଲୋକ ସଙ୍ଗେ ଏ ବିଷୟ ଅଲୋଚନା କରିବାର ମୋ କାନକୁ ଆସିବ ; ତେବେ ଜାଣିରଖ, ଅପରାଧୀକୁ ଭୋଜନ-ଟେବୁଲଟି କଣ୍ଟାରେ ପ୍ରାଣଦଣ୍ଡ ଆଦେଶ ଦିଆ ହେବ ।

"ଶେଷରେ ତୁମ ସମସ୍ତଙ୍କୁ ମୋର ଧନ୍ୟବାଦ ଜ୍ଞାପନ କରୁଛି । ଆମେ ସମସ୍ତେ ସହକର୍ମୀ , ଭଗବାନଙ୍କ ଅଙ୍ଗୁର-କ୍ଷେତରେ ନିଷ୍କପଟ ଶ୍ରମିକ ଭାବେ ଏପର୍ଯ୍ୟନ୍ତ ଚଳି ଆସିଲେ । ନିକଟରେ ଗୋଟାଏ ପରିବର୍ତ୍ତନର ସୂଚନା ଦିଶୁଛି । ମୁଁ ଏଥର ଏଠାରେ ହେବି ପ୍ରଭୁ । କିନ୍ତୁ ମୁଁ ଶପଥ କରି କହୁଛି, ମୁଁ ଉତ୍ତମ, ଦୟାଳୁ ଓ ତୁମମାନଙ୍କ ଅଭାବ ଅସୁବିଧା ପ୍ରତି ବିଚାର-ଶୀଳ ପ୍ରଭୁ ହେବି । ବନ୍ଧୁଗଣ, ସମୟ ନିକଟ ହେଲା, ଏଥର ଯବନିକା ଉଠିବ, ଅଭିନୟ ଆରମ୍ଭ ହେବ । ବିଦାୟ !"

ତା'ପରେ ମୁଁ ଗ୍ଲୁଞ୍ଜୁଣୀ ଧରି ସଦର ଦରଜାକୁ ଯାଉ ଯାଉ ମୋର ନିଜ ସ୍ୱର ଶୁଣି ପାରିଲି, "ଡ଼ାକ୍ତର, ଡ଼ାକ୍ତର ! 'ମୋ'ର ପେଟର ଅନ୍ତ ଗ୍ରଡ, ମୋ ପେଟରୁ ନିକଳ ।" ଗୋଟାଏ ଭୀଷଣ କମ୍ପ ମୋତେ ଦୋହଲାଇ ଦେଲା ମୁଁ ଦଣ୍ଡେ ଗ୍ଲୁଞ୍ଜୁଣୀ ଉପରେ ଭର ଦେଇ ଠିଆହେଲା ପରେ ସଦର ଦରଜା । ଫିଟାଇଲି ।

ମୋ' ବାପାଙ୍କ ଘଡ଼ିର କଳା, ମୋଟାଳିଆ କ୍ଷୁଦ୍ର ଘଣ୍ଟା କଣ୍ଟା ନଅ ପାଖରେ ଥାଏ ଓ ଲମ୍ବା, ସରୁଆ ମିନିଟକଣ୍ଟା ବାର ଅଙ୍କଠାରୁ ୭ ମିନିଟ୍ ପଛରେ ଥାଏ, ମୋ ପାପୁଲିରେ ଘଣ୍ଟାକୁ ରଖି ଦେଖିଲା ବେଳେ ମୁଁ ସ୍ପର୍ଶ ଦ୍ୱାରା ଅନୁଭବ କଲି, ଘଣ୍ଟାର ଗ୍ଲଭିତରେ ଧକ୍ ଧକ୍ ଆବାଜ ହେଉଛି ।

—×—

## —ପଞ୍ଚଦଶ ପରିଚ୍ଛେଦ—

କୁକୁର ଯେପରି ବିରାଡ଼ିଠାରୁ ଅଲଗା, ଓ ଏ ଦୁହେଁ ଚନ୍ଦ୍ରମଲ୍ଲି ଫୁଲଠାରୁ, ସାମୁଦ୍ରିକ ତରଙ୍ଗୋଚ୍ଛ୍ୱାସଠାରୁ ବା ଆରକ୍ତ ଜ୍ୱରଠାରୁ ଯେପରି ଅଲଗା, ସେହିପରି ଆଜି ଦିନଟା ଅନ୍ୟ ଦିନମାନଙ୍କଠାରୁ ଅଲଗା ଜଣା ଯାଉଥାଏ । ବୋଧହୁଏ ପ୍ରତି ଷ୍ଟେଟ୍‌ରେ ଏ ଆଇନ୍ ଅଛି — ଆମ ଏ ଷ୍ଟେଟ୍‌ରେ ତ ନିଶ୍ଚୟ ଅଛି ଯେ—ଲମ୍ବା ଗ୍ରୀଷ୍ମାନ୍ତ ଛୁଟି ପୂର୍ବରୁ ନିଶ୍ଚୟ ବର୍ଷା ହେବ—ନହେଲେ ସଉଦା କରିବାକୁ ବାହାରିଥିବା ଜନତା ଓଦା ଗୁଡ଼ୁ ଗୁଡ଼ୁ ହୋଇ ଘାଣ୍ଟି ହେବେ କିପରି ? ଜୁଲାଇ ମାସର ସୂର୍ଯ୍ୟ ଗୁଡ଼ାଏ କ୍ଷୁଦ୍ର କ୍ଷୁଦ୍ର ପରିବିଶିଷ୍ଟ ମେଘଙ୍କୁ ନିରସ୍ତ କରି ଆଗ ଏପରି ଘଉଡ଼ିଲା ଯେ, ସେମାନେ ପଡ଼ି ଉଠି ପଳାଇଲେ, କିନ୍ତୁ ମେଘମାନଙ୍କର ଏ ବିପର୍ଯ୍ୟୟ ଦେଖି ପର୍ଜନ୍ୟ ପଶ୍ଚିମ ଦିଗ-ନ୍ତରେ ନିଜର ସହସ୍ର ମସ୍ତକ ଟେକିଲା ଓ ନିଜର ବଳିଷ୍ଠ ବାହୁମାନଙ୍କରେ ହଡ୍‌ସନ୍ ନଦୀର ଉପତ୍ୟକାରୁ ବର୍ଷାକୁ ଧରି ଆସିଲା । ସେ ବିଦ୍ୟୁତ୍‌ଅସ୍ତ୍ରରେ ସଜ୍ଜିତ ହୋଇ ଆସିଥାଏ ଓ ତାହାର ସହସ୍ର ମସ୍ତକ ଆପଣା ଆପଣା ଭିତରେ ଗୁଡ଼ୁ ଗୁଡ଼ୁ ହୋଇ କଥାବାର୍ତ୍ତା ହେଉଥାନ୍ତି । ବର୍ଷା ହେବାର ଯେଉଁ ଆଇନ୍ ଅଛି ତାହାକୁ ଯଥା ଯଥ ଭାବେ ପାଳନ କରିବାକୁ ହେଲେ, ପିମ୍ପୁଡ଼ିପରି ମନଖୁସିରେ ଭେଳା ଭେଳା ହୋଇ ବାହାରୁଥିବା ଜନତା ଖରାଦିନର ହାଲୁକା ପୋଷାକ ଭୂଷିତ ହୋଇ ବହୁସଂଖ୍ୟାରେ, ରାଜ-ମାର୍ଗ ଓ ସମୁଦ୍ର କୂଳରେ ଦେଖାଦେବା ପର୍ଯ୍ୟନ୍ତ ବର୍ଷଣ-ମେଘ ବିନ୍ଦୁପାତ ନ କରି ଅପେକ୍ଷା କରି ରହିବା ଉଚିତ ।

ଅନ୍ୟ ଖାଦ୍ୟସାମଗ୍ରୀ ଷ୍ଟୋରଙ୍କ ଭିତରୁ ଅଧିକାଂଶ ନଅଟା ଶରିଣ ପର୍ଯ୍ୟନ୍ତ ଦୁଆର ଫିଟାନ୍ତି ନାହିଁ । ଅଧଘଣ୍ଟାକ ଆଗରୁ ଆମ ଦୁଆର ଫିଟାଇ କିଛି ଅଧିକ ବେପାର ଲୁଟିନେବା ଉଦ୍ଦେଶ୍ୟରେ ମ୍ୟାରୁଲେ ଆମ

ଦୋକାନ ପାଇଁ ଅଲଗା ସମୟକ୍ରମର ବ୍ୟବସ୍ଥା କରନ୍ତି । ମୋ'ର ଇଚ୍ଛା, ମୁଁ ଏ ସମୟକ୍ରମ ବଦଳାଇ ସମସ୍ତଙ୍କ ସଙ୍ଗେ ସମାନ ହୋଇ ଦୋକାନ ଫିଟାଇବ । ଆଗରୁ ଫିଟାଇବା ଦ୍ୱାରା ଯେତେ ଅଧିକ ଲାଭ ହେଉଛି । ତା' ଠାରୁ ଅଧିକ ଅସଦ୍‌ଭାବ ଅନ୍ୟ ଷ୍ଟୋର୍‌ମାନଙ୍କ ମନରେ ସୃଷ୍ଟି ହେଉଛି । ମ୍ୟାରୁଡେଲ୍ ହୁଏତ ଏକଥାଟା ଜାଣି ନାହାନ୍ତି; ଜାଣିଥିଲେ ବି, ଅନ୍ୟମାନଙ୍କର ସଦ୍‌ଭାବ ଅସଦ୍‌ଭାବକୁ ସେ ଖାତିର କରିବା ଲୋକ ନୁହନ୍ତି । ସେ ଜଣେ ବିଦେଶୀ, ଅପରାଧୀ, ସ୍ୱେ ରାଗୁରା,ଦରିଦ୍ରଙ୍କର ଶୋଷକ' ହରେକ୍ ରକମର ବଦମାସ୍ ହାଲହଆରଙ୍କର ଲୋକ । ମୁଁ ତାଙ୍କର ଧ୍ୱଂସ ସାଧନ କରିଥିବାରୁ, ତାଙ୍କର ଦୋଷ ଓ ଅପରାଧ ମୋ ଆଖିରେ ଜଳଜଳ ହୋଇ ମୋ ଆଖିକୁ ଝାପ୍‌ସା କରିଦେବା ସ୍ୱାଭାବିକ କଥା ।

ମୁଁ ଅନୁଭବ କଲି ଯେ ମୋ ପିତାଙ୍କ ଘଡ଼ିର ପୁରୁଣା, ଲମ୍ବା ମିନିଟ୍‌କଣ୍ଟାଟା କଣେଇ କଣେଇ ବାର ଅଙ୍କ ଆଡ଼କୁ ଆଗଉଛି ; ଏ ଭାବନା ମନକୁ ଆସିବା ମାତ୍ରେ ମୁଁ ଦେଖିଲି, ମୋ'ର ହାତର ମାଂସ-ପେଶୀ ଟାଣି ହୋଇ ଯାଇଛି ଓ ମୁଁ ଖୁବ୍ ବେଗରେ ଦାଣ୍ଡଦୁଆର ଝାଡ଼ୁ କରିବାରେ ଲାଗି ଯାଇଛି । ମୋ'ର ପରିକଳ୍ପିତ କାର୍ଯ୍ୟକ୍ରମର ସମାପନ-ମୁହୂର୍ତ୍ତକୁ ମୁଁ ଉଦ୍‌ବେଗରେ ଅପେକ୍ଷା କରି ରହିଥାଏ । ମୋର ନିଃଶ୍ୱାସ ପ୍ରଶ୍ୱାସ ପାଟିବାଟେ ଯା ଆସ କରୁଥାଏ । ମୋର ପେଟ ଆସି ମୋର ଫୁସ୍‌ଫୁସ୍‌ରେ ଆଘାତ କରୁଥାଏ—ମୋର ମନେ ପଡ଼ିଲା, ଶତ୍ରୁକୁ ଆକ୍ରମଣ କରିବାକୁ ଅପେକ୍ଷା କରି ରହିଲା ବେଳେ, ମୋର ଏଇପରି ଶାରୀରିକ ବିକ୍ଷୋଭ ହେଉଥିଲା ।

ଜୁଲାଇ ଚାରି ତାରିଖ-ମୁକ୍ତି ଦିବସ ପୂର୍ବ ଦିନରୁ ଥିଲା ଶନିବାର ସକାଳେ ଯେତେ ଲୋକ ରାସ୍ତାରେ ଦେଖାଯିବାର କଥା, ତା' ତୁଳନାରେ, ଆଜି ଅଳ୍ପ ଲୋକ ଦେଖାଯାଉଥାନ୍ତି । ଜଣେ ଅପରିଚିତ ବୃଦ୍ଧ ଗୋଟାଏ ବନ୍‌ସି ଖାଡ଼ ଓ ସବୁଜ ରଙ୍ଗର ବନ୍‌ସିକଣ୍ଟା ବାକ୍‌ସ ଧରି ସାମନା ରାସ୍ତାରେ ଯିବାର ଦେଖିଲି । ସେ ଯାଉଥାନ୍ତି, ଉପକୂଳରୁ ସମୁଦ୍ର ଭିତରକୁ ପଶି ଯାଉଥିବା ପାହାଚ ଉପରେ ଧ୍ୟାନମଗ୍ନ ବସି, ଗୋଟିଏ ମାଛଟିଏ ବନ୍‌ସିକଣ୍ଟାରେ ଫୋଡ଼ ପାଣିରେ ହଲହଲ କରିବାକୁ । ସେ ଏତେ ତନ୍ମୟ ମନରେ ଯାଉଥାନ୍ତି ଯେ ତାଙ୍କ ଆଖି ଉଠାଇ କାହାକୁ ଚାହୁଁ ନଥାନ୍ତି । ମୁଁ ଡାକି ତାଙ୍କ ଦୃଷ୍ଟି ଜବରଦସ୍ତି ଆକର୍ଷଣ କଲି ।

"ମୋର ଆଶା, ଆପଣ ଆଜ ବଡ଼ ମାଛ କେତୋଟି ଧରିବେ ।"

"କେବେ କଣ୍ଟ ମୁଁ ଧରିନାହିଁ ।"

"ବେଳେ ବେଳେ ଗୁଦ୍ଧମାଛ କୂଳକୁ ଆସନ୍ତି ।"

"ବୃଥା କଥା ; ମୁଁ ବିଶ୍ୱାସ କରେ ନାହିଁ ।"

ଉତ୍କଟ ଆଶାବାଦୀ ; ଅନ୍ତତଃ ତାଙ୍କ ଦୃଷ୍ଟିକୁ ତ ମୋ ବନ୍ସି-କଣ୍ଟାରେ ଟାଣି ପାରିଲି ।

ଫୁଟପାଥ୍‌ରେ ଜେନି ସିଙ୍ଗଲ୍ ଗଡ଼ ଗଡ଼ ଆସିଲେ । ତାଙ୍କ ଷ୍ଟାଇଲ ଦେଖି ବିସ୍ମିତ, ବୋଧହୁଏ ତାଙ୍କ ଗୋଡ଼ରେ ପାଦ ପରିବର୍ତ୍ତେ ଚକ ଲାଗିଛି ! ନିଜ-ବେ'ଟାଉନରେ ଏ ସବୁଠାରୁ କମ୍ ନିର୍ଭର-ଯୋଗ୍ୟ ସାକ୍ଷୀ । ଥରେ ସେ ତାଙ୍କ ଗ୍ୟାସ୍-ଚୁଲାର ଗ୍ୟାସ୍ ଫିଟାଇ ଦେଲେ, କିନ୍ତୁ ଚୁଲି ଜାଳିବାକୁ ଭୁଲିଗଲେ । ତିଆସିଲି କେଉଁଠି ଅଛି ଯଦି ମନେ ପକାଇ ଶେଷରେ ଚୁଲି ଧରାଇ ଦେଇଥାନ୍ତେ, ତେବେ ସେ ଘୁଞ୍ଚିବାଟେ ଗ୍ୟାସ୍ ନିଆଁ ତୋଡ଼ରେ ଉପରକୁ ଉଡ଼ି ଯାଇଥାନ୍ତେ ।

ମୁଁ ଅଭିବାଦନ କଲି, "ସୁପ୍ରଭାତ ମିସ୍ ଜେନି !"

ସେ ଉତ୍ତର ଦେଲେ, "ସୁପ୍ରଭାତ ଡାନି !"

"ମୁଁ ଏଥାନ୍ ।"

"ଆରେ, ସତ ତ । ମୁଁ ଗୋଟାଏ ପିଠା କରିବାକୁ ଖୋଜୁଛି ।"

ତାଙ୍କ ସ୍କୁଟ୍‌ପକେଟରେ ଗୋଟାଏ ଜାର ଫିଟାଇବାକୁ ବସିବାର ମୁଁ ପଚାରିଲି, "କି ପିଠା ।"

"ଆରେ, ଫ୍ୟାନି-ଫାର୍ମର୍-ମାର୍କା ପିଠା କରିବି ବୋଲି ସାମଗ୍ରୀ ଗୋଟାଏ ଡବାରେ ଆଣିଥିଲି । ଡବା ଉପରର ଲେବୁଲଟା ଖସି ପଡ଼ିଛି । ପିଠାସାମଗ୍ରୀ କେଉଁ ଡବାରେ ଅଛି ଆଉ ଜାଣି ପାରୁନାହିଁ ।"

ମୋର ଯଦି ସାକ୍ଷୀ ଦରକାର ହୁଏ, ତେବେ ସେ ତ ମୋ ପାଇଁ ବେଶ୍ ସାକ୍ଷୀ ଦେଇ ପାରିବେ ! ଯାହା ତ କହିବେ କହିବେ, ଏବେ ମୋତେ 'ଡାନି' ବୋଲି ଡାକିଲେ କାହିଁକି ?

ଫୁଟପାଥ୍‌ରେ ପଡ଼ିଥିବା ଗୋଟାଏ ଟିଣପଟ ଘୁଞ୍ଚୁଣୀକୁ ମାନିଲି ନାହିଁ । ଲଇଁ ଦେଢ଼ ନଖ ଅଗରେ ତାକୁ ଉଠାଇବାକୁ ପଡ଼ିଲା । ସହକାରୀ ବ୍ୟାଙ୍କ୍ ମୂଷାଗୁଡ଼ାକ, ବିରାଡ଼ି ବେକର୍‌ଙ୍କ ଅନୁପସ୍ଥିତି ଯୋଗୁଁ ସମସ୍ତଙ୍କୁ

କୁଟ୍‌କୁଟ୍ କରି କାଟୁଥାନ୍ତି । ଏଇମାନେ ମୋ'ର ଦରକାର । ନଅଟା ବାଜିବାକୁ ଆଉ ମୋଟେ ମିନିଟ୍ ଗୋଟାଏ ବାକି ଥାଏ—ସେମାନେ କଫି ହୋଟେଲରୁ ବାହାରି ଷ୍ଟ୍ରୀଟ୍ ମଝିରେ ଉଆଁମାରି ଝପଟି ଆସିଲେ ।

ଧାଅଁ—ଧାଅଁ—ଧାଅଁ ବୋଲି ମୁଁ ଡାକ ଦେଲି । ସେମାନେ ଲାଜରେ ଟିକିଏ ହସି ବ୍ୟାଙ୍କ୍‌ଦୁଆରକୁ ମାଡ଼ିଗଲେ ।

ଏଇ ଠିକ୍ ସମୟ । ମୁଁ ସମସ୍ତ ପରିକଳ୍ପନାଟାକୁ ଏକ ସଙ୍ଗେ ଖଣ୍ଡା କରି ଗୋଳିଆପୋଳିଆ କରିବି ନାହିଁ—ଗୋଟି ଗୋଟି କରି ଗୋଟିକ ପରେ ଗୋଟିଏ ପଦକ୍ଷେପ କରିବାକୁ ହେବ, ଏବଂ ପ୍ରତ୍ୟେକକୁ ତା' ନିଜ ସମୟ ଓ କ୍ରମରେ, ଆଗରୁ ଯେପରି ଅଭ୍ୟାସ କରିଛି ଠିକ୍ ସେହିପରି । ମୁଁ ମୋ ପେଟକୁ ଚଉଡ଼ି ସେ ଯେଉଁ ସ୍ଥାନରେ ରହିବାର କଥା, ସେ ସ୍ଥାନକୁ ତାକୁ ପଠାଇଲି । ଆଗ ଗୁଞ୍ଜୁଣୀଟା ହାରିବଂଧରେ ଏପରି ଆଉଜାଇବାକୁ ହେବ ଯେପରି ସେ ବାହାରକୁ ଦିଶିବ । ମୁଁ ଧୀରେ ଧୀରେ କିନ୍ତୁ ବଳ୍ପର ଖଟାଇ ପାଦ ବଢ଼ାଇଲି ।

ଆଖି-କୋଣରେ ଦେଖିଲି, ଗୋଟାଏ ମଟରଗାଡ଼ି ରାସ୍ତାରେ ଆସୁଛି । ତାହା ମୋତେ ପାର ହୋଇ ଚାଲିଯିବାକୁ ଟିକିଏ ଠିଆ ହୋଇ ରହିଲି ।

"ମିଷ୍ଟର୍ ହ'ଲ !"

ବଦ୍‌ମାସ୍ ଲୋକ ହଠାତ୍ ଧରା ପଡ଼ିଗଲେ ଯେପରି ବୁଲିପଡ଼େ ମୁଁ ସେହିପରି ବୁଲିପଡ଼ିଲି । ଧୂଳି-ଧୂସରିତ ଗାଢ଼ନେଳିରଙ୍ଗର ଗୋଟାଏ ଚେଭ୍ରୋଲେଟ୍ ଗାଡ଼ି ଆସି ଦୋକାନ ସାମନାରେ ଠିଆ ହେଲା । ଭଗବାନ ! ପୂର୍ବ-ପରିଚିତ ସେହି ଯୁବକ ସରକାରୀ ଅଫିସର୍ ମଟରରୁ ବାହାରିଲେ । ମୋ'ର ପଥର-ତିଆରି ଦୃଢ଼ ପ୍ରାସାଦ, ପାଣିରେ ପଡ଼ିଥିବା ଗୁଡ଼ି ପରି ଦୋହଲିଗଲା । ଅବଶ ଭାବେ ଠିଆ ହୋଇ, ସେ ଫୁଟ୍‌ପାଥ୍ ପାର ହୋଇ ମୋ ଆଡ଼କୁ ଆସିବାର ଚାହିଁଥାଏ । ସେ ମୋ ପାଖେ ଆସି ପହଞ୍ଚିବାକୁ ଯୁଗେ ଲାଗିଲା ପରି ଲାଗୁଥାଏ । ବହୁକାଳ ହେଲା ମାଟିରେ ପୋତିହୋଇ ରହିଥିବା ସ୍ଥାପତ୍ୟକୁ ଖୋଳି ବାହାର କଲା ପରେ ସେଥିରେ ବାହାରର ପବନ ବାଜିଲେ ତାହା ଯେପରି ଚୂନା ହୋଇଯାଏ, ସେହିପରି ବହୁକାଳରୁ ପରିକଳ୍ପିତ ମୋ'ର ସର୍ବାଙ୍ଗ-ସୁନ୍ଦର ମାନସିକ

କଳ୍ପନା ଆଗନ୍ତୁକଙ୍କ ହାତଆରେ ଧୂଳ ହୋଇଗଲା । ବସ୍ତୁରଲ, ମୋ'ର ସଙ୍କଳ୍ପ ତ୍ୟାଗ ନ କରି, ପାଇଖାନା-ଘରକୁ ଧାଇଁଯିବ ଓ ସେହିଠାରୁ ମୋର କାର୍ଯ୍ୟସାଧନର କାର୍ଯ୍ୟକ୍ରମ ଗ୍ରହଣ କରିବ । କିନ୍ତୁ ବର୍ତ୍ତମାନ ପରିସ୍ଥିତିରେ ତାହା ଅସଂଭବ । ମର୍ଫିଙ୍କ ଅନୁଶାସନ ବାତିଲ ହୋଇ ନ ପାରେ । କ୍ଷିପ୍ରତର ନ ହେଲେ ବି, ଆଲୋକ ଯେତିକ ବେଗରେ ଗତି କରେ, ମନର ଚିନ୍ତା ଅନ୍ତତଃ ସେତିକ ବେଗରେ ତ ଗତି କରିବ । ମୁଁ କ୍ଷିପ୍ରଗତିରେ ଭାବିବାକୁ ଲଗିଲ । ଏତେ ଦିନ ହେଲା ବୃଟି ବସ୍ତୁରି ମୋ' ପରିକଳ୍ପନାକୁ ଚୂଡ଼ାନ୍ତ କରିଥିଲି ; ତା'ର ଏତେ ଥର ଅଭିନୟ କରିଥିଲି ଯେ ଅନ୍ତିମ କାର୍ଯ୍ୟସାଧନ ସେହି ଅଭିନୟର ପୁନରାବୃତ୍ତି ମାତ୍ର ପରି, ସହଜ ଜଣାଯାଉଥିଲା । ଏଭଳି ଅବସ୍ଥାରେ ପରିକଳ୍ପନାଟା ଏକାବେଳକେ ମନରୁ ପୋଛିଦେବା କଥା ବସ୍ତୁରିଲା ବେଳକୁ ମନରେ ଘୋର ଆଘାତ ଲାଗିଗଲା । କିନ୍ତୁ ଆଉ ଉପାୟ କ'ଣ ? ଅଗତ୍ୟା ପରିକଳ୍ପନାଟିକୁ ମନରୁ ହଟାଇ ଦୂରକୁ ଫୋପାଡ଼ ଦେଲି ; ମୋ ମନର ଆଦରର ସନ୍ତାନର ଏତିକରେ ସମାଧି ହୋଇଗଲା । ଆଲୋକ ପରି କ୍ଷିପ୍ରଗତି ଚିନ୍ତା ମନଭିତରୁ କହିଉଠିଲା, "ଠାକୁରଙ୍କ ଅନୁଗ୍ରହ, ଲୋକଟା ଆଉ ଦଣ୍ଡେ ବିଳମ୍ବ ନ କରି ଯାହା ଏଇ ମୁହୂର୍ତ୍ତରେ ଆସି ପହଞ୍ଚିଲା ! ଆଉ ଟିକଏ ବିଳମ୍ବ କରିଥିଲେ, ଅପରାଧୀର ପରାଭବ ସମ୍ବନ୍ଧୀୟ ଗଳ୍ପରେ, ଲେଖକ ଯେଭଳି ମାରାତ୍ମକ ଦୈବୀ ଦୁର୍ଘଟଣା ଆଣି ଦିଅନ୍ତି, ବାସ୍ତବରେ ସେହିପରି ଗୋଟାଏ ଦୈବୀ ଦୁର୍ଘଟଣା ଘଟିଥାନ୍ତା—ସାଙ୍ଗେ ସାଙ୍ଗେ ମୁଁ ଧରା ପଡ଼ିଯାଇଥାନ୍ତି ।"

ମୁଁ ଏ ସବୁ ବସ୍ତୁରିବା ଭିତରେ ଆଗନ୍ତୁକ ଯୁବକ ଗୋଡ଼ ଘୋଷାରି ଘୋଷାରି ମୋଟେ ଚ୍ଛରି ପାହୁଣ୍ଡ ମାତ୍ର ଆସିଥାନ୍ତି ।

ମୋର ମନର ଅବସ୍ଥା ମୋ' ଚେହେରାରୁ ସେ ଠଉରାଇଲେ ପରା !

"ଆପଣଙ୍କର କ'ଣ ହୋଇଛି, ମିଷ୍ଟର୍ ହ'ଲ ? ଆପଣ ଅସୁସ୍ଥ ଜଣାପଡ଼ୁଛନ୍ତି ।"

"ପେଟର ଗଡ଼ବଡ଼ ।"

"ସେ ତ କାହାକୁ ଅପେକ୍ଷା କରିବାର ନୁହେଁ, ଯାଅ ଯାଅ । ମୁଁ ବସିଛି ।"

ମୁଁ ପାଇଖାନା ଭିତରକୁ ଧାଇଁଗଲି । ଦୁଆର ଭିତରୁ ବନ୍ଦ କରି ଦେଇ, ପାଣି ଛାଡ଼ିବାକୁ ଜଞ୍ଜିର୍ ଟାଣିଦେଲି । ଆଲୁଅ ଜାଳି ନ ଥାଏ । ସେଇ ଅନ୍ଧାରରେ ପାଇଖାନାରେ ବସିଲି । ମୋର ଚହଲି ଯାଇଥିବା ପେଟ ସତରେ ଗୋଳେଇ ହେଲା । ମୁହୂର୍ତ୍ତକରେ ସତରେ ପ୍ରକୃତିର ଡାକ ଆସିଲା ; ପେଟ ସଫା ହୋଇଗଲା ଓ ମୋ' ଛାତିର ଧକ୍ ଧକ୍ ମଧ୍ୟ କମିଗଲା । ମର୍ଫିଙ୍କ ଅନୁଶାସନରେ ଗୋଟିଏ ଉପଧାରା ଯୋଡ଼ି ଦେଲି—ହଠାତ୍ ଦୈବାଦୁର୍ଘଟଣା ଘଟିବାର ଦେଖିଲେ କାର୍ଯ୍ୟକ୍ରମ ହଠାତ୍ ଓଲଟାଇ ଦେବ ।

ପୂର୍ବରେ ଦେଖିଛୁ, ହଠାତ୍ କୌଣସି ବିପଦ ବା ଘଡ଼ସନ୍ଧିବେଳ ଆସି ପହଞ୍ଚିଗଲେ ମୁଁ ନିଜକୁ ନିଜଠାରୁ ଅଲଗା କରି ଦେଇ, ନିଜ ଭିତରୁ ବାହାରି ପଡ଼େ, ଓ ବାହାରେ ରହି, ମୋ ନିଜର ଗତିବିଧି, ଓ ଚିନ୍ତାଧାରାକୁ ବାହାର ଲୋକ ପରି ଲକ୍ଷ୍ୟ କରେ । ମୋ'ର ଏହି ଅନାସକ୍ତ ବହିଃ-ସ୍ୱରୂପକୁ ଆସନ୍ନ ବିପଦର ଧକ୍କା ବାଜେ ନାହିଁ, କି ବିପଦର ଅନୁଭୂତି ସ୍ପର୍ଶ କରେ ନାହିଁ । ସେହିପରି ଅନାସକ୍ତ ଭାବେ ନିଜଠାରୁ ଅଲଗା ହୋଇ ଅନ୍ଧାରରେ ବସି ମୁଁ ଲକ୍ଷ୍ୟ କଲି, ମୋର ଦୋହରା ସ୍ୱରୂପଟା ପୂର୍ଣ୍ଣରୂପ ପାଇଥିବା ପରିକଳ୍ପନାକୁ ଗୁଡ଼େଇ ପୁଡ଼େଇ ବାକ୍ସରେ ରଖି ତାଳ୍ପୁଣି ବନ୍ଦ କଲା ଓ ବାକ୍ସଟାକୁ ଅଣଆଡ଼ଆ କରି ଖାଲି ଚକ୍ଷୁ ଅନ୍ତରାଳରେ ରଖିଲା ନୁହେଁ, ମନରୁ ବି ପୂରା ନିର୍ବାସିତ କରିଦେଲା । ସରଳ କଥାରେ କହୁଛି, ପାଇଖାନାରୁ ଉଠି, ଶୌଚ ସାରି, ପ୍ୟାଣ୍ଟ୍ ଟେକି, ପୋଷାକ ପିନ୍ଧି, ପ୍ୟାଣ୍ଟ କୋଟ୍‌କୁ ଟେନଚ୍ଛେନ କରି ପାଇଖାନା ଦୁଆରର କଡ଼ାରେ ହାତ ଦେଲା ବେଳକୁ, ମୁଁ ମୋର ସ୍ୱାଭାବିକ ରୂପ ଓ ମନୋବୃତ୍ତି ଫେରି ପାଇସାରିଥାଏ । କ'ଣ ହୋଇ ପାଇଖାନାରେ ପଶିଥିଲି, କିନ୍ତୁ ବାହାରକୁ ବାହାରିଲା ବେଳକୁ ମୁଁ ପୂରା ବସ୍ତୁର ଖାଦ୍ୟସାମଗ୍ରୀ ଦୋକାନର ଗୁମାସ୍ତା, ଫର୍ଦ୍ଦିବନର ଜଞ୍ଜାଳ ପାଇଁ ପ୍ରସ୍ତୁତ । ମୁଁ ପେଟର କଥାକୁ ଲୁଚାଇ ରଖି ବାହାରେ କପଟ ରୂପ ଦେଖାଉ ନ ଥାଏ । ବାସ୍ତବରେ ମୋର 'ନୂଆ କଳେବର' ହୋଇ-ଥାଏ—ପେଟ ସଫା ହେବା ସାଙ୍ଗେ ସାଙ୍ଗେ ମନ ବି ଉଶ୍ୱାସ ହୋଇ-ଯାଇଥାଏ । କେବଳ ମନରେ ଏତିକିମାତ୍ର ସଂଶୟ ଥାଏ—ଆଗନ୍ତୁକ

ଯୁବକ ଆସିଛି କି ଉଦ୍ଦେଶ୍ୟରେ ? ଏ ସଂଶୟ ବି ସେପରି ବିଶେଷ କିଛି ନୁହେଁ, ସାଧାରଣତଃ ପୁଲିସବାଲାଙ୍କୁ ଦେଖିଲେ ଛାତି ଯାହା ଟିକିଏ ଦୁରୁଦୁରୁ ହୁଏ, ସେତିକି ମାତ୍ର ।

ତାଙ୍କ ପାଖକୁ ଆସି ମୁଁ କହିଲି, "ଆପଣଙ୍କୁ ଏତେବେଳ ଅପେକ୍ଷା କରିବାକୁ ପଡ଼ିଲା, ସେଥିପାଇଁ ମୁଁ ଭାରି ଦୁଃଖିତ । କ'ଣ ଖାଇବାରୁ ମୋର ଏ ଅବସ୍ଥା ହେଲା କିଛି ଠଉରେଇ ପାରୁନାହିଁ ।"

ସେ କହିଲେ, "ଗୁରୁଆଡ଼େ ଏଇଭଳି ଆମଶୟ ଘୋଟିଛି । ଗତ ହପ୍ତାରେ ମୋ ସ୍ତ୍ରୀର ଏଇପରି ହୋଇଥିଲା ।"

"ଓହୋ ! ଏ ଆମଶୟ ବନ୍ଧୁକ ଧରି ଆସିଥିଲା ପରି ଲାଗିଲା ; ମୋ'ର ତ ଭୟ ହେଲା ବାଟରେ କ'ଣ ହୋଇଯିବ । ହଉ, ଆପଣଙ୍କର ମୋଠାରେ କ'ଣ କାର୍ଯ୍ୟ କହନ୍ତୁ ।"

ସେ ଟିକିଏ ବିବ୍ରତ ହେଲା ପରି ଲାଗିଲା । ଲାଜ ଲାଜ ହୋଇ ଅନୁନୟ କଲା ପରି କହିଲେ, "ମଣିଷକୁ ବେଳେ ବେଳେ ବଡ଼ ଅଦ୍‌ଭୁତ କାର୍ଯ୍ୟ ସବୁ କରିବାକୁ ପଡ଼େ ।

ମୋର ମନେ ହେଉଥିଲା କହିବାକୁ, "ଖାଲି ଅଦ୍‌ଭୁତ କାହିଁକି, ଖିମ ବୀଭତ୍ସ ସବୁ କାମ କରିବାକୁ ପଡ଼େ ।" ସୌଭାଗ୍ୟର କଥା, ମୁଁ ମନକୁ ବ୍ରେକ ଦେଇ ତୁନି ହୋଇଗଲି ; ସେ ମୋ ମନର କଥା ଛଡ଼ାଇ ନେଇ ତା'କୁ ଅନ୍ୟ ରୂପରେ ପ୍ରକାଶ କଲେ, "ମୁଁ ଯେଉଁ ବୃତ୍ତି ଧରିଛି, ସେଥିରେ ହରେକ୍ ରକମ ଲୋକଙ୍କର ସମ୍ପର୍କରେ ଆସିବାକୁ ପଡ଼େ ।"

ମୁଁ କାରବାର-ଟେବୁଲର ପଛକୁ ଯାଇ ଗୋଡ଼ ମାରି, ନାଇଟ୍-ଟେମ୍ପଲର୍ ହ୍ୟାଟ୍‌ର ଚମଡ଼ା ବାକ୍ସଟା ବନ୍ଦ କରିଦେଲି ଓ ଟେବୁଲ୍ ଉପରେ କହୁଣୀ ଭରା ଦେଇ ତାଙ୍କ ଆଡ଼କୁ ଚାହିଁ ରହିଲି ।

କିମ୍ଭୂତକିମାକାର ପରିସ୍ଥିତି ! ମାତ୍ର ପାଞ୍ଚ ମିନିଟ୍ ପୂର୍ବେ ମୁଁ ନିଜକୁ ଅନ୍ୟମାନଙ୍କ ଆଖିରେ ଦେଖୁଥିଲି । ଦେଖିବାର କଥା । ମୋତେ ଦେଖି ଲୋକଙ୍କର ମୋ ବିଷୟରେ କ'ଣ ଧାରଣା ହେଉଛି, ତାହାହିଁ ଥିଲା ସେତେବେଳେ ମୋ ପକ୍ଷରେ ପ୍ରଧାନ କଥା । ଏ ଲୋକଟି ଫୁଟ୍ ପାଥ୍ ପାରି ହୋଇ ଆସିଲା ବେଳେ ସେ ମୋତେ ଦେଖୁଥିଲେ କଦାକାର, କୃଷ୍ଣକାୟ,

ନିର୍ମମ ଯମଦେବତା ପରି—ଯାଙ୍କୁ ସେତେବେଳେ ଦେଖି ରାକ୍ଷସ ଓ ମୋର ଅନ୍ତକ ବୋଲି ବିଚାରିଥିଲି । କିନ୍ତୁ ମୋର ପରିକଳ୍ପନା ପରିତ୍ୟକ୍ତ ଓ ଲୋକଲୋଚନର ଅନ୍ତରାଳରେ ନିକ୍ଷିପ୍ତ ହେବାପରେ, ସେଇ ଏକା-ଲୋକ ମୋତେ ଏବେ ଅଲଗା ଦିଶୁଛନ୍ତି—ମୋର ସେ ବର୍ତ୍ତମାନ ଶତ୍ରୁ ନୁହନ୍ତି, କି ମିତ୍ର ନୁହନ୍ତି—ତାଙ୍କ ବିଷୟରେ ମୁଁ ବର୍ତ୍ତମାନ ଉଦାସୀନ । ସେ ମୋର ବୟସର ଲୋକ ପରି ଦିଶୁଛନ୍ତି ; କିନ୍ତୁ ତାଙ୍କର ରୂପ ଗୋଟାଏ ସ୍ୱତନ୍ତ୍ର-ଛାଞ୍ଚ, ଗୋଷ୍ଠୀ ବା ସଂପ୍ରଦାୟର ଛାଞ୍ଚରେ ଗଢ଼ି ହୋଇଥିଲା ପରି ଜଣାଯାଉଛି । ମୁହଁ ସରୁ, ମୁଣ୍ଡର ବାଳ ଷ୍ଟୋଟ ଷ୍ଟୋଟ ହୋଇ କଟା ହୋଇ ଉପରକୁ ଠିଆ ହୋଇ ରହିଛି ; ଧଳା ଲିନେନ୍‌ର କାମିଜ ପିନ୍ଧିଛନ୍ତି ; ବେକ ବୋତାମ ଲାଗିଛି ଓ ତା’ ଉପରର ଟାଇଟା ବୋଧହୁଏ ଯାଙ୍କର ସ୍ତ୍ରୀ ଯାଙ୍କ ପାଇଁ ବାଛି ଦେଇଛନ୍ତି ; ନିଃସନ୍ଦେହରେ ଜଣାପଡୁଥାଏ ଯେ ଯାଙ୍କ ସ୍ତ୍ରୀ, ଯେ ବାହାରିଲା ବେଳେ ଟାଇରେ ହାତ ମାରି ସିଧାକରି ସଜାଡ଼ି ଦେଇଛନ୍ତି । ପୋଷାକ ଗାଢ଼ ଧୂସର ରଙ୍ଗର ; ନିଖ ଘରେ କଟା ହୋଇଛି, କିନ୍ତୁ ବେଶ୍ ସନ୍ଦର ସିଲ୍‌ଇ ; ବାଁ ହାତର ଅନାମିକା ଆଙ୍ଗୁଠିରେ ଗୋଟିଏ ପଟାଳିଆ ମୋଟା ବିବାହ-ମୁଦି ଅଛି ; କୋଟର ବାଁ ପଟ ଗୁଣ୍ଡିପାଖରେ ଗୋଟିଏ କ୍ଷୁଦ୍ର ଲମ୍ବା ସ୍ୱର୍ଣ୍ଣ-ଖଣ୍ଡ ଆଡ଼ ବାଗରେ ଅଙ୍କା ହୋଇଛି । ଏହା ତାଙ୍କ କୃତିତ୍ୱ ପାଇଁ ତାଙ୍କୁ ବହୁମାନ ସ୍ୱରୂପ ମିଳିଛି ବୋଧହୁଏ ; କିନ୍ତୁ ଦେଖିଲେ ଜଣାଯାଉଛି, ଏହି ଆଭୂଷଣ ପିନ୍ଧି ଏଠାକୁ ଆସିବାକୁ ଯାଙ୍କର ଇଚ୍ଛା ନ ଥିଲା । ତାଙ୍କ ମୁହଁ ଓ ଗାଢ଼ ନୀଳବର୍ଣ୍ଣ ଆଖି ଦୁଇଟି ଦୃଢ଼ତାର ବ୍ୟଞ୍ଜନା ଦେବାକୁ ଚାଳିତ ହୋଇ-ଥିଲେ ମଧ୍ୟ, ଆଜି ସେଥିରୁ ଦୃଢ଼ତାର ସୂଚନା ନ ମିଳୁଥିବାରୁ ଆଶ୍ଚର୍ଯ୍ୟ ଲାଗୁଥାଏ । ମନେ ହେଉଥାଏ, ସତେ ଯେମିତି ତାଙ୍କ ଦେହରେ ଆଜି ଗୋଟାଏ କମିତି ଜଳା ଫିଟି ଯାଇଛି । ଆଗ ଥର ଆସିଲାବେଳେ ସେ ଫଟ୍‌ଫାଟ୍ କରି ଠକ୍‌ଠାକ୍ ପ୍ରଶ୍ନ ପଚାରୁଥିଲେ ; ଜଣା ପଡୁଥିଲା, ତାଙ୍କ ମୁହଁ ଆଗରେ ତଳକୁ ତଳ ହୋଇ ଟାଣ ଇସ୍ପାତର ଘୂରିକୁଣିଆ ବାଡ଼ ରହିଛି । ଆଜି ସେ ଢଙ୍ଗ ଏକାବେଳକେ ନଦାରଦ୍ ।

ମୁଁ କହିଲି, "ଆପଣ ତ ଯା ଆଗରେ ଥରେ ଆସିଥିଲେ । ଆପଣ କି କାମରେ ଅଛନ୍ତି ?"

"ମୁଁ ବଗ୍ଗର-ବଗ୍ଗଗର ଲୋକ ।"

"ନ୍ୟାସ୍ତ ବଗ୍ଗର କରିବା ଆପଣଙ୍କ କାମ ।"

ସେ ମୁଡ଼ୁକ ମୁଡ଼ୁକ ହସିଲେ । "ହଁ, ଅନ୍ତତଃ ସେଇଆ କରିବାକୁ ମୋର ଆଶା । କିନ୍ତୁ ମୁଁ ସରକାରୀ କାର୍ଯ୍ୟରେ ଆଜ ଆସିନାହିଁ । ମୁଁ ଯେଉଁ କାର୍ଯ୍ୟରେ ଆସିଛି, ତା'କୁ ବଗ୍ଗରବଗ୍ଗତ ପସନ୍ଦ କରିବ କି ନାହିଁ ମୋର ସନ୍ଦେହ । ଯାହାହେଉ ଆଜ ମୁଁ ଛୁଟିରେ ଅଛି ।"

"ମୋ'ଠାରେ କ'ଣ କାମ କହନ୍ତୁ ।"

"କାମଟା ଏକରକମ ଜଟିଳ ବୋଲି କହିବାକୁ ହେବ । ମୋର ବକ୍ତବ୍ୟ ଠିକ୍ କିମିତି ଆରମ୍ଭ କରିବ ଜାଣିପାରୁ ନାହିଁ । ଆଇନ୍ ବହିରୁ ଏ ବିଷୟରେ ସାହାଯ୍ୟ ମିଳିବାର ନୁହେଁ । ହ'ଲ ! ମୁଁ ବାର ବର୍ଷ ଓକିଲି କଲିଣି ; କିନ୍ତୁ ଆଜ ଯେଉଁ କାମରେ ଆସିଛି, ସେପରି କାମ କେବେଁ କରିବାକୁ ପଡ଼ି ନ ଥିଲା ।"

"ହୁଏତ, କାମଟା କ'ଣ ଯଦି ମୋତେ କହନ୍ତେ, ତେବେ ତାହା କିପରି କରିବାକୁ ହେବ ସେ ବିଷୟରେ ମୁଁ କିଛିତ୍ର ସାହାଯ୍ୟ କରିପାରନ୍ତି ।"

ସେ ମୋ ଆଡ଼କୁ ଚାହିଁ ହସିଲେ । "କାମଟା କ'ଣ, କହିବା ତ ଭାରି । ମୁଁ ନିଉୟର୍କରୁ ବାହାରି ତିନିଘଣ୍ଟା ମଟର ହାଙ୍କି ଆସିଛି ; ପୁଣି ଫେରିବାକୁ ତିନିଘଣ୍ଟା ଲାଗିବ ଛୁଟି ଦିନର ଗହଳ ଭିତରେ ।"

"ଖୁବ୍ ଗୁରୁତର କାମ ପରି ଜଣାଯାଉଛି ।"

"ହଁ, ଖୁବ୍ ଗୁରୁତର ।"

"ମୋ'ର ମନେ ପଡ଼ୁଛି ଆପଣଙ୍କ ନାମ ଓ୍ୱାଲ୍ଡର୍ ବୋଲି କହିଥିଲେ ।"

"ହଁ, ଗର୍ଡ୍ରନ୍ ଓ୍ୱାଲ୍ଡର୍ ।"

"ମିଷ୍ଟର୍ ଓ୍ୱାଲ୍ଡର୍ ! ଆଜ ଟିକିଏ ଭିତରେ ଗଗ୍ରାଖ ଆସି ମୋତେ ମାଡ଼ିବସିବେ । ଏତେବେଳ ଯାଏଁ କାହିଁକି ଆସି ପହଞ୍ଚି ନାହାନ୍ତି, ଆଶ୍ଚର୍ଯ୍ୟ ଲାଗୁଛି । ମୋ'ର ପରା ମାଂସଚପ୍ ବେପାର ! ଆପଣଙ୍କ କଥା ଆରମ୍ଭ କରନ୍ତୁ । ମୁଁ କ'ଣ କୌଣସି ଅଡ଼ୁଆରେ ପଡ଼ିଛି ?"

"ମୋ ବୃତ୍ତିରେ ମୁଁ ହରେକ୍ ରକମ ମଣିଷଙ୍କ ସଂପର୍କରେ ଆସେ । ବଦ୍‌ମାସ୍, ମିଥ୍ୟାବାଦୀ, ଠକ, ଧପ୍‌ପାବାଜ୍, ମୂର୍ଖ ଓ ଚଲାକ୍ ସବୁ କିସମର ଲୋକ । ସାଧାରଣତଃ ସେମାନଙ୍କ ଉପରେ ମନ ଚିଡ଼ ଉଠେ ; କୌଣସି ମତେ ଧୈର୍ଯ୍ୟ ଧରି ସେମାନଙ୍କ ସଙ୍ଗେ ଥିବା କାମ ତୁଟାଇ ଦେବାକୁ ହୁଏ ! ବୁଝିଲେ ନା ?"

"ନା, ଠିକ୍ ବୁଝି ପାରୁଛି ବୋଲି ମନେ ହେଉନାହିଁ । ଶୁଣନ୍ତୁ, ଓ୍ୱାଲ୍‌ଡର୍ ! କାହିଁକି ଯେ ଆପଣ ଏତେ ବିବ୍ରତ ହେଉଛନ୍ତି ମୁଁ ଜାଣିପାରୁ ନାହିଁ । ମୁଁ ପୁରା ବୁଡ଼୍‌ବକ୍ ନୁହେ । ମୁଁ ବ୍ୟାଙ୍କ୍‌ର ମିଷ୍ଟର୍ ବେକର୍‌ଙ୍କ ସଙ୍ଗେ କଥା ହୋଇଛି । ଆପଣ ମୋ ମାଲିକ ମିଷ୍ଟର୍ ମ୍ୟାରୁଲେଙ୍କ ପିଛା ଧରିଛନ୍ତି ।"

ସେ ମୃଦୁସ୍ୱରରେ କହିଲେ, "ତାଙ୍କୁ ଧରି ସାରିଲିଣି ।"

"କେଉଁ ଅପରାଧରେ ?"

"ବେଆଇନ୍‌ରେ ଏ ଦେଶରେ ପ୍ରବେଶ କରିବା ଅପରାଧ । ମୁଁ ମୋ ମନଇଚ୍ଛାରେ ତାଙ୍କ ପିଛା ଧରି ନଥିଲି । ମୋର ଓପରବାଲା ମୋ' ଆଡ଼କୁ ଗୋଟାଏ ଫାଇଲ୍ ଫୋପାଡ଼ି ଦେଲେ । ମୋତେ ତଦନୁସାରେ କାର୍ଯ୍ୟକରିବାକୁ ହେଲା । ମୁଁ ତାଙ୍କର ବିଚାର କରିବ ନାହିଁ, କି ଦଣ୍ଡ ଦେବ ନାହିଁ ।"

"ତାହାଙ୍କୁ ତାହାହେଲେ କ'ଣ ନିର୍ବାସିତ କରିବେ ?"

"ହଁ ।"

"ତା'ଙ୍କର କ'ଣ ମକଦ୍ଦମା ଲଢ଼ିବାକୁ କିଛି ବାଟ ନାହିଁ । ମୁଁ ତାଙ୍କୁ କିଛି ସାହାଯ୍ୟ କରିପାରିବ ?"

"ନା, ମକଦ୍ଦମା ଲଢ଼ିବାକୁ ସେ ଚାହାଁନ୍ତି ନାହିଁ । ସେ ଦୋଷ ସ୍ୱୀକାର କରୁଛନ୍ତି । ନିଜ ଦେଶକୁ ଫେରିବାକୁ ତା'ଙ୍କର ମନ ।'

"ଓଃ, ବଡ଼ ଦୁଃଖର ବିଷୟ । ମୋର ଦୁର୍ଦ୍ଦଶା ବେଳ ଆସିଲା ।"

ଏକାଥରକେ ଛଅ କି ଆଠଜଣ ଗରାଖ ପଶି ଆସିଲେ । ମିଷ୍ଟର୍ ଓ୍ୱାଲ୍‌ଡର୍‌ଙ୍କୁ ଡାକି କହିଲି, "ମୁଁ ଆପଣଙ୍କୁ ଆଗରୁ ସତର୍କ କରିଥିଲି ।" ଗରାଖମାନଙ୍କର ଯାହା ଦରକାର, ଅର୍ଥାତ୍ ଯାହା ଦରକାର ବୋଲି

ମୋ'ର ମନେ ହେଲା ସେ ସବୁ ବାଛିବାରେ ମୁଁ ସେମାନଙ୍କୁ ସାହାଯ୍ୟ କଲି । ସୌଭାଗ୍ୟକୁ ମୁଁ ଗୁଣ୍ଡାଏ ମାଂସ ଚପ୍ ଓ କମା-ମାଂସ-ପୁର ଦିଆ ହୋଇଥିବା ସିଂଗଡ଼ା ଆଗରୁ ମଗାଇ ରଖିଥିଲି ।"

ଓ୍ୱାଲ୍ଡର୍ ମୋତେ ପାଟିକରି ପଚାରିଲେ, "ପିକାଲିଲି ବୋଇଲେ କ'ଣ ?"

"ଉପର ଲେବଲ୍‌ରେ ଲେଖା ଅଛି, ଦେଖନ୍ତୁ ।"

ସେ ପିକାଲିଲି ପଥ୍ୟାକେଟ୍ ଦେଖି କହିଲେ,"ଟଙ୍କାଏ ପଞ୍ଚାନବେ ପଇସା, ମା !"

ଏଇ ସମୟରେ ସେ କାମରେ ଲାଗି,ଜିନିଷ୍ ଓଜନ କରିବା,ବ୍ୟାଗ୍‌ରେ ପୂରାଇବା ଓ ଦାମ ହିସାବ କରିବାରେ ଲାଗିଗଲେ । ସେ ମୋ ସାମନାକୁ ଯାଇ ପଇସା ବାକ୍ସ୍ ଉପରେ ଟଙ୍କା ବଜାଇ ବାକ୍ସରେ ପକାଉଥାନ୍ତି । ସେ ମୋ'ଠାରୁ ଟିକଏ ଦୂରେଇ ଯିବାରେ, ମୁଁ ବ୍ୟାଗ୍ ଗଦାରୁ ଗୋଟାଏ ବ୍ୟାଗ୍ ଆଣି, କ୍ୟାସ୍ ବାକ୍ସର ତଳ ଖୋପ ମେଲାଇ, ସେଥିରୁ ପିସ୍ତଲ ଆଣି ବ୍ୟାଗ୍‌ରେ ପୂରାଇଲି ଏବଂ ପାଇଖାନାଘରକୁ ଯାଇ ପିସ୍ତଲଟା, ତେଲ ଟିଣରେ ପକାଇ ଦେଲି । ତେଲ ଟିଣ ତ ତା'ର ଅପେକ୍ଷାରେ ରହିଥିଲା ।

ପାଇଖାନାଘରୁ ଫେରି ଆସି ମୁଁ ତାଙ୍କୁ କହିଲି,"ଆପଣ ତ ଏକାମ ବେଶ୍ କରୁଛନ୍ତି !"

"ମୁଁ ସ୍କୁଲରୁ ବାହାରିବା ପରେ, ଗ୍ରାଣ୍ଡ ୟୁନିଅନ୍ ଷ୍ଟୋରରେ କିଛି ଦିନ ଏଇ କାମ କରିଥିଲି ।"

"ପୂର୍ବରୁ ଅଭ୍ୟସ୍ତ ଥିଲି ପରି ଜଣା ପଡ଼ୁଛି ପରା ।"

"ତୁମକୁ ସାହାଯ୍ୟ କରିବାକୁ ଆଉ କେହି ନାହାଁନ୍ତି ।"

"ହିସ୍ଟରିଛି ମୋ ପିଲାକୁ ଆଣିବ ।"

ଗରାଖମାନେ ଜଣକ ପରେ ଜଣେ ଟିକଏ ଟିକଏ ଗୁଡ଼ା, ନ ଆସି ଏକାଥରକେ ଭେଳା ବାନ୍ଧି ଆସନ୍ତି । ଗୋଟାଏ ଭେଳା ଯିବା ପରେ ଆଉ ଗୋଟିଏ ଭେଳା ଆସିବା ପୂର୍ବରୁ, ମଝିରେ ଯେଉଁ ସମୟ ଟିକକ ମିଳେ ସେଇଥିରେ, ଗୁମାସ୍ତା ଆଗାମୀ ଭେଳା ପାଇଁ ପ୍ରସ୍ତୁତ ରହେ । ଆଉ ଗୋଟିଏ କଥା, ଦୁ' ଜଣ ଲୋକ ଏକା କାମରେ ଲାଗିଲେ ସେମାନଙ୍କ

ଭିତରେ ଐକ୍ୟ ଆସିଯାଏ, ଓ ମାନସିକ ବୃତ୍ତିର ପାର୍ଥକ୍ୟର ଦାଢ଼ିମଣ୍ଟ ମୂଳଏମ୍ ହୋଇଯାଏ । ସୈନ୍ୟବିଭାଗର କର୍ତ୍ତାମାନେ ଆବିଷ୍କାର କରିଥିଲେ ଯେ ଶ୍ୱେତାଙ୍ଗ ଓ ନିଗ୍ରୋମାନେ, ସାଧାରଣ ଶତ୍ରୁ ତୃତୀୟ ପକ୍ଷ ବିରୁଦ୍ଧରେ ଏକାଠି ଯୁଦ୍ଧ କରିବାକୁ ସୁଯୋଗ ପାଇବାରୁ, ତାଙ୍କ ନିଜ ଭିତରେ ଦ୍ୱନ୍ଦ୍ୱ ଦୂର ହୋଇଯାଇଥିଲା । ମୋ ଅନ୍ତରଭିତରେ ପୁଲସ୍‌ବାଲାଙ୍କ ପ୍ରତି ଯେଉଁ ସ୍ୱାଭାବିକ ଭୟ ଥିଲା, ତାହା ଓ୍ୱାଲ୍‌ଡର୍ ପାଇଁ ବ୍ରେଣ୍ଟ ନିଳାମ ବାଇଗଣ ଓଜନ କରିବାର, ଓ ଗୋଟାଏ ବ୍ୟାଗ୍ ଉପରେ ଦ୍ରୁତ ଧାଡ଼ିଏ ଅଙ୍କ ଲେଖି ମିଶାଇବାର ଦେଖି ଏକାବେଳକେ ଦୂର ହୋଇଗଲା ।

ଆମ ଦୁହିଁଙ୍କର ସଂପର୍କର ଉପକ୍ରମଣିକା ଅଧ୍ୟାୟ ସନ୍ତୋଷଜନକ ରୂପେ ସରିଲା ।

ମୁଁ କହିଲି, "ଆପଣଙ୍କର କ'ଣ ଦରକାର ମୋତେ କହିବାରେ ଆଉ ବିଳମ୍ବ କରନ୍ତୁ ନାହିଁ । ମୋର ଉତ୍କଣ୍ଠା ହେଉଛି ।"

"ମୁଁ ଏଠାକୁ ଆସିବି ବୋଲି ମ୍ୟାରୁଲେଙ୍କୁ ପ୍ରତିଶ୍ରୁତି ଦେଇଥିଲି । ସେ ଏ ଷ୍ଟୋର୍‌ଟା ଆପଣଙ୍କୁ ଦାନ ଦେବାକୁ ଚାହାନ୍ତି ।"

"ଆସନ୍ତୁ, ଆସନ୍ତୁ, ମହୋଦୟା ! କ୍ଷମା କରିବେ, ମୁଁ ଆପଣଙ୍କୁ ନୁହେଁ, ମୋ ବନ୍ଧୁଙ୍କୁ ଏକଥା କହୁଥିଲି ।"

"ଓଃ, ବୁଝିଲି; ଠିକ୍ । ଆଚ୍ଛା, ଶୁଣନ୍ତୁ, ଆମେ ହେଉଛୁ ପାଞ୍ଚଜଣ—ତା' ଭିତରେ ତିନିଜଣ ପିଲା । ଆମର ଭଲା କେତୋଟା ଫ୍ରାଙ୍କ୍‌ଫର୍ଟର୍ ଦରକାର ହେବ, କହିଲେ ।"

"ପ୍ରତ୍ୟେକ ପିଲାଙ୍କ ପାଇଁ ପାଞ୍ଚ ପାଞ୍ଚଟା; ଆପଣଙ୍କ ସ୍ୱାମୀଙ୍କ ପାଇଁ ତିନିଟା ଓ ଆପଣଙ୍କ ପାଇଁ ଦୁଇଟା—ମୋଟରେ କୋଡ଼ିଏ ।"

"ପିଲା କ'ଣ ପାଞ୍ଚ ପାଞ୍ଚଟା ଖାଇ ପାରିବେ ?"

"କିନ୍ତୁ ଖାଇ ପାରିବେ ବୋଲି ତ କହିବେ । କ'ଣ ବଣଭୋଜନରେ ଯାଉଛନ୍ତି ?"

"ହିଁ—ଉଁ ।"

"ତେବେ ନିଆଁରେ ପକାଇବାକୁ ଅଧିକା ପାଞ୍ଚଟା ନେଇଥାନ୍ତୁ ।"

"ଆଚ୍ଛା, ଗାଧୁଆ କୁଣ୍ଡ ପାଇଁ ଗୋଲେଇ ଟୋପି କେଉଁଠି ଅଛି ?"

"ହେଇଟି ପଛପଟେ, କୁଣ୍ଡ ସଫା କରିବା ବ୍ରସ୍ ଓ ଆମେମାନିଆ ପାଖରେ ।"

ଏହିପରି ଥରକୁ ଥର ଗ୍ରାହକମାନଙ୍କ ଯୋଗୁଁ କଥାର ସୂତ୍ର ଛିଣ୍ଡି ଯାଉଥାଏ ।

ମଝିରେ ଗ୍ରାହକଙ୍କ କଥା ଓ ତାଙ୍କୁ ଦେବା ଉତ୍ତରକୁ ବାଦ୍ ଦେଇ ଆମ ଦୁହିଙ୍କ ଭିତରେ ଯେଉଁ କଥାବାର୍ତ୍ତା ହେଲା ତା'କୁ ଅଲଗା ସଙ୍କଳିତ କଲେ ଏତିକିମାତ୍ର ବାହାରିଲା :—

“ମୋ'ର ବିଶ୍ୱାସ, ମୋର ଟିକିଏ ଚିତ୍ତ-ଚାଞ୍ଚଲ୍ୟ ହୋଇଛି । ବିଶେଷ କରି ଠକଙ୍କ ସଙ୍ଗେ ମୋର କାରବାର । ଚୋର, ବଦମାସ ଓ ମିଥ୍ୟାବାଦୀଙ୍କ ସଙ୍ଗେ ଅଭ୍ୟସ୍ତ ହୋଇଗଲା ପରେ ହଠାତ୍ ଜଣେ ସାଧୁ ଲୋକର ସମ୍ପର୍କରେ ଆସିଲେ ମଣିଷର ସ୍ନାୟୁବିକ ବିକୃତି ହେବା ସ୍ୱାଭାବିକ ।”

“କି'ଣ କହିଲେ ? ମ୍ୟାରୁଲେ ସାଧୁ ? ମୋ ମାଲିକ କାହାକୁ କିଛି ଦେବାବାଲା ନୁହନ୍ତି । ସେ ତ ଦୃଢ଼ମୁଷ୍ଟି, ସ୍ୱାର୍ଥସର୍ବସ୍ୱ ମର୍କଟ ବିଶେଷ ।”

“ହଁ, ସେ ସାଧୁ ଥିଲେ । କିନ୍ତୁ, ଆମ ବ୍ୟବହାରରେ ସେ ଏପରି ହୋଇ ପଡ଼ିଲେ । ସେ ମୋତେ ତାଙ୍କର ଜୀବନୀ କହିଛନ୍ତି ଓ ମୁଁ ତାଙ୍କୁ ବିଶ୍ୱାସ କରୁଛି । ସେ ଆମେରିକାକୁ ଆସିବା ପୂର୍ବରୁ ସ୍ୱାଧୀନତାର ପ୍ରତିମୂର୍ତ୍ତି ତଳେ ଯାହା ଲେଖା ହୋଇଛି ତାହା ଜାଣିଥିଲେ, ସ୍ୱାଧୀନତା ଘୋଷଣାପତ୍ରକୁ ଆମୂଳ ଚୂଳ ମୁଖସ୍ଥ କରିଥିଲେ ଓ ନାଗରିକ ଅଧିକାର ଖସଡ଼ାର ଅଗ୍ନିମୟ ବାଣୀରେ ସେ ଉଦ୍‌ବୁଦ୍ଧ ହୋଇ ଆମେରିକାକୁ ଆସିଥିଲେ । କିନ୍ତୁ ଆଇନ ଅନୁସାରେ ତାଙ୍କୁ ପ୍ରବେଶାଧିକାର ମିଳିଲା ନାହିଁ । ସେ ଯେ କୌଣସି ମତେ ପଶିଲେ । ଜଣେ ସଦାଶୟ ବ୍ୟକ୍ତି ତାଙ୍କୁ ଏଥିରେ ସାହାଯ୍ୟକଲେ କିନ୍ତୁ ଏହି ସାହାଯ୍ୟର ପ୍ରତିବଦଳରେ ତାଙ୍କଠାରେ ଯାହା ଥିଲା ସବୁ ଲୁଟି ନେଲେ ଓ ସମୁଦ୍ରର ଅଗଭୀର ପ୍ରାନ୍ତରେ ତାଙ୍କୁ ଛାଡ଼ି ଦେଇ ଆତ୍ମ-ଗୋପନ କଲେ । ମ୍ୟାରୁଲେଙ୍କୁ ପାଣି ଭିତରୁ ନିଃସ୍ୱଭାବେ ଉପକୂଳକୁ ଆସିବାକୁ ପଡ଼ିଥିଲା । ଆମେରିକା ଲୋକଙ୍କର ଚଳଣି ଓ ଜୀବନ ଦର୍ଶନ ଜାଣିବାକୁ ତାଙ୍କୁ ଗୁଡ଼ାଏ ଦିନ ଲାଗିଲା । ଯାହାହେଉ ସେ ସାଧ୍ୟସାଧନା କରି ଆମେରିକାନ୍ ଜୀବନଦର୍ଶନ ଆୟତ୍ତ କଲେ । ସେ ବୁଝିଲେ ଯେ, 'ମଣିଷ, ବଞ୍ଚିବାକୁ ହେଲେ ଯେ କୌଣସି ଉପାୟରେ ଧନ ଅର୍ଜନ

କରିବାକୁ ହେବ ।' ଏଇ ହେଉଛି ଆମେରିକାସ୍ ଦର୍ଶନର ମୂଳମନ୍ତ୍ର । ଏ ମୂଳମନ୍ତ୍ର ସବୁବେଳେ ମନେ ରଖିଥିବାକୁ ହେବ । ମ୍ୟାରୁଲେ ନିବ୍ ଛିଣ୍ଡା ନୁହନ୍ତି । ସେ ଏ ମୂଳ-ମନ୍ତ୍ର ବୁଝି ତଦନୁସାରେ କାର୍ଯ୍ୟକାରୀ ହେବାରେ ସଫଳ ହେଲେ ।"

ଗରୀଖମାନଙ୍କ ଅଳ୍ପ ଅର୍ଦ୍ଧଳ ଭିତରେ ଏଇତକ ଆଦାୟ କଲି । କିନ୍ତୁ ଏ ବିବରଣୀର ନାଟକୀୟ ଉପସଂହାରର ଚରମ ସୀମା ପର୍ଯ୍ୟନ୍ତ ପହଞ୍ଚି ପାରିଲି ନାହିଁ । ସଂକ୍ଷିପ୍ତ ବାକ୍ୟ ଗୋଟିଏ ଗୋଟିଏ ଯୋଡ଼ି ଏଇ ପର୍ଯ୍ୟନ୍ତ ଜାଣିଲି ମାତ୍ର ।

ତା'ପରେ ଟିକଏ ଏକୁଟିଆ ହେବାର ସୁଯୋଗ ମିଳିବାରେ ସେ କହିଲେ, "ତେଣୁ ଶେଷରେ ଜଣେ କିଏ ତାଙ୍କୁ ଧରାଇ ଦେବାରୁ ସେ ଦୁଃଖିତ ନ ହୋଇ ଆମେରିକାସ୍ ଜୀବନ-ଦର୍ଶନରେ ଏପରି କରିବା ସ୍ୱାଭାବିକ ବୋଲି ସାନ୍ତ୍ୱନା ଦେଇଥିଲେ ।"

"ଏଁ, ତାଙ୍କୁ କିଏ ଧରାଇ ଦେଲା ?"

"ନିଶ୍ଚୟ । ଧରାଇ ଦେବା ତ ଭାରି ସହଜ । ନିଜର ପରିଚୟ ନ ଦେଇ ଟେଲିଫୋନ୍‌ରେ ଖବରଟାଏ ଦେଇ ଦେଲେ ହେଲା ।"

"ଏ ବିଶ୍ୱାସ-ଘାତକତା କଲା କିଏ ?"

"କେଜାଣି ? ଆମ ବିଭାଗଟା ତ ଗୋଟାଏ ସ୍ୱୟଂକ୍ରିୟ କଳ-ପରି । କଳକୁ ମୋଡ଼ିଦେଲେ ତ ସ୍ୱୟଂକ୍ରିୟ ଘର-ସଫା କଳ ପରି ଏହା ଯଥାକ୍ରମରେ ସମସ୍ତ କାର୍ଯ୍ୟ ଆପେ ଆପେ କରିଯିବ ।"

"ସେ ଆଇନର କବଳରୁ ଖସି ଯିବାକୁ ଚେଷ୍ଟା ନ କଲେ କାହିଁକି ?"

"ସେ ଆମେରିକାର ସ୍ୱାର୍ଥସର୍ବସ୍ୱ ଶକ୍ତିଗଣ୍ଡ ସଙ୍ଗେ ଲଢ଼ି ଲଢ଼ି କ୍ଳାନ୍ତ ହୋଇ ଗଲେଣି — ହାଡ଼େ ହାଡ଼େ କ୍ଳାନ୍ତ । ତାଙ୍କର ଏସବୁ ପ୍ରତି ଘୃଣା ଓ ବିରାଗ ବି ଆସିଗଲାଣି । ପୁଣି ହାତରେ କିଛି ପଇସା ତ ଅଛି । ନିଜ ଜନ୍ମଭୂମି ସିସିଲିକୁ ଫେରିଯିବା ପାଇଁ ତାଙ୍କର ଏବେ ମନ ।"

"ଏ ସବୁ ଜାଣି ସୁଦ୍ଧା ମୋତେ ସେ ଷ୍ଟୋର୍‌ଟା କାହିଁକି ଦେଉ-ଛନ୍ତି, ଜାଣିଲି ନାହିଁ ।"

"ସେ ମୋର ପ୍ରକୃତିର ଲୋକ । ମୁଁ ଠକଙ୍କ ସଙ୍ଗେ ମୁକାବିଲା

କରି ପାରେ । ତାହା ମୋର କାମ । କିନ୍ତୁ ସାଧୁ ଲୋକ ଦେଖିଲେ ମୋ'ର ଶରୀର ଓ ମନ ଅବଶ ହୋଇଯାଏ ; ମୋର ଶରୀର ତଳ ଛାଡ଼ିଯାଏ ; ମୁଁ ଶୂନ୍ୟରେ ଭାସେ । ତାଙ୍କର ବି ସେଇ ଅବସ୍ଥା ହେଲା । ଗୋଟାଏ ଲୋକ ତାଙ୍କୁ ଠକିବାକୁ ଉଦ୍ୟମ କଲାନାହିଁ, ଠେଲେଇଲା ନାହିଁ, ନିଜର ପେଟ ମୁଣ୍ଡ ଦେଖାଇ ଅନୁଗ୍ରହ ଭିକ୍ଷା କଲା ନାହିଁ , ହିସାବ ଗୋଳମାଳ କରି କିଛି ମାରିନେବାକୁ ଚାହିଲା ନାହିଁ । ସ୍ୱାଧୀନ ଲୋକଙ୍କର ଏ ଦେଶରେ ସେ, ବୋକାଟାକୁ ଶିଖାଇଲେ ନିଜର ସ୍ୱାର୍ଥସାଧନରେ ମନ ଦେବାକୁ । କିନ୍ତୁ ସେ ଚଣ୍ଡାଳ ତାଙ୍କ କଥା ଘେନିଲା ନାହିଁ । ଅନେକ ଦିନ ପର୍ଯ୍ୟନ୍ତ ସେ ଆପଣଙ୍କ ଗତିବିଧି ଦେଖି କ୍ଷୁବ୍ଧ ଓ ବିସ୍ମିତ ହୋଇଥିଲେ । ଆପଣଙ୍କର ପ୍ରକୃତ ଅଭିସନ୍ଧି ଓ କାର୍ଯ୍ୟସାଧନ କୌଶଳ କ'ଣ ଜାଣିବାକୁ ଖୁବ୍ ଉଦ୍ୟମ କଲେ । କିନ୍ତୁ ଶେଷରେ ବୁଝିଲେ , ଆପଣଙ୍କର ଏକମାତ୍ର ଅଭିସନ୍ଧି ଓ କୌଶଳ ଆପଣଙ୍କ ସାଧୁତା ।"

"ମନେ କରନ୍ତୁ, ତାଙ୍କର ଏ ସିଦ୍ଧାନ୍ତ ଭ୍ରାନ୍ତ । ତେବେ ?"

"ତାଙ୍କର ଭ୍ରମ ହେଉନାହିଁ ବୋଲି ସେ ପୂର୍ଣ୍ଣରୂପେ ବିଶ୍ୱାସ କରନ୍ତି । ସେ ଦିନେ ଯେଉଁ ଗୁଣକୁ ଆଦର କରୁଥିଲେ ତାହାର ସ୍ମାରକ-ସ୍ତମ୍ଭ ରୂପେ ସେ ଆପଣଙ୍କୁ ଦୃଢ଼ଭାବେ ପ୍ରତିଷ୍ଠିତ କରି ଯିବାକୁ ଚାହାନ୍ତି । ତାଙ୍କର ଦାନପତ୍ର ମୁଁ ମୋ କାଖରେ ଆଣିଛି; ଏକଥା ସେଇଥିରେ ଅଛି । ଏ ଦଲିଲ୍ ନେଇ ଆପଣ ରେଜିଷ୍ଟ୍ରୀଖାନାରେ ଦାଖଲ କରି ଦେଲେ ହେଲା । ଆଉ ସବୁ କାମ ସରିଛି ।"

"ମୁଁ ଏ କଥାର ଥଳକୂଳ ପାଉନାହିଁ ।"

"ମୁଁ ପାଇଛି କି ନାହିଁ ନିଧାର୍ଯ୍ୟରୂପେ କହି ପାରିବି ନାହିଁ । ତାଙ୍କ କଥା କହିବାର ଢଙ୍ଗ ତ ଆପଣ ଜାଣନ୍ତି । ତାତିଲା ଭଜାଭଜି ହାଣ୍ଡିରେ ମକାମଞ୍ଜି ଲିଆ ଫୁଟିଲା ପରି ସେ ବିଶୃଙ୍ଖଳ ଭାବେ ଏଣୁ ତେଣୁ ପଦେ ପଦେ କହନ୍ତି । ସେ ମୋତେ ଯାହା କହିବାକୁ ଚେଷ୍ଟା କରିଥିଲେ ତାହା ମୁଁ ମୋ ଭାଷାରେ ଆପଣଙ୍କୁ କହୁଛି । ମଣିଷ ଗୋଟାଏ ଆଦର୍ଶ ଧରି, ଗୋଟାଏ ନିର୍ଦ୍ଦିଷ୍ଟ ପଥରେ ଚଳିବାକୁ ସ୍ଥିର କରିଥାଏ । ଘଟଣାଚକ୍ରରେ ସେ ଆଦର୍ଶର ବ୍ୟତିକ୍ରମ ହୋଇ ପଥଭ୍ରଷ୍ଟ ହେବାକୁ ପଡ଼ିଲେ, ତା' ମନରେ ଶେଷରେ ଗୋଟାଏ ପ୍ରତିକ୍ରିୟା ଆସେ; ସେ ଅନୁତପ୍ତ ହୋଇ ଅସ୍ୱସ୍ତି ଭୋଗ

କରେ । ତା’ ପରେ ନିଜ ମନରେ ବିଶୃଙ୍ଖଳା ବସାଇ ସେ ନିଜର ସ୍ଖଳନ ପାଇଁ ନିଜକୁ ଦୋଷୀ ସାବ୍ୟସ୍ତ କରି ଦଣ୍ଡ ଦିଏ । ତାଙ୍କର ସେଷ୍ଟିଫେ ଗହ୍ୱରେ ହୋଇଛି । ସେ ତୁମକୁ ଷ୍ଟୋର୍‌ଟି ଦେଇ ନିଜ କୃତ ପାପର ପ୍ରାୟଶ୍ଚିତ୍ତ କରିଛନ୍ତି । ତାଙ୍କ ମନରେ ନ୍ୟାୟ ଓ ସାଧୁତାର ଯେଉଁ ପ୍ରଦୀପ ଆଗେ ଜଳୁଥିଲା ତାହା ଏକାବେଳକେ ଲିଭି ନ ଯାଇ ତୁମଶରୀରେ ପ୍ରଦୀପ୍ତ ହୋଇ ରହୁ ଏଇ ଉଦ୍ଦେଶ୍ୟରେ ସେ ଏହା କରିଛନ୍ତି ବୋଲି ମୁଁ ବୁଝିଛି ।”

“ଆଚ୍ଛା, ଆପଣ ବା ଏତେ ପରିଶ୍ରମ କରି ଏଠାକୁ ଆସିଛନ୍ତି କାହିଁକି ?”

“ଠିକ୍ କରି କହିପାରିବି ନାହିଁ, କାହିଁକି ଆସିଛି । ହୁଏତ ମୋର ସେଇ ଉଦ୍ଦେଶ୍ୟ—ପ୍ରଦୀପ ନିର୍ବାପିତ ନ ହୋଇ ପୁଣି ଜଳି ଉଠୁ ।”

“ହେ ଭଗବାନ୍ !”

ଜିନିଷ କଣିବାକୁ ଉଚ୍ଛନ୍ନ ହେଉଥିବା ପିଲା ଓ ଓଦା ସୁଡ଼ୁ ବୁଢ଼ୁ ସ୍ତ୍ରୀ ଲୋକଙ୍କ ଗହଳରେ ଷ୍ଟୋର ଆବୃତ ହୋଇଗଲା । ଅନ୍ତତଃ ଦି’ ପହର ଯାଏଁ ନିଶ୍ଚିନ୍ତରେ କଥାବାର୍ତ୍ତା ହେବାକୁ ବା ଏକୁଟିଆରେ କିଛି ଭାବିବାକୁ ଆଉ ବେଳ ହେବନାହିଁ ।

ଓ୍ୱାଲ୍‌ଡର୍ ତାଙ୍କ ଗାଡ଼ିକୁ ଗଲେ ଏବଂ ଫେରିଲା ବେଳେ, ବ୍ୟସ୍ତ-ବ୍ୟସ୍ତ ହେଉଥିବା ଖରିଦ୍ଦାରର ଭିଡ଼ିରେ ଆସିଥିବା ପର୍ଯ୍ୟଟକମାନଙ୍କ ପତ୍ନୀଙ୍କୁ ଆଡ଼େଇ ମୋ ଟେବୁଲ୍ ପାଖକୁ ଅସିଲେ ଓ ମୋଟା କାଗଜରେ ତିଆରି ପେଟୁଆ ପୁଳିନ୍ଦାଟାଏ ଟେବୁଲ ଉପରେ ରଖିଲେ । ତା’ ଗୁରିପଟେ ଖଣ୍ଡେ ଟେପ୍ ଗୁଡ଼ିଆ ହୋଇଥାଏ ।

“ମୋତେ ଏଥର ଯିବାକୁ ପଡ଼ିବ । ସଡ଼କର ଭିଡ଼ଯୋଗୁଁ ଫେରିବାକୁ ଘଣ୍ଟାଘଣ୍ଟା ଯାଏଁ ଲାଗିଯିବ । ମୋ ଘର୍ଣ୍ଣୀ ପାଗଳୀଟାଏ ; କହିଲି, ଏ କାମ ଏତେ ଜରୁରୀ ନୁହେଁ, ପରକୁ ରଖିଲେ ବି ଚଳିବ । କିନ୍ତୁ ସେ ତ ପରକୁ ରଖିବା କାମ ନୁହେଁ ।”

ଏତିକିବେଳେ ଜଣେ ଗରାଖ ଚିତ୍କାର୍ କଲେ, “ମିଷ୍ଟର୍, ମୋ ଅର୍ଡ଼ର୍ ତାମିଲ୍ ହେବା ପାଇଁ ମୁଁ ପୂରା ଦଶ ମିନିଟ୍ ଠିଆ ହେଲିଣି ।”

ମୁଁ ଉତ୍ତର ଦେଲି, "ମହୋଦୟ ! ସାଙ୍ଗେ ସାଙ୍ଗେ ଆପଣଙ୍କ ପାଖକୁ ଯାଉଛି ।"

ଓ୍ୱାଲ୍ଟର କହିଲେ, "ମିଷ୍ଟର ହ'ଲିଙ୍କୁ ଆଉ କ'ଣ ବାର୍ତ୍ତା ଦେବ କି ବୋଲି ମୁଁ ପଚାରନ୍ତେ, ସେ କହିଲେ, 'ତାଙ୍କଠାରୁ ମୁଁ ବିଦାୟ ମାଗୁଛି ବୋଲି ଜଣାଇଦେବେ ।' ଆପଣ ଭଲି ମିଷ୍ଟର୍ ମ୍ୟାରୁଲେଙ୍କୁ କିଛି ବାର୍ତ୍ତା ଦେବେ ?"

ମୁଁ କହିଲି, "ତାଙ୍କୁ ମୋର ବି ବିଦାୟ ସଂବର୍ଦ୍ଧନା ଜଣାଇ-ଦେବେ ।"

ପେଟ ଭର୍ତ୍ତି କରିବାକୁ ଉଦ୍ବେଳ ହକଲ ହୋଉଥିବା ଦଳ ପୁଣି ଜୁଆର ପରି ମାଡ଼ି ଆସିଲେ । ମନର ଶୃଙ୍ଖଳା କାର୍ଯ୍ୟବ୍ୟସ୍ତତା ଯୋଗୁଁ ଲୁଚି ହୋଇ ଯିବାରୁ ମୋର ବି ଭଲ ହେଲା । ମୁଁ ପୁଲିନ୍ଦାଟା ନେଇ କ୍ୟାସ୍ ବାକ୍ସର ତଳ ଉପ୍ପରରେ ପକାଇଦେଲି—ଯା ସଙ୍ଗେ ମୋର ହୃଦୟକୁ ଆସି ଗ୍ରାସକଲା ଗଭୀର ଦୁଃଖ ଓ ରିକ୍ତତା ।

—o—

## —ଷୋଡ଼ଶ ପରିଚ୍ଛେଦ—

ଘଟଣା,କାର୍ଯ୍ୟବ୍ୟସ୍ତତା ଯୋଗୁଁ ଖୁବ୍ ଶୀଘ୍ର ଶୀଘ୍ର ଘଟୁଥିଲେ ହେଁ, ମନର ଅବସ୍ଥା ଯୋଗୁଁ, ଅସରନ୍ତ ପରି ଜଣାଯାଉଥାଏ । ଦୋକାନ ବନ୍ଦ କଲା ବେଳ ସଙ୍ଗେ ଖୋଲିବା ବେଳର କୌଣସି ସଂପର୍କ ରହିଲା ନାହିଁ । ଖୋଲିବା ବେଳଟା ଏତେ ଅଧିକ କାଳ ପୂର୍ବେ ଘଟିଥିବା ପରି ଜଣା ଯାଉଥାଏ ଯେ ତାହା ପରିଷ୍କାର ଭାବେ ମୋର ସ୍ମରଣ ନ ଥିଲା ପରି ମନେ ହେଉଥାଏ । ମୁଁ ସଦର ଦରଜା ଠିକ୍ ବନ୍ଦ କଲାବେଳକୁ ଜସ୍ପି ଆସି ପହଞ୍ଚିଲେ । ତାଙ୍କୁ ନ ପଚାରି, ମୁଁ ଗୋଟାଏ ବଅର୍ ଢାଳା କଣି କରି ତାଙ୍କ ହାତକୁ ବଢ଼ାଇ ଦେଲି ; ତା'ପରେ ମୋ ପାଇଁ ମଧ୍ୟ ଗୋଟାଏ କଣି କଲି । ଆଜଯାଏଁ ଦୋକାନ ଭିତରେ ଏ କାର୍ଯ୍ୟ ମୁଁ ଆଉ କେବେ କରି ନ ଥିଲି । ମ୍ୟାରୁଲେଙ୍କ କଥା ଓ ଷ୍ଟୋର୍ ହସ୍ତାନ୍ତର କରିବା କଥା ତାଙ୍କୁ କହିବାକୁ ଚେଷ୍ଟା କଲି,କିନ୍ତୁ ପାରିଲି ନାହିଁ । ସତ୍ୟ ଘଟଣାକୁ ଚପାଇ ରଖି, ତା'ବଦଳରେ ଯାହା କହିବି ବୋଲି ସ୍ଥିର କରିଥିଲି ତାହା ମଧ୍ୟ କହି ହେଲା ନାହିଁ ।

ଜସ୍ପି ପଚାରିଲେ, "ତୁମେ ଭାରି କ୍ଳାନ୍ତ ଜଣାଯାଉଛ ।"

"ଜଣା ଯାଉଥିବ ବୋଲି ଅନୁଭବ କରୁଛି । ଦେଖ, ସବୁଗୁଡ଼ିକ ଥାକ ଖାଲି ପଡ଼ି ଯାଇଛି । ଯେଉଁ ଜିନିଷ ଲୋଡ଼ା ହେବ ନାହିଁ କି ପ୍ରୟୋଜନ ହେବ ନାହିଁ ବୋଲି ବିଚାରିଥିଲି , ସେଗୁଡ଼ାକ ମଧ୍ୟ ବୋହି ନେଇଗଲେ । ଟଙ୍କା ବାକ୍ସ ଖାଲିକରି ଧଳା କ୍ୟାନ୍‌ଭାସ୍ ବ୍ୟାଗରେ ପୂରାଇଲି । ମିଷ୍ଟର୍ ବେକର୍ ଯେଉଁ ଟଙ୍କା ଆଣି ଦେଇଥିଲେ ତା'କୁ ବି ତା'ର ସାଙ୍ଗେ ପୂରାଇଲି, ଓ ସବା ଉପରେ ରଖିଲି ପେଟୁଆ ପୁଳାଟା । ଉପର ମୁଣ୍ଡକୁ ଟେଣ୍ଡେ ଦଉଡ଼ିରେ ଭଲ କରି ବାନ୍ଧି ଦେଲି ।

"ଯ୍ୱାଙ୍କୁ ଦୋକାନରେ ଛାଡ଼ିଯିବା ଉଚିତ ନୁହେଁ ।"

"ବୋଧହୁଏ ନୁହେଁ । ସାଧାରଣତଃ ମୁଁ ଲୁଗ୍ଭଇ ରଖି ଦେଇ-ଯାଏ । ଆଉ ଗୋଟେ ବଅର୍ ଦରକାର ?"

"ନିଶ୍ଚୟ ।"

"ମୋ'ର ବି ।"

"ତୁମେ ତ ଜଣେ ଭଲ ଶ୍ରୋତା । ମୁଁ ମୋ'ର ନିଜ ଗପଗୁଡ଼ାକ ନିଜେ ବିଶ୍ବାସ କରିବାକୁ ଆରମ୍ଭ କଲିଣି ।" ଜଫ୍ରି କହିଲେ ।

ମୁଁ ପଚାରିଲି, "ଯଥା ?"

"ଯଥା, ମୋର ଭବିଷ୍ୟତ-ଘଟଣା-ବାଲା ସହଜାତ ବୁଦ୍ଧି ଥିବା କଥାକୁ । ଆଜି ସକାଳେ ଏହି ବୁଦ୍ଧିର ଗୋଟାଏ ପରିଚୟ ପାଇଲି । ଆଜି ସକାଳେ ଶେଯରୁ ଉଠୁ ଉଠୁ ମୋର ଏ ବୁଦ୍ଧି ସ୍ଫୁରିଲା । ହୁଏତ ମୁଁ ଏହାକୁ ସ୍ୱପ୍ନରେ ଦେଖିଥିଲି । ସ୍ୱପ୍ନ ହେଲେ କ'ଣ ହେଲା, ଏହା ନିର୍ଘାଟ ଭାବେ ବାସ୍ତବ ପରି ଲାଗିଲା – ମୋ ବେକ ପଛର ବାଳ ଖୁଣ୍ଟେଇ ହେବା ପ୍ରଭୃତି ସମସ୍ତ ଉପସର୍ଗ ବି ଆତ୍ମପ୍ରକାଶ କଲେ । ମୁଁ ଯେ ଖାଲି ବିଚାରିଲି ତାହା ନୁହେଁ, ନିଶ୍ଚିତଭାବେ ଜାଣିଲି ଯେ, ଆଜି ବ୍ୟାଙ୍କ୍-ଲୁଟି ହେବ । ଶେଯରେ ପଡ଼ି ଥାଉ ଥାଉ ବି ଜାଣିଲି । ଭୁଲରେ କୁଦ ପକାଇବୁ ନାହିଁ ବୋଲି ଆମେ ଗୋଡ଼ତଳର ସତର୍କ-ଘଣ୍ଟିମାନଙ୍କ ଉପରେ ଖଣ୍ଡେ ଖଣ୍ଡେ ପଟା ରଖିଥାଉଁ । ଆଜି ବ୍ୟାଙ୍କ୍‌ରେ ପଶିବା ମାତ୍ରେ ସେ ପଟାସବୁ କାଢ଼ି ରଖିଲି । ବ୍ୟାଙ୍କ୍-ଲୁଟି ବିଷୟରେ ମୁଁ ଏତେ ନିଶ୍ଚିତ ଥାଏ ଯେ ଆଗରୁ ସେଥିପାଇଁ ପ୍ରସ୍ତୁତ ହୋଇ ରହିଲି । କିନ୍ତୁ ଦେଖିଲା ବେଳକୁ ସବୁ ଫାଙ୍କା ଆବାଜ୍ । ତଥାପି ମୋର ସ୍ୱାଭାବିକ ବୁଦ୍ଧି ଅଛି ବୋଲି କହିବାକୁ ଆଉ କେମିତି ଜିଭ ଲେଉଟିବ ?"

"ହୁଏତ ଜଣେ କେହି ବ୍ୟାଙ୍କ୍-ଲୁଟି କରିବାକୁ ମନରେ ପାଞ୍ଚି-ଥିଲା । ତୁମେ ତା' ମନ କଥା ଜାଣି ପାରିଲ ପରେ ସେ ନିଜର ପାଞ୍ଚ ପରିତ୍ୟାଗ କରିଥାଇ ପାରେ ।"

"ମଣିଷର ଅନୁମାନ ବୃଥା ହେଲେ, ସମ୍ମାନର ସହିତ ପଛଘୁଞ୍ଚା ଦେବା ପାଇଁ ଭଲ ଯୁକ୍ତିଟାଏ ବାହାର କଲ ।"

"ଆଉ ତୁମେ ତେବେ କ'ଣ କହୁଛ ?"

"ଭଗବାନ୍ ଜାଣନ୍ତି । ମୁଁ, ତୁମ ଦୃଷ୍ଟିରେ, ସବୁଙ୍କ ବୋଲି ଏତେ ଉପରକୁ ଉଠି ଯାଇଛି ଯେ ତୁମେ ଯେଉଁ କାରଣ କହିଲ ତା'କୁ ବିଶ୍ୱାସ କରିବାକୁ ପଡ଼ୁଛି । ଯାହାହେଉ, ଏ ଘଟଣାରେ ମୁଁ ବିଶେଷ ବିଚଳିତ ହୋଇ ଯାଇଛି ବୋଲି ମାନିବାକୁ ହେବ ।"

"ଜାଣିଲ ମର୍ଫ୍, ମୁଁ ଆଜି ଏତେ କ୍ଳାନ୍ତ ହୋଇ ପଡ଼ୁଛି ଯେ ଘରକୁ ଫେରିବାକୁ ବି ବଳ ପାଉନାହିଁ ।"

"ହିଁ, ସେ ଟଙ୍କାଗୁଡ଼ାକ ଏଠାରେ ରଖି ଦେଇ ଯିବନାହିଁ । ଘରକୁ ନେଇଯିବ ।"

"ହଉ, ତୁମେ ଯେତେବେଳେ କହୁଛ, ନେବି ।"

"ବର୍ତ୍ତମାନ ସୁଦ୍ଧା ମୋ ମନରେ ଗୋଟାଏ ଧାରଣା ଅଛି ଯେ କି'ଣ ଗୋଟାଏ ଘଟିବ ।"

ମୁଁ ଚମଡ଼ା ହ୍ୟାଟ୍-ବାକ୍ସଟା ଖୋଲି ପର-ଖଞ୍ଜା ହୋଇ-ଥିବା ମୋ ଟୋପିସହିତ ଟଙ୍କାଗୁଡ଼ାକ ସେଥିରେ ରଖିଲି ଓ ଉପରର ଚମଡ଼ା ଫିତା ଟାଣ କରି କଷିଦେଲି । ଜିପ୍ସି ମୋ'ର ଏକାର୍ଯ୍ୟକୁ ଦେଖୁଦେଖୁ କହିଲେ, "ମୁଁ ଯାଉଛି ନ୍ୟୁୟର୍କ ; ହୋଟେଲରେ ଗୋଟିଏ ପୂରା କୋଠରି ନେବି ଓ ଗୋଡ଼ରୁ ଜୋତା କାଢ଼ି, ସେଇ ଘରେ ନିଶ୍ଚିନ୍ତ ହୋଇ ବସି ପୂରା ଦୁଇଦିନ ଟାଇମସ୍ ସ୍କୋୟାର୍ ପାଖ ଜଳପ୍ରପାତକୁ ଏକଦୃଷ୍ଟିରେ ଚାହିଁ ରହିବ ।"

"ଯେଉଁ ରମଣୀଙ୍କୁ ସାଙ୍ଗ କରିଛ ତାଙ୍କୁ ଧରି ?"

"ନାଁ, ସେ ପ୍ରସ୍ତାବ ବନ୍ଦ କରିଦେଲି । ସେଇ ନ୍ୟୁୟର୍କ୍‌ରେ ବୋତଲେ ହୁଇସ୍କି ଓ ଗୋଟାଏ ମାଇକନିଆ ମଗାଇ ନେବି । କିନ୍ତୁ ସ୍ତ୍ରୀଙ୍କୁ ବା ତା'କୁ ଟିକିଏ ହେଲେ ପାଟିଫିଟାଇବି ନାହିଁ ।"

"ମୁଁ ତ ତୁମକୁ କହୁଛି ।—ହୁଏତ ଆମେ କେଉଁଠିକି ଠାଏ ଛୁଟିରେ ଯିବୁ ।"

"ମୋର ସେଥିକୁ ଶୁଭକାମନା । ତୁମେ ଦିନ ଦୁଇଟା ବୁଲିବୁଲି ଆସିବା ଦରକାର । ବର୍ତ୍ତମାନ ଘରକୁ ବାହାରୁଛ ?"

"ତୁମେ ଆଗ ଯାଅ, ମୋର ଗୋଟାଏ ଯୋଡ଼ାଏ କାମ ବାକି ଅଛି । ସେତକ ସାରି ଯାଉ ଯାଉ ଟିକିଏ ବିଳମ୍ବ ହେବ । ଘରକୁ ଫେରି, ଗୋଡ଼ରୁ ଜୋତା ଫୋପାଡ଼ି ଦେଇ ଆରାମ କରିବ ।"

ମୋର ପ୍ରଥମ କାମ ହେଲା, ମେଘଙ୍କୁ ଟେଲିଫୋନ୍‌ରେ ଡାକ ଫେରିବାକୁ ଟିକିଏ ବିଳମ୍ବ ହେବ ବୋଲି କହିଦେବା ।

ମେଘ ସେଆଡ଼ୁ ଡାକ ଛାଡ଼ିଲେ, "ଶୀଘ୍ର ଆସ, ଖୁବ୍ ଶୀଘ୍ର, ଆସ ଆସ । କହିବାକୁ ଅଛି ବିଶେଷ ଖବର, ବିଶେଷ ଖବର, ବିଶେଷ ଖବର ।"

"ପ୍ରିୟତମେ ! ସାଙ୍ଗେ ସାଙ୍ଗେ ଟେଲିଫୋନ୍‌ରେ ଖବରଟା ଦେଲେ ହୁଅନ୍ତା ନାହିଁ ?"

"ନା, ତମ ମୁହଁକୁ ଚାହିଁ, କହିବି ।"

ତା'ପରେ ମୂଷା-ମୁଖାଟାକୁ ତା' ଫିତାରେ ଓହଳାଇ ଦେଲି ଟଙ୍କା ବାକ୍ସ ଉପରେ ! ସେ ପାଖର ଛୋଟ ଝରକାବାଟେ, ଟଙ୍କାବାକ୍ସର ତାଲାଘର ଯାହା ଦିଶୁଥିଲା, ମୁଖାଟା ଟାଙ୍ଗି ଦେବାରୁ ତାହା ଘୋଡ଼େଇ ହୋଇଗଲା । ଏତକ କରି ସାରି ମୋ କୋଟ୍ ଓ ଟୋପି ପିନ୍ଧି କାରବାଖ ଟେବୁଲ୍ ପାଖେ ବସି ଗୋଡ଼ ତଳକୁ ଲମ୍ବାଇ ଦେଲି । ଗୋଟାଏ କଦଳୀ ଚୋପାରେ ଗୋଡ଼ ଖସି ଯିବାରୁ ମୁଁ ଅଟଣେଇ ହୋଇଗଲି ଓ ଟଙ୍କା-ବାକ୍ସର କୋଣଟା ଉପରେ ମୋ ବାଁ ହାତର ଖଅା ଯାଇ ବାଜିଲା । ବଡ଼ ଝରକାର ପରଦା ଟେକ ହୋଇଥିବାରୁ, ଖରାଦିନର ସଂଧ୍ୟାବେଳଆ ଆଲୁଅ ଝରକାର ଲୁହା-ଜାଲି ଭିତରେ ଛାଣି ହୋଇ ଘର ଭିତରକୁ ଆସୁଥାଏ । ଘର ଭିତରଟିରେ ମୋତେ ଖୁବ୍ ଶାନ୍ତି ମିଳିଲା । ବାହାରର ସୁସୁ ଶବ୍ଦଠାରୁ ଦୂରରେ ବସିଥିଲେ ଯେପରି ସୁଖ ଲାଗେ, ସେଇ ସୁଖ ମୁଁ ଉପଭୋଗ କଲି । ମୋର ଦରକାର ଥିଲା ସେଇଆ । ଟଙ୍କା ବାକ୍-ସରେ ମୋ ପ୍ୟାଣ୍ଟ-ପକେଟ ଚପି ହୋଇ ଗୋଟାଏ ଟେକା ପରି କଣ ମୋ ଦେହରେ ବାଜିବାରୁ, ପକେଟରେ ହାତ ପୂରାଇ ତାକୁ କାଢ଼ିଲି—ମୋର ସେଇ ମନ୍ତ୍ର-ଶିଳାଟା । ତା'କୁ ଦୁଇ ହାତରେ ଧରି ଭଲ କରି ଚାହିଁଲି । ଗତ କାଲି ଏହା ମୋର ଦରକାର ହେବ ବୋଲି ଆଣିଥିଲି, ସିନ୍ଦୁକରେ ଯଥାସ୍ଥାନରେ ନେଇ ରଖିଦେବାକୁ ମନେ ପଡ଼ି ନଥିଲା । ମନେ ନ ପଡ଼ିବାରୁ ଆଜ ତାହା ଦୈବାତ୍ ମୋ ପାଖେ ରହି ଯାଇଛି, ନାଁ ଜାଣି ଜାଣି ତା'କୁ ଆଜ ବି ସାଙ୍ଗରେ ଧରିଥିଲି—ଠିକ କରି କହି ପାରୁନାହିଁ ।

ହାତର ଆଙ୍ଗୁଠି ଏହ ଶିଳା ଭିତରର ରେଖାଗୁଡ଼ିକ ଉପରେ ଚଳାଇବାରେ, ସବୁ ଥର ଯେପରି ହୁଏ ଆଜ ବି ସେହିପରି, ଶିଳାଖଣ୍ଡି ତା'ର ପ୍ରଭାବ ମୋ ଉପରେ ପକାଇଲା । ଦୁଇପହରେ ଏହାର ବର୍ଣ୍ଣ ଗୋଲାପ ପରି ଈଷତ୍ ଲାଲ ହୁଏ । ଅଜ ସଂଧ୍ୟାବେଳକୁ ତାହାର ଲାଲ ରଙ୍ଗ କଡ଼ା ହୋଇ ନାଲି ସଙ୍ଗେ କଳା ମିଶିଲା ପରି ଦିଶୁଛି—ସତେ ଯେପରି ଟିକିଏ ରକ୍ତ ତା' ଭିତରେ ପଶି ଜମିଯାଇଛି ।

ଏ ବେଳରେ ମୋର ଚିନ୍ତା କରିବା ଯେତେ ଦରକାର ନ ଥିଲା, ତହିଁରୁ ଅଧିକ ଦରକାର ଥିଲା ମୋର ମନକୁ ନୂଆ ଛାଞ୍ଚରେ ପୁଣି ସଜାଡ଼ିବା । ମୋତେ ଜଣା ପଡ଼ୁଥାଏ, ମୁଁ ଗୋଟିଏ ବଗିଚ୍ଚ ଭିତରେ ଠିଆ ହୋଇଛି; ବଗିଚ୍ଚରେ ଯେଉଁ ଘର ଖଣ୍ଡିକ ଥିଲା ତା'କୁ ବନ୍ୟା ଭିତରେ କିଏ ନେଇ ଯାଇଛି । ପୁଣି ଆଉ ଖଣ୍ଡିଏ ଘର କରିବା ପର୍ଯ୍ୟନ୍ତ, ମୁଣ୍ଡ ଗୁଞ୍ଜିବାକୁ ଗୋଟାଏ କ'ଣ ଅସ୍ଥାୟୀ ବ୍ୟବସ୍ଥା କରିବାକୁ ହେବ । ମୁଁ ଏତେଦିନ ପରେ ମୋ'ର ଗୁମାସ୍ତା ଜୀବନରୁ ଅବ୍ୟାହତି ନେଇ ପୁଣି ବ୍ୟବସାୟୀ ଜୀବନରେ ପୁନଃପ୍ରବେଶ କଲି । ପୁଣି ନୂଆ ଜୀବନର ନୂଆ ନୂଆ ଢଙ୍ଗ ଓ ଅନୁଭୂତି ଗୋଟି ଗୋଟି ହୋଇ ଆସିବ । ସେ ସବୁକୁ ଗୋଟି ଗୋଟି କରି ଗଣି ଓ ବୁଝି ଚିହ୍ନି କରି ନିଜ ଜୀବନ ଭିତରକୁ ପ୍ରବେଶାଧିକାର ଦେବାକୁ ହେବ । ଦୋକାନର ଥାକମାନଙ୍କ ଉପରେ ବନ ଯାକ ଆକ୍ରମଣ ଚାଲିଥିଲା । କ୍ଷୁଧାର୍ତ୍ତ ଯାଯାବର ଦଳ ମାଡ଼ିଆସି ମୋ ଭକ୍ତମାନଙ୍କ ଦୁର୍ଗ ଠା' ଠା' ଭାଙ୍ଗି ପକାଇଛନ୍ତି । ଦୁର୍ଗର ପ୍ରାଚୀର ଖଣ୍ଡିଆ ଖାବରା ହୋଇ ଯାଇଛି । ଶତ୍ରୁର ତୋପ ମାଡ଼ରେ ଦୁର୍ଗର ପାଚେରି ଯେପରି ଦିଶେ ମୋ ଦୋକାନର ଥାକଗୁଡ଼ାକ ଠିକ୍ ସେହିପରି ଦିଶୁଛନ୍ତି ।

ମୋ ଶ୍ରୋତାମାନଙ୍କ ଆଡ଼କୁ ଚାହିଁ ମୁଁ କହିଲି, "ଆମକୁ ଛାଡ଼ି ଯେଉଁ ବନ୍ଧୁମାନେ ଚାଲି ଯାଇଛନ୍ତି, ଆସ ସେମାନଙ୍କ ପାଇଁ ପ୍ରାର୍ଥନା କରିବା । ଛତ୍ରୁ ଓ ବଳିତ ବାଇଗଣ ରସର ଅପ୍ରଶସ୍ତ ରକ୍ତବର୍ଣ୍ଣର ଧାଡ଼ି ଗୁଡ଼ିକ ଆଉ ନାହିଁ; ସାହସୀ ଆଳୁରମାନେ ଯାଇଛନ୍ତି; ମସଲାମସଲି ଡ଼ବା ଗୁଡ଼ିକ ମଧ୍ୟ; ଭିନେଗାରରେ ବୁଡ଼ି ଆଳୁର ହୋଇଥିବା ଶ୍ରେଷ୍ଠ କଢ଼ିଗୁଡ଼ିକ ମଧ୍ୟ ନାହାନ୍ତି ; ତାଙ୍କୁ ଆଉ ଆମେ ଫେରାଇ ଆଣି ସେମାନଙ୍କ ପୂର୍ବ ସ୍ଥାନରେ ପ୍ରତିଷ୍ଠିତ କରି ପାରିବା ନାହିଁ; ତାଙ୍କ ସେବାରେ ଆତ୍ମୋତ୍ସର୍ଗ କରିବାର

ଅବସର ଆଉ ଆମକୁ ମିଳିବ ନାହିଁ । ଆମେ ଯେଉଁମାନେ ବାକି ରହି ଯାଇଛେଁ, ସେଇମାନଙ୍କୁ ଯେଉଁମାନେ ଭବିଷ୍ୟତ ଗଢ଼ିବାକୁ ହେବ—ଯେଉଁମାନେ ଗଲେ, ସେ ତ ଗଲେ;ତାଙ୍କ ପାଇଁ ଶୋକ କରିବା ନିଷ୍ପ୍ରୟୋଜନ । ଆଲ-ଫିଓ ! ତୁମର ମଙ୍ଗଳ ହେଉ ବୋଲି ମୁଁ କାମନା କରୁଛି; ତୁମର ଶରୀ-ରରେ ଓ ମନରେ ଯେଉଁ ଯନ୍ତ୍ରଣା ହୋଇଛି ତାହା ଈଶ୍ୱରାନୁଗ୍ରହରୁ ଦୂରୀ-ଭୂତ ହେଉ । ତୁମେ ମୋତେ ଏ ଷ୍ଟୋରଟା ଦେଇ ମସ୍ତବଡ଼ ଭୁଲ୍ କରିଛ । ଏତିକି ଆଶା, ଏଇ ଭୁଲ ତୁମର ପୀଡ଼ା ଶାନ୍ତ କରିବା ବିଷୟରେ ପୁଲ୍‌ଟିସ୍ ପରି କାମ ଦେଉ । ତୁମକୁ ମୁଁ ମୋର ସ୍ୱାର୍ଥମେଧ ଯଜ୍ଞରେ ବଳି ଦେଲି, କିନ୍ତୁ ତୁମେ ମୋ ପାଇଁ ନିଜର ସ୍ୱାର୍ଥ ତ୍ୟାଗ କରିଛ ।"

ଷ୍ଟ୍ରୀଟ୍‌ରେ ଯିବା ଆସିବା କରୁଥିବା ଲୋକଙ୍କ ଛାଇ ପଡ଼ି ଷ୍ଟୋର୍ ଭିତରର ଆଲୋକ କମ୍ପିତ ହେଉଥାଏ । ମୁଁ ଆଜି ଦିନ ଭିତରେ ଘଟି ଯାଇଥିବା ଘଟଣାମାନଙ୍କ ଭିତରୁ ଖୋଳିତାଡି ଓ୍ୱାଲଡ୍‌ରଙ୍କ କଥା ଓ ସେ କଥା କହିଲା ବେଳେ ତାଙ୍କ ଚେହେରାର ସ୍ମୃତି ଉଜ୍ଜୀବିତ କଲି । ସେ କହିଥିଲେ, "ଅନୁତପ୍ତ ଲୋକର ମନ ନିଜର ଦୋଷ ସ୍ୱୀକାର କରିବା ପାଇଁ ପୁଲିସ୍ କୋର୍ଟର କାର୍ଯ୍ୟ କରେ । ପ୍ରାୟଶ୍ଚିତ୍ତ ସକାଶେ ସେ ଦଣ୍ଡ ଦିଏ । ମ୍ୟାରୁଲେ ତୁମକୁ ସେ ଦଣ୍ଡ ଦେଇଛନ୍ତି । ତୁମଠାରେ ତାଙ୍କର ପୂର୍ବ ଆଚରିତ ଓ ପରେ ପରିତ୍ୟକ୍ତ ସାଧୁତାର ଆଲୋକ ଜଳି ରହୁ ।" ଓ୍ୱାଲ୍‌ଡ଼ର୍ ଏଇଆ କହିଥିଲେ । ସେ ଠକ ଓ ଜୁଆଖେଳରଙ୍କ ମେଳରେ ନିଜର ବଶିଷ୍ଟ ବ୍ୟକ୍ତିତ୍ୱକୁ ଠିକ୍ ରଖି ପାରିଥିଲେ; ସାଧୁତାର ଗୋଟାଏ ମାତ୍ର ଉଜ୍ଜ୍ୱଳ କିରଣର ରେଖା ତାଙ୍କ ଉପରେ ପଡ଼ିଯିବାରୁ ସେ ହଡ଼-ବଡ଼େଇ ଗଲେ ।

ହଉ ତେବେ, ଆଲୁଅ ଆଉ ଲିଭିବ ନାହିଁ । ଠିକ୍ ଏଇ ଭାଷାରେ ଆଲ୍‌ଫିଓ ଏ କଥାଟା କହିଥିଲେ ତ ? ଓ୍ୱାଲ୍‌ଡ଼ର୍ ସେ କଥା ନିଶ୍ଚିତ ଭାବେ କହି ପାରିଲେ ନାହିଁ; କିନ୍ତୁ ମ୍ୟାରୁଲେଙ୍କ ମନର କଥା ଏଇଆ—ଏ ବିଷୟରେ ଓ୍ୱାଲ୍‌ଡ଼ର୍ ନିଃସନ୍ଦେହ ।

ମୁଁ ମନ୍ତ୍ରଶିଳାର ଭିତରର ସର୍ପିଳ ରେଖାରେ ଆଙ୍ଗୁଠି ଅଗ ଚଳାଇ ଚଳାଇ ତାହାର ମୁଣ୍ଡ ଆଡ଼କୁ ଫେରିଲି – କିନ୍ତୁ ଏ ମୁଣ୍ଡଟା ଶେଷ କି ତ ହୋଇପାରେ ! ଏ ଯେଉଁ ଆଲୁଅ କଥା ମ୍ୟାରୁଲେ କହିଛନ୍ତି, ଏହା କିହୁ

ପୂର୍ବ କାଳର ଆଲୁଅ । ତିନି ହଜାର ବର୍ଷ ପୂର୍ବେ ତାଙ୍କର ପୂର୍ବ ପୁରୁଷ-ମାନେ ବହୁ ବଣ ଜଙ୍ଗଲ ପାର ହୋଇ ପାଲଷ୍ଟାଇନର ଲୁପର୍ କାଲ୍ ଗୁମ୍ଫା ମଧ୍ୟରକୁ ଆସି, ସେଠାରେ ଅଧିଷ୍ଠିତ କିସିଆନ୍ ପ୍ୟାନ୍ ଦେବ-ତାଙ୍କ ପାଖେ ଭୋଗ ଲଗାଇଥିଲେ । ପ୍ୟାନ୍ ଦେବତା ହେଉଁ ଓ ଗଧିଆମାନଙ୍କ ପ୍ରଭୁ । ସେତେବେଳେ ମ୍ୟାରୁଲେଙ୍କ ପୂର୍ବପୁରୁଷ ନିଜର ମେଣ୍ଢାମାନଙ୍କୁ ଗଧିଆଙ୍କଠାରୁ ରକ୍ଷା କରିବା ପାଇଁ ଏ ଭୋଗ ଦେଇ-ଥିଲେ । ଆଜ ତିନି ହଜାର ବର୍ଷ ପରେ ତାଙ୍କର ବଂଶଧର ମ୍ୟାରୁଲେ, ସେଇ ଦେବତାଙ୍କ ପାଖେ ସେଇ ଏକା ଉଦ୍ଦେଶ୍ୟରେ ନିଜର ସ୍ୱାର୍ଥକୁ ଭୋଗ ଲଗାଇଛନ୍ତି । ମୋତେ ମ୍ୟାରୁଲେଙ୍କ ମୁହଁ ଦିଶିଲା । ଗଣ୍ଡିବାତରେ ଯନ୍ତ୍ରଣା ଭୋଗୁଥିବା କାନ୍ଧ ଓ ମାଂସଳ ବେକରୁ ମୁଣ୍ଡ ଟେକି ସେ ମୋ ଆଡ଼କୁ ଚାହିଁଥାନ୍ତି । ତାଙ୍କ ମହଣୀୟ ମସ୍ତକ, ଓ ମାନସିକ ଉତ୍ତେଜନା ଯୋଗୁ ନାଲି ପଡ଼ିଥିବା ଆଖି ଦୁଇଟି ମୁଁ ଦେଖିଲି—ସେଇଥିରୁ ବାହାରି-ବାର ଦେଖିଲି ସେଇ ଆଲୋକ, ଯାହାକୁ ଜୀବିତ କରି ରଖିବାକୁ ସେ ମୋତେ ଭାର ଦେଇ ଯାଇଛନ୍ତି । ମୋତେ ସେ ଯାହା ଦେଲେ ତା'ର ପ୍ରତିଦାନରେ ମୁଁ ଦେବ କ'ଣ ? ତାଙ୍କ ଦାନର ପ୍ରତିଦାନ ସେ ମୋଠାରୁ କେବେ ଲୋଡ଼ିବେ ? ଆଜ ଏଇ ମନ୍ତ୍ରଶିଳାକୁ ନେଇ ଯଦି ମୁଁ ପୁରୁଣା ବନ୍ଦର ପାଖେ ସମୁଦ୍ର ଭିତରକୁ ଫୋପାଡ଼ି ଦିଏ, ତେବେ କ'ଣ ଯଥେଷ୍ଟ ପ୍ରତିଦାନ ହେଲା ବୋଲି ମ୍ୟାରୁଲେ ସନ୍ତୁଷ୍ଟ ହେବେ ?

ମୁଁ ଷ୍ଟୋର୍‌ର ଝରକା ଓ ଦୁଆରର ପରଦା ଟାଣି ଦେଲି ନାହିଁ । ଲମ୍ବା ଛୁଟିରେ ପରଦା ଟେକି କରି ରଖାଯାଏ, ପୁଲିସ୍ ପହରାବାଲା ଘର ଭିତରେ ନଜର ରଖି ପାରିବେ ବୋଲି । ଯିବା ପୂର୍ବରୁ ଭିତରର ସବୁ ଆଲୁଅ ଲିଭାଇ ଦେଇଥିଲି; ଗୋଦାମଘର ପୂରା ଅନ୍ଧାର ଦିଶୁଥାଏ । ଗଳି ଦୁଆରବାଟେ ବାହାରି ଦୁଆର ବନ୍ଦ କରିଦେଲି । ଷ୍ଟ୍ରୀଟ୍‌ର ଅଧା ପାର ହେଲା ପରେ, ମନେ ପଡ଼ିଲା, ମୋ ଟେବୁଲ୍ ପଛପଟେ ହ୍ୟାଟ୍-ବାକ୍ସଟା ଛାଡ଼ି ଆସିଛି । ତା'କୁ ଆଣିବାକୁ ଫେରିଲି ନାହିଁ । ମୁଁ ଯେଉଁ ନ୍ୟାସ ଗ୍ରହଣ କରିଛି ସେଥିରେ ସଂଶୟ କଲା ପରି ଜଣା ପଡ଼ିବ, କିଏ ନେଇ-ଯିବ ବୋଲି ଟଙ୍କା ପାଇଁ ଫେରିଲେ । ସେ ଶନିବାର ସଂଧ୍ୟାରେ ପବନ ଭୀଷଣ ବେଗରେ ସୁ ସୁ କରି ବହିବାକୁ ଆରମ୍ଭ କରିଥାଏ । ତା' ଶବ୍ଦରୁ

ଜଣା ଯାଉଥାଏ ସେ ଦକ୍ଷିଣ-ପଶ୍ଚିମରୁ ମେଘ ଆଣିବା ନିମନ୍ତେ ଖୁବ୍ ବ୍ୟାକୁଳ ହୋଇ ପଡ଼ୁଥାଏ । ମେଘ ଆସି ବର୍ଷା ହେବା ତ ଖୁବ୍ ଦରକାର; ତା’ ନ ହେଲେ, ଛୁଟିରେ ମଉଜ କରିବାକୁ ଯାଉଥିବା ଓ ଆସୁଥିବା ଲୋକେ ଭିଜନ୍ତ ବୁଡ଼ି ସ୍ନାନଯାତ୍ରା ହେବାରୁ ଯେ ବଞ୍ଚିତ ହେବେ ! ବଗ୍ରରଲି ମଙ୍ଗଳବାର ଦିନ ଫେରି ଦୋକାନ ଫିଟାଇଲେ ବସନ୍ତା ପାଇଁ ଟିକେ ଦୁଧ ବାହାର କରି ଥୋଇବ ଓ ମୋ ଦୋକାନରେ ନିତ୍ୟଅତିଥି ହେବାକୁ ତାକୁ ନିମନ୍ତ୍ରଣ କରିବ ।

---

# — ସପ୍ତଦଶ ପରିଚ୍ଛେଦ —

ମଣିଷର ପେଟ ଭିତରର କଥା ତ ଜାଣିବା ସହଜ କଥା ନୁହେଁ । ଅନ୍ୟମାନଙ୍କ ମନରେ କ'ଣ ଅଛି ମୁଁ ଜାଣିବି କପରି ? ତେବେ ମୋର ଅନୁମାନ , ସମସ୍ତ ପାର୍ଥକ୍ୟ ସତ୍ତ୍ୱେ ମଣିଷର ପ୍ରକୃତିରେ କେତେକ ସାମ୍ୟ ଅଛି । ମୋ ନିଜ କଥାରୁ ମୁଁ ଅନ୍ୟମାନଙ୍କ ବିଷୟ ଅନୁମାନ କରୁଛି; ମାତ୍ର ମୋ ନିଜ କଥା ମୁଁ ଭଲ କରି ଜାଣେ । ମୁଁ ଜାଣେ, ଅସୁଖକର ସତ୍ୟ ବାସ୍ତବତାର ସମ୍ମୁଖୀନ ହେଲେ, ମୁଁ ସେଥିରୁ ଖସିବାପାଇଁ ଖୁବ୍ ମୋଡ଼ି-ଭିଡ଼ି ହେବି । ଶେଷରେ ଖସିବାର ବାଟ ନ ପାଇଲେ ତାହାର ସମ୍ମୁଖୀନ ହେବାକୁ ଯଥାସଂଭବ ବିଳମ୍ବ କରିବି; କାରଣ, ଆଶା କରିବି ଯେ, ବିଳମ୍ବ ହେଉ ହେଉ ବାସ୍ତବତାଟା ହୁଏତ ଏକାବେଳକେ ଉଭେଇ ଯିବ । ମୋ'ର କ୍ଲାନ୍ତ ଆପନୋଦିତ ହୋଇ ମୁଁ ଟିକିଏ ଥଣ୍ଡା ପଡ଼ିଲା ପରେ ଏକଥା ବିଚାର କରିବି, ଏହିପରି କଣ ଅନ୍ୟମାନେ ନିଃସଙ୍କୋଚରେ ବାସ୍ତବତାକୁ ଏଡ଼ି ଦେବାକୁ ବସନ୍ତି କି ନାହିଁ ମୁଁ ଜାଣେ ନାହିଁ । କିନ୍ତୁ ମୁଁ ଏହିପରି କରି ବସେ । ଆଗରେ ଶୋଇବା ସମୟ, ସେଥିରୁ ମୁକ୍ତି ପାଇବାର ଉପାୟ ନାହିଁ ବୋଲି ଜାଣି ସୁଦ୍ଧା ପିଲାମାନେ ଶୋଇବା ସମୟ ପାଖେଇ ଗଲେ ଖୁବ୍ ମନ ଧ୍ୟାନ ଦେଇ ଖେଳିବାରେ ଲାଗିଯାନ୍ତି ; ବିଚାରନ୍ତି, ବୋଧହୁଏ ଏହିପରି କଲେ ଶୋଇବା ସମୟଟା ଗଡ଼ିଯିବ । ଠିକ୍ ଏହି ରୀତିରେଆସନ୍ନ ବାସ୍ତବତାକୁ ଏଡ଼ି ଦେବା ପାଇଁ ମୁଁ ତା'ର ଆରପଟେ ଭବିଷ୍ୟତର ସୁନେଲି ଚିତ୍ର କରି ବସେ କିମ୍ବା ଅତୀତକୁ ମୋର ରୁଚି ଅନୁସାରେ କାଟ-ଛାଂଟ କରି ତାକୁ ସ୍ମରଣ କରିବାରେ ସାନ୍ତ୍ୱନା ପାଏ ।

ଘରକୁ ହେଲ୍ ଟେଲ୍ ହୋଇ ଫେରିଲା ବେଳେ ମୋ ଆଗରେ କାସ୍ତବତାର ଯେଉଁ ପ୍ରାନ୍ତର ପଡ଼ିଲା ତା ଭିତରେ ଯାକ ବିସ୍ଫୋରକ ବୋମା ମାଟିତଳେ ଲୁଚାଇ ରଖା ହୋଇଥାଏ ; ଗୋଡ଼ ପଡ଼ିଲା ତ ଫୁଟିବ ।

ସେଥିରୁ ରକ୍ଷା ପାଇବା ପାଇଁ ଭବିଷ୍ୟତ ଆଡ଼େ ବାଟ ଭାଙ୍ଗିଲି ; କିନ୍ତୁ ଭବିଷ୍ୟତରେ ସର୍ପାସୁରଙ୍କ ଦାନ୍ତ ପୋତା ହୋଇଛି; ସେ ଦାନ୍ତରେ ଉତ୍ପାଦିକା ଶକ୍ତି ରହିଛି , ପ୍ରତି ଦାନ୍ତରୁ ଗୋଟିଏ ଗୋଟିଏ ସର୍ପାସୁର ଆଙ୍କୁରି ଉଠିବେ । ସେ ବାଟ ଛାଡ଼ି, ଅତୀତର ବାଟକୁ ଫେରି ଆଶ୍ରା ପାଇବାକୁ ବିଚାରିବା ସ୍ୱାଭାବିକ । ମୁଁ ଆଖିତର ବାଟ ଧରିଲି । କିନ୍ତୁ ସେ ବି ଅଗମ୍ୟ । ବାଟ ମଝିଟାରେ ବାଟକୁ ପୁରା ଆବୋରି ଠିଆ ହୋଇଛନ୍ତି, ଜେଜେନାମା ଡେବୋରା । ତାଙ୍କର ଗୋଟାଏ ଡେଣା ମେଲା ହୋଇ ପଂଝାଏ ମିଥ୍ୟାଙ୍କୁ ଲୁଚି ଦେବାକୁ ବସିଛି । ତାଙ୍କ ଆଖିରୁ କ୍ଷୀକ୍ଷ୍ଣ କ୍ଷୀର ପଞ୍ଜ ଗୁଡ଼ାଏ ପ୍ରଶ୍ନବାଚୀ ବାହାରି ପଡ଼ୁଛି ।

ସେ ଆଡ଼ୁ ଆଖି ଫେରାଇ ମୁଁ ରାସ୍ତା କଡ଼ରେ ଥିବା ଅଳଙ୍କାର ଦୋକାନ ଆଡ଼କୁ ଚାହିଁ ରହିଲି ; ହାତଘଡ଼ିର ନାନା କିସମ୍‌ର ପଟି ଓ ନାନା ଢଙ୍ଗର ଚଷମା ଫ୍ରେମ୍ ସବୁ ଦେଖିଲି । ଆଉ ରହିଲେ ଅଭଦ୍ରତା ହେବ, ଲୋକଙ୍କ ମନରେ ସନ୍ଦେହ ଜାଗିବ ବୋଲି ବିଚାରି ଆଗକୁ ଚାଲିଲି । ଖୁବ୍ ପବନ ହେଉଥାଏ, ପବନରେ ଜଳୀୟ ଅଂଶ ବେଶୀ ପରିମାଣରେ ଥିବାର ଅନୁଭୂତ ହେଉଥାଏ । ବିଚାରିଲି, ଏହା ଗୋଟାଏ ଝଡ଼ ତୋଫାନର ପୂର୍ବାଭାସ ।

ବିଗତ ଶତାବ୍ଦୀର ପ୍ରଥମ ଭାଗରେ ଜେଜେନାମା ଡେବୋରାଙ୍କ ପରି ଅନେକ ଲୋକ ଥିଲେ, ଯେଉଁମାନେ ମୂର୍ଖତାର ସମୁଦ୍ର ଭିତରେ ଜ୍ଞାନ ଓ ଜ୍ଞାନପିପାସାର ଦ୍ୱୀପ ପରି ରହିଥିଲେ । ହୁଏତ ତତ୍‌ପୂର୍ବରୁ ଥିବା ମହାମାନବମାନଙ୍କର ଅଂଶ ଲୋପ ହୋଇ ହୋଇ ଯାଉଥିବାରୁ କେତେକ ଲୋକଙ୍କୁ ପୁସ୍ତକ ମାଧ୍ୟମରେ ସେମାନଙ୍କ ସ୍ମୃତି ସଞ୍ଚିତ ରଖିବାକୁ ପଡ଼ୁଥିଲେ । ପାଠପ୍ରତି ଶ୍ର...ାର ଆଉ ଗୋଟିଏ ବି କାରଣ ଥିଲା ବୋଲି ମନେ କରୁଛି । ଜାହାଜ ବନ୍ଦରରେ ଲାଗିବ, ନିଜର ପ୍ରିୟଜନ ଘରକୁ ଫେରିବେ, ଏଥିପାଇଁ ବହୁକାଳ ଅପେକ୍ଷା କରି ବସିବାକୁ ପଡ଼ୁଥିଲା ; ବେଳେବେଳେ ଜାହାଜ ଫେରୁ-ଫେରୁ ତିନିବର୍ଷ ବିତି ଯାଉଥିଲା, କଦବା କେମିତି ଜୀବନ ତମାମ ପ୍ରତୀକ୍ଷାରେ କଟାଇବାକୁ ପଡୁଥିଲା । ଏହି ବିରହ ଯନ୍ତ୍ରଣାର ଔଷଧ ସ୍ୱରୂପ ବହିମାନଙ୍କ ଉପଯୋଗ କରାଯାଉଥିଲା । ଆମ କୋଠା ଉପର ଟୁଙ୍ଗୀରେ ଯେଉଁ ବହିଗୁଡ଼ିକ ଅଛି, ସେମାନେ ବୋଧହୁଏ

ଏଇ ଉଦ୍ଦେଶ୍ୟରେ ଆମ ଘରେ ପ୍ରଥମେ ସ୍ଥାନ ପାଇଥିଲେ । ପଢ଼ି ପଢ଼ି ସେ କେତେକେତେ ଖୁବ୍ ଜ୍ଞାନ ଅର୍ଜନ କରିଥିଲେ । ଖାଲି ସେତିକି ନୁହେଁ । ସେ ଥିଲେ ଜଣେ ସର୍ପାସୁରୁଣୀ ପରି ଦୂର ଓ ଅନାଗତ ଭବିଷ୍ୟତ କଥା ଜାଣିବାରେ ନିପୁଣ । ଯାଦୁବିଦ୍ୟା ବି ତାଙ୍କୁ ଜଣାଥିଲା ବୋଲି ମୋର ବିଶ୍ବାସ । ସେ ଯାଦୁମନ୍ତ୍ରର ପଦମାନ ମୋତେ କହିଛନ୍ତି ; ତାହାର ମର୍ମ ଜାଣିବାକୁ ଚେଷ୍ଟା କରି ମୁଁ ଦେଖିଛି, ସେ ଗୁଡ଼ାକ ଏକାବେଳେ ନିରର୍ଥକ ।

ଅଭିଶାପ ଦେଲା ଭଳି କଠୋର ସ୍ୱରରେ ସେ କହନ୍ତି, "ଅଗଡ଼ବମ୍ ତମ୍ପକଡ଼ ଧାଡ଼ମାଡ଼ କରମଗୁଡ଼ ଘୁଂ" ; ପୁଣି କେତେବେଳେ କହନ୍ତି, "ଖାଡ଼ମାଡ଼ କୁଟୁର୍ କାଡ଼ୁ କଟିର୍ ମିଟିର୍ ସାଁ ।" ଏ ଶବ୍ଦଗୁଡ଼ାକ ଭିତରେ ମନ୍ତ୍ରଶକ୍ତି ନିଶ୍ଚୟ ଥିବ ; ତା' ନ ହେଲେ ଏତେ ଦିନ ପରେ ସେଗୁଡ଼ିକ ମୋ ମନରେ ଅବିକଳ ଥା'ନ୍ତା କିମିତି ?

ଆମ ସହରର ପରିଗୁଳକ ମୋ ପାଖ ଦେଇ ବାଳିକଙ୍କଡ଼ା ପରି ଧଡ଼ପଡ଼ ହୋଇ ଗୃଳିଗଲେ ; ମୁଣ୍ଡ ତଳକୁ ହୋଇଥାଏ । ମୁଁ ଆଗ 'ସୁସଂଧ୍ୟା' ବୋଲି ଅଭିବାଦନ କରନ୍ତେ, ଯାଉ ଯାଉ ସେ ମୋତେ ପ୍ରତି-ଅଭିବାଦନ ଜଣାଇଦେଲେ ମାତ୍ର ।

ସାଇର ଅଧେ ଥାଉ ଥାଉ, ମୋ ଘର, ପୁରାଣ ହ'ଲ-ଭବନର ସ୍ପର୍ଶ ମୋ ଦେହରେ ଲଗିଲା ପରି ମନେ କଲି । କାଲି ରାତିରେ ଏହା ମୋତେ ବିଷାଦର ନାଗଫାଶରେ ପକାଇଥିଲା । ଆଜ କିନ୍ତୁ, ଏ ବଜ୍ର-ଗମ୍ଭୀର ସନ୍ଧ୍ୟାରେ ସେଥିରୁ ଆଶା ଓ ଉତ୍ସାହର ଉଦ୍ଦୀପନା ଫୁଟି ଦିଶୁଥାଏ । ଘରଟା ସ୍ୱଚ୍ଛ ଇନ୍ଦ୍ରମଣି ପରି ପଦାର୍ଥ ; ଦିନର ବିଭିନ୍ନ ପ୍ରକାର ପ୍ରକୃତି ଅନୁସାରେ ତାହା ଭିନ୍ନ ଭିନ୍ନ ରଙ୍ଗ ଧରେ ।

ଆନନ୍ଦମୟୀ ମେଷ୍ଟି ବାଥିକା ଉପରେ ମୋର ପଦଶବ୍ଦ ଶୁଣି ହାରର ପରଦା ଭେଦ କରି ଆଲୁଅ ପରି ବାହାରି ପଡ଼ିଲେ ।

ସେ କହିଲେ, "ତୁମେ କେଉଁଠୁ ଠଉରାଇ ପାରିବ ନାହିଁ ।" ତାଙ୍କ ବାହା ଦୁଇଟା ଆଗକୁ ବିସ୍ତାରିତ ହୋଇଥାଏ, କିନ୍ତୁ ହାତ ଯୋଡ଼ିକ ପଛକୁ ମୋଡ଼ ହୋଇଥାଏ—ସତେ ଯେମିତି ଗୋଟାଏ କ'ଣ ପୋଟାଳି ଧରିଛନ୍ତି ।

ମୋ'ର ତ ଜେଜେନାମାଙ୍କ ମନ୍ତ୍ରପଢ ମନେ ଥାଏ; ମୁଁ କହିଲି, "ଅଗଡ଼ସମ୍ ଚମ୍ପକଡ଼ ଘାଡ଼ ମାଡ଼ ଘଁ ।"

"ଖୁବ୍ ଠଉରେଇଲ ଯେ, ଠିକ୍ ବାଜିଲା ନାହିଁ ।"

"ବୋଧହୁଏ ତୁମର କୌଣସି ଗୁପ୍ତ ପ୍ରଣୟୀ ଆମକୁ ଗୋଟାଏ ପ୍ରାଗ୍-ଐତିହାସିକ ଜନ୍ତୁ ଜୀବିତାବସ୍ଥାରେ ଦେଇଛି ।"

"ଭୁଲ୍; କିନ୍ତୁ ମୁଁ ଯାହା କହିବି ତାହା ସେଇପରି ଅପୂର୍ବ । ତମେ ଗାଧୁଆ ପାଧୁଆ ନ କଲା ପର୍ଯ୍ୟନ୍ତ ସେ କଥା ମୁଁ କହିବି ନାହିଁ । ଶୁଦ୍ଧପୂତ ହେଲେ ଯାଇ ସେଭଳି କଥା ଶୁଣିବାକୁ ହୁଏ ।"

"କିନ୍ତୁ, ବର୍ତ୍ତମାନ ତ ଶୁଣାଯାଉଛି ଗୋଟାଏ ନେଳଗାଣ୍ଡିଆ ମାଙ୍କଡ଼ର ପ୍ରେମ ସଂଗୀତ !" ପ୍ରକୃତରେ ଶୁଣା ଯାଉଥିଲା । ଶବ୍ଦଟା କାନରେ ପିଟି ହେଉଥାଏ ବୈଠକଖାନାରୁ । ସେଇଠାରେ ସ୍ନାଲେନ୍ ବଦ୍ରୋହର ଛେପଖଂକାରରେ ତା' ଅନ୍ତରମ୍ଭାକୁ ପୋଛି ପକାଉଥାଏ ।

କହିବାକୁ ବସିଥିଲି ଯେବେ, ଯାଅ ବୋଲି ତୁମ ପଥ ଧରି
ସେତେବେଳେ ଦୋଷିଥିଲେ ମୋତେ ନିଜ ମନ ପାରୁନାହିଁ ବାରି ।
ଏବେ ତୁମ ସଂଗ ପାଇଁ ପ୍ରିୟ ! ହେଲାଣି ମୋ ହୃଦୟ ଅଧୀର
ଏତେବେଳେ ପୁଣି ଦୋଷ ମୋର, ବାରୁନାହିଁ ସାର କେ ଅସାର ।

"ହେବଦୁଖ ! ମୋର ମନ ହେଉଛି, ଏ ଟୋକାଟାକୁ ପୋଡ଼ି ଦିଅନ୍ତି ।"

"ନାଇଁ, ନାଇଁ ! ମୋ କଥା ଶୁଣିଲେ ମନ ସେମିତି ହେବ ନାହିଁ ।"

"ଗାଧୋଇବା ପୂର୍ବରୁ କହିବ ନାଇଁ ?"

"ନା ।"

ମୁଁ ବୈଠକଖାନା ବାଟେ ଗଲି । ମୋ ପୁଅ ପାନଖଦା ପରି ମୋର ସମ୍ଭାଷଣର ପ୍ରତି-ସମ୍ଭାଷଣ କଲା ।

ମୁଁ ପଚାରିଲି, "କିରେ ! ତୋ'ର ପ୍ରେମପୁଲକିତ କୋମଳ ପ୍ରାଣକୁ ଓଲେଇ ପୋଲେଇ ଗୋଟେଇ କରି ରଖିଲୁଟି ?"

"ହୁଁ ?"

"ହଁ, ମହାଶୟ ! ସେଥର ଶୁଣିଥିଲି, କିଏ ତାକୁ ନେଇ ବରଫ-ପଥରରେ ପିଟି ଦେଇଥିଲା ।"

ଷ୍ଟାଲେନ୍ କହିଲା "ସେଇଟା ଏକ ନମ୍ବର୍ ରେକର୍ଡ଼ ! ସମଗ୍ର ବିଶ୍ବରେ ସର୍ବପ୍ରଥମ । ମୋଟେ ଦୁଇ ହପ୍ତାରେ ୧୦ଲକ୍ଷ ଖଣ୍ଡ ବିକା ହୋଇଛି ।"

"ସାବାସ୍ ! ବଡ଼ ଆନନ୍ଦର କଥା, ଭବିଷ୍ୟତର ଆଶାଭରସା ତୋର ହାତମୁଠାରେ ।" ସିଡ଼ିରେ ଉଠିଲା ବେଳେ ଦ୍ୱିତୀୟ ପଦର ଘୋଷାରେ ପାଳି ଧରିଲି, "ଏବେ ତୁମ ସଙ୍ଗ ପାଇଁ ପ୍ରିୟ ! ହେଲଣି ମୋ ହୃଦୟ ଅଧୀର, ଏତେବେଳେ ପୁଣି ଦୋଷ ମୋର. ବାରୁନାହିଁ ସାର କେ ଅସାର ।"

ଏଲେନ୍ ଝଣ୍ଟେ ବନ୍ଧ ହାତରେ ଧରି ମୋ ପିଛା ଧରିଥାଏ ; ବନ୍ଧ ଭିତରେ ଆଙ୍ଗୁଠି ପୂରାଇ ଚିହ୍ନ ରଖିଥାଏ । ତା' ଶୁଭ ମୋତେ ଜଣା । ମୋ ମନକୁ ପାଇବ ବୋଲି ଆଗେ ବିଚାରୁଥିବା ଗୋଟାଏ ପ୍ରଶ୍ନ ସେ ମୋତେ ପଚାରିଦେବ; ମୁଁ ତାହାର ଉତ୍ତର ଦେବାକୁ ବସିଲା ବେଳେ, ସୂକ୍ଷ କରି, ସେଇ କଥାଟି ଫୋଡ଼ିଦେବ, ଯାହା ମୋତେ କହିବାକୁ ମେଞ୍ଚ ଗୁହିଁ କରି ବସିଥିବେ । କଥାଟା ଆଗରୁ ମୋତେ କହିଦେଲେ, ଗଡ଼ ଜଣିଲା ପରି ତା'କୁ ଲାଗେ । ସେ ଚଗୁଲି କରେ ବୋଲି ମୁଁ କହୁନାହିଁ, କିନ୍ତୁ ତା ଢଙ୍ଗଟା ସେଇମିତି । ମୁଁ ତା'ଆଡ଼କୁ ଦୁଇ ହାତର ଦୁଇଟା ଆଙ୍ଗୁଠି କାଟିଲା ପରି କହିଲି, "କଟି ।"

"କିନ୍ତୁ ବାବା !"

"ନାଇଁ ଲୋ କଇଁ ! ମୁଁ ଆଗରୁ 'କଟି' ବୋଲି କହିଛି । 'କଟି' ଯେ କଟି—ଧଜାଙ୍କ କଟି ।" ମୁଁ ଗାଧୁଆଘରର ଦୁଆର ଧଡ଼ କିନା ବନ୍ଦ କରି ଦେଇ କହିଲି, "ଗାଧୁଆ ଘର ମଣିଷର ଅଭେଦ୍ୟ ଦୁର୍ଗ ।" ସେ ହସିବାର ମୋତେ ଶୁଭିଲା । ପିଲେ ମୋ ପରିହାସରେ ହସିଲେ ମୋତେ ଭଲ ଲାଗେ ନାହିଁ । ମୁଁ ମୁହଁକୁ ଏତେ ଘଷିଲି ଯେ କାଟିଲା ; ଏଡ଼େ ଟାଣରେ ଦାନ୍ତ ମାଜିଲି ଯେ ମାଡ଼ିରୁ ରକ୍ତ ବୋହିଲା । ଖିଅର ହେଲି, ଗୋଟାଏ ସଫା କାମିଜ ଲଗାଇଲି ଓ ଟିଅ ଯେଉଁ ବୋ-ଟାଇକୁ ବିଦ୍ରୋହ ଘୋଷଣାର ସଙ୍କେତ ସ୍ୱରୂପ ନା ପସନ୍ଦ କରେ ତାକୁ ଇ ପିନ୍ଧିଲି ।

ମୁଁ ଯୋଦ୍ଧାକଦେ ଚିଜ୍ଜି ପାରି ମେଞ୍ଚଙ୍କର ମୁହାଁମୁହିଁ ହେଲି କେଳକୁ ସେ ଅଧୈର୍ଯ୍ୟରେ ଫଡ଼ଫଡ଼ ହେଉଛନ୍ତି ।

"ତୁମେ କେବେବି ଏକଥା ବିଶ୍ୱାସ କରିବ ନାହିଁ ।"

"ଖାଉ୍‌ମାଉ୍ କୁଇଁକାଉ୍ କିଚିର୍‌ମିଚିର୍ ସାଁ । କ'ଣ କହ ।"

"ମାର୍ଗି ପରି ଆପଣାର ଲୋକ ମୋର ଆଉ କିଏ ଅଛି ?"

"ମୁଁ କହୁଛି, ଯେଉଁ ଲୋକ ଟୁଙ୍ଗ୍ ଟୁଙ୍ଗ୍ ଶବ୍ଦ କରୁଥିବା ଘଣ୍ଟା ଆବିଷ୍କାର କରିଥିଲେ ,ସେ ମରିଗଲେଣି । ସଂବାଦଟା ପୁରୁଣା ହେଲେ କ'ଣ ହେବ, ଭଲ ।"

"ତୁମେ କେବେବି ଠଉରାଇ ପାରି ନ ଥାନ୍ତ – ଆମେ ଛୁଟିରେ ଗଲେ, ସେ ପିଲାଙ୍କ ଭାର ନେବେ ।"

"ସେଇ ଗୋଟାଏ ଫିସାଦ ନୁହେଁ ତ ?"

"ମୁଁ ତାଙ୍କୁ କହିନାହିଁ, ସେ ତାଙ୍କ ଆଡୁ ଏ ପ୍ରସ୍ତାବ କଲେ ।"

"ପିଲା ଯୋଡ଼ାକ ତାଙ୍କୁ ଜାଆନ୍ତା ଗ୍ଲେବେଇ ଦେବେ ।"

"ପିଲାଏ କିନ୍ତୁ ତାଙ୍କ ପାଖେ ରହିବାକୁ ଇଚ୍ଛନ୍ତି । ସେ ରବିବାର ଦିନ ପିଲାଙ୍କୁ ନେଇ ନିୟୁୟର୍କ ଯିବେ, ଜଣେ ବନ୍ଧୁଙ୍କ ବସାରେ ସେ ରାତିକ ରହିବେ, "ସୋମବାର ଦିନ ୫୦-ତାରକାଯୁକ୍ତ ପତାକାର ଉତ୍ତୋଳନ ରକ୍‌ଫେଲର୍ ସେଣ୍ଟର୍‌ରେ ଦେଖିବେ, ତା'ପରେ ପରେଡ୍ ଦେଖିବେ – ଓ ଆଉ ସବୁ କଥା ଦେଖିବେ ।"

"ଏ କଥା ତ ବିଶ୍ୱାସ କରି ହେଉ ନାହିଁ ।"

"ସତେ, ଏହା ଖୁବ୍ ଆନନ୍ଦଦାୟକ ଖବର, ନୁହେଁ ?"

"ସବୁଠାରୁ ବଳି ଆନନ୍ଦଦାୟକ । ଆଉ ମିସ୍ ମୁଡ଼ି, ଆମେ ତ ତାହାହେଲେ ମାଣ୍ଟାକ୍ ପ୍ରାନ୍‌ରକୁ ନୂ' ମାରିବା ।"

"ମୋ ମୁଣ୍ଡ କ'ଣ ହୋଇ ଯାଉଛି । ମୋ ପେଟଟା ଖୁସିରେ ଫାଟି ଯିବ କି କ'ଣ ? ମୋତେ ତ ଜଣା ଯାଉଛି, ଟୁମେଇଲାଣି ।"

ଷ୍ଟୋର୍ କଥାଟା କହିବି ବୋଲି ବିଚାରିଥିଲି । କିନ୍ତୁ ଗୁଡ଼ାଏ ଭଲ ଖବର ଗିଳେଇ ଦେଲେ ବଦ୍‌ହଜମି ହେବାର ଆଶଂକା ହେଲା । ମଣ୍ଟାକ୍‌ଠାରେ ଏକଥା କହିବା ଶ୍ରେୟସ୍କର ବୋଲି ବିଚାରିଲି ।

ଏଲେନ୍ ଗଡ଼ ଅଟିଲ୍ ଟରି ଅସି ବେଢେଇଦରେ ଟଶିଲ । "ବାବା, ସେ ଗୋଲପି କନପଟା ଅଲ୍‌ମାରିରୁ କୁଆଡ଼େ ଗଲାଣି ।"

"ମୋ ପାଖରେ ଅଛି । ହେଇଟି ମୋ ପକେଟରେ । ହେଇଟି ନେ, ଯୁଆକୁ ତା' ଜାଗାରେ ରଖି ଦେ ।"

"କୁଆଡେ ନେବ ନାହିଁ ବୋଲି ପରା ତୁମେ ଆମକୁ କହି-ଥିଲ ?"

"ଏବେ ବି ସେ କଥା କହୁଛି । ଅମାନ୍ୟ କଲେ, ପ୍ରାଣଦଣ୍ଡ ।"

ଏଲେନ୍ ଲୋଲୁପ ଭାବେ ଶିଳାଟି ମୋ ହାତରୁ ଛଡ଼େଇ ନେଲା ଓ ଦୁଇ ହାତରେ ଧରି ବୈଠକଖାନାକୁ ଧାଇଁଗଲା ।

ଟେସ୍ ମୋ ଆଡକୁ ବକ୍ଷଣ ଓ ବିସ୍ମିତ ଭାବେ ଚାହିଁ ପଚାରିଲେ, "ଯୁଆକୁ ତୁମେ ନେଇଥିଲ କାହିଁକି, ଏଥାନ୍ !"

"ପ୍ରିୟା ! ସୌଭାଗ୍ୟ ପାଇଁ ନେଇଥିଲି । ଆଶା ଫଳିଲା ।"

—o×o—

## —ଅଷ୍ଟାଦଶ ପରିଚ୍ଛେଦ—

ଜୁଲାଇ ୩ ରବିବାର ଦିନ ଡ ନିଶ୍ଚୟ ବର୍ଷିବାର କଥା, ବର୍ଷିଲା, ବରକୋଳିଆ ଟୋପା । ମନେ ପଡ଼ୁଥିବା ଅନ୍ୟ ଦିନ ଅପେକ୍ଷା ଆଜି ଏ ଟୋପାଗୁଡ଼ାକରେ ବେଶି ବେଶି ପାଣି ଥାଏ । ଓଦା ରାସ୍ତାରେ, ଭେଳା ଭେଳା ପୋକ ଗୁଳିଥିବା ମଣ ଧାଉଁ ଥିବା ମଟରଗୁଡ଼ାକ ଭିତରେ ଆମେ ଠେଲି ପେଲି ହୋଇଗଲା ପରି ଗଲୁଁ । ବହୁ ଦିନ ପିଞ୍ଜରାରେ ବନ୍ଦୀ ହୋଇ-ଥିବା ପକ୍ଷୀଙ୍କୁ ଛାଡ଼ିଦେଲେ ସେମାନେ ଭାରି ଖୁସି ହୁଅନ୍ତି, କିନ୍ତୁ କୁଆଡ଼େ ଯିବେ କେମିତି ଯିବେ ବୋଲି ଅସହାୟ ଓ ପଥହରା ହୋଇ ପଡ଼ନ୍ତି । ସ୍ୱାଧୀନତା ତା'ର କ୍ଷଣିକ ଦନ୍ତ ଦେଖାଇଲେ ଡର ଯାନ୍ତି ମଧ୍ୟ । ଆମ ଅବସ୍ଥା ଠିକ୍ ସେଇପରି ହୋଇଥାଏ । ମେଗ୍ ସିଧା ହୋଇ ବସିଥାନ୍ତି ; ତାଙ୍କ ଦେହରୁ ସଦ୍ୟ ଇସ୍ତ୍ରୀ ହୋଇଥିବା ସୂକ୍ଷ୍ମ ପୋଷାକର ଗନ୍ଧ ବାହାରୁଥାଏ ।

ମୁଁ ପଚାରିଲି, "ସୁଖ ଲାଗୁଛି—ଆନନ୍ଦ ଲାଗୁଛି ।"

"ପିଲାଙ୍କ ଖବର ଜାଣିବାକୁ ଉତ୍କଣ୍ଠାରେ କାନ ଡେରିଛି ।"

"ମୁଁ ଜାଣେ । ଟ ଜେନାମ୍ ହେଡବୋର ଏଇ ଅବସ୍ଥାକୁ କହନ୍ତି ନିର୍ଜନତାର ସୁଖ । ବିହଙ୍ଗୀ ! ଡେଣା ମେଲାଇ ଉଡ଼ । ତୁମ କାନ୍ଧ ଉପରେ ଯେଉଁ ଲମ୍ବଲମ୍ବ ଝାଲର ଦିଶୁଛି ସେ ଦୁଇଟା ପ୍ରକୃତରେ ତୁମର ପକ୍ଷ । ଏତିକି ଜାଣି ପାରୁନାହଁ ସଖୀ !"

ସେ ମୁରୁକି ହସି ମୋ ପାଖକୁ ଲାଗିଆସିଲେ । "ଭଲ ଲାଗୁଛି ଯେ, ପିଲାଙ୍କ ଖବର ପାଇବାକୁ କାନ ନ ଡେରି ରହି ପାରୁନାହିଁ । ଏତେ-ବେଳେ ସେ ଦୁହେଁ କ'ଣ କରୁଥିବେ କେଜାଣି ?"

"ଆମେ ଏତେବେଳେ କ'ଣ କରୁଛେ ସେ ବିଷୟ ଭାବିବା ବ୍ୟତୀତ ଆଉ ଯାହା ମନ ତା' କରୁଥିବେ ।"

"ସେ କଥା ସତ । ଆମ କଥାରେ ତାଙ୍କର ବାସ୍ତବତା ଆଗ୍ରହ ନାହିଁ ।"

"ତେବେ ଚାଲ, ତାଙ୍କର ଗୀତ ଆହରଣ କରିବା । ମାଳନଦୀର ସର୍ପିଣୀ, ତୁମର ଏ ଚଞ୍ଚଳ ମୋ'ର ନିକଟକୁ ଆସିବାର ଦେଖି ମୁଁ ଜାଣୁଛି, ଆଜି ଧନଟା ଆମ ଦୁହିଁଙ୍କର ନିଜସ୍ୱ । ଆଜି ଗ୍ରୀସ୍ ଦେଶର କୌଣସି ଛେଳିଆ ଗୋଲ୍ଡଠାରୁ ଅଲ୍ଟାଭିଆନ୍ ବେଶି ମାଗି ଖାଇବେ ।"

"ତୁମେ ତ ସବୁବେଳେ ଏମିତି ବାସ୍ନା । ସ୍ୱାଲେନ୍ ଚାଲିଲା ବେଳେ ତଳକୁ ଚାହେଁ ନାହିଁ, ଆଗରେ କ'ଣ ଅଛି ଦେଖେ ନାହିଁ । ସବୁ ଟ୍ରାଫିକ୍ ଲାଇଟ୍‌କୁ ନ ଦେଖି ମଟର ଆଗରେ ପଡ଼ିଯାଏ ।"

"ହଁ, ସେ କଥା ଜାଣେ । ଆଉ ବଲ୍ଗସ୍ ଏଲେନ୍ ; ତା'ର ତ ଚଟକା ପାଦ । ଯାହା ହେଉ ତା' ମୁହଁଟି ସୁନ୍ଦର, ହୃଦୟଟିରେ ମାୟା ମମତା ଅଛି । ମୋର ଆଶା, ତାକୁ ଯେ ପ୍ରେମ କରିବ ସେ ତା' ପାଦ ଯୋଡ଼ିକ କଟେଇ ଦେବ—ତେବେ ତା'ର ଆଉ ଦୋଷ ବୋଲି କିଛି ରହିବ ନାହିଁ ।"

"ଥାଉ ମ, ତୁମର ପରିହାସ । ତାଙ୍କ ପାଇଁ ମୋତେ ଟିକିଏ ଚିନ୍ତିତ ହେବାକୁ ଦିଅ । ତାଙ୍କ ପାଇଁ ଟିକିଏ ଭଲ ହେଲେ ମତେ ଏତେ ଖରାପ ଲାଗିବ ନାହିଁ ।"

"କଥାଟା ଏତେ ସୁନ୍ଦର ଭାଷାରେ ଆଉ କେହି କହିବାର ଶୁଣି ନାହିଁ । ଚାଲ, ଦୁହେଁ ଯାକ ମିଶି, ଆମ ପିଲାଙ୍କର ଯେତେ ପ୍ରକାର ଭୀଷଣ ଦୁର୍ଘଟଣା ଘଟିପାରେ ସବୁ ଭାବିନେବା ।"

"ମୋ ମନ କ'ଣ ହେଉଛି, ଜାଣୁଛ କି ?"

"ସବୁ ଜାଣୁଛି । କିନ୍ତୁ ରାଣୀ ମଣିମା, ଆପଣଙ୍କ ଯୋଗୁଁ ଆମ ପରିବାର ଭିତରକୁ ଭଲହେବାର ଏଇ ପଦାର୍ଥ ଯୋଡ଼ିକ ଆସିଲେ । ଆମ ବଂଶରେ ମା'ଲକ୍ଷଣ ଧରି ପିଲା ଜନ୍ମ ହୁଅନ୍ତି । ଯୋଡ଼ାକ ଯାକ କଦର୍ଯ୍ୟ ।"

"ଖାଲି ଉପରମନରେ ଏମିତି ଗୁଡ଼ାଏ କହୁଛ । ପିଲାଙ୍କୁ ତୁମର ଯେତେ ସ୍ନେହ ଆଉ କାହାର ସେତେ ନ ଥାଏ ।"

"ମୁଁ ଗୋଟାଏ ଦୋଷ କଲେ ତ ଦଶଟା ପରି ଦିଶୁଥିବ । ମୁଁ ପରା ଅପଦାର୍ଥଟାଏ ।"

"ତୁମକୁ ମୁଁ ସୁଖ ପାଏ ।"

"ହଁ, ଏଇ ବିଷୟରେ ଭଲ ହେଲେ ମୋ'ର ପୂର୍ଣ୍ଣ ସମର୍ଥନ ଅଛି । ଶୁଣ, ଆଗରେ ଯେଉଁ ପ୍ରାନ୍ତର ମେଲିଛି । ହେଇ ଦେଖ, କୁରୁବକ ଓ କାସବଣୀ ବୁଦାଗୁଡ଼ାକୁ ; ପବନ ତାଙ୍କ ମୂଳର ବାଲି-ଗୁଡ଼ାକ ଉଡ଼ାଇ ନେଇ କମିତି ବାଲିର ତରଙ୍ଗ ସୃଷ୍ଟି କରିଛି ; ମୂଳ ଗାତ ଗାତ ହୋଇ ଯାଇଛି । ତଥାପି ବୁଦାଗୁଡ଼ିକ ଚେର ଆଙ୍କୁଡ଼ି ରହିଛନ୍ତି । ଦେଖ, ବର୍ଷା ବିନ୍ଦୁ ଭୂଇଁରେ ପଡ଼ି ଛିଟିକି ଉପରକୁ ଉଠି ଯାଉଛି ବାମ୍ପ ହୋଇ । ଏହାକୁ ଇଂଲଣ୍ଡର ଡାର୍ଟମୁର୍ ଓ ଏକ୍ସ୍‌ମୁର୍ ସଙ୍ଗେ ମୁଁ ତୁଳନା କରେ—ଅବଶ୍ୟ ଶୁଣା ଶବ୍ଦ ଓ ଅକ୍ଷରର ଆଖିରେ ମୁଁ ସେ ଦୁଇ ଜାଗାକୁ ଦେଖିଛି, ନିଜ ଆଖିରେ ନୁହେଁ । ଜାଣ ଯେ, ଇଂଲଣ୍ଡର ଡେଭନ୍ ଅଞ୍ଚଳର ଲୋକେ ଏଠାକୁ ପ୍ରଥମରେ ଆସି ନିଜ ଦେଶ ବୋଲି ମନେ କରୁଥିବେ । ଅଚ୍ଛା, ଏଥିରେ ଭୂତ ଥିବେ ବୋଲି ମନେ କରୁଛ ବୋଧହୁଏ ?

"ଏ ପର୍ଯ୍ୟନ୍ତ ନ ଥିଲେ ; ତୁମେ ଆସିବାରୁ ଅଛନ୍ତି ବୋଲି କହିବାକୁ ହେବ ।"

"ମନରେ ଯଦି ନ ବିଶ୍ବାସ କରୁଛ, ତେବେ ଉପରମନରେ ମତେ ଏଭଳି ଗୁଡ଼ାଏ ପ୍ରଶଂସା କରିବା ଉଚିତ ନୁହେଁ ।"

"ଏତେବେଳେ ଏ ସବୁ ରହସ୍ୟ ଥାଉ । ଏବେ ଏ ସଡ଼କରୁ ବାହାରିଥିବା ଗ୍ରୋଟବସ୍ତା ଉପରେ ନଜର ରଖ । 'ମୁର୍ କଟେଜ୍' ବୋଲି ଲେଖାଥିବ ।"

ନଜର ରଖିଲି, ପ୍ରକୃତରେ ସେଇଆ ଲେଖାଥିବାର ଦେଖିଲି ମଧ୍ୟ । ଲଙ୍ଗ୍ ଆଇଲାଣ୍ଡ୍‌ର ଏ କଣ୍ଡା-ଅଗଡ଼ାର ବିଶେଷତ୍ବ ଏତିକି ଯେ, ବର୍ଷା ପାଣି ପଡ଼ି ଭୂଇଁରେ ଭେଦି ଯାଉଛି ; କାଦୁଅ ହେଉନାହିଁ ।

ଆମ ପାଇଁ ଗୋଟିଏ ଗ୍ଲେଟିଆ ଘର—କୁଣ୍ଢେଇଘର ପରି—ରଖା ହୋଇଥିଲା । ଘରଟି ବେଶ୍ ଚୁପ ଚକ୍‌ଚକ୍, କାନ୍ଥରେ ପଟା ପଟା ହୋଇ ବିଭିନ୍ନ ରଙ୍ଗର ବିଳାସ, ଦେଶଡମାମ ବିଛାପିତ ହୋଇଥିବା ମୁଡାବକ୍ ଡବଲ୍‌ଖଟ, ଛା'ଉପରେ ଡବଲ ବେଡି ଦରି ମୋଟା ଓ କମ୍ବଳ ଶେଯ ।

"ଯୋଡ଼ାଏ ଖଟ ଥିବା ମୁଁ ପସନ୍ଦ କରୁନାହିଁ ।"

"କାହିଁକି ମ ? ତୁମେ କଣ ସେ ଖଟରୁ ଏ ଖଟକୁ ଆସି ପାରିବ ନାହିଁ ।"

"ଖୁବ୍ ପାରିବ , ଖାଲି ସେତିକି ନୁହେଁ, ତହିଁରୁ ଖୁବ୍ ଅଧିକ ବି ପାରିବ ଗୋ, ବାରାଙ୍ଗନା କାହାଁକା !"

ତେଲ ସରସର ହୋଇ ଭଜା ହୋଇଥିବା ମେଇନ୍‌ର ବଡ଼ ଚିଙ୍ଗୁଡ଼ି ହେଲା ରାତିର ପ୍ରଧାନ ଆହାର ; ଖୁବ୍ ଆଗ୍ରହରେ ଖାଇଲୁଁ— ଧଳାରଙ୍ଗର ମଦ ସାହାଯ୍ୟରେ ଚିଙ୍ଗୁଡ଼ିକୁ ପେଟକୁ ରମାନା କରୁଥାଉଁ । ଏ ମଦରୁ ଏତେ ଚଳେଇଲୁଁ ଯେ ମୋ ପ୍ରିୟତମାଙ୍କ ଆଖି ଜଳ ଜଳ ଦିଶିଲା । ଗେଲେଇ, ଲେଭେଇ ଓ ଫୁଲେଇ ଯୁବା ଉପରେ ତାଙ୍କୁ ଏତେ କଗ୍‌ନାକ୍ (ମଦ) ପିଆଇଲି ଯେ ମୋ ମୁଣ୍ଡ ବି ଝାଁ ଝାଁ ହେବାକୁ ଲାଗିଲା । ଯାହା ହେଉ ଖାଇସାରି ଫେରିଲା ପରେ, ସେଇ ମନେ ପକାଇ ପାରିଲେ, ଆମ କଣ୍ଟେଇଘରର ନମ୍ବର ଏବଂ ତାଙ୍କୁଇ ଦିଶିଲା ଆମ ଦୁଆରର ଘୁଞ୍ଚି-ଜଳା । ଭାଗ୍ୟକୁ ତାଙ୍କ ସଙ୍ଗେ ଚାଲିକରି ଆସିବା ସକାଶ ମୋର ଯଥେଷ୍ଟ ହୋସ୍ ଥାଏ । ହୋସ୍ ହେଲା ପରେ ବୁଝୁଛି, ଯେତେବେଳେ ମୋର ଯାହା ଅବସ୍ଥା, ମେଣ୍ଢା ଯଣ୍ଡ ମୋ'ଠାରୁ ଅନ୍ୟ କୁଆଡ଼େ ଖସି ଯିବାକୁ ଚାହୁଁଥାନ୍ତେ, ତେବେ ସେତେବେଳେ ନିର୍ବାଧରେ ଚାଲି ଯାଇ ପାରିଥାନ୍ତେ ; ଗଲେ ବୋଲି ମୋତେ ଜଣା ବି ପଡ଼ି ନ ଥାନ୍ତା, ବାଧା ଦେବା କଥା ଦୂରେ ଥାଉ ।

ତା'ପରେ, ଶରୀରର ଅସ୍ୱସ୍ତି ଭିତରେ, ସୁଖର ଆଧିକ୍ୟରେ ସେ ମୋ'ର ଡାହାଣ ବାହା ଉପରେ ତାଙ୍କ ମୁଣ୍ଡକୁ ଡାଳି ଦେଲେ ଓ ମୃଦୁ ମୃଦୁ ହସି ହାଇ ମାରିଲା ପରି ଚ୍ଚୋଟ ଚ୍ଚୋଟ ଶବ୍ଦ କରି କହିଲେ, "ତୁମେ କ'ଣ ଗୋଟାଏ ଭଲ ହେଉଚ ?"

"ଅଦ୍‌ଭୁତ କଳ୍ପନା ! ତୁମେ କ'ଣ ଶୋଇବା ପୂର୍ବରୁ ସ୍ୱପ୍ନ ଦେଖିବା ଆରମ୍ଭ କରିଦେଲ ନା କ'ଣ ?"

"ମୋତେ ଖୁସୀ କରିବାକୁ ତୁମେ ଏତେ ଚେଷ୍ଟା କରୁଛ ଯେ ତୁମ ଭିତର କଥା ଜାଣିବାକୁ ମୋର ଅବସର ରହୁନାହିଁ । ସତେ କ'ଣ ଗୋଟାଏ ଭାବୁଛ ?"

ବିଚିତ୍ର ଏ ବେଳ ! ଅନ୍ୟର ମନ ଭିତରେ ପଶିବାର ପ୍ରକୃଷ୍ଟ ସମସ୍ତ ନିଦ୍ରାର ପ୍ରଥମ ପାହାଚ ।

"ହଁ, ମୁଁ ଗୋଟାଏ ବିଷୟ ଭାଳି ହେଉଚି । ଏତିକ ଶୁଣି, ତୁମ ଅନୁମାନ ଠିକ୍ ବୋଲି ସନ୍ତୁଷ୍ଟ ହେଲ ତ ? ଆଉ ପୁଣି, ପଗ୍ଭର ନାହିଁ । ମତେ ଲାଗୁଛି ଆକାଶଟା ଆମ ଉପରେ ଖସି ପଡୁଛି । ଖଣ୍ଡେ ଆକାଶ ମୋ ଲୁଙ୍ଗ ଉପରେ ପଡ଼ି ସାରିଲାଣି ।"

ଏତେବେଳକୁ ସେ ଫ୍ୟାନ୍-ଦେବତାଙ୍କ ହସ ହସି ମଧୁମସ୍ତ ନିଦ୍ରାର କୋଳକୁ ଗ୍ଭଲିପାଇଥାନ୍ତି ଭାରି । ମୁଁ ମୋ'ର ଡାହାଣ ବାହା ତାଙ୍କ ମୁଣ୍ଡ ତଳୁ ଖସାଇ ଦୁଇ ଖଟର ମଝିରେ ଠିଆ ହେଲି । ବର୍ଷା ଛାଡ଼ିଥାଏ, ଛାତରୁ ବୁନ୍ଦାଏ ବୁନ୍ଦାଏ ତଳେ ପଡୁଥାଏ ମାତ୍ର ଓ ଗ୍ଭରିହାତର ଚନ୍ଦ୍ର ଅସଂଖ୍ୟ ଜଳବିନ୍ଦୁ ଭିତରେ ପ୍ରତିବିମ୍ବିତ ହେଉଥାଏ । "ସୁଖରେ ଶୁଅ, ପ୍ରିୟତମେ ! ଆକାଶଟାକୁ ଆମ ଉପରେ ପଡ଼ିବାକୁ ଦିଅ ନାହିଁ ।"

ମୋ ବିଛଣାଟା ବେଶ୍ ଥଣ୍ଡା ଓ ଅତିମାତ୍ରାରେ କଅଁଳିଆ ଲାଗୁଥାଏ । ଏଥିରେ ବି ନିଦ ଲାଗିଲା ନାହିଁ । ଦାଡ଼ୁଆ ଚନ୍ଦ୍ର ସମୁଦ୍ର ଆଡ଼କୁ ଧାଉଁଥିବା ମେଘ ଭିତରେ ଆଗକୁ ବଢ଼ି ଗ୍ଭଲିଥାନ୍ତି । ଗୋଟାଏ ଗେଣ୍ଡାଳିଆର ବିକଟ ଚିତ୍କାର ଶୁଣିଲି । ମୋ ଆଙ୍ଗୁଠିକୁ ଛେଚି କଟି ପକାଇଲି—ଡବଲ୍ କଟି । ମୋ ଲୁଙ୍ଗୁଡ଼ରେ ଗୋଟାଏ ମଟର ମଞ୍ଜି ପଡ଼ିଲା ପରି ଲାଗିଲା ।

ସକାଳେ ଯଦି ଘଡ଼ଘଡ଼ି ମାରି ଦିନକୁ ସ୍ୱାଗତ କରିଥିବ, ତଥାପି ମୋର ଶୁଣିବାର ଉପାୟ ନ ଥିଲା । ନିଘୋଡ଼ ନିଦ ଯୋଗୁଁ ମୁଁ କିଛି ଶୁଣିପାରିଲି ନାହିଁ । ମୁଁ ଉଠିଲାବେଳକୁ ଗ୍ଭରିଆଡ଼ର ସବୁଜିମା ଉପରେ ସୂର୍ଯ୍ୟକିରଣର ସୁନେଲି ରଙ୍ଗର ପ୍ରଲେପ ଲାଗିଥାଏ । କାସଚଣ୍ଡୀ ବୁଦା-ଗୁଡ଼ିକର ଘନ ସବୁଜ ରଙ୍ଗ ସୂର୍ଯ୍ୟକିରଣରେ ଫୁଟି ଦିଶୁଥାଏ , କଣ୍ଟା ବୁଦାଗୁଡ଼ାକ ପିଙ୍ଗଳବର୍ଣ୍ଣ ଦିଶୁଥାନ୍ତି , ବାଲିବନ୍ତର ଓଦାବାଲି ଉପରେ ସୂର୍ଯ୍ୟକିରଣ ନାଲିମିଶା ହଳଦିଆ ଦିଶୁଥାଏ । ଗଣ୍ଡି ମୋଡ଼ି ମୋଡ଼ି ହୋଇଥିବା ଗୋଟାଏ ବୁଢ଼ା ଓକ୍ ଗଛ ଆମ ଘର ପାଖରେ ଥାଏ । ତା ମୂଳରେ, ଠିକ୍ ଚେର ଉପରକୁ ଗୋଟାଏ ବଡ଼ ଛତୁ ଓକ ଗଣ୍ଡିରେ ଫୁଟିଥାଏ—ଆକାରରେ ଗୋଟାଏ ମାଣ୍ଡି ପରି ହେବ, ବର୍ଣ୍ଣ

ମୁକ୍ତା ପରି ଧଳା । ତା'ର ମଝିରେ ତରଙ୍ଗ ପ୍ରାନ୍ତ ପରି ଗୋଟିଏ ଗୋଟିଏ ରେଖା ଦିଶୁଥାଏ । ଆମ କଣ୍ଢେଇଘର-ପୁଞ୍ଜର ମଝିରେ ନାଲିଆ ଗୋଡ଼ିମିଶା ମାଟିରେ ଗୋଟିଏ କୁଟିଳ ରାସ୍ତା ଯାଇ ସରିଥାଏ, କାଠଡକ୍ତାରେ ଛାତ ପଡ଼ିଥିବା ଗୋଟିଏ ବଡ଼ ବଙ୍ଗଳା ଘରର ଦ୍ୱାରେ । ଆମ କୁଣ୍ଢେଇଘର-ଗୁଡ଼ିକ ଏଇ ବଙ୍ଗଳା-ଘରର ଜାଆଁଳ । ଏଇ ବଙ୍ଗଳା ଭିତରେ ହୋଟେଲ-ଅଫିସ୍—ଏଠାରେ ପୋଷ୍ଟକାର୍ଡ୍, ଡାକଟିକଟ ଓ ପିଲାଙ୍କ ପାଇଁ ନେବାକୁ ଉପହାର ସାମଗ୍ରୀ କିଣିବାକୁ ମିଳେ । ଏଇ ଘର ଭିତରେ ବି ଡାଇନିଂ-ହଲ; ଡାଇନିଂ ହଲର ଟେବୁଲ ଉପରେ ନେଳିଆ ଛିଟର ଟେବଲ୍-କ୍ଲଥ୍ । ଆମେ କଣ୍ଢେଇମାନେ ଏଇଠାରେ ଆସି ଖାଇବାର କଥା ।

ମେନେଜର ତାଙ୍କ ଦପ୍ତରଖାନାରେ ବସି, ଗୋଟାଏ କ'ଣ ହିସାବ ଫର୍ଦ୍ଦ ଯାଞ୍ଚ କରୁଥାନ୍ତି । ଆମେ ପ୍ରଥମେ ଆସି ନାମ ଲେଖାଇଲା ବେଳେ ଯାଙ୍କୁ ଦେଖିଥିଲି—ମୁଣ୍ଡରେ କେରି କେରି ବାଳ, ମାଖୁନା ମୁହଁ, ଖିଅରି ହେବାର ବିଶେଷ ପ୍ରୟୋଜନ ହେଉ ନ ଥିବ । ଲୋକଟିଠାରେ ଗୁପ୍‌ଚୁପ୍ ଢଙ୍ଗ ସାଙ୍ଗେ ମେଳାପି ଢଙ୍ଗ ମିଶିକରି ଥିଲା ପରି ଜଣା ଯାଉଥାଏ—ଅର୍ଥାତ୍, ନିଜ ମନର କଥା ଲୁଚାଇ ରଖି ଅନ୍ୟର ମନ କଥା ଜାଣିବାକୁ ଆଗ୍ରହ ଥିଲା ପରି ଜଣା ପଡ଼ୁଥାଏ । ଆମର ଖୁସିବାସି ଢଙ୍ଗ ଦେଖି, ସେ ବୋଧହୁଏ ସାଙ୍ଗେ ସାଙ୍ଗେ ସନ୍ଦେହ କରିଦେଲେ ଯେ, ମୁଁ ବୋଧହୁଏ ଅପର କାହାର ବିବାହିତା ସ୍ତ୍ରୀକୁ ଧରି ଗୁପ୍ତ ପ୍ରେମରେ ଏଠାକୁ ଆସି ଯାଇଛି । ମୋ ମନରେ ଏ ଅନୁମାନ ହେବାରୁ ତାଙ୍କୁ ଖୁସି କରିବା ପାଇଁ ତାଙ୍କ ଖାତାରେ 'ଜନ୍ ସ୍ମିଥ୍ ଓ ପତ୍ନୀ' ବୋଲି ଲେଖିବାକୁ ମୋର ବାରପଣ ମନ ହୋଇ ଯାଇଥିଲା । ପାପର ବାସ୍ନା ଶୁଂଘିବାକୁ ସେ ସବୁବେଳେ ନାକ ବଢେଇବା ବାଲା ଲୋକ ବୋଲି ମୋତେ ଜଣା ପଡ଼ିଥିଲା । ତାଙ୍କ ସରୁ ଓ ଲମ୍ବ ନାକ ବାଟେ ସେ, ଚୁଚୁନ୍ଦ୍ରା ପରି, ସବୁ ଧେଖି ପାରୁଥିବେ ବୋଲି କାଲି ସନ୍ଧ୍ୟାରେ ମୋର ଧାରଣା ହୋଇଥିଲା ।

ଆଜି ସକାଳେ ଉଠି ସେ ବସିଥିବା ଦପ୍ତରଖାନାରେ ପଶି ମୁଁ କହିଲି, "ସୁପ୍ରଭାତ ।"

ସେ ତାଙ୍କ ନାକକୁ ମୋ ଆଡ଼କୁ ବଢ଼ାଇ କହିଲେ, "ଭଲ ନିଦ ହେଲା ତ ?"

"ଖୁବ୍ ଭଲ । ବିଶ୍ବରହୁଛି, ଗୋଟିଏ ଡାଲାରେ ମୋ ଭାର୍ଯ୍ୟା ପାଇଁ ପ୍ରାତରାଶ ନେଇ ଯା'ନ୍ତୁ ଆମ କୋଠରୀକୁ ।",

"ଆମର ଡାଇନିଂ-ହଲ୍‌ରେ ଖାଦ୍ୟ ଯୋଗାଇବାର ନିୟମ, ସାଢ଼େ ସାତଟାରୁ ସାଢ଼େ ନଅଟା ଭିତରେ ।"

"କିନ୍ତୁ ମୁଁ ଯଦି ନିଜେ ନେଇଯାଏ ?"

"ନିୟମ ନାଇଁ ପରା !"

"ଥରଟାକ ପାଇଁ ନିୟମ ଟିକଏ କୋହଳ କରିଦେଲେ କ'ଣ କ୍ଷତି ହେବ ? ଆପଣ ତ ଆମ ଅବସ୍ଥା ଅନୁମାନ କରି ପାରୁଥିବେ ।" ଅବସ୍ଥାଟା ଏଇୟା ବୋଲି ସେ ବିଶ୍ବାସ କରୁଥିବାରୁ ଏତିକ ଲଗାଇ ଦେଲି ।

ତାଙ୍କର ଆନନ୍ଦ ଦେଖି ମୋର ଏ ଇସାରା ଦେବାଟା ସାର୍ଥକ ହେଲା ବୋଲି ବିଚାରିଲି । ତାଙ୍କ ଆଖି ଉଜ୍ଜ୍ବଳ ଦିଶିଲା ଓ ନାକ ଅଗଟା ଟିକଏ ଥରିଲା । "ଟିକଏ ଲାଜ କରୁଛନ୍ତି, ନାଇଁ ?"

"ଆପଣ ତ ଅନୁମାନ କରୁଥିବେ ତାଙ୍କ ମନର କଥା ।"

"ପୁଷ୍ପାଶ୍ରୀ କ'ଣ କହିବ କେଜାଣି ?"

"ତାଙ୍କୁ ଟିକଏ ପଚାରନ୍ତୁ ଓ ତାଙ୍କୁ ଶୁଣାଇ ଦିଅନ୍ତୁ ଯେ ମେଘାବୃତ ପର୍ବତ ଶିଖରରେ ଖଣ୍ଡେ ପାଞ୍ଚଟଙ୍କିଆ ନୋଟ୍ ତାଙ୍କୁ ଗୁହାରି କରୁଛି ।"

ପୁଷ୍ପାଶ୍ରୀ ଗ୍ରୀସ୍ ଦେଶର ଲୋକ । ନୋଟ୍‌ଟା ତାଙ୍କୁ ଆକୃଷ୍ଟ କଲା । ଯଥାସମୟରେ ମୁଁ ଗୋଟିଏ ପ୍ରକାଣ୍ଡ ଡାଲା ଉପରେ ଚଉକିଆ ଘୋଡ଼ାଇ ପ୍ରାତରାଶ-ସାମଗ୍ରୀ ସହିତ ନାଲି ଗାଲିଚାରେ ଆମ କାମରାକୁ ମୁହାଁଇଲି । ବାଟରେ ଡାଲାଟି ଗୋଟିଏ ମଫସଲ ବେଞ୍ଚ ଉପରେ ଥୋଇ ଛୋଟ ଛୋଟ ଫୁଲଗୁଡ଼ିଏ ସଂଗ୍ରହ କରି ଗୋଟିଏ ଟାହିଆ କଲି । ମୋ ପ୍ରିୟତମାଙ୍କ ରାଜକୀୟ ପ୍ରାତରାଶ ଉତ୍ସବକୁ ଏ ଟାହିଆଟି ଅଳଂକୃତ କରିବ ବୋଲି ଇଚ୍ଛା ଥାଏ ।

ବୋଧହୁଏ ତାଙ୍କର ନିଦ ଭାଙ୍ଗିଥିଲା ; ଯାହା ହେଉ ସେ ଆଖି

ମେଲାଇଲେ ଓ ସାଙ୍ଗେ ସାଙ୍ଗେ କହିଲେ, "କ'ଣ କଫି ବାସ୍ନା ହେଉଛି । ଓଃ, ଓଃ, କେଡ଼େ ସୁନା ସ୍ୱାମୀଟିଏ ମୋର—ଏଁ ତା' ସାଙ୍ଗକୁ ପୁଣି ଫୁଲ—" କ୍ଷୁଦ୍ର କ୍ଷୁଦ୍ର କଥାଗୁଡ଼ିକ—ଯାହାର ମହକ କାଳର ପ୍ରଭାବରେ କ୍ଷୀଣ ହେବାର ନୁହେଁ ।

ପ୍ରାତରାଶ ଖାଇଲୁଁ—କଫି ପିଇଲୁଁ—ପୁଣି କଫି ପିଇଲୁଁ—ମୋ ମେଣ୍ଟା ସେଇ ଶୋଇବା ଖଟରେ ଡେରି ହୋଇ ଶୋଇ ଖାଉଥାନ୍ତି । ବସୁଥାନ୍ତି ତାଙ୍କ ଝିଅଠାରୁ ଆହୁରି ଶ୍ରେଷ୍ଠ ଓ ଆହୁରି ସରଳ ଓ ନମ୍ର । କାଲି ରାତିରେ ଉତ୍ସବ୍ର କମିତି ଆଗମନରେ ଶୋଇଲୁଁ ସେ ବିଷୟରେ ପରସ୍ପରର ଇଚ୍ଛା ପ୍ରତି ଖାତିର ରଖି କଥାବାର୍ତ୍ତା ହେଉଥାଉଁ ।

ମୋର ଉପଯୁକ୍ତ ସମୟ ଆସିଲା । "ସ୍ୱଚ୍ଛନ୍ଦରେ ଶୁଣ । ସୁଖର କଥା କହିବ, ଦୁଃଖର କଥା ମଧ୍ୟ ।"

"ସତେ ! କ'ଣ ଏ ସମୁଦ୍ରଟା କିଣି ପକାଇଲ କି ?—କିଣିଲ ବୋଲି ସୁଖ, ଦଖଲ ନେବାକୁ କଷ୍ଟ ହେବ ବୋଲି ଦୁଃଖ ?"

"ମ୍ୟାଲ୍ଲି ଅଡ଼ୁଆରେ ପଡ଼ିଛନ୍ତି ।"

"ମାନେ ?"

"ସେ-ଅନୁମତି ପତ୍ର ନ ନେଇ ବହୁ ବର୍ଷ ଆଗେ ଆମେରିକାକୁ ଆସିଥିଲେ ।"

"ହଁ ? ସେ'ଠୁ କ'ଣ ହେଲା ?"

"ବର୍ତ୍ତମାନ ସରକାର କହୁଛି, ବାହୁଡ଼ି ଯିବାକୁ ।"

"ନିର୍ବାସିତ ହେବେ ?"

"ହଁ ।"

"ବଡ଼ ଦୁଃଖର କଥା ତ ?"

"ନିଶ୍ଚୟ । ସୁଖର କଥା ତ କଦାପି ନୁହେଁ ।"

"ଆମେ କରିବା କ'ଣ ? ତୁମ ଅବସ୍ଥା କ'ଣ ହେବ ?"

"ଖେଳ ବେଳ ସରିଲା ଗୋ ଧନ ! ସେ ମୋତେ ଷ୍ଟୋର୍‌ଟା ବିକି ଦେଇଛନ୍ତି—ଯଥାର୍ଥରେ କହିଲେ, ତୁମକୁ ହିଁ ବିକି ଦେଇଛନ୍ତି । କାରଣ, ତୁମର ଟଙ୍କାରେ ଏହା କିଣା ହୋଇଛି । ତାଙ୍କ ସମ୍ପତ୍ତି ହସ୍ତାନ୍ତର କରି ଟଙ୍କା ନେଇ ଯିବେ ତ ! ତାଙ୍କର ମୋ ପ୍ରତି ଶ୍ରଦ୍ଧା ବି ଅଛି । ତେଣୁ, ବାସ୍ତବିକ୍ ସେ ମୋତେ ଷ୍ଟୋର୍‌ଟା ଦାନ କରି ଦେଇଛନ୍ତି ; ମୋଟେ ୧୫ ହଜାରକୁ ।"

"ବଡ଼ ତାଜୁବ୍ କଥା । ଏବେ କ'ଣ ତା'ହେଲେ, ତୁମେ ଷ୍ଟୋର୍‌ର ମାଲିକ ?"

"ହଁ ।"

"ତମେ ଆଉ ଗୁମାସ୍ତା ନୁହଁ !! ଗୁମାସ୍ତା ନୁହଁ !!"

ସେ ମାଣ୍ଡିରେ ମୁହଁ ପୋତି କାନ୍ଦିଲେ । ଵସ୍ତୁରମତ କାନ୍ଦ— ବଡ଼ ବଡ଼ ଲୁହଧାର, ଗୁଣ୍ଡି ପଡ଼ୁଥାଏ ଉଠୁଥାଏ । ହାତିଦାନ୍ତର ଗୋଡ଼ରୁ ଲୁହା କଡ଼ା କାଟି ଦେଲେ ଯେମିତି ହୁଏ, ଠିକ୍ ସେଇଆ ।

ମୁଁ ମେଲ୍‌କୁ ଯାଇ ସାମନାରେ କୁଣ୍ଢେଇଙ୍କ ପାଇଁ ରହିଥିବା ଦାଣ୍ଡ ମଣ୍ଡପକୁ ବାହାର ଖରକୁ ପିଠିକରି ବସିଲି, ସେ ବାହାରିବାକୁ ପ୍ରସ୍ତୁତ ହେବା ଯାଏଁ । ସେ କାନ୍ଦ ସାରି, ମୁହଁ ଧୋଇ, ମୁଣ୍ଡ କୁଣ୍ଡେଇ, ଗାଉନ୍ ଦେହରେ ଗଳାଇ, ଦାଣ୍ଡ ଦୁଆର ଫିଟାଇ ମୋତେ ଡାକିଲେ । ସେତେବେଳକୁ ସେ ଅଲଗା ମଣିଷ ; ଏଥର ଏଣିକି ଏଇ ଚେହେରାଟା ରହିବ । ତାଙ୍କର ପରିବର୍ତ୍ତନ ହୋଇଛି ବୋଲି ସେ ତୁଣ୍ଡରେ କହିବାର ଆବଶ୍ୟକ ନ ଥିଲା । ତାଙ୍କ ବେକର ଭଙ୍ଗୀ ଏହା ଜଣାଇ ଦେଉଥିଲା । ବର୍ତ୍ତମାନ ତାଙ୍କ ମୁଣ୍ଡ ସିଧା । ଆମେ ପୁଣି ନିଜ ଦୃଷ୍ଟିରେ ଭଦ୍ରଲୋକ ହେଲୁଁ ।

"ମ୍ୟାକ୍ରୁଲେଙ୍କୁ ସାହାଯ୍ୟ କରିବାକୁ ଆମେ କିଛି କରି ପାରିବା ନାହିଁ ?"

"ନା, କିଛି କରି ପାରିବା ନାହିଁ ।"

"ଏ କଥା ଘଟିଲା କେମିତି ? ସେ ଅନଧିକାର ପ୍ରବେଶ କରିଛନ୍ତି ବୋଲି କିଏ ଜାଣିଲା ?"

"ମୁଁ ସେ କଥା ଜାଣେ ନାହିଁ ।"

"ଭଲ ଲୋକ ଜଣେ ସେ । ତାଙ୍କ ପ୍ରତି ଏଭଳି ବ୍ୟବହାର କରିବାର ନୁହେଁ । ଭଲା ସେ ନିଜେ କ'ଣ କରୁଛନ୍ତି ? ଏ ଦୁର୍ଗତି କିପରି ସହୁଛନ୍ତି ?

"ପୂର୍ଣ୍ଣ ସମ୍ମାନ ଓ ମହତ୍ତ୍ୱର ସହିତ ।"

ଆମେ ଆଗରୁ ଯେମିତି ଭାବିଥିଲୁ, ସେମିତି ସମୁଦ୍ର ପଠାରରେ ବୁଲିଲୁଁ, ବାଲିରେ ବସିଲୁଁ, ଛୋଟ ଛୋଟ ସୁନ୍ଦର ଶାମୁକା ଗୋଟାଇ ପର-

ସ୍ଥିରକୁ ଦେଖାଇଲୁଁ – ଏପରି ତ କରିବାରକଥା । ପ୍ରାକୃତିକ ଦୃଶ୍ୟ—ସମୁଦ୍ର, ପବନ, ଆଲୁଅ, ପବନ ଯୋଗୁଁ ଉଷୁମ ଛୁଡ଼ ଯାଇଥିବା ସୂର୍ଯ୍ୟ – ଏସବୁ ବିଷୟରେ ଗତାନୁଗତିକ ଆନନ୍ଦ ଓ ବିସ୍ମୟରେ କଥାବାର୍ତ୍ତା ହେଲୁଁ । ଆମ କଥାବାର୍ତ୍ତା ଶୁଣି ଯେ କେହି ମନେ କରନ୍ତା—ଆମଠାରୁ ପ୍ରଶଂସା ଶୁଣିବାକୁ ଈଶ୍ୱର କାନ ପାତିଛନ୍ତି ବୋଲି ଆମେ ଯେମିତି ଆଗରୁ ଜାଣି ପାରିଛୁ ।"

ମେଗ୍ଙ୍କର ପୂରା ମନ ଆଉ ଆମର ଏ ଅବସର-ବିନୋଦନରେ ନ ଥାଏ । ତାଙ୍କ ଗୃହୀତ ମର୍ଯ୍ୟାଦା ଧରି ସେ ନିଜ ଘରକୁ ଫେରିବାକୁ ବ୍ୟାକୁଳ ହେଉଥିଲି ପରି ମୋ'ର ସନ୍ଦେହ ହେଉଥାଏ । ତାଙ୍କର ମନ ହେଉଥାଏ, ଘରକୁ ଫେରି ଲକ୍ଷ୍ୟ କରିବେ, ପରିଚିତ ସ୍ତ୍ରୀଲୋକମାନଙ୍କର ତାଙ୍କ ପ୍ରତି ହାବଭାବରେ କେମିତି ପରିବର୍ତ୍ତନ ହେଉଚି ; ହାଇଷ୍ଟ୍ରୀଟ୍‌ରେ ଯୁାଙ୍କୁ ଦେଖି ସେମାନେ କଭଳି ସମ୍ଭାଷଣ କରୁଛନ୍ତି । ସେମାନେ ତାଙ୍କ ବିଷୟ କୁହାକୋହି ହେଉଥିଲେ, "ଆହା ବିଚ୍ଛୁରି ମେଗ୍ ହ'ଲ ! ଭାରି ଘାଣ୍ଟି ହେଉଚି ।" ଆଉ ତ ସେ 'ଭାରି ଘାଣ୍ଟି ହେଉଥିବା ମେଗ୍ ହ'ଲ' ନୁହନ୍ତି । ସେ ଏଥର ହେଲେଣି, ମିସେସ୍ ଏଥାନ୍ ଯ୍ୱାଲେନ୍ ହ'ଲ ଓ ଚିରକାଳ ଏଇଆଇ ହୋଇ ରହିବେ । ତାଙ୍କୁ ଏଇ ମର୍ଯ୍ୟାଦାରେ ରଖିବା, ସ୍ୱାମୀ ହିସାବରେ ମୋର କର୍ତ୍ତବ୍ୟ ।" ଏଇ ପ୍ରମୋଦ – ପର୍ଯ୍ୟଟନଟା ପୂର୍ବରୁ କଳ୍ପିତ ହୋଇଥିବାରୁ ଓ ଏ କଣ୍ଟେଇଘରର ଭଡ଼ା ଆଗରୁ ଦିଆ ହୋଇ ସାରିଥିବାରୁ, ସେ ଅଗତ୍ୟା ଆଜ ଦିନର କାର୍ଯ୍ୟକ୍ରମ ଅନୁସରଣ କରୁଥାନ୍ତି, କିନ୍ତୁ ତାଙ୍କ ମନ ଯାଇ ଥାଏ ଭବିଷ୍ୟତର ଉଜ୍ଜ୍ୱଳ ଜୀବନ ଉପରେ । ବର୍ତ୍ତମାନ ସମୁଦ୍ର କୂଳର ଉଜ୍ଜ୍ୱଳ ଶାମୁକାକୁ ଗୋଟାଉଁଥାନ୍ତି, ମାତ୍ର ଦେଖି ନ ଥାନ୍ତି—ତାଙ୍କର ଆଖି ଯାଇ ଲାଗିଥାଏ, ଭବିଷ୍ୟତ 'ଜୀବନରୂପ ଶାମୁକାର ଉଜ୍ଜ୍ୱଳତାରେ ।

ନେଳି ଛିଟ ପଡ଼ିଥିବା ଡାଇନିଂ ହଲ୍‌ର ଟେବୁଲରେ ଆମେ ମଧ୍ୟାହ୍ନଭୋଜନ ଖାଇଲୁଁ । ମେଗ୍ଙ୍କ ଢଙ୍ଗ, କଥାବାର୍ତ୍ତା ଓ ଚାଲିଚଳନରେ ସଂଭ୍ରମ ଓ ସଂକୋଚହୀନତା ଦେଖି ମିଷ୍ଟର ଚୁଡ୍ରାଙ୍କ ମନ ମରି ଯାଉଥାଏ । ତାଙ୍କ ସରୁ ନାକ ଆଉ ସଳଖ ନ ଥାଏ, ଖଞ୍ଜାମୁଣ୍ଡରେ ମୋଡ଼ ହୋଇଗଲି ପରି ଦିଶୁଥାଏ । ପାପର ବାସ୍ନା ପାଇ ଏଇ ନାକ କେଡ଼େ ଆନନ୍ଦରେ କଂପିଉଠିଥିଲି – ଆଉ ସେଥିରେ ସେ ଆନନ୍ଦ କି ସେ କଂପନ

ନ ଥାଏ । ଆମ ଖାଇବା ଟେବୁଲକୁ ଆସି, 'ମିସେସ୍ ହ୍'ଲଙ୍କୁ ଟେଲି-ଫୋନ୍‌ରେ କିଏ ଡାକୁଛନ୍ତି' ବୋଲି ସେ କହିଲା ବେଳକୁ, ତାଙ୍କର ବିମୁଗ୍ଧଭାବ ଏକାବେଳକେ ଦୂର ହୋଇ ଯାଇଥାଏ ।

"ଆମେ ଏଠାରେ ଥାଇଁ ବୋଲି କିଏ କେମିତି ଜାଣିଲା ?"

"ଆଉ କିଏ ? ମାର୍ଗି ନିଶ୍ଚୟ ଟେଲିଫୋନ୍ କରିଛନ୍ତି । ପିଲାଙ୍କ ଯୋଗୁ ତାଙ୍କୁ ଆମ ଠିକଣା ଦେବାକୁ ବାଧ୍ୟ ହୋଇଥିଲି । ଓହୋ ! କିଛି ଅନିଷ୍ଟ ନ ହୋଇଥାଉ, ମହାପ୍ରଭୁ ! ସେ ଟୋକାଟା କୁଆଡ଼େ ଗଲାବେଳେ ଘରି ପାଖକୁ ଟିକିଏ ହେଲେ ନଜର ଦିଏ ନାହିଁ ।"

ଟେଲିଫୋନ୍ ପାଖରୁ ମେଷ୍ଟ ତାର ଘରି କଂପି କଂପି ଆସିଲେ । "ଖବରଟା କ'ଣ ତୁମେ କେଭେଁ ଅନୁମାନ କରି ପାରିବ ନାହିଁ । ଆଦୌ ଠଉରେଇ ପାରିବ ନାହିଁ ।"

"ଏତିକି ଅନୁମାନ କରୁଛି ଯେ ଖବରଟା ଶୁଭ ଖବର ।"

"ମାଗ ମୋତେ କହିଲେ, 'ଏ ଖବର ଶୁଣିଲଣି ? ରେଡ଼ିଓ ଶୁଣିଛ ।' ତାଙ୍କ ସ୍ୱରରୁ ଜାଣିଲି ଯେ, କିଛି ମନ୍ଦ ଖବର ଦେବାକୁ ସେ ମୋତେ ଡାକିନାହାନ୍ତି ।"

"ଆଗ ଖବରଟା କ'ଣ କହ, ସେ କିମିତି ଢଙ୍ଗରେ ତୁମକୁ ଖବର ଦେଲେ, ତା'ର ସିଂହାବଲୋକନ କଲେ ହୁଅନ୍ତା ନାହିଁ ?"

"ମୋ' ନିଜର ପରି ବିଶ୍ୱାସ ହେଲା ନାହିଁ ।"

"ମୋତେ କହି ଦେଖ, ମୁଁ ବିଶ୍ୱାସ କରିପାରୁଛି ନା ନାହିଁ ।"

"ପ୍ୟୁଲେନ ସମ୍ମାନ-ପଦ ପାଇଛି ।"

"ଏଁ ? ପ୍ୟୁଲେନ୍ ? ବିଷୟଟା ପରିଷ୍କାର କରି କହିବଟି ।"

"ସେ ପ୍ରବନ୍ଧ 'ପ୍ରତିଯୋଗିତାରେ—ସାରା ରାଷ୍ଟ୍ରରେ—ପ୍ୟୁଲେନ୍ ସମ୍ମାନଯୋଗ୍ୟ ବୋଲି ବିବେଚିତ ହୋଇଛି ।"

"ସତେ ନା, କ'ଣ ?"

"ସତ ହେ, ସତ ! ମୋଟେ ପାଞ୍ଚଜଣ ଏ ସମ୍ମାନ ପାଇଁ ବଛା ହୋଇଛନ୍ତି—ମୋ ପୁଅ ହାତବନ୍ଧା ଘଣ୍ଟାଟିଏ ପାଇବ ଓ ଟେଲିଭିଜନ୍‌ରେ ବାହାରିବାକୁ ସୁଯୋଗ ପାଇବ । ବିଶ୍ୱାସ କରୁଛ ଏ କଥା ? ଆମ ବଂଶରେ ଜଣେ ଏଭଳି ପ୍ରତିଷ୍ଠା ପାଇବା— ।"

"ମୁଁ ତ ମୋ କାନକୁ ବିଶ୍ୱାସ କରି ପାରୁ ନାହିଁ । ତେବେ କ'ଣ ସେ ଟୋକାଟା କିଛି ନ ଜାଣିଲା ପରି ଦେଖାଇ ହୁଏ ଖାଲି ମିଛରେ ? ମନ ମାରି ବସୁଥିଲା ଖାଲି ଆମକୁ ଦେଖାଇବାକୁ । ବେଶ୍ ଅଭିନୟ କରିପାରେ ତ ? ଏବେ ତ ଜଣାଯାଉଛି, ତା' ପ୍ରେମ-ପୁଲକିତ କୋମଳ ପ୍ରାଣଟା ପଥରରେ ଆଦୌ ପିଟାହୋଇ ନଥିଲା ।"

"ସେମିତି ଗୁଡ଼ାଏ ବିଦ୍ରୂପ କରନାହିଁ । ଭଲ କରି ହୃଦୟଙ୍ଗମ କର—ଆମ ପୁଅ ସମଗ୍ର ଯୁକ୍ତରାଷ୍ଟ୍ରର ପାଞ୍ଚଜଣଙ୍କ ଭିତରେ ଜଣେ ହୋଇ ସମ୍ମାନର ପାତ୍ର ହୋଇଛି—ଟେଲିଭିଜନ୍‌ରେ ବି ବକ୍ତୃତା ଦେବ ।"

"ପୁଣି ଗୋଟିଏ ହାତବନ୍ଧା ଘଡ଼ି ବି ପାଇବ—ଘଡ଼ି ଦେଖି ଟାଇମ ଜାଣି ପାରିବ କି ନାହିଁ ଅବଶ୍ୟ ସନ୍ଦେହର କଥା ।"

"ଏଥାନ୍ ! ଏମିତି ଯଦି ବିଦ୍ରୂପ କରିବ, ଲୋକେ କହିବେ, ତୁମେ ଆପଣା ପୁଅକୁ ଈର୍ଷା କରୁଛ ।"

"ଈର୍ଷା କରୁନାହିଁ ଯେ ଏକାବେଳକେ ଆଶ୍ଚର୍ଯ୍ୟ ହେଉଛି । ମୋର ଧାରଣା ଥିଲା, ମୋ ପୁଅର ଗଦ୍ୟ ଲେଖିବାର ଶୈଳୀ ଜେନେରାଲ ଆଇଜେନ-ହାଓ୍ୱାରଙ୍କ ଶୈଳୀ ପରି, ଆଇଜେନ୍ ହାଉଆରଙ୍କ ପାଇଁ ସିନା ଲେଖି ଦେବାକୁ ଲୋକ ଅଛନ୍ତି ! ମୋ ପୁଅର ତ କେହି ନାହାନ୍ତି । ଯା ଲେଖା ପସନ୍ଦ ହେଲା କପରି ?"

"ତୁମକୁ ମୁଁ ଭଲ କରି ଚିହ୍ନେ, ଏଥ ନ୍ ! ପିଲାଙ୍କୁ ନିନ୍ଦାକଲେ ତୁମକୁ ଆନନ୍ଦ ମିଳେ । କିନ୍ତୁ ତାଙ୍କୁ ନଷ୍ଟ କରିବାବାଲା ନିଜେ ତୁମେ । ତୁମେ ଭିତରି ପେଞ୍ଚ କରି ସେମାନଙ୍କୁ ମୋ ଅନ୍ତରାଳରେ ନଷ୍ଟ କରୁଛ । ମୁଁ ପଚାରୁଛି, ସତକରି କହ—ଆଲେନ୍‌ର ଏଇ ପ୍ରବନ୍ଧ ଲେଖିବାରେ ତୁମେ ତା'କୁ ସାହାଯ୍ୟ କରିଛ କି ନାହିଁ ?"

"ମୁଁ ସାହାଯ୍ୟ କରିଛି ? ଆଶ୍ଚର୍ଯ୍ୟ କଥା । ଆଲେନ୍ ତା' ପ୍ରବନ୍ଧ ମୋତେ ଦେଖାଇ ବି ନାହିଁ ।"

"ବେଶ୍, ତା'ହେଲେ ଭଲ ହୋଇଛି । ତା' ପାଇଁ ତୁମେ ଲେଖି-ଦେବାରୁ ସେ ପୁରସ୍କାର ପାଇଛି ବୋଲି ଆଉ ଟେକଟାକ ହୋଇ ପାରିବ ନାହିଁ ।"

"ମୁଁ ଏ ସମ୍ବାଦଟାକୁ ହଜମ କରି ପାରୁନାହିଁ । ଏଥିରୁ ଜଣା ଯାଉଛି, ଆମେ ନିଜ ପିଲାଙ୍କୁ ବି ଚିହ୍ନି ପାରୁନାହୁଁ । ଆଚ୍ଛା, ଫ୍ରାଲେନ୍ ଏ ସମ୍ବାଦ ପାଇ କ'ଣ ହେଉଚି ?"

"ମୟୂର ପରି ଫୁଲେଇ ହୋଇ ନାଚୁଛି । ହେବାର ତ କଥା । ମାର୍ଗି ତ ଏପରି ବିହ୍ୱଳିତ ହୋଇ ଯାଇଥିଲେ ଯେ ଭଲ କରି କଥା କହି ପାରିଲେ ନାହିଁ । ଖବରକାଗଜମାନେ ଫ୍ରାଲେନ୍‌ଠାରୁ ବିବୃତି ଗୁହୁଛନ୍ତି ଛପାଇବାକୁ ; ସବା ଉପରେ ଟେଲିଭିଜନ୍ । ମୋ ପୁଅ ଟେଲିଭିଜନରେ ବାହାରି ତା' ପ୍ରବନ୍ଧ ପଢ଼ିବ । ଜାଣୁଛ ତ, ଆମ ଘରେ ଟେଲିଭିଜନ୍ ସେଟ୍‌ଟାଏ ବି ନାହିଁ ନିଜ ପୁଅର ରୂପକୁ ଥରେ ଟେଲିଭିଜନ୍‌ରେ ଦେଖି-ବାକୁ । ମାର୍ଗି କହିଲେ ତାଙ୍କ ସେଟ୍‌ରେ ଯାଇ ଦେଖିବା । ଆମର ପେଟରୁ ଏଭଳି ସୁଖ୍ୟାତ ପୁଅ ଜନ୍ମ ହେଲା । କେଡ଼େ ଭାଗ୍ୟ ! ଏଥାନ୍, ଆମର ଗୋଟେ ଟେଲିଭିଜନ୍ ସେଟ୍ ରଖିବା ଦରକାର ।"

"ହଁ, ଗୋଟେ କିଣିବା । କାଲି ବଡ଼ସକାଳୁ ଉଠିବା ମାତ୍ରେ ଗୋଟାକ ପାଇଁ ଅର୍ଡ଼ର ଦେବି । ଆଚ୍ଛା, ତୁମେ ସାଙ୍ଗେ ସାଙ୍ଗେ ଗୋଟାଏ ଅର୍ଡର ଦେଇ ଦେବନି ।"

"ଏଥାନ୍, ଆମେ ଏଥିକୁ ସହିବା କି—ଆରେ, ବର୍ତ୍ତମାନ ଯେ ତୁମେ ଷ୍ଟୋର୍‌ର ଖୋଦ୍ ମାଲିକ—ଏକଥାଟା ପୂର୍ବ ପାସୋରି ଦେଇଥିଲି । ଏଭଳି ସଂବାଦ ଶୁଣି ତୁମେ ଭଲା ଚିତ୍ତ ଥୟ କରି ରଖି ପାରିବ ? ଆପଣ ପରିବାରରେ ଏପରି ଖ୍ୟାତିସଂପନ୍ନ ପୁଅ ।".

"ମୋର ଆଶା, ତା'ର ବାପ ମା ହୋଇ ତା' ସଙ୍ଗେ ରହିବାକୁ ଆମେ ଅଯୋଗ୍ୟ ହେବା ନାହିଁ ।"

"ଦେଖ, ତା' କଥାରେ ତୁମେ ଆଉ କିଛି ଖୁଣିବ ନାହିଁ । ତା'ର ଯାହା ମନ ସେ କରୁ । ଚାଲ, ସାଙ୍ଗେ ସାଙ୍ଗେ ଘରକୁ ଫେରିବା । ଆଜି ସଂଧ୍ୟା ୭ଟା ୧୮ ମିନିଟ୍ ଗାଡ଼ିରେ ସେମାନେ ଘରକୁ ଫେରିବେ । ଜାଣୁଛ ତ, ସେତେବେଳକୁ ଆମେ ଯାଇ ଘରେ ପହଞ୍ଚିଥିବା ଦରକାର । ଏକରକମ ସ୍ୱାଗତ ସମ୍ବର୍ଦ୍ଧନା ତ କରିବା ଦରକାର ।"

"ତାଙ୍କ ପ୍ରତ୍ୟାଗମନ ଉପଲକ୍ଷେ ଗୋଟାଏ ପିଠା ବି କରିବା ଦରକାର ।"

"କରିବ ତ, ନିଶ୍ଚୟ କରିବ ।"

"ଏବଂ ଝାଲର୍ କାଗଜର ମାଳ ଗୁନ୍ଥି ଦୁଆର ଆଗରେ ତୋରଣ ବାନ୍ଧିବା ଦରକାର ।"

"ପୁଅକୁ ଈର୍ଷା କରି ଏମିତ ଥଟ୍ଟା ତାମସା କରୁଛ ବୋଧହୁଏ ।"

"ନା, ଆଦୌ ନୁହେଁ । ମୁଁ ଅଭିଭୂତ ହୋଇ ଯାଇଛି । ମୁଁ ସତରେ କହୁଛି, ଘରେ ବାହାରେ ଝାଲର୍ କାଗଜର ମାଳ ବାନ୍ଧିଲେ ଖୁବ୍ ଭଲ ହେବ ।"

"ହଉ ବାନ୍ଧିବା ଯେ, ଘରର ବାହାରେ ନୁହେଁ । ସେମିତି କଲେ, ଆମେ ଦେଖେଇ ହଉଚେ ବୋଲି ସମସ୍ତେ କହିବେ । ହଁ, ମାଗି କହୁଥିଲେ, ଆମେ ଏ ଖବର ନ ଜାଣିଲା ପରି ହେବା । ତେବେ ସ୍ୱାଲେନ୍‌ର ନିଜ ମୁହଁରୁ ଶୁଭସମ୍ବାଦ ପାଇବାକୁ ହୁଅନ୍ତା ।"

"ନା, ଏଥିରେ ମୁଁ ରାଜି ନୁହେଁ । ସେ ହୁଏତ ଲାଜରେ କିଛି କହିବ ନାହିଁ । ବରଂ ତା'ର ସୌଭାଗ୍ୟର ଖବର ରଖିବାକୁ ଆମେ ଖାତିର୍ କରି ନ ଥାଇଁ । ନା, ସେ ଘରକୁ ଆସିଲା ବେଳେ ଆମେ ଆନନ୍ଦଧ୍ୱନି ଓ ଜୟଜୟକାର କରି ତାକୁ ସମ୍ଭୋଳି ନେବା । ତା'ର ବିଜୟ ଉପଲକ୍ଷ୍ୟେ ପିଠା କରିବା । ଯଦି କୌଣସି ଦୋକାନ ଫିଟିଥିବ, ପାଇଲେ କିଛି ଭୁର୍‌ଭୁରି-ବାଣ ନେବାକୁ ମୋର ମନ ।"

"ସଡ଼କ ପାଖ ଦୋକାନମାନଙ୍କରେ—।"

"ନିଶ୍ଚୟ । ଘରକୁ ଫେରିଲା ବେଳେ—ଯଦି ଦୋକାନରେ ସରି ନ ଯାଇ ଥାଏ ।"

ମେଷୀ ମୁହୂର୍ତ୍ତେ ମୁଣ୍ଡ ତଳକୁ କରି ରହିଲେ—ବୋଧହୁଏ ଭଗବାନ୍‌ଙ୍କଠାରେ କୃତଜ୍ଞତା ଜ୍ଞାପନ କଲେ । "ଦୋକାନର ତୁମେ ମାଲିକ ହେଲ । ସ୍ୱାଲେନ୍ ପ୍ରତିଷ୍ଠା ଅର୍ଜିଲା । ଏକା ସାଙ୍ଗେ ଏତେଗୁଡ଼ାଏ ସୌଭାଗ୍ୟ ଆମର ହେବ ବୋଲି କିଏ ଭଲା କଳ୍ପନା କରିଥିଲା ? ଏଥାନ୍, ଘରକୁ ଫେରିବାରେ ଆଉ ବିଳମ୍ବ କରିବା ନାହିଁ । ସେମାନେ ଆସିଲା ବେଳକୁ ଆମେ ଘରେ ଥିବା ଦରକାର । ତମେ ଏମିତି ଗୁହ୍ଁରି କୁଆଡ଼େ ?"

"ହଠାତ୍ ତରଙ୍ଗ ମାଡ଼ି ଆସିଲା ପରି ମୋତେ ଏ ଶବ୍ଦଟା ମାଡ଼ି ପଡ଼ୁଛି । ଅନ୍ୟ କାହା କଥା ଆମେ କେତେ ଅଳ୍ପ ଜାଣୁଛେ । ମୋ ପେଟ କ'ଣ ହୋଇଯାଉଛି । ମୋର ମନେ ପଡ଼ୁଛି, ଥରେ କ୍ରୀସ୍‌ମାସ୍‌ରେ ମୁଁ ଉପଚ ହେବା ପରିବର୍ତ୍ତେ ମତେ ହଂସପାଖି ରୋଗ ଧରିଲା ।"

"ସେ କ'ଣ ?"

"ଏ ରୋଗଟାକୁ ତି ଜେଜେନାମି ହଂସପାଖି ବୋଲି ନିଦାନ କଲେ ।"

"ହଂସପାଖି କି ରୋଗ ମ ?"

"ଏ ରୋଗ ଧରିଲେ ମଣିଷ ବସ୍ତୁରେ ସେ ମରି ପୋତା ହୋଇଛି ଓ ତା' କବର ଉପରେ ପାତିହଂସ ଗୃଲୁଛନ୍ତି ।"

"ଓଃ, ଏଇଆ ! ଥାଉ, ହଂସପାଖି ରୋଗ ତୁମକୁ ନ ହେଉ । ମୁଁ ବସ୍ତୁରୁଛି, ଆମ ସାରା ଜୀବନରେ ଆଜି ଦିନଟା ସବୁଠାରୁ ବଡ଼ ଶୁଭ ଦିନ । ଏକଥା ଜାଣି ଭଗବାନ୍‌ଙ୍କୁ ଧନ୍ୟବାଦ ନ ଦେଲେ ଆମକୁ କୃତଘ୍ନତା ଦୋଷ ଲାଗିବ । ଏଥାନ୍, ତମେ 'ସେମିତି ମୁହଁ ନ କର ହସ, ହଂସପାଖି ରୋଗକୁ ଦେହରୁ ଝାଡ଼ିଦିଅ । ବଡ଼ ଅଦ୍ଭୁତ ରୋଗଟାଏ ଆବିଷ୍କାର କଲ—ହଂସପାଖି ! ଯାଅ, ହୋଟେଲର ପାଉଣା ଦେଇ ପକାଅ । ମୁଁ ଇତିମଧ୍ୟରେ ଜିନିସପତ୍ର ସଜଡ଼ାସଜଡ଼ି କରି ଦେଉଛି ।"

ମୁଁ ଯାଇ ମୋଟାମୋଟ ହୋଇ ପିଣ୍ଡୁଳା ହୋଇଥିବା ନୋଟ୍ ସଳଖି ସେଇଥିରେ ହୋଟେଲର ପାଉଣା ଦେଇ ପକାଇଲି ଓ ମିଷ୍ଟର୍ ଚୁଟୁ ଦ୍ରାଙ୍କୁ ପଗୃରିଲି, "ଆପଣଙ୍କ ଉପହାର ସାମଗ୍ରୀ ଭିତରେ ଚନ୍ଦ୍ରଉଦିଆ କାଠି ଅଛି କି—ଭୂର୍ଭୁର ବାଣ ?"

"ଅଛି ବୋଧହୁଏ—ଦେଖୁଛି...ହେଇଟି ଏତିକି ଥିଲା । କେତୋଟା ଦେବ ।"

"ଯେତିକି ଅଛି ସବୁ ଦିଅନ୍ତୁ ।" ମୁଁ କହିଲି, "ଆମ ପୁଅ ସୁଖ୍ୟାତି ଅଜିଛି ।"

"ସତେ ? କି ରକମ ସୁଖ୍ୟାତି ?"

"ସୁଖ୍ୟାତି ତ ଗୋଟାଏ ରକମ । କି ରକମ ବୋଲି କ'ଣ ପଗୃରୁଛନ୍ତି ?"

"ଆଚ୍ଛା, ଡକ୍ କ୍ଲର୍କ୍ ଯେମିତି ସୁଖ୍ୟାତି ଅଜଚ୍ଛନ୍ତି ସେଇମିତି ?"

"ବା ରେସ୍‌ମ୍ୟାନ୍ ଓ ଡଲଞ୍ଜିର୍‌ଙ୍କ ଦଳ ।"

"ଆପଣ ରହସ୍ୟ କରୁଛନ୍ତି !"

"ସେ ଟେଲିଭିଜନ୍‌ରେ ଦର୍ଶନ ଦେବ ।"

"କେଉଁ ଷ୍ଟେସନ୍‌ରୁ ? କେତେବେଳେ ?"

"ଏ ପର୍ଯ୍ୟନ୍ତ ମୁଁ ବୁଝି ନାହିଁ ।"

"ମୁଁ ତାଙ୍କର ପ୍ରତୀକ୍ଷାରେ ରହିବ । ନାମ କ'ଣ ତାଙ୍କର ?"

"ମୋ'ର ଯେଉଁ ନାମ, ସେଇ ନାମ—ଏଥାନ୍ ଯ୍ବାଲେନ୍ ହ'ଲ ; ଯ୍ବାଲେନ୍ ବୋଲି ଡାକୁ ।"

"ବଡ଼ ଭଲ କଥା । ଅପଣଙ୍କୁ ଓ ମିସେସ୍ ଯ୍ବାଲେନ୍‌ଙ୍କୁ ପାଇ ଆମେମାନେ ସମ୍ମାନିତ ହୋଇନ୍ତୁ ।"

"ନା, ମିସେସ୍ ହ'ଲ ।"

"ହଁ, ସତେ ତ । ଭୁଲ ହୋଇଗଲା । ମୋର ଅ.ଶା, ଆପଣ ପୁଣି ଆସିବେ । ବହୁ ବହୁ ପ୍ରତିଷ୍ଠିତ ଲୋକ ଆମ ଏଠାରେ ଆସି ରହି, ଯାଇଛନ୍ତି । ଏଠାର ନିର୍ଜନତା ଓ ଶାନ୍ତି ପାଇଁ ସେମାନେ ଆସନ୍ତି ।"

ମେଷ୍ଟ ପ୍ରତ୍ୟାବର୍ତ୍ତନ କାଳର ସୁନେଲି ସ୍ବପ୍ନରେ, ଆତ୍ମସନ୍ତୋଷରେ ସିଧା ହୋଇ ବସିଥାନ୍ତି । ମଥାମଣିରେ ନିଜକୁ ଓ ସ୍ବପ୍ନକୁ ଆଲୋକିତ କରି ଧୀରେ ଧୀରେ ଯାଉଥିବା ସାପ ଦଳ ମଝିର ସବୁ ସ୍ବପ୍ନରେ ଖେଳୁଥାନ୍ତି , ଆଉ ଗାଡ଼ି ତା'ର ଭିତରେ ଗୁଳିଥାଏ ।

ପୂର୍ବ ବାକ୍‌ସେ ଚନ୍ଦ୍ରଉଦ୍ଧଆ ପାଇଗଲା । ଶହକରୁ ବେଶୀ ହେବ ।

"ଭଲ କାର୍ଯ୍ୟଟିଏ କଲ, ପ୍ରିୟ ! ଏଇ ସିନା ତୁମର ଯୋଗ୍ୟ କାମ । ବେକର୍ ଦମ୍ପତି ଘରକୁ ଫେରିଲେଣି କି ନାହିଁ, କେଜାଣି ?"

— — —

# ଊନବିଂଶ ପରିଚ୍ଛେଦ

ମୋ ପୁଅ ବେଶ୍ ଉଦାର ଭାବ ଦେଖାଇଲା । ସେ ପ୍ରସନ୍ନ ଓ ଆମ୍ଭମାନଙ୍କ ପ୍ରତି ଅନୁଗ୍ରହଶୀଳ ଜଣାଯାଉଥାଏ । ସେ ପ୍ରତିହିଂସା କଲା ନାହିଁ, ପ୍ରାଣଦଣ୍ଡାଦେଶ ଦେଲା ନାହିଁ । ନିଜ ଗୌରବ ଓ ଆମ୍ଭମାନଙ୍କ ଅଭିନନ୍ଦନ ସେ ନିଜର ଯଥାର୍ଥ ପ୍ରାପ୍ୟ ସ୍ୱରୂପ ଗ୍ରହଣ କରୁଥାଏ ; ଅତ୍ୟଧିକ ଆତ୍ମଗରିମା ଦେଖାଉ ନ ଥାଏ କି ଅତିମାତ୍ରାରେ ବିମୀତ ହେଉ ନ ଥାଏ । ଶହକ ଯାକ ଚନ୍ଦ୍ରଉଦ୍ୱଆ ଜାଲ କାଳାକାଠ ପଡ଼ିଯିବା ପୂର୍ବରୁ ସେ ଗମ୍ଭୀର ଭାବେ ବୈଠକଖାନାରେ ନିଜ ଚଉକି ଆଡ଼େ ଅଗ୍ରସର ହେଲା ଓ ବସିବା ମାତ୍ରେ ନିଜ ରେଡ଼ିଓକୁ ସୁଇଚ୍ କରିଦେଲା । ପରିଷ୍କାର ଜଣା ପଡୁଥାଏ, ଭଗବତ୍‌ଅଂଶ ଗ୍ରହଣ କରି ସେ ଆମ୍ଭମାନଙ୍କ ସମସ୍ତ ଅପରାଧ କ୍ଷାଳନ କରିଥାଏ । ସାମାନ୍ୟ ପିଲା ଜଣେ ଏଭଳି ଗମ୍ଭୀର ମାଧୁର୍ଯ୍ୟରେ ଏତେ ବଡ଼ ଗୌରବ ବରଦାସ୍ତ କରିବା ମୁଁ ଅନ୍ୟ କାହାରିଠାରେ ଦେଖି ନାହିଁ ।

ସେ ରାତିଟା ବାସ୍ତବିକ ବଡ଼ ଆନନ୍ଦ ଓ ବିସ୍ମୟପୂର୍ଣ୍ଣ ସମୟ ହେଲା । ଯ୍ୟାଲେନ୍ ଏଡ଼େ ସ୍ୱଚ୍ଛନ୍ଦଭାବେ ସ୍ୱର୍ଗକୁ ଉଠିଯିବାର ଦେଖି ତ ଆଶ୍ଚର୍ଯ୍ୟ ହୋଇଥିଲି; ଭାଇର ମହତ୍ତ୍ୱ ଦେଖି ଏଲେନ୍‌ର ଯେଉଁ ପ୍ରତିକ୍ରିୟା ତାହା ଦେଖି ମୋର ବିସ୍ମୟ ବଳିପଡ଼ିଲା । ଗତ କେତେବର୍ଷ ତା'ର ଗତିବିଧି ଖୁବ୍ ତୀକ୍ଷ୍ଣଭାବେ ଲକ୍ଷ୍ୟ କରିବାକୁ ବାଧ ହୋଇ ମୁଁ ସିଦ୍ଧାନ୍ତ କରିଥିଲି ଯେ, ମିସ୍ ଏଲେନ୍‌ଙ୍କ ପ୍ରକୃତିଟା ଈର୍ଷାର ଝଡ଼ଝଞ୍ଜାରେ ଛିନ୍ନଛିନ୍ନ ହୋଇଯିବ;ତେଣୁ ମୁଁ ଆଶଂକା କରୁଥିଲି ଯେ, ସେ ତା' ଭାଇର ଗୌରବକୁ କ୍ଷୁର୍ଣ୍ଣକରିବା ସକାଶ କିଛି ନା କିଛି କରିବ । କିନ୍ତୁ ସେ ଯେଭଳି ଆଚରଣ କଲା ତାହା ଦେଖି ମୁଁ ବୋକା ବନିଗଲି । ସେ ତା ଭାଇର ବିଜୟୋତ୍ସବ ପାଳନ କରିବାରେ ଆଗୁଆ ହୋଇଗଲା । ସେମାନେ ୭୭ ନମ୍ବର ଷ୍ଟ୍ରୀଟ୍‌ର ଗୋଟିଏ ସୁସଜ୍ଜିତ

କାମସ୍ତରେ କସିଥିଲେ, ତା' ପୂର୍ବରୁ ସନ୍ଧ୍ୟାବେଳ ତମାମ ଯାଦୁବିଦ୍ୟାର ପ୍ରଦର୍ଶନୀ ଦେଖିବାରେ କଟିଥିଲା । ତା'ପରେ ସେମାନେ ବସି ବିଶେଷ ମନୋଯୋଗ ନ ଦେଇ କେନ୍ଦ୍ର ରେଡ଼ିଓ ଷ୍ଟେସନ୍‌ର ଟେଲିଭିଜନ୍ କାର୍ଯ୍ୟକ୍ରମ ଦେଖୁଥାନ୍ତି । ସନ୍ଧ୍ୟାବେଳର ଶେଷ ସମ୍ବାଦ ବିବରଣୀ ପ୍ରସାରିତ ହେଲା । ତା'ର ଭିତରେ ପ୍ରସାରିତ ହେଲା ସ୍ମାଲେନ୍‌ର ବିଜୟବାର୍ତ୍ତା— ଏକଥା ଏଲେନ୍ ଆମ୍ଭମାନଙ୍କୁ ବିସ୍ତାରିତ ଭାବେ ଶୁଣାଇଲା । ସମ୍ବାଦ ଶୁଣି ତାଙ୍କ ଭିତରୁ କଏ କ'ଣ କହିଲା, କଏ କେମିତି ହସୁଥାଏ ବର୍ଣ୍ଣନା କରି ଏଲେନ୍ କହିଲା, ଆମ୍ଭେମାନେ ଏ ସଂବାଦରେ ଏତେ ଚକିତ ହୋଇ ଯାଇଥିଲୁଁ ଯେ ଗୋଟିଏ ପକ୍ଷୀରେ ପେଲି ଦେଲେ ପଡ଼ି ଯାଇଥାନ୍ତୁ । ଆଉ ଗ୍ରହଜଣ ମହାସ୍ଥାନ୍ ବାଳକଙ୍କ ସଙ୍ଗେ ସ୍ମାଲେନ୍ କପରି ଟେଲିଭିଜନରେ ବାହାରିବ, ଲକ୍ଷ ଲକ୍ଷ ଲୋକ ତା' ଆଡ଼କୁ ଚକ୍ଷୁସ୍ଥିର କରି ଚାହିଁ କପରି କାନ ଡେରିଥିବେ—ଏକଥା ଏଲେନ୍ ବର୍ଣ୍ଣନା କଲା ବେଳେ, ସ୍ମାଲେନ୍ ମୂକ ପରି ଶାନ୍ତ ଭାବେ ବସିଥାଏ ; ବର୍ଣ୍ଣନା କରୁ କରୁ ଏଲେନ୍ ଟିକଏ ଟିକଏ ରହିଗଲେ ମେଷ୍ଟ୍ର ତୃପ୍ତିରେ ଟୋକରା ମାରି ତାକୁ ଆଗକୁ ମଡ଼େଇ ଦେଉଥାନ୍ତି । ମୁଁ ମାର୍ଗ ସ୍ୟୁଙ୍ଗ୍—ହାଣ୍ଟଙ୍କ ଆଡ଼କୁ ଚାହିଁଲି । ତାସ-କୌଶଳ ଦେଖାଇଲା ବେଳ ପରି ସେ ଆତ୍ମରତା ହୋଇ ରହିଥାନ୍ତି । ଆମ ବୈଠକଖାନାରେ ଗୋଟାଏ କେମିତି ଅସ୍ୱାଚ୍ଛନ୍ଦ୍ୟ ନିସ୍ତବ୍ଧତା ରାଜତ୍ୱ କରୁଥାଏ ।

ମୁଁ କହିଲି, "ଆଉ ଅନ୍ୟ ଗତି ନାହିଁ । ଏତେବେଳେ ଖାଣ୍ଟି ବର୍ଟ୍ ଚେରିର ଅଣ୍ଡା ଭଅର୍ ଏକାନ୍ତ ପ୍ରୟୋଜନ ।"

"ଏଲେନ୍ ଯାଇ ଆଣିବ । ଆରେ ! ଏଲେନ୍ ଗଲା କୁଆଡ଼େ ? ସେ ତ ଧୂଆଁ ପରି ହେଇଟି ଅଛି, ହେଇଟି ନାହିଁ' ହେଉଛି !"

"ମାର୍ଗ ସ୍ୟୁଙ୍ଗ୍-ହାଣ୍ଟ୍ ଅଥୟ ହେଲାପରି ଠିଆ ହେଲେ ଓ କହିଲେ, "ବର୍ତ୍ତମାନର ଉତ୍ସବଟା ତମ ପରିବାରରେ ଆବଦ୍ଧ ହେବା ଉଚିତ । ମୋତେ ବିଦାୟ ନେବାକୁ ପଡ଼ିବ ।"

"କିନ୍ତୁ ମାଗ ! ତୁମେ ଯେ ଏ ଉତ୍ସବର ମୂଳରେ । ଟିକଏ ରୁହ । ଆଲୋ ଏଲେନ୍, କୁଆଡ଼େ ଗଲୁ ?"

"ମେଗ୍ସ ! ମୋତେ ମୁକ୍ତ ଦିଅ । ମୁଁ ଟିକିଏ ହାଲିଆ ହୋଇ-ଯାଇଛି ବୋଲି କହିବାକୁ ମୋତେ ବାଧ୍ୟ କରନାହିଁ ।"

"ଜାଣୁଚି ଗୋ ସଖୀ ! ମୋ ପାଇଁ ବହୁତ ଖାଟିହେବାକୁ ପଡ଼ୁଛି ତୁମକୁ । ମୋ ସୁଖରେ ବିଭୋର ହୋଇ ତୁମ କଷ୍ଟ ମୁଁ ପାସୋରି ପକାଉଛି । ବେଶ୍ ଆରାମ ଆମେ ଉପଭୋଗ କଲୁଁ । ତୁମେ କଳ୍ପନା କରି ପାରିବ ନାହିଁ । କିନ୍ତୁ ତାହା ତୁମରି ଯୋଗୁଁ । ତୁମଠାରେ ମୁଁ ସବୁବେଳେ କୃତଜ୍ଞ ରହିବି ।"

"ମୁଁ ତ କିଛି କଷ୍ଟ ପାଇନାହିଁ । ତୁମ ପିଲାଙ୍କ ସଙ୍ଗେ କିଛୁସମୟ ପିବାର ସୁଯୋଗ ନ ପାଇଥିଲେ ଅବ୍‌ଶୋଷ ରହି ଯାଇଥାନ୍ତା ।"

ଶୀଘ୍ର ଘରକୁ ଫେରିବାକୁ ମାଗି ବିଦ୍ କଲେ । ସେ ଆମ ଦୁହିଙ୍କର ଓ ଯ୍ୟାଲେନ୍‌ର ଧନ୍ୟବାଦ ଗ୍ରହଣ କରି ତରତରରେ ପଳାଇଗଲେ ।

ମେରି ନମ୍ର ସ୍ୱରରେ କହିଲେ, "ଷ୍ଟୋର୍ କଥା ତ ତାଙ୍କୁ କହିଲେ-ନାହିଁ !"

"ସେ କଥାଟା ଥାଉ । ମ୍ୟାରୁଲେଙ୍କ ତୁଣ୍ଡରୁ ସେ ଏକଥା ଶୁଣିବା ଉଚିତ । ଆମେ ମ୍ୟାରୁଲେଙ୍କ ଅଧିକାରରେ କାହିଁକି ହସ୍ତକ୍ଷେପ କରିବା ? ଏବେ ଏଲେନ୍ ଗଲା କୁଆଡ଼େ ?"

ମେଗ୍ସ କହିଲେ, "ସେ ଯାଇ ଶୋଇ ପଡ଼ିଲାଣି । ଷ୍ଟୋର୍ ବିଷୟରେ ଯାହା ଅଁ-କହିଲ ପ୍ରିୟତମ, ତାହା ଠିକ୍ । ଠିକ୍ ବିଚାର କରି ଏ ସଂବାଦଟା ତରତରରେ ମାର୍ଗିକୁ କହିଲ ନାହିଁ । ଆଉ ଯ୍ୟାଲେନ୍ ! ଦିନଯାକ ବହୁତ ଖାଟିଚକଟି ହୋଇଚୁ ବାପା, ଶୋଇବା ବେଳ ହେଲାଣି, ଯା ଶୋଇବୁ ।"

ଯ୍ୟାଲେନ୍ ଅନୁଗ୍ରହ କଲା ପରି କହିଲା, "ମୋର ମନ ହେଉଛି, ଆଉ ଟିକିଏ ଏଠି ବସିବି ।"

"କିନ୍ତୁ ତୋ'ର ଯେ ବିଶ୍ରାମ ଦରକାର, ବାପ !"

"ମୁଁ ଏଇଠି ବସି ବିଶ୍ରାମ କରୁଛି ।"

ମେଗ୍ସ ସାହାଯ୍ୟ ପାଇଁ ମୋ ଆଡ଼କୁ ଚାହିଁଲେ । ମୁଁ କହିଲି, "ଏଇପରି ବେଳେ ମଣିଷର ଆତ୍ମାପୁରୁଷ ଛଟପଟ ହୁଏ । ଗୁଡ଼ାଏ କୁଡ଼େଇ

ହେଲେ ହୁଅନ୍ତା । ନ ହେଲେ ନାଇଁ ବସିଥାଉ ; ଆମ ଉପରେ ବି ବିଜୟ ହାସଲ କରିବାକୁ ତାକୁ ସୁଯୋଗ ଦିଅ ।"

"ଗ୍ରେଟ ପିଲ୍‌ଟାଏ, କେଡ଼େ ଅମାଣିଆ ଦେଖ । ତା'ର ତ ପୁଣି ବିଶ୍ରାମ ଦରକାର ।"

"ତା'ର ବହୁତ କିଛି ଦରକାର ; କିନ୍ତୁ ଦରକାର ତାଲିକାରେ 'ବିଶ୍ରାମ' ନାହିଁ ।"

"କିନ୍ତୁ ସମସ୍ତେ ତ ଜାଣନ୍ତି ପିଲାଙ୍କର ବିଶ୍ରାମ ଦରକାର ।"

"ସମସ୍ତେ ଯାହା ଜାଣନ୍ତି, ଅନେକ ସମୟରେ ତାହା ଭୁଲ ବୋଲି ପ୍ରମାଣିତ ହୁଏ । ଆଚ୍ଛା, କେବେ କୌଣସି ପିଲା ବିଶ୍ରାମ ନ ପାଇ ଗୁଡ଼ାଏ ପରିଶ୍ରମ କରିବାରୁ ମରିବାର ଦେଖିଛ ? ନା—ତାହା ବଡ଼ ମଣିଷଙ୍କର ଏକଚାଟିଆ ଅଧିକାର । ପିଲାମାନଙ୍କର ନିଜ ପ୍ରୟୋଜନ ବୁଝିବାକୁ ଯଥେଷ୍ଟ ବିଚକ୍ଷଣତା ଅଛି । ତାଙ୍କର ଯେତେବେଳେ ବିଶ୍ରାମ ଦରକାର, ସେତେବେଳେ ସେମାନେ ଠିକ୍ ବିଶ୍ରାମ କରନ୍ତି ।"

"କିନ୍ତୁ ଅଧରାତିକୁ ବଳି ପଡ଼ିଲାଣି ପରା ?"

"ହେଲେ କ'ଣ ହେଲା, ପ୍ରିୟେ ! ସେ ସ୍ୱଚ୍ଛନ୍ଦରେ କାଲି ଦି'ପହର ଯାଏଁ ଶୋଇ ପାରିବ । କିନ୍ତୁ ତୁମେ ଓ ମୁଁ ସକାଳେ ଛ'ଟାରେ ଉଠିବାକୁ ବାଧ୍ୟ ।"

"ତେବେ କ'ଣ କହୁଛ, ତୁମେ ଶୋଇବାକୁ ଯିବ ଓ ସେ ଏଇଠି ଏମିତି ବସିଥିବ ।"

"ତା'କୁ ଜନ୍ମ ଦେଇ ଆମେ ଯେଉଁ ଅପରାଧ କରିଛେ, ତା'ର ପ୍ରତିଶୋଧ ନେବାକୁ ସେ ଚାହେଁ ।"

"କ'ଣ ଗୁଡ଼ାଏ କହୁଛ ମୁଁ କିଛି ବୁଝିପାରୁ ନାହିଁ । ହଇଏ, ପ୍ରତିଶୋଧ କୋଉଥିକି ?"

"ତୁମେ ତ ରଗିଲା ପରି ହେଲଣି । ତୁମ ସଙ୍ଗେ ଗୋଟାଏ ସନ୍ଧି କରିବା ଦରକାର ।"

"ପ୍ରକୃତରେ ରାଗୁଛି ତ । ତୁମେ ନିର୍ବୋଧ ପରି ଗୁଡ଼ାଏ ଗପୁଛ ।"

"ଆମେ ଶୋଇବାକୁ ଯିବାର ଅଧଘଣ୍ଟାକ ଭିତରେ ନଘ ଯଦି ଗୁଳୁ ଗୁଳୁ ହୋଇ ତା' ବସାକୁ ନ ଯାଏ ତେବେ ମୁଁ ତୁମକୁ ୨୩ କୋଟି, ୫୦ ଲକ୍ଷ, ୪ ହଜାର, ଏକଶହ ତେତିଶ ଟଙ୍କା ଓ ଅନେଶତ ପଇସା ଦେବି ।"

ଦୁର୍ଭାଗ୍ୟକୁ ମୁଁ ହାରିଲି ; ତେଣୁ ଏତକ ଟଙ୍କା ମେଗ୍ଙ୍କୁ ଦେବାକୁ ମୁଁ ନ୍ୟାୟତଃ ବାଧ୍ୟ । ଆମେ ପୁଅଠାରୁ ବିଦାୟ ନେଇ ଉପରକୁ ଆସିବା ପରେ, ମୋ' ପ୍ରତିଷ୍ଠା-ପ୍ରାପ୍ତ ପୁଅର ପାଦାଘାତରେ ସିଢ଼ି କଟ କଟ ହେଲା ।

ମେଗ୍ ମୋତେ କହିଲେ, "ତୁମ କଥା ସତ ହେଲେ ତୁମ ଉପରେ ମୋର ରାଗ ହୁଏ ।" ମୋର ମନେହୁଏ, ରାତିଯାକ ମୋ କଥା ଶୁଣିବାକୁ ସେ ନିଜକୁ ତିଆରି ସାରିଥିଲେ ।

ମୁଁ କହିଲି, "ନାହିଁ ପ୍ରିୟେ, ମୋ କଥା ଠିକ୍ ହୋଇନାହିଁ । ମୁଁ ପାଞ୍ଚ ମିନିଟ୍‌ରେ ହାରିଛି । ମୁଁ ନ୍ୟାୟତଃ ମୋ' ହାରିବା କଥା ମନେ ରଖି ଦଣ୍ଡ ଦେବାକୁ ପ୍ରସ୍ତୁତ ଅଛି ।"

ସାଙ୍ଗେ ସାଙ୍ଗେ ତାଙ୍କର ନିଦ ହୋଇଗଲା । ଏଲେନ୍ ଯେତେ-ବେଳେ ଛପିଛପି ସିଢ଼ିରେ ତଳକୁ ଗଲା, ସେତେବେଳକୁ ମେଗ୍ ଶୁଣିବାର ବହୁତ ଦୂରରେ । କିନ୍ତୁ ମୁଁ ଶୁଣିଲି । ଏଲେନ୍ ଓହ୍ଲାଇଲା ବେଳକୁ ମୁଁ ଅନ୍ଧାରରେ ମୋ ନାଲି ଦାଗମାନଙ୍କୁ ନିରୀକ୍ଷଣ କରୁଛି । ମୁଁ ଏଲେନ୍ ପଛରେ ଗଲି ନାହିଁ, କିନ୍ତୁ ମୋ କାନ ଯାଇଥାଏ । ମୁଁ ଶୁଣିଲି, ଆଲମାରିର କୋଳପରେ ପିତଳ ଗୁବର ଠୁକ୍ ଶବ୍ଦ ; ଜାଣିଲି, ମୋ ଝିଅ ମନ୍ତ୍ରଶିଳାକୁ ସ୍ପର୍ଶ କରି 'ତା' ଅନ୍ତରର ବ୍ୟାଟେରୀରେ ନୂତନ ଶକ୍ତି ଦେଇ ଶକ୍ତି ଆହରଣ କରୁଛି ।

ମୋ ନାଲିଦାଗଗୁଡ଼ାକ ଆଜି ଖୁବ୍ ଚଞ୍ଚଳ ହୋଇଥାନ୍ତି ; ସେମାନେ ଏଣେ ତେଣେ ଦଉଡ଼ା ଦଉଡ଼ି କରୁଥାନ୍ତି, କିନ୍ତୁ ତାଙ୍କ ଉପରେ ମୁଁ ଏକାଗ୍ର ଦୃଷ୍ଟି ହାଣିଲା ବେଳକୁ, ପଳାଇ ଯାଇ ଆତ୍ମରକ୍ଷା କରୁଥାନ୍ତି । ବୃଦ୍ଧ କପ୍ତାନ୍ ମୋ ପାଖକୁ ଆସିବାକୁ ପରାଙ୍ମୁଖ ହୋଇଥାନ୍ତି । ଇଷ୍ଟର ଦିନୁଁ, ସେ କେବେହେଲେ ପରିଷ୍କାର ଭାବେ ମୋତେ ଦେଖା ଦେଇନାହାନ୍ତି । ମୋ ମାଉସୀ ହେରିଏଟ କହନ୍ତି, "ସ୍ୱର୍ଗରାଜ୍ୟ ଥିବେ

ଯେଇ ।" ଏକଥାରେ ମୁଁ ବିଶ୍ୱାସ କରେ ନାହିଁ । ମୁଁ ଜାଣେ, ବୃଦ୍ଧ କପ୍ତାନ୍ ମୋ'ଠାରୁ ଏତେଗୁଡ଼ାଏ ଦୂରରେ ନାହାନ୍ତି ; କିନ୍ତୁ ମୋ'ର ମୋ ନିଜ ସଙ୍ଗେ ଅପଡ଼ ହେଲେ, ସେ ପାଖରେ ଥାଇ ମଧ୍ୟ ମୋ ଆଗକୁ ଆସିବାକୁ ଚାହାନ୍ତି ନାହିଁ । ବୃଦ୍ଧ କପ୍ତାନ୍‌ଙ୍କ ଆସିବା ନ ଆସିବା ଦେଖି, ମୋର ମୋ ନିଜ ସଙ୍ଗେ ପ୍ରୀତି ଅଛି ନା ନାହିଁ ମୁଁ ଜାଣିପାରେ ।

ଏ ରାତିରେ ମୁଁ ବୃଦ୍ଧ କପ୍ତାନ୍‌ଙ୍କୁ ଜବରଦସ୍ତି ଆଣିବାକୁ ବସିଲି । ମୁଁ ହଲଚଲ ନ ହୋଇ ସିଧା ହୋଇ ପଡ଼ି ରହିଲି, ଉପରକୁ ମୁହଁକରି, ଶେଯର ମୋ ପାଖ ଶେଷ ମୁଣ୍ଡେ । ମୋ' ଶରୀରର ସବୁ ମାଂସପେଶୀକୁ ଟାଣି ଦେଲି, ବିଶେଷ କରି ମୋ ବେକ ଓ ଦାନ୍ତପାଟିର ମାଂସପେଶୀକୁ , ହାତ ଦୁଇଟିକୁ ମୁଠାକରି ପେଟକୁ ଚିପି ଦେଲି । ଏଥର ତାଙ୍କର ଆଉ ଉପାୟ ନଥିଲା ; ସେ ବାହାରିଲେ—କ୍ଷୀଣଦୃଷ୍ଟି ଛୋଟ ଛୋଟ ଆଖି ଦୁଇଟି, ମୁନିଆ ମୁନିଆ ଧଳା ନିଶ ହି'ପଟ, ଆଉ ଆଗକୁ ଝୁଙ୍କି ପଡ଼ିଥିବା ଖୁଆ ହି'ଟା । ଏହି ଖୁଆକୁ ଦେଖି ମନେ ହୁଏ, ଏକ ସମୟରେ ତାଙ୍କ ଶରୀରରେ ବଳ ଥିଲା, ଓ ସେ ବଳର ସେ ବେଶ୍ ଉପଯୋଗ କରିଥିଲେ । ତାଙ୍କୁ ଜବରଦସ୍ତି ତାଙ୍କ ନେଳି ଟୋପିଟା ପିନ୍ଧାଇଲି, ଓ ଟୋପି ଉପରେ ଗ୍ରେଟିଆ ଜକଜକ ଚୂଳଟା ମଧ୍ୟ । ଏହି ଚୂଳରେ ଦୁଇଟା ସୁନାତିଆରି ନଙ୍ଗର ମୂନାକୁ କୌଶଳରେ ଖଞ୍ଜି 'ହ' ଅକ୍ଷରଟା ରଚିତ ହୋଇ ଥାଏ । ଏ ଟୋପିଟା ସେ ପ୍ରାୟ ଲଗାନ୍ତି ନାହିଁ , ଆଜି ମୋ ବାଧ-ବାଧକତାରେ ଲଗାଇଲେ । ବୁଢ଼ାଟାର ଆସିବାକୁ ଆଦୌ ଇଚ୍ଛା ନଥାଏ , ଟାଣିଟାଣି ଆଣିଲି ଓ ନେଇ ପୁରୁଣା ବନ୍ଦରର ଭୁଷୁଡ଼ି ପଡ଼ିଥିବା ଉପକୂଳ ପାଚିରୀ ପାଖରେ ନେଇ ବସାଇଲି—ଠିକ୍ ମୋ ଆସ୍ଥାନର ପାଖକୁ ଲାଗି । ତାଙ୍କୁ ପଥର ଉପରେ ଟାଣି କରି ବସାଇ ତାଙ୍କ ହାତ ପାପୁଲି ଦୁଇଟାରେ ଓଲଟ ଅଞ୍ଜଳି କରି, ତାଙ୍କ ଭଳି ହାଡ଼ ବାଡ଼ିର ଗୋବ ଉପରେ ଥୋଇଲି । ବାଡ଼ିଟା କମ୍ ଶକ୍ତ ନୁହେଁ, ପିଟି ଦେଲେ ହାଣ୍ଡି ଶୋଇ ପଡ଼ିବ । ସେ ଥୟ ହୋଇ ବସିଲା ପରେ ମୁଁ କହିଲି ।

"ମୋ ମନରେ ଘୃଣା ଓ ବିଦ୍ୱେଷ ଜାତ କରିବାକୁ ଗୋଟାଏ କିଛି ପଦାର୍ଥ ଦରକାର । ତୁମେ ମୋ ପାଇଁ ଦୁଃଖିତ ଓ ମୋର ମନର କଥା ବୁଝ, ମୋତେ ଘୃଣାର ସରଞ୍ଜାମ ଓ ଘୃଣା ପାଇଁ ଖୁରାକ ଯୋଗାଅ ।

ମୋ ମନରେ ନିଜ ଉପରେ ଯେଉଁ ବିତୃଷ୍ଣା ଆସିଛି ତା'କୁ ଦୂର କରିବା ପାଇଁ ବିଦ୍ୱେଷର ବାହ୍ୟ ଓ ବାସ୍ତବ ପାଣି ଦରକାର ।"

ସ୍ମୃତିର ଜନନ ଶକ୍ତିଅସୀମ । ଗୋଟାଏ ସ୍ପଷ୍ଟ, ନିର୍ଦ୍ଦିଷ୍ଟ ବସ୍ତୁ ତାକୁ ଧରାଇ ଦିଅ, ଚାଲିବ ତା'ର ଜନନ କ୍ରିୟା—ଚାଲିଲି ତ, ଗ୍ରାମୋଫୋନର ରେକର୍ଡ଼ ପରି ଏହା ଆଗକୁ ବା ପଛକୁ ତୁମ ଇଚ୍ଛା ଅନୁସାରେ ଚାଲିବ । ମୋର ସଙ୍କେତ ପାଇ ବୃଦ୍ଧ କେପ୍ଟାନଙ୍କ ହାତ ହଲିଲା । ସେ ତାଙ୍କ ବାଡ଼ି ଟେକି ଦେଖାଇଦେଲେ, "ସମୁଦ୍ର ଢେଉ ରୋକିବାକୁ ଯଉଁ ପାଚେରି ହୋଇଛି, ତା' ଆରପଟେ, ତ୍ରିକୋଣ ପାହାଡ଼ ନାସିଟାକୁ ଦେଖ, ସେଇଠାରୁ ପର୍ଚ୍ଚି ପଏଣ୍ଟର ମୁଣ୍ଡକୁ ଗାର ଟାଣ, ସେଇ ଗାରକୁ ସମୁଦ୍ର ଆଡ଼କୁ ଲମ୍ବାଇ ଦିଅ । ସେଇ ଗାର ସିଧା, ଅଧ-କେବଲ୍ ଦୂରରେ, ସେ ବୁଡ଼ିଛି—ସେ ମାନେ, ତା'ର ଆଉ ଯେଉଁତକ ବାକି ଅଛି ।"

"ଆଚ୍ଛା, ଅଧ-କେବଲ୍ ବୋଇଲେ କେତେ ଲମ୍ବ ?"

"କେତେ ? କାହିଁକି ? ଯ୍ୟା ବି ଜଣାନାହିଁ ? କେବଲ୍ ବୋଇଲେ ଶହେ ଫ୍ୟାଦମ୍ ; ତା'ର ଅଧା ବୋଇଲେ ତ ପଚାଶ ଫ୍ୟାଦମ୍—ଆଉ କେତେ ? ହୁଗୁଳାରେ ନଙ୍ଗର ପଡ଼ିଥାଏ—ଜୁଆରରେ ଦୋହଲିବ ବୋଲି । ପୂର୍ବ ଦୁଇ ବର୍ଷ ବେପାର ଖୁବ୍ ମାନ୍ଦା ଥିଲା । ପ୍ରାୟ ଅଧେ ଚର୍ବି ପିପା ଖାଲି ପଡ଼ିଥିଲା । ତା'କୁ ନିଆଁ ଧରିଲା ବେଳକୁ ମୁଁ କୂଳକୁ ଆସିଥିଲି—ମାନେ, ଘରେ ଥିଲି । ପ୍ରାୟ ଅଧରାତି ସମୟ । ଚର୍ବିରେ ଯେତେବେଳେ ନିଆଁ ଧରିଲା, ସମଗ୍ର ସହରଟା ଦିନ ଦି'ପହର ପରି ଆଲୁଅ ହୋଇଗଲା । ଚବି ସମୁଦ୍ର ପାଣିରେ ଭାସିଲା, ତା'ରି ଉପରେ ନିଆଁ ଧରି ଅସ୍‌ପ୍ରି ପଏଣ୍ଟ ଯାଏଁ ଖେଳିଗଲା । ଜାହାଜ ପୋଡ଼ିଯିବ ବୋଲି ତା'କୁ କୂଳକୁ ଟାଣି ଆଣି ହେଲା ନାହିଁ । ଘଣ୍ଟାକ ଭିତରେ ପାଣି ଯାଏଁ ଜଳିଗଲା । ତା' ତଳ ଓ ଷ୍ଟେଟ ତଳ ଅଦ୍ୟାପି ସମୁଦ୍ରରେ ବୁଡ଼ି ରହିଛି । ସେ କାଠର କିଛି କ୍ଷତି ହୋଇ ନଥିବ ।

"ତଳର ପଟାଗୁଡ଼ିକ ଶେଲ୍‌ଟର୍ ଦ୍ୱୀପର ଅସଲ ମୂଳଗଛର, ଓକ୍ ଗଛର ପଟା । ଆଉ କାଠଗୁଡ଼ାକ ବି ସେଇ ଓକ୍ ଚୌକାଠ ।"

"ନିଆଁ ଟା ଲାଗିଲା କିମିତି ?"

"ଲାଗନ୍ତା କାହିଁକି ? କିଏ ଲଗେଇ ଦେଲା । ମୁଁ ତ କୂଳକୁ ଆସିଥିଲି ଘର ।"

"ଲଗାଇବାରେ କାହାର ସ୍ୱାର୍ଥ ?"

"ଆଉ କାହାର ? ଜାହାଜ ମାଲିକଙ୍କର ।"

"ମାଲିକ ପରି ତୁମେ ନିଜେ !"

"ପୂରା ମାଲିକ ତ ନୁହେଁ । ମୁଁ ଥିଲି ଆଠପଣ-ସରିକ୍‌ଦାର । ଜାହାଜ ପୋଡ଼ା କାମ ମୋ ଦ୍ୱାରା ହେବାର ନୁହେ । ତଳେ ଯେଉଁ ତଳ ବୁଡ଼ି ରହିଛି, ତା'କୁ ଦେଖିବାକୁ ମନ । ଦେଖନ୍ତୁ ପଟାଗୁଡ଼ାକ କି ଅବସ୍ଥାରେ ଅଛି ।"

"କପ୍ତାନ୍, ଆଜ୍ଞା, ଆପଣ ଏଥର ଯାଇ ପାରନ୍ତି ।"

"ଏଇଥିରେ—ଏତେ ଅଳ୍ପ କଥାରେ, କେତେ ଘୃଣା ଓ ବିଦ୍ୱେଷ ଜାତ କରାଇବୁ ମ ?"

"କିଛି ନ ଥିବାଠାରୁ ଏତିକି ଯଥେଷ୍ଟ । ମୁଁ ସେ ତଳକୁ ସମୁଦ୍ର-ଭିତରୁ କଢ଼ାଇବି—ହାତରେ ପଇସା ହେଲାଣି, ଖୁବ୍ ଶୀଘ୍ର କଢ଼ାଇବି । ତମର ପାଇଁ ଏତିକି କରିବି । ତୃଷ୍ଣାପ୍ତ ପାହାଡ଼ମୁଣ୍ଡି ପଟି ପଏଣ୍ଟ୍‌କୁ ଗାର ଟାଣି—ସେଇ ସିଧା ପଚିଶ-ଫ୍ୟାଦମ୍ ଦୂରରେ ତ !" ମୋର ନିଦ ହୋଇ ନ ଥାଏ । ମୋ ମୁଠା ଓ ବାହୁର ତଳଭାଗ ଟାଣ ହୋଇ ପେଟିକୁ ମାଡ଼ି ରହିଥାନ୍ତି—ବୃଦ୍ଧ କପ୍ତାନ୍‌ଙ୍କୁ ଅନ୍ତର୍ଦ୍ଧାନ ହେବାକୁ ନ ଦେବା ଉଦ୍ଦେଶ୍ୟରେ । ତାଙ୍କୁ ଯିବାକୁ ଅନୁମତି ଦେଇ ହାତ :ପେଟିରୁ କାଢ଼ି ଦେବାମାତ୍ରେ ନିଦ ଆସି ପହଞ୍ଚିଗଲା ।

ପ୍ରାଚୀନ ମିଶରର ଫେରୋ (ଅଧିପତି) ସ୍ୱପ୍ନ ଦେଖିଲେ ସ୍ୱପ୍ନତତ୍ତ୍ୱ ଜାଣିଥିବା ପଣ୍ଡିତମାନଙ୍କୁ ଡାକି ସ୍ୱପ୍ନର ଅର୍ଥ କ'ଣ ପଚାରି ବୁଝୁଥିଲେ । ପଣ୍ଡିତମାନେ ସ୍ୱପ୍ନବିବରଣୀ ଶୁଣି ସେଇ ସେଇଥିରୁ ଦେଶର ଆଗତ ଭବିଷ୍ୟତ କଥା ବାହାର କରି କହୁଥିଲେ । ଏଭଳି କରିବାରେ ଅସଙ୍ଗତି ନ ଥିଲା, କାରଣ ଫେରୋ ଦେଶର ଏକଛତ୍ର, ନିରଙ୍କୁଶ ଅଧିପତି ଥିବାରୁ ସେ ବୋଇଲେ ଦେଶକୁ ବୁଝାଉଥିଲା ଓ ତାଙ୍କ ସ୍ୱପ୍ନ ଦେଶର ଭାଗ୍ୟନିର୍ଣ୍ଣୟ କରୁଥିଲା । ଏ ଗଣତନ୍ତ୍ର ଯୁଗରେ ତ କେହି ଜଣେ ସମଗ୍ର ଦେଶ ପାଇଁ ଦାୟୀ ହେବ ନାହିଁ । ପ୍ରତ୍ୟେକ ନିଜନିଜର ଅନ୍ତର୍ଦେଶର ମାତ୍ର ମାଲିକ ।

ତେଣୁ ଆଜ ଆମେ ସ୍ୱପ୍ନ ଦେଖିଲେ ତାହା ଆମର ଅନ୍ତର୍ଦେଶକୁ ଇ ଖାଟିବ । ଆମ ସ୍ୱପ୍ନ କଥା ଆମେ ସ୍ୱପ୍ନ-ପଣ୍ଡିତଙ୍କୁ କହିଲେ ସେ ସେଥିରୁ ଆମର ଅନ୍ତର୍ଦେଶର ମାପ ହାଲ୍ ହେଳତ କହିବେ । ମୁଁ ଏ ରାତିରେ ଯେଉଁ ସ୍ୱପ୍ନଟାକୁ ଦେଖିଲି ତା'ର ମର୍ମ କହିବାକୁ କୌଣସି ବିଶେଷଜ୍ଞ ପଣ୍ଡିତଙ୍କର ପ୍ରୟୋଜନ ନାହିଁ । ତା' ମର୍ମ ମୁଁ ନିଜେ ଜାଣି ପାରୁଛି । ମୁଁ ଭବିଷ୍ୟତ୍ ବାଣୀରେ ବିଶ୍ୱାସ କରେ ନାହିଁ କି ଯାଦୁବିଦ୍ୟାରେ ବିଶ୍ୱାସ କରେ ନାହିଁ । ଆଧୁନିକ ଲୋକେ ଅଧିକାଂଶ ମୋରି ପରି । ଏ ସବୁରେ ବିଶ୍ୱାସ ନ କଲେ ବି, ମୁଁ ମୋର ଅଧେ ସମୟ ଭବିଷ୍ୟତ୍ ଚିନ୍ତାରେ କଟାଏ ଓ ନିଜେ ଯାଦୁବିଦ୍ୟା ଅଭ୍ୟାସ କରିବାକୁ ବସେ ।

ଗଲା ବସନ୍ତ ଋତୁରେ ସ୍ୱାଲେନର ମନ କ'ଣ ପାଇଁ ଦବି ଯିବାରୁ ସେ ବିଷର୍ଣ୍ଣ ହେଲା । ଏଥି ପାଇଁ ସେ ଭଗବାନ୍‌ଙ୍କୁ ଓ ଆମ ଦୁହିଙ୍କୁ ଦୋଷୀ କଲା ବୋଧହୁଏ । ତେଣୁ ଭଗବାନ୍‌ଙ୍କୁ ଓ ଆମ ଦୁହିଁଙ୍କୁ ଦଣ୍ଡ ଦେବା ପାଇଁ ଘୋଷଣା କଲା ଯେ ସେ ନାସ୍ତିକ—ଈଶ୍ୱରଙ୍କର ଅସ୍ତିତ୍ୱ ସ୍ୱୀକାର କରିବାକୁ ନାରାଜ । ମୁଁ ତା'କୁ କହିଲି, ଈଶ୍ୱରଙ୍କୁ ଅସ୍ୱୀକାର କଲୁ ଯେବେ କୁସଂସ୍କାରକୁ ଈଶ୍ୱର ବୋଲି ମାନେ । ଜାହାଜରୁ ଖୁଣ୍ଟା ହୋଇ ମେଲାକୁ ବାହାରି ପଡ଼ିଥିବା ଖୁମ୍ବରେ ଚଢ଼ିବୁ ନାହିଁ ; ଚଢ଼ିଲେ ତୋ' ଜାହାଜ ସ୍ୱଚ୍ଛନ୍ଦରେ ଚଳିବା ପାଇଁ ଅନୁକୂଳ ପବନ ମିଳିବ ନାହିଁ । ଲିଶୁଣି ତଳେ ଯିବୁ ନାହିଁ । କଳା ବିରାଡ଼ି ଦେଖିଲେ ତା'କୁ ଦେଖିବା ଦୋଷ କଟାଇବାକୁ ଛେପ ପକାଇ ବୁଢ଼ା ଆଙ୍ଗୁଠିରେ ଘଷି ଦେବୁ ଓ ଦୁଇ ଜହ୍ନକୁ ମନାସିବୁ ।

ଯେଉଁ ଲୋକେ ସ୍ୱପ୍ନକୁ ଘରି ଉରନ୍ତି ଯେ ନିଜେ ବିଶ୍ୱାସ କରିବାକୁ ଚେଷ୍ଟା କରନ୍ତି ସେ ତାଙ୍କର ଆଦୌ ସ୍ୱପ୍ନ ହୁଏ ନାହିଁ । ମୁଁ ସ୍ୱପ୍ନ ଦେଖେ ଓ ତା' ମର୍ମ ବୁଝିପାରେ—ଯା ବୋଲି ସେ ସ୍ୱପ୍ନକୁ ମୁଁ ଭୟ ନ କରେ ତା ନୁହେ ।

ସ୍ୱପ୍ନରେ ମୋତେ ଜଣାଗଲା—ଡାନ ମୋ ପାଖକୁ ଗୋଟାଏ ଅର୍ଡର ପଠାଇଛି, କାହା ହାତରେ କେଜାଣି । ସେ ଉଡ଼ାଜାହାଜରେ ବସି କୁଆଡ଼େ ଯାଉଛି ; ମୋ ଠାରୁ କେତୋଟା କଳସ ତା'ର

ଦରକାର—ସେ ଜିନିଷଗୁଡ଼ାକ ପୁଣି ନିଜେ ତିଆରି କରିବି । ମେଷଙ୍କ ମୁଣ୍ଡ ମାପରେ ଗୋଟାଏ ଟୋପି ତା'ର ଦରକାର । ଟୋପିଟା ହେବ ଗାଢ଼ ପିଙ୍ଗଳ ମେଣ୍ଢାଛୁଆର ଚମଡ଼ାରେ । ଚମଡ଼ାଟା ଟ୍ୟାନ୍ ହେବ ନାହିଁ; ଟୋପିର ଭିତର ପଟକୁ ରହିବ ମେଣ୍ଢା ବାଳଗୁଡ଼ାକ । ମୋ'ର ହଲେ ପୁରୁଣା ଚଟି ଉପରେ ଯେମିତି ବାଳବାଳୁଆ ମେଣ୍ଢା ଚମଡ଼ା ଲଗିଛି ଠିକ୍ ସେଇମିତି ଚମଡ଼ାରେ ଟୋପିଟା ହେବ । ପୁଣି ଟୋପିଟା ହେବ ବେସ୍-ବଲ ଖେଳାଳୀଙ୍କ ଟୋପି ପରି—ଗୋଟାଏ ଲମ୍ବ ଅଣ୍ଟ ରହିବ । ଏଥି ବାଦ୍ ତା'ର ଗୋଟାଏ ଦରକାର ବାୟୁମାନ ଯନ୍ତ୍ର—ଦୁଇ ଖଣ୍ଡ ଲୁହା ବାଡ଼ି ଛକ ପଡ଼ିଥାଏ । ପ୍ରତି ବାଡ଼ିର ଦ'ପଟେ ଟିଣ ଦୁଇଟି ଲେଖାଏଁ ଅଣେଇ ହୋଇ ଲଗିଥାଏ ; ପବନ ଏଇ ଟିଣାରେ ପଶି ଚକିଟିକୁ ଘୂରାଏ । ଏ ଯନ୍ତ୍ର ବଜାରରେ ମିଳେ । କିନ୍ତୁ ସେଥି ହବ ନାହିଁ ; ସ୍ୱତନ୍ତ୍ର ଯନ୍ତ୍ରଟିଏ ହାତରେ ତିଆରି କରିବାକୁ ହେବ । ଯନ୍ତ୍ରର ଟିଣାଗୁଡ଼ାକ ହେବ ସରୁଆ କିନ୍ତୁ ଚେମେଟା, ସରକାରୀ ପୋଷ୍ଟକାର୍ଡ଼ କାଗଜରେ ; ଲୁହା ବାଡ଼ି ପରିବର୍ତ୍ତେ ଦୁଇଖଣ୍ଡ ବାଉଁଶ କଣିରେ ଚକି ତିଆରି ହେବ । ପୁଣି ମୋତେ ଡାକଥାଏ ଏ ଜିନିଷ ଦୁଇଟା ଧରି ଉଡ଼ାଜାହାଜ ଷ୍ଟେସନ୍‌ରେ ତା' ସଙ୍ଗେ ଯାଇ ଦେଖା କରିବାକୁ । ମୁଁ ବୃଦ୍ଧ କପ୍ତାନଙ୍କ ଡମି-ଶିଂଘ ଠେଙ୍ଗା ଧରି ଗଲି । ଏ ଠେଙ୍ଗାଟି ରହେ ଆମ ଘରର ହଲରେ, ହାତ-ପାଦର ଯେଉଁ ଛତାରଖା ଆଧାର, ସେଇଥିରେ ।

ଏହି ହାତ-ପାଦର ଆଧାରଟା ଯେତେବେଳେ ଆମେ ଜଣେ ବନ୍ଧୁଙ୍କଠାରୁ ପୁରସ୍କାର ପାଇଲୁ, ମୋର ନଜର ପଡ଼ିଥିଲା, ତା'ର ହାତଦାନ୍ତ ପରି ଚକ୍‌କଣ ଧଳା ନଖଗୁଡ଼ିକ ଉପରେ । ମୋ ପିଲା ଦୁହିଁଙ୍କୁ ଡାକି କହିଲି, "ନଖ ରଙ୍ଗେଇବା ବନକ ଯେ ଏ ନଖରେ ବୋଳିବ ତା'କୁ ବାଡ଼େଇବି—ବୁଝିଲ !" ସେମାନେ ମୋ କଥା ମାନିଲେ, ତେଣୁ ଶେଷେ ମୋତେ ଏ କାମଟା କରିବାକୁ ହେଲା—ମେଷଙ୍କ ପ୍ରସାଧନ-ଟେବୁଲ୍‌ରୁ ଇନାମେଲ୍ ରଙ୍ଗର ନଖବନକ ନେଇ ହାତ-ପାଦର ସବୁ-ଗୁଡ଼ାକ ନଖରେ ବୋଳିଲି ।

ମ୍ୟାରୁଲେଙ୍କ ଘଣ୍ଟିଆକ୍ ଗାଡ଼ିରେ ଚଢ଼ି ମୁଁ ଡାକ୍ତର ସାଙ୍ଗେ ଦେଖା କରିବାକୁ ଗଲି । ଉଡ଼ାଜାହାଜ ଷ୍ଟେସନ ହୋଇଥାଏ କାଉ-ବେ'ଟାଉନ୍ ପୋଷ୍ଟ ଅଫିସ୍‌ଟା । ପୋଷ୍ଟ ଅଫିସ୍ ଆଗରେ ଯେତେବେଳେ ଗାଡ଼ି ରଖିଲି, ବୃଦ୍ଧ କପ୍ତାନଙ୍କ ଠେଙ୍ଗାଟା ଗାଡ଼ିର ପଛ ସିଟ୍‌ରେ ଥୋଇ ବାହାରିଲି । ଦୁଇ ଜଣ ଚଢ଼ାପ୍ରକୃତିର ପୁଲିସବାଲା ଗୋଟାଏ ମିଲିଟାରି ଗାଡ଼ିରେ ଆସି ମୋପାଖେ ପହଞ୍ଚି କହିଲେ, "ସିଟ୍ ଉପରେ ରଖନାହିଁ ।"

ମୁଁ ପଚାରିଲି, "ଏ୍ଟା କ'ଣ ବେ-ଆଇନ୍ ?

ସେ କହିଲେ, "ଓଃ, ତୁମେ ଆଇନ୍ ପଣ୍ଡିତ ହେବାକୁ ଚାହୁଁଛ ପରା ?"

"ନାଇଁ ଯେ, ଜାଣିବାକୁ ପଚାରୁଥିଲି ।"

"ହଉ, ବାଡ଼ିଟା ସିଟ୍ ଉପରୁ କାଢ଼ ।"

ଡାକ୍ତର ପୋଷ୍ଟ ଅଫିସ୍ ପଛ ଆଡ଼େ ବସି ଚିଠି ପ୍ୟାକେଟ୍ ସଜାଡ଼ି ରଖୁଥାଏ । ମେଣ୍ଢାଚୁଆ ଚମଡ଼ାର ଟୋପିଟା ସେ ପିନ୍ଧିଥାଏ, ଓ କାଗଜ-ବାୟୁମାନ-ଯନ୍ତ୍ରଟା ଘୂରାଉଥାଏ । ତା' ମୁହଁ ଶୁଖି ଯାଇ ଲୋତରା ଦିଶୁଥାଏ, ଓଠ ଚେହେରଡ଼ା ପଡ଼ି ଫାଟି ଫାଟି ଯାଇଥାଏ, କିନ୍ତୁ ହାତ ଦୁଇଟା ଖୁବ୍ ଫୁଲିଥାଏ ଗରମ ପାଣି ବୋତଲ ପରି । ହରୁଡ଼ି ମାରିଲା ପରି ଜଣା ଯାଉଥାଏ ।

ସେ ମୋ ସଂଗେ ହାତ ମିଳାଇବାକୁ ଠିଆ ହୋଇ ପଡ଼ିଲା । ମୋ ଡାହାଣ ହାତ ତା'ର ଉଷୁମ୍ ରବର ପରି ଦିଶୁଥିବା ହାତ ଭିତରେ ଲୁଚିଗଲା । ମୋ ହାତରେ ଗୋଟାଏ କ'ଣ ଦେଲା — ଗ୍ଲେଟ ଓଜନିଆ ଓ କାକର — ଗୋଟାଏ ଗୁବ ପରି ଆକୃତି, କିନ୍ତୁ ଗୁବ ନୁହେଁ । ଲୁହାର ଗୋଟାଏ କ'ଣ ଜିନିଷ, ଦୁ'ପାଖ ଦାନ୍ତୁଆ, ହାତକୁ ଚକ୍‌କଣ ଲାଗୁଥାଏ । ମୁଁ ସ୍ଟାକୁ ଦେଖି ନାହିଁ, ହାତରେ ସ୍ପର୍ଶ କରୁଛି ମାତ୍ର, ତେଣୁ ତାହା ପ୍ରକୃତରେ କ'ଣ ଜାଣି ପାରିଲି ନାହିଁ । ମୁଁ ତା' ପାଖକୁ ଲାଗିଯାଇ ତା' ମୁହଁରେ ଚୁମ୍ବନ ଦେଲି ; ମୋ ଓଠ ଲାଗିବାରୁ, ତା' ଓଠ ଚେହେରଡ଼ା ପଡ଼ି ଫାଟି ଫାଟି ଯାଇଥିବାର ଅନୁଭବ କଲି । ଏତିକିବେଳେ ମୋ ନିଦ ଭାଙ୍ଗିଗଲା—ମୋ ଦେହ ଶୀତେଇଗଲା, ମୁଁ ଥରୁଥାଏ ।

ସେତେବେଳକୁ ଭୋର ହୋଇଯାଇଥାଏ । କାନ୍ଥରେ ଟଙ୍ଗା ହୋଇ-ଥିବା ଚିତ୍ରରେ ହୃଦ୍‌ଟା ଦେଖିଲି, କିନ୍ତୁ ତା' ଭିତରେ ଠିଆ ହୋଇଥିବା ଗାନ୍ଧି ଦିଶିଲି ନାହିଁ । ସେତେବେଳେ ବି ତାଙ୍କର ଶ୍ୱେତଚନ୍ଦ୍ରା ଓଠର ସ୍ପର୍ଶ ମୁଁ ଅନୁଭବ କରୁଥାଏ । ମୁଁ ଧଡ଼ିକିନି ଉଠିପଡ଼ିଲି ; ଖଟରେ ପଡ଼ି ରହି ତାଙ୍କ କଥା ଭାବିବାକୁ ମନ ହେଲାନାହିଁ । ମୁଁ କଫି ତିଆରି କଲି ନାହିଁ ; ହଲରେ ଥିବା ହାତ-ପାଦ ପାଖକୁ ଗଲି ; ବାଡ଼ି ବୋଲିଉଥିବା ବଦ୍‌ମାସ ଠେଙ୍ଗାଟା ପୂର୍ବପରି ସେଇଠି ଥାଏ ।

ଭୋର ବେଳା ; ସମଗ୍ର ଜଗତର ଧମନୀରେ ନୂତନ ସ୍ପନ୍ଦନ ଆସିବାର ବେଳ । ଘର ଗରମ ଲାଗୁଥାଏ । ବାୟୁମଣ୍ଡଳରେ ଜଳୀୟ ବାଷ୍ପର ପରିମାଣ ବେଶି ଥିବାରୁ ଖରାପ ଲାଗୁଥାଏ—ପବନ ବହିବା ବେଳ ଏପର୍ଯ୍ୟନ୍ତ ହୋଇ ନ ଥାଏ । ରାସ୍ତାଟା ଠାଏ ଠାଏ ଧୂସର ଓ ଠାଏ ଠାଏ ରୁପାର ରଙ୍ଗ ଦିଶୁଥାଏ ; ଫୁଟପାଥ୍ ମଣିଙ୍କେ ଛେପ ଖଂକାର ଯୋଗୁଁ ଚଟ୍ ଚଟ୍ ହୋଇଥାଏ । ପୋଷ୍ଟମାଷ୍ଟର୍ କଫି ହୋଟେଲ୍ ଫିଟିବା ବେଳ ହୋଇ ନ ଥାଏ । ମୋ'ର ବି କଫି ଖାଇବାର ପ୍ରୟୋଜନ ନ ଥିଲା । ମୁଁ ଆମ ଗଳି ରାସ୍ତାରେ ଯାଇ ବାଡ଼ପଟ ଦୁଆର ଫିଟାଇଲି ଓ ସାମ୍ନା ପଟକୁ ବୁଲିଲି ; ମୋ ଟେବୁଲ୍ ତଳପଟେ ଚମତ୍କାର ଟୋପି-ପେଡ଼ାଟା ଦେଖି ଆଶ୍ୱସ୍ତ ହେଲି । ତା'ପରେ ଗୋଟିଏ କଫି ଡବା ଫିଟାଇ କଫିଟା ମଇଳା ଟିଣରେ ଢାଳି ଦେଲି । ତା'ପରେ ଘନୀଭୂତ ଦୁଧର ଗୋଟିଏ ଡବାରେ ଦୁଇଟା କଣା କରି ଖାଲି କରିଥିବା କଫିଡବାରେ ସେଥିରୁ ଅଧେ ଢାଳି, ବାଡ଼ଦୁଆର ଟିକିଏ ମେଲାଇ ଏ ଡବାଟା ଦୁଆର ମୁହଁକୁ ରଖିଦେଲି । ବିରାଡ଼ିଟା ସବୁ ଦିନ ପରି ଗଳିରେ ଟାକିଥିଲା, କିନ୍ତୁ ମୁଁ ଷ୍ଟୋର୍‌ର ସାମନା ପଟକୁ ନ ଯିବା ପର୍ଯ୍ୟନ୍ତ, ସେ ଦୁଧ ପାଖକୁ ଆସିଲା ନାହିଁ । ସାମନାପଟୁ କଡ଼େଇ କରି ଚାହିଁ ଦେଖିଲି, ଧଳା ବିରାଡ଼ିଟା ଧୂସର ଦିଶୁଥିବା ଗଳିରୁ ଆମ ଦୁଆର ମୁହଁକୁ ଆସି ଚାକୁ ଚାକୁ କରି ଦୁଧ ଖାଉଛି । ଖାଇ ସାରି ଡବାରୁ ମୁହଁ କାଢ଼ିଲା ବେଳକୁ ମୁଁ ଦେଖିଲି ତା' ମୁହଁରେ ଦୁଧ ଲାଗିଥାଏ । ସେ ନିଶ୍ଚିନ୍ତରେ ବସି ମୁହଁ ଓ ପାଦ ଚାଟିବାରେ ଲାଗିଲା ।

ମୁଁ ଷ୍ଟାଟ୍‌-ବାକ୍‌ସଟା ଖୋଲି ସେଥିରୁ ଶନିବାର ଦିନର ବର୍ଣ୍ଣିଧନ କାଢ଼ିଲି ; ସବୁ ଯଥାରୀତି ହିସାବ ହୋଇ କାଗଜ୍‌ କ୍ଲିପ୍‌ ମରା ହୋଇ ରଖା ହୋଇଥାଏ । ମାଟିଆ ବ୍ୟାଙ୍କ୍‌-ପୁଳିନ୍ଦାଟା ଖୋଲି ପନ୍ଦର ହଜାର ଟଙ୍କାର ନୋଟ୍‌ ସେଥିରୁ କାଢ଼ି ରଖି, ଅବଶିଷ୍ଟ ଦଶହଜାର ଟଂକାର ନୋଟ ପୁଣି ସେଥିରେ ପୂରାଇ ବନ୍ଧ କଲି । ଏ ପନ୍ଦରହଜାର ଟଙ୍କା ହଠାତ୍‌ ପ୍ରୟୋଜନ ହେଲେ ଖଟାଇବାକୁ ପାଖରେ ରଖିଲି । ଷ୍ଟୋରପାଇଁ ଜିନିସ ଖରିଦ୍‌ କରିବା ସକାଶ ଟଙ୍କା, ସେଇ ଷ୍ଟୋର୍‌ରୁ ବାହାରିବା ଅବସ୍ଥା ଆସିବା ପର୍ଯ୍ୟନ୍ତ ପାଖରେ ରଖିବି । ପୁଳିନ୍ଦାରେ ଯେଉଁ ୧୦ ହଜାର ରଖିଲି ସେତକ ବ୍ୟାଙ୍କ୍‌କୁ ନେଇ ମେସର୍ସଙ୍କ ହିସାବରେ ଜମା କରିଦେବି ; ଭବିଷ୍ୟତରେ ସୁବିଧା ଆସିବା ମାତ୍ରେ ବାକି ପନ୍ଦର ହଜାରଟା ମଧ୍ୟ ସେଇଥିରେ ଜମା କରିବି । ପନ୍ଦର ହଜାର ଟଙ୍କା ମୋର ପ୍ୟାଣ୍ଟ ପକେଟରେ ମୋ ନୂଆ ପଇସାମୁଣିରେ ରଖିଲି । ଟଙ୍କା ଯୋଗୁଁ ମୁଣିଟା ମୋଟିଆ ହୋଇ ପ୍ୟାଣ୍ଟ୍‌-ପକେଟରୁ ଅଳ୍ପ ପରି ବାହାରିଲା । ତା'ପରେ ଗୋଦାମଘରୁ ବାକ୍‌ସ ଓ ପେଟି ବାହାର କରି ଖୋଲିଲି ଓ ଖାଲି ହୋଇଥିବା ଥାକଗୁଡ଼ାକ ପୁଣି ପୂର୍ଣ୍ଣ କଲି । ଖାଲି ପେଟି ଓ ବାକ୍‌ସ ଗୁଡ଼ାକ ନେଇ କନ୍ଦରେ ରଖିଲି, ସେଥିପାଇଁ ଟ୍ରକ୍‌ ଆସିଲେ ଦେଇ ଦେବାକୁ । ବିରାଡ଼ି ଶେଷ କରିଥିବା କପିଡ଼ବାରେ ପୁଣି ଦୁଧ ଭରି ଦୁଆର ମୁହଁରେ ରଖିଲି, କିନ୍ତୁ ବିରାଡ଼ି ଆଜି ଆସିଲା ନାହିଁ । ହୁଏତ ତା'ର ପେଟ ପୂରି ଯାଇଥିଲା, କିମ୍ବା ସ୍ଥିର କରି ଯାହା ନେଇ ପାରିବ ସେଇଥିରେ ହିଁ ତା'ର ଆଗ୍ରହ ।

ଦିନକୁ ଦିନ ଯେପରି ଆନ ହୁଏ, ସେହିପରି ପ୍ରତି ବର୍ଷ ଅନ୍ୟ ବର୍ଷଠାରୁ ବୋଧହୁଏ, ଜଳବାୟୁ, ପ୍ରକୃତି ଓ ରୀତିରେ ପୃଥକ୍‌ ହୁଏ । ଏ ବର୍ଷଟା – ୧୯୬୦, ଅନ୍ୟ ବର୍ଷମାନଙ୍କଠାରୁ ପୂରା ଅଲଗା ଜଣା ପଡ଼ୁଛି । ଏ ବର୍ଷ ମନ ଭିତରେ ଛପି କରି ରହିଥିବା ଭୟ ଓ ଉଦ୍‌ବେଗ ଆତ୍ମପ୍ରକାଶ କରୁଛି ; ଅସନ୍ତୋଷ ମନ ଭିତରେ ନିଷ୍କ୍ରିୟ ନ ରହି, ଝଟମ କ୍ରୋଧରେ ରୂପାନ୍ତରିତ ହେଉଛି । ଖାଲି ମୋ ମନରେ, ବା ଆମ ନିଉ-ଚ୍ଚବ'ଟାଉନ ବାଲାଙ୍କ ମନରେ ଯେ ଏଭଳି ପ୍ରତିକ୍ରିୟା ହେଉଛି ତା'

ନୁହେଁ । ସମଗ୍ର ରାଷ୍ଟ୍ରରେ ଏଇ ଅବସ୍ଥା । ରାଷ୍ଟ୍ରପତି ପଦ ପାଇଁ, ଦଳ ଦୁଇଟିର ତରଫରୁ ପ୍ରାର୍ଥୀ ମନୋନୟନର ବେଳ ଆସି ମୁଣ୍ଡ ଉପରେ ; ବାୟୁମଣ୍ଡଳ ଭରିଗଲାଣି ଅସନ୍ତୋଷଜନିତ କ୍ରୋଧରେ ଓ କ୍ରୋଧଜନିତ ଉନ୍ମାଦନାରେ । ପୁଣି, ଖାଲି ଆମ ରାଷ୍ଟ୍ରରେ ଯେ ଏଭଳି ହେଉଛି ତା' ନୁହେଁ , ସମଗ୍ର ପୃଥିବୀ ଅସ୍ୱସ୍ତିରେ ଚଞ୍ଚଳ ହୋଇ ଉଠିଛି—ସବୁ ଆଡ଼େ, ଅସନ୍ତୋଷ, କ୍ରୋଧରେ ରୂପାନ୍ତରିତ ହେଉଛି ଓ କ୍ରୋଧର ଉନ୍ମାଦନା ଖୋଜୁଛି, କାର୍ଯ୍ୟରେ ନିଜର ସ୍ୱରୂପ ପ୍ରକାଶ କରିବାକୁ । କେଉଁ କାର୍ଯ୍ୟ ତା'ର ବାଛବିଚାର ନାହିଁ । ଯେ କୌଣସି କାର୍ଯ୍ୟ ହେଉ ପଛେ, ଧ୍ୱଂସାତ୍ମକ ହେଲେ ହେଲା—ଆଫ୍ରିକା, କ୍ୟୁବା, ଦକ୍ଷିଣ ଆମେରିକା, ଇୟୁରୋପ, ଏସିଆ ଓ ଇୟୁରୋପ ନିକଟ ପ୍ରାଚ୍ୟଖଣ୍ଡ—ସର୍ବତ୍ର ଲୋକେ ଖୁଣ୍ଟିରେ ବନ୍ଧା ହୋଇଥିବା ଘୋଡ଼ା ପରି କ୍ରୁଦ୍ଧ ହେଉଛନ୍ତି ଫିଟିବାକୁ, ଧ୍ୱଂସାତ୍ମକ କାର୍ଯ୍ୟରେ ମାତିବାକୁ ।

ମୁଁ ଆଗରୁ ଜାଣିଥିଲି, ଜୁଲାଇ ୫ ତାରିଖ ମଙ୍ଗଳବାରଟା, ଅନ୍ୟ ଦିନମାନଙ୍କଠାରୁ ବଡ଼ ଦିନଟାଏ ହେବ । ମୋର ମନେ ହେଉଛି, ସେ ଦିନର ଘଟଣାମାନ ଘଟିବା ପୂର୍ବରୁ, କ'ଣ କ'ଣ ଘଟିବ ତାହା ମଧ୍ୟ ଆଗରୁ ଠଉରାଇଥିଲି । କିନ୍ତୁ ଘଟଣାଗୁଡ଼ିକ ଘଟିବା ପରେ ମୋର ଏବେ ସନ୍ଦେହ ହେଉଛି, ସତେ ମୁଁ ଆଗରୁ ଜାଣିଥିଲି, ନା ପରେ, ଜାଣିଥିଲି ବୋଲି ଧାରଣା କରୁଛି ।

ପ୍ରଥମତଃ, ମୁଁ ଆଗରୁ ଜାଣିଥିଲି ବୋଲି ମନେ କରୁଛି ଯେ, ୧୭-ଜୁଏଲ୍‌ବାଲା, ହଲଚଲରେ ବନ୍ଦ ନ ହେବା ଘଣ୍ଟା, ମିଷ୍ଟର୍ ବେକର୍, ଯାହାଙ୍କ ପେଟ ଭିତରେ ଘଣ୍ଟାର ଟିକ୍‌ଟିକ୍ ଶବ୍ଦ ହୁଏ, ସେ ବ୍ୟାଙ୍କ୍ ଖୋଲିବାର ଘଣ୍ଟାକ ପୂର୍ବରୁ ସେ ଦିନ ଠିକ ଠିକ ତେଢ କରି ଆସିବେ । ସତକୁ ସତ ମୁଁ ଦୋକାନ ଖୋଲିବା ପୂର୍ବରୁ ସେ ଆସି ପହଞ୍ଚିଲେ । ସେ ଦୋକାନ ଭିତରେ ପଶିଲେ, ମୁଁ ସାମନା ଦୁଆର ବନ୍ଦ କରି ଦେଲି ।

ଦୋକାନରେ ପଶିବା ମାତ୍ରେ ସେ କହିଲେ, "କେଡ଼େ ଭୟାନକ ଘଟଣାଟାଏ ଘଟିଗଲା ! ମୁଁ ତ ସହରରେ ନ ଥିଲି । ଯେମିତି ଶୁଣିଛି, ଫେରି ଆସିଲି ।"

"କୋଉ ଭୟାନକ ଘଟଣା, ଆଜ୍ଞା ?"

"ଏଇ ଯେଉଁ କାଣ୍ଡଟା ଘଟିଗଲା ; ମୋ ବନ୍ଧୁମାନଙ୍କ ନାମରେ ଦୁର୍ନାମ ରଟିଲା । ସେ ସମସ୍ତେ ମୋର ପୁରୁଣା ବନ୍ଧୁ । ସେମାନଙ୍କ ପାଇଁ କ'ଣ ଗୋଟାଏ କରିବାକୁ ହେବ ।"

"କିନ୍ତୁ ନିର୍ବାଚନ ପୂର୍ବରୁ ତ ସେମାନଙ୍କ ବିଚାର ଆରମ୍ଭ ହୋଇପାରିବ ନାହିଁ—ଖାଲି ତାଙ୍କ ବିରୁଦ୍ଧରେ ଅଭିଯୋଗପତ୍ର ଦାଖଲ ହୋଇ ରହିବ ମାତ୍ର ।"

"ହଁ, ତା' ତ ଜାଣୁଛୁ । କିନ୍ତୁ ସେମାନେ ନିର୍ଦ୍ଦୋଷ ବୋଲି ଆମେ ଗୋଟାଏ ଇସ୍ତାହାର ଛପାଇଲେ ହୁଅନ୍ତା ନାହିଁ ?"

"କିନ୍ତୁ ଛପାଇବା କେଉଁଥିରେ, ଆଜ୍ଞା ? 'ବେ-ହାରବର୍ ମେସେଞ୍ଜର୍' କାଗଜ ତ ଗୁରୁବାର ପୂର୍ବରୁ ପ୍ରକାଶ ହେବ ନାହିଁ ।"

"ହଁ, ସେ କଥା ସତ । ତଥାପି କିଛି ଗୋଟାଏ କରିବାକୁ ହେବ ।"

"ହଁ, ଆଜ୍ଞା ।"

ଗତାନୁଗତିକ କଥାବାର୍ତ୍ତା ଓ ଦୁଃଖପ୍ରକାଶ । ମୁଁ ଯେ ସବୁ ଘଟଣା ଜାଣେ, ସେ। ନିଶ୍ଚୟ ସେ ଧରି ପାରିଥିବେ । ତଥାପି ସେ ନିଃସଙ୍କୋଚରେ ମୋ ଆଖିକୁ ଚାହିଁ ପାରିଲେ ଓ ସତେ ଆନ୍ତରିକ ଦୁଃଖ କଲା ପରି ଦେଖାଇ ହୋଇ ପାରିଲେ ।

"ସହରର ଯେଉଁ କେତୋଟା ଲୋକ ଏ ଅଭିଯୋଗ ଶୁଣି ଉତ୍ତେଜନା ସୃଷ୍ଟି କରୁଛନ୍ତି ସେମାନେ ନିର୍ବାଚନରେ ନାନା ଗଣ୍ଡଗୋଳ ସୃଷ୍ଟି କରିଦେବେ । ଆମେ କିଛି କରି ତାଙ୍କ ଷଡ଼ଯନ୍ତ୍ର ନ ଭାଙ୍ଗିଲେ ଚଳିବ ନାହିଁ । ଆମେ ଚେଷ୍ଟାକରି ନୂଆ ପ୍ରାର୍ଥୀ ଠିଆ କରାଇବାକୁ ହେବ । ଅନ୍ୟ ଗତି ନାହିଁ । ନିଜର ପୁରୁଣା ବନ୍ଧୁମାନଙ୍କ ବିରୁଦ୍ଧରେ ପ୍ରାର୍ଥୀ ଠିଆ କରିବା ବଡ ଅସୁନ୍ଦର କଥା ; କିନ୍ତୁ କ'ଣ କରାଯାଏ ? ମୋର ବିଶ୍ୱାସ, ଆମ ବନ୍ଧୁମାନେ ନିଜେ ବୁଝିବେ ଯେ ଆମେ ନୂଆ ପ୍ରାର୍ଥୀ ଠିଆ ନ କରାଇଲେ, ଉତ୍ତେଜନା ସୃଷ୍ଟି କରୁଥିବା ବିରୋଧୀ ଦଳର

ନେକେ ଆମ ବନ୍ଧୁମାନଙ୍କୁ ହରାଇ ନିଜ ଦଳର ଲୋକଙ୍କୁ ଜଣାଇ ଦେବେ ।"

"ଆପଣ ଯାଇ ଆପଣଙ୍କ ଏଇ ବନ୍ଧୁମାନଙ୍କ ସଙ୍ଗେ ପରାମର୍ଶ କରି ନୂଆ ଲୋକ ଠିଆ କରାଇଲେ ତ ଭାରି ସୁବିଧା ହୁଅନ୍ତା । ସେମାନେ ଆପଣଙ୍କ ପରାମର୍ଶ ଗ୍ରହଣ କରି, କୁଆଡ଼େ ଠିଆ ହୋଇ ଅପଦସ୍ତ ହୁଅନ୍ତେ-ନାହିଁ ।"

"କିନ୍ତୁ ସେମାନେ ତ ଏ ଅଭିଯୋଗ ଯୋଗୁଁ କ୍ଷୁବ୍ଧ ଥିବେ ; ଅବୁଝା ହୋଇପାରନ୍ତି । ସମସ୍ୟାଟା ଭଲ କରି ହୃଦୟଙ୍ଗମ କରିବାକୁ ସେମାନଙ୍କୁ ସମୟ ବି ମିଳିନାହିଁ । ଅଚ୍ଛା, ମ୍ୟାରୁଲୋ କ'ଣ ଆସିଲେ ?"

"ନିଜେ ନ ଆସି ଜଣେ ବନ୍ଧୁଙ୍କୁ ପଠାଇଥିଲେ । ମୁଁ ୧୫ ହଜାର ଟଙ୍କାରେ ଷ୍ଟୋର୍‌ଟା କିଣିଲି ।"

"ବେଶ୍ ଭଲ କଥା । ଖୁବ୍ ଭଲରେ ପାଇଲ । ଦଲିଲ୍ ପତ୍ର ଠିକ୍ ଅଛି ଟି ?"

"ହଁ ।"

"ହଉ । ନିତାନ୍ତ ଯଦି ସେ ଖସିଯିବାକୁ ଚେଷ୍ଟା କରନ୍ତି ବା ଠକେଇବାକୁ ବସନ୍ତି, ତେବେ ବି କ୍ଷତି ନାହିଁ । ତୁମ ନୋଟ୍‌ଗୁଡ଼ାକର ନମ୍ବର ଟିପା ହୋଇ ରହିଛି ।"

"ସେ ସେପରି କିଛି କରିବେ ନାହିଁ । ସେ ସୁରୁଖୁରୁରେ ଯିବେ ! ଏଠାରେ ରହିବାକୁ ତାଙ୍କର ବିରକ୍ତି ଆସିଗଲାଣି ।"

"ଯାହାହେଉ, ସେ ଲୋକଟାକୁ ମୁଁ କେବେହେଁ ବିଶ୍ୱାସ କରେ ନାହିଁ । ସେ କେତେବେଳେ କ'ଣ କରୁଥାନ୍ତି ମୁଁ ଜାଣି ପାରେ ନାହିଁ ।"

"ସେ କ'ଣ ଦଗଲ୍‌ବାଜ୍ ଲୋକ ଥିଲେ, ଆଜ୍ଞା ?"

"କହି ପାରିବି ନାହିଁ । କିନ୍ତୁ ସେ ଭାରି ଫିସାଦିଆ ଥିଲେ । ଧୋଇଆ, ଘୁଇଁଆ ଦୁଇପଟେ ଏକାଥରକେ ହାତ ପକାଉଥିଲେ । ଯଦି ତାଙ୍କର ସବୁ ସମ୍ପତ୍ତି ହସ୍ତାନ୍ତର କରି ପାରନ୍ତି ତେବେ ଗୁଡ଼ାଏ ଟଙ୍କା ପାଇବେ । କିନ୍ତୁ ଷ୍ଟୋର୍‌ଟା ୧୫ ହଜାରକୁ ଦେଇଦେବା ଶୁଣି ମୁଁ ତାଜୁବ୍ ହେଉଛି—ମାଗଣାରେ ଦେଇଦେଲେ ଜାଣ ।"

"ମୋତେ ସେ ଶ୍ରଦ୍ଧା କରୁଥିଲେ ।"

"ନିଶ୍ଚୟ କରୁଥିବେ । ନ ହେଲେ ଏତେ ଷ୍ଟୋରେ ବଅନ୍ତେ କାହିଁକ ? କାହାକୁ ପଠାଇଥିଲେ ସେ ?"

"ଜଣେ ସରକାରୀ ଲୋକକୁ । ମୋ'ଠାରେ ତାଙ୍କର ଖୁବ ବିଶ୍ୱାସ । ତେଣୁ ଧକ୍‌ଚକ୍ ବା ଟଣାଓଟରାକୁ ବାଟ ରଖି ନ ଥିଲେ ।"

ମିଷ୍ଟର୍ ବେକର୍ ମୁଣ୍ଡରେ ହାତ ଦେଇ ବସିଲେ । ଏଭଳି ବସିବା ତାଙ୍କର ସ୍ୱଭାବ-ବିରୁଦ୍ଧ । କିଛି ସମୟ ପରେ ସେ କହିଲେ, "ଆରେ, ଏ କଥାଟା ମୁଁ ଏଯାଏଁ ବିଗୁର ନ ଥିଲି କାହିଁକି? ତମେ ଇ ଉପଯୁକ୍ତ ଲୋକ । ସଂଭ୍ରାନ୍ତ ବଂଶ, ବିଶ୍ୱାସଯୋଗ୍ୟ, ସଂପତ୍ତି ଅଛି, ବେପାର ବି ଅଛି, ପଢ଼ିଆସ୍ତି ବି ଅଛି । ତୁମର ଶିକ୍ଷା ହୋଇ ଜଣେ କେହି ଏ ସହରରେ ନାହିଁ । ସବୁ ଦିଗରୁ, ତୁମେ ଇ ଉପଯୁକ୍ତ ଲୋକ ।"

"କ'ଣ ପାଇଁ ଉପଯୁକ୍ତ, ଆଜ୍ଞା ?"

"ଆମ ଟାଉନ୍ ମେନେଜର ହେବା ପାଇଁ ।"

"ମାତ୍ର ଏଇ କେବାର ଠାରୁ ମୁଁ ଏ ସହରରେ ବେପାରୀ ଭାଲକାକୁ ଯାଉଛି ।"

"କିନ୍ତୁ ମୁଁ କ'ଣ କହିବାକୁ ଗୁହେଁ ଜାଣ ତ ? ତମେ ରହିଲେ, ତମ ସାଂଗକୁ ଆମେ ଖାତିରମଦାର ଥିବା ଲୋକ କେତେ ଜଣ ପାଇ ପାରିବା । ଏଇ ଠିକ୍ ବାଟ, ନିର୍ଭୁଲ ଉପାୟ ।"

"ଖାଦ୍ୟସାମଗ୍ରୀ ଦୋକାନର ଗୁମାସ୍ତାରୁ ଏକଦମ୍ ଉଚ୍ଚ ଲମ୍ଫ ନଗର-ପାଳକ ପଦକୁ !"

"ହ'ଲି ବଂଶର ଉତ୍ତରାଧିକାରୀକୁ କେହି ଗୁମାସ୍ତା ବୋଲି ଅବଜ୍ଞା କରିବା ଅସମ୍ଭବ ।"

"କିନ୍ତୁ ମୁଁ ତ ନିଜକୁ ତୁଚ୍ଛ ମନେ କରୁଥିଲି ; ମେରୀ ବି ମନେ-କରୁଥିଲେ ।"

"କିନ୍ତୁ ଏବେ ତ ଆଉ ତୁମେ ଗୁମାସ୍ତା ନୁହଁ । ଆମର ବିରୋଧୀ ଲୋକ ପୂର୍ଣ୍ଣାକ ତାଙ୍କ ଅଭିଯାନ ଆରମ୍ଭ କରିବା ପୂର୍ବରୁ ଆମେ ତୁମ

ନାମ ଓ ତୁମର ବର୍ତ୍ତମାନର ସାମାଜିକ ପ୍ରତିଷ୍ଠାକୁ ପ୍ରଚାର କରାଇ-ଦେବା ।"

"କିନ୍ତୁ ମୁଁ ଏ ବିଷୟ୍ପୂର୍ଣ୍ଣ ଆମୂଳ ଚଳ ବିଚାର କରି ମୋର ସିଦ୍ଧାନ୍ତ ଜଣାଇବି, ଆଜ୍ଞା !"

"ଆଜି ବେଳ ସେ ନାହିଁ ।"

"ଆପଣ ଆଗରୁ କାହାକୁ ଏ ପଦରେ ରଖିବାକୁ ବିଚାରି ଥିଲେ ?"

"ଆଗରୁ ? କାହା ଆଗରୁ ?"

"ଆମ ନଗର-ପାଳକାର ଏ ବିପର୍ଯ୍ୟୟ ହେବା ପୂର୍ବରୁ । ଏକଥା ଏଇଠାରେ ଥାଉ । ପରେ ଏ ବିଷୟରେ ଆଲୋଚନା କରିବା । ଗତ ଶନିବାର ଦିନ ଷ୍ଟୋର୍‌ରେ ଘର ଭିଡ଼ ହୋଇଥିଲା । ବିଚାରିଥିଲେ ସେଇ ଚକଡ଼ି ବି ବିକିଦେଇ ପାରିଥାନ୍ତି ।"

"ତମ ହାତରେ ଏ ଷ୍ଟୋର୍‌ଟି ଖୁବ୍ ଉନ୍ନତି କରିବ, ଏଥାନ୍ ! କିନ୍ତୁ ମୋର ଇଚ୍ଛା, ଏଥାନ୍ ! ତୁମେ ଷ୍ଟୋର୍‌ଟିକୁ ଆଉ ଟିକିଏ ବଢ଼ାଇ ଦେଇ, ବନ୍ଦୀ କରିଦିଅ । ତୁମର ଭବିଷ୍ୟତ ଅଛି ; ତୁମ ଭଳି ସମାଜର ଓପର ପାହ୍ୱାକୁ ଉଠିବା ଲୋକ ଗରାଖଙ୍କୁ ଖାଦ୍ୟଦ୍ରବ୍ୟ ବିକିବା ସୁନ୍ଦର ହେବ ନାହିଁ । ଆଚ୍ଛା, ଡାନି ବିଷୟରେ କିଛି ଖବରଟବର ପାଇଲ ?"

"ନାଇଁ ଆଜ୍ଞା, ଏପର୍ଯ୍ୟନ୍ତ କିଛି ପାଇନାହିଁ ।"

"ତା'କୁ ଟଙ୍କା ଦେଇ ତୁମେ ଭୁଲ କରିଛ ।"

"ବୋଧହୁଏ, ସେ କଥା ସତ । କିନ୍ତୁ ମୁଁ ବନ୍ଧୁ ପ୍ରତି ଉପକାର କରୁଛି ବୋଲି ଯୁ। କଲି ।"

"ହଁ, ଉପକାର କଲ ! ଖୁବ୍ ଉପକାର କଲ !"

"ମିଷ୍ଟର୍ ବେକର୍, ଆଜ୍ଞା ! ବେଲ୍-ଏଡାପ୍ଟାର୍‌ର ହେଲା କ'ଣ ?"

"କ'ଣ ହେଲା ? ତାହା ପୋଡ଼ିଗଲା ପରା !"

"ବନ୍ଦର ଭିତରେ !—ନିଆଁ ଲାଗିଲା କେମିତି, ଆଜ୍ଞା ?"

"ଉଚିତ ସମୟ ଏ ପ୍ରଶ୍ନର ଆଲୋଚନା କରିବାକୁ । ମୁଁ ଯାହା ଶୁଣିଛି, ସେତିକି ମାତ୍ର ଜାଣେ । ସେତେବେଳକୁ ମୋର ଏତେ ଅଳ୍ପ

ବସ୍ତୁସ ଯେ ଯାହା ଶୁଣିଥିଲ, ସେ ସବୁ ବ ମନେ ନାହିଁ । ପୁରୁଣା ଜାହାଜଟା, ଚର୍ବିରେ ହଡ଼ ହୋଇ ଯାଇଥିଲା । ବୋଧହୁଏ କୌଣସି ନାବିକ ଅସାବଧାନରେ ଡିଅସିଲ ଲଗାଇ ପକାଇଦେଲା । ତମ ଜେଜେବାପା ଜାହାଜର କପ୍ତାନ୍ । ସେ କୂଳକୁ ଆସିଥିଲେ । ଅଳ୍ପ ସମୟ ପୂର୍ବରୁ ଜାହାଜଟା ବନ୍ଦରରେ ଲଗିଥିଲା ।"

"ସେଥର ଜଳଯାହାରେ ବିଶେଷ ଲାଭ ହୋଇ ନ ଥିଲା ।"

"ହଁ, ସେ କଥା ଶୁଣିଛି ।"

"ଇନ୍‌ସୁ୍ୟରନ୍‌ସ ଟଙ୍କା ପାଇବାରେ କ'ଣ କିଛି ଅଡୁଆ ହେଲା ?"

"ହଁ, ଟିକଏ ହେବାର କଥା । ଇନସୁ୍ୟରନ୍‌ସ-ବାଲା ତଦାରଖ-କରିବା ପାଇଁ ଲୋକ ପଠାନ୍ତି, ପଠାଇଲେ । ଟଙ୍କା ପାଉ ପାଉ କିଛି ସମୟ ଲଗିଲା – ଟିକଏ ଘାଣ୍ଟରକଟ ହେଲା – କିନ୍ତୁ ଶେଷରେ ଆମେ ଟଙ୍କା ପାଇଲେ—ତମର ଅଧେ, ଆମର ଅଧେ ।"

"ମୋ ଜେଜେବାପା ସନ୍ଦେହ କରୁଥିଲେ ଯେ, ଜାହାଜରେ କିଏ ନିଆଁ ଲଗାଇଦେଲା ।"

"ଅଦ୍‌ଭୁତ କଥା । କିନ୍ତୁ ନିଆଁ ଲଗାଇ ଦଅନ୍ତା କାହିଁକି ? କାହାର କ'ଣ ଲାଭ ?"

"ଟଙ୍କା ପାଇବା ଲୋଭରେ । ତମିଶିକାର ବେଳ ତ ଗୁଳି ଯାଇଥିଲା ।"

"କିନ୍ତୁ ତୁମ ଜେଜେବାପା ତ ଏଭଳି ସନ୍ଦେହ କରିବା କଥା ମୁଁ କେବେ ଶୁଣି ନାହିଁ ।"

"ଆଦୌ ଶୁଣି ନାହାନ୍ତି ?"

"ଏଥାନ୍ ! ମନରେ କ'ଣ ଭାବୁଛ ଏ ସବୁ ପଚାରୁଛ ? ଏତେ ଦିନ ପୂର୍ବେ ଘଟିଥିବା ଘଟଣାକୁ କାହିଁକି ଭଲା ଏମିତି ଝିଙ୍ଗାରୁଛ ?"

"ଗୋଟାଏ ଜାହାଜକୁ ପୋଡ଼ିଦେବା ଭରି ଭୟାନକ କାର୍ଯ୍ୟ । ସେଥ୍ ତ ନରହତ୍ୟା ସଙ୍ଗେ ସମାନ । ମୁଁ ଭାବୁଛି, ଶୀଘ୍ର ହେଉ ବା ବିଳମ୍ବରେ ହେଉ, ସେ ଜାହାଜର ତଳିଟା ପାଣିରୁ ବାହାର କରିବି ।"

"ସେ ଜାହାଜର ତଳିଟା ? କିମିତି ?"

"ତାହା ଠିକ୍ କେଉଁଠି ବୁଡ଼ିଛି ମୁଁ ଜାଣେ । କୂଳରୁ ଅଧ-କେବଳ ଦୂରରେ ।"

"କିନ୍ତୁ ବାହାର କରିବ କାହିଁକି ? ଲାଭ କ'ଣ ?"

"କାଠ ପଟାଗୁଡ଼ାକ ମଜବୁତ୍ ଅଛି କି ନାହିଁ, ଦେଖିବାକୁ । ସେଲ୍‌ଟର୍ ଦ୍ୱୀପର ମୂଳ ଓକ୍-ଗଛର ପଟା ସିଏ । ତଳଟା ଯଦି ଭଲ ଥାଏ ତେବେ ଜାହାଜଟା ପୂରି ମରିଛି ବୋଲି ବିଗ୍ଭରିବାକୁ ହେବ ନାହିଁ । ଥାଉ ସେ କଥା । ବର୍ତ୍ତମାନ ଆପଣ ଯା'ନ୍ତୁ, ଟଙ୍କା-ବାକ୍‌ସର ପୂଜା ସମସ୍ତ ହୋଇଗଲାଣି । ମୋ'ର ବି ଏଥର ଦୋକାନ ଫିଟାଇବା ଦରକାର ।"

ଏଥର ତାଙ୍କ ପେଟଭିତରର ଘଣ୍ଟା-ଯନ୍ତ୍ର ଗ୍ଭଲିବାକୁ ଆରମ୍ଭ କଲା ଓ ସେ ଠିକ୍ ଠିକ୍ କରି ବ୍ୟାଙ୍କକୁ ବାହାରିଲେ ।

ଆଜି ବହ୍ନୁରୁଛି, ତାଙ୍କ ପରେ ବିଗରସ୍ ମଧ୍ୟ ଆସି ପହଞ୍ଚିବେ ବୋଲି ମୁଁ ଆଗରୁ ଜାଣିଥିଲି । ବିଚବିର ଅଧିକାଂଶ ସମସ୍ତ ଦୁଆର ମୁହଁକୁ ଉଣ୍ଡିବାରେ କଟୁଥିବ ନିଶ୍ଚୟ । ମିଷ୍ଟର୍ ବେକର୍ କେତେବେଳେ ଯିବେ ଉଣ୍ଡିବାକୁ, ସୁବିଧା ଜାଗାରେ ଠିଆ ହୋଇ ସେ ନିଶ୍ଚୟ ଦୋକାନକୁ ଆସିବାକୁ ଅପେକ୍ଷା କରି ରହିଥିଲେ ।

"ମୋର ଆଶା, ଆପଣ ମୋତେ ଦେଖି କାମୁଡ଼ି ମିଶିବେ ନାହିଁ ।"

"ଆପଣଙ୍କ ସଙ୍ଗେ ମୋର ଏତେ ରାଗାରାଗି ହେବାର ତ କିଛି କାରଣ ନାହିଁ ।"

"ସେ ଦିନ ଆପଣ ମୋ ଉପରେ ଏତେ କାହିଁକି ଚଟିଗଲେ ମୁଁ ଜାଣିପାରି ନାହିଁ । ବୋଧହୁଏ, ମୁଁ ଠିକ୍ ଭାବରେ କାମ କରି ଜାଣିଲି ନାହିଁ ।"

"ବୋଧହୁଏ, କାରଣ ସେଇ ।"

"ମୋର ପ୍ରସ୍ତାବଟା ଆପଣ ଭଲ କରି ବିବେଚନା କଲେଣି ଟି ?"

"ହଁ ।"

"କ'ଣ ତେବେ କହୁଛନ୍ତି ?"

"ହେଉଛି, ଶତକଡ଼ା ଛ' ହେଲେ ଭଲ ହୁଅନ୍ତା ।"

"ମୋ' କଂପାନି ଏଥିରେ ରାଜି ହେବେ କି ନାହିଁ କେଜାଣି ?"

"ତାଙ୍କ ଇଚ୍ଛା ।"

"ବୋଧହୁଏ ସାଢ଼େ ପାଞ୍ଚଯାଏଁ ସେମାନେ ଯାଇପାରନ୍ତି ।"

"ବାଙ୍କି ଅଧିକ ଆପଣ ନିଜ ପାଉଣାରୁ ଦିଅନ୍ତୁ ।"

"ଆରେ ବାପରେ ! ବାବୁ ! ଆପଣଙ୍କୁ ମୁଁ ମଫସଲିଆ ପିଲା ବୋଲି ବିଚାରିଥିଲି । ଆପଣ ତ ପିଠିରେ ହାତ ମାରିଲେ ଚମଡ଼ା ଉତ୍ତୁରି ଯାଉଛି ।"

"ମୁଁ ଯାହା କହିଲି ତାହା ମନ ହେଲେ ଗ୍ରହଣ କରନ୍ତୁ, ନ ହେଲେ ନାହିଁ ।"

"ଆଚ୍ଛା, ଆପଣଙ୍କ ଦୋକାନରୁ ହାରାହାରି କେତେ ପରିମାଣର ଅର୍ଡର୍ ମିଳିପାରିବ, ତା'ର ଗୋଟାଏ ଧାରଣା ଦିଅନ୍ତୁ ।"

"ମୋର ଟଙ୍କା ବାକ୍ସ ଉପରେ ଗୋଟାଏ ତାଲିକା ପଡ଼ିଛି । କିନ୍ତୁ ତାହା ପୂରା ନୁହେଁ ।"

ସେ ମଲାଟ କାଗଜରେ ମୁଁ ଟିପିଥିବା ଜିନିଷପତ୍ରର ତାଲିକା ଦେଖିଲେ । "ଭାଇ, ଦେଖୁଛି, ଆପଣଙ୍କ ପ୍ରସ୍ତାବ ଗ୍ରହଣ କରିବାକୁ ପଡ଼ିବ । କିନ୍ତୁ ଆପଣ ତ ଆମର ରକ୍ତ ଏକାବେଳକେ ଶୋଷିଦେବେ । ପୂରା ତାଲିକାଟା କ'ଣ ଆଜି ମିଳିବ ?"

"କାଲି ନେଲେ ମୋତେ ସୁବିଧା ହେବ । ଆପଣଙ୍କ ଅର୍ଡର୍‌ଟା ମଧ୍ୟ ଟିକିଏ ବଡ଼ ହେବ ।"

"ତେବେ କ'ଣ ଆପଣଙ୍କର ସବୁ ଅର୍ଡର୍ ଆମକୁ ଦେଇ-ଦେବେ ?"

"ମୋ ସଙ୍ଗେ ଭଲରେ ଚଳିଲେ, କୌଣସି ଆପତ୍ତି ନାହିଁ ।"

"ଭାଇ, ତା' ହେଲେ ତ ଆପଣଙ୍କ ମାଲିକର ଚୋଟିରେ ଆପଣ ବାଉଁଶ ପକାଇ ଦେବାକୁ ବସିଲେଣି । ଏମିତି କରି ସମ୍ଭାଳି ପାରିବେ ତ ?"

"ପରୀକ୍ଷା କରି ଦେଖିବ ।"

"ହଉ, ସେଥିରେ ମୋର କିଛି କହିବାର ନାହିଁ । ମୁଁ ଯାଉଛି, ମୋ'ର ସେ ସଙ୍ଗିନୀ ସାଙ୍ଗେ ଟିକିଏ ଆଳାପ କରିବି । ଭାଇ, ମୁଁ ତ ଦେଖୁଛି, ଆପଣ ଭାରି କାଳୁଆ ଲୋକ । କିନ୍ତୁ ଜାଣନ୍ତୁ ଯେ ସେ

ମାଇକଲ୍‌ଆଠା ଗୋଟାଏ ଛେନାଡାଉଆ ସବୁ ଘର । ଥରେ ଘାଟିରେ ଲାଗିଲେ ଛାଡ଼ିବ ନାହିଁ ।"

"ସେ ମୋ ସ୍ତ୍ରୀର ବନ୍ଧୁ ।"

"ବେଶ୍, ବେଶ୍, ଫିସାଦଟା ତ ବେଶ୍ ଅନୁମାନ କରୁଛି । ଆପଣ ପଢ଼ିଶା ଘରେ ଘଟୁଥିବା କଥାକୁ ଘଟଣା ବୋଲି କେହି ପସନ୍ଦ କରନ୍ତି ନାହିଁ । ନିଜ ସ୍ତ୍ରୀର ବନ୍ଧୁ ସାଙ୍ଗେ ଭାବ ରହିଲେ ତ କାହାର ସନ୍ଦେହ ବି ହେବ ନାହିଁ । ଆପଣ ଅସଲକଡ଼େ ! ଆଗ ଜାଣି ପାରି ନଥିଲି, ଏବେ ବେଶ୍ ଚିହ୍ନୁଛି । ଏକାଥରକେ ଶତକଡ଼ା ଛ'ଅ ! ବାପରେ ! ବାପ ! ହଉ କାଲି ସକାଳେ ଆସିବି ତେବେ ?"

"ମୋତେ ସନ୍ଧ ବେଳ ହେବ, ଅଜ ଦୋକାନ ବନ୍ଦ କଲାବେଳକୁ ଆସିଲେ ଆପତ୍ତି ନାହିଁ ।"

"ନାଇଁ, କାଲି ସକାଳକୁ ରଖନ୍ତୁ ।"

ଛୁଟି ପୂର୍ବର ଶନିବାର ଦିନ ଗରାଖ ଭେଲା ଭେଲା ହୋଇ ଓପରେ ପଡ଼ୁଥିଲେ । ଛୁଟିପର ଏଇ ମଙ୍ଗଳବାରକୁ ସେଦିନର ଭିଡ଼ ନାହିଁ । ଗରାଖ ଆସୁଛନ୍ତି ସବୁ ସମ୍ଭାଳି, ଓ ସଉଦା କରୁଛନ୍ତି ଧୀରେ ସୁସ୍ଥେ । ସଉଦା କରିବା ପୂର୍ବରୁ ଆମ ସହରର କର୍ତ୍ତାମାନଙ୍କ ଅପବାଦ ବିଷୟରେ କଥାବାର୍ତ୍ତା ଆରମ୍ଭ କରୁଥାନ୍ତି । ସମସ୍ତଙ୍କ ମୁହଁରେ ଏକ କଥା – କର୍ତ୍ତାମାନଙ୍କ ବିରୁଦ୍ଧରେ ଏଭଳି ଅଭିଯୋଗ ହେବା ବଡ଼ ଦୁଃଖର କଥା; ବଡ଼ ଦୁର୍ଭାଗ୍ୟର କଥା; ଏ ଘଟଣାରେ ସମଗ୍ର ସହରର ମୁଣ୍ଡ ତଳକୁ ହୋଇଗଲା । ମୁହଁରେ ଏଭଳି ଦୁଃଖ ପ୍ରକାଶ କରୁଥିଲେ ହେଁ, ମନେ ମନେ ଏମାନେ ବେଶ୍ ଆମୋଦ ଅନୁଭବ କରୁଥାନ୍ତି । ଏଭଳି ଗୋଟାଏ ଅପବାଦ ବହୁଦିନ ହେଲା ଆମ ସହରରେ ଶୁଣା ନ ଥିଲା, ତେଣୁ ବିସ୍ମୟ ସଙ୍ଗେ ଆମୋଦ ବି ହେଉଥାଏ । ଲସ୍ ଏଞ୍ଜେଲସ୍‌ରେ, ନିକଟରେ ଡେମକ୍ରାଟିକ୍ ଦଳର ଜାତୀୟ ମହାସଭା ବସିବାକୁ ଅଛି । ସେ ବିଷୟରେ ଜଣକ ମୁହଁରୁ ପଦେ ବି କଥା ବାହାରୁ ନ ଥାଏ । ଆମ ସହରଟାରେ ଅବଶ୍ୟ ରିପବ୍ଲିକାନ୍ ଦଳର ପ୍ରତିପତ୍ତି ବେଶି, କିନ୍ତୁ ସେଥିପାଇଁ ଯେ ଡେମକ୍ରାଟିକ୍ ଦଳର ମହାସଭା ବିଷୟରେ କେହି ଆଗ୍ରହୀ ନ ଥିଲେ, ତାହା ନୁହେଁ । ଅସଲ କଥା ହେଲା, ନିଜ ପାଖ ଆଖରେ ଘଟୁଥିବା ଘଟଣାରେ

ସ୍ୱମସ୍ତଙ୍କର ପୂର୍ବ ଆଗ୍ରହ ; ଦୂର ଲସ୍ ଏଞ୍ଜେଲସ୍ ବିଷୟରେ ମୁଣ୍ଡ ଘୂରାଉଛୁ କାଏଁ ? ଆଜ ଯେଉଁ ଲୋକମାନେ ଅପବାଦରେ ମୃତକଳ୍ପ ହୋଇ-ଛନ୍ତି ସେମାନେ ପ୍ରତ୍ୟେକଙ୍କର ଚିହ୍ନା ଲୋକ । ତେଣୁ ସେମାନଙ୍କ କବର ଉପରେ ନାଚିବାରେ ବେଶି ଆନନ୍ଦ ହେଉଛୁ ।

ଆମ ପୁଲିସ୍-ହାକିମ ଷ୍ଟୋନ୍‌ଓ୍ୱାଲ୍ ଜ୍ୟାକ୍‌ସନ୍ ଢ'ଫତରେ ଆସି ପହଞ୍ଚିଲେ । ସେ ଘୋର କ୍ଲାନ୍ତ ଓ ବିଷଣ୍ଣ ଦିଶୁଥାନ୍ତି ।

ମୁଁ ତେଲ ଡବାଟା ଆଣି ଟେବୁଲ୍‌ରେ ଥୋଇଲି ଓ ଖଣ୍ଡେ ତାଉଲରେ ତା ଭିତରୁ ପୁରୁଣା ପିସ୍ତଲଟା ଦଘଣ୍ଟି ଦଘଣ୍ଟି ବାହାରକଲି ।

"ନିଅ ହାକିମେ ! ମୁଁ ସେଦିନ ଯେଉଁ କଥା କହୁଥିଲି ତା'ର ସୁସ୍ପଷ୍ଟ ପ୍ରମାଣ ହେଉଛି ଏଇ ପିସ୍ତଲ୍‌ଟା । ଏଥିକୁ ଅନୁଗ୍ରହ କରି ସାଙ୍ଗେ ସାଙ୍ଗେ ନେଇ ଯାଅ । ଏଇଟା ଏଠାରେ ରହିଲେ ମୋତେ କମିତି କମିତି ଲାଗୁଛି ।"

"ହଉ, ନେଉଛୁ । ଆଗ ଏଥିକୁ ପୋଛି ଦିଅ । ଏଇ ପିସ୍ତଲକୁ ପୂର୍ବେ କହୁଥିଲେ ଦଶଟଂକିଆ ପିସ୍ତଲ—ଚୋପିବାଲା ଆଇଭର୍-ଜନସନ୍ ପିସ୍ତଲ । ଆଚ୍ଛା, ତୁମ ଅନୁପସ୍ଥିତିରେ ଦୋକାନ ସଂଭାଳିବାକୁ ଆଉ କିଏ ଅଛି ନା ?"

"ନା, ଅଉ କେହି ନାହାଁନ୍ତି ।"

"ମ୍ୟାରୁଲେ ଗଲେ କୁଆଡ଼େ ?"

"ସେ ସ୍ଥାନାନ୍ତରକୁ ଯାଇଛନ୍ତି ।"

"ତା' ହେଲେ ତ ତୁମକୁ କିଛି ସମୟ ପାଇଁ ଦୋକାନ ବନ୍ଦ କରିବାକୁ ପଡ଼ିବ ।"

"କାହିଁକି, ହାକିମେ ? ହୋଇଛି କ'ଣ ?"

"ବୁଝିଲ, ଏଇ ଗୁର୍ଲି ପ୍ରାୟର୍‌ଙ୍କ ଟୋକାଟା ଆଜ ସକାଳେ ଘରୁ ପଳେଇଥିଲା । ଆଚ୍ଛା, ତୁମ ଏ ଥାକମାନଙ୍କରେ କୋଉଠି ଥଣ୍ଡା ପାଣି ଅଛି ନା ?"

"ନିଶ୍ଚୟ ଅଛି । କମଳାଲେମ୍ବୁ ସରବତ, ଧର-ସରବତ, ଲେମ୍ବୁ-ପାଣି, କୋକ୍—ସବୁ ଅଛି । ଏଥିରୁ କେଉଁଟା ଦରକାର ?

"ମୋତେ ବଡ଼ିଆ ପାଣିଟାଏ ଦିଅ, ଟିକଏ ଥଣ୍ଡା ହେବ । ସେଇ ଯେଉଁ କଥା କହୁଥିଲି । ଏଇ ଗ୍ଲେନ୍‌; ଅଦ୍ଭୁତ ଲୋକ । ତାଙ୍କ ପୁଅ ଟମ୍‌ର ବୟସ ମାତ୍ର ଆଠବର୍ଷ । ସେ ମନେ ମନେ ଭାବୁଛନ୍ତି, ସଂସାରଟା ପାଇ ତାଙ୍କୁ ଦେଖି ପାରୁନାହାନ୍ତି । ତେଣୁ ତା' ମନ, ସେ ଘରୁ ପଳେଇଯାଇ ଦସ୍ୟୁବୃତ୍ତି କରିବ । ଅନ୍ୟ କୋଉ ବାପ ହୋଇଥିଲେ, ଏକଥା ଶୁଣି ପୃଷ୍ଠଭାଗରେ ଚାବୁକ ବଜାଇଥାନ୍ତା, କିନ୍ତୁ ଗ୍ଲେନ୍ ସେଭଳି ବାପା ନୁହନ୍ତି । ଦଣ୍ଡ ଦେଇ ପୁଅକୁ ଶାସନ କରିବା ତାଙ୍କର ମତ ନୁହେଁ । ଆଚ୍ଛା, ଏ ପାଣିଟା ଆଣି ଥୋଇଲି ଯେ, ଖୋଲି ଦେଲେ ପିନା ହେବ ।"

"କ୍ଷମା କରିବ । କଥାରେ ଭାସିଗଲି । ହେଉଛି ପିଅ । ହଁ, ଗ୍ଲେନ୍ କଥା କହୁଥିଲ ଯେ, ତା'ସଙ୍ଗେ ବା ତା ପୁଅ ସଙ୍ଗେ ମୋର ସମ୍ପର୍କ କ'ଣ ? ଅବଶ୍ୟ ଗ୍ଲେନ୍‌କୁ ବନ୍ଧୁ ବୋଲି ମୁଁ ସୁଖ ପାଏ ।"

"ହଁ କହୁଛି । ଗ୍ଲେନ୍ ଅନ୍ୟ ବାପ ପରି ପିଲାଙ୍କୁ ଶାସନ କରିବାବାଲା ନୁହନ୍ତି । ତାଙ୍କ ମତ, ଟମ୍ ଯାହା ଚାହୁଁଛି ତା'କୁ ତା' କରିବାରେ ସାହାଯ୍ୟ କଲେ ସେ ଶେଷରେ ବାଟକୁ ଆସିବ । ସେଇ ବିଶ୍ୱାସରେ, ଆଜି ସକାଳେ ବାପ ପୁଅ ଗୋଟାଏ ବନ୍ଧଣା ଧଇଲେ ଓ ମଧ୍ୟାହ୍ନ ଭୋଜନ ପାଇଁ ଗୁଡ଼ାଏ ଖାଦ୍ୟସାମଗ୍ରୀ ବାନ୍ଧିଲେ । ଟମ୍ କହିଲା, ଆତ୍ମରକ୍ଷା କରିବା ପାଇଁ ସାଙ୍ଗରେ ଗୋଟାଏ ଜାପାମା ଛୁରି ଆଉ ନେବ । କିନ୍ତୁ କମରରେ ଖଣ୍ଡା ଓହଳାଇବାରୁ ତାହା ତଳେ ଘୁସୁରିଲା; ତେଣୁ ଟମ ଶେଷରେ ଫଇସଲା କଲା ଗୋଟାଏ ବନ୍ଧୁକ ସଙ୍ଗିନ୍ ନେବ । ଗ୍ଲେନ୍ ଏସବୁ ସରଂଜାମ ସହିତ ପୁଅକୁ ମଟରରେ ବସାଇଲେ ଓ ତା'କୁ ଝଣ୍ଡେବାଟ ଆଗେଇ ଦେବା ନିମନ୍ତେ ମଟର ହାଙ୍କିଲେ; ଟେଲର୍ ପଡ଼ିଆ ପାଖରେ ପୁଅକୁ ଓହ୍ଲାଇ ଦେଲେ—ଜାଣ ନା, ଟେଲର୍ ପଡ଼ିଆ—ଯେଉଁଠି ପୂର୍ବେ ଟେଲର୍ ବଂଶର ଘର ଥିଲା । ସେତେବେଳକୁ ପ୍ରାୟ ସକାଳ ନଅଟା । ଗ୍ଲେନ୍ ପୁଅର ଗତିବିଧି ଲକ୍ଷ୍ୟ କରିବାକୁ ସେଠାରେ ଟିକଏ ଅପେକ୍ଷା କଲେ । ଟମ୍ ମଟରରୁ ଓହ୍ଲାଇବା ମାତ୍ରେ ତଳେ ବସିପଡ଼ି ଏକା ବକ୍ତକେ ୭ଟି ସ୍ୟାଣ୍ଡଉଇଚ୍ ଓ କଡ଼ା ସିଝା ହୋଇଥିବା ଦୁଇଟି ଅଣ୍ଡା ଉଦରସ୍ଥ କରିଦେଲା ଓ ତା'ପରେ ବନ୍ଧଣାଟି କାଖରେ ଜାକି ଓ ସଙ୍ଗିନ୍‌ଟା ଧରି ଟେଲର୍ ପଡ଼ିଆ ଭିତରେ ପଶିଲା । ଗ୍ଲେନ୍ ମଟର ଧରି ଘରକୁ ଫେରିଲେ ।"

ଜାଣିଲି, ଏଥର ଆସିବ ସେଇ ସମ୍ବାଦ, ଯାହା ପାଇବାକୁ ମୁଁ ଆଶଂକା କରୁଥିଲି । ମୁଁ ଆଗରୁ ଜାଣି ପାରିଥିଲି ଯାହା ଘଟିବ ; ଆଗରୁ ଜାଣି ପାରିଥିଲି, ଷ୍ଟୋନ ଯାହା କହିବେ । ଯାଉ, 'ବାଜୁ କୋରଡ଼ା, ଧୋକା ଭୁଟୁ ।'

"ପ୍ରାୟ ଏଗାରଟା ବେଳେ ଟମ୍ କାନ୍ଦୁଣୁ ମାନ୍ଦୁଣୁ ହୋଇ ଟେଲର୍ ପଡ଼ିଆରୁ ରାସ୍ତାକୁ ବାହାରିଲା ଓ ବାଟରେ ଜଣେକ ମଟର ଅଟକାଇ ସେଥିରେ ଘରକୁ ଫେରିଲା ।"

"ଘଟଣାଟା କ'ଣ ମୁଁ ତ ଅନୁମାନ କରିପାରୁଛି, ଷ୍ଟୋନ ! କ'ଣ ତାଙ୍କର ଖବର ?"

"ଦୁଃଖର ବିଷୟ, ତୁମ ଅନୁମାନଟା ସତ । ପୋଡ଼ ଯାଇଥିବା ଟେଲର୍ କୋଠାର ମାଟି ତଳ ଗୁମ୍ଫିରେ ତାଙ୍କ ପଡ଼ିଥିଲେ । ପାଖରେ ଥୁଆ ହୋଇଥିଲା ହୁଇସ୍କିର ଗୋଟାଏ ପେଟି ; ମୋଟେ ପୋଡ଼ିଏ ବୋତଲ ଖାଲି ହୋଇଥିଲା , ପାଖରେ ଆଉ ଥୁଆ ହୋଇଥିଲା ମଦ-ବଟିକାର ଗୋଟାଏ ଫାଇଲ । ଏଇ ବିଷୟରେ ତୁମକୁ ପଚାରିବାକୁ ବାଧ୍ୟ ହେଉଛି, ଏଥି ! ସେ ସେଠାରେ ବହୁତ ଦିନ ହେଲା ପଡ଼ିଥିବାପରି ଜଣା ପଡ଼ୁଛି । ମୂଷାଗୁଡ଼ାକ ମୁର୍ଦ୍ଦାରଟାକୁ କୌଣସି ଜନ୍ତୁ ଭଣିଭଣା କରି ପକାଇଛି, ବିଶେଷ କରି ମୁହଁଟାକୁ । ସମ୍ଭବତଃ ବିଲେଇ । ତାଙ୍କ ଦେହରେ କୌଣସି ଦାଗ ବା ଚିହ୍ନ ଥିବାର ତୁମର ମନେ ପଡ଼ୁଛି କି ?"

"ହାକମେ ! ମୁଁ ତାଙ୍କର ଶବକୁ ଯାଇ ଚିହ୍ନିବାକୁ ପ୍ରସ୍ତୁତ ନୁହେ ।"

"ଆରେ ! ଆଉ କିଏ ଭଲ ଚାହୁଁଛି ସେ ଦୃଶ୍ୟ ଦେଖିବାକୁ ? ଚିହ୍ନ କଥା ପଚାରୁଛି, କହ ।"

"ମୋର ମନେ ପଡ଼ୁଛି, ତା' ବାଁ'ଗୋଡ଼ ଆଣ୍ଠୁ ଉପରକୁ, ଲୁହାକଣ୍ଟା ବାଡ଼ର ଗୋଟାଏ କଣ୍ଟା ଭୁଷି ହୋଇ ଦାଗ ହୋଇଥିଲା । ଆଉ—ମୋ' କାମିଜ୍‌ର ହତା ଟେକି ଦେଖାଇଲି—ଏଇପରି 'ନାଲପାନ'ର ଗୋଟାଏ ଚିତା ତା' ହାତରେ କୁଟା ହୋଇଛି । ପିଲାଦିନେ ଦୁହେଁ ଏକାପରି ଚିତା କୁଟାଇଥିଲୁଁ । ସେଫ୍‌ଟିରେଜର୍ ବ୍ଲେଡ଼ରେ କାଟି ନାଲି କାଳି ଘଷିଥିଲୁଁ । ଦେଖ, ମୋ ହାତରେ ଚିତାଟା କେମିତି ପରିଷ୍କାର ଦିଶୁଛି ; ତା'ର ବି ସେଇମିତି ଥିବ ।"

"ବେଶ୍ ! ଏଇ ଶତାଂଶରେ ତ ଲସ ଚହ୍ନଟ ହୋଇଯିବ । ଆଉ ଭଲ କଛି ଚହ୍ନ ଅଛି ?"

"ହଁ, ଗୋଟାଏ ବଡ଼ କଟା ଦାଗ ଅଛି, ବାଁ ପଟ ଖୁଆ ତଳକୁ । ତା' ପଞ୍ଜରା ହାଡ଼ରୁ ଖଣ୍ଡେ କଟା ହୋଇଥିଲା । ତା' ଫୁସ୍‌ଫୁସ୍‌ରେ ପାଣି ଜମି ନଉମୋନିଆ ହୋଇଥିଲା । ସେତେବେଳକୁ ଆଜିକାଲିର ନୂଆ ଔଷଧ ଆବିଷ୍କୃତ ହୋଇ ନ ଥିଲା । ତେଣୁ ପଞ୍ଜରା କାଟି ପାଣିଗୁଡ଼ାକ ବାହାର କରିବାକୁ ପଡ଼ିଥିଲା ।"

"ଆହୁରି ଭଲ ; ପଞ୍ଜରାରେ କଟା ଦାଗ ଥିଲେ ଆଉ ଅଧିକା କଛି ଦରକାର ହେବ ନାହିଁ । ମୁଁ ବି ଆଉ ଥରେ ଯାଇ ଲସ୍ ଦେଖିବା ଦରକାର ପଡ଼ିବ ନାହିଁ । ଅପମୃତ୍ୟୁର କାରଣ ଅନୁସଂଧାନ କରିବା ହାକମ, କରୋନର୍, ନିଜେ ଯାଇ ଦେଖୁଥାନ୍ତି । ତୁମକୁ କେବଳ ତାଙ୍କ କୋର୍ଟ୍‌ରେ ହଲପ୍ ନେଇ ଦାଗ ଓ ଚହ୍ନ ବିଷୟରେ ସାକ୍ଷ୍ୟ ଦେବାକୁ ପଡ଼ିବ ।"

"ସେଥିରେ ମୋର ଆପତ୍ତି ନାହିଁ । କନ୍ତୁ, ଷ୍ଟୋନ୍, ମୋ'ର ଏତିକମାତ୍ର ଅନୁରୋଧ, ମୋତେ ଡାକ୍ତର ମୁର୍‌ଦାର୍ ଦେଖିବାକୁ ଯୋଷାର ନାହିଁ । ତୁମେ ତ ଜାଣ, ସେ ଥିଲା ମୋର ଅନ୍ତରଙ୍ଗ ବନ୍ଧୁ ।"

"ନିଶ୍ଚୟ, ନିଶ୍ଚୟ, ଏଥି, ସେ ବିଷୟରେ ମୁଁ ସାବଧାନ ରହିବ । ଅଚ୍ଛା, ତୁମେ ଆମ ସହରର ମ୍ୟୁନିସିପାଲିଟି ପରିଚାଳକ ହେବ ବୋଲି ଯାହା ଶୁଣାଯାଉଛି, ସେ କଥା କ'ଣ କହିବଟି ।"

"ତୁମଠାରୁ ତ ମୁଁ ଏକଥା ପ୍ରଥମେ ଶୁଣିଲି, ହାକମେ ! ଛାଡ଼ ସେ କଥା । ମିନଟ୍ ଦୁଇଟା ଏଠାରେ ଟିକଏ ବସିବ କ— ।"

"ମୁଁ ଯିବାକୁ ତରତର ହେଉଛି , ବହୁତ କାମ ।"

"ମୋତେ ଯୋଡ଼ାଏ ମିନଟ୍ ରହ—ମୁଁ ରାସ୍ତାର ଆରପାଖ ଦୋକାନକୁ ଧାଇଁ ଯାଇ ତୁମ ପାଇଁ ନାଲିପାଣି ମୁନ୍ଦାଏ ନେଇ ଆସିବ ।"

"ଓଃ, ନାଲିପାଣି ! ସେଥିପାଇଁ ବସିବାରେ ଆପତ୍ତି ନାହିଁ— ଯାଅ । ପୁଣି, ଆମ ଭାବୀ ନଗର-ପାଳକଙ୍କ ସଙ୍ଗେ ସୌଜନ୍ୟ ରକ୍ଷା କରିବା ତ ଦରକାର ।"

ତାଙ୍କ ପାଇଁ ପାନୀୟ ଆଣିଲି ଓ ନିଜ ପେଟରେ ବି ପାଣିଏ ପୂରାଇ ଦେଲି । ଷ୍ଟୋଣ ବିଦାୟ ନେବା ପରେ, ଖଣ୍ଡେ ମୋଟ କାଗଜରେ 'ଦୁଇଟାରେ ଫେରିବି' ବୋଲି ଲେଖି ବାହାର ପଟେ ଟାଙ୍ଗି ଦେଇ ଭିତରୁ ଦୁଆର ବନ୍ଦକରି, ଦୁଆର ଓ ଝରକାର ପରଦା ସବୁ ଟାଣି ଦେଲି ।

ମୋ କାରବାର ଟେବୁଲ୍ ପାଖେ, ଟୋପିର ଚମଡ଼ା ବାକ୍ସ୍-ଉପରେ, ମୋ ଷ୍ଟୋର୍ ଭିତରେ ବସି ରହିଲି । ପରଦା ଯୋଗୁଁ ହୋଇଥିବା ଗାଢ଼ ସବୁଜ ଅନ୍ଧକାର ଭିତରେ ମୁଁ ରହିଲି ଏକୁଟିଆ, ସାରା ସଂସାରକୁ ମୁହଁ ଲୁଚାଇ ।

—୦—

# ବିଂଶ ପରିଚ୍ଛେଦ

ତିନିଟା ବାଜିବାକୁ ଦଶ ମିନିଟ୍ ଥାଇ ମୁଁ ଷ୍ଟୋର୍‌ର ବାଡ଼ ଦୁଆର ବାଟେ ବାହାରିଲି ଓ ଗଳି ମୋଡ଼ ପାର ହୋଇ ବ୍ୟାଙ୍କ୍‌ର ସଦର ଦରଜା ବାଟେ ଭିତରକୁ ପଶିଲି । ପିତଳ ଖାଡ଼ରେ ତିଆରି ତାଙ୍କ ପଂଜୁରି ଭିତରେ ମର୍ଫି ବସିଥାନ୍ତି । ସେ ଜଲାବାଟେ ମୋ ହାତରୁ ନୋଟ୍ ଡାଡ଼ାଟା, ଚେକ୍‌ଗୁଡ଼ାକ ଓ ମାଟିଆ ପୁଲିନ୍ଦାଟା ନେଲେ ଓ ଏ ସବୁ ଡିପୋଜିଟ୍ କରିବାକୁ ମୁଁ ପୂରଣ କରିଥିବା ସ୍ଲିପ୍‌ଟା ବି ନେଲେ । ଆଙ୍ଗୁଠିକୁ କଣ୍ଢେଇ ପରି କରି ସେ ବ୍ୟାଙ୍କ୍ ରେଜିଷ୍ଟ୍ରାର୍‌ର ପତ୍ର ଲେଉଟାଇ ମୋ ପୃଷ୍ଠାରେ ବିଭିନ୍ନ ଠାଣିରେ ଅଙ୍କଗୁଡ଼ାକ ବସାଇଲେ—ତାଙ୍କ ଲମ୍ବା କଲମ ଚର୍ ଚର୍ ଶବ୍ଦ କରୁଥାଏ । ମୋ ଦସ୍ତଖତ ପାଇଁ ରେଜିଷ୍ଟ୍ରି ମୋ ଆଡ଼କୁ ଠେଲି ଦେଇ ଦେଇ, ବଡ଼ ସାବଧାନ ଦୃଷ୍ଟିରେ, ମନର ଭାବ ପ୍ରଚ୍ଛନ୍ନ ରଖି, ସେ ମୋତେ କହିଲେ—

"ଏଥାନ୍, ତୁମକୁ କଷ୍ଟ ହେବ ବୋଲି ମୁଁ ଏ କଥା ପକାଇବାକୁ ଚାହେଁ ନାହିଁ । ମୁଁ ଜାଣେ ସେ ଥିଲେ ତୁମର ସାଙ୍ଗ ।"

"ଧନ୍ୟବାଦ ।"

"ତୃମ୍ପା ତୃମ୍ପା ଶୀଘ୍ର ଖସି ଯିବ ଯେବେ ତେବେ ଆମ ବୁଦ୍ଧିମନ୍ତ ପୁରୁଷଙ୍କଠାରୁ ରକ୍ଷା ପାଇପାରୁ ।"

କିନ୍ତୁ ମୁଁ ରକ୍ଷା ପାଇଲି ନାହିଁ । ମୋର ଦୃଢ଼ ବିଶ୍ୱାସ, ମର୍ଫି ତାଙ୍କ ଗୋଡ଼ ପାଖେ ଥିବା ଘଣ୍ଟି ଚିପି ଦେଇ ମିଷ୍ଟର୍ ବେକର୍‌ଙ୍କୁ ଇସାରା ଦେଇଥିଲେ । ମୁଁ ବ୍ୟାଙ୍କ୍‌ରୁ ବାହାରି ଯିବାକୁ ଉଦ୍ୟତ ହେଉଛି, ମିଷ୍ଟର୍ ବେକର୍‌ଙ୍କ ଅଫିସର ମେଘୁଆ କାଚର ଦୁଆର ଫିଟିଲା ଓ ମିଷ୍ଟର୍ ବେକର୍ ଆତ୍ମପ୍ରକାଶ କଲେ—ଫିଟ୍‌ଫାଟ୍, ସ୍ଲିମ୍ ଚେହେରା, ମୁଣ୍ଡର ବାଳ ଧଳା ପଡ଼ି ଯାଇଥିଲେ ବି ଚକ୍‌ଚକ୍ । ସେ ମୃଦୁ ସ୍ୱରରେ କହିଲେ, "ଏଥାନ୍ ! ମୁହୂର୍ତ୍ତେ ସମୟ ଦେଇ ପାରିବ କି ?"

ତାଙ୍କ ସଙ୍ଗେ ହିସାବ ନିକାଶ କରିବାଟା ଆଉ ଗଡ଼ାଇ ଲାଭ ନାହିଁ ବୋଲି ବିଚାରି, ତାଙ୍କ ମେହୁଆକାଠର ନିଭୃତ ନିଳୟ ଭିତରେ ପଶିଲି । ସେ ଦୁଆରଟାକୁ ଏତେ ଧୀରେ କରି ବନ୍ଦ କଲେ ଯେ ଛିଟ୍‌କଣିର ଆବାଜଟା ବି ଶୁଣି ପାରିଲି ନାହିଁ । ତାଙ୍କ ସାମ୍‌ନା ଟେବୁଲ ଉପରେ ମୋଟା କାଚର ଚକ୍ତା ପଡ଼ିଥାଏ । ତା' ତଳେ ଟାଇପ୍ ହୋଇଥିବା ସଂଖ୍ୟାର ସ୍ତମ୍ଭ ସବୁ ଥିବାର ଦିଶୁଥାଏ । ମଝିରେ ମିଷ୍ଟର୍ ବେକର୍‌ଙ୍କର ଡେଙ୍ଗା ଚଉକି ; ତା'ର ଦୁଇ ପାଖରେ ତା'ଠାରୁ ପଦମର୍ଯ୍ୟାଦାରେ ନ୍ୟୂନ ଦୁଇଟି ଚଉକି ପଡ଼ିଥାଏ । ବଡ଼ ଚଉକିର ଦୁଇପାଖେ ଏ ଦୁଇଟି, ଦୁଧଖିଆ ପିଲି ପରି ଦିଶୁଥାନ୍ତି । ସେ ଦୁଇଟି ଚଉକି ସାନ ହେଲେ ବି, ଗଦି ଥିବାରୁ ବେଶ୍ ଆରାମଦାୟକ ହୋଇଥାଏ । ମୁଁ ସେଥିରୁ ଗୋଟିକରେ ବସି ଯିବାରୁ ମିଷ୍ଟର୍ ବେକର୍‌ଙ୍କୁ ଚାହିଁବାକୁ ମୋତେ, ମୁଣ୍ଡ ଉପରକୁ ଟେକି-ବାକୁ ପଡ଼ିଲା । ଅନୁଗ୍ରହପ୍ରାର୍ଥୀ ଲୋକ ଦାତାଙ୍କ ଆଡ଼କୁ ଉପରକୁ ମୁହଁକରି ଚାହିଁଲା ପରି ମୋତେ ଚାହିଁବାକୁ ପଡ଼ୁଥାଏ । ମିଷ୍ଟର୍ ବେକର୍ ଆରମ୍ଭ କଲେ :—

"ବଡ଼ ଦୁଃଖର ବିଷୟ ।"

"ହଁ, ଆଜ୍ଞା !"

"ଏଥିପାଇଁ ଅବଶ୍ୟ ଷୋଳପଣ ଦୋଷ ତୁମକୁ ଦିଆ ଯାଇପାରିବ ବୋଲି ମୁଁ ବିଚାରୁ ନାହିଁ । ଶୀଘ୍ର ହେଉ, ବା ବିଳମ୍ବରେ ହେଉ, ଯେମିତି ହେଲେ ଏଇଆ ଘଟିଥାନ୍ତା ।"

"ସେ କଥା ସମ୍ଭବ ।"

"ମୋର ବିଶ୍ୱାସ, ତୁମେ ଯାହା କଲ, ତାହା ଖୁବ୍ ଭଲ ଉଦ୍ଦେ-ଶ୍ୟରେ କରୁଛ ବୋଲି ନିଶ୍ଚୟ ବିଚାରିଥିଲ ।"

"ମୁଁ ବିଚାରିଥିଲି, ସ୍ୱାସ୍ଥ୍ୟ ଫେରିପାଇବାକୁ ତାଙ୍କୁ ଗୋଟିଏ ସୁଯୋଗ ଦେବାକୁ ।"

"ଅବଶ୍ୟ, ଖୁବ୍ ଭଲ ଉଦ୍ଦେଶ୍ୟ ରଖି କାମ କରିଥିଲ । କିନ୍ତୁ ପରିଣାମଟା— ।"

ଲୋକଟା ପ୍ରତି ମୋର ଘୃଣା, ଖଙ୍କାର ପରି, ମୋ ତୋଟିରେ ଜମା ହୋଇ ମୋର ଶ୍ୱାସରୁଦ୍ଧ କରି ପକାଉଥାଏ । ମୋ'ର ବିରକ୍ତି ବାକ୍ୟରେ

ପ୍ରକାଶିତ ନ ହୋଇ ପାରି ମୋର ଅନ୍ତରକୁ ଜର୍ଜରିତ କରି ପକାଉ ଥାଏ ।

ମିଷ୍ଟର୍ ବେକର୍ ପୁଣି କହିଲେ, "ଲୋକଟାର ଜୀବନ ବରବାଦ୍ ହୋଇଗଲା । ଶେଷରେ ମଣିଷଟା କଲବଲ ହୋଇ ମଲା ତ ଗଲା, ଏବେ ଆମକୁ ଗୋଟାଏ ବଡ଼ ଅଡୁଆରେ ପକାଇ ଦେଇ ଗଲା । ତା'ର କିଏ ନିକଟସମ୍ପର୍କୀୟ ଲୋକ ଅଛନ୍ତି ଖବର ରଖିଛ ?"

"ସେପରି କେହି ଥିଲା ପରି ମନେ ହେଉନାହିଁ ।"

"ଥିବେ ନିଶ୍ଚୟ ; ପଇସାବାଲା ଲୋକର ଆତ୍ମୀୟ ଲୋକ ଥିବାର କଥା । ନ ଥିଲେ ବାହାରିବେ ।"

"କିନ୍ତୁ ତାଙ୍କର ପଇସା ଆସିବ କୁଆଡ଼ୁ ?"

"ଟେଲର୍ ପଡ଼ିଆ ତ ତା'ର ଥିଲା । ଏହା ବନ୍ଧକ ତ ହୋଇନାହିଁ । କୌଣସି ପ୍ରକାର ଆବଦ୍ଧ ବି ନାହିଁ ମୁଁ ଜାଣେ ।"

"ସେଇ ପଡ଼ିଆଟା ତ ! ହେଇ ହେଇ ପଡ଼ିଆଟାଏ ; ତା' ଭିତରେ ଗୋଟିଏ ମାଟିଗଦା ଗୁମ୍ଫି ।"

"ଏଥାନ୍ ! ମୁଁ ତୁମକୁ କହୁଛି, ଆମର ଏ ସମଗ୍ର ଅଞ୍ଚଳର ଗୋଟାଏ ବଡ଼ ଅଭାବ ପୂରଣ କରିବାପାଇଁ ଗୋଟାଏ ଉଡ଼ାଜାହାଜ ବନ୍ଦର ତିଆରି କରିବାକୁ ଆମେ ଯୋଜନା କରିଛୁ । ଟେଲର୍ ପଡ଼ିଆଟା ସମତଳ ଜାଗା ; ସ୍ତୂପକୁ ଗୁଡ଼ିଲେ, ପର୍ବତ ଗୁଡ଼ାକ ବୁଲ-ଡୋଜର୍‌ରେ ଛାଡ଼ି ଉଡ଼ା ଜାହାଜ ପାଇଁ ଘୋଷରା ତିଆରି କରିବାକୁ ହେବ । ଏବେ ଡାକ୍ତରଟା ମରିଗଲା ଯେ, ତା'ର ଉତ୍ତରାଧିକାରୀ ନଥିଲେ ବି; ଅଦାଲତବାଟେ ପଡ଼ିଆଟା ହସ୍ତଗତ କରିବାକୁ ମାସ ମାସ ବିତିଯିବ ।"

"ବୁଝିଲି ।"

ମିଷ୍ଟର୍ ବେକରଙ୍କ ବିରକ୍ତି ଛିଦ୍ର ପାଇ ସଟ୍‌କିନା ବାହାରି ପଡ଼ିଲା, "ଏତେବେଳେକେ ତୁମେ ଏତିକ ବୁଝିଲ, ଭାଗ୍ୟର କଥା । ତୁମ ସାଧୁ ଉଦ୍ଦେଶ୍ୟ ଫଳରେ ତୁମେ ଆମ ଯୋଜନାକୁ ଚୂନା କରି ପବନରେ ଉଡ଼ାଇ ଦେଲ । ବେଳେବେଳେ ମୁଁ ଭାବେରେ, ଏଇ ସାଧୁଉଦ୍ଦେଶ୍ୟ-ବାଲା ହେଉଛନ୍ତି, ସଂସାରରେ ସବୁଠାରୁ ଭୟାନକ ଜନ୍ତୁ ।"

"ଆପଣ ଯାହା କହୁଛନ୍ତି, ବୋଧହୁଏ ସେ କଥା ସତ । ଯାହା-ହେଉ, ବର୍ତ୍ତମାନ ମୋର ଷ୍ଟୋର୍‌କୁ ଫେରିବା ବେଳ ହୋଇଗଲାଣି ।"

"ଷ୍ଟୋର୍‌ର ତ ତୁମେ ବର୍ତ୍ତମାନ ଖୋଦ୍ ମାଲିକ । ଫେରିବାକୁ ଏତେ ଉଚ୍ଛନ୍ନ କାହିଁ ?"

"ହଁ, ମୋ'ର । ତା ସତ କଥା । ମୋର ବୋଲି ଭାବିବାକୁ ଅଭ୍ୟସ୍ତ ହୋଇ ନାହିଁ ନା, ପାସୋରି ଦେଉଛି ।"

"ତୁମରି ତ ବାସ୍ତବିକ ଭୋଳା ମନ । ଆଚ୍ଛା, ଯେଉଁ ଟଙ୍କାତକ ଡାକ୍ତରକୁ ଦେଇଦେଲ, ସେତକ ତ ମେଗିଙ୍କର । ସେ ଟଙ୍କା ତ ଆଉ ମେଗିଙ୍କ ହାତକୁ ଫେରିବ ନାହିଁ । ତୁମ ଯୋଗୁଁ ସେତକ ପାଣିରେ ପଡ଼ିଲା ।"

"ଡାକ୍ତର ମୋ ମେଗିଙ୍କୁ ଖୁବ୍ ସୁଖ ପାଉଥିଲା । ମେଗିଙ୍କ ଟଙ୍କା ବୋଲି ସେ ଜାଣିଥିଲା ବି ।"

"ଏଇ ଯୁକ୍ତିକୁ ଧରି ତ ମେଗି ନିହାଲ ହେବେ !"

"ଦେଲାବେଳେ ତ ବୁଝିଥିଲି ଡାକ୍ତର ପରିହାସ କରୁଛି ବୋଲି ; ହେଇଟି ମୋତେ ସେ ଏଇ ଦୁଇ ଖଣ୍ଡ ଦେଇଛି ।" ମୋ କୋଟର ଭିତର ପକେଟରୁ ମୁଁ ଚୁଲ୍‌ପକା କାଗଜ ଦ'ଖଣ୍ଡ ବାହାର କଲି । ଯାକୁ ଏଇପରି ବାହାର କରିବାକୁ ହେବ ବୋଲି ଆଗରୁ ଜାଣିଥିବାରୁ ମୁଁ କାଗଜ ଦ' ଖଣ୍ଡ ଚଉତାଚଉତ କରି ପକେଟରେ ରଖିଥିଲି ।

ମିଷ୍ଟର ବେକର ତାଙ୍କ ଟେବୁଲର କାଚ ଢକ୍କା ଉପରେ କାଗଜ ଦ' ଖଣ୍ଡି ଭାଙ୍ଗ ଫିଟାଇ ସିଧାକରି ଥୋଇଲେ । ଦ' ଖଣ୍ଡିଯାକ ପଢ଼ି ସାରିବା ପରେ, ତାଙ୍କ ଡାହାଣ କାନତଳ ମାଂସପେଶୀ ଗୋଟାଏ ସାଙ୍କୁଡ଼ି ହୋଇ ଯିବାରୁ ତାଙ୍କ କାନ ଥରିଗଲା । ସେ ପୁଣି ଥରେ କାଗଜ ଦ' ଖଣ୍ଡି ଉପରେ ଆଖି ବୁଲାଇଗଲେ— ଏଥର ଗୃହିଁବାର ଉଦ୍ଦେଶ୍ୟ, ସେଥିରେ କିଛି ଭୁଲ ତ୍ରୁଟି ଆବିଷ୍କାର କରିବା ।

ତା'ପରେ ବେଧୁଆଟା ମୋ ଉପରେ ଯେତେବେଳେ ଆଖି ପକାଇଲା, ଲକ୍ଷ୍ୟ କଲି ତା'କୁ ଭୟ ଗ୍ରାସ କରିଛି । ସେ ବର୍ତ୍ତମାନ ଏପରି ଜଣକୁ ଦେଖୁଥାଏ, ଯାହାର ଅସ୍ତିତ୍ୱ ନାହିଁ ବୋଲି ସେ ଏପର୍ଯ୍ୟନ୍ତ ନିଶ୍ଚିନ୍ତ ଥିଲା । ଯାହାହେଉ, ମାତ୍ର ମୁହୂର୍ତ୍ତକ ଭିତରେ ସେ ସଦ୍ୟ-ଆବିର୍ଭୂତ ଭୂତ-ପ୍ରତି ଅଭ୍ୟସ୍ତ ହୋଇ ଭୟ ଛାଡ଼ିଦେଲା । ଏଥିପାଇଁ ତାକୁ ତାରିଫ କରିବାକୁ ହେବ । ଏଇ ତ ମିଷ୍ଟର ବେକର୍ ଜାନୁଆରିଟିର ବିଶେଷତ୍ୱ ।

"ଅଚ୍ଛା, ଏ ସଂପତ୍ତି ପାଇଁ ତୁମେ କେତେ ଦାମ ଚାହୁଁଛ ?"

"ଶତକଡ଼ା ଏକାବନ୍ ଭାଗ ।"

"କାହାର ଏକାବନ ଭାଗ ?"

"ଏଇ ପଡ଼ିଆକୁ ଧରି କଂପାନୀ, ବା ଭାଗୁଆଳୀ ବା ଆଉ ଯାହା ହେବ ।"

"ଏହି ତ ଅସଂଭବ କଥା—ଏକାବେଳକେ ହାସ୍ୟାସ୍ପଦ ।"

"ଆପଣଙ୍କର ଉଡ଼ାଜାହାଜ ଷ୍ଟେସନ ଦରକାର । ସେଥିପାଇଁ ଏକମାତ୍ର ଜାଗା ମୋ ହାତରେ ଅଛି ! ଯାହା ଚାହିଁବ ଦେବାକୁ ହିଁ ହେବ ।"

ସେ ପକେଟରୁ ଖଣ୍ଡେ କାଗଜରୁମାଲ ବାହାର କରି ଚଷମା ପୋଛିଲେ ଓ ପୋଛି ସାରି ଚଷମା ପିନ୍ଧିଲେ । କିନ୍ତୁ ମୋତେ ସିଧା ଚାହିଁଲେ ନାହିଁ । ସେ ମୋ' ଚାରିପଟେ, ଆଖିକୁ ଗୋଟାଏ ବୃତ୍ତରେ ବୁଲାଉଥାନ୍ତି, କିନ୍ତୁ କେନ୍ଦ୍ର ଯେ ମୁଁ ମୋ'ଉପରେ ଆଖି ପଡ଼ୁ ନ ଥାଏ । ଶେଷରେ ସେ ପଚାରିଲେ, "ଏଥାନ୍, ତୁମେ ଯାହା କଲ ତା'ର ମର୍ମ ବୁଝିପାରୁଛ କି ?"

"ହଁ, ବୁଝୁଛି ।"

"ଏକାମ କରିବା ଯୋଗୁଁ ତୁମ ମନରେ ପଶ୍ଚାତ୍ତାପ ହେଉ ନାହିଁ ?"

"ଯେ ବୋତଲେ ହୁଇସ୍କି ନେଇ ଡାକ୍ତରଠାରୁ ଗୋଟାଏ ଦସ୍ତଖତ ଆଣିବାକୁ ଉଦ୍ୟମ କରୁଥିଲେ, ତାଙ୍କର ମନରେ ଯେଉଁ ଭାବ ହେଉଥିବ, ମୋର ଠିକ୍ ସେଇ ଭାବ ହେଉଛି ।"

"ତୁମକୁ ସେ ଏ କଥାଟା କହିଥିଲା ପରା ?"

"ହଁ ।"

"ସେ ଲୋକଟା ଡାହା ମିଛୁଆ ।"

"ସେ ମିଛୁଆ ବୋଲି ନିଜେ ମୋତେ କହିଥିଲା । ଜାଲିଆ ବୋଲି ମୋତେ ସାବଧାନ ବି କରିଥିଲା । ତେଣୁ ମୁଁ ବସ୍ତୁରୁଛି, ଏ କାଗଜ ଦୁଇଖଣ୍ଡରେ କଣ ଜାଲିଆତି କରିଥିବ ।" ମୁଁ ଧୀରେ ଧୀରେ କାଗଜ ଦୁଇଖଣ୍ଡି ମିଷ୍ଟର୍ ବେକର୍‌ଙ୍କ ସାମନାରୁ ଘୁଞ୍ଚିଆଣିଲି ଓ ସେଇ ମଇଳା ପେନ୍‌ସିଲ୍-ଲେଖା କାଗଜ ଦି'ଖଣ୍ଡି ଚିରିଚାରିଦେଇ କଲି ।

"ଜାଲଆଜ୍ଞା ଠିକ୍ କରିଛୁ, କିନ୍ତୁ ଏ କାଗଜରେ ନୁହେଁ। ଏଥାନ୍! ଏ କାଗଜରେ କୌଣସି ତ୍ରୁଟି ନାହିଁ। ତାରିଖ ଦିଆ ହୋଇଛି, ସାକ୍ଷୀ ପକାଇଛୁ, ଲେଖାରେ ବି ଗୋଳମାଳ କରିଛୁ ନାହିଁ। ଗୋଟାଏ ଭଲ ଲୋକର ପ୍ରକୃତିକୁ ସେ ଚୂରମାର କରି ଦେଇଛି—ତାହାହିଁ ଚରମ ଜାଲଆଜ୍ଞା ବୋଲି ମୋର ଧାରଣା।"

'କିନ୍ତୁ ମିଷ୍ଟର୍ ବେକର୍! ମୋ'ବଂଶରେ କେହି କେବେ ଜାହାଜରେ ନାଆଁ ଧରାଇ ନ ଥିଲା।'

"ଏଭଳି ବ୍ୟବହାର କର ନାହିଁ, ଏଥାନ୍! ଆମେ ଦୁହେଁ ଆମର ସଦ୍‌ଭାବ ବଜାୟ ରଖିବା। ବ୍ୟବସାୟ କରିବା। ଟଙ୍କା କରିବା। ଚେଲିର୍ ପଡ଼ିଆର ଗୃହପଟ ପାହାଡ଼ ଉପରେ ଗୋଟିଏ ଘ୍ଳୋଟ ସହର ଗଢ଼ି ଉଠିବ। ବୁଝୁଛି, ବର୍ତ୍ତମାନ ତୁମର ନଗର-ପାଳକ ହେବାକୁ ଅବସ୍ଥା ଅନୁକୂଳ ହୋଇଗଲା।"

"ମୁଁ ତାହା ହୋଇ ପାରିବି ନାହିଁ, ଆଜ୍ଞା! ମୁଁ ନଗର-ପାଳକ ହେଲେ ସ୍ୱାର୍ଥସଂଘର୍ଷ ଉପୁଜିବ। କେତେକ ସଦାଶୟ, ଶୋକାର୍ତ୍ତ ଲୋକ ସେ କଥା ଏଇ ମୁହୂର୍ତ୍ତରେ ଉପଲବ୍‌ଧି କରିବାକୁ ଆରମ୍ଭ କଲେଣି।"

ସେ ଗୋଟାଏ ଦୀର୍ଘନିଃଶ୍ୱାସ ପକାଇଲେ। କିନ୍ତୁ ଏ ଦୀର୍ଘନିଃଶ୍ୱାସ ପକାଇବାରେ ବି ସଯତ୍ନ ଚେଷ୍ଟା ରହିଥାଏ, ତୋଟିକୁ ଉଠି ଆସୁଥିବା କୌଣସି ଭାବକୁ ଚାପି ଦେବାକୁ।

ମୁଁ ଠିଆ ହେଲି ଓ ଅନୁଗ୍ରହପ୍ରାର୍ଥୀଙ୍କ ପାଇଁ ଉଦ୍ଦିଷ୍ଟ ଯେଉଁ ଚଉକିରେ ବସିଥିଲି, ତା'ର ପଛପଟର ଗଦାଦିଆ ଅର୍ଦ୍ଧଚନ୍ଦ୍ରାକାର ବାଡ଼ା ଉପରେ ହାତ ଥୋଇ କହିଲି, "ମୁଁ ଆପଣଙ୍କ ଆମୋଦ ଓ ଅନୁଗ୍ରହର ପାତ୍ର ମୂର୍ଖଟିଏ ନୁହେଁ, ଏ ଧାରଣା ଆପଣଙ୍କ ମନରେ ସ୍ଥାୟୀ ହୋଇଗଲେ, ଆପଣଙ୍କର ମାନସିକ ପରିବର୍ତ୍ତନ ହେବ। ବର୍ତ୍ତମାନ ଯେଉଁ ବିରକ୍ତି ଲାଗୁଛି, ତାହା ଦୂର ହୋଇଯିବ।"

"କିନ୍ତୁ ତୁମେ ଯାହା କଲ ତାହା ମୋତେ ଏଭଳି ଲୁଚାଇଲ କାହିଁକି?"

"ଅପରାଧରେ କାହାକୁ ସଙ୍ଗୀ କଲେ ପରିଣତି ଭଲ ହୁଏ ନାହିଁ।"

"ଓଃ, ତେବେ ତୁମେ ଯେ ଅପରାଧ କରୁଥିଲ, ଏ ଧାରଣା ତା'ହେଲେ ତୁମର ଥିଲା!"

"ନା, ନିଜେ ମଣିଷ ଯାହା କରେ ତାହା ତ ଅପରାଧ ହୁଏ ନାହିଁ । ପର ଯାହା କରେ ସେଇଠାଇ ଅପରାଧ । ଥାଉ ସେ କଥା । ମୋତେ ଷ୍ଟୋର୍‌କୁ ଫେରିବାକୁ ହେବ । ଷ୍ଟୋର୍‌ର ମୁଁ ମାଲିକ ହେଲେ ବି, ଗ୍ରାହକ ତ ହାତରେ ରଖିବା ଦରକାର ।"

ମୁଁ ଦୁଆର ପାଖକୁ ଯାଇ, ଦୁଆର-ଗୋବରେ ହାତ ଦେଲି ବେଳକୁ ସେ ଧୀର ସ୍ୱରରେ ପଚାରି କହିଲେ, "ମ୍ୟାକ୍ସୁଲେଙ୍କୁ ଧରାଇ ଦେଲା କିଏ ?"

ମୁଁ ତାଙ୍କ ଆଡ଼କୁ ମୁହଁ ଫେରାଇ କହିଦେଲି, "ଆଜ୍ଞା, ସେ ତ ଆପଣଙ୍କ କାରସାଦ୍ଧି ବୋଲି ମୋର ଆଶଂକା ।" ସେ ଧଡ଼କିନା ଠିଆ ହୋଇ ପଡ଼ିଲେ । ମୁଁ କିନ୍ତୁ ସଙ୍ଗେ ସଙ୍ଗେ ଆଉ ପାଖ ଦୁଆରକୁ ଆଉଜାଇ ନେଇ ମୋ ଷ୍ଟୋର୍‌କୁ ଫେରିଲି ।

———

# ଏକବିଂଶ ପରିଚ୍ଛେଦ

ବନ୍ଧୁମିଳନରେ ହେଉ ବା ଆନନ୍ଦ ଉତ୍ସବରେ ହେଉ, ମୋ ମେଘ୍ନା ଉପଭୋଗର ଯେତେ ଉଚ୍ଚଶିଖରକୁ ଉଠିଯାନ୍ତି, ସଂସାରରେ ଆଉ କେହି ସେତେ ଉପରକୁ ଉଠିପାରିବେ ନାହିଁ ! ଉତ୍ସବର ଆନନ୍ଦ ବଢ଼ାଇବାରେ ସେ ପ୍ରତ୍ୟକ୍ଷଭାବେ ବିଶେଷ କିଛି କରନ୍ତି ବୋଲି ନୁହେଁ, ଏହି ଆନନ୍ଦର ଉପଭୋଗ କରିବାରେ ହିଁ ସେ ମଣି ପରି ଉଜ୍ଜ୍ୱଳ ହୋଇ ଉଠନ୍ତି ଓ ନିଜର ତେଜରେ ଅନ୍ୟମାନଙ୍କୁ ତେଜୀୟାନ କରିପକାନ୍ତି । ନିତାନ୍ତ ରସହୀନ ପରିହାସରେ ମଧ୍ୟ ତାଙ୍କ ଆଖି ଆନନ୍ଦରେ ଉଜ୍ଜ୍ୱଳ ହୋଇ ଉଠେ, ସ୍ମିତହାସ୍ୟରେ ଅଧର କୁଞ୍ଚିତ ହୋଇଯାଏ, ଏବଂ ତାଙ୍କ ହାସ୍ୟରେ ରସହୀନ ପରିହାସ ରସାଳ ହୋଇ ପଡ଼େ । ବନ୍ଧୁମିଳନର ଦ୍ୱାରଦେଶରେ ମୋ ମେଘ୍ନା ପହଞ୍ଚିବା ମାତ୍ରେ, ପ୍ରତ୍ୟେକଙ୍କର ମୁହଁ ହସ ହସ ହୋଇଯାଏ ; ଯେଉଁମାନେ ବୋକା ସେମାନେ ବି ବିଚକ୍ଷଣ ପରି ହସନ୍ତି, ବାସ୍ତବରେ ବିଚକ୍ଷଣ ହୋଇଯାନ୍ତି ବୋଧହୁଏ । ମେଘ୍ନାଙ୍କର ବନ୍ଧୁମିଳନକୁ ସରସ କରିବାରେ କୃତିତ୍ୱ ଏତିକି , ନିଜେ କିଛି କହି ବା କରି ଆସର ଜମାଇବା ତାଙ୍କ ପକ୍ଷରେ ନିଷ୍ପ୍ରୟୋଜନ ହୋଇପଡ଼େ ।

ମୁଁ ଦୋକାନରୁ ସେ ଦିନ ଫେରିଲି ବେଳକୁ ଆମର ସମଗ୍ର ହ'ଲ ଭବନଟା ଉତ୍ସବ ପାଇଁ ମସ୍‌ଗୁଲ ହୋଇ ରହିଛି । ଘରର ମଝି ଇଲେକ୍‌ଟ୍ରିକ୍ ଆଲୁଅଠାରୁ ଚାରିକାନ୍ଥର ଛବିଟଙ୍ଗା ଫେରେମ୍‌ରେ ରଙ୍ଗବେରଙ୍ଗ୍ ପ୍ଲାଷ୍ଟିକ୍ ପତାକାର ମାଳ ବନ୍ଧା ହୋଇ ମୁଣ୍ଡ ଉପରେ ଚନ୍ଦ୍ରୁଆ ପରି ଦିଶୁଥାଏ । ସିଡ଼ିର ଖୁମ୍ବମାନଙ୍କରେ ମଧ୍ୟ ନାନାରଙ୍ଗର ପ୍ଲାଷ୍ଟିକ୍ ପତାକା ଖଞ୍ଜା ହୋଇଥାଏ ।

ମୋତେ ଦେଖି ମେଗ୍ କହି ଉଠିଲେ, "ତୁମେ ଏକଥା ବିଶ୍ୱାସ କରିବ ନାହିଁ, କିନ୍ତୁ ଏ ପଟାକା ସବୁ ଏଲେନ୍ 'ଏସୋ ପେଟ୍ରୋଲ୍ ଦୋକା-ନ'ରୁ ଆଣିଛି ! ଜର୍ଜ ସେଣ୍ଡୋ ଏ ଗୁଡ଼ିକ ଧାର ଦେଇଛନ୍ତି ।"

"କିନ୍ତୁ ଏ ନବରଙ୍ଗର କାରଣ କ'ଣ ?"

"କାରଣ ସବୁ । ଆମ ସବଂବଧ ସୌଭାଗ୍ୟର ଏହା ଗୋଟିଏ ମଉଚ୍ଛବ ।"

ଡାନି ଟେଲର୍ କଥା ସେ ଶୁଣିଛନ୍ତି କି ନାହିଁ କେଜାଣି ? ହୁଏତ ଶୁଣି ମଧ ଆମ ସୌଭାଗ୍ୟର ତାଡ଼ାରେ ସେ କଥାକୁ ପଛକୁ ଠେଲି ଦେଇଛନ୍ତି । ଏହି ଉତ୍ସବ ଉପଲକ୍ଷ୍ୟେ ମୁଁ ଡାନିକୁ ଅବଶ୍ୟ ନିମନ୍ତ୍ରଣ କରି ନାହିଁ ; କିନ୍ତୁ ଅଡ଼ୁକବାରେ ବି, ସେ ଆସି ଆମ ଘର ଆଗରେ ଦାଣ୍ଡରେ ପଦଚାରଣ କରୁ-ଥାଏ । ମୁଁ ଜାଣେ, ପରେ ଏ ସବୁ ଧୂମଧାମ ସରିଲେ ମୁଁ ଯାଇ ତା'ର ମୁଲାକାତ କରିବ, କିନ୍ତୁ ମେଗ୍‌ଙ୍କର ଡଙ୍ଗରଙ୍ଗ ଦେଖି ମୁଁ ଡାନିକୁ ଘର ଭିତରକୁ ଡାକିଲି ନାହିଁ ।

ମେଗ୍ କହିଲେ, "ଏଲେନ୍‌ର ଢଙ୍ଗ ଦେଖି ତମେ ବିଗୁରିବ, ସତେ ଯେମିତି ସେ ନିଜେ ପ୍ରତିଷ୍ଠାର ପାତ୍ରୀ ହୋଇଛି । ବରଂ, ନିଜେ ପ୍ରତିଷ୍ଠା ପାଇଥିଲେ ସେ ଯେତେ ଗର୍ବିତା ହୁଅନ୍ତା, ଭାଇର ପ୍ରତିଷ୍ଠାରେ ତହିଁରୁ ଡେର ଅଧିକ ଉତ୍ଫୁଲ୍ଲ ହୋଇ ପଡ଼ିଛି ! ଦେଖ, ସେ ନିଜେ କେମିତି ପିଠା ଟିଏ କରିଛି ।" ମସ୍ତବଡ଼ ଧଳା ପିଠାଟିଏ—ମଝିରେ 'ବୀରବର' ବୋଲି ଲେଖା ହୋଇଛି, ନାଲି, ସାବୁଜା, ହଳଦିଆ ଓ ନେଳୀ ଅକ୍ଷରରେ । "ଖରଚବହୁଳ ହେଲେ ବି, ଆଜି ଖାଇବାକୁ କରିଛି, ମୁରୁଗି ମାଂସର କବାବ୍, ପୁଣି ମସଲ-ଦିଆ ତରକାରି,ପୁଣି ମୁରୁଗି କଲିଜାର ରସା, ପୁଣି ଆଳୁ ଭରତା ।"

"ବେଶ୍, ବେଶ୍, ପ୍ରିୟତମେ, ଖୁବ କରିଚ । କିନ୍ତୁ ସମ୍ମାନିତ କିଶୋର କୁଆଡ଼େ ଗଲେ ?"

"ଓ, ଆଲେନ୍ ନା ? ଏ ସମ୍ମାନ ଫଳରେ ତା' ଗୀତ ବି ବଦଳି ଗଲାଣି ପରି ! ସେ ଗାଧୋଉଛି । ଗାଧୋଇ ସାରିଲେ ସଫା ପୋଷାକ ପିନ୍ଧି ଖାଇବାକୁ ଆସିବ ।"

"ଆଲୋ ମୋ ରାଜରାଣୀ-ମଣି ! ଯାଅ ଖୋଜ, କୌଣସି ନା କୌଣସିଠାରେ ଆଜ ନିଶ୍ଚୟ ଅଶ୍ୱତଥ ଫୁଆ ଜନ୍ମ କରିଛି, ନ ହେଲେ

ନୂଆ ଲଣ୍ଠାଟାଏ ଆକାଶରେ ଦେଖା ଦେବଣି । ରାତ୍ରିଭୋଜନ ପୂର୍ବରୁ ସ୍ନାନ ! ବାପ୍‌ରେ ! କଳ୍ପନାକୁ ବ ଅସଂଭବ ଲାଗୁଛି ।”

“ତମେ ବ ଗାଧୋଇ ପୋଷାକ ବଦଳଲେ ଭଲ ହୁଅନ୍ତା । ମୁଁ ବୋତଲେ ଭଲ ମଦ ରଖିଛି । ଘରେଇ ଉତ୍ସବ ହେଲେ କ'ଣ ହେଲା, ମୋ ମନ ହେଉଛି ଗୋଟାଏ ବକ୍ତୃତା ହୁଅନ୍ତା, ତା'ର ସଂବର୍ଦ୍ଧନା କର ମଦ୍ୟପାନ କରାଯାନ୍ତା ବା ସେମିତି କିଛି ଗୋଟାଏ ହୁଅନ୍ତା ।” ଉତ୍ସବର ମଧୁରେ ସେ ଘରଟାକୁ ଏକାବେଳକେ ପ୍ଲାବିତ କର ଦେଉଥାନ୍ତି । ମୁଁ ଯନ୍ତ୍ରଚାଳିତ ପର ସିଡ଼ିରେ ଦୁମୁଦୁମ କର ଉପରକୁ ଉଠି ବାହାରିଲି, ଗାଧୋଇ ପାଧୋଇ ଏହି ପ୍ଲାବନରେ ନିଜକୁ ମିଳାଇ ଦେବା ନିମନ୍ତେ ।

ଯୁାଲେନ୍‌ର ଦୁଆର ପାର ହୋଇ ଗଲାବେଳେ ମୁଁ ତା' ଦୁଆରେ ହାତ ମାଇଲି । ସେ ଭିତରୁ ଗାଉଁ ଗାଉଁ ଶବ୍ଦ କଲା । ମୁଁ ଦୁଆର ଫିଟାଇ ଭିତରକୁ ଗଲି ।

ସେ ତା' ଆଇନା ଆଗରେ ଠିଆ ହୋଇଥାଏ ; ପଛପଟ ବାଣିକ ବୋଲି, ପଛଆଡ଼େ ଗୋଟାଏ ଗ୍ଲେଟିଆ ଦର୍ପଣ ଦେଖେଇଥାଏ । ଗୋଟାଏ କଣ କାଳିଆ ଜିନିସରେ—ମେସାଙ୍କ ଭ୍ରୂଲତାରେ ମାରିବା କଜଳ ହେବ-ପରି –ସେ ତା' ନାକତଳେ ସରୁଆ ନିଶ ଦିପଟା ଚିହ୍ନ କରିଥାଏ ଓ ଭ୍ରୂଲ-ତାରେ କଳାବୋଳି,ଭ୍ରୂଲତାର ଅଗ ଦୁଇଟାକୁ କଜଳରେ ଲମ୍ବାଇ ଶେଷମୁଣ୍ଡ ଦୁଇଟା ଛୁଞ୍ଚିପରି ସରୁ କରିଥାଏ । ମୁଁ ପଶିଲା ବେଳକୁ ସେ ଆଇନାକୁ ଚାହିଁ ମୁରୁକି ମୁରୁକି ହସୁଥାଏ – ସଂସାରୀ ଲୋକର ସର୍ବାନନ୍ଦକ ଆତ୍ମସର୍ବସ୍ୱ ହସ । ପୁଣି ମୋର ଫୁଟ୍‌ଫୁଟିକିଆ ବୋ-ଟାଇଟା ବ ପିନ୍ଧିଥାଏ । ହଠାତ୍ ମୋ ହାବୁଡ଼େ ପଡ଼ିଗଲା ବୋଲି ସେ ତିଳେମାତ୍ର ବିଚଳିତ ହେବାର ଦେଖିଲି-ନାହିଁ ।

ହାତରେ ଧରିଥିବା ଦର୍ପଣଟା ଟେବୁଲ ଉପରେ ଥୋଇ ଥୋଇ ସେ ମୋତେ କହିଲା, “ଶ୍ରୋତା ଓ ଦର୍ଶକଙ୍କ ଆଗରେ ଠିଆ ହେବାର ସୁଯୋଗ ତ ଆସିବ । ସେଥିପାଇଁ ଆଗରୁ ପ୍ରସ୍ତୁତ ହେଉଛି ।”

“ପୁଅରେ ! ତୋ ଯୋଗୁଁ ମୁଁ କେତେ ଗର୍ବିତ ହୋଇଛି, ତା ବୋଧହୁଏ, ମନର ଉଦ୍ଦୀପନାରେ ତୋତେ କହିବାକୁ ପାସୋରି ଦେଇଛି ।”

"ସେଥିରେ କିଛି ଯାଏ ଆସେ ନାହିଁ । ଯାହା ହୋଇଛି ତା' ମୋ କୃତିତ୍ୱର ଆରମ୍ଭ ମାତ୍ର ।"

"ମନର କଥା କହୁଛି, ଲେଖକ ହିସାବରେ ତୁ ଆମ ରାଷ୍ଟ୍ରପତିଙ୍କର ବି ସମାନସ୍କନ୍ଧ ନୋହୁ ବୋଲି ମୁଁ ବିଶ୍ୱାସ କରୁଥିଲି । ତୋ'ର କୃତିତ୍ୱରେ ମୁଁ ଆନନ୍ଦିତ ଯେତିକି ହୋଇଛି, ବିସ୍ମିତ ବି ସେତିକି ହୋଇଛି । ସମଗ୍ର ଜଗତ୍ ଆଗରେ ତୋ'ର ପ୍ରବନ୍ଧକୁ ତୁ କେବେ ପଢ଼ିବୁ ?"

"ଆସନ୍ତା ରବିବାର, ଅପରାହ୍ଣ ସାଢ଼େ ଚାରିଟା । ସମଗ୍ର ଯୁକ୍ତରାଷ୍ଟ୍ରର ଲୋକେ ଏକ ସଙ୍ଗେ ମୋ କଥା ଶୁଣିବେ ଓ ମୋତେ ଦେଖିବେ । ମୋତେ ନିଉୟର୍କ ଯିବାକୁ ହେବ । ମୋତେ ନେବାକୁ ଗୋଟାଏ ସ୍ୱତନ୍ତ୍ର ବିମାନ ଆସିବ ।"

"ଆଗରୁ ଆବୃତ୍ତି କରି ପ୍ରବନ୍ଧଟା ପଢ଼ିବାକୁ ଅଭ୍ୟାସ କରୁଛୁଟି ?"

"ନିଷ୍ପ୍ରୟୋଜନ । ସେତିକି ବେଳେ ଠିକ୍ ପଢ଼ିବି । ସେ ତ ମୋର କୃତିର ଆରମ୍ଭ ମାତ୍ର । ସେଥିପାଇଁ ଏତେ ପ୍ରସ୍ତୁତ ହେବା ଦରକାର ନାହିଁ ।"

"ବାଃ, ପୁଅରେ ! ସମଗ୍ର ଦେଶରେ ପାଞ୍ଚ ଜଣଙ୍କ ଭିତରେ ଜଣେ ହୋଇ ବାହାରିବା ଗୋଟାଏ ଉଚ୍ଚ ପର୍ବତକୁ ଏକା ଲମ୍ଫରେ ଡେଇଁ ପଡ଼ିଲା ପରି ମୋତେ ଲାଗୁଛି ।"

ସେ କହିଲା, "ଏକ ସଙ୍ଗେ ସମଗ୍ର ଜାତି ମୋତେ ଦେଖିବ ଓ ମୋର ବାଣୀ ଶୁଣିବ ।" ଖଣ୍ଡେ ତୁଳା ଧରି ସେ ମୁହଁରୁ କିଶ ହିପଟି ପୋଛିଲା । ମୁଁ ଦେଖି ଆଚମ୍ବିତ ହେଲି ଯେ, ଅଭିନେତାଙ୍କ ସମଗ୍ର ପ୍ରସାଧନସାମଗ୍ରୀ ମୋ ପୁଅ ପାଖେ ମହଜୁଦ ଅଛି — ଆଖିର ପତା ପାଇଁ ମଲମ, ବାଳ ସଜାଡ଼ିବାକୁ ଅଠା ଓ ମୁହଁ ପାଇଁ କ୍ରୀମ୍ ।

ମୁଁ କହିଲି, "ଆରେ ପୁଅ, ଶୁଣିଛୁ ନା, ଏକ ସଙ୍ଗେ ଆମ ସମସ୍ତଙ୍କର ଭଲ ଦିନ ଆସିଛି । ମୁଁ ଷ୍ଟୋରଟା କିଣିଲି ।"

"ହଁ, ଶୁଣିଛି ।"

"ଶୁଣ୍, ଏ ଯେଉଁ ସମାରୋହ ଓ ଜାକ୍‌ଜମକ ଚାଲିଛି, ଯା' ସବୁରେ ତୁ ମୋତେ ସାହାଯ୍ୟ କରିବା ଦରକାର ହେବ ।"

"ତୁମକୁ ସାହାଯ୍ୟ ? କି ରକମ ସାହାଯ୍ୟ ?"

"ତତେ ଆଗରୁ କହି ରଖିଛୁ । ଦୋକାନରେ ମୋତେ ସାହାଯ୍ୟ କରିବାକୁ ପଡ଼ିବ ।"

"ସେ କାମ କରିବାକୁ ମୋ'ର ବେଳ ହେବା ଅସଂଭବ ।" ଏହା କହି ସେ ସାନ ଦର୍ପଣଟା ଧରି ତା ଦାନ୍ତମୂଳ ନିରୀକ୍ଷଣ କରିବାକୁ ଲାଗିଲା ।

"ମୋତେ ସାହାଯ୍ୟ କରିବା ଅସଂଭବ କାହିଁକି ରେ ?"

"ଆଗ ନବାଗନ୍ତୁକଙ୍କର ଦୁଇଟା ଫିଲ୍ମ ଉଠିବ । ତା' ପରେ, ମୋର ଉଦ୍ଦିଷ୍ୟନ୍ତୁ ଓ ବିଚିତ୍ର ଆଗନ୍ତୁକ ବୋଲି ଦୁଇଟା ଟେଲିଭିଜନ ପ୍ରୋଗ୍ରାମ ଅଛି । ତା'ପରେ ଗୋଟାଏ ପ୍ରଶ୍ନୋତ୍ତର–କିଶୋର ରାଉଣ୍ଡ । ଏହାର ବି ଚଳଚିତ୍ର ହେବାର ସମ୍ଭାବନା ଅଛି । କାର୍ଯ୍ୟକ୍ରମ ଏଭଳି ଥିବା ସ୍ଥଳେ, ମୋ ପକ୍ଷେ ଅନ୍ୟ କିଛି କରିବା କିପରି ଅସଂଭବ, ଜାଣୁଛ ତ ?" ଏହା କହି ସେ ଗୋଟାଏ ଟିଉବ୍‌ରୁ ଅଠାଳିଆ ଗୋଟାଏ କ'ଣ ପଦାର୍ଥ ମୁଣ୍ଡରେ ଘଷିଲା ।

"ତେବେ ତୋ'ର ଜୀବନର ଗତି ସବୁ ଠିକ୍‌ଠାକ୍ ହୋଇ ସାରିଲଣି ଦେଖୁଛି ।"

"ଆଗରୁ ଯେପରି କହିଛି, ଏହା ଆରମ୍ଭ ମାତ୍ର ।"

"ପୁଅ, ଆଜି ରାତିରେ ତୋ ବିରୁଦ୍ଧରେ ମୋ ବଳଆକୁଟିକୁ ଲଗାଇବି ନାହିଁ । ପରେ ଏ ବିଷୟ ପୁଣି ପଡ଼ିବ ।"

ଟିକିଏ ବି ଶଙ୍କି ନ ଯାଇ ଯ୍ୟାଲେନ୍ କହିଲା, "ନ୍ୟାସନ୍ୟାଲ୍ ବ୍ରଡ୍-କାଷ୍ଟିଂ କର୍ପୋରେସନ୍‌ର ଗୋଟାଏ କିଏ ତୁମକୁ ଟେଲିଫୋନ୍ କରୁଥିଲା । ବୋଧହୁଏ, ମୁଁ ସାବାଳକ ନ ହୋଇଥିବାରୁ ମୋର ପ୍ରୋଗ୍ରାମ-ଚୁକ୍ତିପତ୍ରରେ ତୁମ ଦସ୍ତଖତ ନେବାକୁ ସେ ଚାହୁଁଛି ।"

ମୁଁ କହିଲି, "ପୁଅରେ, ପଡ଼ାପଡ଼ି କଥା କ'ଣ ଏକାବେଳକେ ପାସୋରି ଦେଇଛୁ ?

"ଟେଲିଭିଜନ କାର୍ଯ୍ୟକ୍ରମ ପାଇଁ କଣ୍ଟ୍ରାକ୍ଟ ମିଳୁଥିବା ବେଳେ ତା'ର ପ୍ରୟୋଜନ କ'ଣ ?"

ମୁଁ ତରତର ହୋଇ ତା ପାଖରୁ ବାହାରିଗଲି ଓ ଗାଧୁଆ ଘରେ ପଶି ଥଣ୍ଡା ପାଣିର ପାଇପ୍ ଫିଟାଇ ତା' ତଳେ ମୁଣ୍ଡ ଦେଖାଇ ଦେଲି ।

ମୋ ଚମଡ଼ା ବରଫ ପରି ଥଣ୍ଡା ହୋଇଗଲା । ଆହୁରି ଥଣ୍ଡା ପାଣି ଗୁଡ଼ି, ଥଣ୍ଡାଟା ମୋ ମର୍ମରେ ପଶାଇ, ମୋତେ ବହ୍ୱଳିତ କରି ପକାଉଥିବା କ୍ରୋଧକୁ ମନରୁ ତଡ଼ିବାରେ ଲଗିଲି ।

ଶେଷରେ ପରିଷ୍କାର ପରିଚ୍ଛନ୍ନ ହୋଇ, ମେଗିଙ୍କ ଅତର ଟିକିଏ ମାରି ହୋଇ, ସଫା ଲୁଗାପଟା ପିନ୍ଧି, ଖାଇବା ଟେବୁଲ ପାଖରେ ଯାଇ ପହଞ୍ଚିଲା ବେଳକୁ ମୋର ସ୍ୱାଭାବିକ ଅବସ୍ଥା ଫେରିଥାଏ । ଖାଇ ବସିବାକୁ ଯେଉଁ ଟିକିକ ଡେରି ଥିଲା ତା' ଭିତରେ ଏଲେନ୍ ଆସି ମୋ ଚଉକି ହତାରେ ବସିଲା ଓ ଟିକିକ ପରେ ମୋ କୋଡ଼କୁ ଖସି ଯାଇ ମୋତେ କୁଣ୍ଢେଇ ପକାଇଲା ।

ସେ କହିଲା, "ବାପା, ମୁଁ ତୁମକୁ ସୁଖ ପାଏ । ଆଜି କେଡ଼େ ଉତ୍ସବ ଲାଗୁଛି । ୟୁଲେନ୍ କେଡ଼େ ବାହାଦୁର ! ନାଇଁ ବାପା ? ସେ ତ ଖ୍ୟାତି ଅର୍ଜିବ ବୋଲି ଜନ୍ମ ହୋଇଛି ।" ଏଇ ଝିଅଟିକୁ ମୋର, ମୁଁ ହିସୁଥିଲି, ଭାରି ସ୍ୱାର୍ଥପର ଓ ହିଂସୁକା ବୋଲି !

ପିଠା ପରଷା ହେବା ପୂର୍ବରୁ ମୁଁ ମଦ-ଗ୍ଲାସ ଧରି ତରୁଣ-ଢାଇଙ୍କର ସମ୍ବର୍ଦ୍ଧନା କଲି ଓ ତାଙ୍କର ମଙ୍ଗଳ କାମନା କଲି । ଶେଷରେ କହିଲି, "ଦୁର୍ଦ୍ଦିନର ଦୁର୍ଗତି ଆମରି, ହୋଇଗଲା ଦୂର ଆଜି, ୟର୍କ୍‌ର ଯେ ସୁପୁତ୍ର ବହନେ ।"

ଏଲେନ୍ କହିଲା, "ଯେ ସେକ୍ସ୍‌ପିଅର୍‌ରୁ ଉଦ୍ଧୃତ ?"

"ହେଁ ଲୋ ଟୋକି ! କହିଲୁ ଦେଖି, କେଉଁ ନାଟକରେ, କେତେବେଳେ, କିଏ ୟାକୁ କହିଛି ।"

ୟୁଲେନ୍ କହିଲା, "ମୁଁ ବି କହି ପାରିବ ନାହିଁ । କହିଲେ କହିବେ ପଣ୍ଡିତମାନେ ।"

ଥାଳଗିନା ଘୋଷେଇଘରକୁ ବୋହିବାରେ ମୁଁ ମେଗିଙ୍କୁ ସାହାଯ୍ୟ-କଲି । ମେଗିଙ୍କ ମନର ଆନନ୍ଦ ଅକ୍ଷୁଣ୍ଣ ଥାଏ । ସେ ମୋତେ କହିଲେ, "ତଡ଼ ତଡ଼ ହୁଅ ନାହିଁ । ବଳେ ଟୋକାଟା ବାଟରେ ପଡ଼ିଯିବ । ତା'ର ଏ ଢଙ୍ଗ ସବୁବେଳେ ରହିବ ନାଇଁ । ଟିକିଏ ସଂଭାଳିଯାଅ ।"

"ସଂଭାଳିବି ଗୋ, ଡାହୁକ-ପତ୍ନୀ !"

"ନ୍ୟୁୟର୍କର ଜଣେ କଏ ଟେଲିଫୋନ୍ କରୁଥିଲେ—ବୋଧହୁଏ ଷ୍ଟ୍ରାଲେନ୍ ସମ୍ପର୍କରେ । କେତେ ଆନନ୍ଦର କଥା, କହିଲ ଦେଖି । ଆମ ପୁଅଙ୍କୁ ନେବାକୁ ପୁଣି ଗୋଟାଏ ସ୍ୱତନ୍ତ୍ର ବିମାନ ଆସିବ ! ଷ୍ଟୋରର ତୁମେ ଖୋଦ ମାଲିକ ହେଲ ! ଏକଥାଟା ମୋତେ ଭାରି ନୂଆ ନୂଆ ଲାଗୁଛି । ଶୁଣୁଛି—ସହରପାକ ସ୍ପଷ୍ଟ ହୋଇଗଲାଣି ଯେ ତୁମେ ଏଥର ନିର୍ବାଚନରେ ନଗର-ପାଳକ ହେବ ।"

"ମୁଁ ହେଉନାହିଁ ।"

"କେମିତି ? ମୁଁ ତ ତଜନେ ଲୋକଙ୍କ ମୁହଁରୁ ଶୁଣିଲିଣି ।"

"ମୋର ନଗରପାଳକଙ୍କ ସଙ୍ଗେ ଗୋଟାଏ ବ୍ୟବସାୟ-କାରବାର ଅଛି । ତେଣୁ ମୁଁ ନଗର-ପାଳକ ହେବା ସଂଭବ ନୁହେଁ । ପ୍ରିୟେ ! ମୋତେ ବର୍ତ୍ତମାନ ଟିକଏ ବାଣ୍ଡକୁ ଯିବାକୁ ପଡ଼ିବ । ମୋର ଗୋଟାଏ ମିଟିଂ ଅଛି ।"

"ଏମିତି ହେଲେ, ମୁଁ ତ ଆକାଂକ୍ଷା କରିବି, ତୁମେ ପୁଣି ଗୁମାସ୍ତା ହୁଅ । ଗୁମାସ୍ତା ଥିଲ ଯେ ରାତିରେ କୁଆଡ଼େ ଯିବାକୁ ପଡୁ-ନ ଥିଲା । ଯଦି ସେ ଲୋକଟା ପୁଣି ଡାକେ ?"

"କହିବ, ଅପେକ୍ଷା କରିବେ ।"

"ତାଙ୍କୁ ଅପେକ୍ଷା କରିବାକୁ ବେଳ ନ ଥିଲା । ତମର କ'ଣ ଖୁବ୍ ବିଳମ୍ବ ହେବ ?"

"କହି ପାରୁ ନାହିଁ । ମିଟିଂ କେତେବେଳ ଲାଗିବ କେଜାଣି ?"

"ଡାନି ଟେଲର୍ କଥାଟା କେତେ ଦୁଃଖର କଥା । ଗୋଟାଏ ବର୍ଷାନ୍ତ ନିଅ ।"

"ବଡ଼ ଦୁଃଖର କଥା ନିଶ୍ଚୟ ।"

ହଲରେ ମୋ ଟୋପିଟା ପିନ୍ଧିଲି ଓ ହଠାତ୍ ମନ ହେବାରୁ ବୃଦ୍ଧ କପ୍ତାନଙ୍କ ଛମିହାଡ଼ ବାଡ଼ଟା ହାଣ୍ଡି-ଖୋଳରୁ କାଢ଼ି ଧଇଲି । ଏଲେନ୍ ହଠାତ୍ କୁଆଡ଼ୁ ଆସି ହାଜର ହୋଇଗଲା ।

"ତମ ସାଙ୍ଗେ ମୁଁ ଯିବି ।"

"ଆଜି ରାତିରେ ନୁହେଁ ।"

"ମୁଁ ତୁମକୁ ଭାରି ସୁଖ ପାଏ ।"

ମୁଁ ଗମ୍ଭୀର ଦୃଷ୍ଟିରେ ମୋ ଝିଅକୁ ଦଣ୍ଡେ ଚାହିଁଲି ; କହିଲି, "ତତେ ମୁଁ ବ ସୁଖ ପାଏ । ତୋ ପାଇଁ ଯାହା କହିବୁ ତାହା ଆଣିବ— ତୋ'ର ସଉକ ଜିନିସ । ବହୁମୂଲ୍ୟ ମଣି ମୁକ୍ତା ।"

ସେ ଖିଲ୍ ଖିଲ୍ ହୋଇ ହସିଲା । "ଆଜି ତ କ'ଣ ବାଡ଼ିଟେ ନେଇଚ ?"

"ଆତ୍ମ-ରକ୍ଷା କରିବା ପାଇଁ ।" ଆକ୍ରମଣରୁ ପ୍ରତିରକ୍ଷା ପାଇଁ ଖଣ୍ଡା ଯେପରି ଆଡ଼ିକରି ଧରାଯାଏ, ବାଡ଼ିଟାକୁ ସେଇପରି ଧରିଲି ।

"ତମର ବହୁତ ଉନ୍ନତ ହେବ ?"

"ନାଇଁ, ବେଶି ନୁହେଁ ।"

"ତେବେ ବାଡ଼ିଟେ କାହିଁକି ନେଇଛ ?"

"ଖାଲି ଭୂଷଣ ସ୍ୱରୂପ ; ବଡ଼ଲୋକ ଦେଖାଇବାକୁ ; ଡରେଇବାକୁ ; ଭୟରୁ ତ୍ରାଣ ପାଇବାକୁ ; ଅସ୍ତ୍ରଧାରଣ କରିବାକୁ ମଣିଷର ସ୍ୱାଭାବିକ ପ୍ରବୃତ୍ତିର ନିଦର୍ଶନ ସ୍ୱରୂପ ।

"ତୁମେ ଫେରିବା ପର୍ଯ୍ୟନ୍ତ ମୁଁ ଚେଇଁ ରହିବି । ସେ ରଙ୍ଗୁଲିଆ ଜିନିସଟା ଟିକିଏ ଧରି ପାରିବି କି ?"

"ଛି, ଛି, ନାଇଁଲୋ ମା, ତା'କୁ ଧରନ୍ତି ନାଇଁ । ରଙ୍ଗୁଲିଆ ଜିନିସ ? ଆଲୋ, ସେ ମନ୍ତଶିଳା କଥା କହୁଚୁ କିଲୋ ? ହଁ ଧରିବୁ ।"

"ମନ୍ତଶିଳା ମାନେ କ'ଣ ?"

"ଅଭିଧାନ ଦେଖିଲେ ଜାଣିବୁ । ବନାନ ଜାଣିଚୁଟି ?"

"ମ—ନ—ଶୀ—ଳା ।"

"ନା, ମ—ନ୍ତ—ଶି—ଳା ।"

"ମାନେ ଟା ତମେ କହି ଦେଉ ନାହଁ ?"

"ଅଭିଧାନ ଦେଖିଲେ, ମାନେଟା ଭଲ କରିଜାଣିବୁ, ଭଲ ମନେ ରହିବ ।"

ସେ ମୋତେ କୁଣ୍ଢେଇ ପକେଇଲା, ଟିକିଏ ଜାକି ଦେଲା ଓ ଯାଙ୍ଗେ ଯାଙ୍ଗେ ହାତ କାଢ଼ି ନେଲା ।

ମୁଁ ବାହାରକୁ ବାହାରିଲା ବେଳକୁ ଅନ୍ଧାର ଘରିଆଡ଼େ ଘୋଟି ଯାଇଥାଏ । ଜଳୀୟ ବାଷ୍ପଭରା ପବନ ଘର ଗରୁ ଲାଗୁଥାଏ । ମୋର

ମିନେ ହେଉଥାଏ, ମୁରୁଗି ସୁରୁଆରେ ଜଳୀୟ ଅଂଶ ଯେତିକି, ପବନରେ ସେହି ପରିମାଣରେ ଜଳୀୟ ବାଷ୍ପ ରହିଥାଏ। ଏଲ୍‌ମ୍ ଷ୍ଟ୍ରୀଟ୍‌ର ଘନ ପତ୍ର ଗହଳ ଭିତରେ ରାସ୍ତାର ଆଲୁଅଗୁଡ଼ିକ ଢାଙ୍କି ହୋଇ ରହିଥାଏ। ବାୟୁମଣ୍ଡଳର ଜଳୀୟ ବାଷ୍ପରେ ପ୍ରତି ଆଲୁଅ ଚାରିପଟେ ପ୍ରଭାମଣ୍ଡଳ ସୃଷ୍ଟି ହୋଇଥାଏ।

ଯେ କୌଣସି ବୃତ୍ତିରେ ନିଯୁକ୍ତ ଲୋକ ଦିବାଲୋକରେ ବହିର୍ଜଗତକୁ କ୍ୱଚିତ୍ ଦେଖିବାର ସୁଯୋଗ ପାଏ। ତେଣୁ ସେ ବାହାର ଖବର ଓ ହାବଭାବର ସୂଚନା ନିଜର ପତ୍ନୀଠାରୁ ପାଇବା ଅସ୍ୱାଭାବିକ ନୁହେ। ବାହାରେ କ'ଣ ଘଟୁଛି ପତ୍ନୀ ଜାଣେ, ଓ କେଉଁ ବିଷୟରେ କିଏ କ'ଣ କହୁଛି ସେଇ ଶୁଣେ। ଏ ସବୁ ଖବର ସ୍ତ୍ରୀଠାରୁ ପୁରୁଷ ପାଖକୁ ଆସିଲା ବେଳେ ନାରୀଭିତର ଚାଳୁଣିରେ ଚଳେଇ ହୋଇ ଆସେ। ତେଣୁ ପୁରୁଷ ଦିନବେଳର ସଂସାରକୁ ନାରୀର ଆଖିରେ ଦେଖେ ବୋଲି କୁହାଯାଇପାରେ। ରାତିର ଅବସ୍ଥା ସ୍ୱତନ୍ତ୍ର—ସେତେବେଳକୁ ଦୋକାନ ହେଉ ବା ଅଫିସ୍ ହେଉ, ବନ୍ଦ ହୋଇ ସାରିଥାଏ। ପୁରୁଷ ସେ ଜଞ୍ଜାଳରୁ ମୁକ୍ତ ହୋଇ ସଂସାରକୁ ନିଜ ଆଖିରେ ଦେଖିବାକୁ ଅବସର ପାଏ—ଅବଶ୍ୟ ସାମାନ୍ୟ କିଛି ସମୟ ପାଇଁ।

ଭଇଁସି ମାଛର ହାଡରେ ମୋଡ଼ି ମୋଡ଼ି ହୋଇ ତିଆର ହୋଇଥିବା ବାଡ଼ିଟି ମୋ ହାତକୁ ବଡ଼ ଭଲ ଲାଗୁଥାଏ ; ବାଡ଼ିର ବହଳା ରୁପା ଭୁଣ୍ଡିଟି ବୃଦ୍ଧ କପ୍ତାନଙ୍କ ପାପୁଲିରେ ଘଷି ହୋଇ ହୋଇ ବେଶ୍ ଚିକ୍‌କଣ ହୋଇ ଯାଇଛି।

ବହୁଦିନ ପୂର୍ବେ ଯେତେବେଳେ ମୁଁ ଦିବାଲୋକରେ ସଂସାରକୁ ଦେଖିବାକୁ ପ୍ରଚୁର ଅବକାଶ ପାଉଥିଲି, ସେ ସମୟରେ ଥରେ ଜନସମାଗମରେ ଅତିଷ୍ଠ ହୋଇ ମୁଁ ନିରୋଳାରେ ଗୋଟିଏ ଘାସ ପଡ଼ିଆରେ ମୁହଁମାଡ଼ି ଶୋଇ ଯାଇଥିଲି। ଭୂଇଁରେ ମୁହଁ ମାଡ଼ିଥାଏ ; କ୍ଷୁଦ୍ର ଦୁବଘାସ ସଙ୍ଗେ ମୋର ଘନିଷ୍ଠ ସମ୍ପର୍କ ହୋଇଥାଏ, ଓ ପିମ୍ପୁଡ଼ି, ଘାସ ପୋକ ଓ ସାଧାରଣବୋହୂଙ୍କ ସଙ୍ଗେ ମୁଁ ଏକ ହୋଇଯାଇଥାଏ, ସେମାନଙ୍କ ଉପରେ ଠିଆ ହୋଇ ମୋର ଅସୁରରୂପରେ ସେମାନଙ୍କର ଭୀତି ଉତ୍ପାଦନ କରିବା ପରିବର୍ତ୍ତେ। ଘାସର ଘନ ଜଙ୍ଗଲ ଭିତରେ, ଯେତେବେଳେ

ମୋ ମନରେ ଯେଉଁ ଭାବାନ୍ତର ଆସିଥିଲା, ତା'କୁଇ ମୁଁ ଚାହିଁଥିଲି ଶାନ୍ତି ବୋଲି ।

ଏ ବନ୍ଦରର ଏଇ ରାତିରେ ମୁଁ ସେଇଭଳି ଶାନ୍ତିର ଆକାଂକ୍ଷାରେ ବାହାରିଲି, ପୁରୁଣା ବନ୍ଦରର ମୋର ଚିରପରିଚିତ ଆସ୍ଥାନକୁ ଯିବି । ସେଇଠାରେ ମାନବିକ ଜୀବନ ଓ ଅନନ୍ତକାଳର ଚିରନ୍ତନ ଆବର୍ତ୍ତର ସଂଘର୍ଷରେ ମୋ ମନର ବନ୍ଧୁରତା ଦୂର ହେବ ବୋଲି ଆଶା ଥିଲି ।

ମୁଁ କ୍ଷିପ୍ରଗତିରେ ଯାଇ ହାଇଷ୍ଟ୍ରୀଟ୍‌ରେ ପହଞ୍ଚିଲି ଓ ସେଥିରେ ଶତ କରି ଫୋର୍‌ମାଷ୍ଟର୍ କଫି ହୋଟେଲ ପାର ହେଲି ବେଳେ, ସବୁଜ-ପରଦା ଆଚ୍ଛାଦିତ ଷ୍ଟୋର୍ ଆଡ଼େ ଥରେ ମାତ୍ର ଦୃଷ୍ଟି ପକାଇଥିଲି । ନିଆଁଲିଭା ମଟର ଷ୍ଟେସନ୍ ଆଗରେ ପୁଲିସ୍‌ଗାଡ଼ି ରଖି ସୋଟା ଉଇଲି ତାର ଭିତରେ ବସିଥାନ୍ତି ; ତାଙ୍କ ଝାଳ ଗରଗର ଦେହ କାଦୁଅ ସରସର ଘୁଷୁରି ପରି ଦିଶୁଥାଏ ।

"ଆଜି ବି ରାତି-ଅଭିଯାନରେ ବାହାରିଛ, ଏଥ୍ ?"

"ହୁଁ ।"

"ଡାନ ଟେଲର୍‌ର ଶୋଚମୀୟ ଦଶା ଶୁଣି ଭୟଙ୍କର ଦୁଃଖ ହେଲା । ବେଶ୍ ଭଲ୍ ଲୋକ ।"

"ବଡ଼ ଶୋଚମୀୟ ଘଟଣା ବାସ୍ତବିକ୍ ।"

ରାସ୍ତାରେ କେତୋଟି ମଟରକାର ଜୋର୍‌ରେ ଚାଲି ଯାଇ ଟିକିଏ ଟିକିଏ ହାଉଆ କରୁଥାନ୍ତି । କିନ୍ତୁ ପଦଯାତ୍ରୀ କେହି ରାସ୍ତାରେ ଦେଖା-ଯାଉ ନ ଥାନ୍ତି । ଏତେବେଳେ ପାଦରେ ଚାଲି ଝାଳନାଳ ହେବାକୁ କେହି ନ ଚାହିଁବା ସ୍ୱାଭାବିକ ।

ମୁଁ ସମର-ସ୍ମୃତି ସ୍ତମ୍ଭଠାରେ ବାଟ ଭାଙ୍ଗି ପୁରୁଣା ବନ୍ଦର ଆଡ଼କୁ ଚାଲିଲି । କେତୋଟି ପ୍ରମୋଦ-ତରୀର ନଙ୍ଗରର ଆଲୁଅ ଓ କୂଳରେ ଲାଗିଥିବା କେତୋଟି ମାଛୁଆ ଡଙ୍ଗା ଦିଶୁଥାନ୍ତି । ସେତିକିବେଳେ ଦେଖିଲି, ଜଣେ କିଏ ପର୍‌ଲିକ୍ ଷ୍ଟ୍ରୀଟ୍ ମୋଡ଼ରୁ ମୋଆଡ଼କୁ ଆସୁଛନ୍ତି । ଚାଲିବାର ଢଙ୍ଗରୁ ଜାଣିଲି ସେ ମାର୍ଗ ୟଙ୍ଗ୍‌-ହାଣ୍ଟ ।

ସେ ସିଧା ମୋ ଆଗରେ ଆସି ଠିଆ ହୋଇଗଲେ ; ବାଟ ଭାଙ୍ଗି ଯିବାକୁ ମୋ'ର ଆଉ ଉପାୟ ନ ଥାଏ । ଏ ଗରମ ରାତିରେ ବି

କେତେ ଜଣ ନାରୀ ବେଶ୍ ଥଣ୍ଡାରେ ଆରାମ ଉପଭୋଗ କରୁଥିବାର ଦେଖାଯାଏ । ଏଇଥିରୁ ଜଣେ ମାର୍ଗି । ବୋଧହୁଏ ଏମାନଙ୍କ ସାମ୍ନାର ଶେଷ ଭାଗର କମ୍ପନରେ ପବନ ହୋଇ ଏମାନଙ୍କୁ ଥଣ୍ଡା ରଖେ ।

ସେ କହିଲେ, "ମୋ'ର ବିଶ୍ୱାସ, ତୁମେ ମୋତେ ଖୋଜୁଛ ।" ସେ ମୁଣ୍ଡର ଗୋଟିଏ ଚୂର୍ଣ୍ଣ କୁନ୍ତଳ ସଜାଡ଼ିବାର ଅଭିନୟ କଲେ ; ତାହା କିନ୍ତୁ ଆଗରୁ ବେଶ୍ ସଜାଡ଼ି ହୋଇ ରହିଥିଲା ।

"ତୁମକୁ ଖୋଜୁଛି ବୋଲି କାହିଁକି କହିଲ ?"

ସେ ବୁଲିପଡ଼ି ମୋର ବାହୁରେ ହାତ ପକାଇଲେ ଓ ଆଙ୍ଗୁଠି ଚିପି ଆଗେଇବାକୁ ଇସାରା ଦେଲେ । "ଏଇଭଳି ମଣିଷ ମୋ ଭାଗ୍ୟରେ ଜୁଟନ୍ତି । ମୁଁ ପୋର୍ଟମାଷ୍ଟର୍ କଫି ହୋଟେଲରେ ବସିଥିଲି । ତୁମେ ପାର ହୋଇ ଯିବାର ଦେଖି ମନେ ମନେ ବିଚାରିଥିଲି, ବୋଧହୁଏ ମୋତେ ଅନ୍ୱେଷା କରୁଛ । ତହୁଁ ତରତର ହୋଇ ଆର ସାହାଲି ବାଟେ ବୁଲିପଡ଼ି ଆସି ତୁମକୁ ବାଟ ଓଗାଳୁଛି ।"

"ମୁଁ କୋଉ ମୋଡ଼ରେ ବୁଲି କୁଆଡ଼େ ଯିବି କେମିତି ଜାଣିଲ ?"

"କମିତି ଜାଣିଲି କେଜାଣି ? କିନ୍ତୁ ଜାଣିଥିଲି ତ ଦେଖୁଛ । ଝିଂକାରୀଙ୍କ ଶବ୍ଦ ଶୁଣୁଛ ? ସ୍ୟା'ର ଅର୍ଥ, ପବନ ନିଶ୍ଚଳ, ପାଗ ଗରମ । କିନ୍ତୁ ବିବ୍ରତ ହେବାର କାରଣ ନାହିଁ, ଏଥାନ୍ ! ମୁହୂର୍ତ୍ତେ ମାତ୍ର ପରେ ଆମେ ଆଲୁଅ ପାର ହୋଇ ନିଚ୍ଛଟିଆ ଅନ୍ଧାରିଆ ଜାଗାକୁ ଚାଲିଯିବା । ମନ ହେଉଛି ତ ମୋ ନିଜ ଘରକୁ ସ୍ୱଚ୍ଛନ୍ଦରେ ଆସିପାର । ପିଇବାକୁ ଦେବି—ବେଶ୍ ବଢ଼ିଆ ଥଣ୍ଡା ମାଲ ; ପୁଣି ଦେବି ବେଶ୍ ବଢ଼ିଆ ଉତଲା ମାଇକିନିଆ ।"

ଘର ଝଙ୍କାଳିଆ ହୋଇ ବଢ଼ିଥିବା ସଦାସବୁଜ ପ୍ରିଭେଟ୍ ବୁଦାରେ କୁଞ୍ଜ ପରି ହୋଇଥିବା ଗୋଟିଏ ଅଣଆଡ଼ୁଆ ଜାଗାକୁ ମାର୍ଗି ଅଙ୍ଗୁଳି ସଂକେତରେ ମୋତେ ନେଇଗଲେ । ଭୂଇଁରେ ହୋଇଥିବା ଗୋଟାଏ ପ୍ରକାର ହଳଦିଆ ଘାସଫୁଲ ଅନ୍ଧାରକୁ ଦୂର କରିବାରେ ଲଗିଥାଏ ।

"ଏଇ ମୋର ଘର । ତଳ ମହଲରେ ମଟରଗ୍ୟାରେଜ୍, ଉପରେ ମୋର ପ୍ରମୋଦ-କୁଟୀର ।"

"ମୁଁ ତୁମକୁ ଖୋଜୁଛି ବୋଲି କ'ଣ ତେଶି ଠଉରେଇଲ ?"

"ମୋତେ ବା ମୋର ପରି ଆଉ କାହାକୁ ଖୋଜୁଛ ! ଷଣ୍ଢ ଲଢେଇ ଦେଖିଛ, ଏଥାନ୍ ?"

"ଲଢ଼େଇ ପରେ ଆର୍‌ଲସ୍‌ଠାରେ ଥରେ ଦେଖିଥିଲି ।"

"ମୋ ବିଶ୍ୱାସ ପତ୍ନି ମୋତେ ଷଣ୍ଢ ଲଢ଼େଇ ଦେଖାଇବାକୁ ନେଉଥିଲେ । ତାଙ୍କୁ ଏହା ଖୁବ୍ ସୁଖ ଲାଗେ । ଯେଉଁ ପୁରୁଷମାନେ ବିଶେଷ ସାହସୀ ନୁହନ୍ତି, କିନ୍ତୁ ସାହସୀ ହେବାକୁ ଆକାଂକ୍ଷା କରନ୍ତି, ସେମାନଙ୍କ ପକ୍ଷରେ ଷଣ୍ଢ ଲଢ଼େଇ ଦେଖିବା ଦରକାର । ତୁମେ ଯଦି ଷଣ୍ଢ ଲଢ଼େଇ ଥରେ ବି ଦେଖିଛ, ତେବେ ମୁଁ ଯାହା କହିବାକୁ ଯାଉଛି ବୁଝି ପାରିବ । ନାଲି କନା ବାରଂବାର ଦେଖାଇବା ଫଳରେ ଯେତେ-ବେଳେ ଷଣ୍ଢ ଉତ୍ତ୍ୟକ୍ତ ହୋଇ କାହାକୁ ଜଣକୁ ଭୁଷି ମାରିଦେବାକୁ ବାହାରେ, କିନ୍ତୁ ପାଖରେ କେହି ନଥାନ୍ତି—ସେଇ ବେଳ ଦେଖିବାର ମନେ ଅଛି ନା ?"

"ହଁ, ମନେ ପଡ଼ୁଛି ।"

"ମନେ ପକାଅ, ସେତେବେଳେ ଷଣ୍ଢ ଉତ୍ତେଜନାରେ କିପରି ବିବ୍ରତ ହେଉଥାଏ ; ବ୍ୟତିବ୍ୟସ୍ତ ହୋଇ ଗର୍ଜେ, ତା'ର ଆକାଂକ୍ଷା ପୂରଣ କରିବାକୁ କିଛି ଗୋଟାଏ ପାଖରେ ପାଇବାକୁ । ସେତିକିବେଳେ ତା' ପାଖରେ ଗୋଟାଏ ଘୋଡ଼ା ପହଞ୍ଚାଇ ଦେବା ଦରକାର, ନ ହେଲେ ବିକଳରେ ତା'ର ଛାତି ଫାଟିଯିବ । ମୁଁ ସେଇ ଘୋଡ଼ା । ଆଉ ତୁମେ ସେଇ ଷଣ୍ଢ ପରି ମାନସିକ ଉତ୍ତେଜନାରେ ବିବ୍ରତ ଓ ବ୍ୟତିବ୍ୟସ୍ତ ମଣିଷ ! ଏଇ ଭଳି ମଣିଷ ମୋ ପାଖକୁ ଆସନ୍ତି । ମୋ ଦେହରେ ଶିଂଘ ଭୁଷିଦେଲେ ତାଙ୍କ ଚିତ୍ତଶାନ୍ତ ଫେରିଆସେ । ଘୋଡ଼ାଠାରେ ଶିଂଘ ଭୁଷିବା ପରେ ଷଣ୍ଢ ଯେପରି ମନ-ଉଲ୍ଲାସରେ ପୁଣି ମାଟାଡୋର ସଙ୍ଗେ ଲଢ଼ିବାକୁ ଯାଏ, ସେହିପରି ମୋ'ଠାରେ ଶିଂଘ ଭୁଷି ସାରିଲା ପରେ ତୁମ ପରି ଉଦ୍‌ବେଜିତ ଲୋକେ ସାମାନ୍ୟ ବିଜୟ ଉଲ୍ଲାସ ପାଇ, ସଂସାରର ରଣଭୂମିରେ ଉତ୍ସାହର ସହିତ ପୁଣି ଅବତୀର୍ଣ୍ଣ ହୁଅନ୍ତି ।"

"ମାର୍ଗ !"

"ଦଣ୍ଡେ ମାତ୍ର ଅପେକ୍ଷା କର । ମୁଁ ମୋ ଶୁଦ୍ଧଚାକୁ ଖୋଜୁଛି । ହେନାର ବାସ୍ନା ନାକରେ ବାଜୁଛି ?"

"କିନ୍ତୁ ମୋ'ର ତୁମଠାରୁ ବିଜୟ-ଉଲ୍ଲାସ ପାଇବାର ପ୍ରୟୋଜନ ନାହିଁ । ମୁଁ ବିଜୟ ପାଇ ସାରିଛି ।"

"ପାଇ ସାରିଛ ? ନା, ନା, ହୁଏତ ମାଟାଡୋର୍ ଦେଖାଇଥିବା ଗୋଟାଏ ନାଲିକନା ଶିଂଘରେ ଭୁଷି, ଗୋଡ଼ରେ ଚକଟି ଦେଇଛ ମାତ୍ର ।"

"ତୁମେ କିମିତି ଜାଣିଲ ?"

"ମଣିଷ ଯେତେବେଳେ ମୋତେ ବା ମୋର ପରି ଆଉ ଜଣକୁ ଖୋଜି ବୁଲେ, ସେତେବେଳେ ସେ କେଉଁଲ ବିଜୟ ହାସଲ କରିଥାଏ, ତା' ମୋତେ ବେଶ୍ ଜଣା । ଦେଖି, ଦେଖି ସିଡ଼ିରେ ଚଢ଼ । ସେ ଗୁଡ଼ାକ ଘର ଅଣଓସାରିଆ । ସାବଧାନ, ମୁଣ୍ଡ ସିଢ଼ି ଛାତରେ ବାଜିବ । ପାଇଲ, ଏଇ ଆଲୁଅ ସୁଇଚ୍ - ଦେଖୁଛ ? ମୋର ପ୍ରମୋଦକୁଟୀର ; ମୃଦୁ ଆଲୋକ ; କସ୍ତୁରିର ଗନ୍ଧ—ଝରକାବାଟେ ତଳକୁ ଚାହିଁଲେ ଦିଶିବ ସମୁଦ୍ର—ସୂର୍ଯ୍ୟାଲୋକ ନ ଥିଲେ ବି ନିଜ ଆଲୋକରେ ଆଲୋକିତ ।"

"ମୁଁ ଭାବୁଛି, ତୁମେ ସତରେ ଯାଦୁକରୀ ।"

"ଭାବୁଛ କାହିଁକି, ମୁଁ କ'ଣ, ତାହା ତ ତୁମେ ବେଶ୍ ଜାଣ । ଦୁଃଖୀ, ଦରିଦ୍ର, ଅନୁକଂପାର ପାତ୍ର—ଗୋଟିଏ କ୍ଷୁଦ୍ର ସହରର ଯାଦୁକରୀ ମାତ୍ର । ହେଇଟି, ସେ ଝରକା ପାଖେ ବସ । ମୁଁ କୃତ୍ରିମ ପବନ ଚଳାଇ ଦିଏଁ । ମୁଁ ଯାଉଛି· ଲୋକେ କହିଲ୍ ଚଟି, 'ଆରାମଦାୟକ କ'ଣ ଖଣ୍ଡେ' ଗୁଡ଼େଇ ହୋଇଆସିବି, ତା'ପରେ ତୁମ ପାଇଁ ବଡ଼ିଆ ଥଣ୍ଡା ମୁଣ୍ଡ-ଝିଙ୍କା ନାଲପାଣି ମୁନ୍ଦେ ଆଣିବି ।"

"ଏ ମୁଣ୍ଡ-ଝିଙ୍କା ଶବ୍ଦଟା ସଂଗ୍ରହ କଲ କେଉଁଠୁ ?"

"ଏଇଟା କେଉଁଠୁ ସଂଗୃହୀତ ତୁମେ ବେଶ୍ ଜାଣ ।"

"ତା' ସାଙ୍ଗେ କ'ଣ ତୁମର ଘନିଷ୍ଠତା ଥିଲା ?"

"ତାଙ୍କ ବ୍ୟକ୍ତିତ୍ୱର ଗୋଟିଏ ଅଂଶ ସଙ୍ଗେ ମାତ୍ର । ସେଇ ଅଂଶଟି ସହିତ ମାତ୍ର ନାରୀର ଘନିଷ୍ଠତା ହୋଇପାରେ । ବେଳେ ବେଳେ ମନେ ହୁଏ, ସେଇ ଅଂଶଟା ମଣିଷର ଶ୍ରେଷ୍ଠ ଅଂଶ – କିନ୍ତୁ ସବୁ ବେଳେ

ନୁହେଁ । ତାଙ୍କର ସେଇ ଅଂଶଟା ସବୁବେଳେ ଥିଲା ସବଶ୍ରେଷ୍ଠ । ସେ ମୋତେ ବିଶ୍ୱାସ କରୁଥିଲେ ।"

ମୁଁ ଏ ଯେଉଁ ପ୍ରକୋଷ୍ଠଟିରେ ବସିଲି ତାହା ଅନ୍ୟ ଅନେକ ପ୍ରକୋଷ୍ଠର ସ୍ମୃତି ନିଜଠାରେ ଏକତ୍ରିତ କରି ରଖିଥିଲା ପରି ମନେ ହେଲା । ଅନେକ ଲୋକଙ୍କ ଜୀବନର କେତେ କ୍ଷୁଦ୍ର କ୍ଷୁଦ୍ର ଅଂଶ ଏହି ପ୍ରକୋଷ୍ଠରେ ପାଦଚୀକା ପରି ସନ୍ନିବେଶିତ ହୋଇଛି । ଝରକା ତଳେ ଥିବା ପଂଖା ସୁସୁ କରି କ୍ଷୁଦ୍ର ଗର୍ଜନ ଆରମ୍ଭ କରିଥାଏ ।

ମାର୍ଗି ଆରପଟରୁ ବାହାରିଲେ, ଲମ୍ବା ଢିଲା ତରଙ୍ଗମାଳ ଘାଘରା ଗଳେଇ—ତାଙ୍କ ଦେହରୁ ସୁଗନ୍ଧର ମୌସୁମୀ ବହୁଥାଏ । ଏ ଗନ୍ଧ ମୋ ନାକରେ ବାଜିବାର ଜାଣି ସେ କହିଲେ, "ବ୍ୟସ୍ତ ହୁଅ ନାହିଁ ; ସ୍ପେ କଲୋନ୍ ଅତର ; ମୁଁ ଏହା ବ୍ୟବହାର କରିବାର ମେଘ କେଉଁଦିନୁ ଜାଣି ନାହାନ୍ତି । ହେଇଟି ପାମାପୁ—ଜିନ୍ ସଙ୍ଗେ ବାଜୀକରଣ ଔଷଧ ମିଶାଇ ଦେଇଛି । ଆଗ ବାଜୀକରଣ ଔଷଧ ଗ୍ଲାସରେ ଘଷି, ତା'ପରେ ଜିନ୍ ଢାଳିଛି—ଖାଲି ଜିନ୍ । ଗ୍ଲାସ୍‌କୁ ଟିକଏ ହଲାଇ ଦିଅ, ବରଫ ଟୁକୁରା ପକାଇଛି, ବେଶ୍ ଥଣ୍ଡା ଲାଗିବ ।"

ବାଉର୍ ପିଇଲା ପରି ମୁଁ ଏକାଥରକେ ଢକ ଢକ କରି ଗ୍ଲାସଟା ସାରିଦେଲି । ଜିନ୍‌ର ଶୁଷ୍କ ଉତ୍ତାପ ମୋର କାନ୍ଧକୁ ଯାଇ ସେଠାରୁ ଦୁଇ ବାହୁକୁ ଘଟରିଗଲା—ମୋର ସମଗ୍ର ଦେହ ଚେହେଁକ ଉଠିଲା ।

ସେ କହିଲେ, "ତୁମର ଏଇଟା ଦରକାର ଥିଲା, ବୋଧହୁଏ ?"

"ମୁଁ ବି ସେଇଆ ଭାବୁଥିଲି ।"

"ମୁଁ ଏଇଲେ ତୁମକୁ ସାହସୀ ଷଣ୍ଢ କରି ଦେବ । ଦେହକୁ ଉତ୍ସାହ ଫେରିଆସିବ, ଚିନ୍ତାଚାଞ୍ଚଲ୍ୟ ଦୂର ହେବ—ବିଜୟୀର ଉଲ୍ଲାସ ତୁମେ ଉପଭୋଗ କରିବ । ଷଣ୍ଢର ସେଇଆ ଦରକାର ।"

ମୁଁ ମୋର ହାତ ଦୁଇଟିକୁ ଗୁହାଁଲି । ଦୋକାନରେ ପେଟି ଖୋଲିବା ବେଳର ଖଞ୍ଜୁଡ଼ା ଓ କଟା ଦାଗରେ ପୂର୍ଣ୍ଣ ହୋଇଛି, ହାତର ନଖ ଗୁଡ଼ିକୁ ବି ଦେଖିଲି ; ସେ ଗୁଡ଼ିକରେ ମଇଳା ରହିଛି ।

ସୋଫାଉପରେ ମୁଁ ବାଡ଼ିଟା ପକାଇ ଦେଇଥିଲି । ସେ ସେଠାରୁ ତାକୁ ଉଠାଇ ନେଇ କହିଲେ, "ତୁମର ଦବି ଯାଇଥିବା ମନକୁ ଉଦ୍ଧା

ଦେବା ନିମନ୍ତେ ଆଜ ଏ ବାଡ଼ଟା ତ ଦରକାର ନାହିଁ ବର୍ତ୍ତମାନ ?"

ମୁଁ କହିଲି, "ଏଥର ତେବେ ତୁମେ ମୋର ଶତ୍ରୁ ହେଉଛ ?"

"କିଏ ? ମୁଁ ? ସମଗ୍ର ନିଉ-ବେ'-ଟାଉନର ମୁଁ କ୍ରୀଡ଼ା-ସଙ୍ଗିନୀ ! ତୁମର ହେବି ଶତ୍ରୁ ?"

ମୁଁ ବହୁତ ବେଳ ସ୍ଥିର ହୋଇ ବସିବାରୁ, ଦେଖିଲି ସେ ଅସ୍ଥିର ହୋଇ ପଡ଼ିଲେ ; କହିଲେ, "ଯେତେ ସମସ୍ତ ଇଚ୍ଛା ସେତେ ସମସ୍ତ ନିଅ ! ଯାହା କରିଛ ଓ ଯାହା କରିବ, ତା'ର ପ୍ରାୟଶ୍ଚିତ୍ତ କରିବାକୁ ଜୀବନ ତମାମ ପଡ଼ିଛି । ଆଉ ଗୋଟାଏ ପାମିସ୍ ଆଣିବି ?"

ସେ ଆଉ ଗୋଟାଏ ଗ୍ଲାସ ଆଣିଲେ—ପୂର୍ଣ୍ଣ ଗ୍ଲାସ । ମୁଁ ଗ୍ଲାସଟା ତାଙ୍କ ହାତରୁ ନେଲି । ମୋ ତୋଟି ଏପରି ଶୁଖି ଯାଉଥାଏ ଯେ ମୁଁ ତୋକେ ପିଇବା ପରେ ଯାଇ କଥା କହି ପାରିଲି । କଥା କହିବାରେ ଜାଣିଲି, ମୋ ତୋଟି ବସି ଯାଇଛି ।

"ତୁମେ ମୋ'ଠାରୁ ଗୃହ କ'ଣ ?"

"ତୁମର ପ୍ରେମ ମୋର ଦରକାର ବୋଲି ଆଗରୁ ଜବାବ୍ କରିଥିଲେ ହୋଇଥାନ୍ତା ।"

ନିଜର ପତ୍ନୀକୁ ଯେଉଁ ପୁରୁଷ ପ୍ରେମ କରେ, ତୁମେ ତା'ର ପ୍ରେମ ଗୃହୁଛ ?"

"କିଏ, ମେରି ? ତାଙ୍କୁ ତୁମେ ପ୍ରେମ କରିବ କ'ଣ ? ତାଙ୍କୁ ତୁମେ ଚିହ୍ନ ବି ନାହିଁ ।"

"ବେଶ୍ ଚିହ୍ନେ । ସେ କୋମଳ-ପ୍ରାଣ, ସେ ମଧୁମୟୀ, ସେ ମୋ ପ୍ରେମ ନ ପାଇଲେ ନିରୁପାୟା ହୋଇ ପଡ଼ିବେ ।"

"ନିରୁପାୟା ? ତୁମେ ତାଙ୍କୁ ଆଦୌ ଜାଣ ନାହିଁ । ତାଙ୍କର ମନ ପଥରପରି ଟାଣ । ତୁମେ ଅସହାୟ ଓ ନିରୁପାୟ ହୋଇ ଯାଇଗଲ-ପରେ ବି ସେ ଖୁବ୍ ଦୃଢ଼ ଓ ଟାଣ ଥିବେ । ସେ ସମୁଦ୍ରର ଚଲପରି, ପବନ ଉପରେ ଭର ଦେଇ ଉପରେ ଭାସୁଥାନ୍ତି ; ନିଜର ପକ୍ଷୀ ହଲାଇ ବ୍ୟବସ୍ଥା କରିବା ଲୋକ ସେ ନୁହନ୍ତି ।"

"ତୁଚ୍ଛା ମିଛ କଥା ।"

"ଦେଖିବ, ଯେତେବେଳେ ତୁମ ଦୁହିଁଙ୍କ ଜୀବନରେ ଗୋଟାଏ ବଡ଼ ଅଶାନ୍ତି ଆସିବ, ତୁମେ ଜଳି ପୋଡ଼ି ମରିବ; କିନ୍ତୁ ତାଙ୍କ ଦେହରେ ମଳଧୂଳି ଲାଗିବ ନାହିଁ ।"

"ଏବେ ତୁମେ ଚାହଁ କ'ଣ ?"

"ତୁମେ ବର୍ତ୍ତମାନ ମୋତେ ଆକ୍ରମଣ କରିବାକୁ ଆସୁଛ କି ନାହିଁ ଯେ ? ଆଗେ ତୁମର ଚରିତ୍ରଟା, ଅନୁରକ୍ତା ମାଗିକୁ ମାଡ଼ ବସି ନିଜେ ମୂଲ୍ୟ-ନର୍ଦ୍ଧନ କର । ତୁମ ମନର ସବୁ ଘୃଣା ଓ ଅବସାଦର ଆଘାତ ସେଇ ବକ୍ଷସ୍ଥଳ ପାଉ ।"

ମୋ'ର ହାତରୁ ଅଧା ସରିଥିବା ଗ୍ଲାସଟା ସୋଫା ପାଖେ ଥିବା ଗ୍ଲେଟିଆ ଟେବୁଲ ଉପରେ ରଖି ଦେଲି । ସେ ସାଙ୍ଗେ ସାଙ୍ଗେ ଗ୍ଲାସ୍‌ଟା ଉଠାଇ ନେଇ ଗୋଟିଏ ସିଗ୍ରେଟ୍ ପାଉଁଶଦାନ ଉପରେ ତା'କୁ ରଖିଦେଲେ ଓ ମୁଁ ଯେଉଁଠାରେ ଗ୍ଲାସ୍ ରଖିଥିଲି ସେଠାରେ ଲାଗି ଯାଇଥିବା ଦାଗକୁ ନିଜ ପାପୁଲିରେ ପୋଛି ଦେଲେ ।

"ମାଗି ! ତୁମର ଇତିବୃତ୍ତ ମୁଁ ଜାଣିବାକୁ ଚାହେଁ ।"

"ବୁଲେଇ ବାଲେଇ କହୁଛ କାହିଁକି ? ତୁମେ ଯେଉଁ ଗୁଣ ପଢ଼ୁଛ ସେ ବିଷୟରେ ମୋର ମତ କ'ଣ ତୁମେ ଜାଣିବାକୁ ଚାହଁ ।"

"ତୁମେ କିଏ ତାହା ଭଲ କରି ନ ଜାଣିବା ଯାଏଁ ତୁମେ କ'ଣ ଚାହଁ ମୁଁ ଉତ୍ତରେଇ ପାରୁ ନାହିଁ ।"

"ବୁଝିଛି, ମନର କଥା କହୁଛ । ତୁମେ ଟଙ୍କାଟାକୁ ବଡ଼ ମନେ-କର । ବନ୍ଧୁକରେ ମୋତେ ମାରି ପାରିବ, କ୍ୟାମେରାରେ ମୋର ଫଟୋ ଉଠାଇ ତା'କୁ ନିଜର ମୁଣ୍ଡରେ ରଖିବ । ଏ ସବୁ ତୁମେ ନିଷ୍କାମଭାବେ କରିପାରିବ—ଟଙ୍କା ପାଇଁ । ହଉ, ମୋ କଥା କହୁଛି ଶୁଣ । ଯୌବନରେ ମୁଁ ବେଶ୍ ସଚ୍ଚରିତ୍ରା ଥିଲି, ବିଚକ୍ଷଣା ବି ଥିଲି, ମଧ୍ୟଭଲିଆ ନାଚ ଜାଣୁ-ଥିଲି- ଅବଶ୍ୟ ସେତେ ଭଲ ନୁହେ । ଏଇ ସମୟରେ ଜଣେ ବୟସ୍କ-ଲୋକଙ୍କ ସଙ୍ଗେ ପରିଚୟ ହେଲା; ତାଙ୍କୁ ବଶ ହୋଇ ପଡ଼ିଲି । ସେ ମୋତେ ପ୍ରେମ କରୁଥିଲେ—ମୋ ପ୍ରତି ପ୍ରେମରେ ସେ ଉଦ୍ବୃତ୍ତ ହେଉଥିଲେ । ଗୋଟିଏ ସଚ୍ଚରିତ୍ରା, ବିଚକ୍ଷଣା ନିଶାହା ବାଳିକା ପକ୍ଷରେ ଏହା କମ୍ ଭାଗ୍ୟର କଥା ନ ଥିଲା । ତାଙ୍କ ସଙ୍ଗେ ବା କାହା ସଙ୍ଗେ ଗୁଡ଼ାଏ ନାଚିବାକୁ

ମୋର ମନ ନଥିଲା – ଏପରିକ କୁଠା ଖଣ୍ଡିକ ଢ଼'ଖଣ୍ଡ କରିବାକୁ ବି ମୋର ମନ ନ ଥିଲା । ମୁଁ ତାଙ୍କୁ ଯେତେବେଳେ ଛାଡ଼ିବାକୁ ବସିଲି ସେ ଏତେ ବିଚଳିତ ହୋଇ ପଡ଼ିଲେ ଯେ, ମୁଁ ପୁଣି ବିଭାହେଲେ ସେ ମୋତେ ମାସକୁ ମାସ ଦେଉଥିବା ଖର୍ଚ୍ଚକ ପୋଷାକ ଟଙ୍କା ବନ୍ଦ ହୋଇଯିବ ବୋଲି ଛାଡ଼-ପତ୍ରରେ ସର୍ତ୍ତ ରଖିବାକୁ ତାଙ୍କର ପାସୋର ହୋଇଗଲା । ମୁଁ ଆଉ ଜଣକୁ ବିଭାହେଲି ଓ ତାଙ୍କ ସଙ୍ଗେ ସମଗ୍ର ପୃଥିବୀରେ ଲମ୍ବା ସଫର କରି ଆସିଲି । ସେଇ ସଫରରେ ସ୍ୱାଙ୍କର ପ୍ରାଣ ଗଲା । ଏବେ କୋଡ଼ିଏ ବର୍ଷ ହେଲା ମୋର ପ୍ରଥମ ସ୍ୱାମୀଙ୍କର ଚେକ୍‌ଟା ଠିକ୍ ମାସର ପହିଲା ଦିନ ଆସି ପହଞ୍ଚୁଛି । ଏ କୋଡ଼ିଏ ବର୍ଷ କାଳ ମୋତେ ମଲା କଙ୍କଡ଼ା ବି ଲେଉଟାଇବାକୁ ପଡ଼ୁ ନାହିଁ । କେବଳ ମୋତେ ଭଲ ପାଉଥିବା ବନ୍ଧୁମାନେ କେତେ ବେଳେ କେମିତି ଯେଉଁ ଉପହାର ଦେଉଛନ୍ତି, ତାକୁଇ ଯାହା ହାତରେ ଧରି ଆଣୁଛି ଓ ଥୋଉଛି—ଏତିକ ମାତ୍ର ପରିଶ୍ରମ । ପୂର୍ବ କୋଡ଼ିଏ ବର୍ଷ ଏଇମିତି ଚାଲି ଗଲାଣି – ଏତେ ଦିନ ବୋଲି ଜଣା ପଡ଼ୁନାହିଁ ଆଦୌ । ମାନିବାକୁ ହେବ, ମୋର ଆଉ ଯୌବନ ନାହିଁ କି ପୂର୍ବର ସେ ସଚ୍ଚରିତ୍ର ବି ନାହିଁ ।

ସେ ତାଙ୍କ ଫ୍ଲେଟ ଶେଷରେ ଘରକୁ ଯାଇ ହାତରେ ତିନିଖଣ୍ଡ ବରଫ ଆଣିଲେ । ବରଫକୁ ନିଜ ଗ୍ଲାସରେ ପକାଇ ଦେଇ ତା' ଉପରେ ଜିନ୍ ଢାଳିଲେ । କୁଟ୍‌କୁଟ୍ ଶବ୍ଦ କରୁଥିବା ଇଲେକ୍‌ଟ୍ରିକ୍ ପଂଖା, ଭିଜାରେ ଶୁଖିଯାଇଥିବା ସମୁଦ୍ରଚଡ଼ାର ଗନ୍ଧ ବହି ଆଣୁଥାଏ । ସେ ନରମସ୍ୱରରେ ମୋତେ କହିଲେ, "ଏଥାନ, ନିକଟରେ ତୁମେ ତ ବହୁତ ପଇସା କରିବ ।"

"ମୋର କାରବାର କଥାଟା ଜାଣିଲଣି ବୋଧହୁଏ ।"

"ହଁ, ବହୁ ସାଧୁ ସଚ୍ଚରିତ୍ର ଲୋକ ଭିତରେ ଭିତରେ ଅନ୍ଧାରି କାମ କରିବାର ଜାଣେ ।"

"ଆଚ୍ଛା, ହଉ, ତୁମ କଥା କହ ।"

ସେ ତାଙ୍କ ହାତ ଛୁଆଁଇ ଦେଲେ । ଧରିଥିବା ଗ୍ଲାସ୍‌ଟା ଛୁଟିହୋଇ ପଡ଼ିଲା ; ଗ୍ଲାସ ଭିତରର ବରଫ ଟୁକୁରା ଗୁଡ଼ାକ କାଛରେ ବାଜି ଛିଟିକି ଆସି ପଶାକାଠି ପରି ଗଡ଼ିଗଲା ।

"ମୋ  ପ୍ରେମ-ପାଗଳ ପ୍ରଥମ ସ୍ୱାମୀଙ୍କର ଗତ ସପ୍ତାହରେ ବୃତ୍ତି-ବିକାର ହୋଇଥିଲା । ସେ ଆଖି ମୁଜିବା ଦିନ ତାଙ୍କ ଚେକ୍ ବନ୍ଦ ହୋଇ-ଯିବ । ଏଣେ ମୁଁ, କର୍ମକୁଡ଼ୀ, ବୁଡ଼ୀ ବି ହୋଇ ଗଲିଣି । କିମିତି ଚଳିବି ବିଷୟରେ ଆତଙ୍କିତ ହୋଇଛି । ତମର ଉପରେ ଭିଗି ଦେଇ ଠିଆ ହେବି ବୋଲି ବିଚାରିଥିଲି ଯେ, ତୁମଠାରେ ମୋର ବିଶ୍ୱାସ ନାହିଁ । ତୁମେ, ମୋର ଭୟ ହେଉଛି, ଯେଉଁ ପନ୍ଥା ଧରି ପଇସା ଅର୍ଜିଲ ସେ ପନ୍ଥା ଛାଡ଼ି ଦେବାର ଆଶଂକା ହେଉଛି । ତୁମେ ହୁଏତ ପୁଣି ସାଧୁ ସଚ୍ଚରିତ୍ର ହୋଇ-ଯିବ । ଏହି ଆଶଂକାରେ ମୁଁ ବିବ୍ରତ ହୋଇ ପଡ଼ିଲିଣି ।"

ମୁଁ ଠିଆ ହେଲି—ମୋ ଗୋଡ ଯୋଡ଼ାକ ଘରି ଗରୁ ଲାଗୁଥାଏ—ଥରୁ ନ ଥାଏ ; ଖାଲି ଗରୁ ଜଣା ପଡ଼ୁଥାଏ, ଜଣା ପଡ଼ୁଥାଏ ସତେ ଯେପରି ସେଥିରେ ପ୍ରାଣ ନାହିଁ ।

"ତେବେ ପୁଣି କ'ଣ କରିବ ବୋଲି ବିଚାରୁଛ ?"

"ମ୍ୟାରୁଲେ ବି ମୋର ବନ୍ଧୁ ଥିଲେ ।"

"ଓଃ, ବୁଝିଲି ।"

"ତମ ସାଙ୍ଗେ ଟିକିଏ ଶୋଇବି ନାହିଁ ? ଶଯ୍ୟା-ସଙ୍ଗିନୀ ଭାବରେ ମୁଁ ଖୁବ୍ ଭଲ । ସମସ୍ତେ ସେଇଆ କହିବାର ଶୁଣିଛି ।"

"ମୁଁ ତ କିନ୍ତୁ ତୁମକୁ ଘୃଣା କରେ ନାହିଁ ।"

"ସେଇଥି ପାଇଁ ତ ମୁଁ ତୁମକୁ ବିଶ୍ୱାସ କରୁ ନାହିଁ ।"

"ଅଚ୍ଛା, ଗୋଟାଏ କ'ଣ ଫିକର ବାହାର କରିବା । ମୁଁ ବେକର୍‌ଙ୍କୁ ଘୃଣା କରେ । ତାଙ୍କୁ ଲଣ୍ଡା କରି ଦିଅନ୍ତି ବୋଇଲେ କେମିତି ହୁଅନ୍ତା ?"

"କି ଭାଷା ? କି ମନୋବୃତ୍ତି ? ବୋଧହୁଏ ନିଶାରେ ଏମିତି କହୁଛ ।"

"ନିଶା ଖାଇଲେ ମୋ'ର ମନୋବୃତ୍ତି ବିକୃତ ନ ହୋଇ ସତେଜ ହୁଏ ।"

"ଡାକ୍ତର ପ୍ରତି ତୁମେ ଯାହା କଲ ବେକର୍ ଜାଣନ୍ତି ?"

"ହଁ ।"

"କ'ଣ କହିଲେ ?"

"ଠିକ୍ କହିଲେ, କିନ୍ତୁ ତାଙ୍କୁ ଆଜି ମୁହଁ ବୁଲାଇ ଚାହିଁବି ନାହିଁ ।"

"ଅଲଫିଓ ତୁମକୁ ଆଡ଼ଆଖିରେ ବି ଚାହାନ୍ତେ ନାହିଁ ।"

"ଏକଥା କହିବାର ମାନେ ?"

"ଅବଶ୍ୟ ଅନୁମାନ କରି କହୁଛି । କିନ୍ତୁ ମୋ ଅନୁମାନ ଠିକ୍ ବୋଲି ବାଜି ରଖିପାରେ । ତେବେ, ତୁମେ ବିବ୍ରତ ହେବାର କାରଣ ନାହିଁ । ମୁଁ ତାଙ୍କୁ କିଛି କହିବି ନାହିଁ, ଯଦିଓ ସେ ମୋର ବନ୍ଧୁ ।"

"ତୁମ କାରସାଦି ମୁଁ ବେଶ୍ ବୁଝୁଛି । ତୁମ ପ୍ରତି ମୋ ମନରେ ବିଦ୍ୱେଷ ଜାତ କରାଇବାକୁ ଚେଷ୍ଟା କରୁଛ—ତେବେ ମୋ ଉପରେ ତୁମ ଖଣ୍ଡା ଚଳାଇବାର ସୁବିଧା ହେବ । କିନ୍ତୁ ଜାଣିରଖ, ମାର୍ଗି, ତୁମ ଖଣ୍ଡାଟା ରବର୍ ଖଣ୍ଡା ।"

"ସେ କଥା ମୁଁ ଆଗରୁ ଜାଣିନାହିଁ ବୋଲି ବିଚାରୁଛ ପରା ? କିନ୍ତୁ ଏଥି, ମୁଁ ଜାଣେ ମୋ ପଇସା ଶୁଖିଲ ପାଚିଲ ହୋଇ ରହିଛି ।"

"କିମିତି, ମୋତେ କହିବ ?"

"କହିଲେ କିଛି କ୍ଷତି ନାହିଁ । ମୁଁ ବାଜି ରଖି କହୁଛି, ଗତ ଦଶ-ପୁରୁଷର ହ'ଲ ପିତୃପୁରୁଷମାନେ ତୁମ ପିଠିରେ ଚାବୁକ୍ ଲଗାଇ ଲଗାଇ ତୁମକୁ ଆକ୍ରାନ୍ତ କରିଦେବେ । ସେମାନେ ଚାବୁକ ମାରି ତୁମକୁ ରକ୍ତ-ସ୍ନାନ କରି ଛାଡ଼ି ଦେବାପରେ, ତୁମେ ନିଜେ ଘା'ରେ ଲୁଣ ମାରିବ ଓ ଓଦା ରସି ଧରି ବେକରେ ଲଗାଇବାକୁ ତିଆରି ହେବ ।"

"ଯଦି ବା ସେଇଆ ହୁଏ, ତୁମର ସେଥିରେ କି ଲଭ ?"

"ସେତିକିବେଳେ ତୁମର ଜଣେ ବନ୍ଧୁ ଦରକାର ପଡ଼ିବ, ମନର କଥା ଖୋଲି କହିବାକୁ । ସେ ଭଳି ବନ୍ଧୁ ସଂସାରରେ ମୁଁ ଜଣେ ମାତ୍ର । ଏଥାନ୍ ! ମନରେ କୌଣସି କଥା ଗୋପନ ରଖିବାକୁ ବସିଲେ, ମଣିଷ ଭୀଷଣ ଯନ୍ତ୍ରଣା ପାଏ, ନିଃସଙ୍ଗ ହୋଇଯାଏ । ସେଇ ନିଃସଙ୍ଗ ଅବସ୍ଥାରେ ମୋତେ ପାଇଲେ ଆଦର କରିବ ନିଶ୍ଚୟ । ମୋ ବନ୍ଧୁତା ପାଇଁ ବେଶି କିଛି ଦାବୀ କରିବି ନାହିଁ । ତମ ଲଭରୁ ଶତକଡ଼ା କିଛି କମିସନ୍ ଦେଇ ଦେଲେ ମୋତେ ଯଥେଷ୍ଟ ।"

"ମୋର ଏଥର ଯିବା ଉଚିତ ।"

"ପାଣିପୁଟା ସାରି ଦିଅ ।"

"ନା, ଦରକାର ନାହିଁ ।"

"ସିଡ଼ିରେ ଗଲାବେଳେ ମୁଣ୍ଡ ଯେପରି ଛାତରେ ନ ବାଜେ, ସାବଧାନ ରହିବ ।"

ମୁଁ ସିଡ଼ିରେ ଅଧା ଓହ୍ଲାଇଛି ସେ ପଛରୁ ଆସି ପଚାରିଲେ ।

"ବାଡ଼ଟା କ'ଣ ଜାଣିକରି ଛାଡ଼ି ଯାଉଛ ?"

"ଆରେ ବାପ୍‌ରେ, ନା, ନା ।"

"ତେବେ ହେଉଛି ନିଅ । ବୋଧହୁଏ ବସୁଥିଲ, ଏଇଟା ମୋ ପୀଠରେ ବଳ ଦେଇ ଗଲ ।"

ବର୍ଷା ହେଉଥାଏ, ବର୍ଷାରେ ହେନାର ଗନ୍ଧ ଆହୁରି ମଧୁର ଲାଗୁଥାଏ । ମୋ ଗୋଡ଼ ଦୁଇଟା ଏଭଳି ଟଳ ଟଳ ହେଉଥାଏ ଯେ ମୋ ଜମିଦାଡ଼-ବାଡ଼ଟା ବାସ୍ତବରେ ପ୍ରୟୋଜନ ହେଉଥାଏ ।

ଖୋଟା ଉଇଲ ବଡ଼ାଏ କାଗଜ-ତଉଲିଆ ପାଖରେ ଥୋଇ ମଟରରେ ବସିଥାନ୍ତି । ସେଥିରୁ ଗୋଟେ ଗୋଟେ କାଢ଼ି କପାଳରୁ ଝାଳ ପୋଛୁଥାନ୍ତି ।

' ତୁମେ କେଉଁ ସ୍ତ୍ରୀଲୋକ ପାଖକୁ ଯାଇଥିଲ, ବାଦ ମାରି, କହି-ଦେବ ।"

"ତୁମର ଜଣା ହେବ ।"

"ହେଉଛି ଏଥି, ଗୋଟାଏ ଲୋକ ଏଇଲେ ତୁମକୁ ଖୋଜୁଥିଲା··· ବଡ଼ଲୋକ ବୋଧହୁଏ ; ଗୋଟାଏ ପ୍ରକାଣ୍ଡ ଡାଇସଲର୍ ଗାଡ଼ିରେ ଆସି-ଥିଲା, ଡ୍ରାଇଭର ବି ଆଣିଛି ।"

"ମୋ ସଙ୍ଗେ ତାଙ୍କର କି କାମ ?"

"ମୁଁ କି ଜାଣେ ? ତୁମକୁ ଦେଖିଛି କି ବୋଲି ମୋତେ ପଚାରିଲା, କିଛି ଇସାବ ଦେଲାନାହିଁ ।"

"ଏ ଖ୍ରୀଷ୍ଟମାସରେ ତୁମକୁ ଗୋଟାଏ ଉପହାର ଦେବି, ଉଇଲ !"

" କଣ, ଏଥି ! ତୁମ ଗୋଡ଼ର ହୋଇଛି କ'ଣ ?"

"ମୁଁ ତାସ ଖେଳୁଥିଲି ଯେ, ସେ ଯୋଡ଼ାକ ଶୋଇଯାଇଥିଲେ ।"

"ହଁ, ହଁ, ବସିରହିଲେ ତ ସେ ଗୁଡ଼ାକ ସେମିତି ହୁଅନ୍ତି । ଯଦି ସେ ଲୋକଟିକୁ ଦେଖେ, ତୁମେ ଘରକୁ ଫେରିଲଣି ବୋଲି କହିବ କି ?"

"କାଲି ଷ୍ଟୋର୍‌କୁ ଆସିବାକୁ କହିବ ।"

"ହାଇସ୍କୁଲର୍ ଇର୍ମିଶ୍‌ରଏଲ୍ ଗାଡ଼ି । 'ବେଧିଥିଆଟା ଖୁବ୍ ବଡ଼-ଲୋକ ପରି ଜଣା ଯାଉଛି । ଗାଡ଼ିଟା ଗୋଟାଏ ଟ୍ରକ୍ ପରି ଲମ୍ବା ।"

ଫୋର୍‌ମାଷ୍ଟର କଫି ହୋଟେଲ ସାମନା ଫୁଟପାଥରେ ଜମି ଠିଆ ହୋଇଥାନ୍ତି—ଚେହେରାଟା ହଣୁଥାଏ ବିଷର୍ଣ୍ଣ ଓ ନୀରସ ।

ମୁଁ କହିଲି, "ଥଣ୍ଡା ପାଣି ମୁହେ ପିଇବାକୁ ନିଉପୁର୍କ ଯିବ ବୋଲି କହୁଥିଲ ପରା ?"

"ଭାରି ଗରମ । ଯିବାକୁ ଆମ୍ଭା ଡାକିଲା ନାହିଁ । ଆସ ଏଥାନ୍ ! ମୁହେ କ'ଣ ପିଇବା । ଆଜ ମନଟା ଏକାବେଳକେ ଦବି ଯାଇଛି ।"

"ନାଇଁ ମଫ୍, ଏ ଗରମରେ ମୁଁ ମାଲପାଣି ଚଳାଇପାରିବି-ନାହିଁ ।"

"ବିଅର୍ ବି କ'ଣ ଚଳିବ ନାହିଁ ?"

"ନା, ବିଅର୍ ବି ମୋ ମୁଣ୍ଡକୁ ଚଢ଼ିଯାଏ ।"

"ବିଚିତ୍ର ମୋ ଜୀବନର ଗତି । ଅଦୃଷ୍ଟ ଆସି ଯେତେବେଳେ ଘୋଟେ, ସଂସାରରେ ଠାବ ମିଳିବା ମୁସ୍କିଲ୍ ହୋଇଯାଏ ।"

"ତୁମେ ବିଭା ହୋଇ ପଡ଼ିବା ଉଚିତ ।"

"ନାଇଁରେ ବାପ ! 'ଢିଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟିବ ।' ବିଭା ହେଲେ ଯେ ସଙ୍ଗିନୀ ମିଳେ ଏ ବିଷୟରେ ମୋର ଘୋର ସନ୍ଦେହ ।"

"ତୁମ କଥାଟା ବୋଧହୁଏ ସତ ।"

"ବୋଧହୁଏ, ଫୋଧହୁଏ, ନାଇଁ ; ନିଘଟ ସତ । ବିଭା ହୋଇ ପତ୍ନୀସର୍ବସ୍ୱ ହୋଇ ଯେଉଁମାନେ ରହନ୍ତି ତାଙ୍କଠାରୁ ନିଃସଙ୍ଗ ଅଉ କଏ ଅଛି ?"

"ଏକଥା ତୁମେ ଜାଣିଲ କେମିତି ?"

"ଦେଖି ଦେଖି । ହୋଇଟି ତ ଆଗରେ ସେଇଥିରୁ ଗୋଟିଏ ଦେଖୁଛ । ବସୁରୁଛ, ପେଟେ ଥଣ୍ଡା ବିଅର୍ ପିଇବ ଓ ଯାଇ ଦେଖିବ ମାଗି ସୁଙ୍ଗ୍-ହାଣ୍ଡି ଉଦ୍ଧାର କରୁଛି କି ନାହିଁ । ସେ ସମସ୍ତ ଅସମସ୍ତ ବାରବା ମାଇକିନିଆ ନୁହେଁ ।"

"ସେ ବୋଧହୁଏ ସହରରେ ନାହାଁନ୍ତି, ମର୍ଫି ! ସେ ମୋ ସ୍ତ୍ରୀଙ୍କୁ କହିଥିଲି—ଶୁଣିବା ପରି ଲାଗୁଛି—ଥଣ୍ଡା ପଡ଼ିବା ଯାଏ ସେ ଯାଇ ମେଇ-ନ୍‌ରେ ରହିବ ।"

"ଜାହାନାମ୍‌କୁ ଯାଉ ସିଏ । ତା'ଙ୍କୁ ହରାଇଲେ ମଦ ଦୋକାନର ଲାଭ ହେଲା ଜାଣ । ବ୍ୟର୍ଥଜୀବନର ଦୁର୍ଘଟଣାମାନ ଯାଉଛି ସେଇ ଦୋକାନୀ ଆଗରେ ବଖାଣିବ । ସେ ଶୁଣିବ ବୋଲି ବି ମନେ ହେଉନାହିଁ । ଥାଉ ସେ କଥା । ହଉ, ବିଦାୟ ଏଥର—ଭଗବାନ୍ ତୁମ ସାଙ୍ଗରେ ଥାନ୍ତୁ । ମେକ୍‌ସିକୋରେ ଏଇଆ କହି ବନ୍ଧୁକୁ ବିଦାୟ ଦିଅନ୍ତି ।"

ମୋ ବାଡ଼ି ଠକ୍ ଠକ୍ ଆବାଜ୍ କରି ଫୁଟପାଥରେ ଚାଲିଥାଏ । ସେଇ ଠକ୍ ଠକ୍ ମୋ ଭାବନାକୁ ନିୟନ୍ତ୍ରିତ କରୁଥାଏ । ମୁଁ ଭାବୁଥାଏ, ମାର୍ଗି ନାହାଁନ୍ତି ବୋଲି ଜର୍ଜିକୁ କହିଲି କାହିଁକି ? ସେ ତ ମୋ କଥା କେବେ କହନ୍ତା ନାହିଁ । କହିଲେ ତା' ବେଉସା ଚଳିବ ନାହିଁ । ତା' ହାତ-ବୋମାର ଠିପି ଉପରେ ହାତ ଦେଇଥିବା ଯାଏଁ ତା'ର ଲାଭ । କେମିତି କେଜାଣି ?

ହାଇଷ୍ଟ୍ରୀଟ୍‌ରୁ ଏଲମ୍ ଷ୍ଟ୍ରୀଟ୍ ଭିତରେ ପଶିବା ମାତ୍ରେ ଦେଖିଲି, ହ'ଲ-ଭବନର ଗେଟ୍ ଆଗରେ ଛାଇସ୍‌ଲର୍ ଗାଡ଼ିଟା ଠିଆ ହୋଇଛି । ଭାବିଲି ଦେଖିଲି ଏଇଟା ଟ୍ରକ୍ ପରି, କିନ୍ତୁ ମୋତେ ଦିଶିଲା ମୁର୍‌ଦାର-ବୁହା ଗାଡ଼ିପରି । ଘର କଳା, କିନ୍ତୁ ତା'ଉପରେ ରାସ୍ତାର ଧୂଳିରେ ବର୍ଷାପାଣି ବୁନ୍ଦା ପଡ଼ି ଚକ୍ ଚକ୍ ଦିଶୁ ନଥାଏ । ରହିଲାବେଳେ ଜଳିବାକୁ, ସ୍ୱାର ମେଘୁଆ-କାଚବାଲା ଷ୍ଟେଟ ଷ୍ଟେଟ ଲାଇଟ୍ ଦୁଇଟା ଥାଏ ।

ଖୁବ୍ ବିଳମ୍ବ ହୋଇ ଯାଇଥିଲା ନିଶ୍ଚୟ । ଏଲମ୍ ଷ୍ଟ୍ରୀଟ୍‌ର ନିଦ୍ରିତ ଗୃହମାନଙ୍କରେ ଆଲୁଅ ଜଳୁ ନ ଥାଏ । ମୁଁ ଭିଜି ଯାଇଥାଏ । ବୋଧହୁଏ ରାସ୍ତାର କୌଣସି ଗାତରେ ଗୋଡ଼ ପଡ଼ି ଯାଇଛି, ଚାଲିଲା ବେଳେ ମୋ ଜୋତା ଭିତରୁ ଓଦାଳିଆ ପଚ ପଚ ଶବ୍ଦ ବାହାରୁଥାଏ ।

ଫିମ୍ପି ଲାଗି ଯାଇଥିବା ସାମନା କାଚ ବାଟେ ଦେଖିଲି, ଡ୍ରାଇଭର୍-ଟୋପି ପିନ୍ଧିଥିବା ଲୋକଟିଏ ଆଗ ସିଟ୍‌ରେ ବସିଛି । ମୁଁ ଯାଇ ଅସୁର ଗାଡ଼ିଟା ପାଖେ ଠିଆ ହୋଇ ସାଇଡ଼ କାଚରେ ଠୁଙ୍କି ମାଇଲି । ସାଙ୍ଗେ ସାଙ୍ଗେ ଇଲେକ୍‌ଟ୍ରିକ୍-ଚାଳିତ କାଚଟା ତଳକୁ ଖସିଲା ।

ଶୀତାତପ ନିୟନ୍ତ୍ରିତ ଅଭ୍ୟନ୍ତରର ଅସ୍ୱାଭାବିକ ହାଉଆ ମୋ ମୁହଁରେ ବାଜିଲା ।

"ମୋ ନାଁ ଏଥାନ୍ ହ୍ୱ'ଲ । ଆପଣ ମୋତେ ଅପେକ୍ଷା କରିଛନ୍ତି ?" ମଠର ଭିତରର ଅନ୍ଧାରରେ ମୁଁ ଘଡ଼ିଏ ଦାନ୍ତ ଦେଖିଲି । ଧୋବ ଫର୍‌ଫର୍ ଦାନ୍ତ ଉପରେ ରାସ୍ତା ବତିଖୁଣ୍ଟର ଆଲୁଅ ପଡ଼ି ଚକ୍ ଚକ୍ ଦିଶିଲା ।

ମଠର ଦରଜାଟା ତା' ମନକୁ ଫିଟିଗଲା ଓ ଜଣେ ପତଳା, ଫିଟ୍‌ଫାଟ୍ ପୋଷାକ ପିନ୍ଧା ଲୋକ ବାହାରି ପଡ଼ିଲେ । "ମୋ ନାଁ, ଓନ୍‌ସ୍‌କମ୍—ବ୍ରିକ୍ ଏଣ୍ଡ୍ ସ୍କ୍ରିନ୍ ଟେଲିଭିଜନ୍ ଶାଖାରୁ ଆସିଛି । ଆପଣଙ୍କ ସଙ୍ଗେ କଥାବାର୍ତ୍ତା ଅଛି ।" ସେ ଡ୍ରାଇଭର୍ ଆଡ଼କୁ ଚାହିଁ କହିଲେ, "ଏଠାରେ ହେବ ନାହିଁ । ଘର ଭିତରକୁ ଯାଇ ପାରିବା ?"

"ଆପତ୍ତି ନାହିଁ । କିନ୍ତୁ ଏତେବେଳେ ସମସ୍ତେ ଶୋଇଥିବେ । ଆପଣ ଯଦି ଟିକିଏ ଆସ୍ତେ କଥା କହିବେ—।"

ଦୁଇଧାରରେ ପଥର ବିଛା ହୋଇଥିବା ଆମ ଘରକୁ ରାସ୍ତାରେ ସେ ମୋ ପଛେ ପଛେ ଆସିଲେ । ହଲ୍‌ରେ ଭିତର ମିଞ୍ଜି ମିଞ୍ଜି ଆଲୁଅ ଜଳୁଥାଏ । ଘର ଭିତରକୁ ଦୁହେଁ ଯିବାରେ ମୁଁ ମୋ ବାଡ଼ିଟା ହାଙ୍ଗ-ଖୋଜ ଭିତରେ ଥୋଇ ଦେଲି ।

ମୋ' ଗଦି ଚଉକି ପାଖରେ ଥିବା ପଢ଼ିବା ଆଲୁଅଟା ମୁଁ ଜାଳିଦେଲି ।

ଘର ନିଃଶବ୍ଦ ଥାଏ ; କିନ୍ତୁ ଏହି ନିଃଶବ୍ଦତାରେ ମୁଁ ଅସ୍ୱାଭାବିକତା ଅନୁଭବ କଲି—ଯେପରି କି ଉତ୍କଣ୍ଠା ପୂର୍ଣ୍ଣ ଏ ନିଃଶବ୍ଦତା । ଶୋଇବା-ଘରକୁ ଯାଇଥିବା ସିଡ଼ି ଉପରକୁ ଆଖି ପକାଇଲି ।

"ଏତେ ଡେରିରେ ଦେଖା କରିବାକୁ ଆସିବାରୁ ବିସ୍ମିତ ହେଉଛି, ବୋଧହୁଏ ଜରୁରି କାମ ।"

"ହଁ, ଖୁବ୍ ଜରୁରି ।"

ଏଥର ତାଙ୍କୁ ପରିଷ୍କାର ଦେଖିଲି । ତାଙ୍କ ଦାନ୍ତ ଯୋଡ଼ିଟା ତାଙ୍କର ଅଗ୍ରଦୂତ—ତାଙ୍କର କ୍ଲାନ୍ତ କିନ୍ତୁ ସତର୍କ ଆଖି ଦୁଇଟିର ସହଯୋଗ ଦାନ୍ତ ଲୋଡ଼ୁ ନ ଥାଏ ।

"ଏ କଥାଟା ଆମେ ଗୁପ୍ତ ରଖିବାକୁ ଚାହୁଁ । ଆପଣ ତ ଜାଣନ୍ତି, ଏବର୍ଷ ଆମକୁ ବଡ଼ ଦୁଃସମୟ ପଡ଼ୁଛି । ପ୍ରଶ୍ନୋତ୍ତର କଳଙ୍କରେ ଆମ ମୂଳଦୁଆ ଭୁଷୁଡ଼ି ପଡ଼ିଥିଲା ; ତା'ପରେ ଘଟିଲା ପାସ୍ପୋର୍ଟ ଗୋଳମାଳ । ସେଠୁ ଚାଲିଲା କଂଗ୍ରେସର ଅନୁସନ୍ଧାନ କମିଟିମାନଙ୍କ ଅନୁସନ୍ଧାନ । ସବୁ ଆଡ଼କୁ ଆଖି ରଖିବାକୁ ପଡ଼ୁଛି । ବଡ଼ ଦୁର୍ଦ୍ଦିନ ଘୋଟିଛି ଆମକୁ ।"

"ଆପଣ କ'ଣ ଚାହାନ୍ତି, ସିଧାସଳଖ କହିଦେଲେ ଭଲ ହୁଅନ୍ତା ।"

"ଆପଣଙ୍କ ପୁଅ ଯେଉଁ 'ମୁଁ ଆମେରିକାକୁ ସୁଖ ପାଏ' ପ୍ରବନ୍ଧ ଲେଖିଥିଲେ ତାହା ଆପଣ ଦେଖିଛନ୍ତି ବୋଧହୁଏ ?"

"ନା, ମୁଁ ଦେଖି ନାହିଁ । ସେ ମୋତେ ହଠାତ୍ ଚମତ୍କୃତ କରିଦେବାକୁ ଚାହିଁଥିଲା ।"

"ବେଶ୍ ଚମତ୍କୃତ କରିଛନ୍ତି । ଆମେ କାହିଁକି ଧରି ପାରିଲୁ ନାହିଁ, ଏବେ ଭାବି ଚମତ୍କୃତ ହେଉଛୁ । କିନ୍ତୁ ଅସଲବେଳେ ଧରି ପାରିଲୁ ନାହିଁ ।"

ମଝିରୁ ଭଙ୍ଗା ହୋଇଥିବା ଗୋଟିଏ ନେଳିଆ ଖାତା ସେ ମୋତେ ବଢ଼ାଇ ଦେଇ କହିଲେ, "ତଳେ ଗାର ଦିଆ ହୋଇଥିବା ଅଂଶଗୁଡ଼ାକ ପଢ଼ନ୍ତୁ ।"

ମୁଁ ମୋ ଚଉକରେ ଆଉଜିପଡ଼ି ଖାତା ମେଲାଇଲି । ଛାପା ହୋଇଥିଲା କି ଟାଇପ୍ ହୋଇଥିଲା କେଜାଣି ? ହୁଏତ ଆଜିକାଲି ବାହାରିଥିବା ନୂଆ ମେସିନ୍‌ର ଛାପା ହୋଇଥିବ, ଯେଉଁଥିରେ ଛାପିଲେ ଟାଇପ୍ କଲାପରି ଦିଶେ । କିନ୍ତୁ ଲେଖାଟାର ଦୁଇ ପାଖେ କଡ଼ରେ ମୋଟା କଳା ପେନସିଲ୍ ଦାଗ ପଡ଼ି ବଡ଼ କଦର୍ଯ୍ୟ ଦିଶୁଥାଏ ।

'ମୁଁ ଆମେରିକାକୁ ସୁଖ ପାଏ'

ଲେଖକ—ଏଥାନ୍ ଆଲେନ୍ ହ'ଲି (ଦ୍ୱିତୀୟ) ।

"ଜଣେ ବ୍ୟକ୍ତିର କେତେ ବା ସତ୍ତା ?—ସେ ଗୋଟିଏ ପରମାଣୁ ମାତ୍ର, ଯାହାକୁ ସ୍ଥୂଳ-ମଧ୍ୟ ଦୃଷ୍ଟି-କାଚର ବିନା ସାହାଯ୍ୟରେ ଦେଖିବା ଅସଂଭବ । ବିଶ୍ୱବ୍ରହ୍ମାଣ୍ଡରେ ମାନବ ଗୋଟିଏ କ୍ଷୁଦ୍ର ବିନ୍ଦୁମାତ୍ର ; ଆଦ୍ୟନ୍ତହୀନ ଅମାପ କାଳର ଗୋଟିଏ ସେକଣ୍ଡ ସହିତ ବି ମନୁଷ୍ୟକୁ ତୁଳନା କରିହୁଏ ନ ପାରେ ; ମନୁଷ୍ୟ ବିରାଟ ମହାସାଗରର ଗୋଟିଏ

ଟୋପା, ଯାହାକି ମୁହୂର୍ତ୍ତକେ ବାଷ୍ପ ହୋଇ ପବନରେ ଉଡ଼ିଯାଏ ; ସେ ସାମାନ୍ୟ ଧୂଳିକଣାଟିଏ—ମାଟିରୁ ଜନ୍ମ ଓ ଅଳ୍ପଦିନରେ ପୁଣି ମାଟିରେ ଲୀନ ହୋଇଯାଏ । ଏଇଭଳି କ୍ଷୁଦ୍ର, ଏଇଭଳି ନଗଣ୍ୟ, କ୍ଷଣସ୍ଥାୟୀ ଓ ନଶ୍ୱର ମାନବ ଗୋଟାଏ ବିରାଟ ଜାତିର ଅଗ୍ରଗତିରେ କି ପ୍ରତିବନ୍ଧକ ବା ସୃଷ୍ଟି କରିପାରେ ? ଜାତି ଚିରସ୍ଥାୟୀ, ଯୁଗ ଯୁଗ ଧରି ତିଷ୍ଠି ରହିବାର ଶକ୍ତି ତା'ର ଅଛି । ଯେଉଁ ଜାତିର ବଂଶଧର ଆମରି ଗର୍ଭରୁ ଜାତ ହୋଇଥିଲେ ମଧ୍ୟ କଳ୍ପାନ୍ତ ପର୍ଯ୍ୟନ୍ତ, ପିଢ଼ିକୁ ପିଢ଼ି ଗତି କରି, ବଞ୍ଚି-ରହିବେ, ତାହାର ଅଗ୍ରଗତିକୁ ସାମାନ୍ୟ ବ୍ୟକ୍ତିଜଣେ କିପରି ବା ରୋକି ଧରିବ ? ଜାତିର ଆଶା ଆକାଂକ୍ଷାର ବିରୋଧ ନ କରି ଆସନ୍ତୁ ସମସ୍ତେ ଜାତିର ଉନ୍ନତି ପାଇଁ ବଦ୍ଧପରିକର ହେବା, ନିଜକୁ ଉନ୍ନତ କରି ଶୁଦ୍ଧ ନିଃସ୍ୱାର୍ଥପର ଦେଶପ୍ରେମୀର କର୍ତ୍ତବ୍ୟ କରିବା ଓ ଜାତିକୁ ସର୍ବବିଧ ଆସନ୍ନ ବିପଦରୁ ଉଦ୍ଧାର କରିବା ପାଇଁ ସଂକଳ୍ପ କରିବା । ଯଦି ଆମେ ସମସ୍ତେ ଏକତାବଦ୍ଧ ହୋଇ ପୂର୍ଣ୍ଣ ପ୍ରାଣରେ ଦେଶପାଇଁ ଆତ୍ମୋତ୍ସର୍ଗ କରିବାକୁ ପ୍ରସ୍ତୁତ ନ ହେବା, ତେବେ ଆମ ବ୍ୟକ୍ତିତ୍ୱର କି ମୂଲ୍ୟ ବା କି ପ୍ରୟୋଜନ ?"

ମୁଁ ଗୋଟି ଗୋଟି କରି ପୃଷ୍ଠା ଲେଉଟାଇ ଗଲି , ସବୁଠି ଖାଲି କଳା ଦାଗ ।

"ଏହା କେଉଁଠି ପଢ଼ିଛନ୍ତି ମନେ ପଡ଼ୁଛି ?"

"ନା ; କିନ୍ତୁ କେଉଁଠି ପଢ଼ିଲି ପରି ମନେ ହେଉଛି । ଗତ-ଶତାବ୍ଦୀରେ କେହି କେଉଁଠି ଏକଥା କହିଲ ପରି ଜଣା ପଡ଼ୁଛି ।"

"ଠିକ୍ ଅନୁମାନ କରିଛନ୍ତି । ୧୮୫୦ରେ ହେନ୍‌ରି କ୍ଲେ ଏହା ତାଙ୍କ ଭାଷଣରେ କହିଥିଲେ ।"

"ବାକି ସବୁ କ'ଣ ହେନ୍‌ରି କ୍ଲେଙ୍କ ସେଇ ଭାଷଣରୁ ନିଆ ହୋଇଛି ?"

"ନା, ଏଠୁ ଟିକିଏ ତ ସେଠୁ ଟିକିଏ । ଡାନିଏଲ୍ ୱେବ୍‌ଷ୍ଟର୍‌ଙ୍କର କିଛି ଅଛି; ଜେଫରସନ୍‌ଙ୍କର ଅଛି; ସର୍ବୋପରି, ଭଗବାନ୍ ମୋତେ ରକ୍ଷା କରନ୍ତୁ, ଲିନ୍‌କଲନ୍‌ଙ୍କ ଦ୍ୱିତୀୟ ପ୍ରାରମ୍ଭିକ ଅଭିଭାଷଣରୁ ପୂରାଏ ଅଛି । ଏ ସବୁ ଆମ ଆଖିରୁ କିପରି ଖସିଗଲା ଜାଣି ପାରୁ ନାହିଁ । ହଜାର ହଜାର

ଲେଖା ଆସି ଏକ ସମୟରେ ପଡ଼ିଯିବାରୁ ବୋଧହୁଏ ଧର ହେଲ ନାହିଁ । ଭଗବାନ୍‌ଙ୍କ ଦୟାରୁ, ଲେଡ଼ିଗୁଡ଼ କହୁଣୀକୁ ବୋହିଯିବା ପୂର୍ବରୁ ଏଇଟା ଧରାପଡ଼ ଗଲ – ପ୍ରଶ୍ନୋତ୍ତର କଳଙ୍କ ଓ ଭାନ୍ ଡୋରେନ୍ ବାର୍ଷିକା ପ୍ରଭୃତି ପରେ ଏତକ ଧରା ନ ପଡ଼ ନଥିଲେ କ'ଣ ହୋଇଥାନ୍ତା କେଜାଣି ?”

“ସ୍ତ୍ରୀ ତ ପିଲର ଲେଖାଶୈଳୀ ପର ଆଦୌ ଜଣା ଯାଉନାହିଁ । ଦେଖିଲ ମାତ୍ରେ ଜଣା ପଡ଼ିବାର କଥା ।”

“କପର ଏଡ଼େ ବଡ଼ ଭୁଲ ହେଲ କେଜାଣି ? ପୋଷ୍ଟକାର୍ଡ୍ ଖଣ୍ଡ ଯଦି ପାଇ ନ ଥାନ୍ତୁ, ତା'ହେଲେ ଖୁବ୍ ସମ୍ଭବ ଏହା ଚେଲଭଜନ୍‌ଙ୍କୁ ବ ଭୁଲ ଯାଇ ପାରିଥାନ୍ତା ।”

“ପୋଷ୍ଟକାର୍ଡ୍ ?”

“ହଁ, ଖଣ୍ଡେ ଛନ୍ଦ-ପୋଷ୍ଟକାର୍ଡ୍, ଏମ୍ପାୟାର୍ ଷ୍ଟେଟ୍ ବିଲ୍‌ଡିଂରେ ଛନ୍ଦ ଥିଲ ।”

“ପଠେଇଲ କିଏ ?”

“ବେନାମି ।”

“କେଉଁ ଡାକଘରେ ପଡ଼ିଥିଲ ?”

“ନ୍ୟୁୟର୍କ ।”

“ପୋଷ୍ଟକାର୍ଡ୍‌ଟା ଦେଖି ।”

“ପଛେ କେଜାଣି କିଛି ଗୋଳମାଳ ହୋଇପାରେ, ଏଥିପାଇଁ ପୋଷ୍ଟକାର୍ଡ୍‌ଟା ତାଲି ପକାଇ ରଖା ହୋଇଛି । ଆପଣ କ'ଣ ଏ ବିଷୟରେ କିଛି ଆପତ୍ତି ଅଭିଯୋଗ କରିବାକୁ ଚାହାନ୍ତି ? ବୋଧହୁଏ ନୁହେଁ ?”

“ଆପଣ ବର୍ତ୍ତମାନ ଚାହାନ୍ତି କ'ଣ ?”

“ଏତିକ ମାତ୍ର ଚାହେଁ, ଏ ବ୍ୟାପାରଟା ଆପଣ ଏକାବେଳକେ ପାସୋରି ଦିଅନ୍ତୁ । ଆପଣ ପାସୋରି ଦେଲେ ଆମେ ବି କିଛି ନ କରି ପାସୋରି ଦେବୁ ।”

“ସହଜରେ ପାସୋରି ହେଲ ପରି ଘଟଣା ତ ସେମିତି ନୁହେଁ !”

“ତା' ମୁଁ ଜାଣୁଛି । ଏତିକିମାତ୍ର ଅନୁରୋଧ, ଆପଣ ଏ ବିଷୟରେ ପାଟିଭୁଣ୍ଡ କରନ୍ତୁ ନାହିଁ । ଏ ବର୍ଷଟା ଆମର ବଡ଼ ଦୁଃସମୟ ପଡ଼ିଛି ।

ନିଙ୍ଗାଚନ ବର୍ଷ ନା, ଯେ କୌଣସି ଲୋକ ଯେ କୌଣସି ବିଷୟରେ ଆପତ୍ତି ଅଭିଯୋଗ କଲେ ଭୁମୁଳ କାଣ୍ଡ ଘଟିଯିବ ।”

ମୁଁ ଦାମିକା କାଗଜର ନେଳି ମଲାଟ ଲଗା ଖାତାଟା ବନ୍ଦ କରି, ତାଙ୍କ ହାତକୁ ବଢ଼ାଇ ଦେଲି , କହିଲି, “ମୁଁ ଆପଣଙ୍କୁ କୌଣସି ଗୋଳମାଳରେ ପକାଇବି ନାହିଁ ।”

ସଜାଡ଼ି ହୋଇ ରଖା ହୋଇଥିବା ମୁକ୍ତାପନ୍ତିପରି ତାଙ୍କ ଦାନ୍ତ ଝଟକି ଉଠିଲା ।

“ଆପଣ ଯୁା କହିବେ ବୋଲି ମୁଁ ଜାଣିଥିଲି । ଆମ ଅଫିସରେ ବି କହିଥିଲି । ମୁଁ ଆପଣଙ୍କ ବଂଶାନୁଚରିତ ଦରଣ୍ଡିଥିଲି । ସଂଭ୍ରାନ୍ତ ବଂଶ ଆପଣଙ୍କର ; ଆପଣଙ୍କ ନିଜ ରେକର୍ଡ଼ ମଧ୍ୟ ଖୁବ୍ ଭଲ ।”

“ହଉ, ଆପଣ ତେବେ ବର୍ତ୍ତମାନ ଯା’ନ୍ତୁ ।”

“ଆପଣଙ୍କୁ ଏତିକି ମାତ୍ର ମୋର ଜଣାଇବାର କଥା ଯେ, ବର୍ତ୍ତମାନ ଆପଣଙ୍କ ମନ କ’ଣ ହେଉଥିବ ମୁଁ ଉପଲବ୍‌ଧି କରି ପାରୁଛି ।”

“ଧନ୍ୟବାଦ । ଆପଣଙ୍କ ମନୋଭାବ ମଧ୍ୟ ମୁଁ ଜାଣି ପାରୁଛି । ଆପଣଙ୍କର ଲୁଚାଇବାକୁ କିଛି ନାହିଁ ।”

“ଆପଣଙ୍କୁ ଉଦଗେଇ ଦେଇ ଚାଲିଯିବାକୁ ମୁଁ ଚାହେଁ ନାହିଁ । ଲୋକସମ୍ପର୍କ ମୋ କାମ । ଆପଣଙ୍କ ପୁଅଙ୍କ ପାଇଁ ଗୋଟାଏ କିଛି ବ୍ୟବସ୍ଥା କରି ଦେବ । ଗୋଟାଏ ଛାତ୍ରବୃତ୍ତି ବା ସେହିପରି ଆଉ କିଛି, ଆପଣଙ୍କ ସମ୍ମାନରେ ଆଞ୍ଚ ନ ଲଗାଇ ।”

“ପାପ କ’ଣ ଦରମା ବଢ଼ିବାକୁ ଷ୍ଟ୍ରାଇକ୍ କରିଛି କି ? ମୋର କିଛି ଦରକାର ନାହିଁ । ଆପଣ ଶୀଘ୍ର ଏଠାରୁ ଗଲେ ମୁଁ ଅନୁଗୃହୀତ ହେବି ।”

“ପରେ ଗୋଟାଏ କିଛି ବ୍ୟବସ୍ଥା କରିବା ।”

“ମୁଁ ଜାଣେ ସେହିପରି କିଛି ନ କରି ଆପଣ ଛାଡ଼ିବେ ନାହିଁ ।”

ମୁଁ ତାଙ୍କୁ ବାଟେଇ ଦେଲି ଓ ପୁଣି ଆସି ଚଉକିରେ ବସି ଆଲୁଅ ଲିଭାଇ ଦେଲି । ଧୀର ହୋଇ ବସି ମୋ ଘରକୁ କାନ ଡେରିଲି । ହୃତ୍‌ପିଣ୍ଡ ପରି ଘରଟା ଧଡ଼ଧଡ଼ ହେଉଥାଏ । ହୁଏତ ଘରର ହୃତ୍‌ପିଣ୍ଡ

ବୋଲି ଯାହା କହୁଛି ତାହା ମୋର ନିଜ ହୃତ୍ପିଣ୍ଡ—ଧଡ଼ଧଡ଼ ହେଉ-ଥାଏ । ପୁରୁଣା ଘରଟା ବରଣ୍ଡାପକ୍ର ପର ଥରୁଥାଏ । ମୋର ମନ ହେଲା, ଆଲମାରି ପାଖକୁ ଯାଇ ମଲ୍ଲିଗିନାଟା ହାତରେ ଧରିବ—ମିବାକୁ ଠିଆ ବ ହୋଇ ପଡ଼ିଥିଲି ।

ଏତିକିବେଳେ ମୋତେ ଶୁଭିଲା ଗୋଟାଏ ଧଡ଼ଧାଡ଼ ଶବ୍ଦ ଓ ଘୋଡ଼ାକୁଆ ଘୁନିଆ ହୋଇଗଲେ ଯେପରି ମୃଦୁ ହେ୍ଷାରବ କରେ ସେହିପରି ଗୋଟାଏ ଚିତ୍କାର । ତା'ପରେ ହଲ୍‌ରେ ଦ୍ରୁତ ପଦଶବ୍ଦ— ତା'ପରେ ସବୁ ତୁନ୍‌ତାନ୍ । ମୋର କୋଠା ସିଡ଼ିରେ ମଟ ମଟ ଶବ୍ଦ କଲି । ମୁଁ ଏଲେନ୍‌ର କୋଠରୀକୁ ଗଲି ଓ ଆଲୁଅ ଟିପି ଦେଲି । ସେ ଗୋଟାଏ ଗୃହର ଭୋଜେଇ ହୋଇ ଚେକ ବାଂଧି ପଡ଼ିଥାଏ, ମାଣ୍ଡିରେ ମୁଣ୍ଡ ଦେଇ । ମାଣ୍ଡିଟାକୁ ଟେକିବାକୁ ଚେଷ୍ଟା କରିବାରେ ସେ ମାଣ୍ଡିକୁ ଜାକି ଧରିଲା । ମୋତେ ମାଣ୍ଡିଟା ଜୋରରେ ଟାଣିନେବାକୁ ପଡ଼ିଲା । ତା' ପାଟି କୋଣରୁ ଗୋଟାଏ ରକ୍ତଧାର ବୋହୁଥାଏ ।

"ଗାଧୁଆ ଘରେ ମୋ ଗୋଡ଼ ଖସିଗଲା ।"

"ଓଃ ! କ'ଣ ବେଶି ଆଘାତ ଲାଗିଛି ?"

"ନା, ସେମିତି ତ ଜଣା ପଡ଼ୁନାହିଁ ।"

"ମାନେ, ମୋର ଏଥିରେ ମୁଣ୍ଡ ଘୂରାଇବା ଦରକାର ନାହିଁ ବୋଲି କହୁଛୁ ?"

"ତାକୁ ଜେଲକୁ କେଜାଣି ନେଇ ଯିବେ ବୋଲି ମୋର ଭୟ ହେଲା ।"

ଯ୍ୟାଲେନ୍ ତା' ଖଟ ଧାଡ଼କୁ ବସିଥାଏ । ତା' ଦେହରେ ଫ୍ଲେଟ ହାଫ୍‌ପ୍ୟାଣ୍ଟ ଖଣ୍ଡେ ବ୍ୟତୀତ ଆଉ କିଛି ନ ଥାଏ । ତା' ଆଖି ଦୁଇଟାକୁ ଦେଖି ମୁଁ ଭାବିଲି ମୂଷାଟା ବାଟ ନ ପାଇ କୁଣରେ ଲେପଟିଛି ଓ ଅନନ୍ୟ-ଗତି ହୋଇ ଘୁଷୁରିଣି ସାଙ୍ଗେ ଲଢ଼ିବାକୁ ବାହାରିଛି ।

ଯ୍ୟାଲେନ୍ କହିଲା, "ଗନ୍ଧେଇ ଟ୍ରୁପ୍ରସୀଟା ।"

"ତୁ ସବୁ କଥା ଶୁଣିଛୁ ?"

"ଏଇ ଗନ୍ଧେଇ ଟ୍ରୁପ୍ରସୀଟା ଯାହା କଲା ଶୁଣିଛି ।"

"ତୁ ଯାହା କରିଛୁ ସେ କଥା ଶୁଣିଲୁଟି ?"

ଅନନ୍ୟଗତିକ ମୂଷା ଏଥର କାମୁଡ଼ି ମିଶିଲା । "କିଏ ପଚାରୁଛି ସେ କଥାକୁ ? ସମସ୍ତେ ସେମିତି କରୁଛନ୍ତି । ଏଇମିତି କଲେ ଯାଇ କାର୍ଯ୍ୟ ଉଦ୍ଧାର ହୁଏ ।"

"ଏପରି କରିବା ଠିକ୍ ବୋଲି ତୁ ବିଶ୍ୱାସ କରୁଛୁ ?"

"ତମେ କ'ଣ ଖବରକାଗଜ ପଢ଼ୁନାହିଁ ? ସମସ୍ତେ -- ତଳରୁ ଉପର ଯାଏଁ ସମସ୍ତେ—ଏଇଆ କରୁଛନ୍ତି । ଖବରକାଗଜ ପଢ଼, ଜାଣିବ । ଘର ଅନ୍ୟାୟ ହୋଇଗଲା ବୋଲି ବିଚାରୁଛ ପରା—ଖବର-କାଗଜ ପଢ଼ । ମୁଁ ବାଜିମାରି କହିପାରେ, ତମ ବେଳରେ ତମେ ବି ଏଇଆ କରିଥିବ—ସମସ୍ତେ ତ କରୁଛନ୍ତି ! ସମସ୍ତେ ଯାହା କରୁଛନ୍ତି, ମୁଁ ସେଇଆ କଲି ବୋଲି ମୁଁ ଠୋକର ଖାଇବି କାହିଁକି ? କୌଣସି କଥାକୁ ମୋର ଖାତିର୍ ନାହିଁ । କେବଳ ଏଇ ଗନ୍ଧେଇ ଚୁପ୍‌ସୀକୁ ମୁଁ ସାବାଡ଼ କରିଦେବି ।"

ମେଘାଙ୍କ ନିଦ ସହଜେ ଭାଙ୍ଗେ ନାହିଁ , ଏତେବେଳେ କିନ୍ତୁ ସେ ଚେତା ଥିଲେ । ବୋଧହୁଏ ସେ ଏତେବେଳଯାଏଁ ଆଦୌ ଶୋଇ ନ ଥିଲେ । ସେ ଏଲେନ୍‌ର କୋଠରୀରେ ଥାନ୍ତି, ତା'ର ଖଟର ଦାଢ଼ରେ ବସିଥାନ୍ତି ; ରାସ୍ତାର ଆଲୁଅ ତାଙ୍କ ମୁହଁରେ ପଡ଼ୁଥାଏ । ରାସ୍ତା କଡ଼ ଗଛର ପତ୍ର ଛୁଇଁ ତାଙ୍କ ମୁହଁରେ ଖେଳୁଥାଏ । ସେ ପଥର ପରି ବସିଥାନ୍ତି, ତରଙ୍ଗ ଆଘାତରେ ନିଶ୍ଚଳ ହୋଇ ରହିଥିବା ବିରାଟ କଳାମୁଗୁନି ପଥର ପରି । ମାର୍ଗି ଯାହା କହିଥିଲେ ସେ କଥା ସତ । ମେଘା ବାସ୍ତବିକ ପଥର ପରି ଟାଣ ; ଟିକିଏ ହଲଚଲ ନାହିଁ, କି ଦବି ଯିବାକୁ ନାହିଁ । ତାଙ୍କୁ ଚକ୍‌ଇବ କିଏ ? ସେ ଚକିବେ କେତେବେଳେ ?

"ଏଥାନ୍, ଶୋଇବାକୁ ଆସୁଚଟି ?"

ଜାଣିଲି, ସେ ସବୁ କଥା ଶୁଣିଥିଲେ ।

"ନାଇଁ, ପ୍ରିୟତମେ, ମୁଁ ବର୍ତ୍ତମାନ ଶୋଇବି ନାହିଁ ।"

"ପୁଣି କ'ଣ ବାହାରକୁ ଯିବ ?"

"ହଁ – ଟିକିଏ ବୁଲି ଆସିବି ।"

"ତୁମର ନିଦ ଦରକାର । ଅଦ୍ୟାପି ବର୍ଷା ହେଉଛି । ନିଶ୍ଚୟ କ'ଣ ଯିବାକୁ ହେବ ?"

"ହଁ ; ମୋର ଗୋଟାଏ ଆସ୍ଥାନ ଅଛି । ସେଠାକୁ ଯିବା ଦରକାର ।"

"ତୁମ ବର୍ଷାତିଟା ନିଅ । ଆଗ ଥର ପାସୋର ଗଲ ।"

"ହ, ନେଉଛି, ପ୍ରିୟେ !"

ସେତେବେଳେ ତାଙ୍କୁ ଆଉ ଚୁମ୍ବନ ଦେଲି ନାହିଁ । ତାଙ୍କ ପାଖରେ ଘୋଡ଼ହୋଇ ପଡ଼ିଥିବା ପିଣ୍ଡୁଳାଟା ଆଗରେ ଚୁମ୍ବନ ଦେବା ଚଳନ୍ତା ନାହିଁ । ତାଙ୍କ କାନ୍ଧ ଉପରେ ହାତ ମାଇଲି ଓ ତାଙ୍କ ମୁହଁକୁ ଟିକଏ ସ୍ପର୍ଶ କରିଦେଲି ମାତ୍ର ।

ମୁହୂର୍ତ୍ତକ ପାଇଁ ଗାଧୁଆ ଘରକୁ ଗଲି ବ୍ଲେଡ୍ ପୁଡ଼ିଆଟା ଆଣିବା-ପାଇଁ ।

ହଲ୍‌ରେ ପହଞ୍ଚି ପାଇଖାନା ଘରୁ, ମେରୀଙ୍କ କହିବା ଅନୁସାରେ, ବର୍ଷାତିଟାଏ ଆଣିବାକୁ ହାତ ବଢ଼ାଉଛି, ପୁଣି ଧସ୍ତାଧସ୍ତି ଶବ୍ଦ ଶୁଭିଲା, ତା'ପରେ ଛଡ଼େଇ ହୋଇ ଧାଇଁବାର ଶବ୍ଦ । ଏଲେନ୍ ଆସି ମୋ ଉପରେ ହାମୁଡ଼ି ପଡ଼ିଲା ; ଘୂଷୁରି ପରି ସୁଁ ସୁଁ ଗୁଁ ଗୁଁ ହେଉଥାଏ । ରକ୍ତ ବୋହି ଯାଉଥିବା ତା' ନାକକୁ ମୋ ଗୁଣ୍ଡିରେ ମାଡ଼ି ସେ ମୋ କାନ୍ଧକୁ ଦୁଇ ବାହୁରେ ଜାବୁଡ଼ି ଧଇଲା । ତା'ର ସର୍ବାଙ୍ଗ ଥରୁଥାଏ ।

ତା' ମୁଣ୍ଡବାଳ ଧରି ମୁଁ ତାକୁ ସିଧା କଲି ଓ ହଲ୍‌ର ଆଲୁଅକୁ ତା' ମୁହଁ ଟେକି ଧଇଲି ।

"ମୋତେ ତୁମ ସାଙ୍ଗରେ ନିଅ ।"

"ବାଲୁରଟେ ତୁ ! ତତେ ସାଙ୍ଗରେ ନେବି କିମିତି ? ସେଷେଇ-ଘରକୁ ଯେବେ ଆସିବୁ ତୋ ମୁହଁକୁ ଧୋଇଦେବି ।"

"ମୋତେ ତୁମ ସାଙ୍ଗରେ ନିଅ । ତୁମେ ଆଉ ଫେରିବ ନାଇଁ ।"

"ସେମିତି କ'ଣ କହୁଛୁ, ଉଲି ! ମୁଁ ନିଶ୍ଚୟ ଫେରିବି । ସବୁଦିନ ତ ଘରକୁ ଫେରୁଛି, ରହିବି କୋଉଠି ? ତୁ ଯାଇ ଶୁଅ, ବିଶ୍ରାମ ନେ । ଶୋଇଲେ ସୁଖ ଲାଗିବ ।"

"ମୋତେ ନେବ ନାଇଁ ତ ?"

"ମୁଁ ଯେଉଁଠିକି ଯାଉଛି ସେଠାକୁ ତୋତେ ଛାଡ଼ିବେ ନାଇଁ । ସିଡ଼ି ଗାଉନ୍ ପିନ୍ଧି ଦାଣ୍ଡରେ ଠିଆ ହେବାକୁ ତୋତେ ସୁଖ ଲାଗିବ ?"

"ତୁମେ ମୋତେ ନେବ ନାହିଁ ତେବେ ?"

ସେ ମୋତେ ପୁଣି କୁଣ୍ଢେଇ ପକାଇଲା । ହାତରେ ମୋ ବାହୁକୁ ଆଉଁସିଲା, ଗେଲ କଲା, ମୋ ଖୁଆ ତଳେ ହାତ ବୁଲେଇଲା ଓ ହାତ ମୁଠା କରି କୋଟର ତଳ ପକେଟ୍‌ରେ ପୂରାଇଲା । କେଜାଣି ବ୍ଲେଡ୍ ପୁଡ଼ିଆଟା ତା'ହାତରେ ପଡ଼ିଯିବ ବୋଲି ମୋତେ ଭୟ ହେଉଥାଏ । ତା'ର ତ ଅଭ୍ୟାସ ଏଇମିତି ଗେଲ କରେ, ଦେହରେ ହାତ ବୁଲାଏ ଓ ହଠାତ୍ ଗୋଟାଏ କ'ଣ କରିପକାଇ ଚମକାଇ ଦିଏ । ଯାହାହେଉ ହଠାତ୍ ସେ ମୋତେ ଛାଡ଼ି ଦେଲା ଓ ମୁହଁ ସିଧା କରି ଟିକିଏ ଘୁଞ୍ଚିଯାଇ ସିଧା ଠିଆ ହେଲା ; ସଲଖ କରି ମୋତେ ଚାହିଁଲା ; ଆଖିରେ ଲୁହ ନ ଥାଏ । ତା'ର ରକ୍ତରଞ୍ଜିତ କ୍ଷୁଦ୍ର କପୋଳରେ ମୁଁ ଚୁମା ଦେଲି । ଶୁଖି ଯାଇଥିବା ତା' ରକ୍ତ ମୋ ପାଟିରେ ଲାଗିଲା । ତା'ପରେ ମୁଁ ଦାଣ୍ଡ ଦୁଆର ଆଡ଼େ ମୁହାଁଇଲି ।

"ବାଡ଼ିଟା ସାଙ୍ଗରେ ନେବ ନାହିଁ ?"

"ନାହିଁ ଲୋ ଝିଅ ! ଏ ରାତିରେ ଆଉ ବାଡ଼ି ଦରକାର ନାହିଁ । ଯା ଶୋଇବୁ, ମା ! ଯା, ଶେଯରେ ଶୋଇପଡ଼ ।"

ମୁଁ ତରତର ହୋଇ ପଳାଇଲି । ବଞ୍ଚିଗଲି, ତା'ଠାରୁ ଓ ମେଘାଙ୍କଠାରୁ ମୁକ୍ତି ପାଇବାକୁ ପଳାଇଲି । ଶୁଣୁଥାଏ, ଧୀରସ୍ଥିର ଭାବେ ପାଦ ପକାଇ ମେଘା ପିଣ୍ଡରେ ଚାଲିକୁ ଓହ୍ଲାଉଥାନ୍ତି ।



## —ଦ୍ୱାବିଂଶ ପରିଚ୍ଛେଦ—

ଜୁଆର ଉଠୁଥାଏ । ଉପସାଗରର ଉଷ୍ଣ ଜଳ ଭିତରେ ପଶି ମୁଁ ମୋ ଆସ୍ଥାନକୁ ଉଠିଲି । ଉପକୂଳ ଆଡ଼ୁ ଫେରୁଥିବା ଗୋଟାଏ ବଡ଼ ତରଙ୍ଗ ମୋ ଆସ୍ଥାନର ଦୁଆର ବାଟେ ପଶି ବାହାରିଗଲା ; ବାହାରିଲା ବେଳେ ମୋ ପ୍ୟାଣ୍ଟ ଭିତରେ ପଶିଗଲା । ମୋ ପ୍ୟାଣ୍ଟ୍ ପକେଟରେ ଥିବା ମୋଟା ଚମଡ଼ା ବ୍ୟାଗ୍‌ଟା ଆହୁରି ଫୁଲି ଯାଇ ମୋ ପିଠିରେ ବାଜିଲା ଏବଂ ପାଣିରେ ଓଦା ହୋଇ ଯିବାରୁ ମୋ ପିଠି ଉପରେ ପୁଣି ଚାପି ହୋଇଗଲା । ଖରାଦିନଆ ସମୁଦ୍ରରେ ଭଇଁଚକୋଳି ପରି ଛୋଟ ଛୋଟ ମାଛ ଭର୍ତ୍ତି ହୋଇ ଥାନ୍ତି —ତାଙ୍କ ମୁହଁର ଛୋଟ ଛୋଟ କଣ୍ଟା ଓ ପିଠିର କାତି ପାଣିରେ ଥରୁଥାଏ । ମୋ ଗୋଡରେ ଓ ପେଟରେ ସେମାନେ ଘଷିହୋଇ ଗଲାବେଳେ ତାଙ୍କ କଣ୍ଟା ଓ କାତି ନିଆଁ ପରି ଚେଙ୍ଗି ହୋଇ ଯାଉଥାଏ । ମନ୍ଥର ତରଙ୍ଗ ମୋ ଆସ୍ଥାନରେ ପଶୁଥାଏ ଓ ବାହାରୁଥାଏ । ବର୍ଷା ଏତେବେଳକୁ ଟିକଏ ଟିକଏ କୁଣ୍ଡା ଝାଡ଼ି କୁହୁଡ଼ି ପରି ଦିଶୁଥାଏ । ଏଇ-ଥିରେ ଆକାଶର ତାରା ଓ ଉପକୂଳର ବତ୍ତିମାନଙ୍କ କିରଣ ଏକତ୍ରିତ ହୋଇ ସମାନ ଭାବରେ କଂସାପରି ଧଳାବର୍ଣ୍ଣ ଦିପ୍ତି ଦେଉଥାନ୍ତି । ଉପ-କୂଳର ବୃକ୍ଷପୁ ପାହାଡ଼ଟା ଦିଶୁଥାଏ, କିନ୍ତୁ ମୋ ଆସ୍ଥାନ ଉପରୁ ଚାହିଁଲେ ଏହା ପର୍ଟି ପଏଣ୍ଟ ସଙ୍ଗେ ସିଧା ଲାଇନ ହୋଇ ବେଲ୍ ଏଡେପ୍ଟାର୍ ଜାହା-ଜର ତଳି ଉପରେ ରହୁ ନ ଥାଏ । ଗୋଟାଏ ବଡ଼ ତରଙ୍ଗ ମୋ ଆସ୍ଥାନ ଭିତରେ ପଶି ଯାଇ ମୋ ଗୋଡ଼ ଦୁଇଟା ଟେକି ଦେଲା ଓ ମୋତେ ଜଣା ପଡ଼ିଲା ସତେ ଯେପରି ଗୋଡ଼ ଦି'ଟା ମୋଠାରୁ ଅଲଗା ହୋଇଗଲେ । ଏତିକିବେଳେ କୁଆଡ଼ୁ ଗୋଟାଏ ପବନ ବ୍ୟଗ୍ର ଭାବେ ଧାଇଁ ଆସି ମେଣ୍ଢା ଘଉଡ଼ିଲା ପରି ଲୁଗପଟରେ କୁହେଳିକୁ ଉଡ଼ାଇ ନେଲା । ସେତିକି ବେଳେ ମୋତେ ଦିଶିଲା ଗୋଟିଏ ତାରା ; ଖୁବ୍ ଉଜ୍ଜ୍ୱଳରେ ଉଠୁଥାଏ, ଦୂର ଦିଗ୍-

ବଳସ୍ୱରେ ସମୁଦ୍ରକାନ୍ତ ଉପରକୁ । ଗୋଟିଏ କ ଡଙ୍ଗା ଧୀରେ ଧୀରେ ଉପକୂଳ ଆଡ଼କୁ ଆସୁଥାଏ ; ତା'ଇଞ୍ଜିନର ଧୀର ଓ ଗମ୍ଭୀର ଶବ୍ଦରୁ ବାରିଲି, ଡଙ୍ଗାରେ ପାଲ ବ ଅଛି । ଡଙ୍ଗାର ମାସ୍ତୁଲ ଉପର ଆଲୁଅ, ବନ୍ଦରର ତରଙ୍ଗରୋଧୀ ପ୍ରାଚୀରର ଦନ୍ତୁରିତ ଅଂଶ ଉପରକୁ ଦିଶୁଥାଏ ; କିନ୍ତୁ ତା'ର ନେଳ ଓ ନାଲି ଆଲୁଅ ଯୋଡ଼ାକ ମୋ ଦୃଷ୍ଟିରେଖାର ତଳେ ରହିଯାଇଥାଏ ।

ଗ୍ଲେଟ ମାଛଙ୍କ ଆଘାତରେ ମୋ ସର୍ବାଙ୍ଗ ଦାଉ ଦାଉ ପୋଡ଼ୁଥାଏ । ଆସୁଥିବା ଡଙ୍ଗାର ନଙ୍ଗର ଝପ୍ କିନା ପାଣିରେ ପଡ଼ିବାର ଶୁଣିଲି ; ସାଙ୍ଗେ ସାଙ୍ଗେ ମାସ୍ତୁଲ ଆଲୁଅ ବ ଲିଭିଗଲା ।

କିନ୍ତୁ ମ୍ୟାରୁଲୋଙ୍କ ଆଲୋକ ସେତେବେଳେ ବ ଜଳୁଥାଏ—ତା' ସଙ୍ଗେ ବୃଦ୍ଧ କପ୍ତାନ ଓ ଜେନେନାମ୍ନୀ ଡେଭୋରାଙ୍କ ଆଲୋକ ମଧ୍ୟ ।

ଅବଶ୍ୟ ସମସ୍ତଙ୍କ ଆଲୋକ ଏକାଠି ଜଳି ଉଠି ଆଲୁଅର ଗୋଟାଏ ଉତ୍ସବ ସଂସାରରେ ସୃଷ୍ଟି କରୁନାହିଁ । ପ୍ରତ୍ୟେକର ଆଲୁଅ ଅଲଗା ଅଲଗା ଜଳୁଛି—ପ୍ରତ୍ୟେକେ ଅନ୍ୟଠାରୁ ଦୂରରେ ରହି ଏକାନ୍ତରେ ନିଜ ନିଜର ଆଲୋକ ଜଳାଇ ରଖିଛନ୍ତି ।

ଗ୍ଲେଟ ଗ୍ଲେଟ ମାଛ ଝାଂକଟିଏ ଖସ୍ ଖସ୍ ହୋଇ ଖାଦ୍ୟ ଅନ୍ୱେଷଣରେ ଉପକୂଳ ଆଡ଼କୁ ପଦାଳି ଗଲେ ।

ମୋ ଆଲୋକଟି ଲିଭିଗଲାଣି । ଲିଭିଯାଇଥିବା ସଳିତାଟି ଖୁବ୍ କାଳିଆ ଦିଶୁଛି ।

ମନେ ମନେ କହିଲି, ମୁଁ ଫେରିବି ମୋ ଘରକୁ—ଯେଉଁ ଘରୁ ଆସିଛି ସେଠାକୁ ନୁହେଁ— ଏ ଘର ଆଉ ପାଖେ ଯେଉଁ ଘର ଅଛି ସେଇଠାକୁ, ଯେଉଁଠି ନୂଆ ଆଲୁଅ ମଣିଷକୁ ଦିଆଯାଏ ।

ଆଦୌ ଆଲୁଅ ନ ଜଳିଥିଲେ ଯେମିତି ଦିଶେ, ଜଳୁଥିବା ଆଲୁଅଟି ଲିଭିଗଲେ ତା'ଠାରୁ ଅଧିକ ଅନ୍ଧାର ଜଣାଯାଏ । ସଂସାରଟାଯାକ ଅନ୍ଧକାରଜନ୍ମ ବିପଥଗାମୀଙ୍କଦ୍ୱାରା ପୂର୍ଣ୍ଣ ହୋଇ ଯାଇଛି । ଏଥିରୁ ଉଦ୍ଧାର ପାଇବାର ପ୍ରଶସ୍ତତର ଉପାୟ—ପୁରୁଣା ବେମନଗଷ୍ଟର ମ୍ୟାରୁଲୋପିତୃପୁରୁଷ ଜାଣିଥିଲେ—ଏ ଉପାୟ ହେଉଛି, ଉପଯୁକ୍ତ ସମୟ ଆସିଲା ବେଳେ ଆସ୍ତେ ସଂସାରରୁ ଅପସରି ଯିବା । ସମ୍ମାନର ସହିତ ପ୍ରତ୍ୟାବର୍ତ୍ତନ,

ନାଟକୀୟ ଛଟାରେ ନୁହେ, ନିଜକୁ ବା ନିଜ ପରିବାରକୁ ଦୁଃଖରେ ବୁଡ଼ାଇ ନୁହେ — ଖୁସିବାସିରେ ଗଭୀରରେ ବଦାମ୍ଭ ନେଇ ଶୋଇବାକୁ ଗଲି ଚିର ଧୀରେ ସୁସ୍ଥେ । କଟିଟିର ଗୋଟିଏ ଧମନୀ ମେଲକରି ଦେଇ ସମୁଦ୍ରର ଉଷ୍ଣ ଜଳରେ ଗୋଟିଏ ବୁଡ଼ ପାରିଲେ ହେଲା—ଖଣ୍ଡିଏ ବ୍ଲେଡ୍ ସାହାଯ୍ୟରେ ଉଷ୍ଣ ଜଳରେ ଅନ୍ତିମ ଡୁବନ୍ — ବେଶ୍ ସେନ୍ତକ ।

ଫୁଲି ଉଠିଥିବା ତରଙ୍ଗ, ଉପକୂଳରୁ ଫେରିଲାବେଳେ ଭୁସ୍କିନା ମୋ ଆସ୍ଥାନ ଭିତରେ ପଶିଗଲା — ମୋର ଗୋଡ଼ ଓ ପିଠି ଦୁଇଟା ଟେକି ହୋଇ ଆସ୍ଥାନର ଆଡ଼ କାନ୍ଥ ଆଡ଼କୁ ଆଉଜାଇ ହୋଇଗଲା । ତରଙ୍ଗ ଆସ୍ଥାନରୁ ଫେରିଲାବେଳେ ଚଉଡ଼ା ହୋଇଥିବା ମୋର ଓଦା ବର୍ଷାତି ଖଣ୍ଡ ସାଙ୍ଗରେ ନେଇଗଲା ।

ମୁଁ ଗୋଟାଏ ପିଠିରେ ଅଣେଇ ହୋଇ ଶୋଇ ମୋ କୋଟ୍ ପକେଟରୁ ବ୍ଲେଡ୍ ପୁଡ଼ିଆ ବାହାର କଲି ବେଳକୁ ଶିଳାପିଣ୍ଡଟା ହାତରେ ବାଜିଲା । ହଠାତ୍ ବସ୍ତୁରେ ମନେ ପକାଇଲି, ମୋତେ ଗେଲ କରୁଥିବା, ମୋ ଦେହରେ ହାତ ବୁଲଉଥିବା ଆଲୋକଧାରିଣୀର ରୂପକୁ । ଦଣ୍ଡେ ଶିଳାଖଣ୍ଡି ମୋ ଓଦା ପକେଟରୁ ବାହାରିବାକୁ ଭିଡ଼ କଲି । ଶେଷରେ ହାତରେ ତା'କୁ ବାହାର କରି ଧଇଲି । ବାୟୁମଣ୍ଡଳରେ ଅବଶିଷ୍ଟ ଥିବା ସବୁତକ ଆଲୁଅ ଏଥିରେ ଆସି ପୁଞ୍ଜୀଭୂତ ହୋଇ ଶିଳାଟିକୁ ରକ୍ତବର୍ଣ୍ଣରେ ରଞ୍ଜିତ କଲା — ଗାଢ଼ ରକ୍ତ ବର୍ଣ୍ଣ ।

ତରଙ୍ଗର ଗୋଟାଏ ଉଚ୍ଛ୍ୱାସ ମୋତେ ନେଇ ଆସ୍ଥାନର ଶେଷପଟେ ଚୁପି ଦେଲା । କ୍ରମେ ସମୁଦ୍ର ଅଧିକରୁ ଅଧିକ ଫୁଲୁଥାଏ ଓ ତରଙ୍ଗର ଗତି କ୍ଷିପ୍ରତର ହେଉଥାଏ । ବାହାରିବାକୁ ଜଳରାଶି ସଙ୍ଗେ ମୋତେ ଲଢ଼ିବାକୁ ପଡ଼ିଲା । ମୋର ଯେ ବାହାରିବା ନିତାନ୍ତ ଦରକାର । ମୁଁ ପାଣିରେ ଗଡ଼ି ତଳର ମାଟିକୁ ରାମ୍ପୁଡ଼ି ଧରି ଗୁଡିଏ ପାଣିରେ ବାଡ଼େଇ କସ୍ରତ୍ ହେଲା ବେଳକୁ ଖୁବ୍ ବେଗରେ ଆସୁଥିବା ଗୋଟିଏ ଢେଉ ମୋତେ ପେଲି ନେଇ ଉପକୂଳର ପୁରୁଣା କାନ୍ଥ ତଳେ ପହଞ୍ଚାଇ ଦେଲା ।

ମୋତେ ଘରକୁ ଫେରିବାକୁ ପଡ଼ିଲା—ମନ୍ତ୍ରଶିଳାଟି ନେଇ ତା'ର ନୂଆ ମାଲିକାଣୀ ପାଖେ ପହଞ୍ଚାଇବା ଯେ ନିତାନ୍ତ ଦରକାର ।

ନ ହେଲେ ଆଉ ଗୋଟିଏ ଆଲୁଅ ଲିଭିଯିବାର ଆଶଙ୍କା ଅଛି ।

---

ମୁଦ୍ରାକର—ଶ୍ରୀ ଚନ୍ଦ୍ରମଣି ମିଶ୍ର, ନବଜୀବନ ପ୍ରେସ୍, କଟକ-୨

# ପଚାଶ ପଇସା ବଞ୍ଚାନ୍ତୁ

ଏଇ ବହି ଖଣ୍ଡିକ ପଢ଼ିସାରିଲା ପରେ ଯଦି ଆପଣଙ୍କୁ ଭଲ ଲାଗିଥାଏ ତାହା ହେଲେ ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଲେଖି କାର୍ଡ ଖଣ୍ଡିକ ଆଜହିଁ ଡାକରେ ପଠାଇ ଦିଅନ୍ତୁ । ଦେଖିବେ, ଡାକ ଟିକଟ ଯେପରି ନ ଲଗାନ୍ତି । ଫେରନ୍ତି ଡାକରେ ଆପଣଙ୍କ ପାଖକୁ ଖଣ୍ଡିଏ କୁପନ ପଠାଯିବ । କୁପନ ଖଣ୍ଡିକ ବହି ଦୋକାନରେ ଦେଲାକ୍ଷଣି ୫୦ ପଇସା କମ୍ ମୂଲ୍ୟରେ ଆଉ ଖଣ୍ଡିଏ ବହି କିଣି ପାରିବେ ।

ନାମ ..................................................................

ବୟସ ..................................................................

ଠିକଣା ..................................................................

ପେଶା ..................................................................

ଏ ବହିଖଣ୍ଡି କପରି ଲାଗିଛି ............................ (ଭଲ)

.......................... (ମନ୍ଦ ନୁହେଁ) ................. (ଖରାପ)

କେଉଁଠାରୁ ଏ ବହି ଖଣ୍ଡିକ କିଣିଛନ୍ତି

..................................................................

(ଦୋକାନର ନାମ ଓ ଠିକଣା)

# ଆମ ଦୁର୍ଗତିର ଦୁର୍ଦ୍ଦିନ

( ନୋବେଲ ପୁରସ୍କାରପ୍ରାପ୍ତ )                    ମୂଲ୍ୟ : ୫୭-୦୦

ମୂଳ ରଚନା : ଜନ୍ ଷ୍ଟାଇନ୍‌ବେକ୍

ଅନୁବାଦ : ଶ୍ରୀ ଚିନ୍ତାମଣି ମିଶ୍ର

ଶିଷ୍ଟାଚାର, ସାଧୁତା, ବିଶ୍ୱସ୍ତତା ପ୍ରତି ଆଧୁନିକ ଜଗତବାସୀଙ୍କ ଯେଉଁ ବେଖାତିର ଭାବ ରହିଛି ଏବଂ ଯେଉଁ ନୈତିକ ଶିଥିଳତା ଆମ୍ଭମାନଙ୍କୁ ଘେରି ରହିଛି ସେସବୁର ଅତି ସୂକ୍ଷ୍ମ ଅନୁସନ୍ଧାନ ଲେଖକ ଏଥିରେ କରିଛନ୍ତି ।

---